# ମହାପାତ୍ର ନୀଳମଣି ସାହୁ ରଚନା ସମଗ୍ର
[ ପ୍ରଥମ ଭାଗ ]

ପ୍ରକାଶକ :
ଆର୍ଯ୍ୟ ପ୍ରକାଶନ
ଲିଙ୍କ୍‌ରୋଡ୍, କଟକ–୧୨

ISBN 81-7412-125-0

ମୁଦ୍ରଣ :
ଶ୍ରୀ ଜଗନ୍ନାଥ ଲାମିନେଟ୍‌ର ଆଣ୍ଡ ଅଫ୍‌ସେଟ୍ ପ୍ରିଣ୍ଟର
ବାଦାମବାଡ଼ି, କଟକ–୧୨

ପ୍ରକାଶକାଳ :
ବିଜୟା ଦଶମୀ
୧୯୯୮

ପ୍ରଚ୍ଛଦ :
ସ୍ୱାହା ମିଶ୍ର

ମୂଲ୍ୟ : ଟ୨୦୦/-

# – ସୂଚୀପତ୍ର –

## ଯା ନିଶା ସର୍ବଭୂତେଷୁ !

## ...ଏବଂ ଧର୍ମନିରପେକ୍ଷ ଧାର୍ମିକ

## ଦେବଦାସର ଦୃଷ୍ଟିପାତ [୧ମ ଭାଗ]

## ଦେବଦାସର ଦୃଷ୍ଟିପାତ [୨ୟ ଭାଗ]

—୦—

# ମାଦକଦ୍ରବ୍ୟ, ରାଷ୍ଟ୍ର ଓ ବ୍ୟକ୍ତି

ବର୍ଷ ବର୍ଷ ଧରି ଭାରତୀୟ ସରକାର ଓ ନେତାମାନେ ଗୋଟାଏ କଥା ଉପରେ ଯା' ଛା' ତା'ଇ ଭାବେ ଜୋର ଦେଇଚାଲିଛନ୍ତି– ମାଦକ ଦ୍ରବ୍ୟ ଉଠାଇ ଦିଅ। କାହାକୁ ଏ ଦେଶରେ ମାଦକଦ୍ରବ୍ୟ ବ୍ୟବହାର କରିବାକୁ ଆଇନତଃ ଅନୁମତି ଦିଆଯିବ ନାହିଁ। ମାଦକଦ୍ରବ୍ୟ ମନୁଷ୍ୟକୁ ଆର୍ଥିକ ଓ ନୈତିକ ଉଚ୍ଚତାରୁ ତଳକୁ ଓହ୍ଲାଇ ଆଣେ। (ଅବଶ୍ୟ ଏ ପ୍ରକାର ସ୍ଲୋଗାନ କେତେ ପରିମାଣରେ ଆନ୍ତରିକ ତାହା ଏଠି ବିଚାର କରାଯାଉ ନାହିଁ।)

ଏ ନୀତିର ବିରୋଧୀମାନଙ୍କ ଯୁକ୍ତିହେଲା ମାଦକଦ୍ରବ୍ୟର ବ୍ୟବହାର ଆଇନ କରି ରାଜ୍ୟମାନଙ୍କରୁ ଉଠାଇ ଦେଲେ ରାଜ୍ୟର ବିପୁଳ ଅବକାରୀ ରାଜସ୍ୱ କମିଯିବ ଫଳତଃ ଦେଶରେ ଜନହିତକର ବୃହତ୍ତର ଯୋଜନାମାନ ବ୍ୟାହତ ହେବ। (ଅବଶ୍ୟ ଏ ପ୍ରକାର ମତବାଦୀମାନେ କେତେକାଂଶରେ ଆନ୍ତରିକ।)

କିନ୍ତୁ ମାଦକଦ୍ରବ୍ୟ ସମ୍ବନ୍ଧୀୟ ଏ ଦୁଇଟିଯାକ ମତ ହେଲା ଅମାନୁଷିକ। ଦୁଇଟିଯାକ ପକ୍ଷ ମାଦକଦ୍ରବ୍ୟ ବ୍ୟବହାରକୁ କେବଳ ସମଷ୍ଟିଗତ ନୈତିକ ଓ ଅର୍ଥନୈତିକ ଦୃଷ୍ଟିକୋଣରୁ ସମର୍ଥନ ବା ବିରୋଧ କରୁଛନ୍ତି। ମାତ୍ର ମାଦକଦ୍ରବ୍ୟ ବ୍ୟବହାର ଯେ ସମ୍ପୂର୍ଣ୍ଣ ଏକ ବ୍ୟକ୍ତିଗତ ବ୍ୟାପାର ଏବଂ ସମସ୍ତ ବ୍ୟକ୍ତିଗତ ବ୍ୟାପାର ଯଦି ନିଜର ସୀମାଛାଡ଼ି ସମାଜର ପରିସର ଭିତରକୁ ଅନଧିକାରଭାବେ ବଳାତ୍କାରରେ ପ୍ରବେଶ କରେ, ତେବେ ଯାଇ ତାହା ସାମାଜିକ ନିୟନ୍ତ୍ରଣ ଅଧୀନକୁ ଯିବ, ଏ କଥା କେହି ବୁଝିଲାପରି ମନେହୁଏ ନାହିଁ। ଯାହା ସମ୍ରାଟ ସିଜରଙ୍କର ତାକୁ ସିଜରଙ୍କୁ ଦିଆଯିବ, କିନ୍ତୁ ଯାହା ଈଶ୍ୱରଙ୍କୁ ଅର୍ପିତ ହେବା କଥା, ତା'ଉପରେ ସିଜରଙ୍କର ଅଧିକାର କାହିଁକି? ମୁଁ କ'ଣ ଖାଇବି, ତୁମେ କ'ଣ ପିଇବ ଓ ସେ କ'ଣ ପିନ୍ଧିବେ, ଏହା ଆମେ ବ୍ୟକ୍ତିଗତ ଭାବେ ସ୍ଥିର କରିବୁ। ମୁଁ କାହାକୁ ଭଲ ପାଇବି, କାହାକୁ ବିବାହ କରିବି, କାହାକୁ ଗୁରୁରୂପେ ବରଣ କରିବି, କେଉଁ ଦେବତାଙ୍କୁ ମୋର ପ୍ରାଣର ଅର୍ଘ୍ୟ ପ୍ରଦାନ କରିବି, ରାମବାବୁ କେଉଁ ପ୍ରକାର ସଙ୍ଗୀତ ଶୁଣିବେ ଓ ସୀତା ଦେବୀ କେଉଁ ଗୀତ ଗାନ କରିବେ ତା'ଉପରେ ଯଦି କାହାର ନିଷେଧାତ୍ମକ ନିୟନ୍ତ୍ରଣ ରହିଲା, ତେବେ ବ୍ୟକ୍ତି ବିଚାରା ସମାଜର ଚାପାରେ ଦଳି ହୋଇଯିବ।

ଗଣତନ୍ତ, ସମାଜବାଦ, ସାମ୍ୟବାଦ ତୁମେ ଯାହା କିଛି ତୁମର ରାଷ୍ଟ୍ରରେ ପ୍ରଚଳନ କରାଅ ନା କାହିଁକି, ବ୍ୟକ୍ତିଠାରୁ ତାର ବ୍ୟକ୍ତିଗତ ରୁଚି ଓ ନୀତିକୁ କାଢ଼ି ନିଅନାହିଁ କି ତା'ର ବ୍ୟକ୍ତିତ୍ୱଟିକୁ ମାଡ଼ିବସି ଖର୍ବ ଓ ତେଜହୀନ କରି ଦିଅନାହିଁ।

ମନୁଷ୍ୟର ବ୍ୟକ୍ତି-ସ୍ୱାତନ୍ତ୍ର୍ୟ ଓ ବ୍ୟକ୍ତିତ୍ୱ ତା' ଭିତରେ ଖଞ୍ଜା ଯାଇଥିବା ତା'ର ଦେହ, ମନ, ହୃଦୟ ଓ ଆତ୍ମାର ଧର୍ମ, ସଂସ୍କାର ଓ ଅଭିଳାଷ ଉପରେ ନିର୍ଭର କରେ। ତାର ବହୁବିଧ ସୁଖ ଓ ବହୁବିଧ ଦୁଃଖବୋଧ ତା'ର ସମ୍ପୂର୍ଣ୍ଣ ଏକାନ୍ତ, ବ୍ୟକ୍ତିଗତ ଓ ନିଜସ୍ୱ ଏବଂ ଏହା ମଧ୍ୟ ଅତ୍ୟନ୍ତ ଜଟିଳ। ମୁଁ ଯୋଉ କଥାରେ ସୁଖୀ, ତାହା ଆପଣଙ୍କୁ ସୁଖ ଦେଇ ନ ପାରେ। ମୋର ସବୁ ଦୁଃଖର କାରଣ ମଧ୍ୟ ତାଙ୍କ ଦୁଃଖର କାରଣ ହୋଇ ନ ପାରେ। ଅବଶ୍ୟ ଯୋଉ ସବୁ ଦୁଃଖସୁଖର କାରଣ ଏକ ବା ବହୁ ଅଂଶରେ ସାର୍ବଜନୀନ, ସମାଜ କେବଳ ତା'ରି ଉପରେ ତା'ର କର୍ତ୍ତୃତ୍ୱ ଜାରି କରିପାରେ। ଅନ୍ୟଥା ନୁହେଁ। ମୁଁ ମୋର କେତେକ ବ୍ୟକ୍ତିଗତ କଥାରେ ସୁଖୀ। ମୋତେ ମୋର ମନୋମତ ସ୍ତ୍ରୀ ମିଳିଲେ, ପୁତ୍ର କନ୍ୟା ମିଳିଲେ, ପିତାମାତା ମିଳିଲେ, ବନ୍ଧୁ ବାନ୍ଧବ ମିଳିଲେ ମୁଁ ଖୁସି ହେବି। ମୋର ମନୋମତ ଏଇ ସବୁ ସୁଖର କାରଣମାନ ମତେ ରାଷ୍ଟ୍ର ବା ସମାଜ ଦେଇ ପାରିବ କି? ସେ ଦାୟିତ୍ୱ ନେଇ ପାରିବ କି? ସେମିତି ମୋର ସ୍ତ୍ରୀଙ୍କର କୋଉ କଥାରେ ମୋ ଛାତିରେ ବଜ୍ରପାତ ହେଉଛି—ଅଥବା ମୋ ପୁଅ ଏମିତି କ'ଣ କରୁଛି ଯେ, ଯାହାଫଳରେ ମୋର ସଂସାର ପିତା ହୋଇ ଯାଉଛି—ବା ମୋର ଆତ୍ମା ଏମିତି କ'ଣ ଚାହୁଁଛି ଯେ ତାହା ଅତ୍ର ବା ତତ୍ର କୋଉଠି ଖୋଜିଖୋଜି ନପାଇ ବିମର୍ଷ ହୋଇ ରହୁଛି କିମ୍ବା ମୋର ଭାଇମାନେ, ଯାହାଙ୍କ ପାଇଁ ମୁଁ ସର୍ବସ୍ୱ ତ୍ୟାଗ କରିଛି ସେମାନେ ମୋ ପ୍ରତି କି ପ୍ରକାର ବ୍ୟବହାର କଲେ ଯେ, ମୋର ସଂସାର ପ୍ରତି ବିତୃଷ୍ଣା ଆସି ଯାଇଛି ଏସବୁ ମୋର ଅତ୍ୟନ୍ତ ବ୍ୟକ୍ତିଗତ ଗୋପନ ସମସ୍ୟା। ମଣିଷର ବ୍ୟକ୍ତିଗତ ଦୁଃଖ, ଶୋକ ଓ ବ୍ୟର୍ଥତାବୋଧର କାରଣ ବହୁବିଧ ଏବଂ ତାହା ଅନ୍ୟଠାରୁ ସମ୍ପୂର୍ଣ୍ଣ ରୂପେ ଭିନ୍ନ ହୋଇପାରେ। ଏସବୁ ସ୍ଥଳେ ସମାଜ ବା ରାଷ୍ଟ୍ର ତାକୁ କିଛି ଚାଷ ଜମି ଦାନ କରି କିମ୍ବା ବ୍ୟାଙ୍କରୁ ଅଳ୍ପ ସୁଧରେ ଟଙ୍କା କରଜ ଆଣିବାର ସୁବିଧା କରିଦେଇ ବା ତା' ଘର ପାଖକୁ ରାସ୍ତାଟିଏ ବନେଇ ଦେଇ ବା ତାର ଗ୍ରାମକୁ ବିଦ୍ୟୁତାଲୋକିତ କରିଦେଇ କିମ୍ବା ତାର ଚାଷଜମିକୁ କେନାଲପାଣି ଯୋଗାଇ ଦେଇ ବା ତାର ଗ୍ରାମରେ ଥାନାଟିଏ, ଡାକ୍ତରଖାନାଟିଏ ବା ପୋଷ୍ଟଅଫିସଟିଏ ବସେଇ ଦେଇ, ତାକୁ ଏଇସବୁ ବ୍ୟକ୍ତିଗତ ଦୁଃଖ ବିଷାଦରୁ ନିଷ୍କୃତି ଦେଇପାରିବ ନାହିଁ। ଏହି ପ୍ରକାର ବ୍ୟକ୍ତିଗତ ସମସ୍ୟା, ସଙ୍କଟ ଓ ଦୁଃଖ ବିଷାଦର ସଂଖ୍ୟା ଅଗଣନ।

ମନୁଷ୍ୟର ବ୍ୟକ୍ତିଗତ ଚେହେରାପରି ତା'ର ସ୍ୱରୂପ ମଧ୍ୟ ଅଗଣିତ। ବହୁଦିନରୁ ବିପତ୍ନୀକ ପୌଢ଼ ଶ୍ୱଶୁରଟି ତା'ର ବଡ଼ ବୋହୂଠାରୁ ପଦେ ମର୍ମବିନ୍ଧା କଡ଼ାକଥା ଶୁଣି ରାତିଯାକ ବିଛଣା ଉପରେ କି ପ୍ରକାର ଛଟପଟ ହେଉଛି କିମ୍ବା ଗଭୀର ଜୀବନାନୁଭବୀ ବ୍ୟକ୍ତିଟିଏ ସଂସାରର ବିବିଧ ଦୁଃଖଯନ୍ତ୍ରଣା ଓ ଅନ୍ୟାୟ ଅତ୍ୟାଚାର ଦେଖି 'ଏ ସୃଷ୍ଟି ପ୍ରକୃତରେ ଈଶ୍ୱରଙ୍କର ବା ସଇତାନର' ଏହା ସ୍ଥିର କରି ନ ପାରି କି ମର୍ମନ୍ତୁଦ ମାନସିକ ଯନ୍ତ୍ରଣାରେ ପୀଡ଼ିତ ହେଉଛି, ଏହା ସେହି ବ୍ୟକ୍ତିର ଅତି ଅନ୍ତରଙ୍ଗ ଅନୁଭୂତି ତାକୁ ମଧ୍ୟ ଜାଣିପାରିବା ଦୁଷ୍କର। ବିଧବା ମାଆଟିର ବିନାନୁମତିରେ ତାର ଏକୋଇରବଛା ବିଶିକେଶନ ପୁଅଟି ଗୋଟିଏ ଭିନ୍ନ ଜାତିର ଝିଅକୁ ପ୍ରେମ କରି ମାଆର ଅଗୋଚରରେ ତାକୁ ଚଣ୍ଡୀମନ୍ଦିରରେ ବିବାହ କରିବାକୁ ସତ୍ୟସିଦ୍ଧାନ୍ତ କରି ଦେଇଛି ବୋଲି ଶୁଣିଲା ପରେ ମାଆର ମନ ଭିତର କି ବ୍ୟକ୍ତିଗତ ଦୁଃଖ ଅପମାନରେ ଘାରି ହୋଇଯାଉଛି, ସେ କଥା ଆମର ମାନ୍ୟବର ମୁଖ୍ୟମନ୍ତ୍ରୀ, ପ୍ରଧାନମନ୍ତ୍ରୀ, ରାଷ୍ଟ୍ରପତି ବା ଜଳସେଚନ ଓ ବିଦ୍ୟୁତ ବିଭାଗର ମାନ୍ୟବର ମନ୍ତ୍ରୀ ବୁଝିପାରିବେ କି? ତା'ର କିଛି ପ୍ରତିବିଧାନ ବତାଇ ପାରିବେ କି? ଏପରିକି ଆମର ଧାର୍ମିକ ପୁରୋହିତଗଣ ଓ ଧର୍ମ ରକ୍ଷକ ସାଧୁ ସନ୍ନ୍ୟାସୀଗଣ ବୁଝି ନିରାକରଣ କରିପାରିବେ କି? ଆଉ ତିନୋଟି ଡହୁଁବଡ଼ା ଡହୁଁବଡ଼ା ବିଷ୍ଣୁ ଅଂଶରେ ଜନ୍ମଲାଭ କରିଥିବା ପୁଅ ଥାଉଁ ଥାଉଁ ମହାରାଜା ଦଶରଥ ରାମଚନ୍ଦ୍ରଙ୍କ ବନଗମନ ପରେ କୋଉ ଦୁଃଖରେ ରାମ ରାମ ହୋଇ ମଲେ କିମ୍ବା ମହାଦରିଦ୍ର ସୁଦାମା ତାଙ୍କର ବାଲ୍ୟବନ୍ଧୁ ପରମ ଐଶ୍ୱର୍ଯ୍ୟଶାଳୀ ଦ୍ୱାରକାଧୀଶ ଶ୍ରୀକୃଷ୍ଣଙ୍କୁ ଦେଖା କରି ତାଙ୍କ ଘରେ ଉତ୍ତମରୂପେ ଚର୍ଚ୍ଚିତ ହୋଇ ଖାଲି ହାତରେ ଘରକୁ ଫେରିଲାବେଳେ ମନ ଭିତରେ କୋଉପ୍ରକାର ଅନୁଭବ ଧରି ଫେରୁଥିଲେ, ସେସବୁ ଅନୁଭବ ଏତେ ବ୍ୟକ୍ତିଗତ ଯେ ତାକୁ ନେଇ କୌଣସି ପ୍ରକାର ସାର୍ବଜନୀନ ତତ୍ତ୍ୱ ପ୍ରତିଷ୍ଠା କରାଯାଇ ପାରିବ ନାହିଁ।

ତା'ହେଲେ କଥା ହେଲା ତୁମେ ମଣିଷର ଯୋଉ ବ୍ୟକ୍ତିଗତ ସୁଖ ଦୁଃଖର ଇଲାକା ଭିତରେ ପଶି ନ ପାରୁଛ, ସେ ଇଲାକାରେ ତୁମର ଶାସନ ଜାରି କରନାହିଁ। ଏଇସବୁ ସ୍ଥଳରେ ସାଧୁ ସନ୍ଥ ଯୋଗୀ ଓ ଗୁରୁମାନେ କହନ୍ତି ସେହି ସଚ୍ଚିଦାନନ୍ଦ ଭଗବାନଙ୍କୁ ଲାଭ କଲେ ମନୁଷ୍ୟ ତା'ର ବ୍ୟକ୍ତିଗତ ଦୁଃଖରୁ ତ୍ରାହି ପାଇପାରିବ। ତାହା ଅବଶ୍ୟ ହୋଇପାରେ। ରାଷ୍ଟ୍ର ବା ସମାଜ ଯେପରି ଆମକୁ ଭୌତିକ ଦୁଃଖରୁ ତ୍ରାହି କରିପାରେ, ଭଗବାନ ସେମିତି ଆମକୁ ଆମର ମାନସିକ ବା ଆଧ୍ୟାତ୍ମ ଦୁଃଖରୁ ତ୍ରାହି କରିପାରନ୍ତି। ମାତ୍ର ଏ ପର୍ଯ୍ୟନ୍ତ ମଧ୍ୟ ସମଗ୍ର ପୃଥିବୀରେ କୌଣସି ରାଷ୍ଟ୍ର ବା ସମାଜ ମନୁଷ୍ୟକୁ ତାର ସମସ୍ତ ଭୌତିକ ଦୁଃଖରୁ ରକ୍ଷା କରିବାର ପ୍ରତିଶ୍ରୁତି ଦେଇପାରି ନାହିଁ। କେହି ଅପମୃତ୍ୟୁକୁ ରୋକି ପାରିଛି କି? ପ୍ରାକୃତିକ ବିପର୍ଯ୍ୟୟରୁ

ରକ୍ଷା କରିପାରିଛି କି? ମାରାତ୍ମକ ରୋଗ ଆକ୍ରମଣରୁ, ବାର୍ଦ୍ଧକ୍ୟ ଆକ୍ରମଣରୁ କେହି ମନୁଷ୍ୟଙ୍କୁ ରକ୍ଷା କରିପାରିଲାଣି କି?

ଏବଂ ଶେଷରେ ବ୍ୟକ୍ତି ପକ୍ଷରେ ସର୍ବଦୁଃଖହାରୀ, ସର୍ବଯନ୍ତ୍ରଣା ନିବାରକ, ସର୍ବ ପାପରୁ ତ୍ରାଣକର୍ତ୍ତା ସଚ୍ଚିଦାନନ୍ଦ ଭଗବାନ କ'ଣ ସତରେ ଏତେ ସହଜଲଭ୍ୟ? ସବୁ ଦୁଃଖୀଲୋକଙ୍କୁ ତାଙ୍କ ଦୁଃଖର ଘନୀଭୂତ ମୁହୂର୍ତ୍ତରେ କେହି ଭଲା ସେହି ସର୍ବଜ୍ୱାଳା ନିବାରକ ଭଗବାନଙ୍କୁ ଆଣି ପହଞ୍ଚାଇ ଦେଇପାରିବ କି? ଯଦି କେହି ବ୍ୟକ୍ତିଗତ ପାପ ଓ ଦୁଃଖ ସମସ୍ୟାକ୍ରାନ୍ତ ବ୍ୟକ୍ତିଟିକୁ ଏହି ଶେଷ ପ୍ରତିଶ୍ରୁତିଟି ଦେଇପାରେ ଓ ଯଥାକାଳରେ ତାହା ପାଳନ କରିପାରେ, ସେହି କେବଳ ବ୍ୟକ୍ତିର ବ୍ୟକ୍ତିଗତ ଚଉସୀମା ଭିତରେ ପ୍ରବେଶ କରି ତାର ଅଭ୍ୟାସ, ତାର ଅଭିଳାଷ, ତାର ବ୍ୟବହାର, ତାର ରୁଚି, ତାର ନୀତି ଓ ତାର ବ୍ୟକ୍ତିଗତ ଜୀବନର ଗତିବିଧି ନିୟନ୍ତ୍ରଣ କରିପାରେ।

ସେ ଆଜି ରାତିରେ ତା' ଘରେ ବସି ଗୋଟିଏ ବୋତଲ ବିଅର ପିଇବ କି ନାହିଁ କିମ୍ବା ହୋଟେଲରେ ବସି ତାର ଅନ୍ୟ ଦୁଇଜଣ ବନ୍ଧୁଙ୍କ ସଙ୍ଗେ ତିନିପେଗ ପର୍ଯ୍ୟନ୍ତ ରମ୍ ପାନ କରି, ସେଇଠି ରାତିଯାକ ଢୁଳେଇ ପଡ଼ିବ କି ନାହିଁ କିମ୍ବା ବରଗଛ ମୂଳ ଚାନ୍ଦିନୀ ଚଉତରାରେ ଆଉ ପାଞ୍ଚଜଣ ଦୁଃଖୀ ଦୁର୍ଭାଗାଙ୍କ ସାଙ୍ଗରେ ବସି ଚିଲମ ଟାଣି ଖଞ୍ଜଣି ମାଦ୍ଦଳ ଆର୍ତ୍ତଚିତ୍କାରରେ ବାଇମନକୁ ଆହ୍ୱାନକରି ପିଣ୍ଡବ୍ରହ୍ମାଣ୍ଡକୁ ଏକ ଦୃଷ୍ଟିରେ ଦେଖିବ କି ନାହିଁ, ତାର ଅନୁମତି ବା ନିୟନ୍ତ୍ରଣର ଅଧିକାର ସେହି ବ୍ୟକ୍ତିଟି କେବଳ ଜାହିର କରିପାରିବ। ସେ ବ୍ୟକ୍ତି ଜୀବ କଲ୍ୟାଣକାମୀ ଆଧ୍ୟାତ୍ମିକ ଗୁରୁ ହୁଅନ୍ତୁ ବା ସମାଜର ରାଷ୍ଟ୍ରାଧିପତି ହୁଅନ୍ତୁ। ତା' ନ ହେଲେ ଅନଧିକାରୀ ସମାଜ ବା ରାଷ୍ଟ୍ର ପକ୍ଷରେ ଏହା ଏକ ନୃଶଂସ ବ୍ୟକ୍ତିମାରଣ ଅତ୍ୟାଚାର ଛଡ଼ା ଆଉ କିଛି ହେବ ନାହିଁ।

❋❋

# ବ୍ୟକ୍ତିଗତ ଦୁଃଖ ଓ ନିଶାଗ୍ରସ୍ତ ବ୍ୟକ୍ତି

ଯେ କୌଣସି ପ୍ରକାର ମାଦକ ଦ୍ରବ୍ୟ ବ୍ୟବହାର କରୁଥିବା ବ୍ୟକ୍ତି ପ୍ରାୟଶଃ ତା' ସପକ୍ଷରେ ଗୋଟିଏ ଯୁକ୍ତି ବାଢ଼ିଥାଏ। ମଦ୍ୟପାନ କରୁଥିବା ବ୍ୟକ୍ତିଟି କହେ ଯେ ଜୀବନରେ ସେ ଯେଉଁ ଧୋକ୍କା ପାଇଛି, ସେହି ଦୁଃଖ ଯନ୍ତ୍ରଣାକୁ ଭୁଲିଯିବା ପାଇଁ, ତାକୁ ଏହି ମଦ୍ୟର ଆଶ୍ରୟ ନେବାକୁ ପଡ଼ିଛି। କେହି ଅଫିମଖୋର ଲୋକ କହିବାର ଶୁଣାଯାଏ ଯେ, ତାର ଗୋଟିଏ ଅସାଧ ଯାପ୍ୟରୋଗକୁ ଯେତେବେଳେ ମହା ମହା ଡାକ୍ତର କବିରାଜମାନେ ଭଲ କରି ନ ପାରିଲେ, ସେତେବେଳେ ଯାଇ ସେ ଏହି ସର୍ବରୋଗ ଯନ୍ତଣା ଅପହାରୀ ଅହିଫେନର ଆଶ୍ରା ନେଲେ। ଚିଲମ ଟାଣୁଥିବା ଲୋକଟି ତା' ସପକ୍ଷରେ ଯୁକ୍ତି କରି କହେ ଯେ ତିନିକଳ ଗଞ୍ଜେଇଧୂଆଁ ପେଟକୁ ନେଇ ତାକୁ ସୁଷୁମ୍ନା ଦ୍ୱାରବାଟେ ମସ୍ତିଷ୍କର ସହସ୍ରା ଭିତରକୁ ଠେଲି ଦେଲା ପରେ ସେ ଗୋଟାଏ ମହାନ ଆନନ୍ଦମୟ ସ୍ୱର୍ଗରାଜ୍ୟ ଭିତରକୁ ରକେଟ୍‌ରେ ବସି ଉଡ଼ିଯାଏ ଏବଂ ସେ ସେଠି ଗୋଟାଏ ଜ୍ୟୋତି ଦର୍ଶନ କରିଥାଏ।

କିନ୍ତୁ ନାନାଦି ପରୀକ୍ଷା ନିରୀକ୍ଷାରୁ ଜଣାଯାଇଛି ଯେ ଏସବୁ ଅତ୍ୟନ୍ତ ବୃଥା ଯୁକ୍ତି। ମାଦକଦ୍ରବ୍ୟର ନିୟମିତ ବ୍ୟବହାର ଅପକାର ଛଡ଼ା କିଛି ମାତ୍ର ଉପକାର କରେ ନାହିଁ। ନିୟମିତ ମଦ୍ୟପାନ କରିବା ଦ୍ୱାରା କିମ୍ବା ତାର ପରିମାଣ ଯଥେଚ୍ଛା ବଢ଼େଇ ଚାଲିବା ଦ୍ୱାରା ବ୍ୟକ୍ତି ତାର ଦୁଃଖକୁ ଭୁଲିବା ତ ଦୂରର କଥା ବରଂ ଘୋର ଏକ ନିଃସଙ୍ଗତା ଓ ବିମର୍ଷତା ତାକୁ ଘୋଟିଯାଏ ଏବଂ ବହୁଦିନ ମଦ୍ୟପାନ କଲା ପରେ ତାର ଯକୃତ ତ ବିଗିଡ଼ିଯାଏ, ସବୁଠାରୁ ବେଶୀ କ୍ଷତି ହୁଏ ତାର ମସ୍ତିଷ୍କର। ମଦ୍ୟପ ବ୍ୟକ୍ତି କ୍ରମଶଃ ତା'ର ଅନୁଭବ ଶକ୍ତି ହରାଇ ବସେ ଏବଂ ଅନ୍ୟ କିଛି ସୂକ୍ଷ୍ମ ଗଭୀର ବିଷୟରେ ଚିନ୍ତା କରିପାରେ ନାହିଁ। ବହୁ ବଡ଼ ବଡ଼ ପ୍ରତିଭାବାନ ବ୍ୟକ୍ତି ମଧ୍ୟ ନିୟମିତ ଭାବେ ମଦ୍ୟପ ହେଲା ପରେ ସେମାନଙ୍କର ପ୍ରତିଭାର ନବ ନବ ଉନ୍ମେଷଶାଳିନୀ ସାମର୍ଥ୍ୟ ହରାଇଥାନ୍ତି ଏବଂ ସେମାନଙ୍କ ସୃଷ୍ଟି ଭିତରେ ଅସମତା ଓ ଖିଆଲିଭାବ ପ୍ରବଳ ହୋଇ ଦେଖା ଦିଏ। ମଦୁଆ ଲୋକ ଗୋଟେ ପ୍ରକାର ଏକ ଗୁଇଁଆ ଆଉ ଏକବାଗିଆ ଢଙ୍ଗରେ ବଞ୍ଚେ। ଗୋଟେ ପ୍ରକାର ଉଲ୍ଲାସମୟ ପ୍ରମତ୍ତତା ପାଇବା ଲାଗି ସେ ମୁହୁର୍ମୁହୁଃ ମଦ ପିଇ ଲାଗିଥାଏ ଏବଂ ବିନା କାରଣରେ ପ୍ରମତ୍ତ ହେଉଥାଏ। ଏହି ମଦ୍ୟ ପ୍ରଭାବଜନିତ ପ୍ରମତ୍ତତା ତାର

କ୍ଷୁଦ୍ର ଅଭିମାନଟିକୁ ସ୍ଫୀତକରି ଚାଲିଥାଏ। ମଦୁଆମାନେ କାହାକୁ ଗଭୀର ଭାବେ ସ୍ନେହ, ପ୍ରେମ କରିପାରନ୍ତି ନାହିଁ। ବରଂ ସ୍ନେହ ବା ପ୍ରେମର ପାତ୍ର ପାତ୍ରୀଙ୍କ ଉପରେ ଘୋର ଅତ୍ୟାଚାର କରି ଏକ ପୈଶାଚିକ ପ୍ରମତ୍ତ ଆନନ୍ଦ ଉପଭୋଗ କରନ୍ତି। ମଦ୍ୟପ ମଦପାନ କଲାବେଳେ ସର୍ବଦା ସାଙ୍ଗ ଖୋଜୁଥାଏ। ମାତ୍ର ତାର ବୋତଲ-ବନ୍ଧୁଟିକୁ ସେ ଆଦୌ ପ୍ରେମ କରେ ନାହିଁ। ତା'ପ୍ରତି ତା'ର କୌଣସି ମାନବୀୟ ବୁଝାମଣା ବା ସହାନୁଭୂତି ବା ଦାୟିତ୍ୱବୋଧ ନଥାଏ। ସେ ଜୀବନକୁ ନିଶାଗ୍ରସ୍ତ କରି ବଞ୍ଚେ। ତେଣୁ ଜୀବନକୁ ବୁଝିପାରେ ନାହିଁ କି ପ୍ରକୃତରେ ଭୋଗ କରିପାରେ ନାହିଁ। ସେ କାହାପାଇଁ ବଞ୍ଚେ ନାହିଁ, କେବଳ ନିଜର ନିଶାଗ୍ରସ୍ତ ଜୀବନ ପାଇଁ ବଞ୍ଚେ। ତେଣୁ ସେ କାହାପାଇଁ ତ୍ୟାଗ କରିପାରେ ନାହିଁ। ବଡ଼ ବିଚିତ୍ର କଥା ଯେ ମଦ୍ୟପ ବାହାରକୁ ଯେତେ ଉଦ୍ଧତ ବାହାସ୍ଫୋଟ ମାରୁ ପଛେ, ଭିତରେ ଭିତରେ ସେ ଖୁବ ଭୀତ, କାତର, ଆଶଙ୍କାଗ୍ରସ୍ତ ଓ ହୀନମନ୍ୟ ହୋଇ ରହିଥାଏ। ତାକୁଇ ଭୁଲିବା ଲାଗି ସେ ମୁହୂର୍ମୁହୁଃ ମଦ ପିଉଥାଏ ଏବଂ ପୁଣି ତାର ଭୟ, ଆଶଙ୍କା, କାତରତା ଓ ହୀନମନ୍ୟତା ବଢ଼ି ବଢ଼ି ଚାଲିଥାଏ। ମଦୁଆଲୋକର କାହା ସଙ୍ଗେ ବ୍ୟକ୍ତିଗତ ଭିତିରି ସମ୍ପର୍କ ନଥାଏ। ସେ କାହାକୁ ଝୁରି ହୁଏନାହିଁ। କାହାର ଗୁଣ ସୁମରି ବିକଳ ହୁଏନାହିଁ। ତାର ସର୍ବଦା ଉପସ୍ଥିତ ପ୍ରୀତି।

ମଦ୍ୟପର ବହୁ ଆକାଂକ୍ଷା– ମାତ୍ର ତିଳାର୍ଦ୍ଧ ଅଭୀପ୍‌ସା ନଥାଏ। ସେ ସାଂସାରିକ ବହୁ କଥା ଅର୍ଜନ ଲାଗି ତତ୍ପର ହୋଇପାରେ; ମାତ୍ର ହୃଦୟ ଆତ୍ମା ଏପରିକି ମସ୍ତିଷ୍କର ଉନ୍ନତି ଲାଗି ବା ବିକାଶ ଲାଗି ତା'ର କୌଣସି ବ୍ୟାକୁଳତା ନଥାଏ। ସେ ସଙ୍ଗୀତ ବୁଝେ ନା, କବିତା ବୁଝେ ନା। ପ୍ରକୃତରେ ସୌନ୍ଦର୍ଯ୍ୟ ତାକୁ ଆକର୍ଷଣ କରେ ନାହିଁ। ସୂର୍ଯ୍ୟୋଦୟର ରଙ୍ଗ ତାର ନିଶାଗ୍ରସ୍ତ ମନରେ କିଛି ପ୍ରଭାବ ପକାଏ ନାହିଁ। ନୃତ୍ୟ ଗୀତ ଇତ୍ୟାଦିର ସେ ମର୍ମ ବୁଝେ ନାହିଁ। କେବଳ ଉଚ୍ଚକିତ ବାଦ୍ୟ ଧ୍ୱନିରେ ସେ ଉନ୍ମତ୍ତ ହେବାକୁ ଭଲ ପାଏ।

ଅନେକ ଉଚ୍ଚଶିକ୍ଷିତ ଓ ଉଚ୍ଚ ପାହ୍ୟାର ବେଶ୍ ବୟସ୍କ ଅଫିସରମାନଙ୍କୁ ଦେଖାଯାଇଛି-ତିନି ପେଗ ରମ୍ ବା ହୁଇସ୍କି ଗଳାଧଃକରଣ କରି ସାରିବା ପରେ, ସେମାନେ ହୁଏତ ପଥର ଭଳି ଗୁମ୍‌ମାରି ବସନ୍ତି, ନତୁବା ସେମାନଙ୍କ ପାଟିରୁ ପ୍ରାୟଶଃ ଅତି ବୀଭତ୍ସ ଅଶ୍ଳୀଳ କଥା ସବୁ ବାହାରେ। ସେମାନେ ନିଜର କନ୍ୟା ବୟସର ଝିଅମାନଙ୍କ ସମ୍ପର୍କରେ ଯୌନ ସୁଖ ଭୋଗର କାମନା ନିଃସଙ୍କୋଚରେ ମତୁଆଲା ହୋଇ ପ୍ରକାଶ କରନ୍ତି। ମାତ୍ର ପରୀକ୍ଷା କରି ଦେଖାଯାଇଛି ଯେ ମଦପିଇ ଚାଲୁଥିବା ବ୍ୟକ୍ତିଟିର ଯୌନ ସୁଖ ଭୋଗିବା ଭଳି ବା ଅନ୍ୟକୁ ଦେବା ଭଳି ଯଥା ସାମର୍ଥ୍ୟ ନ ଥାଏ। ମଦ୍ୟପ ମଦ ପିଇବାରେ ବହୁ ଅର୍ଥ ବ୍ୟୟ କରେ ଏବଂ ସେହି ଅର୍ଥ

ଉପାର୍ଜନ କରିବା ପାଇଁ ଯେ କୌଣସି ମନ୍ଦ ଉପାୟ ଗ୍ରହଣ କରିବାକୁ ପଛାଏ ନାହିଁ; ଏବଂ ଏହି ମଦ୍ୟ ଆଗରେ ତା' ପାଇଁ ସ୍ତ୍ରୀ, ପୁତ୍ର, କନ୍ୟା, ପିତାମାତା ସମାଜ ଓ ଈଶ୍ୱର ପ୍ରଭୃତି ଅକିଂଚିତ୍‌କର ମନେ ହୁଅନ୍ତି ।

ଏହିସବୁ କାରଣରୁ ସାଧୁସନ୍ଥ ଓ ବିଜ୍ଞ ବ୍ୟକ୍ତିମାନେ ମଦ୍ୟଠାରୁ ଯଥାସମ୍ଭବ ଦୂରରେ ରହିବାକୁ ଉପଦେଶ ଦେଇଥାନ୍ତି । ପ୍ରକୃତରେ ଦୁଃଖ ଭୁଲିବା ପାଇଁ ବା କିଛିଟା ଉଲ୍ଲାସ ପାଇବା ପାଇଁ ଯେଉଁମାନେ ମଦ୍ୟପାନକୁଇ ସର୍ବୋତ୍କୃଷ୍ଟ ଓ ଏକମାତ୍ର ଉପାୟ ବୋଲି ଭାବନ୍ତି ସେମାନେ ଏକ ନମ୍ବର ବୁଡ୍‌ବକ୍ । ଦୁଃଖକୁ ଭୁଲିବା ଗୋଟାଏ ମାନବୀୟ ସଦ୍‌ଗୁଣ ନୁହେଁ । ମନୁଷ୍ୟ ଜୀବନରେ ଦୁଃଖ ଅନିବାର୍ଯ୍ୟ ଓ ଦୁଃଖ ଭୋଗ ମଧ ଅନିବାର୍ଯ୍ୟ । ଦୁଃଖ ଯେତେ ନିଦାରୁଣ ହେଲେ ବି, ଦୁଃଖକୁ ସମ୍ମୁଖୀନ ହେବା ଏବଂ ଦୁଃଖକୁ ବୁଝି ତାର ନିରାକରଣ କରିବା କିମ୍ବା ଦୁଃଖବୋଧକୁ ସଚେତନ ହୋଇ ଅତିକ୍ରମ କରି ତାର ଊର୍ଦ୍ଧ୍ୱକୁ ଗତି କରିବା ହେଲା ଏକ ସମ୍ପୂର୍ଣ୍ଣଭାବେ ମାନୁଷିକ ବୀରତ୍ୱ । ଯେଉଁମାନେ ଦୁଃଖକୁ ଆଡ଼େଇ ଯିବାକୁ ଏଭଳି କୃତ୍ରିମ ଉପାୟ ଅବଲମ୍ବନ କରନ୍ତି, ସେମାନେ ନିତାନ୍ତ ଭୀରୁ ଏବଂ ଅହଂକେନ୍ଦ୍ରିକ ମଣିଷ । ରୋଗରୁ ରକ୍ଷା ଲାଗି ଔଷଧ ଖାଇବା ଆବଶ୍ୟକ । ମାନସିକ ବା ଆତ୍ମିକ ଯନ୍ତ୍ରଣାର ଉପଶମ ଲାଗି ସେହିଭଳି ଅଧ୍ୟାତ୍ମ ଉପାୟ ଅବଲମ୍ବନ କରିବା ଉଚିତ ।

କିନ୍ତୁ ଅଧ୍ୟାତ୍ମ ଉପାୟ ଅବଲମ୍ବନ କରିବା ମାନେ ନୁହେଁ ଯେ ସବୁ ଛାଡ଼ିଛୁଡ଼ି ଦେଇ ଓ ସବୁ କଥାରୁ ମନ ଫେରାଇ ଆଣି, କୌଣସି ଗୁରୁ ବା ପ୍ରତିମାଟିଏ ନେଇ ନିଶାଗ୍ରସ୍ତ ଲୋକଙ୍କ ଭଳି ଏକବାଗିଆ ଢଙ୍ଗରେ ମାତିବା ବା ସେଥିଭିତରେ ବୁଡ଼ି ରହିବା । ଆମ ଜୀବନର ସବୁଠାରୁ ବଡ଼ କର୍ତ୍ତବ୍ୟ ହେଉଛି ଅନ୍ୟ ସଙ୍ଗେ ଅର୍ଥପୂର୍ଣ୍ଣ ସମ୍ପର୍କ ସ୍ଥାପନ କରିବା ଏବଂ ଏହି ସମ୍ପର୍କକୁ ଗଭୀର ଭାବେ ଅନୁଭବମୟ କରିବା । ଆମର ପରିବାର, ବନ୍ଧୁବାନ୍ଧବ, ସମାଜ ଓ ଈଶ୍ୱରଙ୍କ ସହିତ ଏହି ସାର୍ଥକ ସମ୍ପର୍କ ସ୍ଥାପନ ଗୋଟିଏ ଅତି ଦୁଃଷର ସାଧନା ଏବଂ କହିବା ବାହୁଲ୍ୟ, ଆମର ସମସ୍ତ ମାନସିକ ଓ ଆତ୍ମିକ ଦୁଃଖ ଯନ୍ତ୍ରଣାର ଉଦ୍‌ଭବ ହୁଏ ଏହି ସମ୍ପର୍କ ସ୍ଥାପନର ଜଟିଳ କ୍ରିୟା ପ୍ରତିକ୍ରିୟା ଭିତରୁ । ଅନୁଶୋଚନା, ଅନୁତାପ, କ୍ରୋଧ, ଉଦ୍‌ବେଗ, ଉତ୍କଣ୍ଠା ଏବଂ ବ୍ୟର୍ଥତାବୋଧ ସବୁ ଏଇ ସଂପର୍କଜନିତ ଘଟଣା ଭିତରୁ ଆସେ । ମାତ୍ର ଯେଉଁ ବ୍ୟକ୍ତି ଏହାରି ଭିତରେ ରହି ଜଣେ କୁଶଳୀ ଖେଳୁଆଡ଼ ଭଳି ଏସବୁକୁ ଛାତିପତାଇ ଗ୍ରହଣ କରେ ଓ ସଂପର୍କ ସ୍ଥାପନର ସବୁ ଅତୁଆ ତତୁଆ ସୂତାକୁ ଜୀବନସାରା ସଜାଡ଼ି ଲାଗିଥାଏ, ସେହି ହେଉଛି ସଂସାରକ୍ଷେତ୍ରରେ ଯଥାର୍ଥ ବୀରସାଧକ । ଗୃହସ୍ଥାଶ୍ରମରେ ସଂସାରକୁ ଭଲ ରୂପେ ସାଧୁଥିବା ବ୍ୟକ୍ତିକୁ ରାଜର୍ଷି ବୋଲି କୁହାଯାଇଛି ।

କିନ୍ତୁ ଯେଉଁ ଭୀରୁ ଓ ସ୍ୱାର୍ଥପର ପ୍ରେମହୀନ ବ୍ୟକ୍ତିମାନେ ବିରକ୍ତିରେ ଓ ବିତୃଷ୍ଣାରେ ଏକ ମିଥ୍ୟା ଅପାରଗ ସନ୍ନ୍ୟାସ ଧର୍ମ ଗ୍ରହଣ କରି ଏହି ଘୋର ଜଞ୍ଜାଳକୁ ଛାଡ଼ି ପଳାଇଯାନ୍ତି, ସେମାନେ କେବେ କିଛି ପାଆନ୍ତି ନାହିଁ। ସେମାନେ କିଛି ମାଦକଦ୍ରବ୍ୟ ବ୍ୟବହାର ନକରି ମଧ୍ୟ ଆପଣାର ଅହଂକାର ବା ଅଭିମାନର ପ୍ରତିକ୍ରିୟାରେ ନିଶାଗ୍ରସ୍ତ ଭଳି ଥା'ନ୍ତି। ମଦ ପିଇ ସଂସାର ଜଞ୍ଜାଳକୁ ଭୁଲିବାକୁ ଚାହୁଁଥିବା ଲୋକ ମଧ୍ୟ ସେହିପରି। କିନ୍ତୁ ସେମାନେ ଭୁଲି ପାରନ୍ତି ନାହିଁ। ବିରକ୍ତ ସନ୍ନ୍ୟାସୀର ଅନ୍ତର ଭିତରେ ସର୍ବଦା ଏକ ବିଷାଦିତ ଜିଜ୍ଞାସା ତାକୁ ଅହରହ ପୀଡ଼ିତ କରୁଥାଏ ଏବଂ ବିରକ୍ତ ମଦ୍ୟପର ଅନ୍ତର ଭିତରେ ସର୍ବଦା ଏକ ବିଷର୍ଣ୍ଣ ବିମର୍ଷତା ତାକୁ ଅହରହ ଯନ୍ତ୍ରଣା ଦେଉଥାଏ। ଦେଖାଯାଇଛି ବିରକ୍ତ ସନ୍ନ୍ୟାସୀଟିଏ ସର୍ବଦା ସାଙ୍ଗ ଖୋଜୁଥାଏ ଚେଲା କରିବାପାଇଁ ଏବଂ ଚେଲାଟିଏ ପାଇଲେ ସେ ତା' ଉପରେ ଧାର୍ମିକ ବା ନୈତିକ ଅତ୍ୟାଚାର କରି ଆନନ୍ଦ ପାଉଥାଏ। ସେହିଭଳି ବିରକ୍ତ ମଦ୍ୟପ ସର୍ବଦା ସାଙ୍ଗ ଖୋଜୁଥାଏ ତା'ଉପରେ ତାର ଅନୈତିକ ଖିଆଲ ସମ୍ମତ ଅତ୍ୟାଚାର କରି ତାର ଉନ୍ମତ୍ତ ଉଲ୍ଲାସକୁ ଚରିତାର୍ଥ କରିବାପାଇଁ।

ତେଣୁ ଅସଲ କଥା ହେଲା ସଂସାରର ଅନିବାର୍ଯ୍ୟ ଦୁଃଖକୁ ଭୁଲିବାପାଇଁ ସନ୍ନ୍ୟାସୀ ହେବା, କିମ୍ବା ମଦ୍ୟପାନ କରିବା ଦୁଇଟିଯାକ ବୁଦ୍ଧୁବକ୍ ଅଚେତନ ଲୋକଙ୍କ କାମ। ଦୁହେଁଯାକ ଅହଙ୍କାରୀ, ଅଭିମାନୀ ଓ ପ୍ରେମହୀନ ନୃଶଂସ ମଣିଷ। ଏହି ଦୁର୍ଲଭ ମନୁଷ୍ୟ ଜୀବନଟିକୁ ସେମାନେ ବୃଥାଟାରେ କାଣ୍ଡଜ୍ଞାନଶୂନ୍ୟ ହୋଇ ନଷ୍ଟ କରି ଦିଅନ୍ତି ଓ ସମାଜର ପୀଡ଼ାକୁ ମଧ୍ୟ ବଢ଼ାଇ ଚାଲନ୍ତି।

❋❋

# ନିଶାନିବାରଣ ଆଉ ଏକ ମାତଲାମୀ

ନିଶା ଅଭ୍ୟାସ ଭଲ କି ମନ୍ଦ— ନିଶା ଖାଇଲେ ଉପକାର ହୁଏ କି ଅପକାର ହୁଏ, କିମ୍ବା ନିଶାସେବନ କାହା କାହା ପକ୍ଷରେ ଆବଶ୍ୟକ ବା ଅନାବଶ୍ୟକ ଏହାକୁ ବ୍ୟକ୍ତିଗତ ଦୃଷ୍ଟିରୁ ଅର୍ଥାତ୍ ସ୍ୱାସ୍ଥ୍ୟଗତ କିମ୍ବା ମନସ୍ତତ୍ତ୍ୱଗତ ଦୃଷ୍ଟିରୁ ବିଚାର କରିବା ଉଚିତ। ନିଶା ସେବନ କିଛି ଆଜିକାଲିର କଥା ନୁହେଁ କିମ୍ବା ଏହା ହଠାତ୍ ଯବନ, ମୋଗଲ, ଇଂରେଜ ବା ହିପ୍ପୀମାନଙ୍କ ଦ୍ୱାରା ବିଦେଶରୁ ଏ ଦେଶକୁ ଆସିନାହିଁ। ଆମ ସଭ୍ୟତା ଓ ସଂସ୍କୃତି ସହିତ ଏହା ସେହି ବୈଦିକଯୁଗରୁ ମଧ୍ୟ ଗ୍ରହଣୀୟ ହୋଇ ଆସିଛି। ଅନ୍ୟାନ୍ୟ ଦେଶ ଭଳି ଆମ ଦେଶରେ ମଧ୍ୟ ବିଭିନ୍ନ ବସ୍ତୁର ଅତି ମାର୍ଜିତ ରୀତିରେ ଉତ୍କୃଷ୍ଟ ମଦ୍ୟସବୁ ତିଆରି ହୋଇ ଆସୁଥିଲା। ମଦ୍ୟ ଉତ୍ପାଦନ ଗୋଟିଏ ଅର୍ଥକାରୀ ଶିଳ୍ପ ରୂପେ ପରିଗଣିତ ହେଉଥିଲା। ଆମର ମଦ୍ୟମାନଙ୍କର ନାମ ଥିଲା ମୈରେୟ, ମାଧ୍ୱୀକୀ, ମାଧ୍ୱୀ, ଶାକରୀ, ଦ୍ରାକ୍ଷାୟଣୀ ଓ ଏହା ବ୍ୟତୀତ ବହୁ ପ୍ରକାର ମିଶ୍ରିତ ଆସବ ଓ ସୁରା ମଧ୍ୟ ପ୍ରଚଳିତ ଥିଲା। ମଦ୍ୟ ଅର୍ଥରେ 'ମଧୁ' ଶବ୍ଦ ମଧ୍ୟ ବ୍ୟବହୃତ ହେଉଥିଲା। ଅଭିଜାତ ବ୍ୟକ୍ତିମାନେ ମଦ୍ୟ ବା ସୁରା ଶବ୍ଦ ବ୍ୟବହାର ନ କରି 'ମଧୁ', 'ଆସବ' ଓ 'ସୁଧା' ଆଦି ଶବ୍ଦରେ ମଦ୍ୟକୁ ନାମିତ କରୁଥିଲେ। ଧାର୍ମିକ ବ୍ୟକ୍ତିମାନେ ସୁରା ଅର୍ଥରେ 'କାରଣ' ଶବ୍ଦ ବ୍ୟବହାର କରୁଥିଲେ।

ରାମାୟଣରେ ଓ ମହାଭାରତରେ ବିଶିଷ୍ଟ ଓ ଧାର୍ମିକ ବ୍ୟକ୍ତିମାନେ, ଏପରିକି ଖୋଦ୍ ନୀତିବାନ୍ ବ୍ୟକ୍ତିମାନେ ମଧ୍ୟ ନିଶାଦ୍ରବ୍ୟ ବ୍ୟବହାର କରୁଥିଲେ ବୋଲି ପ୍ରମାଣ ଅଛି। ଉନ୍ମତ୍ତ ଓ ପ୍ରମତ୍ତ ଯଦୁବଂଶୀୟଗଣ କାଣ୍ଡଜ୍ଞାନଶୂନ୍ୟ ହୋଇ ମାତ୍ରାଧିକ ମଦ୍ୟପାନ କରି କିପରି ପରସ୍ପରକୁ ହତ୍ୟାକରି ବଂଶନାଶ କଲେ ତାହାର ବର୍ଣ୍ଣନା ଭାଗବତରେ ରହିଛି। ବିରାଟ ଯଦୁବଂଶର ଚନ୍ଦ୍ରସୂର୍ଯ୍ୟ ସଦୃଶ ଦୁଇ ମହାନ୍ ପୁରୁଷ ବଳରାମ ଓ ଶ୍ରୀକୃଷ୍ଣ ଉତ୍କୃଷ୍ଟ ମଦ୍ୟପାନ କରୁଥିବାର ପ୍ରମାଣ ମୂଳ ମହାଭାରତରେ ରହିଛି। ପୁଣି ସେ ଦୁଇ ଜଣଙ୍କ ମଧ୍ୟରେ ମହାତ୍ମା ବଳରାମ କାଦମ୍ବରୀ (ଏକ ଉତ୍କୃଷ୍ଟ କଡ଼ା ମଦ୍ୟ ବିବିଧ ମଦ୍ୟର କକ୍‌ଟେଲ ଦ୍ୱାରା ପ୍ରସ୍ତୁତ) ପାନ କଲାବେଳେ, ବେଳେ ବେଳେ କିଞ୍ଚିତ୍ ମାତ୍ରାଧିକତା

ମଧ୍ୟ ଦେଖାଉଥିଲେ ଏବଂ ରାଜନୀତି, ରାଷ୍ଟ୍ରନୀତି ବା ପାରିବାରିକ ସମ୍ପର୍କଜନିତ ନୀତିରୀତିରେ ବେଳେ ବେଳେ କାଣ୍ଡ ଜ୍ଞାନବିବର୍ଜିତ ସିଦ୍ଧାନ୍ତମାନ ମଧ୍ୟ ଆଗତୁରା ନେଇଯାଉଥିଲେ। ଏପରିକି ନିଶାଭୋଳରେ ତାଙ୍କର ବେଳେ ବେଳେ ପୂର୍ବାପର ଜ୍ଞାନ ବା କାର୍ଯ୍ୟକାରଣ ପରମ୍ପରାବୋଧ ବା ଆଗତ ଭବିଷ୍ୟ ବିଚାର ଲୋପ ପାଇ ଯାଉଥିଲା। ସାନଭାଇ ଶ୍ରୀକୃଷ୍ଣ ନଥିଲେ ଘୋର ମଦ୍ୟପାୟୀ ମହାତ୍ମା ବଳରାମ ଯଦୁବଂଶକୁ ବହୁ ହଇରାଣ ହରକତରେ ପକାଇ ଦେଇଥାନ୍ତେ। କିନ୍ତୁ ଭଗବାନ ଶ୍ରୀକୃଷ୍ଣଙ୍କର ବ୍ୟକ୍ତିତ୍ୱ ଥିଲା ଅସାଧାରଣ ଭାବେ ଭଦ୍ର, ସଂଯତ, ସଂହତ, ସୁସଙ୍ଗତ ଓ ସୁନ୍ଦର। ସେ ଅବଶ୍ୟ ଅତି ଉତ୍କୃଷ୍ଟ ମଦ୍ୟପାନ କରୁଥିଲେ। ମାତ୍ର ଅତ୍ୟନ୍ତ ସଂଗୋପନରେ ଓ ଅତ୍ୟନ୍ତ ସମମାତ୍ରାରେ ଏବଂ ଖୁବ୍ ସାମୟିକଭାବେ ତାଙ୍କର ବ୍ୟକ୍ତିଗତ ପରିସ୍ଥିତିର ବିଶେଷ ଆବଶ୍ୟକତା ଦୃଷ୍ଟିରୁ। ମାଧ୍ୱୀ ଓ ମୈରେୟ ଥିଲା ତାଙ୍କର ପ୍ରିୟ ମଦ୍ୟ ଏବଂ ଏହି ମୂଲ୍ୟବାନ ଆସବ ଉତ୍କୃଷ୍ଟ ମହୁ ଓ ଦ୍ରାକ୍ଷାଦି ରସରୁ ଖୁବ୍ ସାବଧାନତା ଓ ନିପୁଣତା ସହକାରେ ପ୍ରସ୍ତୁତ ହେଉଥିଲା। ଶ୍ରୀକୃଷ୍ଣ ମହାତ୍ମା ବଳରାମଙ୍କ ସଦୃଶ ନିତ୍ୟ ମଦ୍ୟପାନ କରୁ ନ ଥିଲେ। ଅନ୍ୟାନ୍ୟ ମଦ୍ୟପଙ୍କ ଭଳି ମହାତ୍ମା ବଳରାମ ସବୁ ଘଟଣାରୁ ପ୍ରାୟଶଃ ଦୂରେଇ ରହୁଥିଲେ। ମାତ୍ର ଭଗବାନ ଶ୍ରୀକୃଷ୍ଣ ନିଜର ଓ ଦେଶର ସମସ୍ତ ଘଟଣା ସଙ୍ଗେ ଓତପ୍ରୋତ ଜଡ଼ିତ ରହୁଥିଲେ।

ଏମାନଙ୍କ ବ୍ୟତୀତ, ମୂଳ ମହାଭାରତରେ ବହୁ ମହାଭାରତୀୟ ବିଖ୍ୟାତ ନୀତିବାନ, ଏପରିକି ଧାର୍ମିକ ବିଶିଷ୍ଟ ବ୍ୟକ୍ତି ଓ ରାଜପୁରୁଷ ନିୟମିତ ପଶାଖେଳିବା ସଙ୍ଗେ ସଙ୍ଗେ କିଛି ନିଶାଦ୍ରବ୍ୟ ବ୍ୟବହାର କରିବାର ସଂକେତ ଖୁବ୍ ଭଦ୍ରଭାବେ ଉଲ୍ଲିଖିତ ହୋଇଛି। ଅବଶ୍ୟ ମହାକବି ବ୍ୟାସ ମଦ୍ୟପାନ ବ୍ୟପାରକୁ କାହାର କୁତ୍ସାରଟନା ପାଇଁ ବର୍ଣ୍ଣନା କରିନାହାନ୍ତି। ଯଦିଓ ମଦ୍ୟପାନ ଓ ମାଂସାଦି ସେବନ ବ୍ୟାପାରରେ ଯଥେଷ୍ଟ ସଂଯମ ଓ ସ୍ଥାନକାଳପାତ୍ର ବିବେଚନାକୁ ସେ ଖୁବ୍ ପ୍ରାଧାନ୍ୟ ଦେଇଛନ୍ତି। ବିଶେଷ ଘଡ଼ି ସନ୍ଧିକ୍ଷଣରେ ବା ଅତି ଗୁରୁତ୍ୱପୂର୍ଣ୍ଣ ସୂକ୍ଷ୍ମ ମୁହୂର୍ତ୍ତରେ ବା କୌଣସି ଆନନ୍ଦମୟ ମିଳନାତ୍ମକ ପରିବେଶରେ, ପର୍ବପର୍ବାଣିରେ ଏବଂ ବିଶିଷ୍ଟ ବ୍ୟକ୍ତିଙ୍କ ସମ୍ବର୍ଦ୍ଧନା ଉତ୍ସବରେ, ବିଶିଷ୍ଟ ପୁରୁଷ ଓ ନାରୀଗଣ ମଦ୍ୟପାନ କରୁଥିବାର ଭୂରି ଭୂରି ଉଦାହରଣ ମହାଭାରତରେ ଓ ଭାଗବତରେ ରହିଛି। ଭୀଷ୍ମ, ଧୃତରାଷ୍ଟ୍ର, ଶଲ୍ୟ, କର୍ଣ୍ଣ, ଦୁର୍ଯ୍ୟୋଧନ, ଦ୍ରୁପଦ, ଧୃଷ୍ଟଦ୍ୟୁମ୍ନ, ଭୀମସେନ ଓ ଅର୍ଜୁନାଦି ବିଶିଷ୍ଟ ପୁରୁଷଗଣ, ଏପରିକି ଦ୍ରୌପଦୀ ପ୍ରମୁଖା ବିଶିଷ୍ଟା ନାରୀଗଣ ଯଦି ସାମୟିକ ଘଟଣାକ୍ରମେ ସମପରିମାଣରେ କିଞ୍ଚିତ୍ ମଦ୍ୟପାନ କରିଥିବାର ଅତ୍ରତତ୍ର କେଉଁଠାରେ ପ୍ରମାଣ ଥାଏ ତେବେ ସେମାନଙ୍କ ବ୍ୟକ୍ତିତ୍ୱ ସେତିକିରେ ମ୍ଳାନ ହୋଇଯିବାର କୌଣସି କାରଣ ନାହିଁ। ମହାକବି ମହାମୁନି ବ୍ୟାସଦେବ ଅନ୍ତତଃ ତାହା ମନେକରି ନାହାନ୍ତି। କିନ୍ତୁ ସଂସାରତ୍ୟାଗୀ କୌଣସି ମୁନି,

ଋଷି ବା ସନ୍ଥ ମହାପୁରୁଷ ମଦ୍ୟପାନ କରୁଥିବାର କୌଣସି ପ୍ରମାଣ ମହାଭାରତ ବା ରାମାୟଣରେ କୁତ୍ରାପି ନାହିଁ। ଯଦିଓ ରାମାୟଣରେ ଭରଦ୍ୱାଜ ମୁନି, ମହାମତି ଭରତ ଓ ତାଙ୍କର ଚତୁରଙ୍ଗ ସେନାକୁ ରାଜଅତିଥି ଭାବେ ଉପଯୁକ୍ତ ସମ୍ବର୍ଦ୍ଧନା ଓ ଭୋଜ୍ୟ ଦେଲାବେଳେ ପ୍ରଚୁର ମଦ୍ୟ ଓ ମାଂସ ପରିବେଷଣ କରାଇ ଥିବାର ଭୂରି ଭୂରି ବର୍ଣ୍ଣନା ରହିଛି, ଶ୍ରୀ ରାମଚନ୍ଦ୍ରଙ୍କ ଭକ୍ତ ଓ ସଖା ମହାତ୍ମା ସୁଗ୍ରୀବ ତସ୍ୟପତ୍ନୀ ତାରା, ଅଙ୍ଗଦ, ସୁଷେଣ, ଜାମ୍ବବାନ ଓ ମହାତ୍ମା ବିଭୀଷଣାଦି ପ୍ରଚୁର ମଦ୍ୟପାନ କରୁଥିବାର ପ୍ରମାଣ ମୂଳ ରାମାୟଣ ଗ୍ରନ୍ଥରୁ ମିଳିଥାଏ। ମଧୁବନରେ ପ୍ରଚୁର ସୁସ୍ୱାଦୁମଧୁ (ମଦ୍ୟ) ପାନକରି ପ୍ରମତ୍ତ, ବିହ୍ୱଳ ଓ ସ୍ଖଳିତ ବାନରବୀରମାନଙ୍କର କାଣ୍ଡଜ୍ଞାନହୀନ ମଦ୍ୟପଲୀଳା ବର୍ଣ୍ଣନା କରିବାରେ ମହାକବି ବାଲ୍ମୀକି ଅଦ୍ଭୁତ ଘଟଣା ପର୍ଯ୍ୟବେକ୍ଷଣ ଦକ୍ଷତା ପ୍ରଦର୍ଶନ କରିଛନ୍ତି।

ଏହାଛଡ଼ା ଆମେ ଆମର ଧାର୍ମିକ ପରମ୍ପରାରେ ବିଭିନ୍ନ ମାର୍ଗର ସାଧନପନ୍ଥା ଅନୁସରଣ କଲେ ଦେଖିବା— ଶିବସାଧକମାନେ ଗଞ୍ଜାଇକୁ (ବୁଟି) ଚିଲମରେ ବ୍ୟବହାର କରନ୍ତି ଏବଂ ତାନ୍ତ୍ରିକ ଶାକ୍ତମାନେ କାରଣବାରି ରୂପେ ନିୟମିତ ମଦ୍ୟ ବ୍ୟବହାର କରନ୍ତି। ଏହା ସେମାନଙ୍କ ସାଧନାର ଢଙ୍ଗ ଓ ଉପାଦାନ ବୋଲି ମଧ୍ୟ ଶାସ୍ତ୍ରରେ ଉଲ୍ଲେଖ ରହିଛି ଓ ବିଧାନ ଦିଆଯାଇଛି। ଅବଶ୍ୟ ବୈଷ୍ଣବ ସାଧକଗଣ ଭକ୍ତିଭାବରେ ସର୍ବଦା ଭୋଳ ବା ଭାଗବତ ନିଶାରେ ସର୍ବଦା ବିଭୋର ଥିବାରୁ ବାହ୍ୟ ନିଶାଦ୍ରବ୍ୟ ବ୍ୟବହାର କରିବାକୁ ଆବଶ୍ୟକ ମଣନ୍ତି ନାହିଁ। କିନ୍ତୁ ପରବର୍ତ୍ତୀ କାଳରେ ପଣା ବା 'ପନୀର' ଭୋଗ ରୂପେ ବୈଷ୍ଣବମାନେ ଛେନା, କଦଳୀ ରାବିଡ଼ି ଆଦି ସହିତ ଉତ୍ତମରୂପେ ଘୋଟାଯାଇଥିବା କିଞ୍ଚିତ ପତି (ଗଞ୍ଜାଇର ପତ୍ର) ସଂଯୋଗକରି ଶ୍ରୀକୃଷ୍ଣଙ୍କୁ ପ୍ରତ୍ୟର୍ପଣପୂର୍ବକ ତାହା ଭକ୍ତିଭାବରେ ଭାବ ଉଦ୍ଦୀପନ ଉପାଦାନ ହିସାବରେ ବ୍ୟବହାର କରିଆସୁଛନ୍ତି। କହିବା ବାହୁଲ୍ୟ, ସବୁ ମାର୍ଗର ଧର୍ମସାଧକଗଣ ଏହି ନିଶାଦ୍ରବ୍ୟର ବ୍ୟବହାରକୁ ଅବଶ୍ୟ କର୍ତ୍ତବ୍ୟ ବୋଲି ସ୍ୱୀକାର ନ କଲେ ବି, ଏହାର ବିରୋଧରେ ବିଶେଷ କରି ହୁରୀକାରୀ କରି କହିନାହାନ୍ତି।

କିନ୍ତୁ ଏତେ କଥା କହିବାର ଉଦ୍ଦେଶ୍ୟ ନୁହେଁ ଯେ, ଆମେ ନିଶାଦ୍ରବ୍ୟ ସପକ୍ଷରେ ପୌରାଣିକ ବା ଧାର୍ମିକ ନିଦର୍ଶନମାନ ଆଣି ଥୋଉଛୁ। ଆମର କହିବାର କଥା ହେଉଛି ''ନିଶା, ନିଶା, ମଦ, ମଦ'' ବୋଲି ଆମେ ଏତେ ହୁରୀକାରୀ କରୁଛୁ କାହିଁକି ? ସତରେ କ'ଣ ଏଇଟା ଆମର ଏତେ ବଡ଼ ସାମାଜିକ ସମସ୍ୟା ? ଦେଶର ଶିକ୍ଷା କ୍ଷେତ୍ରରେ କୋଟି କୋଟି ଟଙ୍କା ପାଣିରେ ପଡୁଛି। ଶିକ୍ଷକ ଓ ଛାତ୍ରଙ୍କ ସମସ୍ୟା କ'ଣ ତାହା ଆମେ ବୁଝି ନିରାକରଣ କରୁନାହୁଁ। ସେ ସବୁ ଜାଗାରେ ଦେଶ ପାଇଁ ଏତେ ମୁଦ୍ରା ବିନିମୟରେ କେତେ ଜ୍ଞାନ, ଭାବ, ନୀତି ଓ ରୁଚି

ଉତ୍ପାଦନ ହେଉଛି ତା'ର ହିସାବ ଆମ ପାଖରେ ଅଛି କି? ସେହି ପ୍ରକାଣ୍ଡ ଅବ୍ୟବସ୍ଥା ସମ୍ବନ୍ଧେ କାହାର ମୁଣ୍ଡ ଘୂରୁଛି କି? ଆମ ଯୁବସମାଜର ଅସନ୍ତୋଷ, ଅସ୍ଥିରତା ଓ ବିରକ୍ତିଭାବର ମୂଳକାରଣଗୁଡ଼ିକ କ'ଣ, ସେ ସମ୍ବନ୍ଧେ କିଏ କେତେ ଚିନ୍ତା କରୁଛନ୍ତି? ତା'ଛଡ଼ା ଦେଶରେ ବର୍ତ୍ତମାନ ଜାତୀୟ ଆଦର୍ଶ ବା ଅଭିମୁଖ୍ୟ କ'ଣ ତାହା ଆମର ନେତୃବର୍ଗ ସ୍ଥିର କଲେଣି କି? ଦେଶରେ ଯେନକେନ ପ୍ରକାରେଣ ଧନ ଉପାର୍ଜନ କରି ଧନୀ ହେବା, କ୍ଷମତାସୀନ ହେବା ଷାଠିଏ ବର୍ଷ ପାରି ହୋଇଥିବା ନରନାରୀମାନେ ଯୁବକ ଯୁବତୀମାନଙ୍କ ସଙ୍ଗେ ସବୁ କ୍ଷେତ୍ରରେ ସମାନ ହେବା ଲାଗି ପ୍ରତିଦ୍ୱନ୍ଦ୍ୱିତା କରିବା, ମୂର୍ଖ, ଅଧାମୂର୍ଖ, ଅମାର୍ଜିତ ଓ ଅପୋଗଣ୍ଡମାନେ ଦେଶର ରାଜନୀତିକ ଅବ୍ୟବସ୍ଥାର ସୁଯୋଗ ନେଇ ମନ୍ତ୍ରୀଙ୍କ ଆସନ ଓ କ୍ଷମତା ଦଖଲ କରିବା ଏବଂ ପ୍ରତିଥର ନିର୍ବାଚନ ପରେ ସେହି ସବୁ ଅପନିନ୍ଦିତ ଓ ପରାଜିତ ବ୍ୟକ୍ତିମାନେ ପୁନର୍ବାର ବେଶ ପରିବର୍ତ୍ତନ କରି ଶାସନମଞ୍ଚ ଉପରକୁ ଆସିବା ଆଦି ଘଟଣାମାନ ଦେଖିଲେ, ଆମ ଦେଶର କିଛି ଆଭିମୁଖ୍ୟ ବା ନୀତି ଥିଲା ଭଳି ମନେହୁଏ ନାହିଁ। ଆମର ବର୍ତ୍ତମାନ ଅର୍ଥନୀତିକ ବ୍ୟବସ୍ଥା କଅଣ ଓ କିପରି ହେବ ଭାରି ଶିଳ୍ପ ଓ ଏକଚାଟିଆ ଶିଳ୍ପଜାଗାରେ ସମବାୟ ରୀତିରେ କୁଟୀରଶିଳ୍ପ ବ୍ୟବସ୍ଥାର କିପରି ବିକାଶ ହୋଇପାରିବ, ବେକାର ସମସ୍ୟାକୁ କିପରି ସମାଧାନ କରାଯିବ-ଏଥିପାଇଁ କୌଣସି ଉଲ୍ଲେଖ ତତ୍ପରତା ପ୍ରକାଶ ନ ପାଇ ନିଶାଦ୍ରବ୍ୟ ଉପରେ ଏତେ ହୁରୀକାରୀ କାହିଁକି? ଦେଶ ସାରା ବୃକ୍ଷାରଣ୍ୟ ଲୋପ ହୋଇ ଚାଲିଛି ଏବଂ ଲୋକାରଣ୍ୟ ବଢ଼ି ଚାଲିଛି। ଷାଠିଏ ଭାଗ ଲୋକ ଅକ୍ଷର ଚିହ୍ନି ନାହାନ୍ତି, ପଶୁ ପରି ବଞ୍ଚୁଛନ୍ତି ଏବଂ ଏମିତି ଏମିତି ଆହୁରି ଅନେକ ଆଞ୍ଚଳିକ ସମସ୍ୟାମାନ ରହିଛି ଯାହା ଉପରେ କାହାରି ଦୃଷ୍ଟି ପଡୁନାହିଁ। ଅଥଚ ଖାଲି ଏଇ ନିଶାନିବାରଣ ଦିଗରେ ସାରା ସରକାର ନିଶାଗ୍ରସ୍ତ ମାତାଲଙ୍କ ପରି ଏକମୁହାଁ ଏକବାଗିଆ ଢଙ୍ଗରେ ମାଡ଼ିଚାଲିଚି। କାହାକୁ କହିବା? କପାଳରେ ସିନା କର ତାଡ଼ିବା।।



# ଯା'ନିଶା ସର୍ବଭୂତେଷୁ

ଆଚ୍ଛା ! ଧରାଯାଉ, ନିଶାନିବାରଣ ସରକାରୀ ସ୍ତରରେ ସଫଳ ହୋଇଗଲା । ଗାଁଗଣ୍ଡାରୁ ସହରବଜାରରୁ ସବୁ ଦେଶୀ ବିଦେଶୀ ନିଶାଦୋକାନ ଉଠିଗଲା । ତା'ପରେ—ତା'ପରେ କ'ଣ ସବୁ ସମସ୍ୟା ଉପୁଜିବ, କେହି ଚିନ୍ତା କରିଛନ୍ତି କି ? ଅବଶ୍ୟ ଏକଥା ସତ ଯେ ଅବାଂଛିତ ଭାବେ ଓ ଅସଙ୍ଗତ ଭାବେ ଯେଉଁ ନିଶା ବ୍ୟବହାର ଚାଲିଥିଲା, ତାହା ବନ୍ଦ ହୋଇଯିବ । ସ୍ୱାସ୍ଥ୍ୟ ଦୃଷ୍ଟିରୁ ମଦ୍ୟପାୟୀମାନଙ୍କ ଲାଗି ହୁଏତ ସରକାର କିଛି ବ୍ୟବସ୍ଥା କରିବେ । କିନ୍ତୁ ଆଉ ସବୁ ବିଭିନ୍ନ କାରଣରୁ ଯେଉଁମାନେ ମାଦକଦ୍ରବ୍ୟ ବ୍ୟବହାର କରୁଥିଲେ, ସେମାନଙ୍କ ପାଇଁ ସମାଜ ବା ରାଷ୍ଟ୍ର ସଙ୍ଗେ ସଙ୍ଗେ କିଛି କରିବ ବୋଲି ଯୋଜନା କରିଛି କି ? ନିଶାଦ୍ରବ୍ୟ ପ୍ରତି ସମସ୍ତେ ଆକୃଷ୍ଟ ହୁଅନ୍ତି ନାହିଁ । କେତେକ ନିଶା ହେବା ଭୟରୁ, କେତେକ ଧର୍ମ ଓ ନୀତି ଭୟରୁ ଓ କେତେକ ସାମାଜିକ କଟକଣା ଭୟରୁ ନିଶାଦ୍ରବ୍ୟ ସ୍ପର୍ଶ କରନ୍ତି ନାହିଁ । କିନ୍ତୁ ବହୁ ବ୍ୟକ୍ତି ସ୍ୱାଭାବିକ ଭାବେ ନିଶାଦ୍ରବ୍ୟ ଯାଚିଲେ ବି ପ୍ରତ୍ୟାଖ୍ୟାନ କରନ୍ତି । ତା'ର କାରଣ ହେଲା ଏମାନଙ୍କର ଆଉ ଧରଣର ନିଶା ଥାଏ । କେହି ଧନ ଉପାର୍ଜନ ନିଶାରେ, କେହି କ୍ଷମତା ଅଧିକାର ନିଶାରେ, କେହି ଧର୍ମସାଧନ ନିଶାରେ, କେହି ବା ସମାଜ ସେବା ନିଶାରେ, ପ୍ରଗାଢ଼ ଭାବେ ଭୋଳ ହୋଇଥାନ୍ତି । ତେଣୁ ନିଶାନିବାରଣ ହୋଇଗଲେ ଏମାନେ ହୁଏତ କିଛି ସମସ୍ୟା ସୃଷ୍ଟି କରିବେ ନାହିଁ । ମାତ୍ର ନିଶାଦ୍ରବ୍ୟ ପ୍ରତି ସ୍ୱାଭାବିକ ଭାବେ ଆକୃଷ୍ଟ ହେବା ଲୋକେ ମଧ୍ୟ ଅଛନ୍ତି । ସେମାନଙ୍କର ସାମାଜିକ, ପାରିବାରିକ ଓ ମନସ୍ତାତ୍ତ୍ୱିକ ଜୀବନ ଏପରି ଭାବେ ତିଆରି ହୋଇଛି ଯେ ବଡ଼ ଅବାଂଛିତ ଭାବେ ମଧ୍ୟ ସେମାନଙ୍କ ପକ୍ଷରେ ନିଶାଦ୍ରବ୍ୟ ସେବନ ଆବଶ୍ୟକ । ଏ ଶ୍ରେଣୀର ଲୋକଙ୍କ କଥା ଆମେ ପରେ ଆଲୋଚନା କରିବୁ । ଆଗ ମାଦକଦ୍ରବ୍ୟ କିଛି ବ୍ୟବହାର ନକରି ମଧ୍ୟ ଜୀବନସାରା ବିହ୍ୱଳ ହୋଇ ବା ମାତାଲ ହୋଇ ବଞ୍ଚୁଥିବା ଲୋକଙ୍କ କଥା ବିଚାର କରାଯାଉ ।

ଆମ ଭିତରେ କେତେକ ଅଛନ୍ତି ଯେଉଁମାନେ ଶତ ଶତ ବର୍ଷ ବଞ୍ଚିବା ଲାଗି ଗଭୀର ଅଧ୍ୟବସାୟ ଓ ଉପାୟ ଯତ୍ନ କରୁଥାନ୍ତି । ବହୁଦିନ ବଞ୍ଚିବା ଏମାନଙ୍କର ଏକ ନିଶା । ଏମାନେ କେବଳ ବଞ୍ଚିବାକୁ ଚାହାନ୍ତି ନାହିଁ ବଞ୍ଚିରହି ସବୁକିଛି ସାଂସାରିକ

ସୁଖ ସମ୍ଭୋଗ ସବୁଦିନେ ମଧ୍ୟ ଭୋଗ କରିବାକୁ ଚାହାନ୍ତି। 'ସ୍ୱର୍ଣ୍ଣଘଟିତ ବୃହଦ୍ ବସନ୍ତ କୁସୁମାକର ରସ ସେବନ' ଠାରୁ ଆରମ୍ଭକରି ବିବିଧ ହର୍ମୋନ୍ ଇଂଜେକ୍ସନ୍ ଇତ୍ୟାଦି ନେବା ପର୍ଯ୍ୟନ୍ତ; ଏପରିକି ନିୟମିତଭାବେ ଆପଣାର ମୂତ୍ରପାନ ପର୍ଯ୍ୟନ୍ତ, ସବୁ ସେମାନେ କରନ୍ତି ଏହି ଜୀବନ ଭୋଗର ନିଶାରେ ପ୍ରମତ୍ତ ହୋଇ। ସେମାନଙ୍କ ଆଖି ଆଗରେ ଗୋଟିଏ ରାତିରେ 'ରାମଲୀଳା' ସରିଯାଏ। ପୁଣି ଆଉ ଗୋଟିଏ ରାତିରେ 'କୃଷ୍ଣଲୀଳା' ମଧ୍ୟ ସରିଯାଏ। ଶେଷ ରାତିରେ 'ଗାନ୍ଧୀଲୀଳା' ମଧ୍ୟ ସମାପ୍ତ ହୁଏ। ମାତ୍ର ସେମାନଙ୍କ ପାଟିରୁ କେବେ ଥରୁଟିଏ ହେଲେ ବାହାରେ ନାହିଁ ''ସଂସାରର ଲୀଳାଖେଳା ସରିଲା ଆମ୍ଭର। ସଂସାର ବିଷୟବିଷେ ଜରଜର ହୋଇ, ସାରସତ୍ତ୍ୱ ପାସୋରିଣ ସାରିଲୁଁ ଆୟୁଷ।'' ଜୀବନ ଭୋଗ ପ୍ରତି ଏତେ ନିଶା !!

ଆଉ କେତେକ ଅଛନ୍ତି, ମୃତ୍ୟୁ ପର୍ଯ୍ୟନ୍ତ କ୍ଷମତାରେ ରହିବାକୁ ସେମାନେ ଚାହାନ୍ତି। କ୍ଷମତାରେ ନ ଥିବାବେଳେ ବି କ୍ଷମତାରେ ଅଧିରୂଢ଼ ହେବାକୁ ସ୍ୱପ୍ନ ଦେଖି ବଞ୍ଚିଥାନ୍ତି। ଦିନେହେଲେ ସେମାନଙ୍କୁ ରାଜଗାଦି ମିଳିବ, ପାଟହାତୀ ଦିନେ ନା ଦିନେ ସେମାନଙ୍କ ମୁଣ୍ଡରେ ସୁନାକଳସ ଢାଳିବ ଏଥିପାଇଁ ସେମାନେ ଜ୍ୟୋତିଷ ଯୋଗୀ ଓ ଭବିଷ୍ୟବକ୍ତାଙ୍କ ଆଶ୍ୱାସନା ଉପରେ ବିଶ୍ୱାସ ରଖି ସାରାଜୀବନ ଏକ ଆଶା ଓ ବିଶ୍ୱାସର କୋଳରେ ଆଚ୍ଛନ୍ନମନ ଓ ବିହ୍ୱଳହୃଦୟ ହୋଇ ବଞ୍ଚି ରହିଥାନ୍ତି ଏବଂ ନିଶାଗ୍ରସ୍ତ ଭଳି ଏକବାଗିଆ ଉଦ୍‌ଯୋଗରେ ଲାଗିଥାନ୍ତି। ଆଚ୍ଛା ! ଏଭଳି ଲୋକ କଣ ଦେଶସେବା ବା ଜନସେବା କରିବା ଉଦ୍ଦେଶ୍ୟରେ ଏମିତି ଭାବି ବଞ୍ଚିଥାନ୍ତି ? ସେମାନେ କଣ ଭାବନ୍ତି ଯେ ତାଙ୍କ ଛଡ଼ା ଆଉ କେହି ସେହି ଜନମଙ୍ଗଳକର ଦାୟିତ୍ୱ ନେଇ ତୁଲାଇ ପାରିବେ ନାହିଁ ? ନା ! ସେ କଥା ନୁହେଁ। କ୍ଷମତାନିଶା ଭିତରେ ହିଁ ସେମାନେ ଜୀବନସାରା ଭୋଳ ହୋଇଥାନ୍ତି। କ୍ଷମତା ନ ପାଇବାବେଳେ ଏମାନେ ଆହୁରି ମୂଢ଼ ଓ ନିଷ୍ଠୁର ଆଚରଣ କରି ସାରାଦେଶକୁ ସନ୍ତୁଳିତ କରିଦିଅନ୍ତି। ଏମାନେ ନିଜେ କ୍ଷମତା ନ ପାଇବା ପର୍ଯ୍ୟନ୍ତ କୌଣସି ସରକାର ବା ଦାୟିତ୍ୱରେ ଥିବା ମୁଖ୍ୟ ପ୍ରଧାନମାନଙ୍କୁ ବସାଇ ଉଠାଇ ଦିଅନ୍ତି ନାହିଁ। ମାତାଲଙ୍କ ଭଳି ବିନା ମହତ୍ ଆଭିମୁଖ୍ୟରେ ସେମାନେ ସାରା ଦେଶକୁ ମତାଉଥାନ୍ତି ଚତାଉ ଥାନ୍ତି, ଆପଣା ସୁହା କଥା କହି ଲୋକମତକୁ ବିଭ୍ରାନ୍ତ କରାଇଥାନ୍ତି। ଏହିଭଳି ଲୋକ ରାଜଧାନୀରେ ରହିଲେ 'ନେତା' ଓ ଗାଁରେ ରହିଲେ ''ଜୁଳୀ ନେତା'' ବା ''ଟାଉଟର'' ବୋଲାଇଥାନ୍ତି। ଏମାନେ ନିଶାଗ୍ରସ୍ତ ଲୋକଙ୍କଠାରୁ ଆହୁରି ମାତାଲ ହୋଇ ଜନ ଜୀବନକୁ ଅତିଷ୍ଠ କରି ରଖନ୍ତି।

ସେମିତି ପାରିବାରିକ କ୍ଷେତ୍ରରେ ମଧ୍ୟ ଦେଖାଯାଇଛି– ସବୁଠାରୁ ବୁଢ଼ା ଲୋକଟି ତାର ଶେଷନିଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ନାନାବିଧ ଅପୂରଣୀୟ ଅଭିଳାଷରେ ମଜ୍ଜି ରହି

ପରିବାରରେ ଅତି କଦର୍ଯ୍ୟଅବସ୍ଥା ସୃଷ୍ଟି କରୁଥାଏ । ବିଧବା ବୁଢ଼ୀ ପିଉସୀ, ବୁଢ଼ା କକେଇ, ବୃଦ୍ଧ ବଡ଼ବାପା; ଏପରିକି ନିଜର ବୃଦ୍ଧ ପିତାମାତା ମଧ୍ୟ ସେମାନଙ୍କ ଜୀବନର ଅନେକ ଅପୂରଣୀୟ ଅଭିଳାଷ ଚରିତାର୍ଥ କରିବା ଲାଗି ନିଶାଗ୍ରସ୍ତ ଲୋକ ଭଳି ଦୁର୍ବ୍ୟବହାରଜନିତ ସମସ୍ୟାମାନ ସୃଷ୍ଟି କରି ବସନ୍ତି । ଏଭଳି କ୍ଷେତ୍ରରେ ଦେଖାଯାଇଛି ଅଳ୍ପ ସ୍ୱଳ୍ପ ନିଶାଦ୍ରବ୍ୟ (ବ୍ରାଣ୍ଡି, ଗଞ୍ଜେଇ, ଅଫିମ) ସେବନ କରୁଥିବା ବୟସାଧିକ ଲୋକଟି ବରଂ ବହୁ ପରିମାଣରେ ନିରୀହ, ନିରାପଦ ଓ ଉପଦ୍ରବହୀନ ଜୀବନ କଟାଏ । ସେ ବିଚାରା ଭଦ୍ର, ଅଭିଳାଷରହିତ ଓ କେତେକାଂଶରେ ନିର୍ଲିପ୍ତ ରହି ପରିବାରରେ ବିଶେଷ କିଛି ସମସ୍ୟା ସୃଷ୍ଟି କରେ ନାହିଁ । ତାକୁ ତା' ବେଳାରେ ଟିକିଏ ଅଫିମ; ସାମାନ୍ୟ ଗଞ୍ଜେଇ ବା କିଛିଟ୍ ପରିମାଣ ମଦ୍ୟ ଯୋଗାଇଦେଲେ, ସେ ବିଚରା ତାର ସେଇଥିରେ ମଜ୍ଜିତ ହୋଇ ରହିଥାଏ ଓ ତା ନିଜ ବେଳାରେ ପୂଜାପ୍ରାର୍ଥନା ଉପାସନାଦି କରି ସମୟ କଟାଉଥାଏ । ତୁମର ବିବାହ ବ୍ରତ, ଜମି ବା ଗାଡ଼ିକିଣା; ବନ୍ଧୁ ବାନ୍ଧବ ସମ୍ପର୍କ ବା ପାରିବାରିକ ରୀତିନୀତିରେ ସେ ଆଦୌ ପାଟି ଫିଟାଏ ନାହିଁ; କିମ୍ବା ପରିବାରର ପରିଚାଳନାଗତ କ୍ଷମତା ନେବା ଲାଳସାରେ ପୁଅ ପୁତୁରା ନାତିମାନଙ୍କ ସଙ୍ଗେ ପ୍ରତିଦ୍ୱନ୍ଦ୍ୱିତା କରେ ନାହିଁ/ ଖିଟିମିଟି ଲଗାଏ ନାହିଁ ।

ଏମିତି ବହୁ ବହୁ କ୍ଷେତ୍ର ଅଛି, ଯୋଉଠି ନିଶାଦ୍ରବ୍ୟର ବ୍ୟବହାରକୁ ସ୍ୱେଚ୍ଛାଧୀନ କରି ଛାଡ଼ିଦେବା ଉଚିତ । ଅବଶ୍ୟ ସବୁକଥା ପରି ନିଶାଦ୍ରବ୍ୟ ବ୍ୟବହାରରେ ମଧ୍ୟ ସାମାଜିକ କଟକଣା ନିତାନ୍ତ ବିହିତ । ସେଥିପାଇଁ ଆମର ନିଶାଦ୍ରବ୍ୟ ପ୍ରସ୍ତୁତ ପ୍ରଣାଳୀ ଉପରେ ଆଗ ଲକ୍ଷ୍ୟ ରଖିବା କଥା । ନିର୍ଭୁଲ ଭାବେ, ଯଥାରୀତିରେ ଓ ଖାଣ୍ଟି ଉପାଦାନ ସଂଯୋଗରେ ସେଗୁଡ଼ିକ ପ୍ରସ୍ତୁତ ନ ହୋଇଥିଲେ, ବ୍ୟବହାରକାରୀର ମାରାତ୍ମକ ଅପକାର କରିଥାଏ । ତା' ବ୍ୟତୀତ ବିଭିନ୍ନ କିସମର ନିଶାଦ୍ରବ୍ୟର ନିଶା ଉତ୍ପାଦନ ଗୁଣରେ ମଧ୍ୟ ତାରତମ୍ୟ ରଖିବା ଉଚିତ ସେହି ପ୍ରସ୍ତୁତି ବେଳାଠାରୁ । ସେବନକାରୀର ସ୍ୱାସ୍ଥ୍ୟ, ବୃତ୍ତି ଓ ଆବଶ୍ୟକତା ଦୃଷ୍ଟିରୁ ସେ ସେହି ସେହି ନିଶାଦ୍ରବ୍ୟ ଆବଶ୍ୟକୀୟ ପରିମାଣରେ ବ୍ୟବହାର କରିପାରେ । ତା' ଛଡ଼ା, ଆୟୁର୍ବେଦରେ ଯେପରି 'ଶତାବରୀ ମୋଦକ', 'କାମେଶ୍ୱର ମୋଦକ' ଓ 'ମଦନାନନ୍ଦ ମୋଦକ' ଭଳି ନିଶାଦ୍ରବ୍ୟ ଘଟିତ ପୁଷ୍ଟିକାରକ ଟନିକ୍‌ମାନ ଅଛି ସେହିପରି ନାନା ପୁଷ୍ଟିକାରକ ଔଷଧ ସଂଯୋଗରେ ସୁଲଭ ମୂଲ୍ୟରେ ଆସବମାନ ମଧ୍ୟ ବଜାରରେ ମିଳିବା ଉଚିତ । ତା' ନ କରି ଓ ସେ ଦିଗରେ ବ୍ୟବସ୍ଥା ନ କରି ସରକାର ହୁକାପିଟା ନୀତିରେ ନିଶା ନିବାରଣ କରିଦେଲେ ସାରା ଦେଶ ଏକ ନିଶାଦ୍ରବ୍ୟବିହୀନ ଉନ୍ମତ ଉଚ୍ଛୃଙ୍ଖଳତାରେ ପ୍ରପୀଡ଼ିତ ହୋଇ ଉଠିବାର ଆଶଙ୍କା ରହିଛି । କର୍ତ୍ତୃପକ୍ଷ ଏ କଥା ଭାବୁଛନ୍ତି ତ ?



# ନିଶାନିବାରଣ ସମ୍ଭବ କି ?

ପୃଥିବୀର କୌଣସି ରାଷ୍ଟ୍ର, ଏପରିକି ସୋଭିଏତ୍ ଋଷିଆ ଭଳି ଜନମଙ୍ଗଳ କମ୍ୟୁନିଷ୍ଟ ରାଷ୍ଟ୍ର ମଧ୍ୟ ଅନ୍ଧାରୁଆ ଭାବେ ଆଇନ କରି ଦେଶରୁ ନିଶାନିବାରଣ ପାଇଁ ଚେଷ୍ଟା କରୁନାହିଁ। ତାର କାରଣ ଭାରତ ଛଡ଼ା ଅନ୍ୟାନ୍ୟ ରାଷ୍ଟମାନେ ସବୁ କଥାର ଆଦର୍ଶ ଓ ବାସ୍ତବ ଉଭୟ ଦିଗଟି ଦେଖି କାର୍ଯ୍ୟପନ୍ଥା ଗ୍ରହଣ କରିଥାନ୍ତି ଏବଂ କୌଣସି ଜନମଙ୍ଗଳକାରୀ ଆଇନ ହେବା ପୂର୍ବରୁ ଶଂସିତ ବିଷୟଟି ଉପରେ ସାରା ଦେଶର ଚିନ୍ତାଶୀଳ ବ୍ୟକ୍ତିମାନେ ବିଭିନ୍ନ ଦିଗରୁ ବିଶ୍ଳେଷଣ କରି ଆଲୋଚନା କରିଥାଆନ୍ତି। ଆଲୋଚନାରେ ସ୍ୱାଧୀନ ମତ ପରିବେଷଣ କରି ସେ ଦେଶର ରେଡ଼ିଓ, ଟେଲିଭିଜନ୍ ଓ ସମ୍ବାଦପତ୍ରମାନେ ଜନସାଧାରଣଙ୍କୁ ମଧ୍ୟ ବିଷୟଟିର ଏ ଦିଗ ସେ ଦିଗ ସବୁଆଡୁ ଅବଗତ କରାଇ ଦିଅନ୍ତି। ମାତ୍ର ଆମ ଦେଶରେ ବିଚିତ୍ରତା ହେଲା– ଆମର ରେଡ଼ିଓ, ସମ୍ବାଦପତ୍ରମାନେ କେବଳ ମନ୍ତ୍ରୀମାନଙ୍କ କଥାର ପ୍ରଚାର କରନ୍ତି ଓ ସରକାରୀ ନୀତିଗୁଡ଼ିକ ବିନା ଆନ୍ତରିକତାରେ ଅତି ହାସ୍ୟକର ଭାବେ ପ୍ରଚାର କରିଥାନ୍ତି। ଜନସାଧାରଣ ସେହି ଆନ୍ତରିକତାହୀନ କୃତ୍ରିମ ପ୍ରଚାରବାଣୀ ପ୍ରତି କର୍ଣ୍ଣପାତ ବା ନେତ୍ରପାତ ମଧ୍ୟ କରନ୍ତି ନାହିଁ। କିନ୍ତୁ ସରକାରୀ ଅର୍ଥକୋଷରୁ ସେ ବାବଦକୁ ଅର୍ଥ ଖର୍ଚ୍ଚ ହେଉଥାଏ। ସମ୍ବାଦପତ୍ରମାନେ ମଧ୍ୟ ସରକାରୀ ନୀତି ବିରୋଧରେ କିଛି ପ୍ରକାଶ କରନ୍ତି ନାହିଁ। (ଓଡ଼ିଆ ସମ୍ବାଦପତ୍ରମାନେ ଏ ଦିଗରେ ଆହୁରି ଦୟନୀୟ।)

ସରକାରୀ ସୂତ୍ରରେ ଆଇନ ବଳରେ ନିଶାନିବାରଣ କାର୍ଯ୍ୟ ହେଲେ ବେସରକାରୀଭାବେ ଲୁଚାଇ ଚୋରାଇ ଘରେ ଘରେ ନିଶାଦ୍ରବ୍ୟ ଉତ୍ପାଦନର କୁଟୀର ଶିଳ୍ପମାନ ଖୋଲିଯିବ। ଶେଷରେ ତାକୁ ଧରିବା ଲାଗି ଓ ଧରି ସଜା ଦେବା ଲାଗି ଆହୁରି ଅଧିକ ଭାବେ ଅବକାରୀ ପୋଲିସବାହିନୀ ସକ୍ରିୟ ହୋଇ ଉଠିବେ। ସେମାନେ ଯେତେବେଳେ ଇଚ୍ଛା ଓ ଯାହାକୁ ଇଚ୍ଛା ତା’ ଘରେ ପଶି ମାଦକଦ୍ରବ୍ୟ ଉତ୍ପାଦନ ବା ରଖିବା ସନ୍ଦେହରେ ତନଖି କରିବେ। ପରିଶେଷରେ ସେ ବାବଦରେ ବିଚାରା ସେମାନଙ୍କର ବେଶ୍ ଦୁଇପଇସା ଲାଭ ଖୋଲିବାର ବାଟ ଫିଟିଯିବ। ବାଃ ବାଃ ! ଖାସା ବ୍ୟବସ୍ଥାଟିଏ ହେବ ତା’ହେଲେ !

ଆମ ସମାଜରେ ନିଶାଦ୍ରବ୍ୟ, ବିଶେଷତଃ ମଦ୍ୟପାନ ପ୍ରତି ସାଧାରଣ ଲୋକଙ୍କର ଗୋଟିଏ ବୃଥା କୋକୁଆ ଭୟ ରହିଛି। ମଦ୍ୟପାନ ମହାପାପ—। ମଦ୍ୟ ?? ଇଲୋ ବାପା ଲୋ ! ମଦ୍ୟ ? ଇଲୋ ମାଆ ଲୋ ! ସେ ଲୋକଟା ମଦ ଖାଏ !! ଇସ୍ ! ସେନାପତି ସାହେବଟା ମଦ ପିଏ ହୋ ! ଅମୁକ ମନ୍ତ୍ରୀ ସବୁଦିନେ ବ୍ରାଣ୍ଡି ଖାଏ ବୋଲି ତାଙ୍କ ପି.ଏ. କହୁଥିଲା। ସେଇଟା କଣ ଦେଶଶାସନ କରିବ ? ଅମୁକ ମହାପାତ୍ରଟା କି ସାହିତ୍ୟିକ ହେ ? ତାକୁ ମୁଁ ବିଅର ପିଇବାର ନିଜେ ଦେଖିଛି। ସେ ଲୋକଟା ଧର୍ମ ବିଷୟରେ କଣ କହିବ ? ମୁଁ ଶୁଣିଛି ସେ ମଦ ପିଏ। ମଦ ଯେ ଥରେ ଛୁଇଁଛି ତାକୁ ବିଶ୍ୱାସ ନାହିଁରେ ଭାଇ। ମହାନ୍ତିବାବୁ ପାଖକୁ ଯିବାକୁ ମତେ ଭାରି ଡର ଲାଗୁଛି। ମୁଁ ଶୁଣୁଛି ସେ କ୍ଲବରେ ମଦ ପିଏ।

ଏଭଳି ଧାରଣା ଅତି ଶିଶୁସୁଲଭ ଓ ଅପରିଣତ ମନୋବୃତ୍ତିର ପରିଚୟ ଦିଏ। ଯଥା ପରିମିତ ଓ ସଂଯତ ଭାବେ ସାମାନ୍ୟ ମଦ୍ୟପାନ କରୁଥିବା କୌଣସି ବ୍ୟକ୍ତି ମନ୍ତ୍ରୀ ଭାବରେ, ପ୍ରଶାସକ ଭାବରେ, ସାହିତ୍ୟିକ ଭାବରେ; ଏପରିକି ଜଣେ ସହୃଦୟ ସାମାଜିକ ବ୍ୟକ୍ତି ଭାବରେ ସଫଳତାର ସହିତ କାର୍ଯ୍ୟ କରି ପାରିବ ନାହିଁ-ଏପରି ଭାବିବା ଅତ୍ୟନ୍ତ ଭୁଲ୍। ସାରା ପୃଥିବୀର ବହୁ ରାଷ୍ଟ୍ରନାୟକ ଓ ପ୍ରଶାସକ ଯଥା ପରିମିତ ମଦ୍ୟ ପାନ କରି ମଧ୍ୟ ସେମାନଙ୍କ କର୍ମ କ୍ଷେତ୍ରରେ କେବେ କିଛି ବିଫଳତା ବା ଅଦକ୍ଷତା ଦେଖାଇ ନାହାନ୍ତି। ବହୁ ସଂଯତ ମଦ୍ୟପାୟୀ ରାଷ୍ଟ୍ରନାୟକ ଓ ପ୍ରଶାସକ, ବରଂ ମଦ୍ୟପାନ କରୁ ନ ଥିବା ତାଙ୍କ ସାଙ୍ଗର ବହୁ ବ୍ୟକ୍ତିଙ୍କଠାରୁ ଶାସନ ଦକ୍ଷତା ସହିତ, ସେମାନଙ୍କ ଚରିତ୍ରର ନିର୍ମଳତା ଓ ବୁଦ୍ଧିମତ୍ତା ସହିତ ଉଚ୍ଚ ହୃଦୟବତ୍ତାର ନିଦର୍ଶନ ଦେଖାଇଥାନ୍ତି। ତେଣୁ ବୁଦ୍ଧିମତ୍ତା, କାର୍ଯ୍ୟ ଦକ୍ଷତା ଓ ହୃଦୟବତ୍ତା ପାଇଁ ସାମାନ୍ୟ ମଦ୍ୟପାନର କୌଣସି ସପକ୍ଷ ବା ବିପକ୍ଷ ଭୂମିକା କେବେ ନ ଥିଲା ବା ନାହିଁ। ଗୋଟିଏ ଉଦାହରଣ ମୋଗଲ ସାମ୍ରାଜ୍ୟରୁ ନିଆଯାଉ। ମଦ୍ୟପାନ କରୁଥିବା ସମ୍ରାଟ ଶାହାଜାହାନ ଓ ମଦ୍ୟ ବିରୋଧରେ ହୁଂକାର ଦେଉଥିବା ତସ୍ୟ ପୁତ୍ର ସମ୍ରାଟ ଆଉରଙ୍ଗଜେବ୍‌ଙ୍କ ଭିତରେ ରାଷ୍ଟ୍ରନୀତି, ବୁଦ୍ଧିମତ୍ତା ଓ ହୃଦୟବତ୍ତା ନେଇ ତୁଳନା କଲେ ପାଠକେ ସବୁକଥା ବୁଝି ପାରିବେ। ନିଜ ନିଜ ଅଭିଜ୍ଞତାରୁ ମଧ୍ୟ ସମସ୍ତେ ଏହାର ସତ୍ୟାସତ୍ୟ ନିରୂପଣ କରିପାରନ୍ତି।

ବର୍ତ୍ତମାନ ଯାହା ଦେଖାଯାଉଛି, ମଦ ବିରୋଧରେ ଆମେ ଯେତିକି ହୈହଲ୍ଲା ହୁଙ୍କାର କରୁଛୁ-ଆମ ସମାଜରେ, ବିଶେଷତଃ ଯୁବସମାଜରେ ମଦ ପ୍ରତି ଆକର୍ଷଣ ସେତିକି ବଢ଼ି ବଢ଼ି ଚାଲିଛି। ଗୋଟାଏ ନଗଣ୍ୟ ଜିନିଷକୁ, ଗୋଟାଏ ଅତି ବ୍ୟକ୍ତିଗତ ଜିନିଷକୁ ଯଦି ସାମାଜିକ ହଟଗୋଳ ଭିତରକୁ ଠେଲି ଦିଆଯାଏ, ତେବେ ତାହା

ଅତି ଅସାଧାରଣଭାବେ ସମୂହ ଦୃଷ୍ଟି ଆକର୍ଷଣ କରି ବସିବ ଓ ତା' ପ୍ରତି ଅଯଥାରେ ଲୋକଙ୍କର କୌତୁହଳ ଓ ଲୁବ୍‌ଧ ପ୍ରବୃତ୍ତି ଜାଗି ଉଠିବ।

ମଦ୍ୟପାନ ବ୍ୟାପାରକୁ ଏ କେତେବର୍ଷ ଧରି ବହୁ ନିର୍ଲ୍ଲଜ ବିଜ୍ଞାପନ ଦିଆଯାଇଛି। ଅର୍ଥଲୋଭୀ ଧନନିଶାଗ୍ରସ୍ତ ବଣିକମାନେ ଗତ ପନ୍ଦର କୋଡ଼ିଏ ବର୍ଷଧରି କ୍ଷମତାନିଶାପାଗଳ ରାଜନୀତିକ ନେତାଙ୍କ ସଙ୍ଗେ ହାତ ମିଳାଇ ସାରା ଦେଶରେ ନଗ୍ନ ଅଶ୍ଳୀଳ ବୀଭତ୍ସ ଚଳଚ୍ଚିତ୍ର ଓ ମଦ୍ୟ ବିକ୍ରୟ କେନ୍ଦ୍ରମାନ ଯଥେଚ୍ଛାଭାବେ ବଢ଼ାଇ ଦେଇଛନ୍ତି। କାନ୍ଥବାଡ଼ରେ ନଗ୍ନ ଅଶ୍ଳୀଳ ସିନେମା ଛବି ସାଙ୍ଗକୁ ବିବିଧ ମଦ୍ୟ ବିକ୍ରୟର ବିଜ୍ଞାପନ ଛାଇ ହୋଇଯାଇଛି। କୌଣସି ପତ୍ରପତ୍ରିକା ମଧ୍ୟ ସେଥିରୁ ବାଦ ପଡ଼ି ନାହିଁ। ଦେଶସାରା ନଗ୍ନଛବିର ସିନେମା ଗୃହ ବିଛେଇ ହୋଇଯାଇଛି। ସହରମାନଙ୍କର ଗଳିକନ୍ଦିରେ ମଦ ଦୋକାନ ସବୁ ଦିନରାତି ଖୋଲା ରହିଛି। ନଗ୍ନ ସିନେମା ଓ ମଦ୍ୟବିକ୍ରୀରୁ ଯେଉଁ ପ୍ରଭୂତ ଧନ ଉପାର୍ଜନ ହୁଏ-ସେଥିରୁ କିଛି ଅଂଶ ସରକାରୀ ତହବିଲ୍‌କୁ ଆସେ ଓ ଆହୁରି ବହୁ ଅଂଶ ଯାଏ ରାଜନୀତିକ କ୍ଷମତା ପାଇଁ ଭୋଟ ଇଚ୍ଛେଇ କରୁଥିବା ନେତାମାନଙ୍କ ହାତପାଣିକୁ। ସମସ୍ତେ ଏ ସବୁ କଥାକୁ ଆଜି ପର୍ଯ୍ୟନ୍ତ ଆଖିବୁଜି ସହ୍ୟକରି ଆସିଛନ୍ତି ଏବଂ ମନେ ମନେ ସ୍ୱାଗତ ମଧ୍ୟ କରି ଆସିଛନ୍ତି। ରାଜନୀତିକ ନେତାମାନେ ଗତ ଦଶପନ୍ଦର ବର୍ଷ ଭିତରେ କଲେଜର ଛାତ୍ରନେତାମାନଙ୍କୁ ମଧ୍ୟ ମଦବୋତଲ ବଢ଼େଇ ଦେଇଛନ୍ତି ସେମାନଙ୍କୁ ସ୍ୱପକ୍ଷକୁ ଆଣି ବିପକ୍ଷ ବିରୁଦ୍ଧରେ ଆନ୍ଦୋଳନ କରିବାକୁ। ଆଜି ମଧ୍ୟ ସେହି ନେତାମାନଙ୍କ ଭିତରୁ ବହୁ ନେତା ଭିନ୍ନ ବେଶରେ ଅତି ମାନନୀୟ ସ୍ଥାନ ଅଧିକାର କରି ରହିଛନ୍ତି ଓ ଶାସନ କ୍ଷମତା ଅଧିକାରରେ ଅଛନ୍ତି ଏବଂ ସେମାନେ ଆଜି ପୁଣି ସାରା ଦେଶରୁ ନିଶା ନିବାରଣ କରି ଦେବେ ବୋଲି ହୁଙ୍କାର ଚୋଳୁଛନ୍ତି। ଧନ୍ୟରେ ନିର୍ଲ୍ଲଜ ନେତୃତ୍ୱ!! ଏ ଅହଂକାରିତା ଆଉ କେତେ ଦିନ ଚାଲିବ? ଆମର ମତ ହେଲା-ମଦକୁ ତା' ସ୍ଥାନରେ ସଂଯତ ଓ ସଂହତ ହୋଇ ରଖିବାକୁ ଦିଅ। ତା ସପକ୍ଷରେ ଅଟରୋଳ କରନାହିଁ, କି ତା' ବିପକ୍ଷରେ ହଟଗୋଳ କରନାହିଁ।

ମଦ ଶୁଣ୍ଢୀ ଦୋକାନରେ ବିକ୍ରୀ ହେଉ। ଶୁଣ୍ଢୀ ଦୋକାନ ଜନପଦର ଯଥା ଦୂରରେ ରହୁ। ଲୋକଙ୍କୁ ମଦୁଆ ହେବା ଲାଗି ପରିବେଶ ସୃଷ୍ଟି କରା ନଯାଉ। ରାସ୍ତାରେ, ପାର୍କରେ, ହୋଟେଲ, ହାଟବଜାରରେ, ଯାନିଯାତ୍ରାରେ, କ୍ଲବ ବା ସଭା ଗୃହରେ, ବିଦ୍ୟାଳୟ ବା ଅଫିସରେ, ଦେବାଳୟ ବା ସାମାଜିକ ମିଳନସ୍ଥଳୀରେ ମଦ ପିଇ; ମାତାଲ ହୋଇ ଅସଭ୍ୟ, ଅଶ୍ଳୀଳ ଓ କୁତ୍ସିତ କାଣ୍ଡକାରଖାନା ଘଟାଉଥିବା ଯେ କୌଣସି ଲୋକଙ୍କୁ ଆରେଷ୍ଟ କରି ଜେଲକୁ ପଠାଯାଉ ଅନ୍ୟ କ୍ରିମିନାଲଙ୍କ ଭଳି। ଏପରିକି ମଦ୍ୟପାନ ସକାଶେ ଲାଇସେନ୍‌ସ ମଧ୍ୟ କରାଯାଇପାରେ। ମାତ୍ର

ସଂପୂର୍ଣ୍ଣଭାବେ ଦେଶରୁ ନିଶାନିବାରଣ କରି ଦେବାର ପ୍ରତିଜ୍ଞା କରିବା ପୂର୍ବରୁ ଖୁବ୍ ସାବଧାନରେ କର୍ତ୍ତୃପକ୍ଷଙ୍କର ଭାବିବା ଚିନ୍ତିବା ଉଚିତ।

ସାଧୁସନ୍ଥ ମହାତ୍ମାମାନେ ଆମକୁ ସଂଯତ କରିବା ଲାଗି ଓ ଆମ ମନରେ ସଦ୍‌ଭାବ ଆଣିବା ଲାଗି ବହୁ ଉପଦେଶ ନିର୍ଦ୍ଦେଶ ଦେଇଥାନ୍ତି। କେତେକ ମହାତ୍ମା ଉପଦେଶ ଦିଅନ୍ତି ଯେ ଦୁଇଟି ସନ୍ତାନ ଜନ୍ମ ହେଲା ପରେ ସ୍ୱାମୀ ସ୍ତ୍ରୀ ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟ ପାଳନ କରି ଯୌନକ୍ରିୟା ପରିତ୍ୟାଗ କରିବା ଉଚିତ। ଏହା ବଡ଼ ଉତ୍ତମ କଥା। ଏହା ଯେ କରିପାରୁଛନ୍ତି-ସେମାନେ ନିଶ୍ଚୟ ପ୍ରଶଂସାର୍ହ। ମାତ୍ର ଯେଉଁମାନେ ଏହା ନକରି ପାରୁଛନ୍ତି, ସେମାନେ ପାପୀ ଓ ଖରାପ ମଣିଷ କହି ଦୁଇଟି ସନ୍ତାନ ପରେ ଯୌନ ମିଳନ ନିବାରଣ ଆଇନ୍ କରି ଦେଲେ ସେହି ରାଷ୍ଟ୍ର ବିଧାତାମାନଙ୍କୁ ପାଗଳ ଆହମ୍ମକ ଛଡ଼ା ଆଉ କଣ କହିବା ? ବରଂ ଏ କ୍ଷେତ୍ରରେ ଦମ୍ପତିଙ୍କର ଯୌନ ମିଳନ ଉପରେ ଦୃଷ୍ଟି ନ ଦେଇ ଅଧିକ ସନ୍ତାନ ନ ହେବା ଦିଗରେ ସମାଜ ବା ରାଷ୍ଟ୍ର ସେମାନଙ୍କୁ ଅନ୍ୟ ଉପାୟରେ ସାହାଯ୍ୟ କରିବା ଅଧିକ ଯୁକ୍ତିସଙ୍ଗତ ଓ ସୁସ୍ଥ କଲ୍ୟାଣକାମୀ ବିଚାର ହୁଅନ୍ତା !...ଏସବୁ ଦୃଷ୍ଟିରୁ ଆମର ମତ ଖୋଲା-ନିଶାନିବାରଣ ପାଇଁ ଜିଦ୍ ନ ଧରି ଆମେ କିପରି ନିଶାଦ୍ରବ୍ୟର ଆକର୍ଷଣରୁ ଜନସମାଜକୁ ଦୂରରେ ରଖିବୁ, ତାହାର ଉପାୟ ବାହାର କରିବା।

❋❋

# ନିଶାନିବାରଣ ନା ନିୟନ୍ତ୍ରଣ ?

ଏତେ କଥା ଏତେ ଦିଗରୁ ଆଲୋଚନା କଲା ପରେ ଗୋଟିଏ ସ୍ଥିର କଥା ମୁଣ୍ଡକୁ ଆସୁଛି ଯେ ନିଶାନିବାରଣ ସମ୍ପୂର୍ଣ୍ଣଭାବେ ଓ ସାମୂହିକ ଭାବେ ଆଇନଦ୍ୱାରା ଆଦୌ ସମ୍ଭବ ନୁହେଁ। ତା'ଛଡ଼ା ଯୌକ୍ତିକତା ଦୃଷ୍ଟିରୁ ଉଚିତ ମଧ୍ୟ ନୁହେଁ। କିନ୍ତୁ ସାମାଜିକ ସ୍ତରରେ ନିଶା ବିରୋଧରେ ଆନ୍ଦୋଳନ ସବୁବେଳେ ଚାଲୁ ରହିବା ଉଚିତ। ମାତ୍ର ସରକାରୀ ସ୍ତରରେ ଯେମିତି କାନ୍ଥବାଡ଼ରେ ପୋଷ୍ଟର ମାରି ଓ ଆନ୍ତରିକତାହୀନ ଭାବେ ମଦବିରୋଧୀ ପ୍ରଚାର ଚାଲୁ ହୋଇଛି, ତଦ୍ଦ୍ୱାରା ନିଶା ବିରୋଧରେ ଜନମତ ସୃଷ୍ଟି ସମ୍ଭବ ନୁହେଁ। ଗାନ୍ଧିଜୀ ଯେଉଁ ରୀତିରେ ରଚନାତ୍ମକ କର୍ମସଂସ୍ଥା ସବୁ ଗଢ଼ିଥିଲେ ଓ ବିନୋବାଙ୍କ ସର୍ବୋଦୟସଂସ୍ଥା ଭଳି, ପ୍ରତ୍ୟେକ ରାଜନୀତିକ ଦଳ ସେହିପରି କେତେକ ରଚନାତ୍ମକ କର୍ମସଂସ୍ଥା ସହରଠାରୁ ଗ୍ରାମପର୍ଯ୍ୟନ୍ତ ଗଠନ କରି ସେଗୁଡ଼ିକୁ ସକ୍ରିୟ କରି ରଖିବା ଉଚିତ। ଏହି କର୍ମୀମାନେ ସରକାରଙ୍କ ପ୍ରତ୍ୟକ୍ଷ ନୀତିଗୁଡ଼ିକୁ ଓ ପରୋକ୍ଷ ଆଭିମୁଖ୍ୟଗୁଡ଼ିକୁ ନିଜେ ନିଜ ଜୀବନରେ ପାଳନ କରିବା ସଙ୍ଗେ ସଙ୍ଗେ ଯେଉଁ ଅଞ୍ଚଳର ବ୍ୟକ୍ତିମାନଙ୍କ ସଙ୍ଗେ ବ୍ୟକ୍ତିଗତ ସମ୍ପର୍କ ସ୍ଥାପନ ଦ୍ୱାରା ସେମାନଙ୍କ ମନରେ ମଧ୍ୟ ସେହିସବୁ ନୀତିର ପ୍ରଭାବ ପକାଇବାକୁ ଚେଷ୍ଟାକରି ପାରିବେ। ଦାସକାଠିଆ, ପାଲା ଆଦି ସଂଗଠନ କରି ସେମାନଙ୍କୁ ବିଭିନ୍ନ ସ୍ଥାନରେ ଏହି ସମ୍ପର୍କୀୟ ବିଷୟବସ୍ତୁ ପ୍ରଦର୍ଶନ କରାଇବେ। ଏସବୁ ଭିତରେ କିନ୍ତୁ ପ୍ରତ୍ୟକ୍ଷ ଭାବରେ କୃତ୍ରିମ ଢଙ୍ଗରେ ମଦ ବିରୋଧୀ ପ୍ରଚାର ରହିବ ନାହିଁ। କିନ୍ତୁ ପରୋକ୍ଷରେ, ଅତି ସୂକ୍ଷ୍ମ ଭାବରେ ନିଶା ବ୍ୟବହାରର କୁଫଳ ପ୍ରକାଶିତ ହୋଇ ପାରୁଥିବ।

କିନ୍ତୁ ଏ ପଦ୍ଧତି ମଧ୍ୟ ବାହ୍ୟ ଓ ପରୋକ୍ଷ। ଅସଲ କଥା ହେଲା-ନିଶାଦ୍ରବ୍ୟ ପ୍ରତି ଲୋକଙ୍କର ବିଶେଷତଃ ଯୁବସମାଜର ଆସକ୍ତି କାହିଁକି ବଢ଼ୁଛି ଓ ତାର ଗୂଢ଼ କାରଣଗୁଡ଼ିକୁ ବିଭିନ୍ନ ବିଶେଷଜ୍ଞ ଓ ତତ୍ତ୍ୱବିଦ୍‌ମାନଙ୍କ ସାହାଯ୍ୟରେ ଆବିଷ୍କାର କରି ସେହି-କାରଣଗୁଡ଼ିକ ଉପରେ ସେଗୁଡ଼ିକର ବିଲୋପ ଲାଗି ସକ୍ରିୟ ହେବା।

ଗୋଟିଏ ଉଦାହରଣ ନିଆଯାଉ। ସେଇଟି ହେଲା ବର୍ତ୍ତମାନ ଆମ ସମାଜରେ ବିଶେଷତଃ ଯୁବ ସମାଜରେ ଗୋଟିଏ ପ୍ରକାର ମନସ୍ତାତ୍ତ୍ୱିକତା ଦେଖା ଦେଇଛି। ତା' ହେଲା-ନୈରାଶ୍ୟବାଦ, ବ୍ୟର୍ଥତାବାଦ, ସଂଶୟବାଦ ଓ ନିରାନନ୍ଦବାଦ। କେହି ଆଉ ଆନନ୍ଦରେ ରହିଲା ଭଳି ତା' ମୁହଁକୁ ଚାହିଁଲେ ଜଣାପଡୁ ନାହିଁ। ରାସ୍ତାରେ ଚାଲୁଥିବା ବା ଅଫିସରେ କାମ କରୁଥିବା ଲୋକଟିର ମୁହଁକୁ ଚାହିଁ ବା କଲେଜରେ ପଢୁଥିବା

ଛାତ୍ର ଛାତ୍ରୀଙ୍କ ମୁହଁକୁ ଚାହିଁ-ଦେଖିବ; ସତେ ଯେମିତି ତାର କାହା ଉପରେ ଭରସା ନାହିଁ। ସତେକି ସେ ସମସ୍ତଙ୍କୁ ଅବିଶ୍ୱାସ କରୁଛି-ଶତ୍ରୁ ବୋଲି ଭାବୁଛି। ମୋଟ କଥା ହେଲା-ଆମେ ନେତୃବୃନ୍ଦ (ଶିକ୍ଷକ, ଅଭିଭାବକ, ରାଜନୀତିକ ନେତା ଓ ସରକାର) ପ୍ରକୃତରେ କାହାକୁ ଠିକ୍ ଭରସା ଓ ଆସ୍ଥା ଦେଇ ପାରୁନାହୁଁ। ଆମେ ସମାଜର ନେତୃତ୍ୱ ନେଇଛୁ-ପରିବାର ଓ ବିଦ୍ୟାଳୟମାନଙ୍କର ନେତୃତ୍ୱ ନେଇଛୁ। ମାତ୍ର ଆମ ଉପରେ କାହାର ଭରସା ନାହିଁ। ଏପରି ସ୍ଥଳେ ସମାଜର ସାଧାରଣ ଲୋକ ସବୁଠାରେ ନିରାଶ ଓ ଅପଦସ୍ଥ ହୋଇ ପଡୁଛି ଏବଂ ତାର ପରିଣାମରେ ବ୍ୟସ୍ତ ବିବ୍ରତ ଓ ଚଞ୍ଚଳ ହୋଇ କାହାକୁ ଧରିବ ଜାଣି ନ ପାରି କ୍ଷଣିକ ଉତ୍ତେଜନା ଦେଉଥିବା ନିଶାଦ୍ରବ୍ୟକୁ ଇ ବାଉଳାରେ ଧରି ପକାଉଛି।

ଆମେ ସମସ୍ତଙ୍କୁ ସହଜଭାବେ ବଞ୍ଚିବା ଲାଗି ପରିବେଶ ସୃଷ୍ଟି କରିପାରିନାହୁଁ। ଆମର ସବୁ ଯେତ୍ରରେ ଯେଉଁମାନେ ଶୀର୍ଷ ସ୍ଥାନରେ ରହିଛନ୍ତି-ସେମାନେ ଏତେ ଦାୟିତ୍ୱହୀନ, ଶ୍ରଦ୍ଧାହୀନ, ଆଉ ନୀତି ଆଦର୍ଶହୀନ ଯେ, ଆମର ଯୁବସମାଜ ସେମାନଙ୍କ ପାଖରେ ନିତାନ୍ତ ଅରକ୍ଷିତ ମନେ କରୁଛନ୍ତି। ସବୁ କ୍ଷେତ୍ରରେ ବ୍ୟକ୍ତି ଗୋଟାଏ ଆଶଙ୍କା ଗ୍ରସ୍ତ ଜୀବନ ଯାପନ କରୁଛି। ସେ କାହାକୁ ବୁଝି ପାରୁନାହିଁ ଓ କୋଉ ଘଟଣାର ଆଗପଛ କାର୍ଯ୍ୟ କାରଣ ବୁଝି ପାରୁନାହିଁ। ସେଥିଲାଗି ତାର ସମସ୍ତଙ୍କୁ ଓ ସବୁ କଥାକୁ ଭୟ ମାଡ଼ିପଡୁଛି। ଏହି କାରଣରୁ ମଧ ଏକ କୃତ୍ରିମ ନିର୍ଭୀକତା ବା ବେପରୁଆ ଭାବ ଆଣିବା ପାଇଁ ସେ ବାଉଳାରେ ନିଶାଦ୍ରବ୍ୟ ଧରି ପକାଉଛି। ଆମ ସମାଜରେ ବର୍ତ୍ତମାନ ବହୁ ପୁଅ ଓ ବହୁ ଝିଅ ବିବାହ ବୟସ ହେଲେ ମଧ ନାନାଦି କାରଣରୁ (ବିଶେଷତଃ ଆର୍ଥନୀତିକ କାରଣରୁ) ବିବାହ କରି ଦାମ୍ପତ୍ୟ ଗୃହ ସୁଖ ଭୋଗ କରି ପାରୁନାହାନ୍ତି। ମାଳ ମାଳ ହୋଇ ବେକାର ଯୁବକ ଯୁବତୀ ଅତ୍ରତତ୍ର ବୁଲୁଛନ୍ତି। ତେଣୁ ସରକାର ପ୍ରଥମେ ଏସବୁ ପ୍ରତି ଦୃଷ୍ଟି ଦିଅନ୍ତୁ। ଲୋକଙ୍କୁ ଆଗ ଏକ ସୁସ୍ଥ ଆର୍ଥିକ ଓ ସାମାଜିକ ପରିବେଶ ଯୋଗାଇ ଦେବା ଲାଗି ଉଦ୍ୟମ କରାଯାଉ। ଏସବୁ ହେଲେ, ନିଶାଦ୍ରବ୍ୟ ପ୍ରତି ଅଯଥା ମୋହ ବା ଆକର୍ଷଣ ବହୁ ଅଂଶରେ ନିଶ୍ଚୟ କମିଯିବ।

ଆଉ ଗୋଟିଏ କଥା ହେଲା-ନିଶାଦ୍ରବ୍ୟ ଏତେ ସହଜଲଭ୍ୟ ନହେଉ। ସହର ବଜାରର ପ୍ରତି ଗଳିକନ୍ଦିରେ ଏତେ ନିଶା ଦୋକାନ କାହିଁକି ଖୋଲାଯିବ? ତା'ଛଡ଼ା, ଯେଉଁମାନେ ନିଶାଦ୍ରବ୍ୟ କିଛି ପରିମାଣରେ କୌଣସି କାରଣରୁ ବ୍ୟବହାର କରନ୍ତି, ସେମାନେ ମଧ ନିଶାଦ୍ରବ୍ୟର ପ୍ରଭାବ ଉପରେ ଏତେ ତୁମ୍ବିତୋଫାନ କରିବା ଉଚିତ ନୁହେଁ। ସିନେମା ଓ ଥିଏଟର ଇତ୍ୟାଦିରେ ମଦ୍ୟପାନ ସଂକ୍ରାନ୍ତୀୟ ଦୃଶ୍ୟକୁ ଏତେ ଜାଜ୍ୱଲ୍ୟମାନ କରି ବା ଅତିରଞ୍ଜିତ କରି ଦେଖାଇବା ଅନୁଚିତ। ବରଂ ମାଦକଦ୍ରବ୍ୟ

ଖାଇ ମାତାଲ ହୋଇ ଅସାମାଜିକ ଆଚରଣ, କରୁଥିବା ଲୋକଙ୍କ ପ୍ରତି କିପରି ସାମାଜିକ ଘୃଣା ଓ ନଗଣ୍ୟଭାବ ରହିଛି, ତାହାହିଁ ତୀବ୍ରଭାବେ ନାଟକ ଓ ସିନେମା ଇତ୍ୟାଦିରେ ପ୍ରଦର୍ଶିତ ହେବା ଉଚିତ।

ସ୍କୁଲ କଲେଜରେ ଛାତ୍ରଛାତ୍ରୀମାନଙ୍କ ମନକୁ ଅତି ଉତ୍କୃଷ୍ଟ ସୌନ୍ଦର୍ଯ୍ୟବୋଧ, ରସବୋଧ ଓ ଜ୍ଞାନଚର୍ଚ୍ଚା ଆଡ଼କୁ ନେଇଯିବା ପାଇଁ ଶିକ୍ଷକ ଓ ଅଧ୍ୟାପକମାନେ ବ୍ୟକ୍ତିଗତ ଭାବେ ଅତି ଉତ୍ସାହର ସହିତ ଲାଗି ପଡ଼ିବା ଉଚିତ। ଅସଲ କଥା ହେଲା ଆମର ମନ ଭିତରେ ଯଦି ଜ୍ଞାନ ବିଜ୍ଞାନ, ସୌନ୍ଦର୍ଯ୍ୟ ଓ ରସବୋଧ ପ୍ରତି ଖୁବ୍ ଆଗ୍ରହ ସୃଷ୍ଟି କରି ଦିଆଯାଏ, ତେବେ ଆମର ରୁଚି ମଧ୍ୟ ବେଶ୍ ସୂକ୍ଷ୍ମ ହୋଇଯିବ। ଏଭଳି ସୂକ୍ଷ୍ମ ରୁଚି ଆସିଲେ ମାଦକଦ୍ରବ୍ୟ ପ୍ରତି ଆଉ ଅଯଥା ଆଗ୍ରହ ରହିବ ନାହିଁ।

ପର୍ଯ୍ୟବେକ୍ଷଣ କରି ଦେଖାଯାଇଛି ଯେ, ଆମର ସହର ବଜାରମାନଙ୍କରେ ମଦ ଦୋକାନ ଯେତେ ସଂଖ୍ୟାରେ ରହିଛି, ଅନ୍ୟାନ୍ୟ ସୌଖୀନ ପାନୀୟ ଦ୍ରବ୍ୟ ସେତେ ପରିମାଣରେ କୋଉଠି ବିକ୍ରୀ ହେଉ ନାହିଁ। ସୁଲଭ ମୂଲ୍ୟର ସୁସ୍ୱାଦୁ ଥଣ୍ଡା ଦୁଗ୍ଧ ଓ ବିଭିନ୍ନ ଫଳରସ ମଧ୍ୟ ବହୁ ପରିମାଣରେ ଯଦି ବିକ୍ରୀ ହେବାର ବ୍ୟବସ୍ଥା ହୁଅନ୍ତା ଏବଂ ସହରର ଗୋଟିଏ ଗୋଟିଏ ଛକ ଜାଗାରେ ଦୃଶ୍ୟମାନ ହେଲା ଭଳି ଆମର ଯୁବକ ଯୁବତୀମାନେ ଏକତ୍ର ଦଳ ଦଳ ହୋଇ ଅବସରକାଳୀନ ଆମୋଦ ଭିତରେ ସେହିସବୁ ପୁଷ୍ଟିକାରକ ବା ସୌଖୀନ ପାନୀୟ ଗ୍ଲାସ୍ ଧରି ବସି ପାନ କରୁଥାନ୍ତେ ଓ ସାହିତ୍ୟ ଧର୍ମ, ଦର୍ଶନ, ରାଜନୀତି; ସମାଜନୀତି ବା ବ୍ୟକ୍ତିଗତ ଅନୁଭୂତି ଅଭିଜ୍ଞତାଗୁଡ଼ିକ ଉପରେ ଆଳାପ ସଂଳାପ କରୁଥାନ୍ତେ, ତେବେ ଏହା ମଧ୍ୟ ଫେସନରେ ପରିଣତ ହୋଇଯାନ୍ତା। ତା'ହେଲେ, ମଦ ଗ୍ଲାସ ଧରି ବସିବାର ମନୋଭାବ ହୁଏତ ସେମାନଙ୍କର ଅନେକ କମିଯାନ୍ତା।

ଏସବୁ ବ୍ୟତୀତ, ଆମର ଆଉ ଗୋଟିଏ ଚିନ୍ତାର ବିଷୟ ହେଲା-ସାମାଜିକ ସ୍ତରରେ ଅତି ଦୀନହୀନ ଜୀବନଯାପନ କରୁଥିବା ହରିଜନ ଓ ଆଦିବାସୀମାନେ ଭୟଙ୍କର ଭାବେ ମଦ୍ୟପାନ କରୁଛନ୍ତି। ଯାହା ଫଳରେ ସେମାନଙ୍କର ସ୍ୱଳ୍ପ ଉପାର୍ଜନ ସେହି ମଦ୍ୟପାନରେ ଖର୍ଚ୍ଚ ହୋଇଯାଉଛି ଓ ସେମାନେ କ୍ରମେ ଦରିଦ୍ରତମ ଅବସ୍ଥାକୁ ଓହ୍ଲାଇ ଯାଉଛନ୍ତି। ବହୁ କ୍ଷେତ୍ରରେ ସେମାନଙ୍କର ସ୍ୱାସ୍ଥ୍ୟ ନଷ୍ଟ ହୋଇଯାଉଛି। ସରକାର ଏମାନଙ୍କ ମଦ୍ୟପାନ ବିଷୟରେ ଖୁବ୍ ଚିନ୍ତିତ ମନେ ହେଉଛନ୍ତି।

ବହୁକାଳରୁ ଆଦିବାସୀମାନେ ମଦ ପିଇ ଆସୁଛନ୍ତି ଓ ମଦ୍ୟକୁ ସେମାନେ ଏକ ଧାର୍ମିକବସ୍ତୁ ବୋଲି ମଧ୍ୟ ମନେ କରନ୍ତି। ସେମାନଙ୍କର ପୂଜାପାର୍ବଣରେ ମଦ୍ୟ ମଧ୍ୟ ପବିତ୍ରବସ୍ତୁ ରୂପେ ଦେବତାଙ୍କୁ ଅର୍ପିତ ହୁଏ। ସେମାନେ ଏହି ମଦକୁ ନିଜେ

ପ୍ରସ୍ତୁତ କରନ୍ତି ଘରେ ଘରେ। ହାଣ୍ଡିଆ, ମହୁଲୀ ଓ ସଲପ ମଦ ବା ଖଜୁରୀ ରସରୁ ପ୍ରସ୍ତୁତ ତାଡ଼ି ଏମାନଙ୍କର ନିତ୍ୟବ୍ୟବହାର୍ଯ୍ୟ ମଦ୍ୟ, ବହୁ ପୁରାକାଳରୁ। ତେଣୁ ଆଦିବାସୀ ସମାଜରୁ ମଦ୍ୟପାନ ଅଭ୍ୟାସକୁ ଦୂରୀକରଣ କରିବା ଏତେ ସହଜ ନୁହେଁ। କିନ୍ତୁ ଏଠି ମଧ୍ୟ ଆମେ ସେହି ଯୁକ୍ତିଯୁକ୍ତ ମଧ୍ୟମପନ୍ଥା ଗ୍ରହଣ କଲେ ସୁଫଳ ମିଳିବ। ସେମାନଙ୍କ ଭିତରେ ଅର୍ଥନୈତିକ ଉପାର୍ଜନର ପନ୍ଥା ବହୁ ପରିମାଣରେ ଖୋଲି ସେମାନଙ୍କୁ ଶ୍ରମରେ ନିଯୁକ୍ତ କରିବାକୁ ହେବ ଏବଂ ସେମାନଙ୍କ ଭିତରେ ଉପଯୁକ୍ତ ଶିକ୍ଷା ପ୍ରସାର କରିବାକୁ ହେବ। ଆଇନ ଦ୍ୱାରା ମଦ୍ୟପାନ ନିଷିଦ୍ଧ ନ କରି ସରକାରଙ୍କ ଦଳୀୟ ସଚ୍ଚୋଟ କର୍ମୀମାନଙ୍କ ସାହାଯ୍ୟରେ ଗାଁ ଗାଁରେ ବ୍ୟକ୍ତିଗତ ସମ୍ପର୍କ ସ୍ଥାପନ ଦ୍ୱାରା ଅତ୍ୟଧିକ ମାତ୍ରାହୀନ ମଦ୍ୟପାନ ବିରୋଧରେ ମନୋଭାବ ସୃଷ୍ଟି କରିବାକୁ ହେବ। ଏହାଦ୍ୱାରା କ୍ରମେ କ୍ରମେ ବିଳମ୍ବ ହେଉ ପଛେ-ମଦ ପ୍ରତି ଆଉ ବିଶେଷ ଆଗ୍ରହ ବା ଆକର୍ଷଣ ରହିବ ନାହିଁ। ଆମେ ଯଦି ବାସ୍ତବ ଦୃଷ୍ଟିକୋଣରୁ କିଛି କରିବାକୁ ଚାହୁଁ-ତେବେ ଆଇନ ଦ୍ୱାରା ଜବରଦସ୍ତି ନିଶାଦ୍ରବ୍ୟ ଉଠାଇ ଦେବାକୁ ନ ଯାଇ-ନିଶାଦ୍ରବ୍ୟ ବିରୋଧରେ ଶାନ୍ତ ଓ ଶିଷ୍ଟ ଭାବେ ଅନୁକୂଳ ମନୋଭାବ ସୃଷ୍ଟି ଦିଗରେ କାର୍ଯ୍ୟକରିବା ଉଚିତ ହେବ। ତା' ଫଳରେ ନିଶା ବ୍ୟବହାର ବହୁ ଭାବେ ନିୟନ୍ତ୍ରିତ ହୋଇଯିବ, ସନ୍ଦେହ ନାହିଁ।

**

# ନିଦ୍ରାଳୁ ଧାର୍ମିକ ଜନେ

ଆଜିକାଲି ଆମ ଦେଶରେ ଲୋକଙ୍କ ଧର୍ମଭାବଟା ବହୁତ ବେଶି ବଢ଼ିଯାଉଛି ବୋଲି ସନ୍ଦେହ ହେଉଛି। ବିଶେଷତଃ ସହରମାନଙ୍କରେ ଶିକ୍ଷିତ, ଉଚ୍ଚଶିକ୍ଷିତ, ମଧ୍ୟବିତ୍ତ ଓ ଧନୀସୁଭଗ ବ୍ୟକ୍ତିମାନେ ଧର୍ମ ବିଷୟରେ ବହୁତ ମାତାମାତି କରିବାର ଦେଖାଯାଉଛି ଏବଂ ଏହି ହଠାତ୍ ଜାଗରିତ ଉଗ୍ର ଧର୍ମପିପାସାକୁ ଚରିତାର୍ଥ କରିବା ଲାଗି ଦେଶସାରା ମଧ୍ୟ ବହୁ ଧର୍ମଗୁରୁଙ୍କର ଆବିର୍ଭାବ ଘଟିଚାଲିଛି। ଏହି ଧର୍ମଗୁରୁମାନେ ସହସ୍ର ସହସ୍ର ନରନାରୀଙ୍କୁ ଶିଷ୍ୟଶିଷ୍ୟାରୂପେ ଗ୍ରହଣ କରି ସେମାନଙ୍କୁ ଧର୍ମଶିକ୍ଷା ଦେଉଛନ୍ତି। ଏହି ଧର୍ମଗୁରୁମାନଙ୍କ ମଧ୍ୟରୁ ଅଧିକାଂଶ ପୁଣି ନାନାଦି ଯୌଗିକ କ୍ରିୟାକାଣ୍ଡରେ ବା ଅଲୌକିକ ଶକ୍ତି ପ୍ରଦର୍ଶନରେ ସୁନିପୁଣ। ଏମାନେ ନିଜର ଶିଷ୍ୟମାନଙ୍କୁ ସର୍ବ ବିପଦ ଆପଦ ସଂକଟରୁ ଅଲୌକିକ ମହିମା ବଳରେ ରକ୍ଷା କରିବେ ବୋଲି ଭରସା ଦେଇଥାନ୍ତି। ଲଟେରୀ, ମକଦ୍ଦମା, ନିର୍ବାଚନ ଇତ୍ୟାଦିରେ ଜିତିବା ଲାଗି କିମ୍ବା ରୋଗ-ଶୋକ ଇତ୍ୟାଦିରୁ ରକ୍ଷାପାଇବା ଲାଗି କିମ୍ବା ଭୂତ, ପ୍ରେତ, ଡାହାଣୀ, ଚିରୁଗୁଣୀଙ୍କ କବଳରୁ ଅଥବା ପୋଲିସ, ଭିଜିଲାନ୍ସ, ଇନ୍‌କମ୍‌ଟିକସ୍‌ବାଲାଙ୍କ ଦୌରାତ୍ମ୍ୟରୁ ରକ୍ଷାପାଇବା ଲାଗି ଧନ, ମାନ, ଯଶ, କ୍ଷମତାଦିରେ ଆହୁରି ଉପରକୁ ଉଠିବା ଲାଗି ବହୁ ଲୋକ ଆଶାନ୍ୱିତ ହୋଇ ଏଇ ଗୁରୁମାନଙ୍କର ଶରଣାପନ୍ନ ହୋଇଥାନ୍ତି। ଏବଂ ଏହି ଗୁରୁମାନେ ସେମାନଙ୍କୁ ଗୋଟିଏ ନିର୍ଭର ପ୍ରତିଶ୍ରୁତି ଦେଇଥାନ୍ତି ପରୋକ୍ଷରେ ବା ପ୍ରତ୍ୟକ୍ଷରେ—ମୋ ଉପରେ ବିଶ୍ୱାସ ରଖ। ମୋତେ ସବୁ ସମର୍ପଣ କରି ଦେ। ମୁଁ ତୋତେ ସର୍ବ ଆପଦବିପଦ, ପାପ ଇତ୍ୟାଦିରୁ ରକ୍ଷାକରିବି। ଆଦୌ ଶୋଚନା କରନାହିଁ। ଯାହା ତୁମକୁ ଭଲ ଲାଗୁଛି, କରିଯାଅ।

କହିବା ବାହୁଲ୍ୟ ଯେ, ଏପରି ଦାୟିତ୍ୱ ଯଦି ସତକୁ ସତ କିଏ ଗ୍ରହଣ କରନ୍ତି ବା ଏପରି ନିର୍ଭର ପ୍ରତିଶ୍ରୁତି ଯଦି ସତକୁ ସତ କିଏ ଦିଅନ୍ତି, ତା'ହେଲେ ଏହି ଦୁଃଖସଂକଟପୂର୍ଣ୍ଣ ସଂସାରରେ ସେମନ୍ତ ଗୁରୁଙ୍କର ଶିଷ୍ୟ ହେବାଠାରୁ ବଳି ଆଉ ନିରାପଦ ବିଷୟ କିଛି ନାହିଁ। ଏବଂ ନିଶ୍ଚିତଭାବେ ଏଇ ଆଧୁନିକ ଗୁରୁମାନେ ଲୋକଙ୍କର ଏହି ଗୁରୁଦାୟିତ୍ୱଟିକୁ ନିଜ ଉପରକୁ ନେଇଅଛନ୍ତି। ସେଥିଲାଗି ଦେଶସାରା ଗୁରୁଶିଷ୍ୟ ଲୀଳା ଦିନକୁଦିନ ବଢ଼ି ଚାଲିଛି। ଜଣେ ଗୁରୁଙ୍କର ଶିଷ୍ୟସଂଖ୍ୟା ଅଗଣନ।

ଖାଲି ବଙ୍ଗଦେଶୀୟ ଲୋକଙ୍କୁ ଶିଷ୍ୟକଲେ ଏହି ଗୁରୁମାନଙ୍କର ଗୁରୁତ୍ୱ ପ୍ରତିପାଦିତ ହୋଇ ପାରେନା । କେଉଁ ଗୁରୁଙ୍କର କେତେ ସଂଖ୍ୟକ ଗୋରା ଚମଡ଼ା ଶିଷ୍ୟଶିଷ୍ୟା ଅଛନ୍ତି ତାରି ଉପରେ ଗୁରୁଙ୍କର ମହିମା ପ୍ରତିଷ୍ଠିତ ହୋଇଥାଏ । ଅବଶ୍ୟ ବର୍ତ୍ତମାନ ସବୁ ଗୁରୁଙ୍କ ପାଖରେ ଦରିଆପାରି ଲୋକେ ଶରଣାଗତ ହୋଇଛନ୍ତି । ଏବଂ ଅଧିକାଂଶ ଗୁରୁ ମଧ୍ୟ ଦରିଆପାରି ହୋଇ ମ୍ଳେଚ୍ଛଦେଶଗୁଡ଼ିକରେ ପଦାର୍ପଣ କରି ସେଠାରେ ଭାରତର ସନାତନ ଅଧ୍ୟାତ୍ମବାଣୀ ପ୍ରଚାର କରି ଆସିଛନ୍ତି । ଏ ଉଭାରୁ ଦେଶସାରା ଧର୍ମସଭାମାନ ଚାଲିଛି । ଯୋଗକେନ୍ଦ୍ରମାନ ଚାଲିଛି, ଧ୍ୟାନ ମନ୍ଦିରମାନ ମଧ୍ୟ ଖୋଲାଯାଉଛି । ବହୁ ଧର୍ମଗୋଷ୍ଠୀର କୀର୍ତ୍ତନ, ଭଜନ, ପୂଜନ, ସ୍ତୁତିଝଙ୍କାରରେ ସାରା ଦେଶ ଦିବ୍ୟଧ୍ୱନି କୋଳାହଳରେ ମୁଖରିତ । ଏସବୁ ଲାଗି ଅର୍ଥାଭାବ ଘଟୁନାହିଁ ।

ଏହାଛଡ଼ା ଆଜିକାଲି ବିଭିନ୍ନ ପର୍ବପର୍ବାଣୀ ମଧ୍ୟ ଖୁବ୍ ଜାକଜମକରେ ପାଳିତ ହେଉଛି । ପ୍ରତି ସାଇ, ଗଳି, ବଜାରାଦିରେ କେତେ ଯେ ଗଣେଶ ମେଢ଼, କାର୍ତ୍ତିକ ମେଢ଼; ଦୁର୍ଗାମେଢ଼, ସରସ୍ୱତୀ ମେଢ଼, ବିଶ୍ୱକର୍ମା ମେଢ଼; ଲକ୍ଷ୍ମୀ ମେଢ଼– ତାର ଇୟତ୍ତା ନାହିଁ । ବଜାରରେ ସବୁ ଦ୍ରବ୍ୟ ମହର୍ଗ ସତ୍ତ୍ୱେ ଏବଂ ଲୋକଙ୍କର କ୍ରୟଶକ୍ତି କ୍ରମଶଃ ହ୍ରାସ ପାଇବା ସତ୍ତ୍ୱେ ଏ ସବୁ ଲାଗି ଅର୍ଥର ଅଭାବ ରହୁନାହିଁ ।

ଏସବୁ ଦେଖିଲେ ଆପାତତଃ ମନେହୁଏ ଦେଶରେ ବୋଧହୁଏ, ଆଉ ଥରେ ଧର୍ମଭାବର ଏକ ବିପ୍ଳବାତ୍ମକ ଅଭ୍ୟୁଦୟ ଆରମ୍ଭ ହୋଇଗଲାଣି । ଭାରତବର୍ଷର ଯାହା ମୂଳ ପ୍ରକୃତି, ସେହି ଆଧ୍ୟାତ୍ମିକଭାବ ହିଁ ବୋଧହୁଏ ବହୁକାଳ ପରେ ପୁନର୍ବାର ଜାଗ୍ରତ ହୋଇ ଉଠୁଛି । ଏପରି ଭାବିବାକୁ ସୁଖ ଲାଗେ । ଏପରି ଯଦି ସତରେ ଘଟୁଥାଏ, ତା'ହେଲେ ଏହା ଅତି ଆଶା ଆଉ ଆନନ୍ଦର କଥା ହୁଅନ୍ତା, ଏଥିରେ ସନ୍ଦେହ ନାହିଁ ।

କିନ୍ତୁ ବର୍ତ୍ତମାନ ସମଗ୍ର ଦେଶର ରୀତିଗତିକୁ ଦେଖିଲାପରେ ମନରେ କେତେକ ସନ୍ଦେହ ଉଠୁଛି । ଏହିସବୁ ଧର୍ମୀୟ କୋଳାହଳ ଭିତରେ ବି ମନେହେଉଛି ସତେ କି ସମଗ୍ର ଜାତିକୁ ଗୋଟାଏ ଘୋର ତାମସିକ ନିଦ୍ରା ଘାରିରହିଛି ଏବଂ ସେଇ ନିଦ୍ରାଳୁ ବ୍ୟକ୍ତିମାନେ ହିଁ ଶୋଇବା ଭିତରେ ଧର୍ମକୁ ବିଳିବିଳାଉଛନ୍ତି । ସ୍ୱାମୀ ବିବେକାନନ୍ଦ କହିଥିଲେ ଯେ, ଯଦି କୌଣସି ବ୍ୟକ୍ତି ବା ଜାତିଭିତରେ ସାମାନ୍ୟ ହେଲେ ବି ସତକୁ ସତ ଧର୍ମଭାବ ଜାଗ୍ରତ ହୋଇଥାଏ; ତେବେ ସେହି ମହାନ୍ ଶକ୍ତି ବଳରେ ସେହି ବ୍ୟକ୍ତି ଓ ଜାତିର ଚେତନାରେ ଏକ ତୁମୁଳ ପରିବର୍ତ୍ତନ ଘଟିଯିବ । ବ୍ୟକ୍ତି ଓ ଜାତିର ମାନସିକ, ଶାରୀରିକ ଓ ପ୍ରାଣଗତ ଜଡ଼ତା ବିଗଳିତ ହୋଇଯିବ । ତା' ସମ୍ମୁଖରେ ବିକାଶର ଓ ଉନ୍ମେଷର ନୂଆ ନୂଆ ଦିଗନ୍ତମାନ ଖୋଲିଯିବ । ଯଥାର୍ଥ ଧାର୍ମିକ ଚେତନା ଭିତରୁ ଜନ୍ମନେବ ପ୍ରେମ, ଅହିଂସା, ତ୍ୟାଗ ଓ ନୈତିକତା ପ୍ରଭୃତି ଦିବ୍ୟଗୁଣଗୁଡ଼ିକ । ଚିନ୍ତାରେ, ଅନୁଭୂତିରେ ଆଉ କର୍ମରେ ଆସିବ ଅଫୁରନ୍ତ ଦୀପ୍ତି,

ଉତ୍ସାହ, ଉନ୍ମାଦନା ଓ ନବନବ ସୃଜନମୂଳକ ଶୁଭ ଏଷଣାମାନ ଆପଣାଛାଏଁ ଜାଗିଉଠିବ। ତା'ଫଳରେ ଅର୍ଥନୀତି, ରାଜନୀତି, ସମାଜନୀତି, ସାହିତ୍ୟ, ସଂସ୍କୃତି, ବିଜ୍ଞାନ, ଶିଳ୍ପ ଓ ସଙ୍ଗଠନାଦି ସବୁକ୍ଷେତ୍ରରେ ସେଭଳି ନୂତନ ଶକ୍ତି ଓ ଔଜ୍ଜ୍ୱଲ୍ୟ ଫୁଟିଉଠିବ।

କିନ୍ତୁ ଦେଶରେ ବର୍ତ୍ତମାନ ମୋଟାମୋଟି କଣ ଦେଖାଯାଉଛି ? ସର୍ବତ୍ର କେବଳ ଯେକୌଣସି ଉପାୟରେ ନିଜେ ବଞ୍ଚିବା ଲାଗି, ନିଜେ ପ୍ରତିଷ୍ଠିତ ହେବା ଲାଗି, ଦୁର୍ବାର ଉଗ୍ର ଆକାଂକ୍ଷା ପ୍ରକାଶ ପାଉଛି। ଅନ୍ୟ ମଣିଷଟି ମରୁଛି କି ବଞ୍ଚୁଛି, ସେ ବିଷୟରେ କାହାର ତ ନିଘାନାହିଁ! ବ୍ୟବସାୟୀ, ସରକାରୀ କର୍ମଚାରୀ, ଶିକ୍ଷକ, ଅଧ୍ୟାପକବୃନ୍ଦ, ଏପରିକି ସାହିତ୍ୟିକ ବୈଜ୍ଞାନିକ ଓ କଳାକାରବୃନ୍ଦ, କେହି ତ ନିଜ କଥାଟି ଛଡ଼ା ଅନ୍ୟକିଛି ଭାବି ମଧ୍ୟ ପାରୁନାହାନ୍ତି! ରାଜନୀତିବାଲାଙ୍କ କଥା ଅବା କାହିଁକି କହିବା ? ସର୍ବତ୍ର କେବଳ ନିଜର ଲାଭ ଆଉ ନିଜର ଶୁଭ ମନାସ। ପୁଣି ଯଦି ଯାହା କିଛି ଅନୁଷ୍ଠାନ, ଗୋଷ୍ଠୀ ବା ଦଳ ଇତ୍ୟାଦି ସାମୂହିକ ସଙ୍ଗଠନ ସମ୍ଭବ ହେଉଛି ତା' ମଧ୍ୟ ଏହି ଗୋଷ୍ଠୀଗତ କ୍ଷମତାବଳରେ ନିଜର ସ୍ୱାର୍ଥସାଧନ ଉଦ୍ଦେଶ୍ୟରେ। ଧାର୍ମିକ ଜୀବନର ମୂଳ ଅନୁଭବ ହେଲା ଏହି ବସୁଧାକୁ ଈଶ୍ୱରମୟ ବା ଈଶ୍ୱରଙ୍କର ବୋଲି ଭାବିବା ଏବଂ ସେହି ଭାବନା ହେତୁ ଏଠି କେହି କାହାର ଛଡ଼ାଇ ନ ନେବା, କେହି କାହାକୁ ପ୍ରବଞ୍ଚିତ ନ କରିବା ଓ ସବୁ ବିଷୟ ଏଠି ସମାନଭାବରେ ବଣ୍ଟନ କରି ଭୋଗ କରିବା। କମ୍ୟୁନିଷ୍ଟ ଜୀବନ ଦର୍ଶନରେ ଈଶ୍ୱର ନାହାନ୍ତି। କିନ୍ତୁ ଜୀବନକୁ ସ୍ୱାର୍ଥପର ଭାବେ ନ ବଞ୍ଚି, ସାମୂହିକ ମଙ୍ଗଳ ଦୃଷ୍ଟିରୁ ବଞ୍ଚିବା ଲାଗି ଓ ସେହି ବାଟରେ ଚେତନାର ଉନ୍ମୀଳନ ଲାଗି ସେଥିରେ ବିଧାନ ରହିଛି ଏବଂ ସେ ସମାଜରେ ସେଥିପାଇଁ ନାନା ଭ୍ରମ ପ୍ରମାଦ ସତ୍ତ୍ୱେ ବି ସଚେତନଭାବେ ସାମୂହିକ ଉଦ୍ୟମ ମଧ୍ୟ ଚାଲିଅଛି।

କିନ୍ତୁ ଆମର ଏହି ଈଶ୍ୱରପରାୟଣ ଧାର୍ମିକ ଦେଶରେ ଆମେ କେଉଁ ଚେତନାକୁ ମୂଳକରି, ସାମୂହିକ ଜୀବନକୁ କିପରି ଭାବେ ବଞ୍ଚୁଅଛୁ ? ଲୋଭ ଈର୍ଷା, କ୍ଷୁଦ୍ରତା, ନୀଚତା, ପ୍ରତାରଣା, ପ୍ରତିହିଂସା, ମିଥ୍ୟାଚାର, ଭଣ୍ଡତା ଆଦି ଅତି ନିମ୍ନସ୍ତରର ଦୁର୍ଗୁଣଗୁଡ଼ିକ କ୍ରମଶଃ ଆମର ଜାତୀୟ ଜୀବନର ମୂଳ ଗଣ୍ଡିକୁ ଖାଇ ଖାଇ ଗଲାଣି ଏବଂ ଆମର ବର୍ତ୍ତମାନ ସାମାଜିକ ଜୀବନର ପ୍ରତିଟି ସ୍ତରରେ ତାର ଭୂରିଭୂରି ନିର୍ଲଜ ପ୍ରମାଣ ବେଳୁବେଳ ଅତ୍ୟନ୍ତ ଦୃଶ୍ୟମାନ ହୋଇଗଲାଣି। ଏପରିସ୍ଥଳେ, ଦେଶରେ ବର୍ତ୍ତମାନ ବହୁ ଧର୍ମଗୁରୁ ଓ ଶିଷ୍ୟଶିଷ୍ୟାଙ୍କର ଧାର୍ମିକ କୋଳାହଳ ଦେଖି ଶୁଣି, ଆମେ କିପରି କହିବା ଯେ ଦେଶରେ ଏବେ ଏକ ଧାର୍ମିକ ପୁନର୍ଜାଗରଣ ଆରମ୍ଭ ହୋଇଯାଇଛି ?

ଏଠି ଆଉ ଗୋଟିଏ କଥା କହିବାକୁ ଅନୁମତି ମାଗୁଛି। ଆମର ଏଇ ଓଡ଼ିଶାରେ ବିଭିନ୍ନ ଧର୍ମଗୁରୁଙ୍କର ବହୁ ଅନୁରକ୍ତ ଶିଷ୍ୟଶିଷ୍ୟାଙ୍କ ସମ୍ପର୍କରେ ମୁଁ ଆସିଛି। ସେମାନେ ପ୍ରାୟ ସମସ୍ତେ ଶିକ୍ଷିତ ଓ ଉଚ୍ଚ ଶିକ୍ଷିତ ! ସେମାନଙ୍କ ସଙ୍ଗେ ମିଶିବାପରେ ମୁଁ ଜାଣିବାକୁ ପାଇଲି ଯେ ସେମାନଙ୍କ ଭିତରୁ ଶତକଡ଼ା ଅଠାନବେ ଜଣ କେହି ରାମକୃଷ୍ଣ ପରମହଂସ, ସ୍ୱାମୀ ବିବେକାନନ୍ଦ, ସ୍ୱାମୀ ଦୟାନନ୍ଦ, ବାଳଗଙ୍ଗାଧର ତିଳକ, ଶ୍ରୀଅରବିନ୍ଦ, ମହାତ୍ମା ଗାନ୍ଧୀ ଓ ଆଚାର୍ଯ୍ୟ ବିନୋବା ଭାବେଙ୍କ ସମ୍ପର୍କରେ କିଛି ଜାଣି ନାହାନ୍ତି ଓ ସେମାନଙ୍କର କୌଣସି ବିଷୟ ମଧ୍ୟ ପଢ଼ି ନାହାନ୍ତି। ସେମାନଙ୍କ ସମ୍ପର୍କରେ ଜ୍ଞାତବ୍ୟ ହେବା ଲାଗି ସେମାନଙ୍କର କୌଣସି ପ୍ରବୃତ୍ତି ମଧ୍ୟ ହୋଇନାହିଁ କି ହେଉନାହିଁ। ଏପରି କି ଭଗବାନ ରାମଚନ୍ଦ୍ର, ଶ୍ରୀକୃଷ୍ଣ, ବା ବୁଦ୍ଧଙ୍କ ସମ୍ବନ୍ଧେ ମଧ୍ୟ ସେମାନଙ୍କର ବିଶେଷ କିଛି ଅନୁରକ୍ତି ବା ଆଗ୍ରହ ନାହିଁ।

ଆଚ୍ଛା ! ତା'ହେଲେ ସୁଧୀବୃନ୍ଦ ବିଚାର କରନ୍ତୁ— ଆଧୁନିକ ଭାରତରେ ଲକ୍ଷେ ଧର୍ମଗୁରୁଙ୍କର ଆବିର୍ଭାବ ହେଉ ପଛେ, କିନ୍ତୁ ଉପରୋକ୍ତ ମହାତ୍ମାମାନଙ୍କୁ ଭୁଲିଯାଇ ସତରେ କଣ କୌଣସି ଭାରତୀୟ ଯଥାର୍ଥ ଧର୍ମମାର୍ଗର ସନ୍ଧାନ ପାଇପାରିବ ?

❋❋

# ଶିକ୍ଷା କ୍ଷେତ୍ରରେ ଯାନ୍ତ୍ରିକତା

ଗୋଟିଏ ସମ୍ବାଦରୁ ଜଣାଗଲା ଯେ, ବର୍ତ୍ତମାନ ମାର୍କିନ ଯୁକ୍ତରାଷ୍ଟ୍ରରେ ପ୍ରତି ଶହେ ଜଣରେ ଦଶ ଜଣ ଲୋକ ପ୍ରକୃତ ଅର୍ଥରେ ନିରକ୍ଷର। ଏମାନଙ୍କର ମୋଟ ସଂଖ୍ୟା କୁଆଡ଼େ ଦୁଇ କୋଟି ତିନି ଲକ୍ଷ। ଏହି ନିରକ୍ଷର ବ୍ୟକ୍ତିମାନେ ରେଳବାଇ ଟାଇମ୍ ଟେବୁଲଟିଏ ପଢ଼ି ବୁଝି ପାରିବେ ନାହିଁ କିମ୍ବା ଦରଖାସ୍ତ ଖଣ୍ଡିଏ ମଧ ଲେଖି ପାରିବେ ନାହିଁ। ଏତାଦୃଶ ନିରକ୍ଷରତା ଦୋଷର କାରଣ ସ୍ୱରୂପ ସେ ଦେଶର ଶିକ୍ଷାବିଦ୍‌ଗଣ ଓ ଅଭିଭାବକଗଣ ବହୁ ପ୍ରକାର ମତାମତ ବ୍ୟକ୍ତ କରିଛନ୍ତି। ସେ ଭିତରୁ ଦୁଇଟି ମୁଖ୍ୟ ହେତୁ ହେଲା ଉତ୍ତରପତ୍ରରେ ପରୀକ୍ଷାର୍ଥୀମାନଙ୍କୁ କିଛି ଲେଖିବାକୁ ପଡୁନାହିଁ। କେବଳ ପ୍ରଶ୍ନଗୁଡ଼ିକରେ ଠିକ୍ ବା ଭୁଲ ବୋଲି ଚିହ୍ନ ଦେଇଦେଲେ ପିଲା ପାଶ୍ କରିଯାଉଛି। ଆଉ ଗୋଟିଏ କାରଣ ହେଲା ସେ ଦେଶରେ ବର୍ତ୍ତମାନ ଗୋଟିଏ ବଡ଼ ଝୁଙ୍କ ଉଠିଛି ସିନେମା, ଟେଲିଭିଜନ ଓ ଟେପ୍‌ରେକର୍ଡ଼ର ଯୋଗେ ଶିକ୍ଷାଦାନ ପଦ୍ଧତି ଖୁବ୍ ଶୀଘ୍ର ଲୋକଙ୍କୁ ଶିକ୍ଷା ଦେଇ ପାରୁଛି। ତେଣୁ ସେ ଦେଶରେ ଆଉ ଗୋଟିଏ ମତବାଦ ଖୁବ୍‌ପ୍ରବଳ ଓ ସରବ ହୋଇ ଉଠିଛି ଯେ ବିନା ଶିକ୍ଷକରେ ଯାନ୍ତ୍ରିକ ଉପାୟରେ ପିଲାଙ୍କୁ ଖୁବ୍ ସହଜରେ ଓ ସଫଳଭାବେ ଶିକ୍ଷା ଦେଇ ହେବ। ଏଥିରେ ମଧ ବହୁସ୍ଥାନରେ ପରୀକ୍ଷା ନିରୀକ୍ଷା ଚାଲିଛି ଓ ଆଶୁ ସଫଳତା ଦେଖା ଦେଇଛି।

କିନ୍ତୁ ଏହି ବ୍ୟବସ୍ଥା ଉପରେ ଆସ୍ଥା ବଢ଼ିବା ଫଳରେ ଦେଖା ଦେଇଛି ଏବଂବିଧ କୁଫଳର ସୂଚନା। ଅଥଚ ଏ ଦିଗକୁ ତୀକ୍ଷ୍ଣ ସଜାଗ ଦୃଷ୍ଟି ନ ଫେରାଇ ଆମ ଦେଶରେ ମଧ ଦଳେ ଲୋକ ସେହି ପଦ୍ଧତିକୁ ଭଲ ପଦ୍ଧତି ବୋଲି ବିଚାରୁଛନ୍ତି। ପ୍ରଥମ କଥା ହେଲା କେତେକ ପ୍ରଶ୍ନ ତିଆରି କରି ସେଗୁଡ଼ିକ ଭିତରୁ କୋଉଟା ଠିକ୍ କୋଉଟା ଭୁଲ ମାର୍କ କରିବା ପଦ୍ଧତି ହୁଏ ତ ଆଂଶିକ ଭାବେ ଭଲ ବ୍ୟବସ୍ଥା। ତଦ୍ୱାରା ପରୀକ୍ଷାର୍ଥୀର ଉପସ୍ଥିତ ବୁଦ୍ଧି ଓ ଆଶୁ ସିଦ୍ଧାନ୍ତ ନେବାର କ୍ଷମତା ଜଣାପଡ଼େ। ମାତ୍ର ଯଦି ଗୋଟିଏ ପେପରରେ ସମୁଦାୟ କିମ୍ବା ଅଧିକାଂଶ ପ୍ରଶ୍ନ ଏହି ରୂପେ ଥାଏ ତେବେ ତାର ଫଳ ଠିକ୍ ଓଲଟା ହୋଇଯାଏ। ଗୋଟିଏ ବିଷୟ କେବଳ ଠିକ୍ ବା॰ ଭୁଲ ଏତିକି ଜାଣିବାରେ ଜ୍ଞାନ ସମାପ୍ତ ହୁଏ ନାହିଁ। କାହିଁକି ଠିକ୍ ବା କାହିଁକି ଭୁଲ ତା'ର କାରଣଗୁଡ଼ିକ ନିର୍ଦ୍ଦେଶ କରିବା ଦ୍ୱାରା ପରୀକ୍ଷାର୍ଥୀର ଯଥାର୍ଥ ବୌଦ୍ଧିକ ବିଶ୍ଳେଷଣକାରୀ କ୍ଷମତା ଓ ତଥ୍ୟଜ୍ଞାନ ବା ତତ୍ତ୍ୱବିଜ୍ଞାନ ପରିସୀମା ବୁଝାପଡ଼େ

ଏବଂ ସେଗୁଡ଼ିକୁ ଯୁକ୍ତି ଯୁକ୍ତ ଭାବେ ଉଚିତ ସଙ୍ଗତି ରକ୍ଷାକରି ଲେଖିବା ଦ୍ୱାରା ଓ କହିବା ଦ୍ୱାରା ତାର ବିଷୟବସ୍ତୁରେ କେତେଦୂର ପ୍ରବେଶ ଅଛି ସେ କଥା ଭଲ ଭାବେ ବୁଝାପଡ଼େ। ଏଥିପାଇଁ ଭାଷାଶିକ୍ଷା ବିଦ୍ୟାର୍ଜନର ଗୋଟିଏ ବିଶେଷ ଆବଶ୍ୟକୀୟ ଅଙ୍ଗ। ଭାଷା ଶିକ୍ଷା କରିବା ସଙ୍ଗେ ସଙ୍ଗେ, ଶିକ୍ଷାର୍ଥୀର ପ୍ରକାଶଭଙ୍ଗୀ ଓ ବାକ୍ୟ ରଚନା ଶୈଳୀ ମଧ ଶିକ୍ଷା ହୋଇଥାଏ। ଏତଦ୍ୱାରା ତାର ଚିନ୍ତାର ଶୃଙ୍ଖଳା, ପରିଚ୍ଛନ୍ନତା ଏବଂ ଔଚିତ୍ୟବୋଧ ମଧ ବଢ଼ିଥାଏ। ବିଷୟବସ୍ତୁ ବା ବକ୍ତବ୍ୟର ଉପସ୍ଥାପନ କ୍ଷମତା ମଧ ତଦ୍ୱାରା ପରୀକ୍ଷିତ ହୋଇଯାଏ। ଏହି ପ୍ରକାର ପ୍ରଶ୍ନୋତ୍ତରକୁ ସବ୍‌ଜେକ୍‌ଟିଭ୍ ପଦ୍ଧତି ଓ ଉପରୋକ୍ତ ପଦ୍ଧତିକୁ ଅବ୍‌ଜେକ୍‌ଟିଭ ପଦ୍ଧତି ବୋଲି କୁହାଯାଏ। ଆମର ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ଓ ସ୍କୁଲ ପରୀକ୍ଷାରେ ବର୍ତ୍ତମାନ ଅବ୍‌ଜେକ୍‌ଟିଭ୍ ପଦ୍ଧତି ସାମନ୍ୟ ଭାବେ ପ୍ରବେଶ କରିଛି ଏବଂ ଯେତିକି ପ୍ରବେଶ କରିଛି ତାହା ସେତିକିରେ ରହିବା ଉଚିତ। ଅବ୍‌ଜେକ୍‌ଟିଭ୍ ପଦ୍ଧତି ସଙ୍ଗେ ସବ୍‌ଜେକ୍‌ଟିଭର ପଦ୍ଧତି ମିଶି ରହିଲେ ଅଧିକ ସୁଫଳ ମିଳିଥାଏ। କିନ୍ତୁ ଆମ ଦେଶର ଦଳେ ଶିକ୍ଷାବିତ୍ ଅବ୍‌ଜେକଟିଭ୍ ଭାଗକୁ ବେଶି କରିବାକୁ ଏବେ ମଧ ପ୍ରବଣତା ଦେଖାଇଥାନ୍ତି। ସେମାନଙ୍କୁ ମାର୍କିନ ଯୁକ୍ତରାଷ୍ଟ୍ରର ଉପରୋକ୍ତ ସମ୍ବାଦ ସ୍ମରଣ କରାଇଦେବାର କଥା।

ଦ୍ୱିତୀୟ କଥା ହେଲା, ସିନେମା ଟେଲିଭିଜନ ବା ଟେପରେକର୍ଡ଼ ଦ୍ୱାରା ଅବଶ୍ୟ କିଛି ପରିମାଣରେ ଶିକ୍ଷାଲାଭ ହୋଇପାରେ। ମାତ୍ର ସେପରି ଶିକ୍ଷା ପୂର୍ଣ୍ଣାଙ୍ଗ ହୋଇପାରେ ନାହିଁ। ଯେ କୌଣସି ପ୍ରକାର ଶିକ୍ଷା ହେଉ ନା କାହିଁକି, ଏପରିକି ସାଇକେଲ ବା ମଟର ମରାମତି କାର୍ଯ୍ୟ ଶିକ୍ଷା ଭଳି ବୈଷୟିକ ଶିକ୍ଷାକୁ ମଧ କେବଳ ବିଷୟମୁଖୀ ହୋଇ ଶିକ୍ଷା କରିବା ଠିକ୍ ନୁହେଁ। ତାହା ଅତିମାତ୍ରାରେ ଯାନ୍ତ୍ରିକ ପଦ୍ଧତି ଭଳି ହୋଇଯାଏ ଏବଂ ବ୍ୟକ୍ତିତ୍ୱ ସମ୍ପର୍କବିହୀନ ଯେକୌଣସି ଶିକ୍ଷା କେବେ ମଙ୍ଗଳଜନକ ହୋଇପାରେ ନାହିଁ। ଭାରତବର୍ଷରେ ''ଗୁରୁବାଦ'' ଏକ ବିଶେଷ ବ୍ୟବସ୍ଥା ଓ ପରମ୍ପରା ! ଧର୍ମାନୁଷ୍ଠାନଠାରୁ କର୍ମାନୁଷ୍ଠାନ ପର୍ଯ୍ୟନ୍ତ ସବୁକ୍ଷେତ୍ରରେ ଶିକ୍ଷାର୍ଥୀକୁ ଗୁରୁଟିଏ ଖୋଜିବାକୁ ପଡ଼େ ଏବଂ ଶିକ୍ଷାର୍ଥୀ କେବଳ ବିଷୟଟିକୁ ଶିକ୍ଷାକରେ ନାହିଁ, ବିଷୟ ଶିକ୍ଷା ସଙ୍ଗେ ସଙ୍ଗେ ସେ ତାର ଶିକ୍ଷାଦାତା ଗୁରୁଙ୍କର ବ୍ୟକ୍ତିତ୍ୱ ସମ୍ପର୍କରେ ମଧ ଆସିଥାଏ। ତଦ୍ୱାରା ତାର ଚିତ୍ତଭୂମି ସ୍ନେହ, ଶ୍ରଦ୍ଧା, ଭକ୍ତି, କୃତଜ୍ଞତା, ବିନୟ ଓ ସେବାଭାବ ଦ୍ୱାରା ପରିଶୀଳିତ ହୋଇଯାଏ ଏବଂ ତାର ଶିକ୍ଷାଟି ମାନବୀୟ କଲ୍ୟାଣରେ ସହୃଦୟତାରେ ନିୟୋଜିତ ହୁଏ। ଯାନ୍ତ୍ରିକ ଶିକ୍ଷାରେ ଏହି ବିଶେଷ ଦିଗଟି ରହେ ନାହିଁ।

ତେବେ ଏକଥା ମଧ ସମାନ ସତ୍ୟ ଯେ, ଆମେ ବର୍ତ୍ତମାନ ଆମର ଶିକ୍ଷାଳୟଗୁଡ଼ିକରେ ଯାହା ଦେଖୁଛୁ, ସେଥିରେ ଶିକ୍ଷକ ଓ ଛାତ୍ର ଏକତ୍ର ଶିକ୍ଷା କ୍ଷେତ୍ରରେ ନିଯୁକ୍ତ ଥିଲେ ବି ପରସ୍ପରଠାରୁ ବହୁ ଅଂଶରେ ବିଚ୍ଛିନ୍ନ ରହିଛନ୍ତି ଏବଂ ସେମାନଙ୍କ

ମଧ୍ୟରେ ଏକ ଯାନ୍ତ୍ରିକ ସମ୍ପର୍କ ହିଁ ରହିଅଛି। ଛାତ୍ରଛାତ୍ରୀମାନେ ସେଠାରେ କେବଳ ଗୋଟିଏ ଗୋଟିଏ ରୋଲନମ୍ବର ମାତ୍ର ଏବଂ ଶିକ୍ଷକ ବା ଅଧ୍ୟାପକଟି ଶିକ୍ଷାଦାନ ବ୍ୟାପାରରେ ଗୋଟିଏ ବୃତ୍ତିଧାରୀ ବ୍ୟକ୍ତି ମାତ୍ର। ଏବଂ ଅଧିକାଂଶ ସ୍ଥଳରେ ଦେଖାଯାଏ ଯେ ଶିକ୍ଷକଟି ଯେଉଁ ବିଷୟରେ ଅଧ୍ୟାପନା କରୁଛନ୍ତି ସେହି ବିଷୟଟି ସଙ୍ଗେ ତାଙ୍କ ବ୍ୟକ୍ତିତ୍ୱର ଆଦୌ ସମ୍ପର୍କ ନାହିଁ। କିମ୍ବା ସେହି ବିଷୟଟି ପ୍ରତି ମଧ୍ୟ ତାଙ୍କର ଜ୍ଞାନୀଜନୋଚିତ କୌଣସି ଅନୁରକ୍ତି ବା ସରାଗ ନାହିଁ। ବହୁ କ୍ଷେତ୍ରରେ ଦେଖାଯାଏ, ମନସ୍ତତ୍ତ୍ୱ ପଢ଼ାଉଥିବା ଅଧ୍ୟାପକ ଜଣକ ନିଜେ ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ଜଣେ ଭାରସାମ୍ୟ ନ ଥିବା ବ୍ୟକ୍ତି। ସାହିତ୍ୟ ପଢ଼ାଉଥିବା ଅଧ୍ୟାପକ ଜଣକ, ଏତେ ରୁକ୍ଷ ସ୍ଥୂଳ ଭାବରସହୀନ ବ୍ୟକ୍ତି ଯେ ତାଙ୍କ ତୁଣ୍ଡରୁ ଶେଲୀ, ବାଇରନ, ବ୍ରାଉନିଂ ବା ଉପେନ୍ଦ୍ରଭଞ୍ଜ, ଅଭିମନ୍ୟୁ, ଭକ୍ତଚରଣଙ୍କ କବିତା ବାହାରିବା ମାତ୍ରେ ଶିକ୍ଷାର୍ଥୀର ବମନଭାବ ଆସିଯାଏ ଓ ସେ ଆଲର୍ଜିଗ୍ରସ୍ତ ହୋଇଯାଏ। ସେମିତି ବିଜ୍ଞାନ ଅଧ୍ୟାପନା କରୁଥିବା କିମ୍ବା ରାଜନୀତିବିଜ୍ଞାନ, ଅର୍ଥନୀତି ଓ ଦର୍ଶନଶାସ୍ତ୍ରାଦି ଅଧ୍ୟାପନ କରୁଥିବା ଅଧ୍ୟାପକ ସେହି ସେହି ବିଷୟ ବହିର୍ଭୂତ ଚେତନାରେ ସର୍ବଦା ଆତଯାତ ହେଉଥାନ୍ତି ଏବଂ ତା' ଫଳରେ ଛାତ୍ରଛାତ୍ରୀମାନେ ସେମାନଙ୍କଦ୍ୱାରା ଆଦୌ ଉଦବୁଦ୍ଧ ବା ମୁଗ୍ଧ ହୋଇପାରନ୍ତି ନାହିଁ। ଏ କ୍ଷେତ୍ରରେ କ୍ଲାସରୁମ୍‌ଗୁଡ଼ିକ ଅତ୍ୟନ୍ତ ପୀଡ଼ାଦାୟକ ପରିବେଶ ସୃଷ୍ଟି କରିଥାଏ ଶିକ୍ଷାର୍ଥୀମାନଙ୍କ ପାଇଁ। ଏହି ଦୂରାବସ୍ଥା ସମସ୍ତ ଭାରତୀୟ ବିଶ୍ୱବିଦ୍ୟାଳୟମାନଙ୍କରେ ଏହାର ଭୂରିଭୂରି ଦୃଷ୍ଟାନ୍ତ ମିଳିଥାଏ। ଆମ ରାଜ୍ୟର ବିଶ୍ୱବିଦ୍ୟାଳୟମାନଙ୍କରେ ବହୁ ବିଭାଗରେ ଦେଖାଯାଏ ବିଭାଗୀୟ ମୁଖ୍ୟ ଓ ସାଧାରଣ ଅଧ୍ୟାପକମାନେ କେବଳ ଗବେଷଣା ନେଇ ବ୍ୟସ୍ତ ଥାନ୍ତି ଓ ସେହି ଗବେଷଣା ଉପରେ ଠିଆ ହୋଇ ନିଜକୁ ଉଞ୍ଚାକରି ଦେଖାନ୍ତି। ସେ ସବୁ ଗବେଷଣାର ସାମାଜିକ ବା ତାତ୍ତ୍ୱିକ ମୂଲ୍ୟ କେତେ ଅଛି ବା କଣ ଅଛି—ସେକଥା ପରେ ବିଚାର୍ଯ୍ୟ—ମାତ୍ର ବହୁ ଗବେଷଣାରତ ଅଧ୍ୟାପକ ଯେ ନିଜ ନିଜ ବିଷୟକୁ କ୍ଲାସରେ ଆଦୌ ଭଲ ପଢ଼ାଇ ପାରନ୍ତି ନାହିଁ କିମ୍ବା ଛାତଛାତ୍ରୀଙ୍କୁ ସେ ବିଷୟରେ ଉଦ୍‌ବୁଦ୍ଧ ବା ଉଦ୍ଦୀପିତ କରାଇ ପାରନ୍ତି ନାହିଁ, ତାର ପ୍ରମାଣ ଛାତ୍ରଛାତ୍ରୀଙ୍କ ମୁହଁରୁ ପ୍ରାୟଶଃ ଶୁଣିବାକୁ ମିଳିଥାଏ। ଅଥଚ ବର୍ତ୍ତମାନ ବିଶ୍ୱବିଦ୍ୟାଳୟ କମିଶନ କୁଆଡ଼େ ଅଧ୍ୟାପକମାନଙ୍କର ପ୍ରମୋସନ ବ୍ୟାପାରରେ ଏହି ତଥାକଥିତ ଗବେଷଣା ଉପରେ ହିଁ ବେଶି ଜୋର ଦେଇଛନ୍ତି। ଶିକ୍ଷକ ବା ଅଧ୍ୟାପକଙ୍କର ଯେ ଭଲଭାବେ ପାଠ ପଢ଼ାଇବାଟା ମୁଖ୍ୟ କର୍ତ୍ତବ୍ୟ, ସେକଥା କାହିଁକି କର୍ତ୍ତୃପକ୍ଷ ଆଜ ମୁହଁରେ ବି ଧରୁନାହାନ୍ତି।

ଏହାର ଫଳ କଣ ହେଲାଣି ଓ ଭବିଷ୍ୟତରେ ବି ପୁଣି କଣ ହେବ ଏକଥା ଜନସାଧାରଣ ବୁଝିପାରୁଛନ୍ତି ତ ?



# ଶିକ୍ଷା ନା ଅଶିକ୍ଷା ?

ଦିନେ ଗୋଟିଏ ଖବରକାଗଜ ଖୋଲିଲାମାତ୍ରେ ପ୍ରଥମ ପୃଷ୍ଠାରେ ବଡ଼ ବଡ଼ ହରପରେ ପାଖାପାଖି ପ୍ରକାଶିତ ଦୁଇଟି ଚମକପ୍ରଦ ଖବର ଆଖିରେ ପଡ଼ିଲା । ପ୍ରଥମଟି ହେଉଛି ବିହାରର କୌଣସି ଦୁଇଟି କଲେଜର ଦୁଇଜଣ ବିଶିଷ୍ଟ ବୟସ୍କ ଅଧ୍ୟାପକଙ୍କୁ କେତେକ ଛାତ୍ର ଛୁରାମାରି ଅତି ନିର୍ମମଭାବେ ହତ୍ୟା କରିଛନ୍ତି ଏବଂ ଅନ୍ୟ ଖବରଟି ହେଉଛି ଓଡ଼ିଶାର କୌଣସି ସ୍କୁଲରେ ତିନିଜଣ ଶିକ୍ଷକ ଛଅଜଣ ପିଲାଙ୍କୁ ନିର୍ମମଭାବେ ପିଟି ପିଟି ସେମାନଙ୍କୁ ରକ୍ତାକ୍ତ କରି ଦେଇଛନ୍ତି ଓ ତନ୍ମଧ୍ୟରୁ ଗୋଟିଏ ପିଲା କାଲ ହୋଇଯାଇଛି ଏବଂ ଆଉ ଗୋଟିଏ ପିଲାର ଆଖି ନଷ୍ଟ ହୋଇଯାଇଛି ।

ଅବଶ୍ୟ ଏଭଳି ଉତ୍କଟ ଶୋଚନୀୟ ଖବର ଆମ ଦେଶରେ ନୂଆ ନୁହେଁ । ଆମର ସ୍କୁଲ କଲେଜଗୁଡ଼ିକ ଆଶାତୀତ ଭାବେ ଦିନକୁ ଦିନ ବଢ଼ିଚାଲିଛି । ଶିକ୍ଷା ବିଭାଗରେ କୋଟି କୋଟି ଟଙ୍କା ଖର୍ଚ୍ଚ ହେଉଛି । ପୂର୍ବ ଅପେକ୍ଷା ଶିକ୍ଷକ ଓ ଅଧ୍ୟାପକଙ୍କ ଦରମା ମଧ୍ୟ ଯଥେଷ୍ଟ ବଢ଼ିଛି । କିନ୍ତୁ ଆମର ଦିନକୁ ଦିନ ସନ୍ଦେହ ବଢ଼ୁଛି ଯେ ସତକୁ ସତ କଣ ଆମ ଦେଶରେ ଶିକ୍ଷା ବ୍ୟବସ୍ଥାରେ କିଛିମାତ୍ର ଉଲ୍ଲେଖଯୋଗ୍ୟ ଅଗ୍ରଗତି ହୋଇଛି ? ବୁଦ୍ଧିମାନ, ଉଚ୍ଚାକାଂକ୍ଷୀ ଓ ଅଧ୍ୟବସାୟୀ ଛାତ୍ରଗଣ ପୂର୍ବେ ଥିଲେ ଏବଂ ଏବେ ଅଛନ୍ତି ଏବଂ ଲୋକସଂଖ୍ୟା ବୃଦ୍ଧି ଓ ଶିକ୍ଷାନୁଷ୍ଠାନ ବୃଦ୍ଧି ସଙ୍ଗେ ସଙ୍ଗେ ସେ ଧରଣର ଛାତ୍ରଛାତ୍ରୀ ସଂଖ୍ୟା ଅନୁପାତରେ କିଛି ଅଧିକ ମଧ୍ୟ ହୋଇଛନ୍ତି । କିନ୍ତୁ ଯଦି ଯେକୌଣସି କଲେଜର ଛାତ୍ରଛାତ୍ରୀମାନଙ୍କୁ ବାହାରର କେହି ଯାଇ ପରୀକ୍ଷା କରି ଦେଖେ, ତେବେ ପରିଷ୍କାର ବୁଝିପାରିବ ଯେ ଶତକଡ଼ା ୯୫ ଜଣ କୌଣସି ପ୍ରକାର ପରୀକ୍ଷାରେ ପାଶ୍ କରିଛନ୍ତି ସତ ମାତ୍ର ସେମାନଙ୍କୁ କିଛି ଜଣା ନାହିଁ । ଜଣା ନାହିଁ ମାନେ, କେବଳ ଯେ ପାଠ୍ୟ ବିଷୟବସ୍ତୁ ସମ୍ପର୍କରେ ଜଣାନାହିଁ ତାହା ନୁହେଁ । ସେମାନେ ଅନେକ କଥା ଜାଣିନାହାନ୍ତି । ଏପରି କି ମୂଳରୁ ସେମାନଙ୍କୁ ସେମାନଙ୍କର ଅଧ୍ୟାପକଙ୍କ ନାମ ଜଣାନାହିଁ । କେଉଁ ବିଷୟଟି କିଏ ପଢ଼ାଉଛନ୍ତି ସେ କଥା ସେମାନେ କହି ପାରିବେ ନାହିଁ । ଅଧ୍ୟାପକମାନେ ତ ପିଲାମାନଙ୍କୁ ସହଜେ ଜାଣନ୍ତି ନାହିଁ, ସେମାନଙ୍କର ରୋଲ ନମ୍ବର ସଙ୍ଗେ କାରବାର । ଆମ ରାଜ୍ୟର ବହୁ ବଡ଼ ବଡ଼ କଲେଜ ବୁଲି ଦେଖିଛି ଏବଂ ସେ କଲେଜର ବହୁ ଛାତ୍ରଛାତ୍ରୀ ଓ ଅଧ୍ୟାପକ ଅଧ୍ୟାପିକାଙ୍କ ସଙ୍ଗେ ମିଶି ଦେଖିଛି ସେମାନେ ସମସ୍ତେ ଉପସ୍ଥିତ

ସମାଜ ଭିତରେ ରହୁଥିଲେ ବି ସେଇ ସମାଜଟିର କୌଣସି ସମସ୍ୟା ସଙ୍ଗେ ସେମାନଙ୍କର କିଛି ସମ୍ପର୍କ ନାହିଁ। ପରମ୍ପରା, ରୀତିନୀତି, ଚଳଣି, ବା ସାହିତ୍ୟ ସଂସ୍କୃତି ବା ରାଜନୀତିକ ପରିସ୍ଥିତି, ଏସବୁ ସମ୍ବନ୍ଧେ ପ୍ରାୟ ଶତକଡ଼ା ନବେ ଛାତ୍ରଛାତ୍ରୀ ଅଜ୍ଞ ଓ ଉଦାସୀନ। ସେହିଭଳି ଶତକଡ଼ା ପ୍ରାୟ ଅଶୀ ଜଣ ଅଧ୍ୟାପକ ଅଧ୍ୟାପିକା ମଧ୍ୟ ଅଜ୍ଞ ଓ ଉଦାସୀନ। ସମାଜଟି ଆମର କିପରି ଚାଲିଛି ଓ ଏହା କିପରି ଚାଲିବା ଉଚିତ ଏ ସମ୍ବନ୍ଧେ କାହାର କିଛି ଆଗ୍ରହ ବା ଉତ୍ସୁକତା ଥିଲା ପରି ଅନ୍ତତଃ ମନେ ହୁଏ ନାହିଁ। ଅଧ୍ୟାପକଗଣ ଯେପରି, ଛାତ୍ରଛାତ୍ରୀମାନେ ମଧ୍ୟ ତଦ୍ରୂପ।

ଆଜି ଶିକ୍ଷାନୁଷ୍ଠାନଗୁଡ଼ିକରେ ଯେଉଁସବୁ ବିଶୃଙ୍ଖଳା ଦେଖାଯାଉଛି ତାର ମୂଳରେ ରହିଛି ଏହି ପ୍ରଧାନ କଥାଟି। ତା' ହେଲା– ଶିକ୍ଷାନୁଷ୍ଠାନଗୁଡ଼ିକ ସମାଜଠାରୁ ଅଲଗା ହୋଇ ରହିଛନ୍ତି ଓ ଆମର ସାମାଜିକ ସମସ୍ୟାଗୁଡ଼ିକ ସଙ୍ଗେ ଆମର ଶିକ୍ଷଣୀୟ ବିଷୟଗୁଡ଼ିକର କୌଣସି ସମ୍ପର୍କ ଇ ନାହିଁ। ଆମ ପିଲାମାନେ ଅର୍ଥନୀତି, ତର୍କବିଜ୍ଞାନ, ସାହିତ୍ୟ, ଇତିହାସ, ସମାଜବିଜ୍ଞାନ, ରାଜନୀତିବିଜ୍ଞାନ, ସମାଜତତ୍ତ୍ୱ ଇତ୍ୟାଦି ଯାହାସବୁ ପଢ଼ନ୍ତି ସେ ସବୁର ଜୀବନ ଗଠନ ପ୍ରତି କି ସଂପର୍କ ରହିଛି ତାହା ସେମାନଙ୍କୁ ଜଣା ନାହିଁ ବା ସେମାନଙ୍କୁ ତାହା ଜଣାଇ ଦିଆଯାଏ ନାହିଁ। କେବଳ ପରୀକ୍ଷା ପାଇଁ ପାଠପଢ଼ା ହେଉଛି ଏବଂ କଲେଜଗୁଡ଼ିକରେ ପରୀକ୍ଷା ହିଁ କେବଳ ଚାଲିଛି। ଶିକ୍ଷାର ଦୁଇଟି ମୂଳ ଲକ୍ଷ୍ୟ ରହିଛି। ତା'ହେଲା– ଜୀବିକାର୍ଜନ ଓ ଜୀବନଗଠନ। ବର୍ତ୍ତମାନ ଯେପରି ଭାବେ ଶିକ୍ଷା ଚାଲିଛି ଜୀବିକା ଓ ଜୀବନ ପ୍ରତି ତାହା କେତେଦୂର ଉପାଦେୟ ହୋଇପାରୁଛି ତାହା ଆମର ଅଭିଭାବକମାନେ ଦେଖୁଛନ୍ତି ତ ?

ଆମର ସରକାର ଶିକ୍ଷାନୀତିର ପରିବର୍ତ୍ତନ ଶୀଘ୍ର ହେବ ବୋଲି ବାରମ୍ବାର ଉଚ୍ଚସ୍ୱରରେ ଘୋଷଣା କରିଛନ୍ତି। ମାତ୍ର କାହିଁ ସେ ଦିଗରେ ତ ସାମାନ୍ୟ ମାତ୍ର କାର୍ଯ୍ୟ ଆରମ୍ଭ ହେଲା ଭଳି ଲାଗୁ ନାହିଁ! ଆମ ଓଡ଼ିଶାରେ ଗତବର୍ଷଠାରୁ ଆଜିପର୍ଯ୍ୟନ୍ତ ବହୁ କଲେଜ ଖୋଲା ହୋଇଗଲାଣି। ମାତ୍ର କେବଳ ଗୁଡ଼ାଏ କଲେଜ ଖୋଲିଦେଲେ କଣ ଆମର ପିଲାମାନେ ଯଥାର୍ଥରେ ଉଚ୍ଚଶିକ୍ଷା ପାଇଯିବେ ? ଏବଂ ଏହି ଉଚ୍ଚଶିକ୍ଷା ଦେବାର ପ୍ରଣାଳୀ କଣ ? ଯେଉଁମାନେ ଏହି ଶିକ୍ଷା ବିତରଣ କରିବେ, ସେମାନଙ୍କର ଯୋଗ୍ୟତା କଣ ହେବା ଦରକାର ଏ ଦିଗରେ ଆମର ବିଶ୍ୱବିଦ୍ୟାଳୟ ଏବଂ ସରକାର ଯଥେଷ୍ଟ ସଚେତନ ଓ ସକ୍ରିୟ ହେଲେଣି କି ? ଯାହା ମନେହେଉଛି, ସମସ୍ତେ କେବଳ ପ୍ରଚଳିତ ଶିକ୍ଷା ବ୍ୟବସ୍ଥାକୁ ନିନ୍ଦା କରୁଛନ୍ତି। ମାତ୍ର ତା ସ୍ଥାନରେ କୌଣସି ଉନ୍ନତ ବିକଳ୍ପ ଶିକ୍ଷା ବ୍ୟବସ୍ଥା ପ୍ରବର୍ତ୍ତନ କରିପାରୁ ନାହାନ୍ତି।

ଅବଶ୍ୟ ଶିକ୍ଷା ବ୍ୟବସ୍ଥାର ଆମୂଳ ପରିବର୍ତ୍ତନ ଏବଂ ସମଗ୍ର ଦେଶରେ ଏକ ନୂତନ ବ୍ୟବସ୍ଥାର ପରିବର୍ତ୍ତନ ଏତେ ସୋଜା କଥା ନୁହେଁ। କିନ୍ତୁ ପ୍ରଚଳିତ ଶିକ୍ଷାବ୍ୟବସ୍ଥାରେ

ଯା ବା ଦୋଷତ୍ରୁଟି ଥାଉନା କାହିଁକି, ଆମର ଶିକ୍ଷାୟତନଗୁଡ଼ିକରେ ଶିକ୍ଷା ଓ ଶିକ୍ଷକମାନଙ୍କର ମର୍ଯ୍ୟାଦା କଣ ଏତେ ନିମ୍ନକୁ ଚାଲିଗଲାଣି ଯେ, ଯାହାଫଳରେ ପ୍ରତିଦିନ ଆମେ ଖବର ପାଉବୁ ଯେ ଛାତ୍ରମାନେ ଶିକ୍ଷକମାନଙ୍କୁ ଛୁରା ଭୁଷି ମାରୁଛନ୍ତି ଓ ଶିକ୍ଷକମାନେ ମଧ ଅନୁରୂପ ଭାବେ ଛାତ୍ରମାନଙ୍କ ଉପରେ ପ୍ରତିହିଂସାପରାୟଣ ହେଉଛନ୍ତି ? ପ୍ରଚଳିତ ଶିକ୍ଷା ପ୍ରଣାଳୀର ବହୁ ଦୋଷତ୍ରୁଟି ଥିଲେ ବି ଆଜି ମଧ ଆମର ପାଠ୍ୟ ବିଷୟବସ୍ତୁଗୁଡ଼ିକରେ ମନୁଷ୍ୟ ଜୀବନକୁ ଉନ୍ନତ ଭାବେ ଗଢ଼ିବା ପାଇଁ ଓ ଜୀବନର ପ୍ରକୃତ ଲକ୍ଷ୍ୟ ବୁଝିବା ପାଇଁ ବହୁ ମୂଲ୍ୟବାନ ଉପାଦାନ ରହିଅଛି। ସ୍କୁଲ ଜୀବନରୁ ଆରମ୍ଭକରି କଲେଜ ଜୀବନ ପର୍ଯ୍ୟନ୍ତ ଯୋଉ ସବୁ ଇତିହାସ, ସାହିତ୍ୟ, ରାଜନୀତିତତ୍ତ୍ୱ, ସାମାଜିକ ବିଜ୍ଞାନ ପ୍ରଭୃତି ପଢ଼ାଯାଉଛି—ତା'ର ଭିତର ଦେଇ ଆମେ ମଧ ଆମର ଉତ୍ତରାଧିକାରୀମାନଙ୍କ ଚିତ୍ତରେ ଉଚ୍ଚାଙ୍ଗ ଜୀବନଚର୍ଯ୍ୟା ଲାଗି ଆଗ୍ରହ ସୃଷ୍ଟିକରି ପାରନ୍ତେ। ଏବଂ ସେହି ପାଠ୍ୟବିଷୟଗୁଡ଼ିକ ମାଧମରେ ଉଭୟ ଶିକ୍ଷକ ଓ ଛାତ୍ର ଛାତ୍ରୀ ନିଜ ନିଜ ଜୀବନକୁ ଭଲ ଭାବେ ଗଢ଼ିବା ଲାଗି ପ୍ରେରଣା ଓ ସାହାଯ୍ୟକାରୀ ଉପାଦାନ ପାଇପାରନ୍ତେ। ଅନ୍ତତଃ ଉତ୍ତମ ରୁଚି ତ ସୃଷ୍ଟି କରିପାରନ୍ତେ ! ମାତ୍ର ତାହା ତ ହେଉନାହିଁ। ଏଥିଲାଗି ଆମେ ପ୍ରଥମେ କାହାକୁ ଦାୟୀ କରିବା ? ଶିକ୍ଷକଙ୍କୁ ନା ଛାତ୍ରଛାତ୍ରୀମାନଙ୍କୁ ?

କିନ୍ତୁ ଯାହାକୁ ଦାୟୀ କରାଯାଉନା କାହିଁକି, ଆମର ଶିକ୍ଷାକ୍ଷେତ୍ରରୁ ହିଁ ଯେ ଅଶିକ୍ଷା ବେଶୀ ବ୍ୟାପିଚାଲିଛି—ଏଥିରେ ତିଳାର୍ଦ୍ଧ ସନ୍ଦେହ ନାହିଁ।

❋❋

# ନିଃସଙ୍ଗ ସହର ଓ ଅକ୍ଷିତ ପିଲାମାନେ

ରାଧାନାଥବାବୁ ମୋର ବାଲ୍ୟବନ୍ଧୁ। ସେ ଏଇ ରାଜଧାନୀରେ ସେକ୍ରେଟାରୀଏଟ୍‌ରେ କାମ କରନ୍ତି। ପ୍ରାୟ ପଚିଶ ବର୍ଷରୁ ଅଧିକ ହେବ ସେ ଚାକିରି କଲେଣି। ସରକାରୀ ଘରେ ସେ ରହନ୍ତି, କିନ୍ତୁ ଆଜିପର୍ଯ୍ୟନ୍ତ ସେ ଥାନ୍ତି ଘରେ ଏକୁଟିଆ। ପିଲାମାନେ ଥାନ୍ତି ଗ୍ରାମରେ। ସେଠି ତାଙ୍କର ଚାଷବାସ ଅଛି। ସ୍ତ୍ରୀ ବୁଝନ୍ତି ସେସବୁ କଥା। ଦୁଇ ପୁଅ ଓ ତିନି ଝିଅ ଗାଁରେ ରହି ପାଠ ପଢ଼ନ୍ତି। ବଡ଼ ପୁଅ ଚାକିରି କଲେଣି। ବଡ଼ ଝିଅ ବାହା ହୋଇ ଗଲାଣି। ପିଲାମାନଙ୍କୁ ଗ୍ରାମରୁ ଆଣି ଏଠି ରଖିଲେ ତେଣେ ଘର ଓ ଚାଷବାସ ଉଜୁଡ଼ି ଯିବ। ଚାକିରି ତାଳଗଛର ଛାଇ। ରାଧାନାଥବାବୁ ଏକୁଟିଆ ରହିବାର ସମସ୍ତ ଦୁଃଖକଷ୍ଟ ଭୋଗନ୍ତି। କିନ୍ତୁ ଆଉ ଉପାୟ କଣ? ଶନିବାର ସନ୍ଧ୍ୟା ଗଡ଼ିଲେ ଘରକୁ ଯାନ୍ତି ପ୍ରତି ସପ୍ତାହରେ। ସୋମବାର ଦଶଟା ସୁଦ୍ଧା ପହଞ୍ଚନ୍ତି ଆସି ଅଫିସରେ। ଏମିତି ଚାଲିଛି ଜୀବନ, ଆଜିକୁ ପଚିଶ ବର୍ଷ ହୋଇଗଲା। ଖାଲି ସେଇ ଏକା ନୁହେଁ। ଏ ରାଜଧାନୀରେ ତାଙ୍କ ଭଳି ବହୁ କର୍ମଚାରୀ ମଧ୍ୟ ଅଛନ୍ତି ଯେଉଁମାନେ ଗାଁରେ ଗୋଟିଏ ପାଦ ଓ ଏଠି ଗୋଟିଏ ପାଦ ପକାଇ ଜୀବନପଥରେ ଚାଲିଥାନ୍ତି।

ରାଧାନାଥବାବୁଙ୍କ ଘର ଆଗରେ ଚାରିପଟେ ଭଲ ବଗିଚାଟିଏ ଅଛି। ସେଠି ଫୁଲଗଛ ଅପେକ୍ଷା ସ୍ଥାୟୀ ଫଳ ଗଛ ଅଧିକ। ଆମ୍ବ, ପଣସ, ପିଜୁଳି, ଜାମୁରୋଳ, ଜାମ୍ବୁ, ବରକୋଳି ଆଦି ଫଳନ୍ତି ଗଛମାନ ପରିବେଶଟିକୁ ଛାୟାବନ୍ତ ଓ ଫଳବନ୍ତ କରି ରଖିଥାଏ। ରାଧାନାଥବାବୁ ମଧ୍ୟ ସେସବୁ ଗଛର ଯତ୍ନ ନିଅନ୍ତି। ଖରାଦିନେ ଆମ୍ବ, ପଣସ ଫଳେ, ପାଚେ। ଶୀତଦିନେ ବରକୋଳି, ବର୍ଷାକାଳରେ ଜାମୁକୋଳି ଓ ବର୍ଷ ସାରା ପିଜୁଳି ଫଳୁଥାଏ। ରାଧାନାଥବାବୁ କିଛି କିଛି ଫଳ ବନ୍ଧୁବାନ୍ଧବଙ୍କୁ ବାଣ୍ଟନ୍ତି ଓ ଆଉ କିଛି ନେଇଥାନ୍ତି ସାଙ୍ଗରେ ପ୍ରତି ଶନିବାର ଦିନ ଗାଁକୁ। ଗାଁରେ ପିଲାମାନେ ଖାଇ ଖୁସି ହୁଅନ୍ତି।

ଦିନେ ମୋର ସାନ ପୁଅ ଓ ତାର କେତୋଟି ସାଙ୍ଗ ମିଶି ଦି'-ପ୍ରହରରେ ରାଧାନାଥବାବୁଙ୍କ ବଗିଚାରେ ପଶିଲେ। ପିଜୁଳି ଗଛରେ ଚଢ଼ି ମନଇଚ୍ଛା ପିଜୁଳି ଖାଇଲେ ଏବଂ ପଣସ ଗଛରେ ଚଢ଼ି ଦୁଇଟି ପଣସ ଓ ଆମ୍ବଗଛରୁ କିଛି କଞ୍ଚା ଆଉ ଦରପାଚିଲା ଆମ୍ବ ତୋଳି ଥଳିରେ ପୂରାଇ ଗୃହାଭିମୁଖୀ ହେଉଛନ୍ତି—ଏଇ ସମୟରେ

ଆକସ୍ମିକଭାବେ ପହଞ୍ଚିଗଲେ ରାଧାନାଥବାବୁ। ସେ ଦିନ ତାଙ୍କର ଅଫିସ କାମରେ କଟକ ଯିବାର ଥାଏ। ତେଣୁ ତିନିଟାବେଳେ ସେ ବସାକୁ ଆସିଲେ ପ୍ରସ୍ତୁତ ହେବା ପାଇଁ। ଫାଟକ ଖୋଲି ତାଙ୍କ ଆଖି ପଡ଼ିଲା ମୋ ସାନପୁଅ ଏବଂ ତାର ସାଙ୍ଗମାନଙ୍କ ଉପରେ ଏବଂ ସେମାନଙ୍କର ସଂଗୃହୀତ ଆମ୍ବ, ପଣସ, ପିଜୁଳିଗୁଡ଼ିକ ଉପରେ। ପ୍ରଥମେ ସେ ଖୁବ୍ ରାଗିଗଲେ। ମାତ୍ର ମୋର ସାନପୁଅ ତାଙ୍କୁ ନମସ୍କାର କଲାମାତ୍ରେ ତାଙ୍କର ରାଗ କେତେ ପରିମାଣରେ କମିଗଲା। ତଥାପି ସେ ତାକୁ କହିଲେ– ମୋତେ କହିଥିଲେ ମୁଁ ନିଜେ ତୋଳିକରି କିଛି ଆମ୍ବ, ପଣସ ଆଉ ପିଜୁଳି ତୁମ ଘରକୁ ପଠାଇଥାନ୍ତି। ମାତ୍ର ଘରେ କେହି ନ ଥିବାବେଳେ ତୁ ଏଇ ଦୁଷ୍ଟପିଲାଙ୍କ ସଙ୍ଗେ ମିଶି ଅନ୍ୟର ବଗିଚାରୁ ଫଳ ଚୋରି କରୁଛୁ? ଏଇଟା ଭଲ କଥା ନୁହେଁ। ତୋର ବାପା ଜଣେ ଏତେ ବିଶିଷ୍ଟ ଲୋକ। ଅଥଚ ତୁ ତାଙ୍କର ନାଁ ପକାଉଛୁ? ଛି–ଛି–ଛି– !

ମୋ ସାନପୁଅ ଅପ୍ରତିଭ ଆଉ ଲଜ୍ଜିତ ହୋଇଗଲା। ସେ ପ୍ରକୃତରେ ଦୁଷ୍ଟ ପିଲା ନୁହେଁ–ଚୋର ପିଲା ନୁହେଁ। ତାର ସାଙ୍ଗମାନେ ମଧ କେହି ଖରାପ ପ୍ରକୃତିର ନୁହଁନ୍ତି। ସେମାନେ ସମସ୍ତେ ମୋଟାମୋଟି ଭଲ ପଢ଼ନ୍ତି, ଭଲ ଖେଳନ୍ତି। ଆଉ ସେମାନଙ୍କ ଭିତରେ ଜଣେ ଖୁବ୍ ଭଲ ଗୀତ ଗାଏ ଆଉ ଅଭିନୟ କରେ। ସ୍କୁଲର ବାର୍ଷିକ ନାଟକରେ ସେ ଭକ୍ତ ପ୍ରହ୍ଲାଦ ପାର୍ଟ କରି ଦର୍ଶକମାନଙ୍କ ଆଖିରୁ ଲୁହ ଝରାଉ ଥିଲା।

ପିଲାମାନେ ଖୁବ୍ ଅପମାନିତ ମନେକରି ତଳକୁ ମୁହଁ ପୋତି ଫଳଗୁଡ଼ିକ ବଗିଚାରେ ଛାଡ଼ି ଫାଟକ ବାହାରକୁ ଆସିଲେ।

ଏ ଘଟଣାର ଦିନକ ପରେ। ରାଧାନାଥବାବୁଙ୍କ ସଙ୍ଗେ ମୋର ଥରେ ହାଟରେ ଦେଖାହେଲା। ସେ ମୋ ଆଗରେ ସାନପୁଅର ଦୁଷ୍ଟାମି ନେଇ ମୃଦୁ ଉପଦେଶ ଅଭିଯୋଗ କଲେ ଓ ସେ ଦିନର ଘଟଣା ବର୍ଣ୍ଣନା କରି ମତେ କହିଲେ ପିଲାଟା କ୍ରମଶଃ ଖରାପ ହୋଇଯାଉଛି–ଏବଂ ଆଜି ହୁଏତ ସେ ଆମ୍ବ, ପଣସ ଅନ୍ୟ ବାଡ଼ିରୁ ଚୋରି କରୁଛି–କିନ୍ତୁ ଏଇ ବଦଭ୍ୟାସ ତାକୁ ଦିନେ ହୁଏତ ବ୍ୟାଙ୍କ ଲୁଟି କରିବାରେ ପ୍ରବର୍ତ୍ତାଇବ। ତା'ଛଡ଼ା ସେ ଦୁଷ୍ଟ ପିଲାମାନଙ୍କ ସାଙ୍ଗେ ସାଙ୍ଗ ହେଉଛି। ତାକୁ ସେଇସବୁ ବାଛେ ଇତର ପିଲାଙ୍କଠାରୁ ଦୂରେଇ ନିଅ।

ମୁଁ ଚୁପ୍ ରହିଲି। ମାତ୍ର ରାଧାନାଥବାବୁଙ୍କ ପ୍ରତି ମୋର ମନ ବିକ୍ଷେଇ ଉଠିଲା। ଘରକୁ ଫେରିଲି। ସାନପୁଅକୁ ଡାକି ପଚାରିଲି। ସେ ଖୁବ୍ ବିନୀତ, ଭଦ୍ର ଓ ସରଳ ଭାବରେ ସବୁକଥା ସ୍ୱୀକାର କରିଗଲା। ମାତ୍ର ସେ ଏତିକି କହିଲା ଯେ ରାଧାନାଥ ମଉସା ମତେ ଚୋର ବୋଲି କାହିଁକି କହିଲେ? ସେ ତୁମର ବନ୍ଧୁ।

ମୋର ମଉସା। ମଉସାଙ୍କ ବଗିଚାରୁ ଆମ୍ବ ପିଜୁଳି ତୋଳି ଖାଇଲେ କ'ଣ ମୁଁ ଚୋର ହୋଇଗଲି ? ମୁଁ ତ ଆଉ କାହା ବଗିଚାକୁ ଯାଇ ନାହିଁକି ଯାଏ ନାହିଁ ?

ସାନପୁଅର ଉତ୍ତର ଶୁଣି ମୋର ଚୁପ୍ ରହିବା କଥା। ମାତ୍ର ମୁଁ ତଥାପି ତାକୁ ପଦେ କହିଲି। ମୁଁ କହିଲି, ତୁ ହୁଏତ ଠିକ୍ କହୁଛୁ। ମାତ୍ର ଆଜିଠାରୁ ମନେରଖ ମୋର କୌଣସି ବନ୍ଧୁ ଘରକୁ ତାଙ୍କ ବିନାନୁମତିରେ ପଶିବୁ ନାହିଁ।

ସାନପୁଅ ଚୁପ୍ ରହିଲା। ମାତ୍ର ତାର ମୁହଁ ବଡ଼ ନିରସ ଦେଖାଗଲା। ତାର ଦୁଇଟି ଢୁଲୁଢୁଲୁ ଆଖି ହଠାତ୍ ମଳିନ ପଡ଼ିଗଲା ଓ ସାଙ୍ଗେ ସାଙ୍ଗେ ସେଥିରୁ ଦୁଇଟୋପା ଲୁହ ଝରି ଆସିଲା। ମୁଁ ମଧ୍ୟ ହଠାତ୍ ବଡ଼ ନିରାଶ ବୋଧକଲି।

ଏ କଥାଟି କହିବାର ଉଦ୍ଦେଶ୍ୟ ହେଲା ଗୋଟିଏ ବଡ଼ ସହରରେ ଜନ୍ମୁଥିବା ଓ ବଢୁଥିବା ପିଲାମାନେ କେତେ ନିଃସଙ୍ଗ ଆଉ ନିଃସହାୟ। ଆମେତ ସହଜେ ଏଠି ନିଃସଙ୍ଗ–କିନ୍ତୁ ସେମାନେ ଆହୁରି ନିଃସଙ୍ଗତର। ଆମେ ଏଠି ଅଫିସରେ ଛଅ ସାତ ଘଣ୍ଟାକାମ କରୁଛୁ ବହୁ ଲୋକଙ୍କ ସାଙ୍ଗରେ। ବାହାରୁ ଦେଖିଲେ ମନେ ହେବ ଆମେ ପରସ୍ପରକୁ ଚିହ୍ନୁ। ପରସ୍ପର ସଙ୍ଗେ ଆମେ ସଂପୃକ୍ତ। ମାତ୍ର ପ୍ରକୃତରେ ତାହା ନୁହେଁ। ଆମର ସବୁ ସମ୍ପର୍କ ଏ ସହରରେ ଯାନ୍ତ୍ରିକ। ଆମେ ସିନେମା ଦେଖୁଛୁ ବହୁ ଲୋକଙ୍କ ମେଳରେ ବସି। ମାତ୍ର ଆମେ କେହି କାହାକୁ ଜାଣୁନାହିଁ। ସେଥିଲାଗି ବଡ଼ ସହରରେ ଆମେ ନିଜକୁ ନିରାପଦ ମଣୁନାହୁଁ। ସମସ୍ତଙ୍କୁ ପର ବୋଲି ଭାବୁ। ଶତ୍ରୁ ବୋଲି ଭାବୁ। ପ୍ରତିଦ୍ୱନ୍ଦୀ ବୋଲି ଭାବୁ। ଆମର ପାଖପଡ଼ୋଶୀ ଯାହାର ଛାତ ସଙ୍ଗେ ଆମ ଛାତ ମିଶିଛି, ସେ ମଧ୍ୟ ଆମର ଅପରିଚିତ ଏବଂ ଅପରିଚିତ ମାତ୍ରେ ଇ ଆମ ମନରେ ସନ୍ଦେହ ସୃଷ୍ଟିକରେ, ଆଶଙ୍କା ସୃଷ୍ଟି କରେ। ତେଣୁ ବଡ଼ ସହରର ନାଗରିକମାନେ ସର୍ବଦା ଏକ ସ୍ନାୟୁ ପୀଡ଼ାରେ ବିକଳ ହେଉଥାନ୍ତି। ପ୍ରତ୍ୟେକ ଅନ୍ୟର କଥାବାର୍ତ୍ତାରୁ ଓ କାର୍ଯ୍ୟକଳାପରୁ ଗୋଟାଏ କିଛି ଗୁପ୍ତ ମତଲବ ଥିବାର ଆଶଙ୍କା କରୁଥାନ୍ତି ଏବଂ ପ୍ରତିଦିନ ବଡ଼ ସହରର ନାଗରିକଟି ସକାଳୁ ସନ୍ଧ୍ୟା ଯାଏ କେବଳ ଆତ୍ମରକ୍ଷା ସଂଗ୍ରାମରେ ବ୍ୟସ୍ତ ଥାଏ। ଅଫିସରେ ସମସ୍ତେ ସମସ୍ତଙ୍କର ପ୍ରତିଦ୍ୱନ୍ଦୀ। ବଜାରରେ ସବୁ ବ୍ୟବସାୟୀତକ ପରସ୍ପରର ପ୍ରତିଦ୍ୱନ୍ଦୀ। ରାଜନୀତିରେ ପ୍ରତ୍ୟେକ ପ୍ରତ୍ୟେକର ଶତ୍ରୁ। ମାତ୍ର ଗାଁରେ ଏ ଭାବ ନ ଥିଲା। ବରଂ ଏବେ ସହରରୁ ସେ ଭାବ ସଂକ୍ରମିତ ହେଲାଣି। ଗାଁରେ ଜାତି ଧର୍ମ ନିର୍ବିଶେଷରେ ସମସ୍ତେ ପାରିବାରିକ ବନ୍ଧନରେ ବାନ୍ଧି ହୋଇଥାନ୍ତି। କିଏ ମଉସା, କିଏ ପିଉସା, କିଏ ମାମୁଁ, କିଏ ଦାଦି, କିଏ ଳକେଇ, କିଏ ଖୁଡ଼ୀ, କିଏ ବା ମାଉସୀ। ରମଜାନ ଖାଁ ଧର୍ମରେ ମୁସଲମାନ। ମାତ୍ର ଆମେ ତାଙ୍କୁ ରମଜାନ ଚାଚା ବୋଲି ଡାକୁ। ଦାନିଏଲ ସାବଦ୍ ଧର୍ମରେ ଖ୍ରୀଷ୍ଟାନ। ମାତ୍ର ଆମେ ତାଙ୍କୁ ଡାକୁ ଦାନିଏଲ ଅଜା। ମଦନ ସେଠୀ ଜାତିରେ ଧୋବା। ମାତ୍ର ମୋ ବାପାଙ୍କ ନାମ ମଦନ

ବୋଲି ଆମେ ଡାକୁ ଡାକୁ ମଉସା। ନାରଣ ମିଶ୍ରଙ୍କୁ ଡାକୁ ନାରଣ କକେଇ। ଉପେନ୍ଦ୍ର ମହାନ୍ତିଙ୍କୁ ଡାକୁ ଉପଦାଦି। ଗାଁରେ 'ବାବୁ' ଡାକ ନ ଥିଲା। ଏବେ ପଶିଲାଣି। ବାବୁ ଡାକ ହେଲା ବିଚ୍ଛିନ୍ନତାର ଡାକ– ଅପରିଚିତର ଡାକ– ସନ୍ଦେହ ସଂଶୟର ଡାକ। ସେ ଡାକରେ ଆତ୍ମୀୟତା ନାହିଁ। ପରଭାବ ରହିଛି। ଆମ ପିଲାଦିନେ ସପନି ଧୋବା ବାରିରେ କଟକୀ ବରକୋଳି ଗଛ ଥିଲା। ଶୀତ ଦିନେ ବଡ଼ ବଡ଼ ମିଠା କୋଳିରେ ଗଛ ଭାଙ୍ଗି ପଡୁଥାଏ। ସପନି ଧୋବା ମୋ ବାପାଙ୍କୁ ଡାକେ କକେଇ–ଏବଂ ତାଙ୍କର ମାଆ ବୁଢ଼ୀକୁ ଆମେ ଡାକୁ ମାଉସୀ। ସେ ବୁଢ଼ୀର ପାଟି ଭାରି କଡ଼ା। ବାଡ଼ି ଖଣ୍ଡିଏ ଧରି ବରକୋଳି ଗଛକୁ ଜଗିଥାଏ। ଆଖିକୁ କିନ୍ତୁ ଦିଶୁ ନ ଥାଏ। ମାତ୍ର ଶବ୍ଦ ବାରିବାରେ ବିଚକ୍ଷଣ। ଆମେ ଲୁଚି ଲୁଚି ଯାଇ ଟପ୍ ଟାପ୍ କୋଳି ତୋଳୁ। ଦିନେ ଦିନେ ଧରାପଡ଼ିଯାଉ। ବୁଢ଼ୀ ଭାରି ଖପା ହୋଇ ଗାଳି ଦିଏ। ଆରେ ହେଡ଼ାଖିଆ ଛୁଆରେ–ଆରେ ଅସନା ଖିଆ ଛୁଆରେ–ଗଛକ ଯାକ କୋଳି ତୁମ ପେଟରେ ପଶିଲା। କଷି ଦିନୁ ଗଛଟା ମୋର ଝାଡ଼ି ଦେଲ ? ମାତ୍ର ଆମେ ବୁଢ଼ୀ କଥାକୁ ଛଳ କରୁନାହିଁ। କିନ୍ତୁ ଭୟ କରୁ। ଦଉଡ଼ି ପଳାଉ, ମାତ୍ର ଏପଟେ ଠିଆ ହୋଇଥାଏ ବାଲିକୁନ୍ଦ ପାଖେ ସପନା ଭାଇର ସ୍ନେହମୟୀ ସ୍ତ୍ରୀ ପୁନି ନୂଆଉ। ବାଉଁସିଆଏ କୋଳି ଆଣି ଆମକୁ ବାଣ୍ଟି ଦିଏ। ବୁଢ଼ୀ କଥା ଧରିବ ନାହିଁ ପିଲେ! ବୁଢ଼ୀ ହେଲାଠଉଁ ସବୁବେଳେ କଟର କଟର। ପୁନୀ ନୂଆଉ ଧୋବା ଘର ବୋହୂ। ମାତ୍ର ତା ପେଟରେ ପେଟେ ସ୍ନେହ। ସେହି ସ୍ନେହ ତାର ମୁହଁକୁ ଭାରି ସୁନ୍ଦର କରିଥାଏ। ମତେ ତା ମୁହଁ ଦେଖିଲେ ଖୁସି ଲାଗେ। ତାର ପାନଖିଆ ଓଠ ଆଉ ଦାନ୍ତରେ ହସ ଦେଖିଲେ ଭାରି ଆହ୍ଲାଦ ଲାଗେ।

ସେମିତି ନାଥ ପଧାନଙ୍କୁ ଆମେ ଡାକୁଥିଲୁ ନାଥ ଅଜା। ତିନି ପୁଅ ତହୁଁ ତହୁଁ ବଳି ଧୂରନ୍ଧର। ଆଠ ମାଣ ଚାଷ। ଘରେ ତିନି ବୋହୂ ନାତିନାତୁଣୀ। ଦୁଇ ଝିଅ ଦୁଇ ଢୋଇଁ। ବୁଢ଼ା କାନରେ ନୋଳି ପିନ୍ଧିଥାଏ। ମୁଣ୍ଡରେ ଚୁଟି। ଅଣ୍ଟାରେ ବଟୁଆଟିଏ। ପାକୁଆ ପାଟି। ଶୀତଦିନେ ଆଖୁ କିଆରିରେ ଥାଏ। ଆଖୁ ପେଡ଼ା ହେଉଥାଏ। ଆମେ ପିଲାମାନେ ଯାଇ ଆଖୁପେଡ଼ା ଦେଖୁ। ନାଥ ଅଜା ହସି ହସି ଡାକନ୍ତି। ଦୋରୁଅ ପିଇବ କିରେ ପିଲାଏ ? ପେଟେ ଲେଖାଁ ଦୋରୁଅ ପିଉ। ଅଜା ଖଣ୍ଡିଏ ଲେଖାଁ ଆଖୁ ଧରାଇ ଦିଅନ୍ତି। ସେତକ ଖାଇ ଖାଇ ଘ[illegible]କୁ ଆସୁ। 'ଆଖୁ ଭାଙ୍ଗି ରସ ମଧୁର ପିଇ ବାଳକଗଣ–ବୁଲନ୍ତି ଚୌଦିଗେ ହ[illegible]ଷେ ପୂରିଅଛି ବଦନ।'

ମୋ ବାପା ଯାନ୍ତି ପୁରସ୍ତମ। ସାଙ୍ଗରେ ଭାରୁଆଟିଏ ଭାର କରି ଆଣିଥାଏ ଦୁଇଟି କୋଡୁଆ। ଗୋଟିଏ କୋଡୁଆରେ ଥାଏ ଜଗନ୍ନାଥ ବଲ୍ଲଭ, ଆର କୋଡୁଆରେ

ରହଣୀ ଅଭଡ଼ା ଆଉ ଡାଲି। ପୁରସ୍ତମ ଆମ ଘରଠାରୁ ତିରିଶ ମାଇଲ ଦୂର। ଯେଉଁ ଗାଁ ଦେଇ ଆସନ୍ତି, ସେ ଗାଁର ପିଲା ବୁଢ଼ା ମାଇପେ ସମସ୍ତେ ମାହାର୍ଦ୍ଧ ଯାଉଛି ବୋଲି ଭାରୁଆ ପାଖକୁ ଲାଗି ଆସନ୍ତି। ସମସ୍ତଙ୍କ ହାତକୁ ଟିକିଏ ମାହାର୍ଦ୍ଧ ଦେଇ ଦେଇ ଘରକୁ ଆସି ଦେଖିଲା ବେଳକୁ କୋଡୁଆରେ ଆଉ ଭାଗେ ମାହାର୍ଦ୍ଧ ଥାଏ। ସେତକରୁ ପୁଣି କଣିକାଏ ଲେଖାଁ ଧରି ଆମେ ସାଇପାକ ବାଣ୍ଟିବାକୁ ଯାଉ। ସାଇପାକ ଲୋକ ସେଇତକ ମାହାର୍ଦ୍ଧକୁ ଧରି ମୁଣ୍ଡିଆ ମାରନ୍ତି—ଭକ୍ତିରେ କୃତକୃତ୍ୟ ହୁଅନ୍ତି।

ଜଗୁଆ ମା ଦେଠେଇର କେହି ନାହିଁ। ନାତିଟିଏ। ପୁଅ ବୋହୂ ହଇଜାରେ ଚାଲିଗଲେ। ନାତି ବଳକଟକ ଧରି ବୁଢ଼ୀ ପଡ଼ିଥାଏ। ବହୁ କଷ୍ଟରେ ନାତିଟିକୁ ପାଳିପୋଷି ବଢ଼ାଉଥାଏ। ତା' ବାରିରେ କାକୁଡ଼ି ଫଳେ ଅସୁମାରୀ। ମକ୍କା ଫଳେ ପଣ ପଣ। ଆମେ କେତେ ଥର ତା' ବାରିରୁ କାକୁଡ଼ି ଆଉ ମକ୍କା ଚୋରି କରି ଖାଇଛୁ। କେବେ କେବେ ଧରାପଡ଼ିଯାଉ। ଜଗୁଆ ମା ଦେଠେଇ ଖୋଧିଯାଏ—ଆରେ ଅଳପେଇସାଏ। ତୁମ ପେଟରେ ଅସୁର ଅଛି କି ରେ ରଇଜଳାଏ! ବାଡ଼ିକ ଯାକ କାକୁଡ଼ି ମୋର ଖାଇଗଲ? ମାତ୍ର ଦେଠେଇର ଗାଳି ଆମକୁ ଲାଗେ ନାହିଁ। ସତେ କି ସବୁତକ ଗାଳି ଖାଲି ତାର ପାଟି ଭିତରୁ ଆଇଛି, ପେଟ ଭିତରୁ ନୁହଁ। ପିଲାଦିନେ ଏମିତି ଆମେ କେତେ ଲୋକଙ୍କ ବାଡ଼ିରୁ କେତେ କଣ ଚୋରି କରି ଖାଇଛୁ। ତା ସାଙ୍ଗରେ କମ୍ ଗାଳି ଭର୍ତ୍ସନା ବି ଖାଇନାହୁଁ। ମାତ୍ର ଆମକୁ ଚୋର ବୋଲି କେହି ଗାଳି ଦେଇନାହାନ୍ତି—କି ଆମ ବାପା ମାଆଙ୍କ ଆଗରେ ସେହି ସ୍ନେହମୟୀ ଦେଠେଇ, ମାଉସୀମାନେ—ଅବା ମଉସା, ଦାଦିମାନେ କେବେ ଆମ ବିରୁଦ୍ଧରେ ଫେରାଦ ହୋଇନାହାଁନ୍ତି। ଆମେ ମଧ୍ୟ ସମାଜରେ ବର୍ତ୍ତମାନ ପ୍ରତ୍ୟେକେ ପ୍ରତିଷ୍ଠିତ ବ୍ୟକ୍ତି। ଆମେ ପିଲାଦିନେ କାକୁଡ଼ି, ପିଜୁଳି, ଆମ୍ବ ଚୋରି କରୁଥିଲୁ ବୋଲି ବର୍ତ୍ତମାନ ଡକାଏତ ପାଲଟି ନାହୁଁ— କି ବ୍ୟାଙ୍କ ଲୁଟି କରୁନାହୁଁ। ମୋ ବଡ଼ଭାଇ ସ୍ୱାଧୀନତା ଆନ୍ଦୋଳନରେ ସଂଗ୍ରାମ କରି ଜେଲ ଗଲେ। ମୁଁ ଜଣେ ଜଣାଶୁଣା ଲେଖକ ହୋଇଛି। ମୋର ସାଙ୍ଗ ରବି ରାୟ ବର୍ତ୍ତମାନ ଭାରତବର୍ଷର ଜଣେ ବଡ଼ ଗଣ୍ୟମାନ୍ୟ ନେତା ଓ କେନ୍ଦ୍ରମନ୍ତ୍ରୀ। ମୋର ଅନ୍ୟତମ ସାଙ୍ଗ ବନମାଳୀ ବର୍ତ୍ତମାନ ଜଣେ ନାମଜାଦା ଡାକ୍ତର ଓ ବୃନ୍ଦାବନ ବର୍ତ୍ତମାନ ଜଣେ ସର୍ବତ୍ୟାଗୀ ବ୍ରହ୍ମଜ୍ଞ ସନ୍ନ୍ୟାସୀ।

ଅବଶ୍ୟ ସେ ଗାଁ ଆଉ ନାହିଁ। ସେ ଗାଁରେ ବର୍ତ୍ତମାନ ସହରୀ ବିଷ ପଶିଗଲାଣି। ଗାଁ ମଧ୍ୟ ବଦଳିଗଲାଣି। ସହରଠାରୁ ବିଚ୍ଛିନ୍ନତା ଓ ନିଃସଙ୍ଗତା ବର୍ତ୍ତମାନ ଗାଁକୁ ମଧ ନିପୀଡ଼ିତ କଲାଣି। ଆଧୁନିକ ସହରୀ ସଭ୍ୟତାର ଏହି ନିଃସଙ୍ଗତା ଓ ବିଚ୍ଛିନ୍ନତାବୋଧରେ

ବର୍ତ୍ତମାନ ଆମର ପିଲାମାନେ ବେଶୀ ଛଟପଟ। ବାପାମାଆଙ୍କ ଛଡ଼ା ସହରରେ ସେମାନଙ୍କର ଆଉ କେହି ନାହିଁ। ଏଠି ସମସ୍ତେ ବାବୁ–ନଚେତ୍ ସାହେବ। କିନ୍ତୁ ପିଲାମାନଙ୍କ ପାଇଁ କେବଳ ବାପମାଆ ଯଥେଷ୍ଟ ନୁହନ୍ତି। ସେମାନଙ୍କ ଦେହ ଓ ମନର ସ୍ୱାସ୍ଥ୍ୟ ଲାଗି କେବଳ ବାପା ମାଆର ପ୍ରଦତ୍ତ ସ୍ନେହ ଓ ଖାଦ୍ୟ ଯଥେଷ୍ଟ ନୁହେଁ। ଏ ସମାଜରେ ପିଲାମାନଙ୍କର ଉପଯୁକ୍ତ ମାନସିକ ଗଠନ ଲାଗି ବହୁ ସଂଖ୍ୟାରେ ସ୍ନେହୀ ମଉସା-ମାଉସୀ, କକା-ଖୁଡ଼ୀ, ପିଇସା-ପିଇସୀ, ଭାଇ- ଭଉଣୀ, ମାମୁଁ-ମାଇଁ ରହିବା ଉଚିତ। ଏବଂ ସେମାନଙ୍କ ବାଡ଼ିଘରୁ ଏଇସବୁ ଜିନିଷ ଚୋରିକରି ଖାଇବାଲାଗି ପିଲାମାନଙ୍କୁ ଯଥେଷ୍ଟ ସୁଯୋଗ ଦିଆଯିବା ଉଚିତ। ପିଲାମାନେ ଗାଳି ଖାଆନ୍ତୁ– ମାତ୍ର କକା-ଖୁଡ଼ୀ, ମଉସା-ମାଉସୀଙ୍କ ତୁଣ୍ଡରୁ ଆସୁ ସେ ଗାଳି। ବାବୁ ଓ ସାହେବମାନଙ୍କ ତୁଣ୍ଡରୁ ନୁହେଁ। ରାଧାନାଥ ବାବୁଙ୍କ ଭଳି କୃତ୍ରିମ ସ୍ନେହହୀନ ବନ୍ଧୁମାନଙ୍କ ତୁଣ୍ଡରୁ ନୁହେଁ। ପିଲାଏ ଏହିଭଳି ଛୋଟ ଛୋଟ ଚୋରି କରନ୍ତୁ ସେମାନଙ୍କ ବାପା-ମାଆଙ୍କ ବନ୍ଧୁବାନ୍ଧବଙ୍କ ବାଡ଼ିରୁ, ପାଖ ପଡ଼ୋଶୀଙ୍କ ବାଡ଼ିରୁ। ଭଗବାନ ଶ୍ରୀକୃଷ୍ଣ ସେମିତି ଗୋପପୁରର ସମସ୍ତଙ୍କ ଘରୁ ଦୁଧଦହି, ସରଲବଣୀ ଚୋରିକରି ଖାଉଥିଲେ, ଧରା ପଡୁଥିଲେ–ଗାଳି ବି ଖାଉଥିଲେ। ମାତ୍ର କେହି କଣ ତାଙ୍କୁ ପର ବୋଲି ଭାବୁଥିଲେ ? ଏପରିକି କେହି ଗୋପୀ ଯଦି ଯଶୋଦାଙ୍କ ପାଖେ ଫେରାଦ ହେଉଥିଲେ, ତେବେ ସେ ଓଲଟି ତାଙ୍କଠାରୁ ଗାଳି ଖାଇ ଚୁପ୍ ହେଉଥିଲେ। ଯଶୋଦା ଓଲଟି ଜେରା କରୁଥିଲେ ଅଭିଯୋଗକାରିଣୀ ଗୋପୀଟିକୁ–କିଲୋ ! କେତେ ସାହସରେ ମୋ ପୁଅ ନାମରେ ତାହା ମିଛଗୁଡ଼ାକ କହିଯାଉଛୁ ? ମୋ ଘରେ ଦୁଧଦହି, ଛେନାଲହୁଣୀ ଅଭାବ ଅଛି କି ? ଯେତେ ନାଳେଇ ବଳେଇ ମୁଁ ତାକୁ ସେତକ ଖୋଇ ବସିବି–ସେ ଖାଇବ ନାହିଁ, ପାଟିରୁ କାଢ଼ି ଥୁ ଥୁ କରି ଫିଙ୍ଗିଦେବ। ଆଉ ତୁମଘରୁ ଯାଇ କାହିଁକି ସରଲବଣୀ ଚୋରିକରି ଖାଇବ ? ଗୋପୀ ବିଚାରୀ ଚୁପ। ମଧୁର ଅଭିଯୋଗ, ମଧୁର ଭର୍ତ୍ସନା, ମଧୁର ଭାବପ୍ରୀତି, ମଧୁର ସାମାଜିକ ଜୀବନ। 'ମଧୁରାପତେଃ ନିଖିଳଂ ମଧୁରଂ।' ଆଉ କହିବା ବାହୁଲ୍ୟ ଯେ ପିଲାମାତ୍ରକେ ବାଳକୃଷ୍ଣଙ୍କ ମଧୁର ଅଂଶ।

ଆମେ ବଡ଼ ବଡ଼ ସହରମାନ ଗଢ଼ି ଚାଲିଛୁ। ବଡ଼ ବଡ଼ କୋଠା ବାଡ଼ି–ନଅମହଲା, ଦଶମହଲା, ପନ୍ଦର ମହଲା–ମାର୍କେଟ, ଅଫିସ ତିଆରି କରି ଚାଲିଛୁ। ମାତ୍ର ସହର ଭିତରେ ଛୋଟ ଛୋଟ ବଣବୁଦା ତୋଟା ବୁରେଇ ସୃଷ୍ଟି କରୁନାହୁଁ। ପିଲାଏ ଆମର ବୁଲିବେ କୋଉଠି ? ଖେଳିବେ କୋଉଠି ? ଛଅ ଋତୁରେ ବଣବୁଦାରେ ଅସୁମାରୀ ଫୁଲ ଫୁଟନ୍ତା, ଫଳ ଫଳନ୍ତା–ନାନାବିଧ କୋଳି ଫଳନ୍ତା। ପିଲାଏ ଇସ୍କୁଲ ନ ଥିବା ଦିନ ସେଠି ଯାଇ ବୁଲନ୍ତେ–କୋଳି ଫଳ ତୋଳି ଖାନ୍ତେ। ନାନା ପ୍ରକାର ଚଢ଼େଇ ଦେଖନ୍ତେ। ସେମାନଙ୍କର କୂଜନ ଶୁଣନ୍ତେ–ନାନାପ୍ରକାର ଫୁଲ ଦେଖନ୍ତେ।

ସେମାନଙ୍କ ମନ ପ୍ରଫୁଲ୍ଲ ରହନ୍ତା, ସରଳ ରହନ୍ତା—ନିଶ୍ଚିନ୍ତ ରହନ୍ତା ଆଉ ସହଜ ଓ କୋମଳ ରହନ୍ତା। ବର୍ତ୍ତମାନ ସହରୀପିଲାଙ୍କୁ ଦେଖନ୍ତୁ। ସେମାନଙ୍କ ମୁହଁରେ ନିରାପତ୍ତା ଓ ସାହସର ତେଜ ନାହିଁ—ଜୀବନୀଶକ୍ତିର ସହଜ ସୁନ୍ଦର ସରଳ ପ୍ରଫୁଲ୍ଲତା ନାହିଁ। ନାନାପ୍ରକାର ଭୀତି, ସନ୍ଦେହ ଈର୍ଷା ଆଶଙ୍କା ସେହି ଫୁଲ ପରି ମୁହଁଗୁଡ଼ିକୁ ବିକୃତ କରି ଦେଇଛି। ଆମେ କିନ୍ତୁ ସେ ଆଡ଼କୁ ଦୃଷ୍ଟି ଦେଉନାହୁଁ—ନଗର ଉନ୍ନୟନ ପରିକଳ୍ପନା କରି ଚାଲିଛୁ। ଅଥଚ ନଗରରେ ଯେଉଁମାନେ ରହିବେ, ସେମାନଙ୍କ ହୃଦୟ କିପରି ମାନବୀୟ ଭାବରେ ପରିପୂର୍ଣ୍ଣ ହୋଇ ବିକଶିତ ହେବ, ଆମର ସେଣିକି ଆଦୌ ନିଘା ନାହିଁ। ରାସ୍ତା ଘାଟରେ, ସିନେମା ଛକରେ ଦଳ ଦଳ ହୋଇ ବୁଲୁଥିବା ଯୁବକମାନଙ୍କୁ ଦେଖିଲେ ମତେ ଲାଗେ, ଏମାନେ କେଡ଼େ ନିଃସଙ୍ଗ, କେତେ ନିଃସହାୟ—କେତେ ସନ୍ଦେହ ଆଉ ଆଶଙ୍କାଗ୍ରସ୍ତ ଜୀବନ ବିତାଉଛନ୍ତି! ଅଥଚ ଦୋଷ ସେମାନଙ୍କର ନୁହେଁ। ଯେତେ ପିଲା ନାନା ଅସାମାଜିକ ବ୍ୟାପାରରେ ଲିପ୍ତହୋଇ ଯାଉଛନ୍ତି—ଦୋଷ ସେମାନଙ୍କର ନୁହଁ, ଦୋଷ ଆମର—ବଡ଼ମାନଙ୍କର, ବଡ଼ବଡ଼ିଆମାନଙ୍କର—ଯେଉଁମାନେ, କି କେବଳ ନିଜକୁ ଦେଖୁଛନ୍ତି—ନିଜର ଆୟବୃଦ୍ଧି ଓ କ୍ଷମତାବୃଦ୍ଧିରେ ମାତିଛନ୍ତି। ଆମର ପିଲାମାନେ ଯେ ଆମର ଭବିଷ୍ୟତ, ସେ କଥା ଆମ ମୁଣ୍ଡରେ ପଶୁନାହିଁ।

ବର୍ତ୍ତମାନ ବେଳ ଆସିଛି, ଆମେ ଆମର ପିଲାମାନଙ୍କୁ ଅନ୍ତତଃ ଏହି ଆଧୁନିକ ସହରୀ ସଭ୍ୟତାର ବିଷଚକ୍ରରୁ ରକ୍ଷା କରିବା। ସେମାନଙ୍କ ମନର ଏହି ନିଃସଙ୍ଗତା ଓ ଆଶଙ୍କାପ୍ରବଣତାର ଭାବ ଦୂରୀଭୂତ କରିଦେବା। କାରଣ ଆମେ ଆମ ଭବିଷ୍ୟତକୁ ଅଧିକ ମାନବୀୟ କରିବା କି ନାହିଁ, ତାହା ଆମର ବର୍ତ୍ତମାନର ଚିନ୍ତା ଓ କାର୍ଯ୍ୟ ଉପରେ ନିର୍ଭର କରେ।

❋❋

# ହା' ଜଗନ୍ନାଥ !

ଯାହା ଦେଖାଯାଉଛି-ଏଇ କେତେଦିନ ହେଲା, ଓଡ଼ିଆ ଜାତିର ଜଗନ୍ନାଥପ୍ରବଣତା ପ୍ରଦର୍ଶନୀ ଆଶାତୀତ ଭାବରେ ବଢ଼ି ଯାଇଛି। ଯୁଆଡେ ଦେଖିବ-ରାସ୍ତାଘାଟ, ଦୋକାନବଜାର ସର୍ବତ୍ର ଜଗନ୍ନାଥଙ୍କ ଛବି। ନୂଆ ପତ୍ରିକାଟିର ପ୍ରଚ୍ଛଦପଟରେ ଜଗନ୍ନାଥ, ନୂଆ ବହିଟିର ମଲାଟରେ ଜଗନ୍ନାଥ। ଛକକାଗାମାନଙ୍କରେ ଜଗନ୍ନାଥ। କାହା କାହା ଡ୍ରଇଁରୁମ୍ କାନ୍ଥରେ ଜଗନ୍ନାଥ। ଅଫିସରୁମ୍‌ରେ ଜଗନ୍ନାଥ। କ୍ୟାଲେଣ୍ଡରମାନଙ୍କରେ ଜଗନ୍ନାଥ। କୋଉଠି ଏକୁଟିଆ ଜଗନ୍ନାଥ ତ, କୋଉଠି ତ୍ରିମୂର୍ତ୍ତିଙ୍କ ଛବି ବା ମୂର୍ତ୍ତି। ଗୋଟେ ଗୋଟେ ହୋଟେଲ ବା ଗେଷ୍ଟହାଉସରେ (ଯଥା, ଉତ୍କଳ ବିଶ୍ୱବିଦ୍ୟାଳୟ ଗେଷ୍ଟହାଉସ୍) ଧୂଳିଧୂସରିଆ ମୂର୍ତ୍ତି ଗୋଟିଏ କାନ୍ଥରେ ଟଙ୍ଗା ହୋଇଛନ୍ତି ଏବଂ କଣ୍ଟାଟି ଛୋଟ ବା ହୁଗୁଳାଥିବାରୁ ବାରମ୍ବାର ତଳେ ମୁହଁ ମାଡ଼ି ଖସିପଡୁଛନ୍ତି।

ଏଣେ ପୁଣି ଜଗନ୍ନାଥଙ୍କ ନାମରେ ବହୁ ଅନୁଷ୍ଠାନ ମଧ୍ୟ ଗଢ଼ାହୋଇଛି। ଏବଂ ଏବେ ଜଗନ୍ନାଥଙ୍କୁ କେନ୍ଦ୍ରକରି ବହୁ ଚଳଚ୍ଚିତ୍ର ନିର୍ମାଣ ହେଲାଣି। ଏବେ ଗୋଟିଏ ଖବରରୁ ଜଣାପଡ଼ିଛି ଯେ, କୁଆଡ଼େ ଗୋଟିଏ ଚଳଚ୍ଚିତ୍ର କମ୍ପାନୀ ଜଗନ୍ନାଥଙ୍କ ରଥଯାତ୍ରାକୁ ସିନେମାଭୁକ୍ତ କରିବା ପାଇଁ ନକଲି ଜଗନ୍ନାଥ ମୂର୍ତ୍ତି ନିର୍ମାଣ କରି, ଶ୍ରୀମନ୍ଦିରର ବାଇଶି ପାବଚ୍ଛରେ ସୁଟିଙ୍ଗର ସବୁ ବନ୍ଦୋବସ୍ତ କରି ସାରିଥିଲେ। ମାତ୍ର ଶ୍ରୀଜଗନ୍ନାଥଙ୍କର ସ୍ୱକୀୟ ମହିମାରୁ ମନ୍ଦିରର ପ୍ରକାଶକ ମହୋଦୟଙ୍କ ମୁଣ୍ଡରେ ଶୁଭବୁଦ୍ଧି ଜାଗ୍ରତ ହେଲା। ସେ ଯଥାସମୟରେ ନିଷେଧାଜ୍ଞା ଜାରି କଲେ। ତା' ଫଳରେ ମନ୍ଦିର ଭିତରେ ବାଇଶିପାବଚ୍ଛରେ ନକଲି ଜଗନ୍ନାଥଙ୍କ ପହଣ୍ଡି ଅଭିନୟ ଓ ସୁଟିଙ୍ଗ୍ ସମ୍ଭବ ହେଲା ନାହିଁ। ଚଳଚ୍ଚିତ୍ର ନିର୍ମାତାଗଣ ବାଇଶି ପାହାଚକୁ ଚିଲିକା, ନନ୍ଦନକାନନ ଭଳି ସ୍ଥାନ ବିଶେଷଟିଏ ବୋଲି ଭାବିଥିଲେ। ହାୟରେ !

ଏ ଖବରଟି ଯଦି କିଛି ଅଂଶରେ ବି ସତ୍ୟ ହୋଇଥାଏ, ତେବେ ବୁଝିବାକୁ ହେବ ଯେ ଓଡ଼ିଆଜାତିର ସମ୍ପୂର୍ଣ୍ଣଭାବେ ମତିଭ୍ରମ ଅବସ୍ଥା ଆସିଗଲାଣି। ବର୍ତ୍ତମାନର ଓଡ଼ିଆଙ୍କର ଜାତୀୟ କ୍ରିୟାକଳାପକୁ ଅନୁଧ୍ୟାନ କଲେ, (ଅବଶ୍ୟ ଆମେ ଏଠି ଶିକ୍ଷିତ ସହରୀ ଓଡ଼ିଆଙ୍କ କଥା କହୁଛୁ) ସଫା ବୁଝାପଡୁଛି ଯେ, ଏ ଜାତି ବହୁ ବର୍ଷ

ହେଲା ନୈତିକ ଓ ସାଂସ୍କୃତିକ ଅଧଃପାତ ଆଡ଼କୁ ମୁହାଇ ଯାଉଛି ଏବଂ ଶେଷଦୃଶ୍ୟଟି ଆଉ ବେଶି ଡେରି ନାହିଁ। ତାର ଉଲ୍ଲେଖନୀୟ ପ୍ରମାଣ ହେଲା, ବ୍ଲାସଫେମୀ କରିବାରେ ଏ ଜାତି ଅପୂର୍ବ କୃତିତ୍ୱ ଦେଖାଇ ଆସିଛି। ଏବଂ ଶେଷରେ ତାର ପରମାରାଧ ଜଗନ୍ନାଥଙ୍କୁ ସଂପୂର୍ଣ୍ଣ ବ୍ଲାସ୍‌ଫେମୀ କରିସାରିଲାପରେ ଏ ଜାତିର ଅବଶିଷ୍ଟ ମହତ୍ତ୍ୱ ସମୁଦ୍ରରେ ବୁଡ଼ିଯିବ ଓ ଜଗନ୍ନାଥ ମଧ ସଂପୂର୍ଣ୍ଣ ବେଳଜତ ହେବା ପୂର୍ବରୁ ଶ୍ୱେତଦ୍ୱୀପଗୁଡ଼ିକ ଅଭିମୁଖରେ ସତ୍ୱର ପଳାୟନ କରିବେ। ବର୍ତ୍ତମାନ ଜଗନ୍ନାଥଙ୍କୁ ନେଇ ଯୋଉ ସବୁ ହଇହଲ୍ଲା, ମାତଲାମି ଓ କ୍ରିୟାକାଣ୍ଡ ଚାଲିଛି, 'ତା' ପଛରେ ପ୍ରକୃତରେ କୌଣସି ଭାକ୍ତିକ ଆନ୍ତରିକତା ବା ସ୍ୱାଭାବିକ ଆବେଗ ଓ ଭାବପ୍ରବଣତା ରହିଛି କି ? ସୁସ୍ପଷ୍ଟ ଓ ନିର୍ଭୀକ ଉତ୍ତରଟି ହେବ-ନାଁ। ବରଂ ତାପଛରେ ରହିଛି ଜଗନ୍ନାଥଙ୍କୁ ଆଗରେ ଥାପି ନିଜପାଇଁ ଜାଗତିକ ଯଶ, ଧନ, ଖ୍ୟାତି, ପ୍ରତିଷ୍ଠା ଓ ପ୍ରତିପତ୍ତି ଆଦି ଅର୍ଜନ କରିବାର ଲାଭସର୍ବସ୍ୱ ବଣିକ ବା ରାଜନୀତିକ ମନୋବୃତ୍ତି।

ସେଥିପାଇଁ ମଧ ଜଗନ୍ନାଥ ତତ୍ତ୍ୱ ଉପରେ ଆମର କତିପୟ ସୁଜାଣ (?) ପଣ୍ଡିତ ବକ୍ତୃତା ଦେଲାବେଳେ ଏଭଳି ଅନାନ୍ତରିକ, ମାତ୍ରାଜ୍ଞାନହୀନ, କାଣ୍ଡଜ୍ଞାନ ବିବର୍ଜିତ ବାଚାଳତା ଓ ବେହେଲପଣିଆ ପ୍ରଦର୍ଶନ କରନ୍ତି ଯେ, ତାହା ଶୁଣିଲେ ଓ ଦେଖିଲେ ଯେ କୌଣସି ଜଗନ୍ନାଥପ୍ରାଣ ସୁରୁଚିବନ୍ତ ଲୋକର ଧୈର୍ଯ୍ୟଚ୍ୟୁତି ତ ଘଟିବ, ମନରେ ବିରକ୍ତି, କ୍ରୋଧ ଓ ନୈରାଶ୍ୟ ଭାବ ମଧ ଜାଗ୍ରତ ହେବ। ଦିନେ ଗୋଟିଏ ଧର୍ମସଭାରେ ଓଡ଼ିଶାର ଜଣେ ସ୍ୱୟଂପ୍ରଚାର ପ୍ରତିଷ୍ଠାକ୍ଷମ ବିଖ୍ୟାତ ଦିଗ୍‌ଗଜ ପଣ୍ଡିତ ବାଚାଳପୁଙ୍ଗବ ଆମ ଜଗନ୍ନାଥଙ୍କ ମହିମା ପ୍ରଖ୍ୟାପନ କଲାବେଳେ ବେହେଲାମି ଓ ବାହୁଲ୍ୟ କରୁ କରୁ କହି ଚାଲିଲେ ଯେ, ଜଗନ୍ନାଥ ମୂର୍ତ୍ତି ହେଲା ପୂର୍ଣ୍ଣବ୍ରହ୍ମ ଏବଂ ଏ ଜଗତରେ ଆବହମାନ କାଳରୁ ଯେତେ ଧର୍ମସଂପ୍ରଦାୟ ଦେଖାଦେଇଛି, ସବୁ ଧର୍ମସଂପ୍ରଦାୟର ତତ୍ତ୍ୱ ଏହି ମୂର୍ତ୍ତି ଭିତରେ ପ୍ରତୀକିତ ହୋଇଛି। ସେହି ମୂଢ଼ ବାଚାଳ ଶିରୋମଣି ବକ୍ତା ଜଣକ ଆହୁରି ପୁଣି ନାନା ପ୍ରାଚୀନ, ଅର୍ବାଚୀନ, ଖ୍ୟାତାଖ୍ୟାତ ନାନାଦି ଶାସ୍ତ୍ରାଶାସ୍ତ୍ରରୁ ମୁହେଁ ମୁହେଁ ନାନା ଆର୍ଷ ଓ ଉଦ୍ଭଟ ନଜିରମାନ ଦେଇ ପ୍ରମାଣ କଲେ ଯେ ଖ୍ରୀଷ୍ଟିୟାନମାନଙ୍କର କ୍ରୁଶ ପ୍ରତୀକଟି ଓ ମୁସଲମାନମାନଙ୍କର ଖଣ୍ଡଚନ୍ଦ୍ର ଓ ତାରା ପ୍ରତୀକଟି ମଧ ଜଗନ୍ନାଥ ମୂର୍ତ୍ତିରେ ଅଛି। ଖାଲି ଦେଖିପାରିଲେ ହେଲା। କିନ୍ତୁ ଏହା କିଏ ଦେଖିବ ? ଖ୍ରୀଷ୍ଟିୟାନ ଓ ମୁସଲମାନ ଦେଖିବେ ? ନା ଆମେ ଦେଖିବୁ ? ଆମ ଜଗନ୍ନାଥ ପୁଣି ଭାରତବର୍ଷର ସବୁ ଦେବତାଙ୍କଠାରୁ ବଡ଼। ସେ କାଶୀ ବିଶ୍ୱନାଥ ହୁଅନ୍ତୁ ବା ମହାରାଷ୍ଟ୍ରର ବିଠଲଦେବ ହୁଅନ୍ତୁ ବା ଦାକ୍ଷିଣାତ୍ୟର ତିରୁପତି ଠାକୁର ହୁଅନ୍ତୁ। ସେ ପୁନଶ୍ଚ ନାନା ଉଦ୍ଭଟ ପ୍ରମାଣଦେଇ ଦେଖାଇଲେ ଯେ ଆମ ଜଗନ୍ନାଥ ରାମ, କୃଷ୍ଣ, ବୁଦ୍ଧ ଇତ୍ୟାଦିଙ୍କ ଠାରୁ ମଧ ଯଥେଷ୍ଟ ବଡ଼। ସେମାନେ ସବୁ ଅବତାର-ମାତ୍ର ଆମ ଜଗନ୍ନାଥ ସ୍ୱୟଂ ଅବତାରୀ।

ଅବତାର, ଅବତାରୀ, ବ୍ରହ୍ମ, ଆତ୍ମା, ପ୍ରତୀକ, ପ୍ରତିମା, ପ୍ରଭୃତି ଦାର୍ଶନିକ ଅମୂର୍ତ୍ତ ଶବ୍ଦଗୁଡ଼ିକର ଯାଥାର୍ଥ୍ୟ ଓ ତାତ୍ପର୍ଯ୍ୟ ଆମର ସାଧାରଣ ଲୋକେ ବୁଝନ୍ତି ନାହିଁ ବୋଲି ଏହି ଅର୍ଥ ଓ ଯଶ ପ୍ରତିଷ୍ଠାଦିର କାଙ୍ଗାଳ ମୂଢ଼ ପଣ୍ଡିତମାନଙ୍କର ଅନ୍ତରସ୍ପର୍ଶରହିତ ଅହଙ୍କାରୀ ବାଚାଳ ବାହୁଲ୍ୟ ବ୍ୟାଖ୍ୟା ଚାତୁରୀଗୁଡ଼ିକୁ ସହ୍ୟ କରିଯାଉଛନ୍ତି।

ଏହା ଜଣାଶୁଣା କଥା ଯେ, ଭିତରେ କିଛି ସାରତତ୍ତ୍ୱ ନ ଥିଲେ ବକ୍ତାମାନେ ଆତ୍ମପ୍ରଦର୍ଶନମୂଳକ ରବାଡ଼ମ୍ବର ପ୍ରଗଲ୍‌ଭତା ଦେଖାନ୍ତି। ଯଥାର୍ଥ ଆନ୍ତରିକତାର ଅଭାବ ହେଲେ ବାକ୍ୟଗୁଡ଼ିକ କୃତ୍ରିମ ଓ ଅତିଶୟୋକ୍ତି ହୁଏ। ଭିତରେ ଅନ୍ୟ କିଛି ମତଲବ ଥିଲେ, ସ୍ୱାଭାବିକ ସ୍ତୁତି ବା ପ୍ରଶଂସାବାଦ ତୋଷାମଦୀ ବା ପ୍ରଚାରମୂଳକ ହୋଇପଡ଼େ। ଜ୍ଞାନ ଓ ଭକ୍ତି ରାଜ୍ୟରେ ବୈଶ୍ୟବୃତ୍ତି କରୁଥିବା ବକ୍ତାମାନେ ମୂଢ଼ତାବଶତଃ ପରମଗୁହ୍ୟ ଧର୍ମତତ୍ତ୍ୱକୁ ଗୁହା ଭିତରୁ ସବଳେ ଓଟାରି ଆଣି ହାଟ ଭିତରେ ଖଣ୍ଡ ଖଣ୍ଡ କରି ବିକ୍ରି କରନ୍ତି। ଅନ୍ତରରୁ ପ୍ରେମ କମି କମି ଆସିଲେ ବିବାହିତା ନରନାରୀ ନିଜ ନିଜ ପତି ବା ପତ୍ନୀଙ୍କର ମାତ୍ରାହୀନ ପ୍ରଶଂସାବାଦ ପଡ଼ୋଶୀଙ୍କର ଆଗରେ ନିର୍ଲ୍ଲଜଭାବେ ବୟାନ କରିବାକୁ ଆରମ୍ଭ କରିଦିଅନ୍ତି। ଯଥାର୍ଥ ପ୍ରେମଭକ୍ତି ନଥାଇ ଅଥଚ ସମ୍ଭ୍ରମଭାବ ଭିତରୁ କମିଗଲେ, ଭଣ୍ଡ ଓ ଭାଣ୍ଡମାନେ ମହତ ବସ୍ତୁକୁ ବା ପୁରୁଷୋତ୍ତମଙ୍କୁ ରତ୍ନସିଂହାସନରୁ ଘିଡ଼ିଘାଡ଼ କରି ଘୋଷାରି ଆଣି ଗୋଟାଏ ଶଗଡ଼ରେ ବସାଇ ଭିଡ଼ି ନିଅନ୍ତି। ନଡ଼ାଖୁଣ୍ଟାର ଧୂଆଁରେ ଧୂପ ଦିଅନ୍ତି ଓ କଡ଼ିକିଆ ମୁଆଁ ଭୋଗ ଲଗାନ୍ତି। ବ୍ଲାସଫେମୀ ଆଉ କାହାକୁ କୁହାଯାଏ ?

ପାଠକେ! ଯଥାର୍ଥ ତତ୍ତ୍ୱବିତ୍ ଜ୍ଞାନୀ, ଭକ୍ତ ଓ ଦ୍ରଷ୍ଟାମାନେ ଜାଣନ୍ତି ଯେ ଜଗନ୍ନାଥ ମୂର୍ତ୍ତି ହେଲେ ପରମେଶ୍ୱରଙ୍କର ଅନନ୍ତ ଭାବାଙ୍କିତ ଅକଳ୍ପନୀୟ, ଅଚିନ୍ତନୀୟ ଦିବ୍ୟାନୁଭୂତି-ଜ୍ଞାପକ ଏକ ପ୍ରତୀକିତ ବିଗ୍ରହ। ଏବଂ ଏହି ମୂର୍ତ୍ତି ଉପନିଷଦ ଓ ଗୀତା-ବର୍ଣ୍ଣିତ ପୁରୁଷୋତ୍ତମ ତତ୍ତ୍ୱ ଉପରେ ପ୍ରତିଷ୍ଠିତ। ଏହି ମୂର୍ତ୍ତି-ରହସ୍ୟ ଉପଲବ୍ଧି କରିବାକୁ ହେଲେ ସତ୍ୟ, ସାମ୍ୟ, ମୈତ୍ରୀ, ଦୟା, ତ୍ୟାଗ, ପ୍ରେମ, ଭକ୍ତି ଆଦି ଦିବ୍ୟଗୁଣରେ ଅନ୍ତର ପରିପୂର୍ଣ୍ଣ ହେବା ଉଚିତ। ଏହା ମଧ୍ୟ ସତ୍ୟ ଯେ, ଜଗନ୍ନାଥ ଚେତନାର ସର୍ବବ୍ୟାପକତା ଯୋଗୁଁ ଏହା ଦିନକୁ ଦିନ ଅଧିକ ପରିସରକୁ ସଞ୍ଚାରିତ ହେବ- ହୋଇଚାଲିଛି ମଧ୍ୟ। ଆଜି ଦେଶ ବିଦେଶରେ ଜଗନ୍ନାଥଙ୍କ ମୂର୍ତ୍ତି ଓ ଭାବଚେତନାଦି ପ୍ରତି ବିଶ୍ୱମାନବ ପ୍ରାଣରେ ମଧ୍ୟ ଆସିଛି ଏକ ଭାକ୍ତିକ ଆଲୋଡ଼ନ। ଶ୍ରୀଜଗନ୍ନାଥ ମହାପ୍ରଭୁ ସ୍ୱମହିମାରେ ଅଧିଷ୍ଠିତ ଓ ସଂପୂଜିତ ହୋଇ ଆସିଛନ୍ତି ଏବଂ ଭବିଷ୍ୟତରେ ମଧ୍ୟ ଆହୁରି ହେବେ।

କିନ୍ତୁ ଆମ ଓଡ଼ିଆ ଜାତିର ମତି ଗତି ଦେଖି ବିଶ୍ୱାସ ହେଉ ନାହିଁ ଯେ, ଶ୍ରୀଜଗନ୍ନାଥ ଆଉ ବେଶି ଦିନ ଓଡ଼ିଶାରେ ରହିବେ! ଏକଥା ତାଙ୍କ ମନ୍ଦିରର ଆଭ୍ୟନ୍ତର ଓ

ଚତୁଃପାର୍ଶ୍ୱରୁ, ତାଙ୍କ ଯାନିଯାତ୍ରାରୁ, ତାଙ୍କ ମନ୍ଦିର ବ୍ୟବସ୍ଥାରୁ, ଭୋଗରାଗରୁ ଏବଂ ତାଙ୍କର ଏଇସବୁ ସେବକ, ଭକ୍ତ ଓ ପ୍ରଚାରକମାନଙ୍କ କାଣ୍ଡ କାରଖାନା ଦେଖି ଆଶଙ୍କା ହେଉଛି। ଶ୍ରୀଜଗନ୍ନାଥଙ୍କ ଚେତନା ଓ ମହିମା ବିଶ୍ୱବ୍ୟାପୀ ହୋଇ ଚାଲିଛି। ମାତ୍ର ଓଡ଼ିଶାରେ ଓଡ଼ିଆମାନେ ଶ୍ରୀଜଗନ୍ନାଥଙ୍କ ସଙ୍ଗେ ଘୋର ଅଚେତନ ବା ତାମସିକଭାବେ ବ୍ୟବହାର କରି ଚାଲିଛନ୍ତି। ଓଡ଼ିଆଙ୍କର ଧାରଣା ଯେ, ଶ୍ରୀଜଗନ୍ନାଥ ସେମାନଙ୍କ ତାମସିକ ପ୍ରକୃତି ଭଳି ସେମାନଙ୍କୁ କେବେ ବି ଛାଡ଼ିବେ ନାହିଁ। ସତ ମିଛ, ସଫା ମଇଳା, ଚେତନ ଅଚେତନ, ନିନ୍ଦା ପ୍ରଶଂସା, କୋଉଥିରେ ହେଲେ ଜଗନ୍ନାଥଙ୍କର କିଛି ବାରଣ ନାହିଁ। ତେଣୁ ତାଙ୍କୁ ସାରୁ ମାର୍ଗେ ଭାବିଲେ ସେ ସାରୁ-ଏବଂ ଆଳୁ ମାର୍ଗେ ଭାବିଲେ ସେ ଆଳୁ।

-ଏବଂ ଏହା ପରିଷାର ବୁଝାପଡୁଛି ଯେ, ଓଡ଼ିଆମାନେ ତାଙ୍କୁ ସାରୁ ମାର୍ଗେ ଭାବିବାକୁ ଠିକ୍ କରି ନେଇଛନ୍ତି।

ହା' ଜଗନ୍ନାଥ !

❋❋

# ରାଜନୀତି ହଟାଅ

ଆଲିଗଡ଼ ଓ ଦେଶର ଅନ୍ୟାନ୍ୟ ଅଞ୍ଚଳରେ ସାମ୍ପ୍ରଦାୟିକ ଗଣ୍ଡଗୋଳ ବାରମ୍ବାର ଘଟୁଛି ଏବଂ ଗଣ୍ଡଗୋଳ ମୁଖ୍ୟତଃ ହିନ୍ଦୁ ଓ ମୁସଲମାନ-ଏହି ଦୁଇଟି ସମ୍ପ୍ରଦାୟ ଭିତରେହିଁ ଘଟିଆସୁଛି । ଶୁଣାଯାଏ, କର୍ତ୍ତୃପକ୍ଷ ଆଲିଗଡ଼ରେ କ୍ଷତିଗ୍ରସ୍ତ ଅଞ୍ଚଳରେ ପିଟୁଣି ଟିକସ ବସାଇ ସମସ୍ୟାର ସମାଧାନ କରିବାକୁ ବସିଛନ୍ତି ଏବଂ ସବୁ କ୍ଷେତ୍ରରେ ହିଁ ସାମ୍ପ୍ରଦାୟିକ ଦଙ୍ଗା ଆରମ୍ଭ ହୋଇ ଅବସ୍ଥା ଅସମ୍ଭାଳ ଓ ସାଂଘାତିକ ହେଲା ପରେ ଯାଇ ସରକାର ସେକଥା ଜାଣୁଛନ୍ତି ଓ କ୍ଷତିଗ୍ରସ୍ତ ଲୋକଙ୍କୁ ବୋଧବାଧ ଦେବାଲାଗି କିଛି ଦାନଦକ୍ଷିଣା ଦେଇ ସେହି ସମସ୍ୟାରୁ ନିଷ୍କୃତି ପାଇଲେ ବୋଲି ଭାବୁଛନ୍ତି ।

ସ୍ୱାଧୀନତା ପାଇବା ପୂର୍ବରୁ ଏ ଦେଶରେ ଏହି ଦୁଇ ସମ୍ପ୍ରଦାୟ ଭିତରେ ହଣାକଟା ଲାଗୁଥିଲା ଏବଂ କେତେକ ମୁସଲମାନ ରାଜନୀତିକ ନେତା ଏହି ବିବାଦକୁ ନିଦର୍ଶନ ରଖି ଦୁଇଜାତି ତତ୍ତ୍ୱ ପ୍ରତିଷ୍ଠା କଲେ ଓ ଭାରତବର୍ଷକୁ ଦୁଇଜାତିଙ୍କ ଭିତରେ ଭାଗ ଭାଗ ନ କଲେ ଦୁଇଜାତି ଭିତରେ ପ୍ରବଳ ହାଣକାଟ ହୋଇ ଭାରତବର୍ଷ ସେହି ସଂଘର୍ଷର ରକ୍ତ-ସମୁଦ୍ରରେ ବୁଡ଼ିଯିବ ବୋଲି ମଧ୍ୟ ସେତେବେଳେ ଯୋଉ ପ୍ରଚାର ଚାଲିଥିଲା-ତାହା ଆମେ ଶୁଣିଥିଲୁ । ବେଶ୍, ସେଇଥିପାଇଁ ତ ଭାରତବର୍ଷ ଦୁଇଭାଗ ହେଲା । ଗୋଟିଏ ଭାଗ ଖାଣ୍ଟି ମୁସଲମାନମାନଙ୍କ ପାଇଁ । ପୁଣି କିଛିଦିନ ପରେ ବହୁ ହାଣକାଟ ପରେ ସେହି ଖାଣ୍ଟି ମୁସଲମାନ ଦେଶ ମଧ୍ୟ ପୁଣି ଦୁଇଭାଗ ହେଲା । ଗୋଟିଏ ଭାଗରେ ପଡ଼ିଲେ ବଙ୍ଗାଳୀ ମୁସଲମାନ ଓ ଅନ୍ୟ ପଟେ ପଡ଼ିଲେ ଉର୍ଦ୍ଦୁ ମୁସଲମାନ ।

କିନ୍ତୁ ବିଚିତ୍ର କଥା-ଭାରତବର୍ଷରେ ବି ଦଶକୋଟି ଖାଣ୍ଟି ଉର୍ଦ୍ଦୁ ମୁସଲମାନ ଅଛନ୍ତି ଓ ଚାରିକୋଟି ବଙ୍ଗାଳୀ ଅଛନ୍ତି ଏବଂ ଭାରତବର୍ଷ ନିଜକୁ ଧର୍ମନିରପେକ୍ଷ ରାଷ୍ଟ୍ର ବୋଲି ଘୋଷଣା କରିଛି-ଏବଂ ବଙ୍ଗାଳୀ, ଓଡ଼ିଆ, ତାମିଲ, ପଞ୍ଜାବୀ ସମସ୍ତେ ଭାରତୀୟ ଜାତୀୟତାକୁ ହିଁ ଗ୍ରହଣ କରିଛନ୍ତି । ଏ ପରିସ୍ଥିତିରେ ଆମ ଦେଶରେ ଯଦି ବାରମ୍ବାର ହିନ୍ଦୁ ମୁସଲମାନ ଦଙ୍ଗା ଲାଗି ରହେ ଏବଂ ଏହାର ଯଦି କୌଣସି ସ୍ଥାୟୀ ପ୍ରତିକାର କରାନଯାଏ, ତେବେ ହିନ୍ଦୁମାନେ ଚିରଦିନ ମୁସଲମାନମାନଙ୍କୁ ବିଦେଶୀ ବୋଲି ଭାବିବେ ଏବଂ ମୁସଲମାନମାନେ ମଧ୍ୟ ଚିରଦିନ ହିନ୍ଦୁମାନଙ୍କୁ ସନ୍ଦେହ କରି ଏ ଦେଶରେ ନିଜକୁ ବିଦେଶୀ ବୋଲି ମନେ କରିବାକୁ ବାଧ୍ୟ ହେବେ ।

ଦେଶରେ ଯୋଉ ଯୋଉ ଅଞ୍ଚଳରେ ହିନ୍ଦୁ-ମୁସଲମାନ ସଂଘର୍ଷ ହେଉଛି-ତାହା କୋଉ କାରଣରୁ ହେଉଛି-ଏବଂ ଆପାତଃ କାରଣ ବ୍ୟତୀତ ଏହି ସବୁ ସଂଘର୍ଷଗୁଡ଼ିକର ମୌଳିକ ଭିତିରିଆ କାରଣଗୁଡ଼ିକ କଅଣ, ସେଗୁଡ଼ିକୁ ପ୍ରଥମେ ଆବିଷ୍କାର କରିବାକୁ ପଡ଼ିବ। ଏହି ମୂଳ କାରଣଗୁଡ଼ିକ ଆବିଷ୍କାର କରି ସେଗୁଡ଼ିକର ସମାଧାନ ନ କଲେ ତାଳିପକା ନୀତିରେ ବା ତୋଷଣ-ପୋଷଣ ନୀତିରେ ଏ ସମସ୍ୟାର କୌଣସି ସ୍ଥାୟୀ ସମାଧାନ ହୋଇପାରିବ ନାହିଁ।

କିନ୍ତୁ ଏହି ମୂଳ କାରଣଗୁଡ଼ିକୁ କେଉଁମାନେ ଆବିଷ୍କାର କରିବେ ? ରାଜନୀତିବାଲାଙ୍କୁ ସାଧାରଣ ଲୋକ ଆଦୌ ବିଶ୍ୱାସ କରୁନାହାନ୍ତି। କେବଳ କାହାର କିଛି କାମ ପଡ଼ିଲେ ସେ ଯାଇ ସିନା ଏମ.ଏଲ.ଏ., ଏମ.ପି., ମନ୍ତ୍ରୀଙ୍କୁ ଧରୁଛି—ତା' ନହେଲେ ସମସ୍ତଙ୍କ ମନରେ ଏମାନଙ୍କ ପ୍ରତି ଘୋର ଘୃଣା ଓ ଅନାସ୍ଥାଭାବ ଆସିଗଲାଣି। ରାଜନୀତି ପ୍ରତି ମଧ୍ୟ ଲୋକଙ୍କର ଏତେ ଘୃଣାଭାବ ଆସିଗଲାଣି ଯେ ଲୋକେ ଖରାପ କଥାଟିଏ ଉଦାହରଣ ଦେଲାବେଳେ ଏହିଭଳି କୁହାକୋହି ହେଉଛନ୍ତି, ଯଥା-ଆମ ଗାଁରେ ଲକ୍ଷ୍ମଣେଶ୍ୱର ମହାଦେବଙ୍କ ଦେଉଳ ତୋଳା ଅଧା ରହିଗଲା, କାରଣ, ଆମ ସରପଞ୍ଚ ମହେନ୍ଦ୍ର ପଧାନ ସେଥିରେ ରାଜନୀତି ପୂରେଇଦେଲା। କିମ୍ବା ସମବାୟ ଶୀତଳ ଭଣ୍ଡାର ପ୍ରସ୍ତାବ ଆଉ ଆଗେଇଲା ନାହିଁ; କାରଣ ଆମ ଚେୟାରମ୍ୟାନ ସେଥିରେ ପଲିଟିକ୍‌ସ ଭର୍ତ୍ତି କରିଦେଲାଣି। କିମ୍ବା ଆମ ଗାର୍ଲ ସ୍କୁଲରେ ତାଲାବନ୍ଦ; କାରଣ ଆମ ଏମ୍.ଏଲ. ଏ. ସେଥିରେ ପଲିଟିକ୍‌ସ ଖେଳିଲାଣି।

ରାଜନୀତିବାଲାଙ୍କ ଦ୍ୱାରା ଆଉ କିଛି ହୋଇ ପାରିବ ନାହିଁ। ସେମାନେ ଅପନିନ୍ଦିତ ହୋଇଗଲେଣି। 'ରାଜନୀତିବାଲାଙ୍କୁ ବିଶ୍ୱାସ ନାହିଁ'—ଏହା ଗୋଟିଏ ପ୍ରବଚନ ହୋଇଗଲାଣି। କେବଳ ସେମାନଙ୍କ ହାତରେ କ୍ଷମତା ରହୁଛି ବୋଲି ଲୋକେ ତାଙ୍କ ପାଖରେ ଗୋଡ଼ଭାଙ୍ଗି ଠିଆ ହେଉଛନ୍ତି। ଯୋଉ ଦଳର ରାଜନୀତିବାଲା ହେଲେ ବି ତା' ପ୍ରତି ଲୋକଙ୍କର ଏଇ ମନୋଭାବ। ସ୍କୁଲ କଲେଜ ପିଲାତ ସେମାନଙ୍କୁ ଦେଖିଲା ମାତ୍ରେ ହସୁଛନ୍ତି। ସେମାନଙ୍କ ମୁହଁରୁ କିଛି ବାହାରିବା ମାତ୍ରେ ହସୁଛନ୍ତି। ଭଣ୍ଡ ସନ୍ୟାସୀଙ୍କ ପ୍ରତି ବା ଭାଣ୍ଡ ବାବାଜୀ ବୈଷ୍ଣବଙ୍କ ପ୍ରତି ଯୋଉ ମନୋଭାବ, ଏମାନଙ୍କ ପ୍ରତି ଅବିକଳ ସେହି ମନୋଭାବ ଆସିଗଲାଣି। (ଅବଶ୍ୟ କେତେକ ଦେଶପ୍ରାଣ ଆଦର୍ଶବାଦୀ ବ୍ୟକ୍ତିବିଶେଷଙ୍କୁ ଛାଡ଼ି ଏକଥା କୁହାଯାଉଛି।)

ଏହି ଅନାସ୍ଥାଭାବର ମୁଖ୍ୟକାରଣ ହେଲା—କ୍ଷମତା ପାଇଁ ବା ନିଜର ପୋଜିସନ୍‌କୁ ଦୃଢ଼ ରଖିବା ପାଇଁ ଏମାନେ ଯେକୌଣସି ଅନ୍ୟାୟ ବା ଅଧର୍ମ କାର୍ଯ୍ୟ କରିପାରନ୍ତି। ଗ୍ରାମ, ଦେଶ, ଜାତି, ଧର୍ମ, ସଂସ୍କୃତି—ଏ ସବୁର ମୂଲ୍ୟ ଏମାନଙ୍କ ନିକଟରେ କିଛି ନୁହେଁ। ଏମାନେ ସବୁ କଥାରେ, ସବୁ ସମସ୍ୟା ଆଗ ପ୍ରଥମେ ନିଜର ଓ ନିଜ ଦଳର କୌଣସି କ୍ଷତି ଘଟୁଛି କି ନାହିଁ ଦେଖନ୍ତି। ତେଣୁ ସମସ୍ୟାର ଅସଲ ନ୍ୟାୟୋଚିତ

ଦିଗଟି ପ୍ରତି ନିରପେକ୍ଷ ରହି ପାରନ୍ତି ନାହିଁ। ଅବଶ୍ୟ ଏହି ରାଜନୀତି ବର୍ତ୍ତମାନ ସମଗ୍ର ବିଶ୍ବର ମାନବୀୟ ସମସ୍ୟାଗୁଡ଼ିକ ପ୍ରତି ମଧ୍ୟ ତଦ୍ରୂପ ଏକ ବିପଦ ରୂପେ ଠିଆ ହୋଇଛି।

ରାଜନୀତି ଓ ରାଜନୀତିକମାନଙ୍କ ବିରୋଧରେ ଏତେ କଥା କହିବାର ଉଦ୍ଦେଶ୍ୟ ହେଲା-ଆମ ଦେଶରେ ବାରମ୍ବାର ଏହି ଯେଉଁ ସାଂପ୍ରଦାୟିକ ଦଙ୍ଗା ଲାଗୁଛି-ତା'ର ମୂଳରେ ରହିଛନ୍ତି ଏହି ଦୁଇ ସଂପ୍ରଦାୟର ରାଜନୀତିବାଲା। ସେମାନେ ଏହାକୁ ଆଳକରି ନିଜ ଉଦ୍ଦେଶ୍ୟ ସାଧନରେ ବ୍ୟସ୍ତ। ଏଣେ ମଧ୍ୟ ସରକାର ନିଜେ ଗୋଟିଏ ରାଜନୀତିକ ଅନୁଷ୍ଠାନ ଏବଂ ସରକାରଙ୍କ ବିରୋଧୀଦଳଗୁଡ଼ିକ ମଧ୍ୟ ତଦ୍ରୂପ ଏକ ଏକ ରାଜନୈତିକ ଅନୁଷ୍ଠାନ। ସରକାରୀ କର୍ତ୍ତୃପକ୍ଷ ଓ ବିରୋଧୀଦଳ ଉଭୟେ ଏହି ଭଳି ସାଂପ୍ରଦାୟିକ ପରିସ୍ଥିତିକୁ ନିଜ ନିଜ ସ୍ୱାର୍ଥଦୃଷ୍ଟିରୁ ବିଚାର କରୁଛନ୍ତି ଓ ସମାଧାନରେ ଲାଗି ସମସ୍ୟାଗୁଡ଼ିକୁ ଅଧିକ ଜଟିଳ କରୁଛନ୍ତି।

ପୂର୍ବେ ହିନ୍ଦୁ—ମୁସଲମାନଙ୍କ ଭିତରେ ସଦ୍‌ଭାବ ଆଣିବା ଲାଗି ଉଭୟ ଧର୍ମସଂପ୍ରଦାୟର ସାଧୁ ସନ୍ଥ, ଫକୀରମାନେ ଲାଗିଥିଲେ। ଏବେ କିନ୍ତୁ ରାଜନୀତିବାଲା ସେମାନଙ୍କୁ ଏହା ଭିତରକୁ ଛାଡ଼ୁ ନାହାନ୍ତି। ଏଇ ରାଜନୀତି ବାଲାଏ ଏ ସବୁକୁ ଆବୋରି ବସିଛନ୍ତି। ହାଟ, ବଜାର, ଯାନି, ଯାତ୍ରା, ମେଳା ମଉଛବ, ସଭା ସମିତି, ସ୍କୁଲ କଲେଜ, ବିଶ୍ୱବିଦ୍ୟାଳୟ ଓ ଶେଷରେ ମନ୍ଦିର, ମସ୍‌ଜିଦ, ଗୀର୍ଜା ସର୍ବତ୍ର ସବୁ କ୍ଷେତ୍ରରେ ଏଇମାନେଇ ପାହିମାଡ଼ି ବସିଛନ୍ତି। କାଳୀନାଗ ଭଳି ଏମାନେ ସମାଜର ସବୁ ଅଙ୍ଗକୁ ଗୁଡ଼ାଇ ଧରି ସେମାନଙ୍କର ବିଷାକ୍ତ ନିଃଶ୍ୱାସରେ ସବୁକୁ ବିଷଦଗ୍ଧ କରିଦେଲେଣି ତେଣୁ ବର୍ତ୍ତମାନ ସମାଜର ଆଉ ସବୁ ଶ୍ରେଣୀର ନେତୃବୃନ୍ଦ ନିସ୍ତେଜ ଓ ମ୍ରିୟମାଣ। ପୁରୋହିତ, ସନ୍ନ୍ୟାସୀ, ଫକୀର, ଶିକ୍ଷକ, ଅଧ୍ୟାପକ, କବି, ଲେଖକ, ବୈଜ୍ଞାନିକ, ଶିଳ୍ପୀ, ଆଇନଜ୍ଞ, ସମସ୍ତଙ୍କର ତେଜ ଅପହରଣ କରି ନେଇଛନ୍ତି ଏହି ରାଜନୀତିବାଲାଏ। ସମସ୍ତଙ୍କ ହାତରୁ ସାମାଜିକ ନେତୃତ୍ୱ ଛଡ଼ାଇ ନେଇ ଏମାନେ ତାକୁ ରାଜନୀତିକ ନେତୃତ୍ୱ ଓ କ୍ଷମତାରେ ପରିଣତ କରିଦେଇ ନିଜ ହାତରେ ରଖିଛନ୍ତି ଓ ସମଗ୍ର ସମାଜକୁ ମାଙ୍କଡ଼ ଭଳି ଖେଳାଉଛନ୍ତି ନଚାଉଛନ୍ତି ଓ ଦରମରା କରି ରଖୁଛନ୍ତି। ଏମାନେ ମଧ୍ୟ ଦେଶଟାକୁ ଛାରଖାର କରିଦେଲେଣି, ସମାଜକୁ ନଷ୍ଟଭ୍ରଷ୍ଟ କରିଦେଲେଣି। ଏମାନେ ଠାକୁର ଦେବତାଙ୍କୁ, ପୀରପୟଗମ୍ବରମାନଙ୍କୁ ପ୍ରଫେଟ ବା ମସିହମାନଙ୍କୁ ମନଇଚ୍ଛା ଉଦ୍‌ବସ୍ତ କରିସାରିଲେଣି।

ବର୍ତ୍ତମାନ ବେଳା ଆସିଛି, ସମଗ୍ର ସମାଜ, ଏମାନଙ୍କୁ ଆହୁରି ଘୃଣାକରୁ—ଏମାନଙ୍କୁ ପରିତ୍ୟାଗ କରୁ—ତା' ନ ହେଲେ ସେମାନଙ୍କ ବିଷାକ୍ତ ନାଗପାଶରେ ପଡ଼ି ସମାଜ ଓ ଦେଶ ଖୁବ୍ ଶୀଘ୍ର ଧ୍ୱଂସ ହୋଇଯିବ।

❋❋

# ବିଦ୍ୟା, ଆରୋଗ୍ୟ ଓ ନ୍ୟାୟଦାତାଙ୍କ ଭୂମିକା

ମଝି ମଝିରେ, କିନ୍ତୁ ବିରକ୍ତ କଲାଭଳି ଅନେକଥର, ଗୋଟିଏ ବିଶେଷ ଖବର ଆମ ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଏ। ତା' ହେଲା, କୌଣସି ଏକ ଗ୍ରାମ୍ୟ ଡାକ୍ତରଖାନାରେ ଭାରପ୍ରାପ୍ତ ଜଣେ ଡାକ୍ତର ଜଣେ ରୋଗିଣୀ ମହିଳା ପ୍ରତି ଅଶ୍ଳୀଳ ଅସଦାଚରଣ କରିଛନ୍ତି। ଏବଂ ସେହି ଘଟଣାକୁ କେନ୍ଦ୍ର କରି ଗ୍ରାମର କେତେକ ଉତ୍ତ୍ୟକ୍ତ ବ୍ୟକ୍ତି ଡାକ୍ତରଙ୍କୁ ମାଡ଼ଗାଳି ଦେଇସାରି ଏବଂ ଡାକ୍ତରଖାନାରେ କିଛି ଭଙ୍ଗାରୁଜା କାର୍ଯ୍ୟ କରିସାରି ଏବଂ ଡାକ୍ତରଖାନାରୁ କିଛି ଜିନିଷପତ୍ର ଲୁଣ୍ଠନ କରିସାରି, ଶେଷରେ ଥାନାବାଲାଙ୍କୁ ଖବର ଦେଇଛନ୍ତି। ଏବଂ ସେହି ଘଟଣାଟିର ସତ୍ୟାସତ୍ୟ ନିର୍ଣ୍ଣୟ ହେବା ପୂର୍ବରୁ ତାହା ଖବରକାଗଜକୁ ପଠାଇ ଦେଇଛନ୍ତି। ଏବଂ ତା' ସଙ୍ଗେ ସଙ୍ଗେ ସରକାରଙ୍କଠାରେ ଦାବୀ ହୋଇଛି ଯେ ସେହି ଡାକ୍ତରଙ୍କୁ ତୁରନ୍ତ ଏଠାରୁ ବଦଳି କରାଯାଉ।

ସେ ଯାହାହେଉ, ଆମେ କିନ୍ତୁ ଏଭଳି ଖବରଟିଏ ପଢ଼ିଲାମାତ୍ରେ ଆମକୁ ବଡ଼ ଅସ୍ୱସ୍ତି ଲାଗୁଛି। ସମାଜରେ ଆମେ ଯେଉଁ ସବୁ ବୃତ୍ତିଧାରୀ ଶ୍ରେଣୀକୁ ଅଧିକ ସମ୍ମାନ ଦେଖାଉ, ଶ୍ରଦ୍ଧା ଦେଖାଉ, ଆସ୍ଥା ଓ ବିଶ୍ୱାସ ଦେଖାଉ, ସେମାନେ ହେଲେ ମୁଖ୍ୟତଃ ଚିକିତ୍ସକ, ଶିକ୍ଷକ ଓ ବିଚାରପତି ଗୋଷ୍ଠୀ। ଯୁଗ ଯୁଗ ଧରି ଭାରତୀୟ ସମାଜରେ ଆମେ ଏହି ତିନିଶ୍ରେଣୀର ବ୍ୟକ୍ତିଙ୍କୁ ସ୍ୱତନ୍ତ୍ର ଦୃଷ୍ଟିରେ ଦେଖି ଆସିଛୁ। ଆମେ ଶିକ୍ଷକମାନଙ୍କୁ ବିଦ୍ୟାଦାତା ଗୁରୁ, ଚିକିତ୍ସକମାନଙ୍କୁ ଜୀବନଦାତା ବିଷ୍ଣୁ ଓ ବିଚାରପତିମାନଙ୍କୁ ନ୍ୟାୟଦାତା ଧର୍ମ ବୋଲି ଗଣ୍ୟ ଓ ମାନ୍ୟ କରିଥାଉଁ। ଏବଂ ଏହି ମନୋଭାବ ପୁଣି ଆମର ଏତେ ଗଭୀର ଓ ନୈଷ୍ଠିକ ଯେ ଆମର ଯୁଗଯୁଗାନ୍ତର କଠୋର ଜାତିପ୍ରଥାର ସଂସ୍କାର ଭିତରେ ବି ଆମେ ଏହି ତିନିଶ୍ରେଣୀର ବ୍ୟକ୍ତିଙ୍କ ସମ୍ବନ୍ଧେ ଜାତିଭେଦ ଧାରଣା ରଖୁନାହିଁ। ଜଣେ ଶିକ୍ଷକ, ଜଣେ ଚିକିତ୍ସକ ଓ ଜଣେ ବିଚାରପତି ଜାତିରେ ଯେତେ ନ୍ୟୁନ ହୋଇଥାନ୍ତୁ ପଛକେ, ଏପରିକି ଭିନ୍ନ ଧର୍ମାବଲମ୍ବୀ ହୋଇଥାନ୍ତୁ ପଛକେ, ଭାରତୀୟ ଜନତା ସେମାନଙ୍କୁ ଶ୍ରଦ୍ଧା, ବିଶ୍ୱାସ ଓ ଆସ୍ଥା ଦେଖାଇବାରେ ସାମାନ୍ୟତମ କୁଣ୍ଠା ବା କାର୍ପଣ୍ୟ ଦେଖାଏ ନାହିଁ ଏବଂ ଏ ସମ୍ବନ୍ଧେ ଆଉଟି ଉଲ୍ଲେଖନୀୟ ବ୍ୟାପାର ହେଲା କୌଣସି ଶିକ୍ଷକ, ଡାକ୍ତର ବା ଜଜ ସରକାରୀ

ଚାକିରିଆ ହୋଇଥିଲେ ବି, ଜନସାଧାରଣ ସେମାନଙ୍କୁ ସରକାରୀ ଚାକିରିଆମାତ୍ର ମନେ ନକରି ଏବଂ ସେମାନଙ୍କର ଚାକିରି ପାହ୍ୟାକୁ ଭ୍ରୂକ୍ଷେପ ନକରି ତାହାଠାରୁ ଊର୍ଦ୍ଧ୍ୱରେ ରଖି ଶ୍ରଦ୍ଧା, ଭକ୍ତି, ଆସ୍ଥା ଦେଖାଇଥାନ୍ତି ଏବଂ ସେମାନେ ମଧ୍ୟ ନିଜକୁ କୌଣସି ରାଜା ବା ସରକାରଙ୍କ ଚାକିରିଆମାତ୍ର ମନେ ନକରି ନିଜର ବୃତ୍ତିକୁ ଖୁବ୍ ମହନୀୟ ବୃତ୍ତିର ଯାହା ସ୍ୱଧର୍ମ ବା ସ୍ୱନୀତି, ତାକୁଇ ଯଥାଶକ୍ତି ଓ ଯଥାରୀତି ପାଳନ କରି ନିଜକୁ ସ୍ୱୟଂ ପ୍ରତିଷ୍ଠିତ ବୋଲି ମନେ କରନ୍ତି ଓ ନିର୍ଭୀକ ଭାବେ ଆତଜାତ ହୁଅନ୍ତି ।

ଏବେ କିନ୍ତୁ ଯୁଗ ଓଲଟିଛି । ଶିକ୍ଷକ, ଚିକିତ୍ସକ ଓ ବିଚାରପତିମାନଙ୍କର ସେହି ପୂର୍ବ ସାମାଜିକ ପ୍ରତିଷ୍ଠା ଓ ଗୌରବ ଆଜିକାଲି ଆଉ ଶ୍ରେଣୀଗତ ଭାବେ ନାହିଁ । ଯଦି କୌଣସି ଡାକ୍ତର ବା ଶିକ୍ଷକ ବା ବିଚାରପତି ବ୍ୟକ୍ତିଗତ ଭାବେ ନିଜ ବୃତ୍ତି ଓ ବ୍ୟକ୍ତିତ୍ୱରେ ବିଶେଷ କିଛି ବିଶେଷତ୍ୱ ପ୍ରଦର୍ଶନ କଲେ, ତା'ହେଲେ ଅବା ସେ ସମାଜର ସମ୍ମାନ, ଆସ୍ଥା ବା ବିଶ୍ୱାସଭାଜନ ହୋଇପାରନ୍ତି ସିନା, କିନ୍ତୁ ଶ୍ରେଣୀଗତ ଭାବେ ଏହି ମହତ୍ ବୃତ୍ତିଧାରୀମାନଙ୍କ ପ୍ରତି ଲୋକଙ୍କର ଆଉ ସେହି ପୂର୍ବଭାବ ନାହିଁ ।

ଏହାର କାରଣ ବହୁବିଧ । କିନ୍ତୁ ମୁଖ୍ୟ କାରଣଟି ହେଲା ଏଇ ତିନି ବୃତ୍ତିର ବ୍ୟକ୍ତିମାନେ ବର୍ତ୍ତମାନ ଏହାକୁ କେବଳ ବୃତ୍ତି ଦୃଷ୍ଟିରୁ ଗ୍ରହଣ କରିଛନ୍ତି । "ବୃତ୍ତି ଏ ମୋ ପୋଷେ କୁଟୁମ୍ବ" । ସ୍କୁଲ ବା କଲେଜରେ ଯେଉଁ ଶିକ୍ଷକ, ଅଧ୍ୟାପକଗଣ ଅଛନ୍ତି ଏବଂ କୋର୍ଟକଚେରୀରେ ଯେଉଁ ବିଚାରପତିମାନେ ଅଛନ୍ତି, ସେମାନଙ୍କ ଭିତରୁ ପ୍ରାୟ ଶତକଡ଼ା ନବେ ଜଣ ସେହି ବୃତ୍ତି କରିବା ଲାଗି ଶିକ୍ଷାଗତ ଯୋଗ୍ୟତା ଅର୍ଜନ କରିଥିଲେ ବି ଧର୍ମଗତ ଯୋଗ୍ୟତା ସେମାନଙ୍କର କେବେ ନଥିଲା ବା ନାହିଁ । ସେହି ମହତ ବୃତ୍ତି ପ୍ରତି ସେମାନଙ୍କ ମନ ଭିତରେ କୌଣସି ମହିମ୍ନଭାବ ନାହିଁ । ସେମାନେ ନିଜ ଅନ୍ତର ଭିତରେ କେବେହେଲେ ବି ଜ୍ଞାନ ବିତରଣ ଲାଗି, ସ୍ୱାସ୍ଥ୍ୟ ପ୍ରଦାନ ଲାଗି ଏବଂ ନ୍ୟାୟ ପ୍ରଦାନ ଲାଗି ଧାର୍ମିକ ବ୍ୟାକୁଳତା ଅନୁଭବ କରି ନାହାନ୍ତି, କି କରନ୍ତି ନାହିଁ । ପାଠ ପଢ଼ୁଥିଲେ ଚାକିରି ପାଇଁ । ପାଠ ସରିଲା । ଏଇ ଭାବରେ ଚାକିରିଟି ମିଳିଲା । ଏବଂ ଏହି ଚାକିରିରୁ କେତେ ଅର୍ଥ ଉପାର୍ଜନ କରି ପାରିବେ, ତାହାହିଁ ହେଲା କେବଳ ସେମାନଙ୍କର ପ୍ରଧାନ ଲକ୍ଷ୍ୟ ଓ ପ୍ରଧାନ ବ୍ୟଗ୍ରତା । ତେଣୁ ଫଳ ଯାହାହେବାର କଥା ତାହାହିଁ ହୋଇଛି । ଅଧିକାଂଶ ଶିକ୍ଷକଙ୍କୁ ଦେଖିଲେ ସେ ଯେ ଜ୍ଞାନ ଦେବାଲାଗି ବ୍ୟାକୁଳ, ତାହା ବୁଝାପଡୁ ନାହିଁ । ସନ୍ଦେହ ହେଉଛି ଯେ ସେ ନିଜେ ଜ୍ଞାନଠାରୁ ଯୋଜନ ଯୋଜନ ଦୂରରେ ହିଁ ଅଛନ୍ତି । ଅଧିକାଂଶ ଚିକିତ୍ସକଙ୍କୁ ଦେଖିଲେ ସେ ଯେ ରୋଗ ଦୂରକରିବାକୁ ବ୍ୟାକୁଳ, ତାହା ଦୃଶ୍ୟମାନ ହେଉନାହିଁ, ବରଂ ଓଲଟା ଦିଶୁଛି । ସେ ରୋଗ ବଢ଼େଇ ଦେଇ ପାରନ୍ତି । ଅଧିକାଂଶ ବିଚାରପତିଙ୍କୁ ଦେଖିଲେ ମନରେ ଭରସା ଆସୁ ନାହିଁ ଯେ ସେ ନ୍ୟାୟ ଦେବାଲାଗି ବ୍ୟାକୁଳ ହେଉଛନ୍ତି ।

ହାତରେ ଧରିଥିବା ତାଙ୍କ ଧର୍ମଦଣ୍ଡୀରେ କେଉଁଠି କେମିତି ପାସଙ୍ଗ ରହିଯାଇଛି ବା ସେ ନିଜେ ଧର୍ମଦଣ୍ଡୀ ଧାରଣରେ ହସ୍ତ କୌଶଳ ହୁଏତ ପ୍ରୟୋଗ କରିଥାନ୍ତି।

ସେଇଥିପାଇଁ, ଲୋକମାନେ ଆଉ ଏହି ତିନି ଶ୍ରେଣୀକୁ ପୂର୍ବବତ୍ ଶ୍ରଦ୍ଧା, ବିଶ୍ୱାସ କରୁନାହାନ୍ତି ଏବଂ ଆମର ଶିକ୍ଷକ, ଚିକିତ୍ସକ ଓ ବିଚାରପତିମାନେ ଏଥିପ୍ରତି ଆଜଠୁଁ ସାବଧାନ ରହନ୍ତୁ, ସଚେତନ ହୁଅନ୍ତୁ। କାରଣ କଳି ଯୁଗରେ ଭଗବାନ ସମସ୍ତଙ୍କୁ ପରୀକ୍ଷା କରିବା ପୂର୍ବରୁ ଆଗ ଲୋକମାନେ ସମସ୍ତଙ୍କର ଧର୍ମ ପରୀକ୍ଷା କରି ତା' ଲାଗି ଦଣ୍ଡ ଓ ପୁରସ୍କାର ଦେବେ। ଯେତେ ଗୋଳମାଳ ଥିଲେ ବି ଭାରତୀୟ ଜନତା ଆଜି ଜାଗ୍ରତ ହୋଇ ଉଠିଛି ଖୁବ୍ କ୍ଷିପ୍ର ଗତିରେ। ସବୁ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପାସ୍ କରି, ଜନତା ଦରବାରରେ ପରୀକ୍ଷା ଦେଇ ଅନ୍ୟୂନ ପାସ୍ ମାର୍କ ନ ରଖିଲେ ସମସ୍ତେ ମାଡ଼ ଖାଇବେ।

**

# କଳା ନା କାଳ ?

ଖବର ପ୍ରକାଶ ପାଇଛି ଯେ, ପଶ୍ଚିମ ଜର୍ମାନୀର ବାଭେରିଆ ପ୍ରଦେଶରେ କେତେକ ବ୍ୟକ୍ତି ଗୋଟିଏ କ୍ଲବ୍ ଗଢ଼ିଛନ୍ତି । ବର୍ତ୍ତମାନ ସୁଦ୍ଧା ଶହେ ଷାଠିଏଟି ପରିବାରର ତିନିଶହ ବ୍ୟକ୍ତି ସେ କ୍ଲବରେ ସଭ୍ୟ ହେଲେଣି । ଏହି କ୍ଲବ୍‌ର ସଭ୍ୟମାନେ ପ୍ରତିଜ୍ଞା କରିଛନ୍ତି ଯେ, ସେମାନେ ଆଉ ଟେଲିଭିଜନ ଦେଖିବେ ନାହିଁ । କାରଣ ସେମାନେ ଭଲ ଭାବରେ ବୁଝିଲେଣି ଯେ ଏହି ଟେଲିଭିଜନ ସେମାନଙ୍କର ବ୍ୟକ୍ତିଗତ ଜୀବନ, ସଂସ୍କୃତି, ସାହିତ୍ୟ ଓ ଜନମାନସକୁ ଧ୍ୱଂସ କରିଦେଲାଣି । ଟେଲିଭିଜନ ଦେଖି ସମୟ ନଷ୍ଟ ନ କରି ବରଂ ଅବସର ସମୟତକ ଉତ୍ତମ ଗ୍ରନ୍ଥ ଅଧ୍ୟୟନ କରିବାରେ, ବିଭିନ୍ନ ପ୍ରକାର ଖେଳ ଖେଳିବାରେ, ସମ୍ବାଦପତ୍ର ଓ ବିଭିନ୍ନ ଧରଣର ପତ୍ରପତ୍ରିକା ଅଧ୍ୟୟନ କରିବାରେ ବିନିଯୋଗ କରିବା ଉଚିତ ବୋଲି ସେ ମତ ଦେଇଛନ୍ତି । ଏହି କ୍ଲବ୍‌ର ମୁଖପାତ୍ର କହନ୍ତି ଯେ, ସାରା ବିଶ୍ୱରେ ଏହି ଟେଲିଭିଜନ ବିରୋଧ୍ ଆନ୍ଦୋଳନ ପ୍ରସାର ଲାଭ କରୁ ବୋଲି ସେମାନେ ଚାହାନ୍ତି । ବର୍ତ୍ତମାନ ଲାଗି ସେମାନେ ସାରା ପଶ୍ଚିମ ଜର୍ମାନୀରେ ଏହି ଆନ୍ଦୋଳନକୁ ଏକ ଶକ୍ତିଶାଳୀ ସାଂସ୍କୃତିକ ଆନ୍ଦୋଳନରେ ପରିଣତ କରିବାକୁ ଦୃଢ଼ ପରିକର ହୋଇଛନ୍ତି ।

ଉପରୋକ୍ତ ଖବରଟି ଶୁଣିଲା ପରେ ଆମ ମନରେ ଏହି ଆନ୍ଦୋଳନଟି ପ୍ରତି କିଛି ସମର୍ଥନ ସୂଚକ ସହାନୁଭୂତି ଆସୁଛି । କାରଣ କେବଳ ପଶ୍ଚିମ ଜର୍ମାନୀ ନୁହେଁ, ଆମେରିକାରେ ମଧ୍ୟ ବହୁ ସମାଜମଙ୍ଗଳ ସଂସ୍ଥା ଏହି ଟେଲିଭିଜନ ଦେଖିବା ବିରୋଧରେ ବହୁ ଦିନ ଧରି ତୀବ୍ର ମତ ଦେଇ ଆସୁଅଛନ୍ତି । ଯେତେବେଳେ ଟେଲିଭିଜନ ନୂଆ ନୂଆ ଆରମ୍ଭ ହେଲା, ସେତେବେଳେ ତାହା ଉପଭୋଗ କରିବା ଲାଗି ସେ ଦେଶରେ ପ୍ରବଳ ଆଗ୍ରହ ସୃଷ୍ଟି ହେଲା । କିନ୍ତୁ ବର୍ତ୍ତମାନ ଟେଲିଭିଜନର କୁଫଳ ସେମାନେ ଅଙ୍ଗେ ଅଙ୍ଗେ ନିଭେଇ ସାରିଲେଣି । ଟେଲିଭିଜନ କାର୍ଯ୍ୟକ୍ରମ ବର୍ତ୍ତମାନ ଘରୋଇ ସଂସ୍ଥାମାନଙ୍କ ହାତରେ ଏବଂ ଏହି ଘରୋଇ ସଂସ୍ଥାମାନ କେବଳ ଅର୍ଥ ଉପାର୍ଜନକୁ ହିଁ ସେମାନଙ୍କ ଜୀବନର ଲକ୍ଷ୍ୟ ବୋଲି ଧରିଛନ୍ତି । ଯେକୌଣସି ନଗ୍ନ, ବିଭତ୍ସ ଦୃଶ୍ୟ ଦେଖାଇ ଦର୍ଶକମାନଙ୍କ ମନରେ ଉତ୍ତେଜନା ସୃଷ୍ଟିକରି ସେହି ସୂତ୍ରରେ ଅର୍ଥଲାଭ ହିଁ ସେମାନଙ୍କର ଉଦ୍ଦେଶ୍ୟ । ଯୌନସମ୍ଭୋଗ ଓ ହତ୍ୟାକାଣ୍ଡ ଏହି ଦୁଇଟି ବ୍ୟାପାରକୁ ଯେତେ ଢଙ୍ଗରେ ଯେତେ ଭାବରେ ପ୍ରକାଶ କରାଯାଇପାରେ ତା' ଉପରେ

ସେମାନେ ଗବେଷଣା କରି ଚାଲିଛନ୍ତି। ଖାଲି ସେତିକି ନୁହେଁ ବିକୃତ ମସ୍ତିଷ ପ୍ରସୂତ ଯେତେ ଯାହା ଅଜବ୍ ଉଦ୍‌ଭଟ କାଣ୍ଡକାରଖାନା, କୌଣସିଟି ସେ ଦେଶର ଟେଲିଭିଜନ ନିର୍ମାତାମାନଙ୍କର ବହିଃଦୃଷ୍ଟି ଓ ଅନ୍ତର୍ଦୃଷ୍ଟିରୁ ଆଦୌ ଏଡ଼ାଇଯାଉନାହିଁ ଏବଂ ସେହି ଦେଶମାନଙ୍କରେ 'ଉତ୍ତେଜନା' ଏବଂ ପ୍ରତି ମୁହୂର୍ତ୍ତରେ ନୂଆ ନୂଆ କିଛି 'ଉତ୍ତେଜନା' ହିଁ ସେମାନଙ୍କୁ ବଞ୍ଚିବାର ସ୍ୱାଦ ଯୋଗାଉଛି ଏବଂ ଏହି ଉତ୍ତେଜନା ସୃଷ୍ଟି କରିବା ପାଇଁ ଟେଲିଭିଜନ ହିଁ ବର୍ତ୍ତମାନ ବଡ଼ ଏକ ସଂସ୍ଥା। କିନ୍ତୁ ଏକମାତ୍ର ସଂସ୍ଥା ନୁହେଁ। ସେ ଦେଶମାନଙ୍କରେ ବର୍ତ୍ତମାନ ସାହିତ୍ୟ ନାଁରେ ଯେଉଁସବୁ ବହିମାନ ବାହାରୁଛି ଏବଂ ବାହାରିଲାକ୍ଷଣି ଲକ୍ଷ ଲକ୍ଷ ସଂଖ୍ୟାରେ ବିକ୍ରୀ ହୋଇଯାଉଛି, ସେ ବହିଗୁଡ଼ିକ, ବିଶେଷତଃ ଗଳ୍ପ ଉପନ୍ୟାସଗୁଡ଼ିକ ମଧ୍ୟ ଏଇ ଯୌନ ଓ ହତ୍ୟାକାଣ୍ଡ ବ୍ୟାପାରକୁ ନେଇ ଲିଖିତ। ଲୋକେ ଏଇସବୁ ବହି ପଢ଼ି ଉତ୍ତେଜନା ପା'ନ୍ତି ଏବଂ ଏହି ଉତ୍ତେଜନାକୁ ସେମାନେ ଭାବନ୍ତି ବଞ୍ଚିବାର ରସ ଆସ୍ୱାଦନ। ଯେଉଁ କେତୋଟି ଉଚ୍ଚକୋଟୀର ଗଳ୍ପ, ଉପନ୍ୟାସ, କବିତାଦି ସେ ଦେଶରେ ରଚିତ ହୁଏ—ଖୁବ୍ ମୁଷ୍ଟିମେୟ ଲୋକ ତାହା ପାଠ କରନ୍ତି।

ବର୍ତ୍ତମାନ କହିବାରେ ଆଉ ଦ୍ୱିଧା ନାହିଁ ଯେ, ପଶ୍ଚିମର ଧାଁ ଧପଡ଼ି-ଭୋଗବାଦୀ ବହୁମୁଖୀ ସଭ୍ୟତା ଏତେ ଦୂରକୁ ଚାଲିଗଲାଣି ଯେ, ସେ ଦେଶର ଚିନ୍ତାଶୀଳ ଲୋକେ ଏଥିରେ ପ୍ରମାଦ ଗଣିଲେଣି। ଜନସାଧାରଣଙ୍କ ମନକୁ ପୁଣି କିପରି ସେ ଦିଗରୁ ଫେରାଇ ଆଣିହେବ, ସେ ଦିଗରେ ଆଉ କିଛି ଉପାୟ ଦିଶୁ ନାହିଁ। ଯଦିଓ ସେହି ଦିଗରେ ସେ ଦେଶର ଶୁଭକାମୀ ପ୍ରାଜ୍ଞବ୍ୟକ୍ତିମାନଙ୍କର ଚେଷ୍ଟାରେ ଅନ୍ତ ନାହିଁ। କିନ୍ତୁ ଆମ ଦେଶରେ ଏ ଦିଗରେ କେହି ମୁଣ୍ଡ ଖେଳାଇବାର ଜଣାପଡୁ ନାହିଁ। ଯେଉଁ ମୁଷ୍ଟିମେୟ କେତେଜଣ ଦେଶର ସଭ୍ୟତା, ସଂସ୍କୃତି, କଳା, ସାହିତ୍ୟ ଓ ଧର୍ମଭାବ ଉପରେ କିଛି କହୁଛନ୍ତି, ସେମାନଙ୍କ ସ୍ୱର ଏହି ତୁମୁଳ ହଟ୍ଟଗୋଳ ଭିତରେ ଅତ୍ୟନ୍ତ କ୍ଷୀଣ ଓ ମ୍ରିୟମାଣ ଶୁଭୁଛି।

ଆମ ଦେଶରେ ବର୍ତ୍ତମାନ ସିନେମା ହିଁ ଆମର ସାଂସ୍କୃତିକ ଅଧଃପତନ ଘଟାଇ ସାରିଲାଣି। ଆମ ସିନେମାମାନଙ୍କରେ ଗତ କେତେ ବର୍ଷ ଧରି ଯେପରି ନିମ୍ନରୁଚିରେ ବିଷୟ ସବୁ ପରିବେଷଣ କରାଯାଉଛି, ତାହା ବିରୋଧରେ ଯେତିକି ପ୍ରତିବାଦ ହେବାର କଥା ତାହା ପ୍ରାୟତଃ ହୋଇନାହିଁ ବା ହେଉନାହିଁ। କେବଳ ହିନ୍ଦୀ ସିନେମା ନୁହେଁ ଅଶ୍ଳୀଳ ଅପସଂସ୍କୃତ ବିଷୟବସ୍ତୁ ଓ ଦୃଶ୍ୟ ଦେଖାଇବାରେ ଦକ୍ଷିଣ ଭାରତର ଚଳଚ୍ଚିତ୍ର ନିର୍ମାତାମାନେ ହଲିଉଡ଼କୁ ମଧ୍ୟ ବଳି ଗଲେଣି। କେବଳ ବଙ୍ଗଳା ସିନେମା ବହୁ ଅଂଶରେ ସାଂସ୍କୃତିକ ରୁଚିର ମାନରକ୍ଷା କରିଛି। କହିବାକୁ ଲାଜ

ଲାଗୁଛି ଯେ, ଆମର ଓଡ଼ିଆ ଚଳଚ୍ଚିତ୍ର ନିର୍ମାତାମାନେ ଏତେ ତଳକୁ ଓହ୍ଲାଇ ନ ଥିଲେ ମଧ୍ୟ ସେମାନଙ୍କ ମନ ଭିତରେ ନିମ୍ନକୁ ଓହ୍ଲାଇବାର ପ୍ରେରଣା ହିଁ କ୍ରମଶଃ ବଳବତ୍ତର ହେଉଛି ବୋଲି ଆମର ସନ୍ଦେହ ।

ଏହାର କାରଣ ହେଲା କେବଳ ଧନ ଉପାର୍ଜନର ନିଶା । ଯେକୌଣସି ଉପାୟରେ ଧନ ଅର୍ଜନ କରିବାର ପାଗଳାମି । ଦେଶ ପଛେ ଉଚ୍ଛନ୍ନ ହେଉ—ସଭ୍ୟତା ବା ସଂସ୍କୃତି ରସାତଳକୁ ଯାଉ, ଜାତିର ନୈତିକ ଚରିତ୍ର ପଛେ ଅଧୋଗାମୀ ହେଉ ଅଥବା ଜାତୀୟ ଚେତନାର ବିପର୍ଯ୍ୟୟ ଘଟୁ, ସେଥିପ୍ରତି ଏହି ସବୁ ଧନକାମୀ ଚଳଚ୍ଚିତ୍ର ନିର୍ମାତାଙ୍କର ସାମାନ୍ୟତମ ଶୋଚନା ନାହିଁ । ଆମ ଦେଶରେ ବର୍ତ୍ତମାନ ଯେଉଁ ସାଂସ୍କୃତିକ ସଙ୍କଟ ଦେଖାଦେଇଚି, ତାର ମୂଳରେ ରହିଛି ଏହି ଅପସଂସ୍କୃତିର ବାହକ ସିନେମା । ବର୍ତ୍ତମାନ ଗ୍ରାମମାନଙ୍କୁ ବିଦ୍ୟୁତ୍ ଆଲୋକ ଗଲାଣି ଏବଂ ତା ସଙ୍ଗେ ସଙ୍ଗେ ଗଲାଣି ଏହି ସିନେମା । ତା' ଫଳରେ ଆମର ଯେଉଁ ଜାତୀୟ ସଂସ୍କୃତି ସହରମାନଙ୍କରୁ ତଡ଼ା ଖାଇ ଗାଁ ଗହଳରେ ହେଲେ ଯାଇ ଲଟକିଥିଲା—ଏହି ସିନେମାର ହାଓ୍ୱାରେ ତାହା କୁଆଡ଼େ ଉଡ଼ି ଗଲାଣି । ସିନେମାର ଖରାପ ପ୍ରଭାବ ବର୍ତ୍ତମାନ କିପରି ଗାଁ ଗହଳରେ ପଡ଼ିଛି ଏବଂ ତାର ଫଳାଫଳ କିପରି ମାରାତ୍ମକ ହେଲାଣି, ତାହା ଗାଁ ଗହଳକୁ ନ ଗଲେ ବୁଝିହେବ ନାହିଁ ।

ବର୍ତ୍ତମାନ ପ୍ରଶ୍ନ ଉଠୁଛି—ଏସବୁର ପ୍ରତିରୋଧ କେଉଁମାନେ କରିବେ ? କେଉଁମାନେ ଏହାର ପ୍ରତିବାଦ କରିବେ ? ରାଜନୈତିକ କ୍ଷେତ୍ରରେ ଟାଉଟରମାନେ କ୍ଷମତା ଅଧିକାର ଯୁଦ୍ଧବିଗ୍ରହରେ ମାତିଛନ୍ତି । ସାହିତ୍ୟିକ, ବୈଜ୍ଞାନିକ, ଅଧ୍ୟାପକ ଓ ଆଇନଜ୍ଞମାନେ ଯେଝା ଧନ୍ଦାରେ ନୀରବରେ ରହିଛନ୍ତି । କ୍ଷମତାଲୋଭୀ ଓ ଧନଲୋଭୀମାନଙ୍କ ହାତରେ ଦେଶର ଜୀବନ, ସଂସ୍କୃତି, ସଭ୍ୟତା ଓ ଏକ କଥାରେ ଜାତୀୟ ଆତ୍ମା ପଡ଼ିଗଲାଣି ଓ ତାହା ସର୍ବନାଶ ଆଡ଼କୁ ଆଗେଇ ଚାଲିଛି । କିଏ କେତେବେଳେ କିପରି ଆମକୁ ଉଦ୍ଧାର କରିବେ ?

ଏହି ଅପସଂସ୍କୃତିର ବାହକ ହୋଇଛି ଯେଉଁ ସିନେମା, ଆମେ ପୁଣି ତାକୁ କହୁଛୁ କଳା ଏବଂ ବର୍ତ୍ତମାନ ଯାହା ଦେଖାଯାଉଛି, ଏହି ସିନେମା ସମ୍ପର୍କୀୟ ପତ୍ରପତ୍ରିକା ହିଁ ବଜାରରେ ବେଶୀ ବିକ୍ରୀ ହେଉଛି ।

ଅସଲ କଥା କିନ୍ତୁ ହେଲା ଏହି ଚଳଚ୍ଚିତ୍ର କଳାଟି ହିଁ ଶେଷକୁ ଆମ ସଂସ୍କୃତିର କାଳ ହୋଇ ଉଠିଲାଣି ।

**

# ମୂର୍ତ୍ତି–ଭଙ୍ଗାଳୀଙ୍କ ଚେତାବନୀ

ଜରୁରୀ ପରିସ୍ଥିତି ଜାରିହେବା ପୂର୍ବରୁ ପଶ୍ଚିମବଙ୍ଗଳାରେ ନକ୍ସାଲପନ୍ଥୀମାନେ ସେମାନଙ୍କ ଢଙ୍ଗରେ ଯେଉଁସବୁ ବିପ୍ଳବାତ୍ମକ କାର୍ଯ୍ୟକ୍ରମ ଗ୍ରହଣ କରିଥିଲେ–ତା' ଭିତରେ ଥିଲା ରାଜ୍ୟସାରା ଜାତୀୟ ବୀରପୁରୁଷମାନଙ୍କର ଯେଉଁସବୁ ମୂର୍ତ୍ତି ବିରାଜମାନ ରହିଛି–ସେଗୁଡ଼ିକୁ ଭାଙ୍ଗିଦେବା। ସେହି କଳାପାହାଡ଼ୀ ଆକ୍ରମଣ ଫଳରେ କଲିକତାରେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ରାଜା ରାମମୋହନ ରାୟ, ସ୍ୱାମୀ ବିବେକାନନ୍ଦ, ସୁଭାଷ ଚନ୍ଦ୍ର ବୋଷ ଓ ମହାତ୍ମା ଗାନ୍ଧୀ ପ୍ରମୁଖ ବିଶିଷ୍ଟ ଜାତୀୟ ନେତାମାନଙ୍କର ପ୍ରସ୍ତର ଓ ବ୍ରୋଞ୍ଜ ନିର୍ମିତ ମୂର୍ତ୍ତିଗୁଡ଼ିକୁ ମୁଣ୍ଡବିହୀନ କରାଯାଇଥିଲା। ଖବରକାଗଜରେ ଏହି ଅପକର୍ମର ବହୁ ନିନ୍ଦାବାଦ ହୋଇଥିଲା। ପରେ ପରେ ସିଦ୍ଧାର୍ଥ ରାୟ ସରକାର ନକ୍ସାଲପନ୍ଥୀମାନଙ୍କୁ ମୁକାବିଲା କରିବାରେ, କିଛିଦିନ ଲାଗି ଏହା ବନ୍ଦ ରହିଥିଲା। ମାତ୍ର ପରେ ଜ୍ୟୋତି ବସୁଙ୍କ କମ୍ୟୁନିଷ୍ଟ ସରକାର ଅମଳରେ ପୁଣି ସେହି ମୂର୍ତ୍ତିଭଙ୍ଗା କାର୍ଯ୍ୟକ୍ରମ ଆରମ୍ଭ ହୋଇଗଲାଣି। ଏହାର ମୂଳରେ ଅଛନ୍ତି 'ରେଡ୍ ଗାର୍ଡ୍' ନାମଧେୟ ବାମପନ୍ଥୀ ବାହିନୀଟିଏ। ଅବଶ୍ୟ ପଶ୍ଚିମ ବଙ୍ଗଳାରେ ଏମାନଙ୍କର ଏହି ମୂର୍ତ୍ତିଭଙ୍ଗା କାର୍ଯ୍ୟକୁ ବାମ ଦକ୍ଷିଣ ଉଭୟପନ୍ଥୀ ରାଜନୈତିକ ନେତାମାନେ ଅପସନ୍ଦ କରି ବିବୃତ୍ତିମାନ ଦେଇଛନ୍ତି।

କିନ୍ତୁ ୧୯୭୯ ସେପ୍ଟେମ୍ବର ୧୬ ତାରିଖ ରବିବାସରୀୟ 'ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ୍' କାଗଜରେ "କାହିଁକି ସେମାନେ ମୂର୍ତ୍ତି ଭାଙ୍ଗୁଛନ୍ତି" ଶିରୋନାମାରେ ଲେଖାଟିଏ ପ୍ରକାଶ ପାଇଥିଲା। ସେହି ଲେଖାଟିରେ ଗୋଟିଏ ବେନାମୀ ଚିଠିକୁ ଉଦ୍ଧୃତ କରାଯାଇଥିଲା। ସେହି ଚିଠିତଳେ ଲେଖାଥିଲା– "ଲାଲସଲାମ, ଇତି ରେଡ୍ ଗାର୍ଡ୍ସ।" ସେହି ବେନାମୀ ଚିଠିରେ ମୂର୍ତ୍ତିଭଙ୍ଗାଳୀ ବିପ୍ଳବୀ ଯୁବକଗଣ ସେମାନଙ୍କର ଏହି ମୂର୍ତ୍ତିଭଙ୍ଗା ଆନ୍ଦୋଳନ ପଛରେ ଥିବା ମନୋଭାବକୁ ବ୍ୟକ୍ତ କରି କହିଛନ୍ତି ଯେ, ସେମାନେ ଏତଦ୍ଵାରା କଲିକତା ଓ ଅନ୍ୟ ପ୍ରଦେଶର ପ୍ରଗତିବାଦୀ ଓ ବିପ୍ଳବୀ ମନୋଭାବାପନ୍ନ କୃଷକ, ଶ୍ରମିକ, ଛାତ୍ର–ଛାତ୍ରୀ, ମଧ୍ୟବିତ୍ତ ଓ ବୁଦ୍ଧିଜୀବୀମାନଙ୍କ ଆଗରେ ସେମାନଙ୍କର ଭାବାଦର୍ଶ ଓ ଇତିହାସର ପ୍ରକୃତ ସତ୍ୟକୁ ଉଦ୍‌ଘାଟନ କରିବାକୁ ଚେଷ୍ଟା କରୁଛନ୍ତି। ସେମାନଙ୍କ ମତରେ ବର୍ତ୍ତମାନ ଦେଶର ଆର୍ଥନୀତିକ ପରିସ୍ଥିତି ହେଲା ଅର୍ଦ୍ଧସାମ୍ରାଜ୍ୟବାଦୀ। ଏଥିରେ ଯେତେ ଯାହା ଯୋଜନା କଲେ ବି ସର୍ବହରାଙ୍କର କୌଣସି ପ୍ରକାର ଉନ୍ନତି ହେବ ନାହିଁ। ଏହି ବ୍ୟବସ୍ଥା ଏପରି ଏକ ଭ୍ରମାତ୍ମକ ଐତିହାସିକ ଭିତ୍ତି

ଉପରେ ଗଢ଼ିଉଠିଛି ଯେ ସେହି ଭିତ୍ତି ଉପରେ ଆଉ କୌଣସି ଗଣତାନ୍ତ୍ରିକ ବା ସମାଜବାଦୀ ବ୍ୟବସ୍ଥା ସଫଳ ହୋଇପାରିବ ନାହିଁ। ତେଣୁ ଆମକୁ ପ୍ରଥମେ ସେହି ପ୍ରମାଦପୂର୍ଣ୍ଣ ଇତିହାସ ଓ ସଂସ୍କୃତିର ମୂଳଭିତ୍ତିକୁ ଭାଙ୍ଗିଦେଇ ଅନ୍ୟ ଏକ ପ୍ରଗତିଶୀଳ ଭିତ୍ତି ବନାଇବାକୁ ପଡ଼ିବ।

ଏ କଥା କହି, ସେମାନେ ଅଷ୍ଟାଦଶ-ଊନବିଂଶ ଶତାବ୍ଦୀର ବଙ୍ଗଳାରେ ଯେଉଁ ସାମାଜିକ, ସାଂସ୍କୃତିକ, ରାଜନୈତିକ ଅଭ୍ୟୁଦୟ ହୋଇଥିଲା, ସେହି ଅଭ୍ୟୁଦୟକୁ ଇଉରୋପର ସାମନ୍ତବାଦୀ, ପୁଞ୍ଜିବାଦୀ ଓ ବୁର୍ଜୋୟାବାଦୀ ଜାଗରଣ ବୋଲି ନାମିତ କରିଛନ୍ତି। ସେମାନଙ୍କ ମତରେ, ସେକାଳର ସଂସ୍କାରକ ଓ ଜାତୀୟ ବୀରମାନେ ବ୍ରିଟିଶ ସରକାରର ସାମ୍ରାଜ୍ୟବାଦୀ ଦର୍ଶନକୁ ସମର୍ଥନ ଓ ସାହାଯ୍ୟ କରୁଥିଲେ ଏବଂ ବର୍ତ୍ତମାନର ନେତାମାନେ ସେହି ପଦାଙ୍କ ଅନୁସରଣ କରି ସୋଭିଏତ୍ ରୁଷ ଓ ଆମେରିକାକୁ ସାହାଯ୍ୟ, ସମର୍ଥନ ଓ ଅନୁସରଣ କରୁଛନ୍ତି। ଏହି ନେତାମାନେ ହେଲେ ବିଦ୍ୟାସାଗର, ରାମମୋହନ ଓ ମୋହନଦାସ କରମଚାନ୍ଦ ଗାନ୍ଧୀ ପ୍ରମୁଖ ବୁର୍ଜୋୟା ମନୋଭାବାପନ୍ନ ବ୍ୟକ୍ତି।

ଏହି ମୂର୍ତ୍ତି-ଭଙ୍ଗାଳୀ ଯୁବକମାନଙ୍କ ମତରେ ଭାରତର ମୁକ୍ତିଯୁଦ୍ଧରେ ଓ ୧୮୫୭ର ଭାରତ-ସ୍ୱାଧୀନତା ସଂଗ୍ରାମରେ ଦେଶର ଯେଉଁ ବିପ୍ଳବୀମାନେ ଯୋଗ ଦେଇଥିଲେ ଓ ଯେଉଁମାନେ ସେକାଳରେ ଜମିଦାର ଓ ଶିଳ୍ପପତିମାନଙ୍କ ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମ କରିଥିଲେ, ସେଇମାନେ ହିଁ ଆମର ଯଥାର୍ଥ ଜାତୀୟ ବୀର ଓ ସେଇମାନଙ୍କୁ ନେଇ ଆଧୁନିକ ଭାରତର ଇତିହାସ ପୁନଃଲିଖିତ ହେଉ ଓ ସେମାନଙ୍କର ମୂର୍ତ୍ତିମାନ୍ ଗଢ଼ାଯାଇ ଦେଶର ଚାରିଆଡ଼େ ସ୍ଥାପିତ ହେଉ। ବର୍ତ୍ତମାନ କାଳରେ ମଧ୍ୟ ଯେଉଁମାନେ ନକସାଲପନ୍ଥୀ ଆନ୍ଦୋଳନରେ ଭାଗନେଇ ନିର୍ଯ୍ୟାତନା ଓ ମୃତ୍ୟୁବରଣ କରିଛନ୍ତି, ସେମାନଙ୍କୁ ମଧ୍ୟ ଜାତୀୟ ବୀର ରୂପେ ଗଣାଯାଉ ଓ ସେମାନଙ୍କ ମୂର୍ତ୍ତିମାନ ସ୍ଥାପିତ ହେଉ। ସେମାନଙ୍କ ଭିତରୁ କେତେଜଣଙ୍କ ନାମ ମଧ୍ୟ ସେମାନେ ଉଲ୍ଲେଖ କରିଛନ୍ତି। ସେମାନେ ହେଲେ ସିଧୁ, କାନୁ, ଚାନ୍ଦଭୈରବ, ମଙ୍ଗଳ ପାଣ୍ଡେଙ୍କଠାରୁ ଆରମ୍ଭ କରି ବାବୁଲାଲ, ବୁଟାନ, ପଟଳ, ସାଥୀ ଚାରୁ ମଜୁମଦାର, ସରୋଜ ଦତ୍ତ ଏବଂ ଜହରଙ୍କ ପର୍ଯ୍ୟନ୍ତ। ଏବଂ ଅନ୍ୟ ପ୍ରଦେଶରେ ମଧ୍ୟ ଏହି ଭଳି ଯୋଦ୍ଧାମାନଙ୍କ ପାଇଁ ସେମାନେ ସମରୂପ ନିର୍ଦ୍ଦେଶ ଦେଇଛନ୍ତି। ସବୁକଥା କହିସାରି ଚିଠିର ସମାପ୍ତିରେ ଦୁଇଟି ସ୍ଲୋଗାନ ରହିଛି, ସେଥିରୁ ପ୍ରଥମଟି ହେଲା– ''ଭାରତର ପ୍ରକୃତ ଇତିହାସ ଉଦ୍‌ଘାଟନ କର।''

ଏ ପତ୍ରଟିର ରାଜନୈତିକ ଦିଗ ଉପରେ ମୁଁ ଗୁରୁତ୍ୱ ଦେଉ ନାହିଁ। କିନ୍ତୁ ଏ ଚିଠିର ବିଷୟବସ୍ତୁକୁ ବେଖାତିର କରି ଯଦି କେହି ଏକ ତାମସିକ ଆତ୍ମପ୍ରସାଦ ଅନୁଭବ କରନ୍ତି ତେବେ ବୁଝିବାକୁ ହେବ ଆମର ଘର ବୁଡ଼ି ପାଣି ଆଣ୍ଠିଏ ହେଲା

ପର୍ଯ୍ୟନ୍ତ ବି ଆମେ ନାହିରେ ତେଲ ଦେଇ ଶୋଇଥିବା– ଆଉ ନଈ ପାଣି ନଈରେ ବୋହିଯିବ ବୋଲି ଭାବି ଆପଣା ମନକୁ ଆପେ ଏକ ତନ୍ଦ୍ରାଳୁ ଆଶ୍ୱାସନା ଦେଉଥିବା ।

ଏପରି ଭାବିବା ପାଇଁ କାରଣ ହେଲା–ଆମେ କଣ ସତରେ ଆମର ଜାତୀୟ ବୀରମାନଙ୍କ ସମ୍ବନ୍ଧେ ଏକ ନିରବଚ୍ଛିନ୍ନ ସଚେତନତା ବଜାୟ ରଖିପାରିଛୁ ? ଆମର ବର୍ତ୍ତମାନର ଯୁବକ ଯୁବତୀଗଣଙ୍କ ହୃଦୟରେ ଆମେ ଆମର ଜାତୀୟ ବୀରମାନଙ୍କର ରୂପକଳ୍ପ ସୁଦୃଢ଼ ଭାବେ ଥାପନା କରି ପାରିଛୁ ? ଆମର ଯୁବସଂପ୍ରଦାୟ ସ୍ୱାମୀ ବିବେକାନନ୍ଦ, ରାମକୃଷ୍ଣ ପରମହଂସ, ଶ୍ରୀ ଅରବିନ୍ଦ, ରବୀନ୍ଦ୍ରନାଥ, ଗାନ୍ଧିଜୀ, ଜବାହାରଲାଲ, ରାଜଗୋପାଳାଚାରୀ, ବାଳଗଙ୍ଗାଧର ତିଳକ ପ୍ରମୁଖଙ୍କ ସମ୍ବନ୍ଧେ ସଠିକ୍ କିଛି ଜାଣନ୍ତି କି ? ଆମର ଉତ୍କଳମଣି, ପଠାଣୀ ସାମନ୍ତ, ଆଚାର୍ଯ୍ୟ ହରିହର, ରାଧାନାଥ, ଗଙ୍ଗାଧର, ଫକୀରମୋହନ, କିମ୍ବା ଆମର ଇତିହାସର କପିଳେନ୍ଦ୍ର, ଅନଙ୍ଗଭୀମ ଦେବ, ପ୍ରତାପରୁଦ୍ର ମୁକୁନ୍ଦଦେବ, ସାରଳା ଦାସ, ଜଗନ୍ନାଥ ଦାସ, ଉପେନ୍ଦ୍ର ଭଞ୍ଜ ଭୀମଭୋଇ ପ୍ରମୁଖଙ୍କ ବିଷୟରେ ସଠିକ ଭାବେ କିଛି କାହାକୁ ଜ୍ଞାତବ୍ୟ ଅଛି କି ? ଏମାନଙ୍କ ଯୁଗୋପଯୋଗୀ ଜୀବନୀ ଲେଖା ହୋଇଛି କି ? ଏମାନଙ୍କର ମହତ୍ୱପୂର୍ଣ୍ଣ ଜୀବନର ଚିରନ୍ତନ ଦିଗଟି ଉପରେ କିଛି ଜାଜ୍ଜ୍ୱଲ୍ୟମାନ ଆଲୋକପାତ ହୋଇଛି କି ? ମନୁଷ୍ୟର ସାମଗ୍ରିକ ବିକାଶ ଦିଗରେ ଏମାନଙ୍କର ସଂଗ୍ରାମମୟ ଜୀବନର କିଛି ସର୍ବକାଳୀନ ନିର୍ଦ୍ଦେଶ ଅଛି କି ?

ଆମର ଯେଉଁସବୁ ପାଠ୍ୟପୁସ୍ତକ ଜୀବନୀଗ୍ରନ୍ଥ ଲେଖାଯାଇଛି– ସେଥିରେ ଶ୍ରୀଚୈତନଙ୍କୁ ଜଣେ ଗୌଡ଼ୀୟ ବୈଷ୍ଣବଧର୍ମ ପ୍ରଚାରକ, ରାମକୃଷ୍ଣ, ବିବେକାନନ୍ଦଙ୍କୁ ହିନ୍ଦୁଧର୍ମର ବିଖ୍ୟାତ ସନ୍ନ୍ୟାସୀ, ଶ୍ରୀ ଅରବିନ୍ଦଙ୍କୁ ଜଣେ ନୀରବ ଯୋଗୀପୁରୁଷ ଓ ଗାନ୍ଧିଜୀଙ୍କୁ ଜଣେ ଆଧ୍ୟାତ୍ମିକ ସ୍ୱାଧୀନତା ସଂଗ୍ରାମୀ ଭାବେ କେବଳ ଚିତ୍ରିତ କରାଯାଇଛି । ସେହିପରି ମଧୁସୂଦନଙ୍କୁ ଜଣେ ଖାଣ୍ଟି ଓଡ଼ିଆ ଜାତୀୟତା ପୃଷ୍ଠପୋଷକ ଓ ଗୋପବନ୍ଧୁଙ୍କୁ ଜଣେ ଜାହୁରା ଚୂଡ଼ା ଚାଉଳ ବାଣ୍ଟିବାବାଲା ରୂପେ ଆମେ ନିଜେ ଜାଣିଛୁ ଓ ଅନ୍ୟଙ୍କୁ ଜଣାଇଛୁ । ସେହିପରି ଜଗନ୍ନାଥ ଦାସ ଓ ଭୀମ ଭୋଇ ଆଦିଙ୍କୁ ଧର୍ମଭାବ ପ୍ରଚାରକ କବି ରୂପେ ଓ ଅନଙ୍ଗଭୀମ, କପିଳେନ୍ଦ୍ର ଆଦିଙ୍କୁ ବିରାଟ ସାମ୍ରାଜ୍ୟ ସ୍ଥାପୟିତ୍ରା ଭାବେ ବୁଝିଛୁ ଓ ବୁଝାଇଛୁ ।

ପ୍ରକୃତରେ ଆମେ ଏ ପର୍ଯ୍ୟନ୍ତ ଯୁଗୋପଯୋଗୀ ଇତିହାସ ଲେଖିନାହୁଁ ଏବଂ ଜାତୀୟବୀର ପୁରୁଷମାନଙ୍କ ଜୀବନର ଚିରନ୍ତନ ମହତ୍ୱଟିକୁ ଧରି ନାହୁଁ କି କହି ନାହୁଁ । ସେମାନଙ୍କର ରୂପକଳ୍ପ ଆମ ହୃଦୟରେ ସେପରି କିଛି ସ୍ପଷ୍ଟ, ଧ୍ରୁବ ଓ ପ୍ରୀତି ସଂଭ୍ରମପୂର୍ଣ୍ଣ ରେଖା ଓ ରଙ୍ଗରେ ଅଙ୍କିତ ହୋଇ ନାହିଁ । ସେଥିପାଇଁ ଆମେ ଷ୍ଟେସନ ପାଖେ, ସମୁଦ୍ରକୂଳେ, ରାସ୍ତା ଛକରେ, ବିଦ୍ୟାଳୟ ପ୍ରାଙ୍ଗଣରେ ବା ହାଟବଜାର

ଉପକଣ୍ଠରେ ଯେଉଁ ଜାତୀୟବୀରମାନଙ୍କର ମୂର୍ତ୍ତିମାନ ଠିଆ କରାଇଛୁ– ତା' ପାଖକୁ କେହି ଅବେଳାରେ ଯା'ନ୍ତି ନାହିଁ, ପ୍ରଣାମଟିଏ କରନ୍ତି ନାହିଁ। ତା' ଚାରିପାଖେ ଲୋକେ ପାଇଖାନା ବସନ୍ତି। ବିଲୁଆ, କୁକୁର ଶୁଅନ୍ତି। କାଉ, ଶାଗୁଣାଙ୍କ ମଳରେ ଜାତୀୟବୀରମାନଙ୍କ ମୂର୍ତ୍ତିର ମସ୍ତକ ବା ଗଣ୍ଡଦେଶ ପୂରୀଷଧବଳ ଦିଶୁଥାଏ।

ସତକଥା। ମୂର୍ତ୍ତି ଗଢ଼ିବା କାହାର ? ଯାହାର ଗୁଣ ସୁମରି ସୁମରି ଆମର ମଥା କୃତଜ୍ଞତାରେ ନଇଁପଡ଼େ। ମୂର୍ତ୍ତି ଗଢ଼ି, ଆମେ ତା' ଉପରେ ଫୁଲଟିଏ ଦେଇ ଆମ ହୃଦୟର ସମସ୍ତ କୃତଜ୍ଞତା ତା' ପାଦତଳେ ପରମଶ୍ରଦ୍ଧାରେ ଅଜାଡ଼ି ଦେଉ। ଶ୍ରଦ୍ଧା ନ ଥାଇ ଯେଉଁ ମୂର୍ତ୍ତି ସ୍ଥାପନ କରାଯାଏ ବା ମୂର୍ତ୍ତି ଥାପି ଦେଲା ପରେ ଯଦି କ୍ରମେ ଶ୍ରଦ୍ଧା କମିଯାଏ, ତେବେ ତାକୁ ଭାଙ୍ଗିବା ପାଇଁ ଯୁଗେ ଯୁଗେ ମୂର୍ତ୍ତିଭଙ୍ଗାଳୀମାନେ ଜନ୍ମ ନେବେ।

❋❋

# ବଦନ୍ତୁ ଧର୍ମନିପୁଣାଃ..

କିଛିଦିନ ତଳେ ମାନନୀୟା ମଦର ଟେରେସା ଦିଲ୍ଲୀଠାରେ ଆମର ପରିବାର ନିୟନ୍ତ୍ରଣ ପଦ୍ଧତି ଓ ଯୋଜନା ଉପରେ କେତେକ ମନ୍ତବ୍ୟ ପ୍ରକାଶ କରିଛନ୍ତି—ଯାହାକି ଅତ୍ୟନ୍ତ ପ୍ରଣିଧାନଯୋଗ୍ୟ। ଗର୍ଭପାତ ବିଷୟଟିର ନୈତିକ ମୂଲ୍ୟାୟନ କରି ମାନନୀୟା ମଦର ଟେରେସା କ୍ଷୋଭର ସହିତ ମତ ପ୍ରକାଶ କରିଛନ୍ତି ଯେ, ଏହା ଅତ୍ୟନ୍ତ ଗର୍ହିତ ବ୍ୟାପାର ଏବଂ ନରହତ୍ୟା ପାପ ସଙ୍ଗେ ସମାନ। ଭାରତ ସରକାର ଶୀଘ୍ର ଗର୍ଭପାତ ବ୍ୟାପରକୁ ବେଆଇନ ବୋଲି ଘୋଷଣା କରନ୍ତୁ।

ପୂତଚରିତା ମଦର ଟେରେସାଙ୍କର ଏହି ଉକ୍ତି ଉପରେ ସାରା ଦେଶର ସାମ୍ବାଦିକ ଓ ପ୍ରାଜ୍ଞ ବ୍ୟକ୍ତିମାନେ ମତ ପ୍ରକାଶ କରୁଛନ୍ତି। ବହୁ ବିଜ୍ଞ ବ୍ୟକ୍ତି କହୁଛନ୍ତି—ମଦର ଟେରେସା ଏ ସବୁ ବିଷୟରେ ମୁଣ୍ଡ ଖେଳାନ୍ତୁ ନାହିଁ। ସେ କେବଳ ଦୀନ ଅସହାୟ ଲୋକଙ୍କ ସେବାରେ ଲାଗନ୍ତୁ ଏବଂ ବାଇବେଲ, ଚର୍ଚ୍ଚ, ଈଶ୍ୱର ଏବଂ ଈଶ୍ୱର—ପୁତ୍ରଙ୍କ ବ୍ୟାପାରରେ ମଥା ଖେଳାନ୍ତୁ। ପ୍ରାର୍ଥନା ଓ ବ୍ୟକ୍ତିଗତ ପବିତ୍ରାଦି ବ୍ୟାପାରକୁ ନେଇ ରହନ୍ତୁ। ଗର୍ଭପାତ ଆଇନସମ୍ମତ ହୋଇ ସାରିଛି। ଏଥିସଙ୍ଗେ ଦେଶର ସ୍ୱାସ୍ଥ୍ୟ, ଅର୍ଥନୀତି, ଜନସଂଖ୍ୟା ନିୟନ୍ତ୍ରଣ, ରାଜନୀତି ଓ ସାହିତ୍ୟାଦି ବିଷୟ ଜଡ଼ିତ। ଏସବୁ କଥା ମଦର ଟେରେସାଙ୍କର ଭାବିବାର ନୁହଁ। ଏହା ତାଙ୍କର ଇଲାକା ବହିର୍ଭୂତ ବ୍ୟାପାର। ବିନୋବାଜୀ ଗୋବଧ ବିଷୟରେ ମତାମତ ଦେଲାଭଳି ମଦର ଟେରେସା ଗର୍ଭପାତ ବିଷୟରେ ମତାମତ ଦେଇ ଅନଧିକାର ଚର୍ଚ୍ଚା କରୁଛନ୍ତି। ତା'ଦ୍ୱାରା ସେ ଯେତିକି ଲୋକସମ୍ମାନ ଏବଂ ଲୋକପ୍ରିୟତା ଅର୍ଜନ କରିଛନ୍ତି, ତାହା ହରାଇ ବସିବେ।

ଏହିଭଳି ଭାରତବର୍ଷର ସମ୍ବାଦପତ୍ରମାନଙ୍କରେ କେତେକ ଉକ୍ତି ପାଠ କରିବାକୁ ମିଳୁଛି।

ଗର୍ଭପାତ ବିଷୟଟି ଠିକ୍ କିମ୍ବା ଭୁଲ—ଏହା ଆଇନସମ୍ମତ ହେଲେ ଭଲ କି ଆଇନବିରୁଦ୍ଧ ହେଲେ ଭଲ—ସେ କଥା ଆମେ ନିଶ୍ଚୟ ଆଲୋଚନା କରିବା। ମାତ୍ର ତା' ପୂର୍ବରୁ ଆମେ ଦେଖିବା ଯେ ପରମ ସମ୍ମାନନୀୟା ମଦର ଟେରେସାଙ୍କ ଭଳି ମହାତ୍ମାମାନଙ୍କର ଆମର ଏଇସବୁ ବିଷୟରେ ମତାମତ ଦେବାର ଅଧିକାର ଅଛି କି ନାହିଁ। ମୋଟ କଥା ହେଲା ବିନୋବା ବାଭେ ଗୋବଧ ବିରୋଧରେ ଏବଂ ମଦର ଟେରେସା ଗର୍ଭପାତ ବିରୋଧରେ ମନ୍ତବ୍ୟ ଦେଇ ପାରିବେ କି ନାହିଁ।

ବର୍ତ୍ତମାନ ଯେଉଁମାନେ କହୁଛନ୍ତି—ଏମାନଙ୍କର ଏ ସବୁ ବିଷୟରେ ମୁଣ୍ଡ ଘୂରାଇବା, ତୁଣ୍ଡ ଖୋଲିବା ଅନଧିକାର ଚର୍ଚ୍ଚା—ସେମାନେ ଗୋବଧ ଏବଂ ଗର୍ଭପାତାଦି ବ୍ୟାପରକୁ

କେବଳ ଅର୍ଥନୀତିକ, ସ୍ୱାସ୍ଥ୍ୟଗତ ଏବଂ ରାଜନୀତିକ ଦୃଷ୍ଟିକୋଣରୁ ବିଚାର କରୁଅଛନ୍ତି। କିନ୍ତୁ ମନୁଷ୍ୟ କଣ କେବଳ ଏକ ରାଜନୀତିକ, ଅର୍ଥନୀତିକ ପ୍ରାଣୀ ? ଆମେ କଣ କେବଳ ଏକ ଜାନ୍ତବ ଜୀବନଯାପନ କରିବାକୁ ଏ ପୃଥିବୀରେ ବଞ୍ଚିବୁ ? ଆମେ କେବଳ ଅନ୍ୟ ପ୍ରାଣୀମାନଙ୍କ ଭଳି ଜନ୍ମ ହେବୁ–ଖାଇପିଇ ବଢ଼ିବୁ ଦେହର ସ୍ୱାସ୍ଥ୍ୟକୁ ମଜଭୁତ କରିବୁ– ଯୌନକ୍ରିୟାକଳାପରେ ମାତିବୁ, ଦରକାର ମୁତାବକ ସନ୍ତାନ ଜନ୍ମ କରିବୁ–ଆମକୁ ଭଲ ଲାଗିଲା ଭଳି, ଆମ ସ୍ୱାର୍ଥକୁ, ରୁଚିକୁ ଓ ଖିଆଲକୁ ସୁହାଇଲା ଭଳି ରାଜନୀତି ଅର୍ଥନୀତି, ଓ ସାହିତ୍ୟ ସଂସ୍କୃତି ଇତ୍ୟାଦି କରିବୁ ? ଆମ ବୁଦ୍ଧିକୁ ଅଣ୍ଟିଲା ଭଳି ବା ଆମ ବୁଦ୍ଧିକି ଗ୍ରାହ୍ୟ ହେଲା ଭଳି ଚିନ୍ତା ଓ ଅନୁଭୂତିଗୁଡ଼ିକୁ ଗ୍ରାହ୍ୟ କରିବୁ ? ଆମ ଜୀବନର ଯାବତୀୟ ସମସ୍ୟାଗୁଡ଼ିକୁ ଆମେ କେବଳ ଆମକୁ ସୁହାଇଲା ଦୃଷ୍ଟିରୁ, ମାନେ କେବଳ ଅର୍ଥନୀତି, ରାଜନୀତି, ଦୃଷ୍ଟିରୁ ସମାଧାନ କରିବୁ ? ଏବଂ କେବଳ ଏହିସବୁ ଦୃଷ୍ଟିରୁ ଯେଉଁମାନେ ସବୁ ସମସ୍ୟାର ବିଚାର କରନ୍ତି ଓ ସମାଧାନର ବାଟ ଦେଖାନ୍ତି–ସେହିମାନଙ୍କୁ ଆମର ନେତା ବୋଲି ଗ୍ରହଣ କରିବୁ ଓ ସେହିମାନଙ୍କୁ ଭୋଟ ଦେବୁ ? ଏହି ସବୁକୁ ନେଇ ଯେଉଁମାନେ ସାହିତ୍ୟ, ସଂସ୍କୃତି କରନ୍ତି ସେଇମାନଙ୍କୁ ନୋବେଲ ପ୍ରାଇଜ୍ ଦେବୁ ?

ବନ୍ଧୁଗଣ ! ଗୋବଧ ବା ଗର୍ଭପାତ ପ୍ରଭୃତି ବିଷୟଗୁଡ଼ିକ ପଛରେ ଆଉରି କିଛି ଅଧିକ ମାନବୀୟ ତତ୍ତ୍ୱ ବା ସମସ୍ୟା ଅଛି କି ନାହିଁ ? ଈଶ୍ୱର ଥାନ୍ତୁ ବା ନ ଥାନ୍ତୁ ତାହା ପରକଥା, କିନ୍ତୁ–ଗୀତା, ବାଇବେଲ, କୋରାନ ଧମ୍ମପଦ ଇତ୍ୟାଦି ଧର୍ମଗ୍ରନ୍ଥଗୁଡ଼ିକର ଆମ ମନୁଷ୍ୟ ଜାତିର ମାନବିକତାକୁ ଅଧିକ ବଢ଼ାଇବା ପାଇଁ କିଛି ସାମର୍ଥ୍ୟ ଅଛି କି ନାହିଁ ? ମଣିଷର ଚିନ୍ତା, ଅନୁଭୂତି, ଉପଲବ୍ଧିକୁ ଆହୁରି ବ୍ୟାପକ, ପ୍ରସାରିତ ଓ ଗଭୀର କରିବା ପାଇଁ–ଅନ୍ୟ କଥାରେ ମନୁଷ୍ୟର ଚେତନାକୁ ଆହୁରି ଅଧିକ ଉଦ୍ଦୀପ୍ତ ଉଜ୍ଜ୍ୱଳ କରିବା ପାଇଁ ସେଗୁଡ଼ିକ ଭିତରେ କିଛି ଉପାଦାନ ଅଛି କି ନାହିଁ ? ସେହିପରି ରାମ, କୃଷ୍ଣ, ଖ୍ରୀଷ୍ଟ, ବୁଦ୍ଧ, ନାନକ, ଚୈତନ୍ୟ, ବିବେକାନନ୍ଦ, ଅରବିନ୍ଦ, ଗାନ୍ଧୀ, ପ୍ରଭୃତି ମହାନ୍ ଆତ୍ମାମାନେ ଅନୁଷ୍ୟ ଜାତି ଆଗରେ ଯୁଗ ଯୁଗ ପାଇଁ ଆଲୋକବର୍ତ୍ତିକା ନା ନୁହେଁ ? ସେହିଭଳି ବିନୋବା ଭାବେ କିମ୍ବା ମଦର ଟେରେସାଙ୍କ ଭଳି ପୂତଚରିତ୍ର ମହାତ୍ମାମାନଙ୍କର ଆମ କ୍ରିୟାକଳାପ ଉପରେ ମନ୍ତବ୍ୟ ଦେବାର ଅଧିକାର ଅଛି କି ନାହିଁ ?

ମୋଟ କଥା, ମନୁଷ୍ୟର ଧର୍ମବୁଦ୍ଧି ହିଁ ତାକୁ କ୍ରମଶଃ ମନୁଷ୍ୟତା ପଥରେ ଆଗେଇ ନେଇ ଚାଲିଛି। ଏହି ଧର୍ମ ବୁଦ୍ଧି ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ ନୁହେଁ। ଗୋଟିଏ ସାର୍ବଜନୀନ ଧର୍ମବୁଦ୍ଧି ଅଛି–ଯାହାକୁ ଆଗରେ ରଖି ଆମେ ଆମର ରାଜନୀତି, ଅର୍ଥନୀତି, ବିଜ୍ଞାନ, ସାହିତ୍ୟ, ସଂସ୍କୃତି ପ୍ରଭୃତି କରିଚାଲିଛୁ। ଏପରି କି ଆମର

ବଞ୍ଚିବାର ସାର୍ଥକତା ମଧ୍ୟ ସେହି ଧର୍ମବୁଦ୍ଧିର ସଙ୍ଗତି ଉପରେ ନିର୍ଭର କରିଥାଏ। ସବୁ ଧର୍ମ ସଂପ୍ରଦାୟ ଏପରି କେତେକ ନୀତିକୁ ସାର୍ବଜନୀନ ରୂପେ ମଧ୍ୟ ଧରିଛନ୍ତି ଯେଉଁ ନୀତିରୁ ବିଚ୍ୟୁତ ହେଲେ ଆମେ ମନୁଷ୍ୟର ସୀମା ତଳକୁ ଖସିଯିବୁ। ଆମର ଧର୍ମବୁଦ୍ଧିର କଷଟି ପଥରରେ କଷ ନ ହେଲେ ଆମର କୌଣସି ନୀତି ରାଜନୀତିକ, ଅର୍ଥନୀତିକ ଦୃଷ୍ଟିରୁ ଯେତେ ସମୀଚୀନ ବୋଧ ହେଲେବି ମନୁଷ୍ୟ ସମାଜ ପକ୍ଷରେ ତାହା ଗ୍ରହଣୀୟ ହୋଇ ନ ପାରେ।

ସେହି ଦୃଷ୍ଟିରୁ ଗର୍ଭପାତକୁ ଆଇନସମ୍ମତ କରି ସାମାଜିକ ସ୍ୱୀକୃତି ଦେବା କେତେଦୂର ସଙ୍ଗତ, ତାହା ମନୁଷ୍ୟର ଧର୍ମବୁଦ୍ଧିର କଷଟି ପଥରରେ ଆଗ କଷି ନେବା ଉଚିତ। କାହିଁକି, ନା, ଗର୍ଭଧାରଣ କରିବା ପଛରେ ଯେଉଁସବୁ କାରଣମାନ ରହିଛି, ସେଗୁଡ଼ିକୁ କେବଳ ମଣିଷର ଇନ୍ଦ୍ରିୟ ସୁଖ ଦୃଷ୍ଟିରୁ ବିଚାର କରି ଦେଲେ ଚଳିବ ନାହିଁ। ତଦ୍ୱାରା ସମାଜରେ ଘୋର ଅନୀତିକର କ୍ରିୟାକଳାପ ଘୋଟିଯିବ ଯାହାକି କ୍ରମଶଃ ଆରମ୍ଭ ମଧ୍ୟ ହୋଇ ଗଲାଣି ଆମ ଦେଶରେ ଓ ପାଶ୍ଚାତ୍ୟ ଦେଶମାନଙ୍କରେ। ସାରା ଦେଶରେ ଏକ ଦାୟିତ୍ୱହୀନ ଯୌନ କ୍ରିୟା କଳାପର ପାପ ଘୋଟିଯିବ ଏବଂ ତା' ସଙ୍ଗେ ସଙ୍ଗେ ନିର୍ବିକାର ଓ ନିର୍ବିଚାର ଭାବେ ଗର୍ଭପାତର ପାପ ପାଲା ମଧ୍ୟ ବଢ଼ି ଚାଲିବ।

ଜନସଂଖ୍ୟାକୁ ନିୟନ୍ତ୍ରଣ କରୁ କରୁ ଯଦି ଗୋଟିଏ ଦେଶ ବା ଜାତିର ନୈତିକ ଚେତନା ନିୟନ୍ତ୍ରଣର ବହୁତ ବାହାରକୁ ଚାଲିଯାଏ, ତେବେ ତୁମର ଅର୍ଥନୀତି ଓ ରାଜନୀତିର ସମୃଦ୍ଧି ମନୁଷ୍ୟ ସମାଜକୁ ଠିକଣା ଭାବେ ଧରି ରଖି ପାରିବ କି? ସେ ଦୃଷ୍ଟିରୁ ପରମ ସମ୍ମାନନୀୟା ମଦର ଟେରେସାଙ୍କ ଭଳି ମହାନ୍ ବ୍ୟକ୍ତିଙ୍କ ବ୍ୟତୀତ ଏସବୁ ସମସ୍ୟାର ଗଭୀର ନୈତିକ ବା ଧାର୍ମିକ ବିଚାର ବିଶ୍ଳେଷଣ ଏବଂ ସିଦ୍ଧାନ୍ତ କିଏ ଦେଇ ପାରିବ? ଆମର ରାଜନୈତିକ ନେତାମାନେ? ଆମର ସ୍ୱାସ୍ଥ୍ୟରକ୍ଷକ ଡାକ୍ତରମାନେ? ଆମର ବୁଦ୍ଧିଆଳ, ମୁଣ୍ଡିଆଳ ଅଧ୍ୟାପକ ସାମ୍ବାଦିକ ଆଉ ଓକିଲ ବାରିଷ୍ଟରମାନେ?

ଆମେ ଏମାନଙ୍କର ବହୁ ରଙ୍ଗ ଦେଖିଲୁଣି ଏବଂ ଆମେ ଏମାନଙ୍କ ଠାରୁ ବହୁ ବାଣୀ ମଧ୍ୟ ଶୁଣିଲୁଣି। ପରମ ସମ୍ମାନନୀୟା ମଦର ଟେରେସା! ପରମ ସମ୍ମାନନୀୟ ଆଚାର୍ଯ୍ୟ ବିନୋବା! ଏବଂ ପରମ ସମ୍ମାନନୀୟ ଅନ୍ୟାନ୍ୟ ଉଦାରଚେତା ଧର୍ମାତ୍ମାଗଣ! ତୁହନ୍ତୁ ଆପଣମାନେ, ଆମର ସବୁକଥା ଉପରେ ଆପଣମାନେ ନିର୍ଭୟରେ ଯଥାର୍ଥ ମାନବୀୟ ଧର୍ମବୁଦ୍ଧିର ବିଚାରରୁ ମତାମତ ପ୍ରକାଶ କରନ୍ତୁ! ଆମେ ବର୍ତ୍ତମାନ ଆପଣମାନଙ୍କ କଥାକୁ ହିଁ କାନ ଡେରିଛୁ। ଆପଣମାନେ ଯୋଉଁ ଧର୍ମ ସଂପ୍ରଦାୟ ଭୁକ୍ତ ହେଲେ ବି କିଛି କ୍ଷତି ନାହିଁ। ଆମ୍ଭମାନଙ୍କୁ ଏହି ଦୁରାଚାରୀ ରାଜନୀତି-ବ୍ୟବସାୟୀଗଣ ଅଧଃପାତକୁ ଟାଣି ନେଉଛନ୍ତି। ଆପଣମାନେ ଆମକୁ ଏବେ ରକ୍ଷାକରନ୍ତୁ।

**

# ଇତି ଗଜପତି ଗଧପତି ବୃତ୍ତାନ୍ତମ୍

ଗୋଟିଏ ବିଖ୍ୟାତ କଲେଜରେ ବାର୍ଷିକ ଉତ୍ସବ ମହାସମାରୋହରେ ପାଳିତ ହେଉଥିଲା । ସେହି ଉତ୍ସବରେ ମୁଖ୍ୟ ଅତିଥି ରୂପେ ଯୋଗ ଦେଇଥିଲେ ଜଣେ ମାନ୍ୟବର ମନ୍ତ୍ରୀ । ମୁଖ୍ୟବକ୍ତା ଭାବେ ଆସିଥିଲେ ଗୋଟିଏ ବିଶ୍ୱବିଦ୍ୟାଳୟରୁ ଦିଗ୍‌ଗଜ ପଣ୍ଡିତ ବାଗ୍ମୀପ୍ରବର ବରେଣ୍ୟ କୁଳପତି । କଲେଜର ଚତୁର୍ଦ୍ଦିଗ ବିଭିନ୍ନ ରଙ୍ଗର ଆଲୋକମାଳାରେ ସୁସଜ୍ଜିତ ହୋଇଥିଲା । ଠାଏ ଠାଏ ଅପୂର୍ବ ତୋରଣମାନ ନିର୍ମିତ ହୋଇଥିଲା । ନାନା କାରୁକାର୍ଯ୍ୟ ଖଚିତ ବିଚିତ୍ର ମୂଲ୍ୟବାନଚନ୍ଦ୍ରାତପମାନଙ୍କରେ ଓ ନାନାବିଧ ସୂକ୍ଷ୍ମ ଚିତ୍ରକଳା ସମନ୍ୱିତ ମହାର୍ଘ୍ୟ ବସ୍ତ୍ରମାନଙ୍କରେ ସଭା ମଣ୍ଡପଟି ଅତି ମନୋହର ଦିଶୁଥିଲା । ସଭାକାର୍ଯ୍ୟ ଯଥାବିଧି ଆରମ୍ଭ ହେଲା ପରେ ମନ୍ତ୍ରୀ ମହୋଦୟ ତାଙ୍କର ଭାଷଣ ପ୍ରଥମେ ଆରମ୍ଭ କଲେ । ରାଜ୍ୟରେ ଶିକ୍ଷା ବାବଦକୁ କେତେ ଭାଗ ଅର୍ଥ ବ୍ୟୟ କରାଯାଉଛି ତାର ହିସାବ ଦେଇ ସାରି ସେ ପ୍ରଚଳିତ ଶିକ୍ଷା ପଦ୍ଧତିର କେତେକ ଦୋଷାଦୋଷ ପ୍ରଦର୍ଶନ କଲେ । ତା'ପରେ ଛାତ୍ରମାନେ କିପରି ଦେଶର ଭବିଷ୍ୟତ ଓ ସେମାନେ ଗାଁ ଗହଳକୁ ଯାଇ ଦରିଦ୍ର ଚାଷିମୂଲିଆ ଓ ହରିଜନ, ଗିରିଜନମାନଙ୍କର ସେବା କରିବା ଉଚିତ—ସେ ସମ୍ବନ୍ଧେ କେତେକ ଉପଦେଶ ଦେଇସାରି, ଶେଷରେ ଶିକ୍ଷକ ଓ ଅଧ୍ୟାପକମାନେ କିପରି ଜାତିର ମେରୁଦଣ୍ଡ ଓ ବର୍ତ୍ତମାନର ଶିକ୍ଷକ, ଅଧ୍ୟାପକମାନେ ସେ କଥା ପାସୋରି ଯାଉଛନ୍ତି ବୋଲି ଆକ୍ଷେପ କରି ଉପସଂହାରରେ କହିଲେ, ଯେ, ଛାତ୍ରମାନେ ରାଜନୀତି କ'ଣ ବୁଝନ୍ତୁ—ମାତ୍ର ରାଜନୀତିରେ ଆଜ ହୁଁ ପ୍ରବେଶ ନ କରି ଜ୍ଞାନ ଅର୍ଜନ କରନ୍ତୁ ଏବଂ ଶିକ୍ଷକ ଅଧ୍ୟାପକମାନେ ପ୍ରାଚୀନ ଗୁରୁକୁଳର ମହାନ୍ ଆଦର୍ଶକୁ ଭୁଲି ନ ଯାଇ ଦେଶରେ ଆଦର୍ଶ ସୃଷ୍ଟି କରି ଆମ୍ଭମାନଙ୍କୁ ପଥପ୍ରଦର୍ଶନ କରିବାରେ ବ୍ରତୀ ହୁଅନ୍ତୁ ।

ମନ୍ତ୍ରୀ ମହୋଦୟଙ୍କ ଭାଷଣ ପରେ ବରେଣ୍ୟ କୁଳପତି ମହୋଦୟ ମନ୍ତ୍ରୀଙ୍କର ଭୂୟସୀ ପ୍ରଶଂସାବାଦ କରି ସାରି କହିଲେ ଯେ, ଆଜିକାଲି ଛାତ୍ରମାନଙ୍କ ଭିତରେ ଯେଉଁ ବିଶୃଙ୍ଖଳା ଦେଖା ଦେଇଛି ସେମାନଙ୍କ ଭିତରେ ଜ୍ଞାନଚର୍ଚ୍ଚା ପ୍ରତି ଯେଉଁ ବିମୁଖତା ଦେଖାଦେଇଛି ସେମାନଙ୍କ ଭିତରେ ଭବିଷ୍ୟତ ପ୍ରତି ଯେଉଁ ହତାଶଭାବ

ଦେଖାଦେଇଛି ସେମାନଙ୍କର ବ୍ୟବହାରରେ ଯେଉଁ ଅନାସ୍ଥାଭାବ ପ୍ରକଟିତ ହେଉଛି ତାର କାରଣମାନ ଆମକୁ ଖୋଜି ବାହାର କରିବାକୁ ପଡ଼ିବ। ତେବେ, ତାର ବହୁବିଧ କାରଣଗୁଡ଼ିକ ଭିତରୁ ମୁଖ୍ୟକାରଣ ହେଲା ଦୁଇଟି। ଏକରେ, ଅଭିଭାବକମାନେ ସେମାନଙ୍କର ନିଜ ଚରିତ୍ର ଶୁଦ୍ଧ ରଖୁନାହାନ୍ତି ଓ ପିଲାମାନଙ୍କର ଗତିବିଧି ଉପରେ ମୂଳରୁ ତୀକ୍ଷ୍ଣ ଦୃଷ୍ଟି ରଖୁନାହାନ୍ତି। ଦ୍ୱିତୀୟ କାରଣ ହେଲା, ଆମର ରାଜନୀତିକ ନେତାମାନେ, ବିଶେଷତଃ ବିରୋଧୀ ଦଳର ନେତାମାନେ କୋମଳମତି ଛାତ୍ରଛାତ୍ରୀଙ୍କୁ ନାନାଦି କୁପରାମର୍ଶ ଦେଇ ଖରାପ ଦିଗରେ ପ୍ରବର୍ତ୍ତାଉଛନ୍ତି। ମୋର ଆଶା ଛାତ୍ରମାନେ ଏଣିକି ଏସବୁ କଥା ଭଲଭାବେ ବୁଝିପାରିବେ ଓ ଆପଣାର ଦାୟିତ୍ୱ ଆପେ ନେଇପାରିବେ। ତା' ପରେ ପ୍ରବଳ ହାତତାଳି ଭିତରେ କୁଳପତି ଘୋଷଣା କଲେ ଯେ ଏଣିକି ଛାତ୍ରଛାତ୍ରୀମାନେ ବିଶ୍ୱବିଦ୍ୟାଳୟର ସିନେଟ୍ ଓ ସିଣ୍ଡିକେଟ୍‌ରେ ସ୍ଥାନ ପାଇପାରିବେ।

ଭାଷଣାଦି ଶେଷ ହେବା ପରେ ଛାତ୍ରମାନେ ଗୋଟିଏ ମନୋରଞ୍ଜନ କାର୍ଯ୍ୟକ୍ରମ କରିଥିଲେ। ମୁଖ୍ୟବକ୍ତା କୁଳପତି ମହୋଦୟ ଓ ମୁଖ୍ୟଅତିଥି ମନ୍ତ୍ରୀ ମହୋଦୟ ଅନ୍ୟାନ୍ୟ ମୁଖ୍ୟ ଅଧ୍ୟାପକମାନଙ୍କ ଗହଣରେ ପ୍ରଥମ ଧାଡ଼ିରେ ବସି ମନୋରଞ୍ଜନ କାର୍ଯ୍ୟକ୍ରମ ଦେଖିଲେ। ସେହି ବିଚିତ୍ରା ମଧ୍ୟରେ ଥିଲା ଛାତ୍ରଛାତ୍ରୀଙ୍କ ଦ୍ୱାରା ଅଭିନୀତ ଗୋଟିଏ ଛୋଟ ଏକାଙ୍କିକା ଏବଂ ସେହି ଏକାଙ୍କିକାର କଥାବସ୍ତୁ ସଂକ୍ଷେପରେ ଏହିପରି–

ମାନବେତର ପ୍ରାଣୀମାନଙ୍କ ଦ୍ୱାରା ଅଧ୍ୟୁଷିତ ଗୋଟିଏ ରାଜ୍ୟର ଗଣତନ୍ତ୍ର ଶାସନରେ ମୁଖ୍ୟମନ୍ତ୍ରୀ ଥିଲେ ଜଣେ ଗଜ। ପ୍ରାଣୀମାନେ ସମ୍ମାନ ଦେଖାଇ ତାଙ୍କୁ ଡାକୁଥିଲେ ଗଜପତି ଏବଂ ସେହି ରାଜ୍ୟର ପ୍ରାଣୀମାନଙ୍କ ସନ୍ତାନ ସନ୍ତତିଙ୍କ ଉଚ୍ଚଶିକ୍ଷା ଲାଗି ଥିଲା ଗୋଟିଏ ବିଶ୍ୱବିଦ୍ୟାଳୟ। ସେହି ବିଶ୍ୱବିଦ୍ୟାଳୟର କୁଳପତି ଥିଲେ ଜଣେ ଗଧ। ଛାତ୍ରଛାତ୍ରୀମାନେ ସମ୍ମାନ ଦେଖାଇ ତାଙ୍କୁ ଗଧ ବୋଲି ସମ୍ବୋଧନ କରୁଥିଲେ। ଏଇଠା ସେହି ରାଜ୍ୟରେ ପ୍ରାଣୀମାନଙ୍କ ଭିତରେ ଗଣବିପ୍ଳବ ଦେଖାଦେଲା। ପ୍ରାଣୀମାନେ ରାଜ୍ୟରେ କୁଶାସନ ବିରୁଦ୍ଧରେ ବିଦ୍ରୋହ ଘୋଷଣା କଲେ। ସ୍ଲୋଗାନ ହେଲା–ଗଜପତି ମୁଖ୍ୟମନ୍ତ୍ରୀ ଗାଦି ଛାଡ଼ନ୍ତୁ। ଏହି ବିଦ୍ରୋହ କ୍ରମେ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍ ଭିତରକୁ ପ୍ରବେଶ କଲା। ଛାତ୍ରଛାତ୍ରୀମାନେ ଗଧପତିଙ୍କ ବିରୋଧରେ ଆନ୍ଦୋଳନ କଲେ। ଉକ୍ତ ଆନ୍ଦୋଳନର କାରଣ ଥିଲା- ବିଶ୍ୱବିଦ୍ୟାଳୟରେ ପାଠପଢ଼ା ହେଉ ନାହିଁ, କେବଳ ପରୀକ୍ଷା ଚାଲିଛି। ତେଣୁ ସ୍ଲୋଗାନ ହେଲା–ଗଧପତି ଯଥାଶୀଘ୍ର ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍‌ରୁ ବିଦାୟ ହୁଅନ୍ତୁ। ମାତ୍ର ଗଜପତି ବା ଗଧପତି କେହି ଏତେ ସହଜରେ ନିଜ ଅଫିସ ଛାଡ଼ିଲେ ନାହିଁ। ତହୁଁ ରାଜ୍ୟରେ ଓ ବିଶ୍ୱବିଦ୍ୟାଳୟରେ ବିଦ୍ରୋହ ତୀବ୍ରତର ଆକାର ଧାରଣ କଲା। ବିଦ୍ରୋହୀମାନେ ଟେଲିଗ୍ରାଫ୍ ତାର କାଟି ଦେଲେ। ପୋଲ ଭାଙ୍ଗିଦେଲେ। ବସ୍, ମଟର ପୋଡ଼ିଦେଲେ। ସରକାରୀ ଅଫିସ୍‌ରେ ନିଆଁ ଲଗାଇ ଦେଲେ।

ବ୍ୟାଙ୍କ ଓ ଟ୍ରେଜେରୀ ଉପରେ ଆକ୍ରମଣ କଲେ। ସରକାରଙ୍କ ତରଫରୁ ବହୁ ଦମନ ଚାଲିଲା। ମାତ୍ର ବିଦ୍ରୋହର ନିଆଁ ପ୍ରଶମିତ ହେଲା ନାହିଁ। ଶେଷରେ ଦିନେ ମୁଖ୍ୟମନ୍ତ୍ରୀ ଗଜପତି ବିଦ୍ରୋହୀ ନେତାମାନଙ୍କୁ ଓ ସାମ୍ବାଦିକମାନଙ୍କୁ ଡାକି ଘୋଷଣା କଲେ–

ପ୍ରାଣୀସାଧାରଣ ଆମ ସରକାରର କୁଶାସନ ବିରୋଧରେ ଯେଉଁ ବିପ୍ଲବ କରୁଛନ୍ତି–ତାହା ପ୍ରତି ସରକାର ଖୁବ୍ ସଚେତନ ଅଛନ୍ତି। ବର୍ତ୍ତମାନ ସରକାର ଘୋଷଣା କରୁଛନ୍ତି କି ଆଉ ଏଣିକି ମନ୍ତ୍ରୀମଣ୍ଡଳ ରହିଥିଲେ ବି ଶାସନ ଆଦୌ ରହିବ ନାହିଁ। ଶାସନ ଥିଲେ ସିନା ସୁଶାସନ କୁଶାସନ କଥା ଉଠୁଚି ! ଏଣିକି ପ୍ରାଣୀସାଧାରଣ ନିଜ ନିଜ କଥା କରନ୍ତୁ। କେବଳ ମନ୍ତ୍ରୀମଣ୍ଡଳକୁ ଆଉ କିଛି ବର୍ଷ ବଞ୍ଚିବାକୁ ଦିଅନ୍ତୁ।

ତା'ପରଦିନ ବିଶ୍ୱବିଦ୍ୟାଳୟରେ କୁଳପତି ଗଧପତି ଛାତ୍ରମାନଙ୍କ ଉଦ୍ଦେଶ୍ୟରେ ଘୋଷଣା କଲେ–ଛାତ୍ରଛାତ୍ରୀମାନଙ୍କ ସୁବିଧା ଦୃଷ୍ଟିରୁ ପାଠ ପଢ଼ାପଢ଼ିରୁ ସେମାନଙ୍କୁ ରିହାତି ଦିଆଯାଇଥିଲା। ବର୍ତ୍ତମାନ ସେମାନଙ୍କୁ ପରୀକ୍ଷାରୁ ମଧ୍ୟ ରିହାତି ଦିଆଗଲା। ଏଣିକି ସମସ୍ତଙ୍କୁ ଯଥାସମୟରେ ଡିଗ୍ରୀ ଡିପ୍ଲୋମାଦି ଯଥାରୀତି ସେହିପରି ମିଳିବ। ମୋର ଅନୁରୋଧ ଛାତ୍ରମାନେ ଆଉ କୁଳପତିଙ୍କ ଆସନକୁ ଟଳମଳ ନ କରନ୍ତୁ।

କହିବା ବାହୁଲ୍ୟ, ପ୍ରହସନଟି ଦେଖିସାରିବା ପରେ ମନ୍ତ୍ରୀ ଓ କୁଳପତି ଖୁବ୍ ଖୁସି ହୋଇ ଏକାଙ୍କିକାଟି ଯୁଗୋପଯୋଗୀ ହୋଇଛି ବୋଲି ମନ୍ତବ୍ୟ ଦେଇ ଉଭୟେ କଲେଜ ନାଟକ ସଂସ୍ଥାକୁ ଏକହଜାର କରି ଟଙ୍କା ପୁରସ୍କାର ଦେଇ ବିଦାୟ ନେଇଥିଲେ।

❋❋

# ଶିରୋନାସ୍ତି : ପୀଡ଼ା କେଉଁଠି ?

ଭାରତ ସ୍ୱାଧୀନତା ପାଇବା ପୂର୍ବରୁ କଲେଜ ପିଲାମାନଙ୍କ ଭିତରେ ବହୁ ସଉକ୍‌ରୁ ଗୋଟିଏ ସଉକ୍ ଥିଲା କମ୍ୟୁନିଷ୍ଟ ହେବା । ଅବଶ୍ୟ ଅତି ଗୁରୁତର ବିଷୟମାନଙ୍କୁ ସଉକରେ ପରିଣତ କରାଯାଇପାରେ । ସମାଜରେ ଏମିତି କେତେବାର କେତେ ସଉକ୍ ଆସିଛି, ଯାଇଛି । ଦିନେ ଅଦ୍ୱୈତବାଦୀହେବା ଥିଲା ଗୋଟିଏ ସଉକ୍ । ମାୟାବାଦୀ ହେବା ଥିଲା ଗୋଟିଏ ସଉକ୍ । ହଠଯୋଗୀ ହେବା ମଧ୍ୟ ଥିଲା ଗୋଟିଏ ସଉକ୍ । ସେମିତି ବୈଷ୍ଣବ ହେବା ମଧ୍ୟ ଗୋଟାଏ ଚମତ୍କାର ସଉକ୍ ଥିଲା ଅନେକଦିନ ପର୍ଯ୍ୟନ୍ତ । ଗାନ୍ଧୀବାଦ, ଭୂଦାନବାଦ ଇତ୍ୟାଦି ଆମ ଆଖିଆଗରେ ତାର ସୌଖୀନ ସ୍ୱରୂପ ଦେଖାଇ ପୁଣି ଉଭେଇ ଯାଇଛି । ସେମିତି ଆସିଥିଲା କମ୍ୟୁନିଷ୍ଟ ହେବାର ଏକ ସୌଖୀନତା । ଆମେସବୁ କଲେଜରେ ପଢୁଥିଲା ବେଳେ ସତକୁ ସତ କମ୍ୟୁନିଷ୍ଟ ଅବଶ୍ୟ ଖୁବ୍ କମ୍‌ଥିଲେ । ମାତ୍ର ସୌଖୀନ କମ୍ୟୁନିଷ୍ଟଙ୍କ ସଂଖ୍ୟା ନିତାନ୍ତ କମ୍ ନ ଥିଲା । ପୁଞ୍ଜିବାଦ ଶ୍ରେଣୀସଂଘର୍ଷ, ବସ୍ତୁବାଦୀ ଦର୍ଶନ, ନାସ୍ତିବାଦୀ ନାସ୍ତିକତା, ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ, ସର୍ବହରାର ଦାବୀ, ବୁର୍ଜୋୟା ମନୋଭାବ, ପେଟିବୁର୍ଜୋୟା ଇତ୍ୟାଦି ଶବ୍ଦମାନ ଶିକ୍ଷିତ ଉଚ୍ଚଶିକ୍ଷିତମାନଙ୍କ ଭିତରେ ବହୁତ ପ୍ରଚଳିତ ଥିଲା । ପ୍ରତିଟି କ୍ଷେତ୍ରରେ, ଯେ କୌଣସି କଥାବାର୍ତ୍ତା ହେଲାବେଳେ, ଏପରିକି ଯୁବକ ଯୁବତୀଙ୍କ ପ୍ରେମ ପ୍ରଣୟ ବ୍ୟାପାରରେ ମଧ୍ୟ ଏହି ସବୁ ଶବ୍ଦଗୁଡ଼ିକ ବଳେ ବଳେ ଆସିଯାଉଥିଲା ।

ଗାଳ୍ପିକମାନେ ମଧ୍ୟ ପ୍ରେମଗଳ୍ପ ଲେଖିଲାବେଳେ ଏସବୁ ନବାଗତ ସୌଖୀନ ଶବ୍ଦଗୁଡ଼ିକ ବ୍ୟବହାର ନ କରି ରହିପାରୁ ନଥିଲେ । ଯଥା— ନମିତାର ବୁର୍ଜୋୟା ରକ୍ତରେ ଆସିଥିଲା ଗୋଟାଏ ବିଚିତ୍ର ଆଲୋଡ଼ନ... କିନ୍ତୁ ସୁରେଶର ମନଭିତରେ ସର୍ବହରାର ବିଦ୍ରୋହ... ଇତ୍ୟାଦି ଇତ୍ୟାଦି । ମୋର ମନେଅଛି ଆମେ କେତେକଣ କମ୍ୟୁନିଷ୍ଟ ନ ଥିଲେ ବି ଏବଂ ଆମର କମ୍ୟୁନିଜିମ୍ ପ୍ରତି ସେପରି କିଛି ଆଗ୍ରହ ନ ଥିଲେ ବି ଆମକୁ ଯଦି କିଏ ବୁର୍ଜୋୟା ବା ପେଟି ବୁର୍ଜୋୟା ବୋଲି କହୁଥିଲା କି ଗାଳି ଦେଉଥିଲା, ତା'ହେଲେ ଆମେ ଭୀଷଣ ଅପମାନିତ ମନେକରୁଥିଲୁ ଓ ରାଗି ଯାଉଥିଲୁ । ଅବସ୍ଥା ଏପରି ହୋଇଗଲା ଯେ, ଆମେ ସମସ୍ତେ ଅନ୍ୟର କୁତ୍ସା କଲାବେଳେ, କିମ୍ବା ନିନ୍ଦା କଲାବେଳେ କିମ୍ବା ଅନ୍ୟକୁ ମୁହାଁମୁହିଁ ଅପମାନିତ କଲାବେଳେ 'ତୁ ବା ତୁମେ ଜଣେ ବୁର୍ଜୋୟା' କହିଦେଲେ ଭର୍ତ୍ସନାଟି ଚରମ ସଦ୍‌ଗତି ଓ

ପୂର୍ଣ୍ଣତା ପ୍ରାପ୍ତହେଉଥିଲା। ବୁର୍ଜୋୟା ଅପେକ୍ଷା ଆଉ ଗୋଟିଏ ଭୀଷଣ ଅପମାନଜନକର ନିନ୍ଦାସୂଚକ ବିଶେଷଣ ଥିଲା–ତାହା ହେଲା 'ପେଟି ବୁର୍ଜୋୟା'।

ମତେ ଥରେ ଜଣେ ବିଶିଷ୍ଟ ବ୍ୟବସାୟୀଙ୍କ ବି.ଏ. ପଢୁଥିବା ପୁଅ 'ପେଟି ବୁର୍ଜୋୟା' ବୋଲି ଗାଳିଦେବା ମାତ୍ରେ ମୁଁ ଖୁବ୍ ଉତ୍ତ୍ୟକ୍ତ ହୋଇ ତାକୁ ବାଡ଼େଇବାକୁ ଧାଇଁଥିଲି। ମୋର ଜଣେ କମ୍ୟୁନିଷ୍ଟ ବନ୍ଧୁ ମଧ୍ୟସ୍ଥ ହୋଇ ଆମ ଦୁହିଁଙ୍କୁ ଏହି ଫୌଜଦାରୀ କାଣ୍ଡରୁ ରକ୍ଷା କରିଥିଲେ। ସେହିପରି ଆଉ ଗୋଟିଏ ଭର୍ତ୍ସନାସୂଚକ ଶବ୍ଦ ହେଲା 'ପ୍ରତିକ୍ରିୟାଶୀଳ'। ଯଦି ଜଣେ ଅନ୍ୟକୁ ପ୍ରତିକ୍ରିୟାଶୀଳ କହୁଥିଲା–ତେବେ ସେ ବ୍ୟକ୍ତି ଭୀଷଣ ପ୍ରତିକ୍ରିୟା ଦେଖାଉଥିଲା। ଏପରିକି ମାଡ଼ପିଟ୍ ମଧ୍ୟ ହୋଇ ଯାଉଥିଲା। ଆଶ୍ଚର୍ଯ୍ୟ କଥା ଏହି କି ଯେ, ଆମ କଲେଜ ଜୀବନରେ (ସ୍ୱାଧୀନତା ପୂର୍ବ) କେହି କାହାକୁ ଚୋର, ପାଜୀ, ବେଶ୍ୟାସକ୍ତ, ମଦ୍ୟପ, ଗୁଣ୍ଡା, ଭାଦୁଆ, ମିଥ୍ୟାବାଦୀ, ନୃଶଂସ, କପଟୀ ଇତ୍ୟାଦି ଶବ୍ଦ ବ୍ୟବହାର କରି ଭର୍ତ୍ସନା ବା ନିନ୍ଦା କରୁନଥିଲେ।

ଏହିସବୁ ଶବ୍ଦଗୁଡ଼ିକ ସେମାନଙ୍କର ଶକ୍ତି, ଅର୍ଥଦ୍ୟୋତକତା ଏବଂ ପ୍ରତିକ୍ରିୟା ସୃଷ୍ଟିର କ୍ଷମତା ହରାଇ ବସିଥିଲେ। ଏଗୁଡ଼ିକ ବଡ଼ ନିରୀହ ଅର୍ଥହୀନ ଲଘୁ ପ୍ରମୋଦଦାୟକ ପରିସ୍ଥିତିରେ ବା କଥୋପକଥନରେ ବ୍ୟବହାର କରାଯାଉଥିଲା। ଯେପରି "ଶଳା" ଶବ୍ଦଟି। ସେମିତି ଟାପରା କରି ବା ମୃଦୁମଧୁର ଭର୍ତ୍ସନା ଛଳରେ କେହି କାହାକୁ ହୁଏତ କହୁଥିଲା ତୁ ଗୋଟାଏ ମଦୁଆ କିମ୍ବା ତୋର ଏଇଟା ଗୁଣ୍ଡାମି–କିମ୍ବା ଚୁପ୍‌କର ଲମ୍ପଟ। ଏସବୁ ଗାଳି ଯେ ଶୁଣୁଥିଲା–ସେ ବରଂ ଆମୋଦିତ ହେଉଥିଲା। କିନ୍ତୁ "ତୁ ଗୋଟାଏ ବୁର୍ଜୋୟା" ବା "ତୋର ଏଇ ପେଟି ବୁର୍ଜୋୟା ମନୋବୃତ୍ତି ମତେ ଭଲଲାଗେ ନାହିଁ" ଭଳି ବାକ୍ୟ ଅତି ଘନିଷ୍ଠତମ ବନ୍ଧୁ ତୁଣ୍ଡରୁ ବାହାରିଲେ ବି, ଏପରିକି ପ୍ରିୟ ବାନ୍ଧବୀର କୋକିଳକଣ୍ଠରୁ ଉଚ୍ଚାରିତ ହେଲେ ବି ଦେହରେ ନିଆଁ ଲାଗି ଯାଉଥିଲା। ଏ ସ୍ଥଳେ ଆପଣ କମ୍ୟୁନିଷ୍ଟ ହୁଅନ୍ତୁ ବା କମ୍ୟୁନିଷ୍ଟ ବିରୋଧି ହୁଅନ୍ତୁ ପ୍ରତିକ୍ରିୟା ସମାନ। ବରଂ ମୋ ଭଳି କମ୍ୟୁନିଜିମ୍ ବେରୋଧି ବ୍ୟକ୍ତିମାନେ ଏ ସବୁ ଶବ୍ଦ ନିଜ ଉପରକୁ ନିକ୍ଷିପ୍ତ ହେବାର ଦେଖିଲେ ଅପମାନବୋଧରେ ଉଦ୍‌କ୍ଷିପ୍ତ ହୋଇ ପଡ଼ନ୍ତି।

ସେହିପରି ଆଉ ଗୋଟିଏ ବାକ୍ୟାଂଶ ମଧ ଅନ୍ୟର କୁତ୍ସା ବା ଭର୍ତ୍ସନା ପାଇଁ ବ୍ରହ୍ମବାଣସଦୃଶ ଥିଲା। ତାହା ହେଲା "ସାମ୍ରାଜ୍ୟ ବାଦର ଦଲାଲ।" ଅବଶ୍ୟ ଏ ବାକ୍ୟାଂଶଟି ଆମେ କଲେଜ ପିଲାମାନେ ପରସ୍ପର ପ୍ରତି ବେଶୀ ବ୍ୟବହାର କରୁନଥିଲୁ। ପ୍ରତ୍ୟକ୍ଷ ସକ୍ରିୟ ରାଜନୀତି କରୁଥିବା ଲୋକେ ଏହି ବାକ୍ୟାଶଂଟି ପରସ୍ପର ପ୍ରତି ବ୍ୟବହାର କରୁଥିଲେ। ଥରେ ଏହି ବାକ୍ୟାଂଶଟିର ହଠାତ୍ ପ୍ରୟୋଗ ଫଳରେ ଜଣେ କମ୍ୟୁନିଷ୍ଟ ଯୁବକ ଓ ଜଣେ ଲୋହିଆପନ୍ଥୀ ସୋସାଲିଷ୍ଟ ପ୍ରୌଢ଼ ନେତାଙ୍କ ଭିତରେ ରାସ୍ତା ଉପରେ ମଲ୍ଲଯୁଦ୍ଧ ହୋଇଯାଇଥିଲା। ଶେଷରେ ଏ ସବୁର ଅର୍ଥ

ବୁଝି ନ ଥିବା କଟକର କେତେକ ବସ୍ତିବାଲା ଏମାନଙ୍କୁ ଆହୁରି ଅଧିକ ଉଦ୍ଭ୍ରାନ୍ତ ହେବା ଆଶଙ୍କାରୁ ମୁକ୍ତ କରିଥିଲେ।

କିନ୍ତୁ ଆଶ୍ଚର୍ଯ୍ୟର କଥା, ଗାନ୍ଧିବାଦୀମାନଙ୍କର ସଂଖ୍ୟା ସେତେବେଳେ ଅଧିକ ଥିଲେ ମଧ୍ୟ ସେମାନଙ୍କର ଅନ୍ୟକୁ ଭର୍ତ୍ସନା କରିବା ପାଇଁ କୌଣସି ଶବ୍ଦ ବା ବାକ୍ୟାଂଶ ନଥିଲା। ସେମାନେ ନିଜକୁ କେବଳ ସତ୍ୟାଗ୍ରହୀ ବା ଅହିଂସାବାଦୀ କହି ଆତ୍ମସନ୍ତୋଷ ଲାଭ କରୁଥିଲେ। ଅନ୍ୟକୁ ଗ୍ରହୀ ମିଥ୍ୟା ବା ହିଂସାବାଦୀ ବୋଲି ଗାଳିଦେବାର ରୀତି ସେମାନଙ୍କର ନ ଥିଲା।

ଗାନ୍ଧିଟୋପି ପରିହିତ, ଖଦଡ଼ ବ୍ୟାଗ ପ୍ରଲମ୍ବିତ, ଶୁଭ୍ର ଖଦଡ଼ ଶୋଭିତ କୌଣସି ବପୁଷ୍ମାନ ଗାନ୍ଧୀବାଦୀଙ୍କୁ ପୁଞ୍ଜିବାଦୀଙ୍କ ଦଲାଲ, ସାମ୍ରାଜ୍ୟବାଦର ଦଲାଲ, ବୁର୍ଜୋୟା ବା ପେଟିବୁର୍ଜୋୟା ବୋଲି ଯେତେ ଭର୍ତ୍ସନା କଲେବି ସେ ଆଦୌ ବିଚଳିତ ବା ଅପମାନିତ ମନେକରୁ ନଥିଲେ। ସବୁକଥାରେ କେବଳ ସ୍ମିତହାସ୍ୟଟିଏ ଦେଖାଇ, ସବୁକଥାକୁ ସହ୍ୟ କରିଯିବା ଭଳି ଉଦାରତା ଦେଖାଇ ସେ ଆପଣାର ଗନ୍ତବ୍ୟ ପଥରେ ନୀରବରେ ଯାତ୍ରା କରୁଥିଲେ ଏବଂ ଯାହାକିଛି କହିବାର କଥା ତାହା ନିଃସଙ୍କୋଚରେ କରି ଯାଉଥିଲେ। ସେମାନଙ୍କୁ କିଛି କାଟୁ ନଥିଲା। 'ମହାତ୍ମା ଗାନ୍ଧୀଙ୍କ ଜୟ' ମନ୍ତ୍ରଟି ମନେ ମନେ ତିନିଥର ବୋଲିଦେଲେ ସବୁ ଭର୍ତ୍ସନା ଅଭିସଂପାତ ଓ ଅପମାନାଦିର ବିଷକ୍ରିୟା ଓ ବିଷଜ୍ୱାଳାରୁ ସେମାନେ ମୁକ୍ତ ହୋଇ ଯାଉଥିଲେ। ତା'ଛଡ଼ା ଖଦଡ଼ ପୋଷାକଟି ମଧ୍ୟ ଥିଲା ସେମାନଙ୍କର ରକ୍ଷାକବଚ ତୁଲ୍ୟ। ତା' ଭିତର ଦେଇ ବାହାରର କୌଣସି ଆନ୍ଦୋଳନକାରୀ ସ୍ପନ୍ଦନ ସେମାନଙ୍କର ଚମଡ଼ାକୁ ମଧ୍ୟ ସ୍ପର୍ଶ କରୁ ନ ଥିଲା। ସେମାନେ ଏହିପରି ଭାବେ ସର୍ବ ପ୍ରତିକ୍ରିୟାରୁ ମୁକ୍ତହୋଇ ସ୍ଥିତପ୍ରଜ୍ଞ, ସ୍ଥିରସଙ୍କଳ୍ପ, ସ୍ଥିର ଲକ୍ଷ୍ୟ ଓ ସ୍ଥିର ଉଦ୍ୟମରେ ଭାରତବର୍ଷର ଶାସନଗାଦି ବହୁ ବର୍ଷ ଯାଏ ନିର୍ବିଘ୍ନରେ ଓ ନିରାପଦରେ ଅଧିକାର କରି ବସିଲେ। ଏବଂ ନାନା ବିଚିତ୍ର ଓ ବିବିଧ କ୍ରିୟାକାଣ୍ଡରେ ମାତିଲେ। ଏବଂ ଅନ୍ୟମାନଙ୍କୁ ଆଜିପର୍ଯ୍ୟନ୍ତ କେବଳ ପ୍ରତିକ୍ରିୟାରେ ହିଁ ଛଟପଟ କରି ରଖି ଆସିଥିଲେ।

ତା'ପରେ କିନ୍ତୁ ଯୁଗ ଓଲଟିଛି। ଇନ୍ଦିରା ଗାନ୍ଧୀଙ୍କ ପ୍ରଥମ ଶାସନ ବେଳେ ଗୋଟିଏ ଭର୍ତ୍ସନାବ୍ୟଞ୍ଜକ ଶବ୍ଦର ସୃଷ୍ଟି ହୋଇଥିଲା। ତାହା ହେଲା 'ଫାସିଷ୍ଟ'। ସେତେବେଳେ ପ୍ରତ୍ୟେକ ପ୍ରତ୍ୟେକଙ୍କୁ ଫାସିଷ୍ଟ ବୋଲି ଗାଳିଦେଲେ ଏବଂ ଅନ୍ୟଠାରୁ ସେ ଗାଳି ଶୁଣି ଆହତ ହେଲେ। କିନ୍ତୁ ଏହି ଭର୍ତ୍ସନାଦ୍ୟୋତକ ଶବ୍ଦଟି କେବଳ ରାଜନୀତି ବ୍ୟାପାରରେ ମାତିଥିବା ଲୋକଙ୍କ ଭିତରେ ଆବଦ୍ଧ ରହୁଥିଲା। ସାଧାରଣ ଲୋକଙ୍କ ଭିତରକୁ ବା କଲେଜ ପିଲାଙ୍କ ତୁଣ୍ଡକୁ ଆସି ନ ଥିଲା। ଫଳରେ କିଛି ଦିନ ପରେ ସେହି ଶବ୍ଦଟି ମଧ୍ୟ ଲୋପ ପାଇଗଲା।

ବର୍ତ୍ତମାନ ଦୁଇଟି ନୂତନ ଶବ୍ଦ ଆସିଛି । ତାହା ହେଲା—କମ୍ୟୁନାଲ ଓ ସିକ୍ୟୁଲାର । ମହାନ୍ ଧର୍ମାନ୍ଧ ସାଂପ୍ରଦାୟିକ ଓ ଧର୍ମନିରପେକ୍ଷ ଉଦାର । ରାଜନୀତି ବେପାରୀମାନେ ନିଜକୁ ସିକ୍ୟୁଲାର କହି ଶତ୍ରୁ ପକ୍ଷକୁ କମ୍ୟୁନାଲ ବୋଲି ଭର୍ତ୍ସନା କରି ଚାଲିଛନ୍ତି । ଏହି ବିଶେଷଣ ପ୍ରୟୋଗ କରି ରାଜନୀତିକ ଦଳମାନ ସୃଷ୍ଟି ହେଉଛି ଓ ବିଭାଜନ ହେଉଛି । ଏ ଦଳ କହୁଛି ସେ ଦଳ କମ୍ୟୁନାଲ—ଆମେ ସିକ୍ୟୁଲାର । ସେ ଦଳ ମଧ୍ୟ ସେହି କଥାକୁ ଓଲଟାଇ କହୁଛି ।

କିନ୍ତୁ ମଧୁ ମିଶ୍ରେ, ଦାମ ମହାନ୍ତି, କରୁଣ ଭୋଇ ଏବଂ ରମଜାନ ମିଆଁକୁ ଯଦି ଆପଣ ପଚାରିବେ—ଭାଇମାନେ ! ଆପଣମାନେ ଧର୍ମାନ୍ଧ ନା ଧର୍ମନିରପେକ୍ଷ ? ଉତ୍ତର ମିଳିବ—ବାବୁ ! ଆମେ ଧର୍ମକୁ ଛାଡ଼ିବୁ କିପରି ? ଧର୍ମ ଯେ ଆମକୁ ଧାରଣ ରଖିଛି । ଆମେ ଧାର୍ମିକ—ଧର୍ମାନ୍ଧ ହେବୁ କାହିଁକି ? ଧର୍ମନିରପେକ୍ଷ ବା ହେବୁ କାହିଁକି ? ମୋ ଧର୍ମ ମୋର—ତା' ଧର୍ମ ତାର । ରମଜାନ୍ ଚଜାର ପଟେ ବଳଦ ଓ ମଧୁ ମିଶ୍ରଙ୍କର ପଟେ ବଳଦ ନେଇ କରୁଣା ଭୋଇ ଏ ଦୁହିଁଙ୍କ ବିଲରେ ହଳ କରନ୍ତି ।

ସେହି ବିଲରେ ଧାନ ତିନିଙ୍କ ପେଟକୁ ଯାଏ । ସେଇ ବିଲର ଧାନ ବିକ୍ରୀ ହୋଇ ମନ୍ଦିର, ମସ୍‌ଜିଦ୍ ଆଉ ଅଲ୍ଲେଖ ଟୁଙ୍ଗୀ ତିଆର ହେବା ଲାଗି ଚାନ୍ଦା ଦିଆଯାଏ ।

କଲେଜ ପିଲାଙ୍କୁ ଯଦି ପଚାରିବେ କିଓ ବାବୁମାନେ ! ତୁମେମାନେ ଧର୍ମାନ୍ଧ ନା ଧର୍ମନିରପେକ୍ଷ ? ସେମାନେ ସଙ୍ଗେ ସଙ୍ଗେ ତୁମ ମୁହଁକୁ ବିଦ୍ରୁପାତ୍ମକ ଦୃଷ୍ଟିରେ ଚାହିଁ ଭର୍ତ୍ସନାତ୍ମକ କଣ୍ଠରେ କହିବେ—ଶଃ...ବେକୁବ୍ ! ଶିରୋନାସ୍ତି—ଶିରୋପୀଡ଼ା ? ଧର୍ମ କାହିଁ ଯେ ଅନ୍ଧ ହେବା ବା ନିରପେକ୍ଷ ରହିବା ?

ହାୟରେ ଦିଲ୍ଲୀ !

ହାୟରେ ଭୁବନେଶ୍ୱର !

ହାୟ ହାୟ କ୍ଷମତା—ରାଜନୀତିର ନିର୍ଲ୍ଲଜ ଘୋଡ଼ାବେପାରୀ ଗଣ ।



# ମାର୍କିନ ଜୀବନଚର୍ଯ୍ୟା ଓ ସୋଭିଏତ୍ ଦେଶ

କିଛିଦିନ ତଳେ ''ରୁଷିଆ ଆମେରିକାକୁ ଅନୁକରଣ କରିବାକୁ ଚେଷ୍ଟା କରୁଛି କି?''–ଏଇ ଶିରୋନାମାରେ ଲେଖାଟିଏ ଏକ ଇଂରାଜୀ ସାପ୍ତାହିକରେ ପଢ଼ିବାକୁ ମିଳିଲା। ଏହାର ଲେଖକ ତିନିଚାରିବର୍ଷ ତଳେ ରୁଷ ଭ୍ରମଣରେ ଯାଇଥିଲେ ଏବଂ ଏବେ ଅଳ୍ପଦିନ ତଳେ ପୁନଶ୍ଚ ସେ ଦେଶ ଭ୍ରମଣ କରି ଆସି ସେ ମତପ୍ରକାଶ କରିଛନ୍ତି କି ଚାରିବର୍ଷ ପୂର୍ବରେ ରୁଷ ବର୍ତ୍ତମାନ ଦ୍ରୁତଗତିରେ ସାଂସ୍କୃତିକ ଜୀବନରେ ବଦଳି ଚାଲିଛି? ରୁଷର ନରନାରୀ, ବିଶେଷତଃ ଯୁବକଯୁବତୀମାନେ ବର୍ତ୍ତମାନ ମାନସିକ କ୍ଷେତ୍ରରେ ଅଧିକ ସ୍ୱାଧୀନତା ଉପଭୋଗ କରୁଛନ୍ତି ଏବଂ ଆହୁରି ବେଶି ସ୍ୱାଧୀନତା ମଧ ଦାବୀ କରୁଛନ୍ତି। ଜୀବନକୁ ଅଧିକ ସ୍ୱଚ୍ଛନ୍ଦ, ମୁକ୍ତ ଓ ପ୍ରାଣବନ୍ତ କରିବା ଲାଗି ଯେଉଁ ବ୍ୟକ୍ତିଗତ ସ୍ୱାଧୀନତା ଅପରିହାର୍ଯ୍ୟ, ସେମାନେ ତାକୁ ହିଁ ଦାବୀ କରୁଛନ୍ତି। ଏକ ସମାଜବାଦୀ ବସ୍ତୁତାନ୍ତ୍ରିକ ନିୟନ୍ତ୍ରିତ ସଂସ୍କୃତିର ଚାପ ଭିତରୁ ସତେକି ସେମାନେ ମୁକ୍ତ ହେବାକୁ ଭିତରେ ଭିତରେ ଅସ୍ଥିର ହୋଇ ଗଲେଣି। ସେମାନଙ୍କ ଆଖି ଆଗରେ ବର୍ତ୍ତମାନ ପୁଞ୍ଜିବାଦୀ ଦେଶ ଆମେରିକାର ବୁର୍ଜୋୟା ଜୀବନଚର୍ଯ୍ୟାର ହରରଙ୍ଗୀ ଝଲମଲ ପ୍ରମତ୍ତ ଆହ୍ୱାନ ଓ ଆକର୍ଷଣ। ସୋଭିଏତ ଯୁବକ-ଯୁବତୀମାନେ ବର୍ତ୍ତମାନ ମାର୍କିନ ଯୁବକ-ଯୁବତୀମାନଙ୍କ ଭଳି ଚଳପ୍ରଚଳ ହେବାକୁ ଅଧିକ ପସନ୍ଦ କରୁଛନ୍ତି। ଆଧୁନିକ ମାର୍କିନ ସାହିତ୍ୟ, ସଙ୍ଗୀତ, ନୃତ୍ୟ ଓ କଳା ସେମାନଙ୍କୁ ବେଶି ଆକର୍ଷଣ କରୁଛି। ଜିନ୍‌ପୋଷାକ ଓ ପପମ୍ୟୁଜିକ ରେକର୍ଡ଼ କିଣିବାକୁ ସେମାନେ କିଳାପୋଡେଇ ଦେବାକୁ ମଧ ଆରମ୍ଭ କଲେଣି। ଅନେକ ବିଳାସଦ୍ରବ୍ୟ କ୍ରୟବିକ୍ରୟରେ ସେଠାରେ କଳାବଜାର ମଧ ଆରମ୍ଭ ହୋଇଗଲାଣି। କିଛି ବର୍ଷ ତଳେ କିନ୍ତୁ କ୍ଲାସିକାଲ ଓ ମାର୍ଜିତ ଲୋକସଙ୍ଗୀତ ପ୍ରତି ସେମାନଙ୍କର ଯେଉଁ ଆଗ୍ରହ ଥିଲା, ତାହା ଏବେ କମି କମି ଯାଉଛି। ସୋଭିଏତ ରମଣୀମାନେ ବର୍ତ୍ତମାନ ମାର୍କିନ ଧାରାରେ ବେଶଭୂଷା ହେବାକୁ ବିଶେଷ ଲାଳାୟିତ। ସାଲୁନମାନଙ୍କରେ ହରେକ୍ ରକମର ବେଶସଜା ପାଇଁ ଭିଡ଼ ହେଉଛି। ମୂଲ୍ୟବାନ ପଥର ଓ ନକଲି ହୀରା ନୀଳାର ଅଳଙ୍କାର ପିନ୍ଧିବାଲାଗି ରୁଷ ସୁନ୍ଦରୀମାନେ ଉନ୍ମାଦିନୀ ହୋଇ ଉଠିଲେଣି।

ଚାରି ପାଞ୍ଚ ବର୍ଷ ତଳେ, ରୁଷୀୟମାନେ ବ୍ୟକ୍ତିଗତ ଭାବେ ମଟରକାର ରଖିବାକୁ ଏକ ବୁର୍ଜୋୟା ମନୋଭାବ ବୋଲି ବିଚାରୁଥିଲେ। ସେଥିପାଇଁ ସେ ଦେଶର ସର୍ବସାଧାରଣ ଯାନବାହାନ ଥିଲା ଖୁବ୍ ଉନ୍ନତ ଧରଣର ଓ ଖୁବ୍ ବେଶି ଆରାମଦାୟକ। ଭଡ଼ା ମଧ ଥିଲା ବେଶ୍ ଶସ୍ତା।

କିନ୍ତୁ ବର୍ତ୍ତମାନ ଠିକ୍ ଓଲଟା ଦେଖାଗଲାଣି । ବ୍ୟକ୍ତିଗତ ସଂପତ୍ତି ଠୁଳ କରିବା ଏକ ବୁର୍ଜୋୟା ମନୋବୃତ୍ତି ବୋଲି କମ୍ୟୁନିଷ୍ଟ ଦର୍ଶନ ଦାବୀ କରୁଥିଲେ ହେଁ ଏବେ ସୋଭିଏଟ୍ ରାଷ୍ଟ୍ର ସାମାନ୍ୟ ସାମାନ୍ୟଭାବେ ବ୍ୟକ୍ତିଗତ ଜମିଜମା ରଖିବାକୁ ତାର କଠିଣ ସମାଜନୀତିକୁ କୋହଳ କରିବା ଲାଗି ବାଧ୍ୟ ହେଉଛି ବୋଲି ଜଣାପଡ଼ିଲାଣି । ସେଥିଲାଗି ବର୍ତ୍ତମାନ ଆମୋଦପ୍ରମୋଦ ଓ ସୁଖସ୍ୱାଚ୍ଛନ୍ଦ୍ୟରେ ଗୋଷ୍ଠୀଭାବ ଅପେକ୍ଷା ବ୍ୟକ୍ତିଭାବ ବଢ଼ି ଚାଲିଛି ।

ଘରୋଇ କାରଟିଏ ନିଜର କରି ବ୍ୟବହାର କରିବାକୁ ଅଧିକାଂଶଙ୍କର ଲାଳସା ବଢ଼ିଛି । ରଙ୍ଗୀନ୍ ଟେଲିଭିଜନ ପ୍ରତି ମଧ୍ୟ ତଦ୍ରୂପ ନିଶା । ସେହିପରି ମଦ୍ୟପାନ ମଧ୍ୟ ଆଉ ବର୍ତ୍ତମାନ ଶ୍ରମକ୍ଳାନ୍ତି ଅପନୋଦନ ରୂପେ ନାହିଁ । ମାତାଲ ହେବାର ପ୍ରବଣତା ମଧ୍ୟ ଅନୁପାତରେ ବଢ଼ୁଛି ।

ଏହା ସାଙ୍ଗକୁ ପର୍ଯ୍ୟବେକ୍ଷକ ମତପ୍ରକାଶ କରିଛନ୍ତି ଯେ, ସୋଭିଏଟ୍‌ର ସମାଜବାଦୀ ନୀତିନିଷ୍ଠ ଜାତୀୟ ଚରିତ୍ରରେ ମଧ୍ୟ କିଛି ଅନୈତିକତା ପ୍ରବେଶ କଲାଣି । ଟ୍ୟାକ୍‌ସି ଓ କାରମାନଙ୍କର ଓ୍ୱାଇପର ସବୁ ଚୋରି ହୋଇଯାଉଛି । ହୋଟେଲର ପରିବେଷକମାନେ ସୌଜନ୍ୟ ଭୁଲି ଅଧିକ ଟିପ୍‌ସ (ପୁରସ୍କାର) ମାଗିଲେଣି । ଟ୍ୟାକ୍‌ସି ଡ୍ରାଇଭରମାନେ ନିର୍ଧାର୍ଯ୍ୟ ଭଡ଼ାଠାରୁ ବେଶି ଭଡ଼ା ଦାବୀ କରୁଛନ୍ତି । ଏକ ବିଶେଷ ଧରଣର ରେଫ୍ରିଜରେଟରଟିଏ କିଣିବାକୁ ମଧ୍ୟ ନିର୍ଧାର୍ଯ୍ୟ ଦାମଠାରୁ ଅଧିକା ଲାଞ୍ଚ ଦେବାକୁ ପଡ଼ୁଛି ସରକାରୀ ପରିଚାଳିତ ବିଭାଗୀୟ ଷ୍ଟୋରରେ । ଏହିଭଳି ବହୁ କ୍ଷୁଦ୍ର କ୍ଷୁଦ୍ର ବୁର୍ଜୋୟା ଅନୈତିକତା ଏହି ସମାଜବାଦୀ ଦେଶର ଜାତୀୟଜୀବନର ଚଳଣିରେ ଦେଖାଗଲାଣି ଏବଂ କ୍ରମଶଃ କୁଆଡ଼େ ଏହା ବଢ଼ୁଛି ଓ ବ୍ୟାପୁଛି । ଏସବୁ କଥା କହିସାରି ଲେଖକ ଏହା ମଧ୍ୟ ସ୍ୱୀକାର କରିଛନ୍ତି ଯେ, ତଥାପି ମଧ୍ୟ ସୋଭିଏଟ୍‌ବାସୀଙ୍କ ମନ ଭିତରେ ସାମ୍ୟବାଦୀ ଆଦର୍ଶର ଉତ୍କଟତା କମିନାହିଁ । ସେ ଏହାର କେତେକ ଉଦାହରଣ ମଧ୍ୟ ଦେଇଛନ୍ତି ।

''ତା'ହେଲେ, ଏପରି ଘଟିବାର କାରଣ କ'ଣ ? କେତେକେ କହନ୍ତି-ଷ୍ଟାଲିନଙ୍କ ଲୌହପରଦାକୁ ସଂପୂର୍ଣ୍ଣ ଖୋଲିଦେଇ କ୍ରୁଶ୍ଚେଭ ଯେଉଁ ସଂଶୋଧନବାଦ ଆଣିଲେ, ଏସବୁ ତାହାରି ଫଳ । କ୍ରୁଶ୍ଚେଭ ଗୋଟାଏ ବଡ଼ ସ୍ଲୋଗାନ ଜାତି ଉଦ୍ଦେଶ୍ୟରେ ଦେଇଥିଲେ, 'ଆମେରିକା ସଙ୍ଗେ ସବୁ କ୍ଷେତ୍ରରେ ସମାନ ହୁଅ' । ବର୍ତ୍ତମାନ ସେହି ସ୍ଲୋଗାନର ବିଷମୟ ଫଳ ଫଳୁଛି ।''

ମାତ୍ର ଏ କଥା ଠିକ୍ ନୁହେଁ । ଆମେରିକା ସଙ୍ଗେ ସମାନ ହେବାକୁ କ୍ରୁଶ୍ଚେଭ ଯେଉଁ ସ୍ଲୋଗାନ ଦେଇଥିଲେ, ତାହାର ଉଦ୍ଦେଶ୍ୟ ନ ଥିଲା ପପ୍‌ମ୍ୟୁଜିକ ବା ହିପ୍ପିବାଦକୁ ତାଙ୍କ ଦେଶର ଯୁବକ-ଯୁବତୀ ଗ୍ରହଣ କରନ୍ତୁ । ବିଜ୍ଞାନ, ଶିଳ୍ପ ଓ ଜାତୀୟ ଆୟରେ ତାହା ସଙ୍ଗେ ସମାନ ହେବା ଲାଗି ସେ ଡ଼ାକ ଦେଇଥିଲେ । ଆଜି ଅବଶ୍ୟ ସୋଭିଏତ

ଦେଶ ଏ ସବୁ କ୍ଷେତ୍ରରେ ଆମେରିକାକୁ ମଧ୍ୟ କେତେକାଂଶରେ ପଛରେ ପକାଇ ସାରିଲାଣି। ରୁଷିଆରେ ବର୍ତ୍ତମାନ ଶ୍ରମ-ସମୟ ବହୁତ କମିଗଲାଣି। ସପ୍ତାହକୁ ଦୁଇଦିନ ଛୁଟି ମିଳୁଛି। ମୁଣ୍ଡପିଛା ଆୟ ଏବଂ ଜାତୀୟ ଆୟ ଯଥେଷ୍ଟ ବଢ଼ିଯାଇଛି। ଲୋକଙ୍କର ସ୍ୱାସ୍ଥ୍ୟ ମଧ୍ୟ ବଢ଼ିଛି। ଜୀବନୀଶକ୍ତି ବଢ଼ିଛି। ଜୀବନକୁ ଭୋଗ କରିବାର ଆଗ୍ରହ ମଧ୍ୟ ବଢ଼ିଚାଲିଛି। ଏହା ଅତ୍ୟନ୍ତ ସ୍ୱାଭାବିକ କଥା। ସେ ଦେଶ ସାଙ୍ଗେ ଆମ ଦେଶକୁ ତୁଳନା କରିହେବ ନାହିଁ।ଆମ ଦେଶରେ ବହୁଭାଗ ବ୍ୟକ୍ତି ବେକାର। କେତେକ ଭାଗ ବ୍ୟକ୍ତି ଅଳ୍ପ ଶ୍ରମରେ ବହୁଧନ ଉପାର୍ଜନ କରନ୍ତି ଏବଂ ବହୁଭାଗ ବ୍ୟକ୍ତି ଦିନରାତି ଖଟୁଥାନ୍ତି-ମାତ୍ର ପେଟ ପୂରେ ନାହିଁ କି ଦେହ ଘୋଡ଼େଇ ହୁଏ ନାହିଁ। ଆମର ପ୍ରଥମ ଓ ଶେଷୋକ୍ତ ଶ୍ରେଣୀର ଲୋକେ ଜୀବନକୁ ବଞ୍ଚାଇବା ଲାଗି ଗଳଦ୍‌ଘର୍ମ। ଜୀବନକୁ ଉପଭୋଗ କରିବାର ପ୍ରଶ୍ନ ବା କାହିଁ? ଆମ ଦେଶରେ ଜୀବନକୁ ସ୍ୱଚ୍ଛନ୍ଦ, ମୁକ୍ତ ଓ ଚମତ୍କାର ଭାବରେ ଉପଭୋଗ କରନ୍ତି ସେହିମାନେ, ଯେଉଁମାନେ କିଳାପୋତେଇ କରି ବଞ୍ଚନ୍ତି—କଳାବଜାର କରି ବଞ୍ଚନ୍ତି ଓ ଅନ୍ୟକୁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ଲୁଣ୍ଠନ କରି ବା ଶୋଷଣ କରି ବଞ୍ଚନ୍ତି।

ଆମ ଦେଶ କଥା ଛାଡ଼ନ୍ତୁ— ସୋଭିଏତ୍ ଭଳି ବାମପନ୍ଥୀ ସମାଜବାଦୀ ରାଷ୍ଟ୍ରର ଯୁବକୁଳ ମୁକ୍ତ, ସ୍ୱଚ୍ଛନ୍ଦ ଓ ଚମତ୍କାର ଭାବେ ବଞ୍ଚିବା ଲାଗି ମାର୍କିନ ଦେଶର ଏହି ବିକୃତ ଅପସଂସ୍କୃତିର ଆଦର୍ଶକୁ କିପରି ଓ କାହିଁକି ଗ୍ରହଣ କରୁଛନ୍ତି? ଏବଂ ସେଥିଲାଗି ଏତେ ପାଗଳ ବି ହେଉଛନ୍ତି କିପରି?

ମାର୍କିନ ସମାଜରେ ଅତ୍ୟଧିକ ବ୍ୟକ୍ତି ସ୍ୱାଧୀନତା ଯେପରି ଏହି ବିକୃତି, ବିଶୃଙ୍ଖଳାକୁ ଡ଼ାକି ଆଣିଛି-ସାମ୍ୟବାଦୀ ସମାଜର ଅତ୍ୟଧିକ ଶୃଙ୍ଖଳା ବା କଟକଣା ମଧ୍ୟ ସେହିଭଳି ଯଥା ସମୟରେ ଯଥା ସୁଯୋଗ ପାଇ ସେଇ ଧରଣର ବିକୃତି ଓ ବିଶୃଙ୍ଖଳାକୁ ଡ଼ାକି ଆଣିବାକୁ ବାଧ୍ୟ ହେଲାଣି। ଧନ ଓ ସ୍ୱାସ୍ଥ୍ୟର ବୃଦ୍ଧି ସାଙ୍ଗକୁ ଯଦି ସାଂସ୍କୃତିକ ଓ ଆତ୍ମିକ ଚେତନାର ବୃଦ୍ଧି ନ ଘଟିବ-ଯଦି ବାହ୍ୟ ପ୍ରକୃତିଠାରୁ ବିଜ୍ଞାନ ବଳରେ ମୁକ୍ତି ପାଇ ମନୁଷ୍ୟ ନିଜର ଆଭ୍ୟନ୍ତରୀଣ ପ୍ରକୃତିଠାରୁ ମୁକ୍ତି ନ ପାଇବ-ତେବେ ଏହିଭଳି ଅପସଂସ୍କୃତିର ଶିକାର ହେବାକୁ ବ୍ୟକ୍ତି ଓ ଜାତି ବାଧ୍ୟ ହୋଇପଡ଼ିବ। ଧନ ଓ କ୍ଷମତାକୁ ହିଂସାରେ ବ୍ୟକ୍ତି ପାଖରୁ ଛଡ଼ାଇ ଆଣି ରାଷ୍ଟ୍ର ପାଦତଳେ ଅଜାଡ଼ିଦେଲେ ଓ ବ୍ୟକ୍ତି ନିଜକୁ ନିଜର ଆତ୍ମାଠାରୁ ଛଡ଼ାଇ ଆଣି ରାଷ୍ଟ୍ରପାଖେ ବନ୍ଧା ପକାଇଦେଲେ-ପୁଣି ବ୍ୟକ୍ତି ନିଜର ଆତ୍ମାକୁ ବନ୍ଧନ କରି ନିଜର ଅହଂକାରର ବାସନା ଓ ଦାବୀ ପାଖେ ନିଜକୁ ସମର୍ପି ଦେଲେ ଏହି ବିପର୍ଯ୍ୟୟ ଘଟିବ ଇ ଘଟିବ। ମାର୍କିନ ସଭ୍ୟତାର ବ୍ୟକ୍ତି ଅହଂ ଏବଂ ସୋଭିଏତ୍ ସଭ୍ୟତାର ରାଷ୍ଟ୍ର ଅହଂ-ଗୋଟିଏ ସତ୍ୟର କେବଳ ପରିମାଣାତ୍ମକ ରୂପ। ସେଥିପାଇଁ କ'ଣ ମାର୍କିନ ସଂସ୍କୃତି ସୋଭିଏତ୍ ବାଲାଙ୍କୁ ଏମିତି ଆକୃଷ୍ଟ କରୁଛି?



# କିଏ ନେତା ? କିଏ ଅଭିନେତା ?

ଦେଶରେ ଏଣିକି ଲୋକସଭା ନିର୍ବାଚନ ପାଇଁ ଚଳଚ୍ଚିତ୍ର ଅଭିନେତା-ଅଭିନେତ୍ରୀମାନେ ମଧ୍ୟ ରାଜନୀତି-ବ୍ୟବସାୟୀମାନଙ୍କ ସଙ୍ଗେ ଲଢ଼ିବେ। ଆମର ବିଖ୍ୟାତ ପ୍ରତିଭାବାନ ହାସ୍ୟରସାଭିନେତା ଶ୍ରୀ ଆଇ.ଏସ. ଜୋହର କୁଆଡ଼େ କହିଲେଣି ଯେ ତାଙ୍କ ଜୀବନର ସବୁଠାରୁ ଉଚ୍ଚାଭିଳାଷ ହେଉଛି ଭାରତର ପ୍ରଧାନମନ୍ତ୍ରୀ ହେବା। କୌଣସି କୌଣସି ସମ୍ବାଦପତ୍ରରେ ସମ୍ପାଦକଙ୍କୁ ଚିଠି ବା ଏକ ପ୍ରସ୍ତାବ ଆକାରରେ ଲୋକେ କହୁଛନ୍ତି-ଶ୍ରୀମତୀ ହେମାମାଳିନୀ ଭାରତର ପ୍ରଧାନମନ୍ତ୍ରୀ ପଦକୁ ଅଳଂକୃତ କରିବା ଲାଗି ଉଦ୍‌ଯୋଗୀ ହୁଅନ୍ତୁ। ଆମେ ସମସ୍ତେ ତାଙ୍କ ପଛରେ ଅଛୁ।

ଏକ ବିଶିଷ୍ଟ ଇଂରାଜୀ ଖବରକାଗଜରେ ଶ୍ରୀଯୁକ୍ତ ଜୋହରଙ୍କ ବିଷୟରେ ବାହାରିଥିଲା ଯେ ସେ ରାଜନୀତି ରଙ୍ଗମଞ୍ଚର ବିଶିଷ୍ଟ ପ୍ରତିଭାବାନ୍ ଜୋକର ଶ୍ରୀ ରାଜନାରାୟଣଙ୍କ ସଙ୍ଗେ ଏକା ନିର୍ବାଚନ ମଣ୍ଡଳୀରୁ ଲଢ଼ିବେ ଏବଂ ତାଙ୍କର ଅମାନତ ଉଡ଼ାଇଦେବେ।

କିଛି ବର୍ଷ ତଳେ ଏପରି ଖବର ଶୁଣିବା ମାତ୍ରେ ଲୋକେ ହସି ହସି ଆମୋଦ ପାଉଥିଲେ, ମାତ୍ର ଏବେ ଏକଥା ଶୁଣି ଲୋକେ ଆଶ୍ୱସ୍ତ ହୋଇ ଆନନ୍ଦ ପ୍ରକାଶ କରୁଛନ୍ତି। ସମାଜରେ ରାଜନୀତିକ ଲୋକମାନଙ୍କ ପ୍ରତି ସାଧାରଣ ଲୋକଙ୍କର କେବଳ ବିରକ୍ତି ନୁହେଁ-ଘୋର ଘୃଣାଭାବ ମଧ୍ୟ ଆସିଗଲାଣି। ଦଳମତ ନିର୍ବିଶେଷରେ ଆଜିକାଲିର ଯେ କୌଣସି ରାଜନୀତିକ ବ୍ୟକ୍ତିର ନାମ ଶୁଣିବାମାତ୍ରେ ଲୋକେ ବିରକ୍ତି ଓ ଘୃଣାରେ ଚିହିଁକି ଉଠୁଛନ୍ତି। ଅନ୍ୟ ଦିଗରେ ଲୋକେ ଚଳଚ୍ଚିତ୍ର ଅଭିନେତା-ଅଭିନେତ୍ରୀଙ୍କ ନାମ ଶୁଣିବାମାତ୍ରେ ଇଷ୍ଟନାମ ଭଳି ପୁଲକି ଉଠୁଛନ୍ତି। ସତକଥା-ବର୍ତ୍ତମାନ ସମାଜରେ ସବୁଠାରୁ ଲୋକପ୍ରିୟ ହେଉଛନ୍ତି ଆମର ଅଭିନେତା-ଅଭିନେତ୍ରୀବୃନ୍ଦ। ବିନା ଆୟାସରେ ଲୋକେ ସେମାନଙ୍କର ନାମ ମନେ ରଖିଛନ୍ତି। ସେମାନଙ୍କର ଫଟୋ ଘରେ ଘରେ, ଶୋଇବା ଘରେ ଟାଙ୍ଗି ରଖିଛନ୍ତି। ସକାଳୁ ଉଠିବା ମାତ୍ରେ ସେମାନଙ୍କର ମୁଖାରବିନ୍ଦ ଦର୍ଶନ କରି ପ୍ରଫୁଲ୍ଲ ଅନ୍ତରରେ ନୂତନ ଦିଗଟିର କାର୍ଯ୍ୟ ଆରମ୍ଭ କରୁଛନ୍ତି। ଶୋଇବା ପୂର୍ବରୁ ସେହିମାନଙ୍କର ମୁଖଚନ୍ଦ୍ର ଦର୍ଶନ କରି କରି ନିଦ୍ରାଦେବୀଙ୍କର ସର୍ବସନ୍ତାପହାରିଣୀ କୋଳରେ ଅତି ନିଶ୍ଚିନ୍ତରେ ଢଳି ପଡୁଛନ୍ତି।

ସେହିମାନଙ୍କ ବିଷୟରେ ନାନାଦି କର୍ଣ୍ଣପ୍ରୀତିପଦ ସମ୍ବାଦ ପରିବେଷିତ ହୋଇ ସମ୍ବାଦପତ୍ରମାନ ପ୍ରକାଶିତ ହେଉଛି ଓ ସେମାନଙ୍କର ଛବି ଓ କଥାକୁ ନେଇ ବହୁ ପତ୍ରପତ୍ରିକା ପ୍ରକାଶ ପାଉଛି-ଏବଂ ଲକ୍ଷ ଲକ୍ଷ ସଂଖ୍ୟାରେ ବିକ୍ରୀ ମଧ ହେଉଛି। ଲୋକେ ସେମାନଙ୍କୁ ଦେଖିବା ଲାଗି, ସେମାନଙ୍କର ଚିତ୍ରପଟ ଦେଖିବା ଲାଗି, ସେମାନଙ୍କ ବିଷୟରେ କଥା ଅକଥା ସବୁ ଶୁଣିବା ଲାଗି ଓ ସେମାନଙ୍କ ନାମ ଜପିବା ଲାଗି ଯେତେ ବ୍ୟାକୁଳ, ଆଉ କାହା ପ୍ରତି ସେପରି ନୁହନ୍ତି। ଅବଶ୍ୟ ସମାଜର ଆଉ ଗୋଟିଏ ଲୋକପ୍ରିୟ ଗୋଷ୍ଠୀ ଅଛନ୍ତି, ସେମାନେ ହେଲେ କ୍ରିକେଟ ଫୁଟବଲ ଇତ୍ୟାଦି ଖେଳାଳୀବୃନ୍ଦ। ଲୋକଙ୍କର ସେମାନଙ୍କ ସମ୍ବନ୍ଧେ ପ୍ରାୟ ସମାନ ଆଗ୍ରହ। କିନ୍ତୁ ଖେଳାଳୀମାନେ କେହି ନିର୍ବାଚନରେ ଲଢ଼ିବା ଲାଗି ଆଗ୍ରହ ପ୍ରକାଶ କରି ନ ଥିବାରୁ ସେମାନଙ୍କର କଥା ଆମ ବକ୍ତବ୍ୟରୁ ଆପାତତଃ ଏଥରକ ପାଇଁ ବାଦ୍ ଦେବାକୁ ପଡୁଛି।

ଚଳଚ୍ଚିତ୍ର ଜଗତ ଗୋଟିଏ ଆକର୍ଷଣୀୟ ସ୍ୱପ୍ନଜଗତ। ଆବାଳ ବନିତାଙ୍କ ପାଇଁ ଏହା ସମାନ ଭାବେ ଚିତ୍ତବିନୋଦକ। କେବଳ ବିନୋଦକ ସାମଗ୍ରୀ ରୂପେ ନୁହେଁ, ସାଧାରଣ ଜନତା ଏହି ଜଗତଟିକୁ ଅଧିକତର ସତ୍ୟ ବୋଲି ବରଂ ମନେ କରନ୍ତି। ଏବଂ ଏହି ରୁକ୍ଷ ରୁଢ଼ ଅନାକର୍ଷଣୀୟ ବିରକ୍ତିକର ସଂସାରଟିଏ ଅବିକଳ ସେମିତି ହେଉ ବୋଲି ମନେ ମନେ ମନାସୁଥାନ୍ତି। କହିବା ବାହୁଲ୍ୟ ଯେ, ସବୁ ଧରଣର ଉତ୍କୃଷ୍ଟ ଶିଳ୍ପକଳାର ଉଦ୍ଦେଶ୍ୟ ହେଲା ଜନମାନସରେ ଏହିଭଳି ଗୋଟିଏ ସ୍ୱପ୍ନ ସୃଷ୍ଟି କରିବା ଯାହାକୁ କି ବାସ୍ତବରେ ରୂପାୟିତ କରିବା ଲାଗି ଯେକୌଣସି ବ୍ୟକ୍ତିର ସ୍ୱତଃ ଆଗ୍ରହ ସୃଷ୍ଟିହେବ ଏବଂ ସେ ଦିଗରେ ଉଦ୍ୟମ କରିବା ଲାଗି ସେ ପ୍ରେରଣା ଅନୁଭବ କରିବ ରାମ, କୃଷ୍ଣ, ବୁଦ୍ଧ, ଖ୍ରୀଷ୍ଟ, ଶ୍ରୀଚୈତନ୍ୟ ପ୍ରଭୃତି ଅବତାର ବା ପ୍ରେରିତ ପୁରୁଷମାନଙ୍କ ସମ୍ବନ୍ଧେ ନାଟକ, ଚଳଚ୍ଚିତ୍ର ଦେଖିଲେ ହିଁ ଲୋକେ ସେମାନଙ୍କ ସମ୍ବନ୍ଧେ ଅଧିକ ଭାବାନ୍ୱିତ ହୁଅନ୍ତି। ଆଧୁନିକ ଚଳଚ୍ଚିତ୍ର ଯେତେ ନଗ୍ନଅଶ୍ଳୀଳ (?) ହେଉ ପଛେ, ସବୁ ଛବିର ଗୋଟିଏ ଭଲ ଉଦ୍ଦେଶ୍ୟ ଶେଷ ଆଡ଼କୁ ପର୍ଦ୍ଦା ଉପରେ ପ୍ରତିଫଳିତ ହୋଇଯାଏ। ମୋଟାମୋଟି ସେହି ଚିରନ୍ତନ ଉଦ୍ଦେଶ୍ୟଟି ହେଲା-ଧର୍ମ ବା ସତ୍ୟର ଜୟ ଅଧର୍ମ ବା ଅସତ୍ୟର ପରାଜୟ। ଲୋକେ ଏହା ହିଁ ଚାହାନ୍ତି। ପ୍ରକୃତରେ ଏହା ହିଁ ଚାହାନ୍ତି। ଲୋକେ ଯେତେ ନିରକ୍ଷର ମୂର୍ଖ ହେଲେ ବି ସେମାନଙ୍କୁ ଏତେ ବୋକା ଭାବିବା ଅତ୍ୟନ୍ତ ବୋକାମୀ। ଲୋକେ ପ୍ରକୃତରେ ସ୍ୱାଭାବିକ ଭାବେ ଭଲ ଜଗତଟିଏ ଚାହାନ୍ତି-ଭଲ ସ୍ୱପ୍ନଟିଏ ଦେଖିବାକୁ ଚାହାନ୍ତି ଏବଂ ସେହି ଭଲ ଜଗତର ସ୍ରଷ୍ଟା ବା ସେହି ଭଲ ସ୍ୱପ୍ନଟିର ନାୟକ ନାୟିକାଙ୍କୁ ସେମାନେ ହୃଦୟ ଦେଇ ଭଲ ପାଆନ୍ତି। ଏପରି କି ନାଟକଟିର ଖଳ ନାୟକ ବା ଖଳନାୟିକାଟି, ଚଳଚ୍ଚିତ୍ର ପରଦା ଉପରେ ଯାହାର କାଣ୍ଡକାରଖାନା ଦେଖି ଲୋକେ ପ୍ରେକ୍ଷାଗୃହର ଅନ୍ଧକାର

ଭିତରେ ବସି ବିରକ୍ତ ଓ କ୍ରୁଦ୍ଧ ହେଉଥିଲେ-ଏବଂ ନାଟକର ଶେଷ ଦୃଶ୍ୟରେ ଯେଉଁ ଖଳନାୟକ ବା ଖଳନାୟିକାଟିର ଶୋଚନୀୟ ପତନ, ଏପରିକି ମୃତ୍ୟୁ ଦେଖି ମହାଆନନ୍ଦରେ କରତାଳି ଦେଇ ହଇ ହଲ୍ଲାର କରୁଥିଲେ, ସେହି ଅଭିନେତା ଅଭିନେତ୍ରୀଟିଙ୍କୁ ଦିନର ଆଲୁଅରେ ଦେଖିବା ମାତ୍ରେ ତାକୁ ସେମାନେ ସ୍ୱାଗତ-କରତାଳିରେ ପୋତି ପକାନ୍ତି। ତା'ମାନେ ଚଳଚ୍ଚିତ୍ର ଜଗତର ଖଳନାୟକ ନାୟିକାମାନଙ୍କୁ ମଧ୍ୟ ଲୋକେ ଆନ୍ତରିକ ଭାବେ ଭଲପା'ନ୍ତି। ତାର ଗୋଟାଏ ଅସ୍ପଷ୍ଟ କାରଣ ବୋଧେ ହେଲା-ଲୋକେ ଭାବନ୍ତି ଯେ ଏଇସବୁ ଅଭିନେତା-ଅଭିନେତ୍ରୀଗଣ-ସେମାନେ ରାମ-ସୀତାଙ୍କ ଭୂମିକାରେ ଓହ୍ଲାଇଥାନ୍ତୁ-କିମ୍ବା ରାବଣ-ମନ୍ଦୋଦରୀ ଭୂମିକାରେ ଓହ୍ଲାଇଥାନ୍ତୁ-ସମସ୍ତେ ମିଶି କାଲି ରାତିରେ ଅନ୍ତତଃ ଦୁଇ ଘଣ୍ଟା ପାଇଁ ରାମରାଜ୍ୟର ସ୍ୱପ୍ନଟିଏ ସୃଷ୍ଟି କରିଥିଲେ। ତେଣୁ ସେମାନେ ସମସ୍ତେ ପ୍ରିୟ। କେହି କେହି ପ୍ରିୟତର ଅବା ପ୍ରିୟତମ।

ମୋଟକଥା ହେଲା-ଏହି 'ସ୍ୱପ୍ନ'ଟିର ସୃଜନକଳା। ନାଟକଜଗତ ଛାଡ଼ିଦେଲେ ବେଳେ ବେଳେ ଆମର ବାସ୍ତବ ଜଗତକୁ ମଧ୍ୟ ଆସିଯାନ୍ତି ସେହିପରି କେତେକ ମଣିଷ-ଯେଉଁମାନଙ୍କୁ ଆମେ ମହାପୁରୁଷ, ମହାତ୍ମା, ମହାନ୍ ବ୍ୟକ୍ତି ରୂପେ ଭଲପାଇ,ସମ୍ମାନ ଦେଖାଉ। ଊନବିଂଶ ଶତାବ୍ଦୀର ଷଷ୍ଠ ଦଶକ ପର୍ଯ୍ୟନ୍ତ ଭାରତବର୍ଷରେ ଏମିତି ବହୁ ମହାପୁରୁଷ ଆବିର୍ଭୂତ ହୋଇଥିଲେ। କେହି ଯୋଗୀ, କେହି ଦେଶସେବୀ, କେହି କବି, କେହି ବା ଧର୍ମଜ୍ଞ ପୁରୁଷ-କେହି ବା ବୈଜ୍ଞାନିକ ଅଥବା ଦାର୍ଶନିକ-କେହି ବା ରାଜନୀତିଜ୍ଞ। ସେମାନେ ଲୋକଙ୍କ ମନରେ ଏକ ଭଲ ଜଗତର ଭଲ ଜୀବନର ସ୍ୱପ୍ନ ସୃଷ୍ଟି କରିପାରିଥିଲେ, ପ୍ରତ୍ୟୟ ସୃଷ୍ଟି କରିପାରିଥିଲେ-ଏବଂ ସେ ଜଗତକୁ ବାସ୍ତବାୟିତ କରିବାର ଉଦ୍ୟମ ଲାଗି ପ୍ରେରଣା ମଧ୍ୟ ସୃଷ୍ଟି କରିଥିଲେ। ଲୋକେ ବିବେକାନନ୍ଦଙ୍କ ପାଇଁ ପାଗଳ ହୋଇ ଯାଇଥିଲେ। ରବୀନ୍ଦ୍ରନାଥ, ଜଗଦୀଶ ବସୁ, ଗାନ୍ଧୀ ପ୍ରଭୃତିଙ୍କ ପାଇଁ ପାଗଳ ହୋଇ ଉଠୁଥିଲେ। ଏପରି କି ଜବାହରଲାଲ, ଶାସ୍ତ୍ରୀ, ସୁବାଷ ବୋଷ, ରାଧାକ୍ରିଷ୍ଣନ, ରାଜଗୋପାଳାଚାରୀଙ୍କ କଥା ଶୁଣିବା ମାତ୍ରେ, ତାଙ୍କୁ ଦେଖିବା ମାତ୍ରେ ଉନ୍ମାଦନା ଅନୁଭବ କରୁଥିଲେ ଏବଂ ସାରା ଦେଶରେ ଏମାନଙ୍କ ଧାରାକୁ ପାରୁପର୍ଯ୍ୟନ୍ତ ଅନୁସରଣ କରୁଥିବା ସାନ ବଡ଼ ନେତାନେତ୍ରୀଙ୍କୁ ମଧ୍ୟ ଲୋକେ ସେହି ଆଦର୍ଶ ଯୋଗୁଁ ଭଲ ପାଉଥିଲେ, ସମର୍ଥନ କରୁଥିଲେ। ରାଜନୀତି କ୍ଷେତ୍ରରେ, ଦେଶସେବା କ୍ଷେତ୍ରରେ ସେହିସବୁ ସ୍ୱପ୍ନସଂଚାରକ, ଭଲ ଭାବପ୍ରଣୋଦକ ନେତା ଆଉ ନାହାନ୍ତି। ଠିକ୍ ତାର ବିପରୀତ ଲୋକେ ବର୍ତ୍ତମାନ ପରସ୍ପରର କୁତ୍ସାରଟନା କରି ନାନାଦି ଫନ୍ଦିଫିକର ଦେଖାଇ ଭୋଟଯୁଦ୍ଧରେ ଅବତୀର୍ଣ୍ଣ ହେଉଛନ୍ତି-ସିଂହାସନରେ ବସିବା ଲାଗି ଉଚ୍ଚାଭିଳାଷୀ ହୋଇଛନ୍ତି। ସେମାନଙ୍କୁ ଦେଖିବା ମାତ୍ରେ ଲୋକଙ୍କର ସ୍ୱତଃ ଘୃଣା ଓ ବିକାର ଜାତ ହେଲାଣି। ସେହିସବୁ ପୁରୁଣା ରାଜନୀତିର ଘୋଡ଼ା ବେପାରୀମାନେ

ଗୋଟାଏ ଗୋଟାଏ ଦଳକୁ ଦଶପାଡ଼ କରି ତା' ଭିତରୁ ନୂଆ ପୋଷାକଟିଏ ପିନ୍ଧି ବାହାରି ଆସୁଛନ୍ତି। ଲୋକେ କହୁଛନ୍ତି-ଛିଃ! ପଳା ପଳା! ତତେ ଆମେ ଚିହ୍ନିନୁରେ! ତୁ ଆମର ନେତା ହୋଇପାରିବୁ ନାହିଁ କି ଅଭିନେତା ବି ହୋଇପାରିବୁ ନାହିଁ। ତୁ ଗୋଟାଏ ପାଷଣ୍ଡ, ଜୁଆଚୋର, ସତକୁ ସତ ଡାକୁଟାଏ!

ସତ କଥା-ରାଜନୀତିର ବେପାରୀଟି ନେତା ନୁହେଁ; କାରଣ ସେ ଅନ୍ୟମାନଙ୍କୁ ଲକ୍ଷ୍ୟସ୍ଥଳକୁ ନେବା ପାଇଁ ଅନିଚ୍ଛୁକ ଓ ଅନୁପଯୁକ୍ତ। ସେ କେବଳ ନିଜକୁ ନେବା ପାଇଁ ଆସିଛି। ଅଭିନେତା ମଧ ନୁହେଁ-କାରଣ ରାମରାଜ୍ୟର ସ୍ୱପ୍ନ ସୃଷ୍ଟି କରିବାକୁ ସେ ନାୟକ ଭୂମିକାରେ ଓହ୍ଲାଇ ନାହିଁ କି ଖଳନାୟକର ଭୂମିକାରେ ବି ଓହ୍ଲାଇ ନାହିଁ। ସେ ନିଜେ ହିଁ ନିଜର ଲକ୍ଷ୍ୟ ଓ ନିଜେ ହିଁ ନିଜର ଉଦ୍ଦେଶ୍ୟ।

ମୁଁ ଏଇଟି ଲେଖିବାବେଳେ ମୋ ଦାଣ୍ଡଘରେ ମୋର କଲେଜ ପଢୁଆ ସାନପୁଅ ତା'ର ଏମ୍.ଏ. ପାସ କରି ଘରେ ବସିଥିବା ବଡ଼ ଭଉଣୀକୁ କହିବାର ଶୁଣାଗଲା-

''ବୁଝିଲୁ ଅପା! ଯଦି ହେମାମାଳିନୀ ପ୍ରଧାନମନ୍ତ୍ରୀ ହୁଅନ୍ତା ନା! ଦେଖନ୍ତୁ କି ଚମତ୍କାର ହୁଅନ୍ତା!''

ତା' ଭଉଣୀ କହିଲା-ନା-ନା-ଆଇ.ଏସ.ଜୋହର ପ୍ରଧାନମନ୍ତ୍ରୀ ହେଲେ ଆହୁରି ଚମତ୍କାର ହୁଅନ୍ତା!

ସେମାନଙ୍କର ମାଆ ରୋଷେଇଘରୁ ଥାଇ ପାଟି କରି କହିଲେ-ଆରେ! ସେମାନେ ତ ପ୍ରଧାନମନ୍ତ୍ରୀ ହେବେ-ଏଣେ ପୁଣି ସିନେମା କରିବେ କିଏ?

**

# ଆଗଚ୍ଛନ୍ତୁ ମହାଭାଗାଃ...

ସେଦିନ ସକାଳ ରେଡ଼ିଓରୁ ଶୁଣିବାକୁ ମିଳିଲା ଯେ, ଭାରତ ସାଧୁ ସମାଜ ତରଫରୁ ପ୍ରାୟ ପାଞ୍ଚଶମୂର୍ତ୍ତି ବିଶିଷ୍ଟ ସାଧୁ ସାରା ଭାରତ ପରିଭ୍ରମଣରେ ବାହାରିଛନ୍ତି। ଉଦ୍ଦେଶ୍ୟ-ସେମାନେ ସାରା ଦେଶର ବିଶେଷ ସ୍ଥାନମାନଙ୍କୁ ଯାଇ ସଭା, ସମିତି ଓ ସଂଘ ଆଦି ଜରିଆରେ ଲୋକମାନଙ୍କ ଭିତରେ ଆଧ୍ୟାତ୍ମିକ ଚେତନା ଓ ଭାରତୀୟ ଜାତୀୟତାବୋଧ ଜାଗ୍ରତ କରିବେ ଏବଂ ତତ୍ ସଙ୍ଗେ ସଙ୍ଗେ ଲୋକମାନଙ୍କ ସାଂପ୍ରଦାୟିକ ଭେଦଭାବ ଦୂର କରିବାରେ ଚେଷ୍ଟା କରିବେ।

ଖବରଟି ଶୁଣିବା ମାତ୍ରେ ଖୁବ୍ ଭଲ ଲାଗିଲା। ସକାଳଟି ଭାରି ସତେଜ ଓ ସମ୍ଭାବନାମୟ ବୋଧ ହେଲା। ବାୟୁମଣ୍ଡଳ ଯଥେଷ୍ଟ ଅମ୍ଳଯାନରେ ପୂର୍ଣ୍ଣ ବୋଲି ମନେ ହେଲା। ଗତ ଦୁଇବର୍ଷରୁ ଅଧିକ ହେବ, ଆମର ପ୍ରିୟ ସକାଳଗୁଡ଼ିକ ବହୁ ଅସାଧୁ ରାଜନୀତିର ଭଣ୍ଡ ବେପାରୀମାନଙ୍କ ଦୁଃସମ୍ବାଦ ଶୁଣି ଶୁଣି ବ୍ୟର୍ଥ ହୋଇଛି। ସେହିସବୁ ସଇତାନୀ ନାମଗୁଡ଼ିକ ଶୁଣିବା ମାତ୍ରେ ମନ ତିକ୍ତତାରେ ଓ ନୈରାଶ୍ୟରେ ଝାଉଁଳି ଯାଏ।

ବର୍ତ୍ତମାନ ରାଜ୍ୟସାରା ମରୁଡ଼ିର କରାଳଛାୟା। ଆକାଶରେ ସବୁ ସକାଳୁ ମେଘ ଘୋଟି ଆସୁଛି-କିନ୍ତୁ ବର୍ଷୁ ନାହିଁ। ଘଡ଼ିକେ ଆକାଶ ସଫା ହୋଇଯାଉଛି-ମାତ୍ର ନିର୍ମଳ ଦିଶୁ ନାହିଁ। ଶାରଦୀୟ ସୂର୍ଯ୍ୟ ବହୁବେଳେ ଏକ ଅମଙ୍ଗଳସୂଚକ ଗଣକୁହୁଡ଼ିରେ ଆବୃତ ହୋଇ ମଳିନ ଦିଶୁଛନ୍ତି। କିନ୍ତୁ ଭୀଷଣ ଗରମ ଓ ଗୁଳିଗୁଳିରେ ଦେହ ଓ ମନ ଉତ୍ପୀଡ଼ିତ ହୋଇ ଯାଉଛି। ଶରତଋତୁ ଆସି ପ୍ରବେଶିଲାଣି। ମାତ୍ର ସୁନୀଳ ଆକାଶରେ ଖଣ୍ଡ ଖଣ୍ଡ ଧଳା ମେଘ ସମୁଦ୍ରରେ ବୋଇତ ଭାସିଲାପରି ଭାସି ଯାଉନାହାନ୍ତି। ଗହୀରମାନଙ୍କରେ ମରୁଡ଼ିଆ ଧାନରୁଆଗୁଡ଼ିକୁ ଗୋରୁ-ଗାଈମାନେ ଚରି ଲାଗିଛନ୍ତି। ଚାଷୀମାନେ ମୁଣ୍ଡରେ ହାତ ଦେଇ ବସିଲେଣି। ବଜାରରେ ଜିନିଷପତ୍ରର ଦରଦାମ୍ ହୁ ହୁ ହୋଇ ବଢ଼ିଚାଲିଛି। ଏଣେ ପୁଣି ସବୁଦିନେ ଖବରକାଗଜରୁ ଶୁଣିବାକୁ ମିଳୁଛି ଯେ ଆମେ ଦିନ ଦିନ ଧରି ଯୋଉ ତେଲ ଓ ଘିଅ ଖାଇ ଆସିଛୁ ସେଗୁଡ଼ିକରେ ପୋଡ଼ା ମୋବିଲ ମିଶିଥିଲା। ଆମେ ଯୋଉ ପରିବାପତ୍ର ଖାଇ ଆସୁଛୁ-ତା'ଭିତର ଦେଇ ଆମ ପେଟକୁ କୀଟନାଶକ ବିଷଗୁଡ଼ିକ ଖୁବ୍ ସୂକ୍ଷ୍ମ ଭାବେ

ପ୍ରବେଶ କରି ଆମ ରକ୍ତ ଭିତରକୁ ଚାଲିଗଲାଣି। ପିଲାମାନେ କଲେଜରେ ସିଟ୍ ପାଉନାହାନ୍ତି। ପାସ୍ କରି ଟୋକାମାନେ ବେକାର ହୋଇ ବୁଲୁଛନ୍ତି। ପାଠ ପଢ଼ିସାରି ଝିଅମାନେ ଯୌତୁକ ଅଭାବରୁ ବାହା ହୋଇପାରୁନାହାଁନ୍ତି। ଗାଁରେ ଦଳାଦଳି ବଢ଼ି ଚାଲିଛି। ହରିଜନ ଓ ସବର୍ଣ୍ଣ ସଂଘର୍ଷରେ ଗାଁମାନଙ୍କରୁ ଶାନ୍ତି ସ୍ୱସ୍ତି ଚାଲିଗଲାଣି। କାରଖାନାମାନଙ୍କରେ ପ୍ରତିଦିନ ଧର୍ମଘଟ, ଉତ୍ପାଦନ କମି କମି ଯାଉଛି। ଦେଶରେ ଘୋର ମୁଦ୍ରାସ୍ଫିତି ଦେଖାଦେଲାଣି। ଚୋର-ଡ଼କାଏତ ଓ ଅସାମାଜିକ ଲୋକଙ୍କ ଉତ୍ପାତରେ ଧନଜୀବନ ଓ ଇଜ୍ଜତ ରଖିବା ମହା ଦାୟ ହେଲାଣି। ସରକାରମାନ ଘଡ଼ିକେ ଗଢ଼ା ହେଉଛି-ଘଡ଼ିକେ ଭାଙ୍ଗୁଛି। ଅହଂସର୍ବସ୍ୱ ମିଥ୍ୟାଚାରୀ ପ୍ରବଞ୍ଚକ ବିଶ୍ୱାସଘାତକ କ୍ଷମତାଲିପ୍ସୁ ନେତାମାନଙ୍କ ହଠକାରିତା ଯୋଗୁଁ ରାଜନୀତିକ ଦଳଗୁଡ଼ିକ ବାୟୁ ମୁଖରେ ଶିମିଳିତୂଳା ଭଳି ଛିନ୍ନଛତ୍ର ହୋଇଗଲେଣି। କେହି ଆଉ ନିର୍ଭରଯୋଗ୍ୟ ମନେ ହେଉ ନାହାନ୍ତି-ବିଶ୍ୱାସଯୋଗ୍ୟ ହୋଇ ରହିନାହାନ୍ତି। ସମସ୍ତେ ସମସ୍ତଙ୍କୁ ଲଙ୍ଗଳାକରି ବିଚ୍ଚକାର ଉପରେ ଠିଆ କରି ଦେଲେଣି। ଏବଂ ସମସ୍ତଙ୍କର ଗୁପ୍ତ ମତଲବମାନ ଓ ଅପକର୍ମମାନ ଦାଣ୍ଡରେ ପଡ଼ି ହାଟରେ ଗଡ଼ିଲାଣି। ନେତାମାନଙ୍କର ଆଉ ସ୍ୱକୀୟ ଇଜ୍ଜତମହତ ନାହିଁ। ସେମାନେ ପରସ୍ପରର ଇଜ୍ଜତ ମହତକୁ ଗ୍ରାସ କରି ସାରିଲେଣି।

ଏହିଭଳି ଲକ୍ଷେ ଅଶାନ୍ତିର କାରଣ ଆମକୁ ଘେରି ରହିଛି। ରାତିରେ ଭଲ ନିଦ ହେଉନାହିଁ ଏବଂ ସକାଳୁ ଉଠି ରେଡ଼ିଓ ଖୋଲିବା ମାତ୍ରେ ସେହିସବୁ ବିରକ୍ତିକର ନାମଗୁଡ଼ିକ ଏବଂ ସେମାନଙ୍କର ଅପକର୍ମ ଗୁଡ଼ିକର ବିବରଣୀ ଯେମିତି ଆମ କାନରେ ପଡୁଛି, ମନ ଏକବାରେ ବିଷେଇ ଯାଉଛି। ତଣ୍ଟି ପାଖରୁ ପିତା ଉଠୁଛି। ବାନ୍ତି ଆଉ ଓକାଳ ଦେଖାଉଛି। ଇସ୍। ସେଇସବୁ ଛଦ୍ମବେଶୀ କପଟଚାରୀ ରାଜନୀତିର ଘୋଡ଼ାବେପାରୀଗୁଡ଼ାକ। ସେମାନଙ୍କର ଏକମାତ୍ର ଲକ୍ଷ୍ୟ କେବଳ ଯେକୌଣସି ଉପାୟରେ କ୍ଷମତାକୁ ଜାବୁଡ଼ି ଧରିବା ଓ ତା'ବଳରେ ଅର୍ଥ ସମ୍ପଦ ବଢ଼େଇ ଚାଲିବା। ସେମାନଙ୍କ ଆଖିକୁ ଆଉ କିଛି ଦିଶୁ ନାହିଁ। ଦେଶ ନୁହେଁ-ଜାତି ନୁହେଁ-ଭାଷା ନୁହେଁ-ଧର୍ମ ନୁହେଁ କି ନୀତି ନୁହେଁ; କ୍ଷମତା ପାଇଁ ସେମାନେ ସବୁକିଛି ବିସର୍ଜନ କରିଦେଇ ସାରିଲେଣି। ଚଣ୍ଡାଳମାନଙ୍କର ସଂପୂର୍ଣ୍ଣ ଲକ୍ଷ୍ୟ ପୁଣି ହେଲା-କ୍ଷମତା ସିଢ଼ିର ସର୍ବୋଚ୍ଚ ସୋପାନ ଉପରେ ଯାଇ ଠିଆ ହେବା।

ସକାଳେ ସଞ୍ଜେ ସେହି ପାଜିମାନଙ୍କ ଦୁର୍ନାମ ଓ ଅପକୀର୍ତ୍ତିମାନ ଶୁଣି ଶୁଣି ଦେହ-ପ୍ରାଣ-ମନ କ୍ରମେ ଅବଶ ବି ହୋଇ ଆସୁଥିଲା। ଆଖି ଆଗରେ ନୈରାଶ୍ୟର ଅନ୍ଧକାର ଘୋଟି ଆସୁଥିଲା। ଓଃ। କିଏ ଆମ୍ଭମାନଙ୍କୁ ଏହିସବୁ ସୈତାନମାନଙ୍କ କବଳରୁ ରକ୍ଷାକରିବ? ଏହି ଧର୍ମକ୍ଷେତ୍ର ପୁରାଣ ଭୂଭାରତରେ କଣ ଏଇମାନଙ୍କ ଛଡ଼ା ଆଉ କେହି ଦେବାନାଂ ପ୍ରିୟଦର୍ଶୀ ବ୍ୟକ୍ତି ଆମକୁ ପାଳନ କରିବାକୁ ନାହାନ୍ତି?

କିନ୍ତୁ ସେଦିନ ସକାଳୁ ପାଞ୍ଚଶତ ମୂର୍ତ୍ତି ସାଧୁ ସନ୍ନ୍ୟାସୀ ସାରା ଭାରତ ଭ୍ରମଣ କରି ନିରୀହ ଦେଶବାସୀଙ୍କ ମନରେ ଆଧ୍ୟାତ୍ମିକତା, ଜାତୀୟତା ଓ ସାଂପ୍ରଦାୟିକ ସଦ୍‌ଭାବ ସଞ୍ଚାର କରିବେ ବୋଲି ଶୁଣିବା ମାତ୍ରେ, ଲାଗିଲା, ସତେ କି ଗରମ ମୁଣ୍ଡ ଉପରେ କିଏ କଳସୀଏ ଥଣ୍ଡା ପାଣି ଢାଳିଦେଲା । ଶୁଖିଲା ଜିଭ ଉପରେ ରଖିଦେଲା ମୁଣ୍ଡାଏ ବରଫ ।

ସାଧୁ ! ଆହା ! ପ୍ରତି ଭାରତୀୟର ଧାର୍ମିକ ସଂସ୍କାରବାହିତ ହୃଦୟରେ ଏହି ସାଧୁ ଶବ୍ଦଟି କେଡ଼େ ପବିତ୍ର, ଆନନ୍ଦ, ଆଉ ଆଶାଭରସା ଆଶ୍ୱାସନାର ସ୍ପନ୍ଦନ ସୃଷ୍ଟି ନ କରେ ! ଆମେ ଜାଣିଛୁ ଏମାନଙ୍କୁ ଦର୍ଶନ କଲା ମାତ୍ରେ ମଣିଷଖିଆ ମହାବଳ ବାଘ ବିଲେଇଟିଏ ଭଳି ପୋଷାମାନିଯାଏ । ଆକାଶର ଚଢ଼େଇମାନେ ନିର୍ଭୟରେ ଏମାନଙ୍କ କାନ୍ଧ ଉପରେ ଆସି ବସିପଡ଼ନ୍ତି । ଝାଉଁଳାଗଛମାନେ ସେମାନଙ୍କର ସ୍ପର୍ଶ ପାଇ ସତେଜ ହୋଇ ଉଠନ୍ତି । ନୃଶଂସ ନରହନ୍ତା ଡକାୟତଙ୍କ ହାତରୁ ତୀକ୍ଷ୍ଣ ଛୁରିକା ଖସି ପଡ଼େ । ବହନ୍ତା ନଈ ମଝିରୁ ଦି'ଭାଗ ହୋଇଯାଇ ସ୍ନେହରେ ସେମାନଙ୍କ ପାଇଁ ବାଟ ଛାଡ଼ିଦିଏ । ଜନପଦମାନଙ୍କରୁ ମହାମାରୀର ଅପଶକ୍ତିମାନେ ଅପସରିଯାଆନ୍ତି । ଉତ୍ପାତକାରୀ ଭୂତପ୍ରେତମାନେ ଆସ୍ଥାନ ଛାଡ଼ି ପଳାୟନ କରନ୍ତି । ଏମାନଙ୍କୁ ଦେଖିଲା ମାତ୍ରେ ଈଶ୍ୱରକାମୀ ଭକ୍ତଗଣ ଆନନ୍ଦ-ବିହ୍ୱଳତାରେ ଉଚ୍ଚସ୍ୱରରେ ହରିଧ୍ୱନି କରନ୍ତି ଏବଂ ସେହି ଦେବ ମଣିଷମାନେ ଯେଉଁ ପଥରେ ଗମନ କରନ୍ତି ସେ ପଥଧୂଳି ପବିତ୍ର ହୋଇଯାଏ । ବିଭୂତିରେ ପରିଣତ ହୋଇଯାଏ । ସେହି ଦିବ୍ୟ ପଦସ୍ପର୍ଶ ପ୍ରାପ୍ତ ପୂତଧୂଳିରେ ଗଡ଼ାଗଡ଼ି କରି ରୋଗୀମାନେ ନିରାମୟ ହୁଅନ୍ତି । ଆର୍ତ୍ତମାନଙ୍କର ବିପଦକାଳ ବି ନଷ୍ଟ ହୋଇଯାଏ । ସଂସାର ପୀଡ଼ାଗ୍ରସ୍ତ ମୁମୁକ୍ଷୁ ବ୍ୟକ୍ତିମାନେ ସେମାନଙ୍କର ସଙ୍ଗଲାଭ କରି ସର୍ବକଳୁଷମୁକ୍ତ ହୋଇ ମୋକ୍ଷଲାଭ କରନ୍ତି ।

ସକାଳ ରେଡ଼ିଓରୁ ପାଞ୍ଚଶତ ସାଧୁଙ୍କର ସାରା ଦେଶ ଭ୍ରମଣ ସମ୍ବାଦ ଶୁଣି ମନ ଏହିପରି ଆନନ୍ଦ ଉଲ୍ଲାସରେ ଭରିଗଲା । ଆମେ ଅବଶ୍ୟ ଜାଣି ନାହୁଁ-ସେହି ଶଂସିତ ସାଧୁମାନେ କୋଉ ସ୍ତରର ଅଧ୍ୟାତ୍ମସାଧକ ? ସେମାନେ ବୈଷ୍ଣବ, ଶାକ୍ତ, ଶୈବ ନା ଗାଣପତ୍ୟ ? ସେମାନେ ଯୋଗୀ, ମୌନୀ କିମ୍ବା ତାନ୍ତ୍ରିକ ? କିମ୍ବା ସେମାନେ ନାଗାନ୍ତୀ, ଯୋଗାନ୍ତୀ ଅଥବା ବେଦାନ୍ତୀ ? ସେମାନେ ସନ୍ଥ କି ଦଶନାମୀ ? ନାଥ କି ଅଲେଖ ? ଆଶ୍ରମୀ କି ଅନିକେତ ? ଦଣ୍ଡୀ ନା ଅବଧୂତ ? ବୈଧୀ ନା ଅନାଚାରୀ ? ସେମାନଙ୍କ ଭିତରେ ଅଛନ୍ତି କି ସୁଫି, ମରମିଆ କିମ୍ବା ବାଉଲ ? ଅଛନ୍ତି କି ପୀର ଫକୀର ବା ଦରବେଶ ? ଅଛନ୍ତି କି ସେଣ୍ଟ, ସେକ୍ ବା ଆଦିଷ୍ଟ ପୁରୁଷ ? ସେ ସବୁ ତଥ୍ୟ ହୁଏତ ଏ ଯାବତ ଆମକୁ ଜ୍ଞାତବ୍ୟ ନାହିଁ । କିନ୍ତୁ ସେ ଯା' ହେଉ-ସାଧୁମାନେ ବାହାରିଛନ୍ତି । ସାଧୁମାନେ ଆସୁଛନ୍ତି-ଦେଶସାରା ସେମାନେ ବୁଲିବେ

ପ୍ରେମଭକ୍ତି ବିଶ୍ୱାସ, ମୈତ୍ରୀ, ସୌହାର୍ଦ୍ଦ୍ୟ ଓ ସହଯୋଗର ବାଣୀ ପ୍ରଚାର କରିବେ। ଆଶା ଓ ଆଶ୍ୱାସନାର ବାଣୀ ଶୁଣାଇବେ। ସେମାନଙ୍କର ତପଃଶୁଦ୍ଧ ଶରୀରରୁ ଘୃତ-କର୍ପୂର ଚନ୍ଦନର ସୁବାସ ସହ ଯଜ୍ଞାଦଗ୍ଧ ନାରିକେଳର ପୂତ ବିଭୂତି ନିଃସୃତ ଅପୂର୍ବ ସୌରଭ ଆଘ୍ରାଣ କରି ଆମ ଭଳି ତାପଗ୍ରସ୍ତ ଲୋକଙ୍କ ଆତ୍ମା-ଶୀତଳ ହେବ। ଆସନ୍ତୁ ସେମାନେ ସହସ୍ର ସଂଖ୍ୟାରେ। ଆଗଛନ୍ତୁ ମହାଭାଗ! ବାହାରି ଆସନ୍ତୁ ଆପଣମାନେ ହିମାଳୟର ଗୁମ୍ଫା-ମାନଙ୍କରୁ-ବିନ୍ଧ୍ୟାଦ୍ରିର କନ୍ଦରାମାନଙ୍କରୁ। ଆସନ୍ତୁ ଆପଣ ମହାତ୍ମାମାନେ ସହସ୍ର ସହସ୍ର ସଂଖ୍ୟାରେ ପଣ୍ଡିଚେରୀରୁ ଅବା ପୁଟପର୍ତ୍ତିରୁ-ବେଲୁଡ଼ରୁ ବା ହୃଷୀକେଶରୁ-ସେବାଗ୍ରାମରୁ ବା ପୌନାରରୁ, କାଶୀରୁ ବା ବଦ୍ରୀନାଥରୁ, ମଥୁରା ବା ବୃନ୍ଦାବନରୁ, ଶ୍ରୀକ୍ଷେତ୍ରରୁ ବା ରାମେଶ୍ୱରରୁ, ଶୃଙ୍ଗେରୀରୁ ଅଥବା କାମାକ୍ଷାରୁ।

ହଜାର ହଜାର ମୂର୍ତ୍ତି ଶୁଭକାମୀ ଶୁଦ୍ଧଚିତ୍ତ, ଜ୍ଞାନ ପ୍ରେମ ଭକ୍ତି ସେବାପରାୟଣ, ଅଭୟହସ୍ତ, କୃପାକରୁଣା-ବିଗଳିତ ପ୍ରାଣ, ବୈରାଗ୍ୟଦୀପ୍ତ ସାଧୁସନ୍ଥଙ୍କର ପୂତପଦସଞ୍ଚାରରେ ବିବେକାନନ୍ଦ, ଅରବିନ୍ଦ, ଗାନ୍ଧୀଙ୍କର ଏହି ଅବଶ ଭୂମି ନବଜୀବନ ଲାଭ କରୁ। ସାଧୁମାନଙ୍କ ବାହିତ ଭାରତବର୍ଷର ପବିତ୍ରନଦୀମାନଙ୍କର ପୂତବାରିରେ ଅଭିସିଞ୍ଚିତ ହେଉ ପ୍ରତି ଭାରତୀୟର ତାପଗ୍ରସ୍ତ କ୍ଲାନ୍ତ ମସ୍ତକ। ତା'ଫଳରେ ସବୁରି ମସ୍ତକ ଶାନ୍ତ ହେଉ, ସମାହିତ ହେଉ, ପବିତ୍ରୀକୃତ ହେଉ, କଲ୍ୟାଣୀୟ ହେଉ।

ସେମାନଙ୍କର ପ୍ରଦୀପ୍ତ ମହିମାରେ ଏହି ସବୁ କ୍ଷମତାଲାଳସୀ ରାଜନୀତିକ ଭୂତମାନେ ଆସ୍ଥାନ ଛାଡ଼ି ପଳାୟନ କରନ୍ତୁ। ସେମାନଙ୍କର ସେହି ତାପଦାୟକ ଅଶ୍ଳୀଳ ନାମଗୁଡ଼ିକ ଆପଣା ଛାଏଁ ଆମ ସ୍ମୃତିପଟରୁ ଲିଭିଯାଉ।

ସାଧୁମାନେ ଭାରତବର୍ଷକୁ ଅଧିକାର କରନ୍ତୁ। ଭାରତର ପ୍ରଜାବୃନ୍ଦ! ଯଥାର୍ଥ ସାଧୁମାନଙ୍କର ଆଶ୍ରୟ ନିଅ। ଯଥାର୍ଥ ସାଧୁମାନଙ୍କ ହାତରେ ଇ ସମସ୍ତ କ୍ଷମତା ଅର୍ପଣ କର। ଅସାଧୁ ରାଜନୀତିକ ଭୂତମାନଙ୍କୁ ଗୋଇଠା ମାରି ହଟାଅ।

ଏହି ନିରୀହ ସନାତନ ଧାର୍ମିକ ଦେଶ ରକ୍ଷାପାଉ। ଜଗତ ଉଦ୍ଧାର ହେଉ।

✻✻

# ଟହଟହ ହାସିନୀ ଜୟ କରାଳୀ !

କାଳୀପୂଜା ସରିବାର ।ରିଦିନ ପରେ। ଆମ ସହରରେ କାଳୀମେଢ଼ ସବୁ ମାଣିରେ ପଡ଼ିସାରିଥାଏ। ଦୁର୍ଗାଙ୍କ ଭଳି କାଳୀ ବେଶି ଦିନ ରହନ୍ତି ନାହିଁ। ଚଞ୍ଚଳ ବିସର୍ଜନ ହୋଇଯାଆନ୍ତି।

ସହରଠାରୁ ପଚାଶ କିଲୋମିଟର ଦୂର ମୋ ଗାଁକୁ ବାହାରିଲି ମଟର ସାଇକେଲ ଯୋଗେ। ପନ୍ଦର କିଲୋମିଟର ପରେ ରାସ୍ତାକଡ଼ରେ ଦେଖିଲି କାଳୀମେଢ଼ଟିଏ ରହିଛି ଓ ଉଚ୍ଚୈଶ୍ରବା ମାଇକ୍‌ଟିଏ ଓଡ଼ିଆ ସିନେମାଗୀତ ରଡୁଛି। ମୋ ଆଗରେ ରାସ୍ତା ମଝିରେ କାଠଗଡ଼ଟିଏ ପଡ଼ିଥିବାର ଦେଖି ମୁଁ ଅଟକିଲି ସଙ୍ଗେ ସଙ୍ଗେ କେତେକ ଯୁବକ ମତେ ଘେରିଗଲେ। ରସିଦ୍‌ଖାତା ଓ ଟିଣ ବାକ୍‌ସଟିଏ ଦେଖାଇ କହିଲେ-କିଛି ଦିଅନ୍ତୁ ଆଜ୍ଞା ! ମୁଁ ସୁଉକିଟିଏ ବଢ଼େଇ ଦେବାରୁ ଜଣେ କହିଲା-ଆମର ନିୟମ ହେଲା ବସ୍ ଲାଗି ତିନିଟଙ୍କା-କାର୍ ଓ ଜିପ୍ ଲାଗି ଦୁଇଟଙ୍କା-ଟେମ୍ପୋ ଲାଗି ଦେଢ଼ଟଙ୍କା ଓ ମଟରସାଇକେଲ, ସ୍କୁଟର ଲାଗି ଏକଟଙ୍କା। ତା'ଠାରୁ କମ୍ ଆମେ ନେଉନାହୁଁ। ଅଗତ୍ୟା ଟଙ୍କାଟିଏ ଦେଇ ସେଠୁ ଅଗ୍ରସର ହେଲି। ଆଉ ସାତ ଆଠ କିଲୋମିଟର ପରେ ପୁଣି ଗୋଟିଏ କାଳୀମେଢ଼-ତା' ପରେ କିଛି ବାଟ ଗଲାପରେ ଗୋଟିଏ କାର୍ତ୍ତିକ ମେଢ଼-ଏମିତି ଆଉ ପାଞ୍ଚଟି ଜାଗାରେ ମତେ ଅବରୋଧ କରାଗଲା ଓ ମୁଁ କୋଉଠି-ସୁଉକିଟିଏ, କୋଉଠି ଅଧୂଲିଟିଏ ଦେଇ ଶେଷରେ ନିଜ ଗ୍ରାମରେ ପହଞ୍ଚିଲି। ଗାଁରେ ଦୁଇଦିନ ରହି ପୁଣି ସେଇ ରାସ୍ତାରେ ସହରକୁ ଫେରିଲି। ଦୁଇଦିନ ପରେ ବି ରାସ୍ତା କଡ଼ରେ କାଳୀ ଓ କାର୍ତ୍ତିକମାନେ ରହିଥାନ୍ତି। ପ୍ରଥମରୁ ମତେ ଗୋଟିଏ କାର୍ତ୍ତିକମେଢ଼ ପାଖେ କାର୍ତ୍ତିକେୟ ଯୁବମା ନ ଘେରିଗଲେ। ସୁଉକିଟିଏ ଦେଇ ପଚାରିଲି-କାର୍ତ୍ତିକ ମହୋଦୟ ଆଉ କେତେଦିନ ଏଠି ରହିବେ ?

ସମସ୍ବରରେ ଉତ୍ତର ମିଳିଲା ସାରା କାର୍ତ୍ତିକ ମାସ। ସେଠୁ କିଛି ବାଟ ପରେ ପୁଣି କାଳୀ ମେଢ଼ ପାଖେ ମତେ ଅଟକାଗଲା। ସୁଉକିଟିଏ ଦେଇ ପୁଣି କିଛି ବାଟ ଗଲା ପରେ ଏକ କାଳୀମେଢ଼। ଜିଭ ଲହ ଲହ କରି ବିରାଟ ବୀଭତ୍ସ ଏକ ଉଲଗ୍ନ କଳା କଟ କଟ ନାରୀମୂର୍ତ୍ତି। ଆଠ ଦିନ ପୂର୍ବର ଫୁଲମାଳଗୁଡ଼ିକ ଶୁଖି ଗଲାଣି। ଦିନର ଆଲୁଅରେ ସେ ମୂର୍ତ୍ତି ଅତି କୁତ୍ସିତ, ବିକଟ ଓ ନିରାଶ ଦିଶୁଥାଏ।

କାଳୀଭକ୍ତ ଯୁବକ ମାନେ ମୋ ଚାରିପଟେ ଟିଣ ଡ଼ିବା ଝଣ ଝଣ କଲେ। ତିରିଶଟି ପଇସା ଦେଇ ପୁଚ୍ଛା କଲି-ଏ କାଳୀ ଆଉ ଏଠି କେତେଦିନ ରହିବେ ଭକ୍ତବୃନ୍ଦ? ଉତ୍ତର ମିଳିଲା-ଯେତେ ଦିନ ତାର ଇଚ୍ଛା ସେ ରହିବ। ଯୋଉଦିନ ସେ ପାଣିକି ଯିବେ ବୋଲି ସପନାଇବେ ସେ ଦିନ ପାଣିକି ଯିବେ। ମୁଁ କହିଲି– କାହାକୁ ସପନାଇବେ? ଜଣେ କହିଲା-ଆମ ଗାଁର ମହେନ୍ଦ୍ର ତ୍ରିପାଠୀ କି। ସେଇ ଆଗ ସ୍ୱପ୍ନ ଦେଖିବାରୁ ଆମେ ଏଠି କାଳୀ ପୂଜା ଆରମ୍ଭ କଲୁ। ମୁଁ କହିଲି-ଆଠ ଦଶ ଦିନ ବିତିଗଲା-ସବୁଆଡ଼େ ସବୁ କାଳୀମାନେ ପାଣିକି ଗଲେଣି, ମହେନ୍ଦ୍ର ତ୍ରିପାଠୀକି ଏ କାଳୀ ସପନାଉ ନାହାନ୍ତି କାହିଁକି? ଜଣେ ଯୁବକ କହିଲା-କେମିତି ଭଲା ସପନାଇବେ? ମହେନ୍ଦ୍ର ତ୍ରିପାଠୀକି ସିନା ନିଦ ହେଲେ ସେ ସ୍ୱପ୍ନ ଦେଖିବ? ତିନି ବର୍ଷ ଧରି ସେ ଏମ.ଏ .ପାସ କରି ଘରେ ବସିଛି। ବହୁତ ଇଣ୍ଟରଭିଉ ଦେଲାଣି। କୋଉଠି କିଛି ତ ହେଉନି। ସେଇ ଚିନ୍ତାରେ ତାର ଆଖିକୁ ଦିନରାତି ନିଦ ନାହିଁ। ସ୍ୱପ୍ନ ଦେଖିବ କେମିତି? ଅଗତ୍ୟା ଆଉ ଅଧିକ ବାକ୍ୟବିନିମୟ ନ କରି ଆଗକୁ ଚାଲିଲି।

ସାତ ଆଠ କିଲୋମିଟର ପରେ ପୁଣି କେତେକ ଯୁବକ ମତେ ଅଟକାଇଲେ। ସେଠି ମେଢ଼ରେ କାର୍ତ୍ତିକ ଗୋଟିଏ ମୟୂର ଉପରେ ବସି ହିନ୍ଦୀ ସିନେମା ଗୀତ ଶୁଣୁଥାନ୍ତି। ମୁଁ ପଚାରିଲି-ଆରେ ବତ୍ସମାନେ! ତୁମେମାନେ ହଠାତ୍ ଏଇ କାର୍ତ୍ତିକ ଠାକୁରଟିର ପିଛା ପଡ଼ିଲ କାହିଁକି? ସେ ତୁମ୍ଭମାନଙ୍କର କି ମନୋବାଞ୍ଛା ପୂରଣ କରିବେ? ଯୁବକଟିଏ କହିଲା-କାହିଁକି କଣ? କାର୍ତ୍ତିକ ମାସରେ ମନ ହେଲା କାର୍ତ୍ତିକ କଲୁ। ଭାଦ୍ରବ ମାସରେ ଗଣେଶ କରିଥିଲୁ। ଆଶ୍ୱିନରେ କଲୁ ଦୁର୍ଗା। ସେଇଠୁ ବଲୁ ଲକ୍ଷ୍ମୀ। ତା' ପରେ ତ କାର୍ତ୍ତିକ। ମୁଁ ପଚାରିଲି ଏଇ କାର୍ତ୍ତିକ କିଏ କହିଲ? ଜଣେ କହିଲା-ଗଣେଶର ଭାଇ। ମୁଁ ପଚାରିଲି-ସେ ଦୁହେଁ କାହା ପୁଅ? ଉତ୍ତର ମିଳିଲା-ଦୁର୍ଗାଙ୍କର। ମୁଁ ପୁଣି ପଚାରିଲି-ସେମାନଙ୍କର ବାପା କିଏ? ପ୍ରଶ୍ନ ଶୁଣି ସମସ୍ତେ ପରସ୍ପରର ମୁହଁକୁ ଚାହିଁ ଉତ୍ତର ଖୋଜିଲେ ଓ ତାହା ନ ପାଇ ହସିଲେ। ମୁଁ କହିଲି -ହସୁଚ କଣ? କୁହ, ବାପା କିଏ? ଜଣେ କହିଲା-ମାଆ କଥା କହିଦେଲୁ-କିନ୍ତୁ ବାପା କିଏ ହୋଇଥିବ, ଆମେ କେମିତି ଜାଣିବା? ମାତ୍ର ହଠାତ୍ ଜଣେ ଯୁବକ କହିଦେଲା-ବାପାତ ଭଗବାନ, ଆଉ କିଏ? ମୁଁ ପଚାରିଲି ଭଗବାନ କିଏ? ଉତ୍ତର ମିଳିଲା-ଭଗବାନ କିଏ, ସେ କଥା କିଏ କହିପାରିବ? ଭଗବାନ ସବୁଠି ଥାନ୍ତି-ସବୁଠିକି ଯାନ୍ତି। ମୁଁ କହିଲି-ଏବଂ ଗଣେଶ କାର୍ତ୍ତିକମାନଙ୍କର ବାପା ହେଉଥାନ୍ତି, ନା' କଣ ବତ୍ସଗଣ? ସେମାନେ ସମସ୍ତେ ହସିଲେ। କିନ୍ତୁ ହଠାତ୍ ବଜାର ଆଡୁ ଅଧାବୟସର ଗାଉଁଲି ଲୋକଟିଏ ଆସି ପହଞ୍ଚିଲା। ସେ କହିଲା-ମହାଦେବଙ୍କ ପୁଅ ପରା ଗଣେଶ-କାର୍ତ୍ତିକ? ସେଉଠୁ ଯୁବକଟିଏ କହିଲା-ମହାଦେବଙ୍କ ସ୍ତ୍ରୀ ପରା ପାର୍ବତୀ?

**ଗଣେଶ କାର୍ତ୍ତିକ ପରା ଦୁର୍ଗାଙ୍କଠାରୁ ଜନ୍ମ ? ମହାଦେବ କେମିତି ବାପା ହେବେ ? ପୁଣି ସମସ୍ତେ ହସିଲେ । ସେମାନଙ୍କ ସଙ୍ଗେ ଆଉ କିଛି ସମୟ କଥାବାର୍ତ୍ତା ହେବାରୁ ବୁଝିଲି ଯେ ସମବେତ ଆଠ ଜଣ ଯୁବକଙ୍କ ଭିତରୁ ଦୁଇ ଜଣ ଏମ୍.ଏ., ତିନିଜଣ ବି.ଏ., ଜଣେ ବି.ଏସ୍.ସି, ଆଉ ଦୁଇଜଣ ମାଟ୍ରିକ୍ ଫେଲ । ଆଉ ୫,୬ ଜଣ ଯୁବକ ବି ଥିଲେ । ସେମାନେ କଣ ପଢ଼ିଛନ୍ତି ଜାଣିନି । ବିଦାୟ ନେବା ପୂର୍ବରୁ ମୁଁ ପଚାରିଲି ଆରେ ବାବୁମାନେ ! ଏତେ ପାଠ ପଢ଼ି ଗାଁରେ ବସିଛ-ଅନ୍ୟ କିଛି କାମ ନ କରି ଏ କାର୍ତ୍ତିକ,କାଳୀ ପ୍ରଭୃତି ପୂଜା କରି କାହିଁକି ସମୟ ନଷ୍ଟ କରୁଛ ?** ସେମାନେ ସମସ୍ୱରରେ ଚିତ୍କାର କରି କହିଲେ-ଆପଣଙ୍କ ପାଖେ ଯଦି କାମ ଅଛି ଦିଅନ୍ତୁ-କରିବୁ । ତା'ନ ହେଲେ କାମ ନାମ ନ ଉଠାଇ ସୁଉକିଟିଏ ଦେଇ ଆପଣ ନିଜ କାମରେ ଚାଲି ଯାନ୍ତୁ । ଆପଣଙ୍କର ବହୁମୂଲ୍ୟ ସମୟ ନଷ୍ଟ କରନ୍ତୁ ନାହିଁ । ଆମ ପାଖରେ ସମୟର କିଛି ମୂଲ୍ୟ ନାହିଁ ଆଜ୍ଞା ! ଆମେ ସବୁ ଅସମୟରେ ଜନ୍ମ ହୋଇଛୁ-ଓ ସେଇ ଅସମୟରେ କୌଣସିମତେ, ବଞ୍ଚୁ ବଞ୍ଚୁ, ସେହି ଅସମୟରେ ହିଁ ଦିନେ ମରିଯିବୁ ।

ମୋ ପୁଅମାନଙ୍କ ବୟସର ଏହି ଯୁବକମାନଙ୍କ ମୁହଁରୁ ଏତେକ ଶୁଣିବା ମାତ୍ରେ ମତେ ବଡ଼ ନିରାଶ ଲାଗିଲା, କରୁଣା ଲାଗିଲା ଓ ଛଟ ଛଟ ଲାଗିଲା । ସୁଉକିଟିଏ ଦେଇ ମୁଁ ମଟର ସାଇକେଲରେ ଷ୍ଟାର୍ଟ ଦେଲି ।

ତା'ପରେ ପଡ଼ିଲା ଶେଷ ଘାଟି । ସର୍ବଶେଷ କାଳୀ ଘାଟ । ରାସ୍ତାଉପରେ ଲମ୍ବା କାଠଟି ଥୁଆ ହୋଇଥିଲା । ମୁଁ ସେଠି ଅଟକିବା ମାତ୍ରେ ମୋତେ କାଳୀଭକ୍ତ ଯୁବକମାନେ ଘେରିଗଲେ । ମୁଁ ପୂର୍ବରୁ ବିଷର୍ଣ୍ଣ, ବିରକ୍ତ ଓ କ୍ରୁଦ୍ଧ ହୋଇଥିଲି । ମୋର କଜିଆ କରିବାକୁ ଇଛା ହେଉଥିଲା । ମାଡ଼ ମରାମରି ହେବାକୁ ଇଛା ହେଉଥିଲା । ମୁଁ ସ୍ଥିର କଲି ଏମାନଙ୍କୁ ପଇସାଟିଏ ବି ଦେବି ନାହିଁ ଓ ଏମାନଙ୍କ ସଙ୍ଗେ ଫଉଜଦାରୀ କରି ଏମାନଙ୍କ ହାତରେ ଏଇ ବୀଭତ୍ସଦର୍ଶନା କାଳୀ ପାଖରେ ବଳି ପଡ଼ି ଶୀଘ୍ର ଏଠୁ ସିଧାସଳଖ ସ୍ୱର୍ଗକୁ ଚାଲିଯିବି ।

ଯୁବକମାନେ ମତେ ଗୋଟିଏ ପେଟି କଂଟ୍ରାକ୍ଟର ବା ବଡ଼ କଂଟ୍ରାକ୍ଟରଙ୍କ ଜଣେ ବୋକଚାବୁହା ବୋଲି ଧରି ନେଇଥିଲେ । ଜଣେ କହିଲା-ଆଜ୍ଞା, ଦିଅନ୍ତୁ । ମୁଁ କ୍ରୁଦ୍ଧ ଗଳାରେ କହିଲି-ଦେବି ନାହିଁ । କିଛି ଦେବି ନାହିଁ ।

ସେଇଠୁ ତିନିଚାରିଟି ଯୁବକ ମୋ ପାଖକୁ ଲାଗିଆସି କହିଲେ-ନ ଦେବେତ ନ ଦିଅନ୍ତୁ-କିନ୍ତୁ କାହିଁକି ଦେବେ ନାହିଁ? ଆପଣ ଏତେ ନେଲେଣି-ଏବେ ଦିଅନ୍ତୁ । ଦେବେ ନାହିଁ କାହିଁକି ? ମୁଁ କହିଲି-ମୁଁ ଏ କାଳୀ ଫାଳୀ ମାନେ ନାହିଁ । ଯୁବାଟିଏ ଧମକ ଦେଇ କହିଲା-ଭଦ୍ର ଭାବେ କଥା କହନ୍ତୁ-କାଳୀତ କାଳୀ, ଫାଳୀ ଫେର

କଣ କହିଲି-ଫାଳୀ କଣ ମୁଁ ଜାଣେ-ମାତ୍ର ତୁମ୍ଭେମାନେ ଏଠି କାଳୀକୁ ବିସର୍ଜନ ଦେଇସାରି, ସେ ମୂର୍ତ୍ତିଟିକୁ ରଖିଛ-ଆଉ ଯାତ୍ରୀମାନଙ୍କ ଉପରେ ଜୁଲମ କରି ପଇସା କମାଉଛ-ଏଇଟା କୋଉ ଭଦ୍ରାମି? ସମବେତ ଯୁବମଣ୍ଡଳି ଏକସ୍ୱରରେ ଚିତ୍କାର କଲେ-ଆମେ ଜୁଲମ କରୁଛୁ? ହେ ଭଗବାନ! ହେଟି ଦେଖନ୍ତୁ-ଆସି ବୁଢ଼ା ହେଲେଣି -ଏଡ଼େ ମିଛ କୁହନ୍ତୁ ନାହିଁ-ଜିଭ ଛିଡ଼ିପଡ଼ିବ। ଏହି ସମୟରେ ସେଠି ଲୋକଗହଳି ହୋଇଗଲା। ସେହି ଗହଳି ଭିତରୁ ଦାଢ଼ିଆ; ଝାମ୍ପୁରିବାଳିଆ, ସିନ୍ଦୂରକଲିଆ ଅଧାବୟସୀ ବାବାଜୀଟିଏ ବାହାରି ଆସି ମୋ ପାଖେ ଠିଆହେଲା ଓ ଯୁବକମାନଙ୍କୁ ଆଡ଼େଇ ଦେଲା। ତା' ପାଟିରୁ ଗଞ୍ଜେଇ ଧୂଆଁର ଗନ୍ଧ ସଙ୍ଗେ ଦେଶୀ ମଦର ଗନ୍ଧ ମିଶି ଗୋଟାଏ ପରିଚିତ ତୀବ୍ରଗନ୍ଧ ବାହାରୁଥାଏ। ତା'ଆଖି ନାଲି ଓ ଧୂଆଁଟିଆ ଦିଶୁଥାଏ। ସେ ହସି ହସି କହିଲା-ହଇଓ ଅବଧାନେ! ଆମେ କଣ ଇଚ୍ଛା କରି କାଳୀକୁ ପାଣିରେ ପକେଇ ଦେଇପାରିବୁ? ମୁଁ କହିଲି ଆଉ ତାହାଲେ କିଏ ଇଚ୍ଛା କରିବ? ବାବାଜି କହିଲା—କେହି ନୁହଁ। ସେ ପରା ଇଚ୍ଛାମୟୀ! ତାର ଇଚ୍ଛା ନେଲା ସେହି ଏଠି ଅଛି, ପୁଣି ତାର ଯେବେ ଇଚ୍ଛା ହେବ, ସେ ବଳେ ଯାଇ ପାଣିରେ ପଡ଼ିବ। ଆମେମାନେ ନିମିତ୍ତ ମାତ୍ର। ଯାନ୍ତୁ ଆପଣେ ଅବଧାନେ! ଯାନ୍ତୁ। ସେ ଟୋକାମାନଙ୍କ କଥାରେ କାହିଁକି ଚଳି ହେଉଛନ୍ତି? ସେଗୁଡ଼ିକ ବେକାର ହୋଇ ବୁଲୁଥିଲେ। ମୁଁ ସେମାନଙ୍କୁ ଏକାଠି କରି ଏଇ ଭକ୍ତି ମାର୍ଗରେ, ଧର୍ମମାର୍ଗରେ ମଡ଼େଇଛି। ହଉ, ହଉ, ଆରେ ହେ ଭ୍ରମରା! ଉଠା ଉଠା ସେ କାଠଟା ରାସ୍ତା ଉପରୁ। ହଉ ଅବଧାନେ! ଟଙ୍କାଟିଏ ଦେବାକୁ ଆଜ୍ଞା ହୋଇଯାଉ। ପଣାପାଣି ଟିକିଏ ଭୋଗ କରିବା। ମୁଁ ପଚାରିଲି-କି ପଣା ହୋ? ବାବାଜୀ ହସି ହସି କହିଲେ-ଆପଣଙ୍କୁ କଣ ଅଜଣା ଅଛି ଅବଧାନେ! ଆପଣ ସରକାର ଚଳାଉଛନ୍ତି। କାଳୀ କୋଉ ପଣା ପିଏ କଣ ଅବଧାନଙ୍କୁ ମାଲୁମ୍ ନାହିଁ? ମୁଁ କହିଲି କାଳୀ ରକ୍ତ ପିଏ। ବାବାଜୀ କହିଲା ରକ୍ତ କାହିଁ ବାବୁ? ଆଉ ଏ ଦେଶର ମଣିଷଙ୍କ ଦେହରେ ରକ୍ତ ଅଛି? ଏଇ ଦେଶୀ ଜିନିଷ-ଛଅ ସାତ ବୋତଲ ହେଲେ ଚଳିଯାଉଛି। ମୁଁ କହିଲି-ତୁମ କାଳୀ ଏବେ ଦିନକୁ କେତେ ବୋତଲ ପିଉଛି? ବାବାଜୀ କହିଲେ-କାଳୀ କୋଉଠି ପିଇପାରୁଛି? ଏଇ ଟୋକାମାନେ କଣ ତାକୁ ପିଆଇଦେଉଛନ୍ତି? ମାଆ ସେ, ସ୍ନେହମୟୀ ଜଗତଜନନୀ, କଣ ଆଉ କରିବ? ପିଲାଏ ପିଉଛନ୍ତି, ତା' ଶୋଷ ସେଇବାଟେ ମାରୁଛି-ଆମ ଭିତରେ ରହି ଆମ ପାଟିବାଟେ ସେ ପିଉଛି!

ବାବାଜୀଟିର ମୁହଁକୁ ମୁହଁକୁ ବଲବଲ କରି ଚାହିଁଲି। ଟୋକାମାନେ ଦୂରରେ ଠିଆହୋଇ କେହି ସିଗ୍ରେଟ ଓ କେହି ଚାହା ଖାଉଥିଲେ। ମୁଁ ଅଧୁଲିଟିଏ ବାବାଜୀ ହାତକୁ ବଢ଼େଇ ଦେଇ ନିକଟସ୍ଥ ଚାହା ଦୋକାନକୁ ଯାଇ ଚାହା ଗ୍ଲାସେ ବରାଦ ଦେଲି। ଏଇ ସମୟରେ ଜଣେ ମତେ ପଚାରିଲା-ବାବୁ! ଭୁବନେଶ୍ୱରରୁ ଆସିଲେ କି?

ମୁଁ କହିଲି-କାହିଁକି ? 'ଆଜି ମନ୍ତ୍ରିମଣ୍ଡଳ ବଢ଼ିବାର ଥିଲା । ବଢ଼ିଲା କି ?' ମୁଁ ନିର୍ବୋଧଙ୍କ ପରି ଜବାବ ଦେଲି-ମୁଁ ଜାଣିନି । ସେ ମନକୁ ମନ କହିଲା-ଆମ ଦୁର୍ଯ୍ୟୋଧନ ସୋଇଁ ମନ୍ତ୍ରୀ ହେବାର ଥିଲା ଯେ କଣ ହେଲା ଜଣାପଡୁ ନାହିଁ।....

ସହରରେ ପହଁଚିଲାବେଳକୁ ରାତି ସାତ । ସହର ମଝି ଛକରେ ନାଲି ଆଲୁଅ ଦେଖି ଗାଡ଼ି ଅଟକାଇ ଅପେକ୍ଷା କଲି । ଖବରକାଗଜ ହକରମାନେ ରଢ଼ି ଛାଡ଼ି ବିଭିନ୍ନ ଖବରକାଗଜ ବିକୁଥିଲେ । ସରକାରଙ୍କ ବିରୋଧୀ ପକ୍ଷର ଖବରକାଗଜଟିଏ ବିକୁଥିବା ହକର ପାଟିକରି ଡାକୁଥିଲା- ଓଡ଼ିଶାର ମରୁଡ଼ି ଆକାଶରେ ଜାଜ୍ୱଲ୍ୟମାନ ସତେଇଶିଟି ନକ୍ଷତ୍ର....ମନ୍ତ୍ରୀ ମଣ୍ଡଳର ସଂଖ୍ୟା ଦ୍ୱିଗୁଣ ହେଲା...ଆ-ଆ-ଆ । ମୋ ପାଟିରୁ ମୋ ଅଜାଣତରେ ବାହାରି ପଡ଼ିଲା-ଜୟ ମା କାଳୀ ! ନୃମୁଣ୍ଡମାଳୀ, ଟହଟହ ହାସିନୀ ଜୟ କରାଳୀ !

❋❋

# ଗୋଟିଏ କଲେଜରେ ବସନ୍ତୋତ୍ସବ

ଆଜିକାଲି ପ୍ରାୟ ସବୁ କଲେଜରେ ବସନ୍ତୋତ୍ସବ, ଶିଶିରୋତ୍ସବ, ଶରତୋତ୍ସବ ଇତ୍ୟାଦି ପାଳିତ ହେଉଛି।

ଏଇଭଳି ଗୋଟିଏ ବିଖ୍ୟାତ କଲେଜରେ ଥରେ ବସନ୍ତୋତ୍ସବ ପାଳନ କରାଯାଇଥିଲା। ସେହି ପଲକ୍ଷେ ଏକ ସାଂସ୍କୃତିକ ସଭାର ଆୟୋଜନ ହୋଇଥିଲା। ଦୁଇଜଣ ବିଶିଷ୍ଟ ସାହିତ୍ୟିକ ଓ ଅଧ୍ୟାପକ ମୁଖ୍ୟ ଅତିଥି ଓ ମୁଖ୍ୟ ବକ୍ତାରୂପେ ଯୋଗ ଦେଇଥିଲେ। ଜଣେ ସ୍ଥାନୀୟ ସାମ୍ବାଦିକ ଭାବେ ମୁଁ ନିମନ୍ତ୍ରିତ ହୋଇ ଯାଇଥିଲି। କଲେଜର ଅଧ୍ୟକ୍ଷ, କେତେଜଣ ଅଧ୍ୟାପକ ଏବଂ କଲେଜ ୟୁନିୟନର ଛାତ୍ରନେତାଙ୍କ ଗହଣରେ ମୁଖ୍ୟବକ୍ତା ଓ ମୁଖ୍ୟ ଅତିଥି କଲେଜ ଭିତରକୁ ପ୍ରବେଶ କଲାବେଳେ, ପ୍ରଥମେ ଆମ୍ଭେ ମାନେ ସିଢ଼ି ଚଢ଼ି ଉପର ମହଲାକୁ ଗଲୁ। ଗଲାବେଳେ ମୋ ଆଖିରେ ପଡ଼ିଲା କାନ୍ଥଯାକ ପାନ ଛେପରେ ବିକୃତ ହୋଇଛି। ଏବଂ ସିଢ଼ିଯାକ ମଧ ପାନଛେପ, ପାନସିଠା ଓ ଖଣ୍ଡିଆ ବିଡ଼ି, ସିଗ୍ରେଟ୍ ଆଦି ନାନାଦି ଆବର୍ଜନାରେ ଅତି ଅସନା ହୋଇଛି। ଛାତ ଉପରୁ କବାଟ ପର୍ଯ୍ୟନ୍ତ ବୁଢ଼ୀଆଣି ଜାଲ ମାଡ଼ିଛି। ଅଧିକାଂଶ କବାଟରୁ କାଚ ଭାଙ୍ଗିଯାଇଛି। ଏବଂ କାନ୍ଥର ଉପର ଅଂଶରେ ଗତ ନିର୍ବାଚନରେ ପ୍ରାର୍ଥୀମାନଙ୍କର ପ୍ରଚାରପତ୍ର ସବୁ ମରା ହୋଇ ରହିଛି। ଅନେକବର୍ଷ ଧରି ମୁଁ କୌଣସି କଲେଜ ଭିତରକୁ ଯାଇନଥିଲି। ଏ ଦୃଶ୍ୟ ଦେଖି ମୋ ମନ ବଡ଼ ଅମୁଣ୍ଡେକ ହୋଇଗଲା। କିନ୍ତୁ ଆମ ଗହଣରେ ଥିବା ଅଧ୍ୟାପକମାନେ ଖୁବ୍ ଦାମୀ ସୁଟ୍ ଓ ଯୋତା ପିନ୍ଧି ଥିଲେ। ଛାତ୍ରମାନେ ମଧ ଆଖିଦୃଶିଆ ପୋଷାକ ପିନ୍ଧିଥିଲେ। ଅବଶ୍ୟ ସେ ପୋଷାକରେ ବସନ୍ତ ଉତ୍ସବ ପାଳିବାର କୌଣସି ଇଙ୍ଗିତ ନଥିଲା।

କଲେଜର କାନ୍ଥ, କବାଟ, ଛାତ ଓ ସିଢ଼ି ଆଦିର ଏ ବିକୃତି ଦେଖି ମୁଁ ଜଣେ ପରିଚିତ ଅଧ୍ୟାପକଙ୍କ ବିଜ୍ଞ ଦୃଷ୍ଟି ଏହି କଦର୍ଯ୍ୟତା ଆଡ଼କୁ ବହୁ କଷ୍ଟରେ ଆକର୍ଷଣ କରନ୍ତେ, ସେ ଖୁବ୍ ସହଜଭାବେ ଗମ୍ଭୀର ହୋଇ କହିଲେ-

ଏ କଲେଜରେ ସହସ୍ରାଧିକ ପିଲା ପଢ଼ନ୍ତି। ସକାଳୁ ରାତି ଅଧଯାଏ କ୍ଲାସ ଚାଲିଥାଏ। ପିଲାଙ୍କ ଭିତରୁ ଶତକଡ଼ା ଚାଳିଶି ଭାଗ ପାନ ଖାଆନ୍ତି-ଚାଳିଶ ଭାଗ ବିଡ଼ି,

ସିଗ୍ରେଟ୍ ପିଅଛି । ଆଉ କୋଡ଼ିଏ ଭାଗ କ'ଣ ଖାଆନ୍ତି, କ'ଣ ପିଅନ୍ତି, ତାହା ଆମକୁ ଜଣା ନାହିଁ । ଏତେପିଲା ପାନ, ସିଗ୍ରେଟ୍ ଖାଇଲେ, ସେମାନେ ପାନପିକ, ଖଣ୍ଡିଆ ବିଡ଼ି, ସିଗ୍ରେଟ୍ ପକେଇବେ କୋଉଠି ? ଆପଣ କୁହନ୍ତୁ ତ ।

ମୁଁ ମନେ ମନେ ଚିଡ଼ିଗଲି । ସ୍ୱଗତେ ଭାବିଲି-ଏ ପ୍ରଶ୍ନର ଉତ୍ତର ତ ମୋ ମୁହଁରୁ ବାହାରିବ, ଆପଣମାନଙ୍କ ଭଳି ବିଜ୍ଞ ଅଧ୍ୟାପକ ମାନଙ୍କ ଶ୍ରୀମୁଖଟି ତା' ହେଲେ କୋଉ ଉଦ୍ଦେଶ୍ୟରେ ବ୍ୟବହୃତ ହେଉଛି ।

ମୋ ମନ କଥା ମନରେ ଅଛି-ହଠାତ୍ ଅଧକ୍ଷ ମହୋଦୟ କହିଉଠିଲେ-ମିଃ ଦେବଦାସ । ଗତ ମାସରେ ପରୀକ୍ଷା ହଲ୍‌ରେ ଜଣେ ସିନିୟର ଅଧ୍ୟାପକ ଗୋଟିଏ ପିଲାର କପି ଧରିଲାବେଳେ, ସେ ପିଲାଟି ପିଚ୍‌କିନା ସୋରାଏ କଡ଼ା ଖଇରିଆ ପାନଛେପ ଅଧ୍ୟାପକଙ୍କ ମୁହଁକୁ ଲକ୍ଷ୍ୟକରି ଫୋପାଡ଼ିଲା । ଅଧ୍ୟାପକଙ୍କ ମୁହଁ, ପାଟି, ନାକ ଓ ଶେଷକୁ ତାଙ୍କ ଆଖି ଦୁଇଟି ମଧ ପାନପିକରେ ବୁଡ଼ିଗଲା । ସମୟ ସେମିତି ହୋଇଛି ।

ଏହାପରେ ଆମେ ଗୋଟିଏ ହଲ୍ ଭିତରକୁ ଗଲୁ । ସେଠି ଚାହା ପାର୍ଟିର ବ୍ୟବସ୍ଥା ହୋଇଥାଏ । ମୁଁ ହଲଟିର ଚାରିଆଡ଼କୁ ଚାହିଁଲି । ତାହା ଥିଲା ଗୋଟିଏ କ୍ଲାସରୁମ୍ । ସେ ରୁମ୍‌ର କାନ୍ଥଯାକ ମଧ ପାନ ପିକରେ ବିଚିତ୍ର ଦିଶୁଥାଏ । ଏବଂ ପରୀକ୍ଷାବେଳେ କପିକରିବା ଉଦ୍ଦେଶ୍ୟରେ କାନ୍ଥରେ ସାହିତ୍ୟ, ଅର୍ଥନୀତି, ଗଣିତ, ଇତିହାସ ପ୍ରଭୃତିର ଜ୍ଞାନଭେଦ ଉଦ୍ଧୃତିଗୁଡ଼ିଏ ଲେଖା ହୋଇଥାଏ । ଠାଏ ଠାଏ ପୁଣି ତା' ସାଙ୍ଗକୁ ନାନାଦି କଞ୍ଚା ଅଶ୍ଳୀଳ ଶବ୍ଦ ଓ ବାକ୍ୟମାନ ଆମ ଚକ୍ଷୁରେ ଲିପିବଦ୍ଧ ହୋଇଥାଏ । ସବୁଠାରୁ ମଜା ଦୃଶ୍ୟ ହେଲା-ସେହି ହଲ୍‌ରେ ଝୁଲୁଥିବା ଛଅଟି ଛାତ ପଙ୍ଖାର ଡେଣାଗୁଡ଼ିକ ମୋଡ଼ାମୋଡ଼ି ହୋଇ ସେଗୁଡ଼ିକ ପଦ୍ମଫୁଲର ଆକୃତି ଧରିଥାଏ ।

ମୋ ପାଖରେ ବସିଥିବା ଅଧ୍ୟାପକଙ୍କୁ ମୁଁ ଏହା ଦେଖାନ୍ତେ-ସେ ମୋତେ କହିଲେ-ଆଖି ମେଲା କଲେ ଏମିତି ଖରାପ କଥା ସବୁ ଆଖିରେ ପଡ଼ିବଇଁ ପଡ଼ିବ । ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ତିନି ମାଙ୍କଡ଼ ଭିତରୁ ପ୍ରଥମ ମାଙ୍କଡ଼ଟିର ନିର୍ଦ୍ଦେଶମାନି ଆଖି ବନ୍ଦକରି ବସନ୍ତୁ । ଯଦି ଦୈବାତ୍ ଆଖି ମେଲା କରିଛନ୍ତି-ତା ହେଲେ କିଛି ଦେଖନ୍ତୁ ନାହିଁ ।

ମୁଁ ଏହି ବିଜ୍ଞ ଉପଦେଶରେ ନୀରବ ରହିଲି । ଆମେ ହଲ୍ ଭିତରେ ପଶିଲା ପରେ ତାହା ଭିତରଆଡୁ ବନ୍ଦ କରାଯାଇଥିଲା । ୟୁନିୟନର ଛାତ୍ରନେତାମାନେ ଆମ ସଙ୍ଗେ ଭିତରେ ବସିଥିଲେ । ଇତିମଧ୍ୟରେ ଜଣେ ଛାତ୍ର ଗୋଟିଏ ଲେଖାଁ ରବର ଫିତାବାନ୍ଧା କ୍ଷୁଦ୍ର ପୁଡ଼ିଆ ଆମ ଆଗରେ ଥୋଇ ଦେଲେ । ସେହି ପୁଡ଼ିଆ ଉପରେ ସ୍ଥାନୀୟ ଏକ ବିଶିଷ୍ଟ ମିଷ୍ଟାନ୍ନ ଦୋକାନର ଠିକଣା ବଡ଼ ହରଫରେ ଛପା ଯାଇଥିଲା ।

ମୁଁ ତାକୁ ଫିଟାଇ ଦେଖିଲି ଯେ ତା' ଭିତରେ ଗୋଟିଏ ଶୀର୍ଣ୍ଣକାୟ ସିଙ୍ଗଡ଼ା, ଗୋଟିଏ ସଙ୍କୁଚିତ ଆଳୁଚପ୍ ଗୋଟିଏ ନିଷ୍ପୀଡ଼ିତ ସନ୍ଦେଶ ଏବଂ କିଛିବ୍ ଜାତି ଧର୍ମ ନିରପେକ୍ଷ ମିକ୍ସଚର ସହ ଗୋଟିଏ ଅଙ୍ଗୁଷ୍ଠ ପରିମାଣ ବିଦାରିତହୃଦୟ ଆନ୍ଧ୍ରଦେଶାଗତ ଅପରିପକ୍ୱ କଦଳୀ ରଖାଯାଇଛି। ମୁଁ ପ୍ରଥମେ ସନ୍ଦେଶଟିକୁ ପାଟିକୁ ନେଉଛି, ଏମନ୍ତ ସମୟେ ହଲ ବାହାରେ ଭୀଷଣ ପାଟିଗୋଳ ହେଲା। ଏବଂ ବନ୍ଦ କବାଟ ଉପରେ ଘନ ଘନ ଆଘାତ ହେଲା। ମୁଁ ତେଣିକି ତ୍ରସ୍ତ ଭାବେ ଉତ୍କର୍ଣ୍ଣ ହେଲି। ବାହାରେ ଯେଉଁ ବିଦ୍ରୋହୀ ଛାତ୍ରମାନେ କବାଟ ବାଡ଼େଇ ହଲ୍ଲା କରୁଥିଲେ, ସେମାନେ ହଲ ଭିତରେ ଥିବା ନେତୃସ୍ଥାନୀୟ ଛାତ୍ରଙ୍କ ନାମ ଧରି ରଡ଼ି ଛାଡୁଥିଲେ ଆରେ ଶଃ ମଦନା! ସବୁ ସିଙ୍ଗଡ଼ାତକ ଖାଇଲୁବେ! ଆବେ ଚଇନି! କବାଟ ଖୋଲ୍‌ବେ! ଆବେ ଶଙ୍କରା! ଶଳା କବାଟ କିଳି ସବୁ ପୁଡ଼ିଆତକ ଗେଫୁଛ ବେ! ଇତ୍ୟାଦି ଇତ୍ୟାଦି, ଏବଂ ଆହୁରି ବହୁ ନଗ୍ନ ଅଶ୍ଳୀଳ ଶବ୍ଦ, ଯାହା ମୁଁ ଏଠାରେ ଲେଖିପାରୁ ନାହିଁ।

ଏଣେ କିନ୍ତୁ ସେଇ ପୁଡ଼ିଆକୁ କିଛି ପାଟିରେ ପକାଉ ପକାଉ ଅଧକ୍ଷ, ଅଧ୍ୟାପକ ଓ ମୁଖ୍ୟଅତିଥି, ମୁଖ୍ୟ ବକ୍ତାମାନେ ଆପଣା ଭିତରେ ବର୍ତ୍ତମାନର ରାଜନୀତିକ ପରିସ୍ଥିତି ଉପରେ ଆଲୋଚନା କରି ଗୋଟିଏ ମାତ୍ର ସିଦ୍ଧାନ୍ତରେ ପହଞ୍ଚୁଥାନ୍ତି ଯେ-ସବୁ ରାଜନୀତିବାଲାଗୁଡ଼ାକ ଚୋର, ପାଜୀ, ଶୈତାନ। ଯେ ଆସୁ, ଯେଉଁ ପାର୍ଟି ଆସୁ, ଏ ଦେଶର କେହି କିଛି ଆଉ କରି ପାରିବେ ନାହିଁ। ଏ ଦେଶ ଏମିତି ଚାଲିବ ଓ ଚାଲୁଚାଲୁ ଯେଉଁଠି ରହିଯିବ ତ ରହିଯିବ।

ବାହାରେ ପିଲାଙ୍କ ପାଟିଗୋଳ ତୁମୁଳ ହୁଅନ୍ତେ-ମୁଁ ମୋ ପାଖରେ ବସିଥିବା କଲେଜ ୟୁନିୟନର ପ୍ରେସିଡ଼େଣ୍ଟ ଛାତ୍ରନେତାଙ୍କୁ ଏ ହୈହଲ୍ଲାର କାରଣ ପଚାରିଲି। ସେ କହିଲେ-ସେ ଶଃ ମାନେ ଏହି ପୁଡ଼ିଆ ଖାଇବେ ବୋଲି ଏମିତି ହଲ୍ଲା କରୁଛନ୍ତି।

ମୁଁ କହିଲି-ସେମାନଙ୍କୁ କିଛି ପୁଡ଼ିଆ ଦେଇ ଦେଉନ!

ଛାତ୍ରନେତା କହିଲେ-ସେମାନେ ଆମର ବିରୋଧୀ ଦଳ। ସେ ଦଳରେ କେତେକ ଗୁଣ୍ଡା ଅଛନ୍ତି। ଆଜି ଫଙ୍କସନ୍ କରିବୁ ବୋଲି ଆମେ ତାଙ୍କୁ ପଚାଶଟି ପୁଡ଼ିଆ ଦେଲୁ। ସେମାନେ ପୁଣି ଜବରଦସ୍ତ ଆଉ ଚାଳିଶିଟା ପୁଡ଼ିଆ ଟୋକେଇରୁ ଛଡ଼େଇ ନେଲେ। ତଥାପି ଏମିତି ହଲ୍ଲା କରୁଛନ୍ତି। ସେମାନେ ଧମକ ଦେଇଛନ୍ତି ଯେ, ମଦ ପିଇବାକୁ ପଚାଶ ଟଙ୍କା ନଦେଲେ ସେମାନେ ଆଜି ଫଙ୍କସନ୍ କରାଇ ଦେବେ ନାହିଁ-ମେଳାଡ଼ି ବେଞ୍ଚେ ଟେବୁ ଫିଙ୍ଗିବେ-ଲାଇଟ୍ କାଟିଦେବେ-ହଲ୍ଲା କରିବେ।

ମୁଁ କହିଲି-ତା'ହେଲେ ବସନ୍ତୋତ୍ସବ ହେବ କେମିତି? ସେ କହିଲେ-ନିଶ୍ଚୟ ହେବ। ଆମେ ବି ଗୁଣ୍ଡା ରଖିଛୁ। ତାଙ୍କ ମୁଣ୍ଡ ଫଟେଇ ଦେବୁ। ମୁଁ ଦୀର୍ଘଶ୍ୱାସ ପକାଇ କହିଲି ଓଃ! କି ଖରାପ କଥା! ମୋ କଥା ଶୁଣି ପାଖରେ ବସିଥିବା

ବିଜ୍ଞ ଅଧ୍ୟାପକ ବନ୍ଧୁ କହିଲେ- ଅଃ । ଗାନ୍ଧୀଜୀଙ୍କ ଦ୍ୱିତୀୟ ମାଙ୍କଡ଼କୁ ମନେ ପକାନ୍ତୁ । ଖରାପ କଥା ଶୁଣନ୍ତୁ ନାହିଁ । କାନ ବନ୍ଦ କରନ୍ତୁ ।

ଇତିମଧ୍ୟରେ କବାଟ ଖୋଲିଗଲା । ଦଳେ ଉତ୍‌କ୍ଷିପ୍ତ ମର୍କଟ ବା ମହୁମାଛି ପରି କେତେକ ଛାତ୍ର ହଇହଲ୍ଲା କରି ହଲ୍ ଭିତରକୁ ପଶି ଆସିଲେ ଏବଂ କାହାକୁ ଖାତିର ନ କରି ଅବଶିଷ୍ଟ ପୁଡ଼ିଆତକ ଛଡ଼େଇ ନେଇ ଖାଇ ଚାଲିଲେ ଓ ଅଶ୍ଳୀଳ ବାକ୍ୟ ଉଚ୍ଚାରଣରେ ହଲ କମ୍ପାଇଲେ । କେତେକ ପରିତ୍ୟକ୍ତ ପୁଡ଼ିଆମାନଙ୍କରୁ ଅଭୁକ୍ତ ସିଙ୍ଗଡ଼ା ଚପ୍ ଇତ୍ୟାଦି ଉଠାଇ ନେଇ ଖାଇବାକୁ ଲାଗିଲେ ଓ ଟେବୁଲ ଉପରେ ଠିଆ ହୋଇ ନାଚିଲେ । ଏହି ବୀଭତ୍ସ ଦୃଶ୍ୟ ମୋର ଦୁଃସହ ହୁଅନ୍ତେ-ମୁଁ ଅଧ୍ୟକ୍ଷ ମହୋଦୟଙ୍କ ପାଖକୁ ଯାଇ କହିଲି-ଏମାନଙ୍କୁ କିଛି କୁହନ୍ତୁ-ଏମାନେ କି ଉତ୍ପାତ କରୁଛନ୍ତି ? ମାତ୍ର ଅଧ୍ୟକ୍ଷଙ୍କ ମୁଖମଣ୍ଡଳରେ ଏକ ଉଦାସୀନ ହାସ୍ୟ ଶୋଭାପାଉଥାଏ ।

ଏହି ସମୟରେ ମୋର ସେହି ବିଜ୍ଞ ଅଧ୍ୟାପକ ବନ୍ଧୁ ଜଣକ ମୋର ହାତକୁ ଧରି କହିଲେ-ଗାନ୍ଧିଜୀଙ୍କ ତୃତୀୟ ମାଙ୍କଡ଼କୁ ମନେ ପକାନ୍ତୁ । କୋଉ କଥାରେ ପାଟି ଫିଟାଅ ନାହିଁ । ପାଟି ଫିଟିଲେ ଅନର୍ଥ ହେବ । ମୁଁ କହିଲି ଭଲ, କହିଲେ ଅନର୍ଥ କାହିଁକି ହେବ ? ଅଧ୍ୟାପକ କହିଲେ-ସେହୁ ମଣିବେ ସଲ, ଫଟାଇଦେବେ ଗାଲ-ହୋଇବ କଲବଲ । ଚାଲ ବନ୍ଧୁ ! ଘରକୁ ଫେରିଯିବା ଚଞ୍ଚଳ ।

ମୁଁ ପଚାରିଲି ବସନ୍ତ ଉତ୍ସବ ? ସେ କହିଲେ-ଏହା ଏହିପରି ଆରମ୍ଭ ହେଲା-ଓ ଶେଷପର୍ଯ୍ୟନ୍ତ ଏହିପରି ଚାଲିବ ।

ଆମେ ଦୁହେଁ ପଳାଇ ଆସିଲୁ ।

❋❋

# ଧନ୍ୟ 'ଗୁରୁ' ଧନ୍ୟ 'ଦିବସ'

ଏବେ ପ୍ରତିବର୍ଷ ସେପ୍‌ଟେମ୍ବର ପାଞ୍ଚ ତାରିଖରେ ବିଶ୍ୱବିଖ୍ୟାତ ପ୍ରାଜ୍ଞ ଅଧ୍ୟାପକ, ଦାର୍ଶନିକ, ନବଜାଗ୍ରତ ଭାରତବର୍ଷର ଅନ୍ୟତମ ଚିନ୍ତାନାୟକ ଦିଗ୍‌ଦର୍ଶକ ଏବଂ ଭାରତର ଏକଦା ରାଷ୍ଟ୍ରପତି ମହାନଚରିତ ପୁଣ୍ୟଶ୍ଳୋକ ସ୍ୱର୍ଗତ ସର୍ବପଲ୍ଲୀ ଡଃ ରାଧାକ୍ରିଷ୍ଣନ୍‌ଙ୍କର ଶୁଭ ଜନ୍ମତିଥି ଦେଶର ବିଭିନ୍ନ ସ୍ଥାନରେ ପାଳିତ ହେଉଅଛି। ବିଶେଷତଃ, ଓଡ଼ିଶାର ସ୍କୁଲ କଲେଜ ମାନଙ୍କରେ ଏହି ଦିବସଟିକୁ ଗୁରୁଦିବସ ରୂପେ ଶିକ୍ଷକ ଓ ଛାତ୍ର ଛାତ୍ରୀଗଣ ଅନୁଷ୍ଠାନିକ ଭାବେ ପାଳନ କରୁଅଛନ୍ତି। ପ୍ରକାଶଥାଉକି, ପରମସ୍ମରଣୀୟ ରାଧାକ୍ରିଷ୍ଣନ ତାଙ୍କର ଜୀବନର ଅଧିକାଂଶ ସମୟ ଅଧ୍ୟାପନାରେ ଅତିବାହିତ କରିଥିବାରୁ, ଭାରତ ସରକାର ଦେଶବାସୀଙ୍କ ତରଫରୁ ସେହି ବିଶିଷ୍ଟ ଜନ୍ମ ତିଥିଟିକୁ ଭାରତବର୍ଷର ଶିକ୍ଷକମାନଙ୍କ ନାମରେ ଉତ୍ସର୍ଗ କରିଛନ୍ତି। ଯେପରି ଜବାହରଲାଲଙ୍କ ଜନ୍ମଦିବସକୁ ଭାରତର ଶିଶୁମାନଙ୍କ ନାମରେ ଉତ୍ସର୍ଗ କରାଯାଇଛି, ଜାତିର ପିତା ମହାତ୍ମାଗାନ୍ଧୀଙ୍କ ଶ୍ରାଦ୍ଧଦିବସକୁ ଭାରତର ସ୍ୱାଧୀନତା ଯୁଦ୍ଧରେ ପ୍ରାଣବଳି ଦେଇଥିବା ଶହୀଦମାନଙ୍କ ନାମରେ ଉତ୍ସର୍ଗ କାଯାଇଛି। ଗୁରୁଦିବସର ଅନ୍ୟତମ ଲକ୍ଷ୍ୟ ହେଲା-ଦେଶର ଅକର୍ମଣ୍ୟ, ବାଧିତ ଓ ଦୁସ୍ଥ ଶିକ୍ଷକମାନଙ୍କୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ଗୋଟିଏ ଜାତୀୟ ପାଣ୍ଠି ସୃଷ୍ଟି କରିବା ଏବଂ ଏଭଳି ଗୋଟିଏ ଜାତୀୟ ପାଣ୍ଠି ମଧ୍ୟ ଗଠିତ ହୋଇ କିୟତ୍ ପରିମାଣରେ ତାର ଉଦ୍ଦେଶ୍ୟ ପୂରଣ କରୁଛି।

ସେହି ଉପଲକ୍ଷେ, ସେଦିନ ଗୋଟିଏ ହାଇସ୍କୁଲକୁ ମୁଖ୍ୟବକ୍ତା ଭାବରେ ନିମନ୍ତ୍ରିତ ହୋଇ ଯାଇଥିଲି। ଅପରାହ୍ନ ପ୍ରାୟ ଚାରିଟାବେଳକୁ ସଭାକାର୍ଯ୍ୟ ଆରମ୍ଭ ହେଲା। କିନ୍ତୁ ତତ୍‌ପୂର୍ବରୁ ପ୍ରଧାନଶିକ୍ଷକ ଓ ଅନ୍ୟ ଶିକ୍ଷକମାନଙ୍କ ଗହଣରେ ମୁଁ ବିଭିନ୍ନ ଶ୍ରେଣୀର ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ଆୟୋଜିତ ଚିତ୍ରକଳା, ପୁସ୍ତକ ଓ ହସ୍ତଶିଳ୍ପ ପ୍ରଦର୍ଶନୀ ଦେଖିବାକୁ ବାହାରିଲି। ତନ୍ମଧ୍ୟରେ ସପ୍ତମଶ୍ରେଣୀ ପିଲାମାନଙ୍କର ଗୋଟିଏ ହସ୍ତଶିଳ୍ପ ପ୍ରଦର୍ଶନୀ ଦେଖୁ ଦେଖୁ ମୋର ଦୃଷ୍ଟି କାନ୍ଥରେ ଟଙ୍ଗା ହୋଇଥିବା ଗୋଟିଏ ସୁନ୍ଦର ରାଧାକୃଷ୍ଣ ଯୁଗଳ ମୂର୍ତ୍ତିର ରଙ୍ଗୀନ ଚିତ୍ର ଉପରେ ପଡ଼ନ୍ତେ-ମୁଁ ପିଲାମାନଙ୍କୁ ପଚାରିଲି—ବାବୁମାନେ! ଏ ଛବି କାହିଁକି ସେଠାରେ ଟାଙ୍ଗିଛ? ପୁଣି ତା'ଉପରେ ଏତେ ଫୁଲମାଳ କାହିଁକି ଲଦିଛ? ପିଲାମାନେ ପଲ୍ଲୀବାଳକ ସ୍ୱାଭାବସୁଲଭ ସଙ୍କୋଚକୁ ବହୁ କଷ୍ଟରେ ଅତିକ୍ରମ କରି ହସି ହସି କହିଲେ- ଆଜି ରାଧାକୃଷ୍ଣଙ୍କ ଜନ୍ମଦିବସ ବୋଲି ଟାଙ୍ଗିଛୁ। ମୋ ପାଖରେ ପ୍ରଧାନ ଶିକ୍ଷକ ମହୋଦୟ ମଧ୍ୟ ଠିଆ ହୋଇଥିଲେ।

ମୁଁ ରାଧା, କୃଷ୍ଣ ଓ ସର୍ବପଲ୍ଲୀ ରାଧାକ୍ରିଷ୍ଣଙ୍କ ଭିତରେ ଥିବା ପ୍ରଭେଦ ସଂକ୍ଷେପରେ ଦର୍ଶାଇ ସେଠୁ ଫେରି ଆସିଲି।

ତା'ପରେ ସଭା ହେଲା। ବହୁ ଛାତ୍ରଛାତ୍ରୀ ଓ ଶିକ୍ଷକମାନେ ସମାବିଷ୍ଟ ଥିଲେ। ଏବଂ କେତେକ ଶିକ୍ଷକ ପଳାୟନତତ୍ପର ଛାତ୍ରଛାତ୍ରୀମାନଙ୍କୁ ହଲ ଭିତରେ ପୁନଃ ପ୍ରବିଷ୍ଟ କରାଇବା ଲାଗି ବାହାରେ ତତ୍ପର ରହିଥିଲେ। ସଭାମଞ୍ଚରେ ଚଉକିରେ ବସିଲାବେଳେ, ପ୍ରଧାନଶିକ୍ଷକ ମହୋଦୟ ଖୁବ୍ ଧୀର ଗଳାରେ ମୋ କାନରେ କହିଲେ-ସବୁ ଭାଣ୍ଡ କାରଖାନା ଆଜ୍ଞା। ଆମେ ଗୁରୁ। ଅଥଚ ଆମକୁ ଏସବୁ ଆୟୋଜନ କରିବାକୁ ପଡୁଛି। ମୋ ହାତରୁ ଗତବର୍ଷ ପଚାଶଟଙ୍କା ଯାଇଛି। ଏବର୍ଷ କଣ କେତେ ଗଲାଣି ପରେ ହିସାବ କରିବି। କଣ କରିବୁ ? ସରକାରଙ୍କ ଆଦେଶ।

ସଭା ଆରମ୍ଭ ହେଲା। ପ୍ରଥମେ ଦୁଇଜଣ କିଶୋର କିଶୋରୀ ସଂସ୍କୃତ ଶିକ୍ଷକଙ୍କ ଅଗ୍ନିମୟ ମୁଖକୁ ବହୁ କଷ୍ଟରେ ଚାହିଁ ଗୁରୁଙ୍କୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ଦୁର୍ଗା ଓ ଗଣେଶ ରୂପେ ଅଭିହିତ କରିଥିବା ପ୍ରାଚୀନ ଶ୍ଳୋକଟିକୁ କୌଣସି ପ୍ରକାରେ ଶୁଦ୍ଧାଶୁଦ୍ଧ ମିଶାଇ ଦ୍ୱିବାର ଗାନ କରି ଘର୍ମାକ୍ତ କଳେବରରେ ଯତ୍ପରୋନାସ୍ତି କ୍ଷିପ୍ରତାର ସହିତ ମଞ୍ଚତ୍ୟାଗ କରି ନିଜ ନିଜର ଜୀବନରକ୍ଷା କଲେ। ତା'ପରେ ସଂସ୍କୃତ ଶିକ୍ଷକ ମହୋଦୟ ପ୍ରଥମେ କିଛି ସମୟ ନିଜ ତୁଣ୍ଡରୁ ରୁଦ୍ରମିତ୍ର, ଅର୍ଯମା, ବରୁଣ ଇତ୍ୟାଦି ଶବ୍ଦସମ୍ବଳିତ ଗୋଟିଏ ବେଦମନ୍ତ୍ର ଖୁବ୍ ଉଚ୍ଚସ୍ୱରରେ ଗୁରୁ ଲଘୁ ନିୟମରେ ଗାନ କରି ନିଜର ବୈଦିକତ୍ୱ ପ୍ରମାଣ କରି ସାରିଲା ପରେ, ଛାତ୍ରଛାତ୍ରୀଙ୍କ ଉଦ୍ଦେଶ୍ୟରେ ଗୋଟିଏ ଉଦ୍ଭଟ ଆଶୀର୍ବାଦାତ୍ମକ ଶ୍ଳୋକ ଗାନକରି ନିଜର କାବ୍ୟରସପଟୁତା ପ୍ରତିପାଦନ କଲେ। ସେହି ସଂସ୍କୃତଶ୍ଳୋକଟିର ଅର୍ଥ ହେଲା-ଜଗଦୀଶ୍ୱର ମହାଦେବ ରାତି ଅଧରେ କାମାବିଷ୍ଟ ହୋଇ ତ୍ରିଭୁବନେଶ୍ୱରୀ ଜଗଦ୍‌ମାତା ପାର୍ବତୀଙ୍କ ପର୍ବତୋପମ ବକ୍ଷୋଜ ଉପରେ କର ସଂସ୍ଥାପନ କରିବାକୁ ପ୍ରୟାସ କଲାବେଳେ, ପୂର୍ବରୁ ତନ୍ମଧ୍ୟରୁ ଗୋଟିଏ ଶିଶୁପୁତ୍ର ଗଣେଶଙ୍କ ଦ୍ୱାରା ଚୋଷିତ ଓ ଅନ୍ୟଟି ଧୃତ ହୋଇଥିବାରୁ ଯେଉଁ ସନ୍ତାନବତ୍ସଳା ଆଦିମାତା ପାର୍ବତୀ କାମ ଜର୍ଜର ମହାଦେବଙ୍କ ପ୍ରସାରିତ ହସ୍ତକୁ ନିଜ ହସ୍ତଦ୍ୱାରା ନିଷ୍ଠୁରଭାବେ ନିବାରିତ କରିଥିଲେ-ସେହି ଦିବ୍ୟଜନନୀ ପାର୍ବତୀ ତାଙ୍କର ସେହି ହସ୍ତ କମଳ ଉତ୍ତୋଳନ କରି ତୁମମାନଙ୍କୁ ଅଭୟ ଆଶ୍ରୟ ପ୍ରଦାନ କରନ୍ତୁ।

ଏତେକ ବୋଲିସାରି ପଣ୍ଡିତ ମହାଶୟ ମୋ ପାଖରେ ଆସି ବସିଲେ ଏବଂ ଖୁବ୍ କୃତକୃତ୍ୟ ହୋଇ ହସି ମୋତେ ଧୀରଭାବେ ଜଣାଇଲେ ଯେ, ଏହି ମହାନ୍ ସ୍ମରଣୀୟ ଆଶୀର୍ବାଦାତ୍ମକ ଶ୍ଳୋକଟିର ରଚୟିତା ସେ ନିଜେ। ଏହାପରେ ଓଡ଼ିଆରେ ଏମ୍. ଏ ଓ ବି. ଇଡ଼ି. ଉପାଧି ଯୁକ୍ତ ଜଣେ ସାହିତ୍ୟ ଶିକ୍ଷକ ଉଠି, ଆଜି ଦିନର ମହତ୍ତ୍ୱ ଓ ରାଧା କ୍ରିଷ୍ଣନଙ୍କ ସମ୍ବନ୍ଧେ ଯେଉଁ ଅବତରଣିକା କଲେ ତାର

ସାରମର୍ମ ହେଲା—ରାଧା ପ୍ରେମର ଅବତାର ଓ କୃଷ୍ଣ ହେଲେ ଜ୍ଞାନ ଓ କର୍ମର ଅବତାର। ଆମ ରାଧାକ୍ରିଷ୍ଣନ ହେଲେ ଉଭୟ ରାଧା ଓ କୃଷ୍ଣଙ୍କର ମିଳିତ ଅବତାର। ସେଥିଲାଗି ରାଧାକ୍ରିଷ୍ଣନ ଏକାଧାରାରେ ଆମକୁ ପ୍ରେମ, ଜ୍ଞାନ ଓ କର୍ମର ମାର୍ଗ ଦର୍ଶାଇ ଯାଇଛନ୍ତି। ପିଲାମାନେ ଯଦି ଗୁରୁମାନଙ୍କୁ ପ୍ରଣିପାତ, ପରିପ୍ରଶ୍ନ ଓ ସେବା କରିବେ, ତେବେ ସେମାନେ, ପ୍ରତ୍ୟେକେ ମଧ୍ୟ ଦିନେ ଜଣେ ଜଣେ ରାଧାକ୍ରିଷ୍ଣନ ହୋଇପାରନ୍ତି।

ତାଙ୍କପରେ ଜଣ ଜଣ ହୋଇ କେତେକ ଶିକ୍ଷକ ଭାଷଣ ଦେଲେ। ଜଣେ ଶିକ୍ଷକଙ୍କର ବକ୍ତବ୍ୟର ସାରାଂଶ ହେଲା—ବର୍ଷକରେ ଗୋଟିଏ ଦିନ ଗୁରୁଦିବସ ପାଳନ କରି ସମାଜ ଓ ସରକାର ଗୁରୁଙ୍କ ଋଣରୁ ମୁକ୍ତ ହୋଇ ପାରିବେ ନାହିଁ। ତିନିଶହ ପଞ୍ଚଷଠୀ ଦିନରୁ ପଞ୍ଚଷଠୀ ଦିନ କାଟି ଅନ୍ତତଃ ତିନିଶହ ଦିନ ଗୁରୁଦିବସ ପାଳନ କରିବା ଉଚିତ। ଆଜି ସମାଜରେ ଗୁରୁର ମର୍ଯ୍ୟାଦା ନାହିଁ। ଜଣେ କନେଷ୍ଟବଳଙ୍କୁ ଲୋକେ ଯେତେକି ଡରୁଛନ୍ତି, ଗୁରୁଙ୍କୁ ତାର ଶହେ ଭାଗରୁ ପାଞ୍ଚଭାଗ ବି ଡରୁ ନାହାନ୍ତି। ଅଭିଭାବକମାନେ ଓ ପିଲାମାନେ ଆମ୍ଭମାନଙ୍କୁ ଅତି ନଗଣ୍ୟଜୀବ ରୂପେ ଭାବୁଛନ୍ତି। ଆଜି ବେଳ ଆସିଛି- ଆମ ଗୁରୁମାନଙ୍କୁ ଏକତ୍ରିତ ହୋଇ ଏହାର ଠିକଣା ଜବାବ ଦେବାକୁ ହେବ। ଗୁରୁମାନଙ୍କର ଭିତରେ ଏକତା ହେଲେ ଆମ୍ଭେମାନେ ସରକାରଙ୍କୁ ଗୋଟିଏ ଦିନରେ ଥରାଇ ଦେବୁ। ତେବେ ଯାଇ ସମାଜ ଓ ସରକାର ଜାଣିବ ଯେ, ଆମ୍ଭେମାନେ ଗୋରୁ ନୋହୁଁ-ପ୍ରତ୍ୟେକ ଜଣେ ଜଣେ ସେହି ମହାନ୍ ରାଧାକ୍ରିଷ୍ଣନ।

ଆଉ ଜଣେ ଶିକ୍ଷକଙ୍କ ବକ୍ତବ୍ୟର ସାରାଂଶ ହେଲା—

ସର୍ବପଲ୍ଲୀ ରାଧାକ୍ରିଷ୍ଣନ ଯଦି ଭାରତର ପ୍ରେସିଡେଣ୍ଟ ହୋଇ ନଥାନ୍ତେ, ସେମିତି ଜୀବନଯାକ ଅଧ୍ୟାପକଟିଏ ହୋଇଥାନ୍ତେ, ତେବେ ତାଙ୍କର ଜନ୍ମ ଦିବସ ଆଜି ଏଠାରେ ପାଳିତ ହୋଇଥାନ୍ତା କି? କଦାପି ନୁହେଁ। ଆଜି ମଧ୍ୟ ଗୁରୁମାନଙ୍କ ମଧ୍ୟରେ ବହୁ ରାଧାକ୍ରିଷ୍ଣନ ଅଛନ୍ତି। କିନ୍ତୁ ସେମାନଙ୍କୁ ଚିହ୍ନୁଛି କିଏ? ସେତେବେଳେ ଜବାହରଲାଲ, ପଟେଲ ଲାଲବାହାଦୁର ପ୍ରଭୃତି ଥିଲେ ବୋଲି ତାଙ୍କୁ ଚିହ୍ନିକରି ପ୍ରେସିଡେଣ୍ଟ କରିଥିଲେ ମାତ୍ର ବର୍ତ୍ତମାନ ସେମିତି ଚିହ୍ନିଲାବାଲା କାହାନ୍ତି? ମାସ ମାସ ଧରି ଜଣେ ଶିକ୍ଷକର ଦରମା ବନ୍ଦ ହେଉଛି। ମାତ୍ର ତାଙ୍କୁ ପାଞ୍ଚ ଟଙ୍କାର ଜିନିଷ ବି ବଜାରରେ କେହି ଧାର ଦେଉ ନାହାନ୍ତି। ଅଥଚ ଜଣେ ପୋଲିସ୍ ବା ସେଲ୍‌ଟିକସ ବା ପ୍ରଶାସନିକ ଅଫିସର ବା ସାମାନ୍ୟ ଜଣେ କିରାଣୀକୁ ଦେଖିଲେ ଦୋକାନୀ ମହାଆଦରରେ ତାଙ୍କୁ ଦୋକାନକୁ ପାଛୋଟି ନେବ। ସେକାଳରେ ଜଣେ ଶିକ୍ଷକଙ୍କୁ ନେଇ ପ୍ରେସିଡେଣ୍ଟ ଆସନରେ ବସାଯାଉଥିଲା। ମାତ୍ର ଆଜିର ରାଜନୀତି ବାଲାଏ ସାମାନ୍ୟ ସରପଞ୍ଚ

ପଦଟି ମଧ୍ୟ ଡକ୍ଟର ମହେନ୍ଦ୍ର ରାଉତ ବା ଡକ୍ଟର ନବୀନ ସାହୁଙ୍କ ପାଇଁ ଛାଡ଼ିବେ ନାହିଁ। ଆଉ ଏମିତି ଗୁରୁଦିବସ ପାଳନ କଲେ କ'ଣ ହେବ? ଛତୁ ହେବ। ଛେନାଗୁଡ଼ ହେବ।

ଶେଷରେ ହେଡ଼ମାଷ୍ଟ୍ରେ ମହୋଦୟ ପୁରାଣରୁ ଆରୁଣୀ, ରୁ ଅର୍ଜୁନ ଓ ଏକଲବ୍ୟାଦି ପ୍ରଚଣ୍ଡ ଗୁରୁଭକ୍ତମାନଙ୍କର ଅତ୍ୟନ୍ତ ଗରିଷ୍ଠ ଗୁରୁଭକ୍ତିର କାହାଣୀ ଅତ୍ୟନ୍ତ ମର୍ମସ୍ପର୍ଶୀଭାବେ ବର୍ଣ୍ଣନା କରି ସାରି ଆଉ ଯାହା କହିଲେ, ତାର ସାରାଂଶ ହେଲା-

ଆଜିକାଲି ପିଲାମାନଙ୍କର ଗୁରୁଭକ୍ତି ଆଦୌ ନାହିଁ। ପିଲାମାନେ ଗୁରୁଙ୍କୁ ଛୁରା ମାରୁଛନ୍ତି ଓ ଅଶ୍ଳୀଳ କଥାରେ ଭର୍ତ୍ସନା କରୁଛନ୍ତି। 'ଗୁରୁ ଦକ୍ଷିଣା' ବୋଲି ଯାହା ପୁରାଣ ଓ ଇତିହାସ ଯୁଗର ଛାତ୍ରଛାତ୍ରୀମାନେ ଦେଉଥିଲେ-ତାହା ଆଉ ଆଜିକାଲି ଗୁରୁମାନଙ୍କୁ ସରଳ ଭାବେ, ସହଜ ଭାବେ ମିଳୁ ନାହିଁ। ଫଳରେ ଦେଶରେ ଜ୍ଞାନାଭାବ ଘୋଟିଛି ଓ ଦେଶ ମହାନ ଗୁରୁ ରାଧାକ୍ରିଷ୍ଣଙ୍କ ଫଟୋ ପାଖରେ ଏକତ୍ରିତ ହୋଇ ପ୍ରତିଜ୍ଞା କରନ୍ତୁ ଯେ, ସେମାନେ ଏଣିକି ଯଥେଷ୍ଟ ଗୁରୁଭକ୍ତି ଦେଖାଇବେ। ତା' ହେଲେ ଯାଇ ସ୍ୱର୍ଗତ ରାଧାକ୍ରୀଷ୍ଣନଙ୍କ ଅମର ଆତ୍ମା ସ୍ୱର୍ଗରେ ରହି ଶାନ୍ତିଲାଭ କରିବ।

ତା'ପରେ ଦୁଇଜଣ ଛାତ୍ର ଓ ଜଣେ ଛାତ୍ରୀ ଜଣକ ପରେ ଜଣେ ''ଗୁରୁଭକ୍ତି'' ଉପରେ ତିନୋଟି ଲିଖିତ ପ୍ରବନ୍ଧ ପଢ଼ିଲେ। ସେଗୁଡ଼ିକର ଭାଷାଶୈଳୀ ଭକ୍ତକବି ମଧୁସୂଦନଙ୍କ ସାହିତ୍ୟ ପ୍ରସଙ୍ଗସ୍ଥ ପ୍ରବନ୍ଧଗୁଡ଼ିକ ଅପେକ୍ଷା ଅଧିକ ସାଧୁ ଓ ଗୁରୁଗମ୍ଭୀର ଥିଲା ଏବଂ ପ୍ରବନ୍ଧର ମୂଳରେ ଗୁରୁ ବ୍ରହ୍ମା ଗୁରୁବିଷ୍ଣୁ ଗୁରୁ ଦେବ ମହେଶ୍ୱର ନାମକ ଶ୍ଳୋକର ଉଲ୍ଲେଖ ଥିଲା ଓ ଉପସଂହାରରେ ''ଗୁରୁଙ୍କୁ ନ ମଣିବ ପର/ଗୁରୁଟି ସାକ୍ଷାତ ଈଶ୍ୱର'' ନବାକ୍ଷରୀଟି ଉଦ୍ଧୃତ ଥିଲା।

ପରିଶେଷରେ ମୁଖ୍ୟବକ୍ତା ଭାବେ ମୋର ଭାଷଣଟିର ମର୍ମ ହେଲା ''ଗୁରୁ'' ଶବ୍ଦଟି ପ୍ରକୃତରେ ବଡ଼ ଓଜନଦାର ଶବ୍ଦ। ସେହିପରି ''ଶିଷ୍ୟ'' ଶବ୍ଦଟି ମଧ୍ୟ ବଡ଼ ତାତ୍ପର୍ଯ୍ୟ ପୂର୍ଣ୍ଣ। ଭାରତବର୍ଷ ହେଲା ଗୁରୁବାଦର ଦେଶ। ଆମର ଆଚାର୍ଯ୍ୟ ପରମ୍ପରା ମଧ୍ୟ ସଂପୂର୍ଣ୍ଣ ଏକ ଭିନ୍ନ ବ୍ୟାପାର। କିନ୍ତୁ ଆଜିକାଲିର ସ୍କୁଲ କଲେଜମାନଙ୍କରେ ପାଠ ପଢୁଥିବା ଓ ପାଠ ପଢ଼ାଉଥିବା ଆବାଳବୃଦ୍ଧବନିତାଙ୍କୁ ସେହି ଗୁରୁଶିଷ୍ୟ ନାମରେ ଆଖ୍ୟାତ କରିବା ଦରକାର କଣ? ଆମ୍ଭମାନଙ୍କର ବଡ଼ ଭୁଲଟି ହେଲା-ଯାହାଙ୍କୁ ଯାହା ଆଖ୍ୟାତ ନ କରିବା କଥା ଆମେ ଅନିଚ୍ଛାକୃତ ଭାବେ ତାଙ୍କୁ ସେହି ନାମରେ ଆଖ୍ୟାତ କରିଦେଉଁ ଓ ଇଚ୍ଛାକୃତ ଭାବେ ସେଇ କଥାଟି ତାଙ୍କଠାରୁ ଦାବୀ କରି, ନ ପାଇଲେ ସେମାନଙ୍କୁ ଆଖିବୁଜି ଗାଳିଦେଉ।

ତେଣୁ ଔଚିତ୍ୟବୋଧ ଦୃଷ୍ଟିରୁ ଆମ୍ଭମାନଙ୍କୁ ଅତି ଭଦ୍ର, ଭବ୍ୟ ଓ ବାସ୍ତବବାଦୀ ଭାବେ ଆଜିର ଏଇ ସ୍ମରଣୀୟ ଦିବସଟିରେ ଗୁରୁ ଶିଷ୍ୟ ପ୍ରସଙ୍ଗ ଛାଡ଼ି କେବଳ ରାଧାକ୍ରିଷ୍ଣନଙ୍କ ମହାନ ଜୀବନଗାଥା ଓ ତାଙ୍କର ଜୀବନ ଦର୍ଶନ ଉପରେ କିଛି ଆଲୋଚନା କରିବା ହିଁ ସମୁଚିତ ହେବ।

କିନ୍ତୁ ସେଥିଲାଗି ବର୍ତ୍ତମାନ ସମୟ ଅତିକ୍ରାନ୍ତ ହୋଇଗଲାଣି। ସନ୍ଧ୍ୟା ସମାଗତ। ଛଅଟା ବାଜିଲାଣି। ଶ୍ରୋତାମାନେ ଘରକୁ ଯିବାକୁ ଉଛନ୍ନ ହେଲେଣି। କେହି କେହି ସ୍ୱଭାବସୁଲଭ ବାଲ୍ୟକ୍ରୀଡ଼ାରେ ମତ୍ତ। କେହି କେହି ପଳାୟନତତ୍ପର। କେହି କେହି ମଲ୍ଲ ଯୁଦ୍ଧରେ ମାତିଛନ୍ତି। ସଭାରେ ତୁମୂଳ ହଟ୍ଟଗୋଳ ସୃଷ୍ଟି ହେବାର ବୋଧ ହେଉଅଛି। ଅବଶ୍ୟ ଏହା ଆମ୍ଭମାନଙ୍କ ପ୍ରତି ଭକ୍ତିର ଅଭାବରୁ ଘଟୁ ନାହିଁ ବୋଲି ମୋର ଦୃଢ଼ ବିଶ୍ୱାସ। ତେଣୁ ଚିରସ୍ମରଣୀୟ ରାଧାକ୍ରିଷ୍ଣଙ୍କ ଜୀବନୀ ଓ ଜୀବନ ଦର୍ଶନ ଉପରେ ଆଲୋଚନା ପାଇଁ ଆମେ ଆଉ ଗୋଟିଏ ସୁଦିନକୁ ଅପେକ୍ଷା କରିବା ଉଚିତ ହେବ। ଆଜି ଏତିକିରେ ସଭା ଭଙ୍ଗ ହେଉ। କାରଣ ଘୋର ମେଘ ଅନ୍ଧାର ଘୋଟି ଆସିଲାଣି। ଅବଶ୍ୟ ମୋ ମୁଣ୍ଡ ଉପରେ ବିଦ୍ୟୁତ ଆଲୋକର ବ୍ୟବସ୍ଥା ଥିବା ମୁଁ ଲକ୍ଷ୍ୟ କରୁଛି। କିନ୍ତୁ ରାଜ୍ୟର ବିଦ୍ୟୁତ୍ ବିଭାଗ ଆମ୍ଭମାନଙ୍କ ଲାଗି ଆଜି କେତେବେଳେ କଣ ବ୍ୟବସ୍ଥା କରିବେ ତାହା ଆଗରୁ କଳନା କରିବା ଅସମ୍ଭବ। ତେଣୁ ଆଜିର ଏଇ ଅତ୍ୟୁଜ୍ଜ୍ୱଳ ଗୁରୁଦିବସଟି ଘୋର ତମସାବୃତ ଗୁରୁରଜନୀରେ ପରିଣତ ହେବା ପୂର୍ବରୁ ମୁଁ ସଭାପତିଙ୍କୁ ସଭା ଶୀଘ୍ର ଶେଷ କରିବାକୁ ଅନୁରୋଧ ଜଣାଇ ମୋର ବକ୍ତବ୍ୟ ସମାପ୍ତ କରୁଛି।

❋❋

# ଏକ୍ସପ୍ରେସ ଟ୍ରେନ୍ ଓ ବଂଶୀବାଦକ

ଗୋଟିଏ ଏକ୍ସପ୍ରେସ ଟ୍ରେନରେ ଏକ ମଧ୍ୟାହ୍ନରେ ଆସୁଥିଲି । ଯେଉଠୁ ଆସିଲି, ସେଠାରୁ ମୋର ଓହ୍ଲାଇବା ଷ୍ଟେସନ ପର୍ଯ୍ୟନ୍ତ ପହୁଞ୍ଚିବାକୁ ସ୍ୱାଭାବିକ ଭାବେ ଟ୍ରେନ୍‌ଟିକୁ ପ୍ରାୟ ଦୁଇଘଣ୍ଟା ସମୟ ଲାଗନ୍ତ  ମାତ୍ର ସେଦିନ ଲାଗିଲା ସାଢ଼େ ତିନି ଘଣ୍ଟା ।

ଏତେ ସମୟ ଲାଗିବାର କାରଣ ହେଲା-ମଝିରେ ଚାରିଥର ଚେନଟଣା ହେବାରେ ଗାଡ଼ି ଅଟକିଥିଲା । ଆଉଥରେ ସିଗ୍‌ନାଲ ନପାଇ ଥିବାରୁ ଗାଡ଼ି କୋଡ଼ିଏ ମିନିଟ୍ ଅଧାବାଟରେ ଅଟକିଥିଲା । ପ୍ରଥମ ଥର କେତେକ ଯୁବକ, ଛାତ୍ର ଓ ଛାତ୍ରୀ ଚେନ୍ ଟାଣିଲେ, ଗାଡ଼ି ବନ୍ଦହେଲା । ସେମାନେ ବହିବସ୍ତାନି ଧରି ହସଖୁସୀରେ ନିକଟସ୍ଥ ବଜାର ଆଡ଼କୁ ବାହାରିଗଲେ । ସେମାନେ ଡେଲି ପାସେଞ୍ଜର । ମାତ୍ର କଲେଜ ହଠାତ୍ ବନ୍ଦ ହେବାରୁ ପାସେଞ୍ଜର ଗାଡ଼ିକୁ ଅପେକ୍ଷା ନ କରି ଏକ୍ସପ୍ରେସ୍‌ରେ ଆସିଲେ ଏବଂ ତାଙ୍କଜାଗରେ ଗାଡ଼ିଟିକୁ ବନ୍ଦ କରି ନିର୍ଦ୍ୱନ୍ଦରେ ଘରକୁ ବାହାରିଗଲେ । ତା ପରେ ମଝିରେ ଆଉ ଥରେ ଚେନ୍ ଟଣା ଗଲା । ଆଗରେ ନଈ ପୋଲଟିଏ ଥିଲା; ଗାଁ ଗଣ୍ଡା ଥିଲା । ଦେଖା ଗଲା ଯେ କେତେକ ମତ୍ସ୍ୟଜୀବୀ ବିଜ୍ଞାନୀ କୈବର୍ତ୍ତ ନିଜ ନିଜର ନାଇଲନ ଜାଲ ଓ ଖାଳେଇମାନଙ୍କୁ କାନ୍ଧରେ ଝୁଲାଇ ଟ୍ରେନ୍‌ରୁ ଆନନ୍ଦରେ ଓହ୍ଲାଇ ପଡ଼ି ବିଡ଼ି ଖାଇ ଖାଇ ମହାଆନନ୍ଦରେ ନଈଆଡ଼େ ଚାଲିଲେ । ତା'ପରେ ଗାଡ଼ି କିଛି ସମୟ ଚାଲିଲା । ସୂର୍ଯ୍ୟ ଅସ୍ତ ହେଉଥାନ୍ତି । ବିଲମାନଙ୍କରୁ ପକ୍ଷୀମାନେ ନୀଡ଼ ଅଭିମୁଖେ ଭିଡ଼ି ଯାଉଥାନ୍ତି । କୃଷକମାନେ ହଳ ବଳଦ ଧରି ବିଲରୁ ବାହୁଡ଼ି ଯାଉଥାନ୍ତି । ଏବଂ ଟ୍ରେନ୍‌ଟି ତାର ଏକ୍ସପ୍ରେସ୍ ସୁଲଭ ଗତି ବା ମର୍ଯ୍ୟାଦା ରକ୍ଷାକରି ସିଟି ବଜାଇ ଦୌଡ଼ି ଚାଲିଥାଏ । ଦୁଇପଟେ ସାଇଁ ସାଇଁ ହୋଇ ପବନ ବହି ଯାଉଥାଏ ଆମ କାମେରାରେ ଜଣେ ବଂଶୀବାଦକ ବସିରହିଥିଲେ । ତାଙ୍କ ମଥା ସିନ୍ଦୁର ନଳୀ ମୁଣ୍ଡରେ ବାବୁରୀବାଳ, ଦେହରେ ସିଲ୍‌କ ପଞ୍ଜାବୀ ଓ ସୁଠାମ ରୀତିରେ ପିନ୍ଧା ଧୋତି । ସେ ବୋଧେ ତାଙ୍କ ଆଖିରେ କଜଳ ଲଗାଇଥିଲେ । ଏବଂ ତାଙ୍କ ଚେହେରାଟି ଖୁବ୍ ଆକର୍ଷଣୀୟ । କାନ୍ଧରେ ତାଙ୍କର ଚିତ୍ରିତ ବ୍ୟାଗଟିଏ । ତା' ଭିତରେ ଥିଲା ସାନ ବଡ଼ ହୋଇ ତିନୋଟି ବଂଶୀ । ସେଥିରୁ ସେ ସୁନ୍ଦରତମ ଓ ଦୀର୍ଘତମ ବଂଶୀଟି କାଢ଼ି ତାଙ୍କ ଓଠ ତଳେ ଧରି ମୋ ଆଡ଼କୁ ଚାହିଁ ସାମାନ୍ୟ

ହସି ମଧୁର କଟାକ୍ଷକଲେ। ମୁଁ ସଙ୍ଗେ ସଙ୍ଗେ ମୁଗ୍ଧ ହୋଇ କହିଲି ବଜାନ୍ତୁ ମହାଶୟ! ତନୁମନ ପୁଲକିତ ହେଉ। ଅନେକ ଦିନ ଧରି ଏଇ ଅପଦାର୍ଥ କର୍ଣ୍ଣଦ୍ୱୟ ବଂଶୀଧ୍ୱନି ଶୁଣି ନାହିଁ।

ବଂଶୀବାଦକ ବଂଶୀଟିକୁ ଓଠତଳୁ ଖସାଇ ରୁମାଲରେ ପୋଛୁ ପୋଛୁ କହିଲେ ଖୁବ୍ ମଧୁର ଗଳାରେ ଯା ଭିତରେ ବଂଶୀ ଶୁଣିବେ କିପରି ? ଏ ଯୋଉ କୋଳାହଳ! ଏମିତି ପରିସ୍ଥିତିରେ ଯାର ମର୍ଯ୍ୟାଦା ରହିବ ନାହିଁ।

ମୁଁ କହିଲି-ଠିକ୍ ଅଛି ଆଜ୍ଞା। ତା' ହେଲେବି ବଜାନ୍ତୁ। ସବୁ ଶବ୍ଦ ଆଉ ଧ୍ୱନିକୁ ଅତିକ୍ରମ କରି ଫେର୍ ଅନାହତ ବଂଶୀନାଦ ତ ଚାଲିଛି ? ତାକୁ ପୁଣି ଶୁଣିଲାବାଲା ଶୁଣୁଛନ୍ତି। ଭିତରର କାନପାତି ରହିଛନ୍ତି। ବଂଶୀନାଦ ଶୁଣିଲେ ସବୁ କୋଳାହଳ ଆପଣା ଛାଏଁ ନୀରବ ହୋଇଯିବ।

ବଂଶୀବାଦକ ଶିଳ୍ପୀସୁଲଭ ସ୍ମିତହାସ୍ୟ କରି ବଂଶୀଟିକୁ ଓଠ ପାଖେ ଧରିଲେ। ତାଙ୍କର ଓଠ ଦିଓଟି ଖୁବ୍ ସୁନ୍ଦର ଆଉ ସୁକୁମାର। ସାମାନ୍ୟ ପାନ ବୋଳରେ ତାହା ରକ୍ତିମ ଦିଶୁଥାଏ। ମନେହେଲା ଏଭଳି ଓଠ ନ ଥିଲେ କେହି ବଂଶୀବାଦକ ହୋଇ ପାରିବ ନାହିଁ। ଏଭଳି ଓଠର ସ୍ପର୍ଶ ନ ପାଇଲେ ବଂଶୀରୁ ସ୍ୱର ବାହାରିବ ନାହିଁ। ଭଦ୍ରଲୋକ ବଂଶୀରେ ସ୍ୱର ଦେଲେ। ଗୋଟିଏ ସ୍ୱର ବଂଶୀରୁ ବାହାରି ଢେଉ ଭଳି ନାଚି ନାଚି କାମେରା ଭିତରେ ସମସ୍ତଙ୍କ କାନକୁ ସ୍ପର୍ଶ କରି ଦେଇ ଝରକାବାଟେ ଦିଗବଳୟ ଆଡ଼କୁ ମୁହାଁଇଗଲା। ଏବଂ ଛୋଟ ଛୋଟ ସବୁଜ ଧାନ ଗଛଗୁଡ଼ିକୁ ନଚାଇ କୁଆଡ଼େ ଅଦୃଶ୍ୟ ହୋଇଗଲା। କାମେରା ଭିତରର ସମସ୍ତ କୋଳାହଳ ହଠାତ୍ ସ୍ତବ୍ଧ ହୋଇଗଲା। ତା' ପରେ ତୁହାକୁ ତୁହା ଗଭୀର ଓ ପ୍ରସାରିତ ବଂଶୀଧ୍ୱନିରେ ସମସ୍ତ କାମେରା ଥରି ଉଠିଲା। ଦୂରପଥର ସୌଖୀନ ଯାତ୍ରୀମାନେ ସମସ୍ତେ ଚକିତ ନୀରବ ହୋଇ ସେହି ମଧୁର ସ୍ୱରକୁ କର୍ଣ୍ଣ ବାଟେ ପାନ କରିବାକୁ ଲାଗିଲେ। କ୍ରମଶଃ ବଂଶୀବାଦକ ସୁରବିଳାସର ବହୁ ଜଟିଳ ଓ ଗଭୀର ଆବର୍ତ୍ତମାନ ସୃଷ୍ଟି କଲେ ଏବଂ ତନ୍ମୟହୋଇ ଧ୍ୱନିବିଭବର ମହା ମଧୁର କୌଶଳମାନ ଦେଖାଇ ଚାଲିଲେ। ପୃଷ୍ଠଭୂମିରେ ଏକ୍ସପ୍ରେସ ଟ୍ରେନ୍‌ର ଗତିଛନ୍ଦ ବେଶ ସମୁଚିତ ତାଳ ଦେଲାଭଳି ଲାଗୁଥାଏ। ଚମତ୍କାର ପରିବେଶଟିଏ କ୍ଷଣକେ ସୃଷ୍ଟି ହୋଇଗଲା। ଆଗରେ ସାନ ପୋଲଟିଏ। ସାମାନ୍ୟ ଗର୍ଜନ କରି ଟ୍ରେନ୍‌ଟି ତାକୁ ଟପିଗଲା। ବଂଶୀଧ୍ୱନି ଚାଲିଥାଏ ଅବ୍ୟାହତ। ଜଣେ ପ୍ରୌଢ଼ା ଭଦ୍ରମହିଳା ଆଖିବୁଜି ସେହି ଧ୍ୱନି-ଅମୃତକୁ ପାନ କରୁଥାନ୍ତି। ତାଙ୍କର ଅଭିଜ୍ଞ ସୁନ୍ଦର ମୁହଁଟି ପରେ ଧ୍ୱନିର ମୃଦୁ ଆଘାତ ଲାଗୁଥାଏ। ତା' ଫଳରେ ଅଦୃଶ୍ୟ ପାଖୁଡ଼ାମାନ କେତେ କଣ ଭାବାବେଶ ସୃଷ୍ଟି କରି ଥରି ଉଠୁଥାନ୍ତି। ମୁଁ ବିଭୋର ହୋଇ ସେହି ସୁର-ମୂର୍ଚ୍ଛିତା ଭାବବତୀଙ୍କର ମୁଖକମଳକୁ ଚାହିଁ ରହିଥାଏ ଏବଂ ବଂଶୀଧ୍ୱନି ଶୁଣୁଥାଏ।

ଲାଗୁଥାଏ— ସତେକି ଆମେମାନେ ସେତେବେଳେ କୋଉ ରସ ଲୋକରେ ପହଞ୍ଚି ଯାଇଛୁ। ଏକ ଆଲୋକିତ ମୁଗ୍ଧ ଭାବାବେଶରେ ମୋର ଜାଗତିକ ଚେତନ ସ୍ତିମିତ ହୋଇଯାଇଥିଲା।

ହଠାତ୍ ସ୍ଥୂଳକାୟ ଲୋକଟିଏ ଭଡ଼ ଭଡ଼ ହୋଇ ତା' ସିଟ୍‌ରୁ ଉଠି ଆମ ଆଡ଼କୁ ଜୋରରେ ମୁହାଁଇଆସିଲା। ଏବଂ ମୋ ମୁଣ୍ଡଉପରେ ଝୁଲୁଥିବା ଚେନ୍‌ଟିକୁ ଟାଣି ଦେଲା ! ତାର ପୃଥୁଳ ପେଟଟି ମୋ ମୁହଁକୁ ଧକ୍‌କାଟିଏ ଦେଲା। ହଠାତ୍ ଗାଡ଼ିଟା ଏକ ବିକୃତ ଶବ୍ଦ କରି କିଛି ବାଟରେ ଅନିଚ୍ଛୁକ ଭାବେ ଅଟକିଗଲା। ମୋଟା ଲୋକଟି ଦୁଆର ମୁହଁରେ ବାଡ଼ା ଧରି ଠିଆହୋଇ ବାହାରକୁ ଚାହିଁ ହାତ ହଲେଇ ଖୁବ୍ ଚିଲେଇଲା—ଆରେ ଶଳାମାନେ ଚଞ୍ଚଳ ଆସବେ !! ତିନୋଟି ଲୋକ ତିନୋଟି ବୋଝ ଟୋକେଇ ଆଣି ଗାଡ଼ି ଭିତରେ ରଖିଲେ। ମୋଟା ଲୋକଟି ଟୋକେଇଗୁଡ଼ାକୁ ତଡ଼ବଡ଼ କରି କାମେରା ଭିତରକୁ ଝିଙ୍କି ଆଣିଲା। ଗୋଟାଏ ଟୋକେଇ ସେହି ବଂଶୀବାଦକଙ୍କ ଗୋଡ଼ରେ ଚାପିହୋଇ ଗଲାରୁ ସେ ଚିତ୍କାରକରି ଉଠିଲେ-ଓହୋ ! ମଲି ମଲି। ମୋଟା ଲୋକଟି ତାଙ୍କ ପାଦ ଉପରୁ ଟୋକେଇ ଭୁସ କିନା ଖସାଇଆଣି କହିଲା ଟିକିଏ ସେଣିକି ଘୁଞ୍ଚିବସ ବାବୁ ! ଦେଖୁଛ ପରିବା ଟୋକେଇଗୁଡ଼ାକ। ଟିକିଏ ଘୁଂଚିଯାଉନ। ଆଛାଲୋକ ତୁମେ। ତୁମକୁ ଏଇଠି ବଇଁଶୀ ବଜେଇବାକୁ ଥିଲା ?

ତା'ପରେ ଟ୍ରେନ୍ ଚାଲିଲା। ମୋଟା ଲୋକଟି ତାର କଲରା ଓ କାଙ୍କଡ଼ ଟୋକେଇ ଗୁଡ଼ିକ ଜଗିକରି ସେଇ ବଂଶୀବାଦକ ପାଖେ ଖୁନ୍ଦିହୋଇ ବସିରହିଲା। ବଂଶୀବାଦକ ନୀରବରେ ତାଙ୍କ ପାଦ ଟେକି ଦେଖୁଥିଲେ। ତାଙ୍କର ଗୋଟିଏ ଅଙ୍ଗୁଠିରୁ ସାମାନ୍ୟ ରକ୍ତ ବୋହୁଥିଲା। ତାଙ୍କ ଉଦ୍ଦେଶ୍ୟରେ ମୁଁ ପଚାରିଲି, ଆଜ୍ଞା ! କ'ଣ ଆଙ୍ଗୁଠିଟା କଟିଯାଇଛି ? ରକ୍ତ ବୋହୁଛି ? ତାଙ୍କୁ କୁହାଇ ନ ଦେଇ ପରିବା ବେପାରୀ ମୋଟା ଲୋକଟି କହିଲା-କି ରକ୍ତ ହୋ ? ଟ୍ରେନ୍‌ରେ ଆସିଲ ଏମିତି କେତେଜାଗା ଛିଣ୍ଡିବ, ରକ୍ତ ବୋହିବ। ଆମ ଦେହରୁ କମ ଜାଗା ଏ ଟ୍ରେନରେ ଛିଣ୍ଡେ ? ସେ କିଛି ନୁହେଁ, ଛାଆଁକୁ ଶୁଖିଯିବ।

ମୋ ମନ ଭୟରେ ଉତ୍କ୍ଷିପ୍ତ ହୋଇଯାଇଥାଏ। ମାତ୍ର ଭୟ ଓ ନିରାଶାରେ ମୁଁ କାହାକୁ କିଛି କହୁ ନ ଥାଏ। ଏହି ସମୟରେ ଟି.ଟି. ଆଇ. ଆସିଲେ। ସେ ଜଣେ ଦୁଇଜଣଙ୍କ ଟିକେଟ ଯାଞ୍ଚକରି ତୁନିହୋଇ ମୋ ପାଖେ ବସିପଡ଼ିଲେ। ମୁଁ ପଚାରିଲି-ଆଜ୍ଞା ! ଟିକେଟ ନ କରି ଏତେ ଲୋକ ଯାଉଛନ୍ତି। ଏତେ ଥର ଚେନ୍‌ଟଣା ହେଉଛି-ଆପଣମାନେ କେହି କିଛି କରୁନାହାନ୍ତି ? ସେ କହିଲେ, ଆଉ କିଛି କରିପାରିବୁ ନାହିଁ। ଏମାନେ ସବୁଦିନେ ଏମିତି କରୁଛନ୍ତି। ଥରେ ଦି' ଥର ଧରିବାରୁ ଏମାନେ ମଝିରେ ଚେନ୍ ଟାଣି ଗାଡ଼ି ଅଟକାଇ ଦଳବଦ୍ଧ ଭାବେ ଆସି

ଆମକୁ ମାଡ଼ ଚଢ଼େଇଲେ। ଆମେ ନିରସ୍ତ୍ର ହୋଇ ଗଲୁଣି। ଯାହା ହେଉଛି ହେଉ, ଆମର ଆଗ ପ୍ରାଣ ରହୁ।

ତା'ପରେ ସେଇ କଥା ନେଇ ପାସେଞ୍ଜରମାନଙ୍କ ଭିତରେ ଖୁବ୍ ଉତ୍ତ୍ୟକ୍ତ ସ୍ୱରରେ କଥାବାର୍ତ୍ତା ହେଲା। ସମସ୍ତେ ବିରକ୍ତି ଓ ବିକ୍ଷୋଭ ପ୍ରକାଶ କଲେ କେହି କେହି ସରକାରଙ୍କୁ ଦୋଷ ଦେଲେ। କେହି ନାଗରିକମାନଙ୍କୁ, କେହିକେହି ଭାରତବର୍ଷର ପରମ୍ପରାକୁ, କେହି ବା ରେଳବାଇର କର୍ତ୍ତାମାନଙ୍କୁ ଦୋଷ ଦେଲେ।

ଏଇ ସମୟରେ ଜଣେ ପ୍ରାୟ ତିରିଶି-ବତିଶି ବର୍ଷର ଯୁବକ ଉତ୍ତ୍ୟକ୍ତ ହୋଇ କହିଲେ-ଇନ୍ଦିରା ଗାନ୍ଧୀଙ୍କ ଜରୁରୀ ପରିସ୍ଥିତି ଖୁବ୍ ଭଲ ଥିଲା। ଏ ଦେଶ ଗଣତନ୍ତ୍ର ପାଇଁ ଯୋଗ୍ୟ ନୁହଁ। ଏଠି ବେନିଭୋଲେଣ୍ଟ ଡିକ୍‌ଟେଟରସିପ୍ ଦରକାର। ଜରୁରୀପରିସ୍ଥିତି ବେଳେ ଏସବୁ ହେଉଥିଲା କି? ସମସ୍ତେ ଏକ ସ୍ୱରରେ କହିଲେ-ନା-ନା। ସେଇଠୁ ସେ କହିଲେ- ଆଉ ଥରେ ଜରୁରୀ ପରିସ୍ଥିତି ଜାରି ହେଉ। ତା' ନ ହେଲେ ଆଉ ରକ୍ଷା ନାହିଁ। ସମସ୍ତେ ମଧ୍ୟ ଏକ ସ୍ୱରରେ କହିଲେ-ନିଶ୍ଚୟ, ନିଶ୍ଚୟ।

ତା'ପରେ କିଛି ସମୟ ଚୁପ୍‌ଚାପ କଟିଲା। ଟ୍ରେନ ଚାଲିଥାଏ। ଏଇ ସମୟରେ ଆଗରେ ଛୋଟ ଷ୍ଟେସନଟିର କ୍ଷୀଣ ଆଲୋକ ଦେଖାଗଲା। ସେହି ଭଦ୍ରଲୋକ ଆମ ପାଖରୁ ହଠାତ୍ ଉଠି କାମେରାର ଅନ୍ୟ ଦ୍ୱାର ପାଖକୁ ଚାଲିଗଲେ। ଠିକ୍ ପରେ ପରେ ଟ୍ରେନଟା ଘସର ଘସର ଶବ୍ଦ କରି ରହି ରହି ଆସିଲା ଓ ହଠାତ୍ ନିସ୍ତବ୍ଧ ହୋଇ ରହିଗଲା। ନିଶ୍ଚୟ କିଏ ଜଣେ ଚେନ୍ ଟାଣିଲା। ସେତେବେଳକୁ ଚାରିପଟ ଅନ୍ଧାର। ମୁଁ ଲକ୍ଷ୍ୟକରି ଦେଖିଲି-ତିନି ଚାରିଜଣ ଲୋକ ଓହ୍ଲାଇ ଗଲେ ଏବଂ ଖୁବ୍ ତୀକ୍ଷ୍ଣ ଭାବେ ନିରୀକ୍ଷଣ କରି ଚିହ୍ନିଲି ଯେ ସେହି ଦଳ ଭିତରେ ସେହି ଜରୁରୀ ପରିସ୍ଥିତିର ସ୍ତାବକ ଭଦ୍ରଲୋକ ବି ଚାଲିଥିଲେ। ତାଙ୍କ ହାତର ପ୍ଲାଷ୍ଟିକ ବ୍ୟାଗ୍‌ଟି ସ୍ପଷ୍ଟ ଦିଶୁଥିଲା।

ବଂଶୀବାଦକ ଭଦ୍ରଲୋକଟି ପରିବା ବେପାରୀ ମୋଟା ଲୋକଟିର ଟାପରେ ଗୋଟିଏ କୋଣକୁ ଆଉଜି କୁଙ୍କୁରି କାଙ୍କୁରି ହୋଇ କାକୁସ୍ଥ ଢଙ୍ଗରେ ବସିଥିଲେ। ତିନୋଟି କଲରା ଓ କାଙ୍କଡ଼ ଭର୍ତ୍ତି ଟୋକେଇ ପାଇଖାନାର ରାସ୍ତାକୁ ଅବରୋଧ କରି ଥୁଆ ଯାଇଥିଲା। କେହି ଜଣେ କାଙ୍କଡ଼ଲୋଭୀ ପରିବା ବେପାରୀକୁ କାଙ୍କଡ଼ର ଦର ପଚାରୁଥିଲେ। ସେ କହୁଥିଲା-କିଲୋ ଆଠ ଟଙ୍କା।

❋❋

# ଜୀବନ ହେଉ ସହଣୀୟ : ମଧୁମୟ

ଆମର ଭାଷା କିମ୍ବା ବ୍ୟବହାର କିପରି ଅନ୍ୟମାନଙ୍କ ମନରେ ଆଘାତ ଦିଏ, ତାହା ଆମେ ଜାଣୁନା। କିନ୍ତୁ ସେଗୁଡ଼ିକର ବାସ୍ତବ ଉପଯୋଗ ଯେ କିପରି ଅନ୍ୟମାନଙ୍କୁ ସୁଖୀ କରିବାରେ ସାହାଯ୍ୟ କରେ ତାହା ଆମେ ବେଶ୍ ଜାଣୁ। ଆମକୁ ଦୁଇଟି ବିକଳ୍ପ ଚିନ୍ତାଧାରା ମଧ୍ୟରୁ ଗୋଟିକୁ ବାଛିବାକୁ ପଡ଼ିବ। ତା' ହେଉଛି ସମାଜର ଶାନ୍ତି ଓ ସୌହାର୍ଦ୍ଦ୍ୟ ପ୍ରତିଷ୍ଠା କରିବା ନା ଦୁଃଖ ଦୈନ୍ୟର ପ୍ରସାର ଘଟାଇ ଜୀବନକୁ ଆହୁରି ଦୁଃସହ କରିବା ?

ଅତୀତର ଏକ ଅଲିଭା ସ୍ମୃତି ବି ମୋର ମନେ ପଡ଼େ। ଏକ ଯାତ୍ରୀବାହୀ ବସ୍‌ରେ ମୁଁ ନିର୍ଦ୍ଧାରିତ ଗନ୍ତବ୍ୟ ସ୍ଥାନକୁ ଯାଉଥିଲି। ବସଟି ବାସ୍ତବରେ ଖୁବ୍ ଭିଡ଼ ଥିଲା। କିଛି ସମୟ ପରେ ବସ୍‌ଟି ସର୍ପିଳ ଗତିରେ ଚାଲିବା ଆରମ୍ଭ କଲା। ଇତ୍ୟବସରରେ ମୋର ଚକ୍ଷୁ ହଠାତ୍ ଅଟକିଗଲା ଏକ ବୃଦ୍ଧ ଯାତ୍ରୀଙ୍କ ଉପରେ। ସେ ତାଙ୍କର ସମସ୍ତ ଶକ୍ତି, ସାମର୍ଥ୍ୟ ଖଟାଇ ଯେପରି ଅସହାୟ ଭାବେ ବସ୍‌ର ରଡ଼କୁ ଧରି ଛିଡ଼ା ହୋଇଥିଲେ ତାହା ଦେଖି ଖୁବ୍ ଦୁଃଖ ଲାଗିଲା। ସମୟେ ସମୟେ ସେ ତାଙ୍କର ଛାତିରେ ବେଦନା ଅନୁଭବ କରୁଥିବା ମଧ୍ୟ ଜଣାଯାଉଥିଲା। ତାହା ଦେଖି ମୋ ମନରେ ଏକ ସ୍ୱତଃ ଅନୁକମ୍ପା ଜାତ ହେଲା। ମୁଁ ମୋର ଭବାବେଗକୁ ସମ୍ଭାଳି ନପାରି ତାଙ୍କୁ କୌଣସି ଏକ ସ୍ଥାନରେ ବସାଇଦେବା ଉଦ୍ଦେଶ୍ୟରେ ଝରକାପାଖରେ ବସିଥିବା ଅପେକ୍ଷାକୃତ କମ୍ ବୟସର ଏକ ଯାତ୍ରୀଙ୍କୁ ସାମାନ୍ୟ ଘୁଞ୍ଚିବାପାଇଁ ଅନୁରୋଧ କଲି। କିନ୍ତୁ ସେ ବ୍ୟକ୍ତି ଉତ୍ତରରେ କହିଲେ ଯେ ''ଆପଣ ନିଜକଥା ନିଜେ ବୁଝନ୍ତୁ''। ତାଙ୍କର ଏହି ଉତ୍ତରରେ କ୍ରୋଧ ଓ ଅହମିକାର ଏକ ମିଶ୍ରିତ ଭାବ ପରିଲକ୍ଷିତ ହେଉଥିଲା। ଏହା ଶୁଣି ମନଟା ଦୁଃଖରେ ଦବିଗଲା। ବସ୍‌ରେ ଆସନ ଗ୍ରହଣ କରି ବସି ଥିବା ସମସ୍ତ ଯାତ୍ରୀଙ୍କ ମଧ୍ୟରେ ସ୍ୱାର୍ଥପରତାର ମନୋଭାବ ବେଶ୍ ପରିସ୍ଫୁଟ ହେଉଥିଲା। ମନେ ହେଉଥିଲା ସତେ ଯେପରି ଆଉ କାହାର ଅଧିକାର ନାହିଁ। ବାସ୍ତବରେ ଏହା ଏକ ପରିତାପର ବିଷୟ। ବୃଦ୍ଧଯାତ୍ରୀଙ୍କୁ ସାହାଯ୍ୟ କରିପାରି ନଥିବାରୁ ମୁଁ ମନେ ମନେ ବେଶ୍ ଲଜ୍ଜିତ ହେଉଥିଲି। କାରଣ ମୁଁ ନିଜେ ମଧ୍ୟ ସିଟ୍‌ଟିଏ ନପାଇ ଠିଆହୋଇ ଯାଉଥିଲି।

ବସ୍‌ର ଗତି ଯେତିକି କ୍ଷିପ୍ରରୁ କ୍ଷିପ୍ରତର ହେବାକୁ ବସିଲା ମୋ ମନରେ ବିଭିନ୍ନ ଅତୁଆ ତତୁଆ ପ୍ରଶ୍ନମାନ ଉଙ୍କିମାରି ମନଟାକୁ ସେତିକି ଆନ୍ଦୋଳିତ କରିବାକୁ ଆରମ୍ଭ କଲା।

ସେ ଭଦ୍ର ବ୍ୟକ୍ତିଙ୍କ କଟୂକ୍ତି ଯେ ସମ୍ପୂର୍ଣ୍ଣ ଅସାମାଜିକ ତଥା ନିର୍ବୋଧତାର ପରିଚାୟକ ଏଥିରେ ସନ୍ଦେହର ଅବକାଶ ନାହିଁ। ଯଦି ସେ ଉକ୍ତ ବୃଦ୍ଧଯାତ୍ରୀଙ୍କୁ ସୌଜନ୍ୟ ଦୃଷ୍ଟିରୁ ବସିବାପାଇଁ ସ୍ଥାନ ଦେଇଥାନ୍ତେ ତାଙ୍କର ବ୍ୟାଧିଟା ଯେ ସମ୍ପୂର୍ଣ୍ଣ ରୂପେ ଭଲ ହୋଇଥାନ୍ତା ତା ନୁହେଁ, ବରଂ ସେ ସାମାନ୍ୟ ଉପଶମ ଲାଭ କରିଥାନ୍ତେ। ଫଳରେ ଦୁଇଜଣଙ୍କ ମଧ୍ୟରେ କେତେକ ମୁହୂର୍ତ୍ତ ପାଇ ଏକ ସ୍ନେହ ସୌହାର୍ଦ୍ଦ୍ୟର ଅପୂର୍ବ ମିଳନ ଘଟି ଥାଆନ୍ତା। କିନ୍ତୁ ମୁଁ ସମ୍ପୂର୍ଣ୍ଣ ନିରୁପାୟ ଥିଲି। ତା'ପରେ କ'ଣ ହେଲା ମୁଁ ଜାଣିନି, ଖାଲି ଏତିକି ଜାଣିବାକୁ ପାଇଲି ଯେ ସେ ବୃଦ୍ଧଯାତ୍ରୀ ହୃଦ୍‌ରୋଗରେ ପୀଡ଼ିତ।

ମନୁଷ୍ୟ ନିଜର ସ୍ୱାର୍ଥ ଓ ସୁବିଧାକୁ ଜାବୁଡ଼ି ଧରିବା କ'ଣ ଏକ ସହଜାତ ପ୍ରବୃତ୍ତି? ସମୟ ତଥା ସ୍ଥଳ ବିଶେଷରେ ଅନ୍ୟକୁ ସାହାଯ୍ୟ ତଥା ସହାନୁଭୂତି ପ୍ରଦର୍ଶନ କରିବା କ'ଣ ଉଚିତ୍ ନୁହେଁ? ଗଣଜୀବନରେ ଶିଷ୍ଟାଚାର, ସାଧାରଣ ବିଚାରଧାରା, ଦୟା, ତିତିକ୍ଷା ପ୍ରଭୃତି ମହତ ଗୁଣଗୁଡ଼ିକୁ ଭୁଲିଯିବା ଉଚିତ କି? ଏହିପରି ଅନେକ ପ୍ରଶ୍ନବାଚୀ ମୋ ମନରେ ଚିନ୍ତାଧାରାକୁ ବିପର୍ଯ୍ୟସ୍ତ କରିବାକୁ ଲାଗିଲା। ଫଳରେ ମୁଁ ଜୀବନର ବାସ୍ତବ ତଥା ନିଗୂଢ଼ ତତ୍ତ୍ୱ ଖୋଜି ବସିଲି।

ପ୍ରତ୍ୟେକ ବ୍ୟକ୍ତିଙ୍କର ପାରିବାରିକ ଜୀବନରେ ପ୍ରତ୍ୟେକ ଦିନ କେତେ ଯେ ଘଟଣା ଘଟିଯାଉଛି ତାର ଇୟତ୍ତା ନାହିଁ। ଏହି ଘଟଣାଗୁଡ଼ିକର ଜୁଆର ଭଟ୍ଟାରେ କାହାର ଜୀବନତନ୍ତ୍ରୀରେ କେତେ ଯେ ସାମୂହିକ ଝଡ଼ ଓ ଝଙ୍କାର ଉଦୟ ହୁଏ ତା'ର ହିସାବ ରଖିବା ମଧ୍ୟ କଷ୍ଟକର। ଇ. ଏମ୍. ଫୋର୍ଷ୍ଟର ଯଥାର୍ଥରେ କ୍ଷୁବ୍ଧ ହୋଇ କହିଛନ୍ତି ଯେ "ମନୁଷ୍ୟ ହେଉଛି ଏକ ସ୍ୱାର୍ଥାନ୍ୱେଷୀ ତଥା ଅସାମାଜିକ ପ୍ରାଣୀ"। ଆଜିକାଲି ଆମେ ସାମାନ୍ୟ ସାମାନ୍ୟ କଥାରେ ଏପରି ସ୍ୱାର୍ଥାନ୍ଧ ହୋଇ ପଡ଼ିଛୁ ଯେ ଆମେ ଆମର ବନ୍ଧୁ ଓ ସ୍ୱପରିଜନଙ୍କ ଅଭାବ ଅସୁବିଧା ପ୍ରତି ସମ୍ପୂର୍ଣ୍ଣ ଉଦାସୀନ ହୋଇପଡ଼ିଛୁ। ସେମାନଙ୍କ ଅଭାବ ଅସୁବିଧା ଦୂରକରିବା ତ ଦୂରର କଥା, କଥାଭାଷା ମାଧ୍ୟମରେ ସେମାନଙ୍କ ମନରେ କଷ୍ଟଦେବାକୁ ମଧ୍ୟ ଆମେ ଶଙ୍କି ଯାଉନୁ। ଏହାଛଡ଼ା ସେଥିପାଇଁ ସତର୍କତା ଅବଲମ୍ବନ କରିବାପାଇଁ ମଧ୍ୟ ଆମର ନଜର ନାହିଁ। ଆମମାନଙ୍କ ମନମଧ୍ୟରେ ଅହମିକା ତଥା ଆତ୍ମାଭିମାନ ବେଶ୍ ବସା ବାନ୍ଧିଛି। ଆମର ଅହମିକା କିମ୍ବା ଆତ୍ମାଭିମାନରେ ସାମାନ୍ୟ ଆଘାତ ଆସିଲେ ଆମର ଧୈର୍ଯ୍ୟଚ୍ୟୁତି ଘଟେ। ଅନ୍ୟମାନଙ୍କ କାର୍ଯ୍ୟକଳାପ ଆମର ମନୋପଯୋଗୀ ନହେଲେ ଆମେ ସଙ୍ଗେ ସଙ୍ଗେ ଉତ୍‌କ୍ଷିପ୍ତ ହୋଇପଡୁ। ଆମର ଭାବପ୍ରବଣତା ତଥା ଆତ୍ମାଭିମାନ ଆମର ମାନସପଟରେ ଏପରି ପ୍ରଭାବ ପକାଇଛି ଯେ ଆମର ସର୍ବସ୍ୱ ହୋଇପଡ଼ିଛି– ଏକ ବିରାଟ ସ୍ଫିତକାୟ "ମୁଁ"। ଫଳରେ ଅନ୍ୟମାନଙ୍କ ଦୁଃଖଦୁର୍ଦ୍ଦଶା ପ୍ରତି ଆମେ ଦୃକ୍‌ପାତ ମଧ୍ୟ କରୁନୁ। ଲଙ୍ଗ୍ ଫେଲୋଙ୍କ ଉକ୍ତିରେ "ଆମେ ଯଦି ଆମ ଶତ୍ରୁମାନଙ୍କ ଜୀବନ ପର୍ଯ୍ୟାଲୋଚନା କରୁ ତେବେ ଆମେ ସ୍ୱତଃ ଦେଖିବାକୁ ପାଉ

ଯେ ଶତ୍ରୁତା ପରିହାର କରିବା ନିମନ୍ତେ ପ୍ରତ୍ୟେକ ବ୍ୟକ୍ତିଙ୍କ ଜୀବନରେ ଯେପରି ଦୁଃଖ ଓ ନିର୍ଯ୍ୟାତନାର ଏକ ଅଭୁଲା କାହାଣୀ ଭରି ରହିଛି।'' ସମାଜର ପ୍ରତ୍ୟେକ ବ୍ୟକ୍ତି ଜୀବନ ସଂଗ୍ରାମରେ ଆଜି ଯେଉଁ ଅସି ଉତ୍ତୋଳନ କରିଛନ୍ତି– ତାହା ଯେ କେତେ ଭୟଙ୍କର ଓ କଷ୍ଟଦାୟକ ତାହା ଆମେ ଜାଣୁନା। ସେମାନଙ୍କର ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ଆମ୍ଭମାନଙ୍କର ଆଚାର ବ୍ୟବହାର ଯଦି ଆଚରଣ ଶୁଦ୍ଧ ନ ହୁଏ ଅଥଚ ସେମାନଙ୍କ ମନରେ କଷ୍ଟ ଦେବାର ସାହାଯ୍ୟ କରେ ସେମାନଙ୍କ ଏହି ଅବିରାମ ଜୀବନସଂଗ୍ରାମ ଯେ ବ୍ୟାହତ ହେବ ଏଥିରେ ସନ୍ଦେହ କରିବାର କ'ଣ ଅଛି? ବରଂ ସେମାନଙ୍କ ପ୍ରତି ଦୟା, ଶ୍ରଦ୍ଧା ତଥା ସହନଶୀଳତା ପ୍ରଦର୍ଶନ କରାଗଲେ ସେମାନଙ୍କର ଏହି କଷ୍ଟକର ଜୀବନସଂଗ୍ରାମ କେତେ ସହଜ, ସରଳ ତଥା ଅନାୟାସକର ହୋଇପାରନ୍ତା? ଆମ୍ଭେମାନେ ସାମାନ୍ୟ ସାମାନ୍ୟ କଥାରେ କିପରି ଆମ ନିଜ ଲୋକମାନଙ୍କୁ ଭୁଲ ବୁଝି ବସୁ ମୁଁ ତାହାର ଏକ ଦୃଷ୍ଟାନ୍ତ ଦେଉଛି– ଆମ ଘରକୁ ମୋର ଗୋଟିଏ ସାଙ୍ଗ ଆସିବେ ବୋଲି ମୋତେ କଥା ଦେଇଥିଲେ। ମୁଁ ତାଙ୍କ ସହ ସାକ୍ଷାତ କରିବା ଉଦ୍ଦେଶ୍ୟରେ ମୋର ସମସ୍ତ କାର୍ଯ୍ୟକ୍ରମ ବାତିଲ କରି ତାଙ୍କ ଅପେକ୍ଷାରେ ଅନ୍ୟତ୍ର କେଉଁଆଡ଼େ ଗଲି ନାହିଁ; କିନ୍ତୁ ଦୁଃଖର ବିଷୟ ଯେ ସେ ନିର୍ଦ୍ଧାରିତ ସମୟରେ ଆସିଲେ ନାହିଁ। ମୁଁ ପରଦିନ ତାଙ୍କୁ ଭେଟି ସେ ତାଙ୍କ ଜବାବ ରକ୍ଷାକରି ପାରିନଥିବାରୁ ତାଙ୍କୁ ଦୋଷାରୋପ କଲି। ସେ କିନ୍ତୁ ଦୁଃଖରେ ଉତ୍ତର ଦେଲେ ଯେ ତାଙ୍କ ମାଆଙ୍କ ବେମାର ଯୋଗୁଁ ସେ ମୋତେ ଭେଟିବାରେ ବିରତ ହେଲେ, ମୁଁ କିନ୍ତୁ ତାଙ୍କର ବ୍ୟକ୍ତିଗତ ଅସୁବିଧା ପ୍ରତି ଧ୍ୟାନ ନଦେଇ ତାଙ୍କ ଉପରେ ବିଶେଷ ରାଗି ଯାଇଥିଲି। ଏହା କ'ଣ ମୋ ପକ୍ଷେ ଉଚିତ ଥିଲା କି? ଆମ ଜୀବନରେ ଏହିପରି ଅନେକ ଛୋଟ ଛୋଟ ଘଟଣା ଘଟିଯାଉଛି– ତା'ର ହିସାବ ରଖିବା କଷ୍ଟକର। ମାର୍କ ଟ୍ୱାଇନସ୍‌ଙ୍କ ଭାଷାରେ ''ମନୁଷ୍ୟ ଜୀବନରେ ଏହିପରି ଅଗଣିତ ଛୋଟ ଛୋଟ ଘଟଣା ଅବିରାମ ଅନୁକୂଳ ଓ ପ୍ରତିକୂଳ ସ୍ରୋତ ବୋହି ଚାଲିଛି।'' ଆମର କାମ ହେଲା– ସେଗୁଡ଼ିକୁ ଅନୁକୂଳ ସ୍ରୋତରେ ପରିଣତ କରିଦେଇ ଜୀବନକୁ ସୁନ୍ଦର ଓ ମଧୁର କରିବା।

ପାରିବାରିକ ଜୀବନରେ ମଧ ଉକ୍ତ ଘଟଣାଗୁଡ଼ିକର ପୁନରାବୃତ୍ତି ସଚରାଚର ଦେଖିବାକୁ ମିଳିଥାଏ। ଘରର ଗୃହିଣୀ ଯେତେବେଳେ ନିଜର ସମସ୍ତ କାର୍ଯ୍ୟ ସମାପ୍ତ କରି ନିଜ ସ୍ୱାମୀଙ୍କ ଆଗମନକୁ ସହାନୁଭୂତି ତଥା ଦରଦଭରା ପଦିଏ କଥା ପାଇଁ ପ୍ରତୀକ୍ଷା କରି ବସିଥାଆନ୍ତି– ସେତେବେଳେ ସ୍ୱାମୀ ଅଫିସରୁ ଆସି ଘର ଭିତରର ବାସ୍ତବ ସମସ୍ୟାମାନ ଅନୁଶୀଳନ ନ କରି ନିଜ ଗୃହିଣୀଙ୍କ ଉପରେ ଅକାରଣେ ବିଶେଷଭାବେ କ୍ରୋଧାନ୍ୱିତ ହୋଇପଡ଼ନ୍ତି। ଫଳରେ ଗୃହିଣୀ ଘରର ଗୋଟିଏ କୋଣରେ ବସି ନିଜକୁ ଅଭିଶପ୍ତା ବୋଲି ବିଚାରି କାନ୍ଦିବସନ୍ତି। ସେମାନଙ୍କର ଆତ୍ମପ୍ରତ୍ୟୟ ଯେ

ସ୍ୱାମୀମାନଙ୍କର ଏପରି ମନୋଭାବ ଓ ବ୍ୟବହାରରେ କ୍ଷୁର୍ଣ୍ଣହୁଏ, ସ୍ୱାମୀମାନେ ତାହା ବୁଝି ପାରନ୍ତି ନାହିଁ। ସେମାନେ ନୈରାଶ୍ୟରେ ଭାଙ୍ଗିପଡ଼ନ୍ତି। ସାଂସାରିକ ଜୀବନରେ ସେମାନଙ୍କର ଉଦାସୀନତା କ୍ରମଶଃ ବୃଦ୍ଧି ପାଏ। ଫଳରେ ପାରିବାରିକ ଜୀବନରେ ଦେଖାଦିଏ ହାହୁତାଶର ଏକ ଅଗ୍ନି ପରୀକ୍ଷା।

ବିଚାରଧାରାରେ ସାମାନ୍ୟତମ ବିଭ୍ରାଟ ଘଟିଲେ ଜୀବନରେ କି ପଟ ପରିବର୍ତ୍ତନ ଘଟେ ତାହା ସହଜରେ ଅନୁମେୟ। ଆମେ ଛୋଟ ଛୋଟ କଥାରେ ରାଗି ଅନ୍ୟମାନଙ୍କ ମନରେ ଆଘାତ ଦେଲେ ଅନାଗତ ଭବିଷ୍ୟତର ରୂପରେଖ କ'ଣ ହେବ ? ତାହା ଆମର ଦୂରଦୃଷ୍ଟି ଓ ଅନୁଚିନ୍ତା ଉପରେ ଯଥେଷ୍ଟ ନିର୍ଭର କରେ। ସମାଜ ପ୍ରତି ଆମର ଉପରୋକ୍ତ ମନୋଭାବର ପରିବର୍ତ୍ତନ ନ ଘଟିଲେ ଆମ୍ଭମାନଙ୍କ ମନ ମଧ୍ୟରୁ ଶିଷ୍ଟାଚାର, ଦୟା ତଥା ବାସ୍ତବ ଚିନ୍ତାଧାରା ପ୍ରଭୃତି ଜୀବନର ମହତ୍ ଗୁଣଗୁଡ଼ିକ ଅଚିରେ ଲୋପ ପାଇବ।

ସମାଜ ପ୍ରତ୍ୟେକ ବ୍ୟକ୍ତି ଆଜି ନୈରାଶ୍ୟ, ଦୁଃଖ, ନିର୍ଯ୍ୟାତନା ତଥା ବିଫଳତାରେ ବେଶ୍ ଭାରାକ୍ରାନ୍ତ। ଏପରି ଦୁଃସମୟରେ ସେମାନଙ୍କର ଦୁଃଖ ଓ ନୈରାଶ୍ୟର ଗତିକୁ ଆମେ କାର୍ଯ୍ୟକଳାପ ଜରିଆରେ ତ୍ୱରାନ୍ୱିତ କରିବା ବାଞ୍ଛନୀୟ ନୁହେଁ।

ଆତ୍ମସମୀକ୍ଷା କରିବାର ସମୟ ଆଜି ଉପଗତ। ଆମେ ସମସ୍ତେ ଆମ ଦୋଷ ତ୍ରୁଟିକୁ ପରିମାର୍ଜିତ କରି ସମାଜକୁ ଏକ କଲ୍ୟାଣମୟ ଭବିଷ୍ୟତ ଆଡ଼କୁ ଆଗେଇ ନେବାପାଇଁ ଶପଥ ନେବା ଉଚିତ। ସମୟର କରାଳ ସ୍ରୋତରେ ଆମେ ଯେ ଏହିପରି ଦୟନୀୟ ଅବସ୍ଥା ତଥା ପରିସ୍ଥିତିର ସମ୍ମୁଖୀନ ନହେବୁ ତା' କିଏ କହିବ ? କିନ୍ତୁ ସେତେବେଳେ ଆମକୁ ସହାନୁଭୂତି ତଥା ଅନୁକମ୍ପା ପ୍ରଦର୍ଶନ କରିବାକୁ କେହି ନଥିବେ। ସେଥିପାଇଁ ଆମକୁ ସଜାଗ ହେବାକୁ ପଡ଼ିବ। ନଚେତ ସମାଜରେ ହାର୍ଦ୍ଦିକ ବିକାଶ ସବୁଦିନ ପାଇଁ ଆମ୍ଭମାନଙ୍କ ନିକଟରେ ଏକ ବିରାଟ ପ୍ରଶ୍ନବାଚୀ ରୂପେ ରହିଯିବ।

❋❋

# ପରିବାର ହିଁ ପ୍ରଥମ

ମନୁଷ୍ୟ ଜୀବନରେ ଯଦି ସବୁଠାରୁ ବଡ଼ ସମସ୍ୟାଟି କ'ଣ ବୋଲି କେହି ପଚାରେ ଆପଣ କ'ଣ କହିବେ ? ଆପଣ ହୁଏତ କହିବେ ଦାରିଦ୍ର୍ୟ– କେହି କହିବ ରୋଗ କେହି କହିବ ମୋଟାମୋଟି ଦୁଃଖ । ମୁଁ କିନ୍ତୁ ଭାବେ ମଣିଷ ଜୀବନର ସବୁଠାରୁ ବଡ଼ ସମସ୍ୟା ହେଉଛି– ସେ କେମିତି ଅପର ଲୋକଟି ସଙ୍ଗେ ମିଳିମିଶି ଚଳିବ । ଅପର ଲୋକ ହେଲେ ତା' ବାପା, ମାଆ, ଭାଇଭଉଣୀ, ସ୍ତ୍ରୀ, ପୁଅଝିଅ, ପାଖ ପଡ଼ୋଶୀ ଏମିତି ଏମିତି ଯେତେ ଯିଏ । ଯଦି ଆମକୁ ଏମାନଙ୍କ ସଙ୍ଗେ ଚଳିବାକୁ ପଡୁ ନଥାନ୍ତା ତେବେ ଆଉ ସମସ୍ୟା ନଥିଲା । ମାତ୍ର ଆମେ ଏମାନଙ୍କୁ ଛାଡ଼ି ଆଦୌ ଚଳି ପାରିବୁ ନାହିଁ ଅଥଚ ଏମାନଙ୍କ ସଙ୍ଗେ ମନ ମିଳାଇ ଚଳିବା କାଠିକର ପାଠ ।

ଆମେ ଯାହାକୁ ସବୁ ବାପମାଆ, ଭାଇଭଉଣୀ, ସ୍ତ୍ରୀ, ପୁଅଝିଅ ବୋଲି କହୁଛୁ– ସେମାନଙ୍କର ଯେତେ କଷ୍ଟ ଆମକୁ ଘେନି । ଗୋଟିଏ କ୍ଷୁଦ୍ର ପରିବାରର କଥା ନିଆଯାଉ– ବାପମାଆ ଦୁଇଭାଇ ଓ ତାଙ୍କର ଦୁଇବୋହୂ, ଝିଅଟିଏ, ଜୋଇଁଟିଏ ଆଉ ନାତି ନାତୁଣୀ ହୋଇ ଦୁଇ ତିନୋଟି । ସମସ୍ତଙ୍କର ଜଣା ଅଧିକେ କିଛି ଆୟ ଅର୍ଜନ ଅଛି । କିନ୍ତୁ ବାପାମାଆ ଖୁବ୍ ବୁଢ଼ା ବୁଢ଼ୀ ହୋଇଗଲେଣି । ସେମାନଙ୍କର ଆଉ କିଛି ଉପାର୍ଜନ କ୍ଷମତା ନାହିଁ– ବରଂ ସେମାନଙ୍କ ଲାଗି କିଛି ଅଧିକ ଖର୍ଚ୍ଚର ଆବଶ୍ୟକତା ହେଲାଣି । ଆଜି ଔଷଧ ଦରକାର– କାଲି ବିଶେଷ ରକମର ପଥ୍ୟ ଦରକାର । ପଅରଦିନ ଦରକାର ଗୋଟାଏ ଧରଣର ଅପରେସନ୍ । ବୁଢ଼ା ବୁଢ଼ୀ ବି କେମିତି ଖିଟିଖିଟି ମିଜାସ୍ ହୋଇଗଲେଣି ।

ଏହି ସବୁ ବ୍ୟାପାର ନେଇ ବୁଢ଼ା ବୁଢ଼ୀଙ୍କ ଲାଗି ଏ ପରିବାରରେ କିଛି ଅଶାନ୍ତି ଦେଖାଦେଲାଣି । ଏଣେ ବି ଦୁଇଭାଇଙ୍କ ଭିତରେ ପୈତୃକସମ୍ପତ୍ତି ଲାଗି କିଛି ମନୋମାଳିନ୍ୟ ଘଟିଲାଣି । ଦୁଇଯାଆଙ୍କ ଭିତରେ ବି ଅଧିକାର ବାଦ ଲାଗି ମଧ୍ୟେ ମଧ୍ୟେ କଳି ଲାଗି ଯାଉଛି । କ୍ରମେ ପ୍ରତ୍ୟେକ ପ୍ରତ୍ୟେକଙ୍କଠାରୁ ନିଜକୁ ଓ ନିଜର ଉପାର୍ଜନକୁ ଲୁଚେଇ ରଖିଲେଣି । କେହି ଆଉ କାହାର ଦାୟିତ୍ୱ ନେଉ ନାହାନ୍ତି । ବୁଢ଼ାବୁଢ଼ୀ କିଂକର୍ତ୍ତବ୍ୟ ବିମୂଢ଼– ସେମାନଙ୍କର ଉପଯୁକ୍ତ ତତ୍ତ୍ୱ ନିଆଯାଉନାହିଁ । କ୍ରମଶଃ ପିଲାମାନଙ୍କ ଭିତରେ ବି ଅସୂୟା ଓ ଈର୍ଷାଦି ଭାବ ପ୍ରବେଶ କଲାଣି । ଦିନରାତି କଳିକଜିଆ– ପାଟିତୁଣ୍ଡ । ଏଇ ସୁନା ଘରଟି ବର୍ତ୍ତମାନ ଅଶାନ୍ତିରେ ଚୂନା ହେବା ଉପରେ ।

ଘରେ ଘରେ ଏଇ ଧରଣର ଅଶାନ୍ତି ଲାଗି ରହିଛି। ଆପଣ ଯଦି ଗୋଟିଏ ଅଞ୍ଚଳ ପରିବାର ସର୍ଭେ କରିବେ, ତେବେ ଦେଖିବେ ସମାଜର ବହୁ ସଂଖ୍ୟକ ପରିବାର କେବଳ ନାମକୁ ମାତ୍ର ପରିବାର। ଅସଲ ପକ୍ଷେ ତାହା ଗୋଟିଏ ଗୋଟିଏ ଅଶାନ୍ତିର ଆଗାର। ଯୋଉ ଆଗାର ଭିତରୁ ବାହାରି ଆସୁଛନ୍ତି ଯୋଉ ପୁଅଝିଅମାନେ। ସେମାନେ, ଯେତେବେଳେ ସମାଜର କର୍ମକର୍ତ୍ତା ହେଉଛନ୍ତି– ଶିକ୍ଷକ, ଶାସକ, ଡାକ୍ତର, କିରାଣୀ, ହାକିମ, ମନ୍ତ୍ରୀ, ଏମ. ଏଲ୍. ଏ. ହେଉଛନ୍ତି– ଏପରିକି ଲେଖକ ବା ଶିଳ୍ପୀ ହେଉଛନ୍ତି– ସେମାନେ ସ୍ୱସ୍ୱକ୍ଷେତ୍ରରେ ଏପରି ବ୍ୟବହାର ଦେଖାଉଛନ୍ତି– ଏପରି କାର୍ଯ୍ୟ କରୁଛନ୍ତି– ଯାହାକି ସମଗ୍ର ଭାବରେ ସମାଜର ଦୁଃଖ ଅଶାନ୍ତିକୁ ବଢ଼ାଇ ଦେଉଛି। ଘରଭଙ୍ଗା ଟାଉଟର, କିଳାପୋଡ଼ିଆ ହାକିମ, ଜ୍ଞାନବିମୁଖ ଶିକ୍ଷକ, ଅର୍ଥଗୃଧ୍ନୁ ବ୍ୟବସାୟୀ, ଖିଟିଖିଟିଆ କିରାଣୀ, କ୍ଷମତାଲୋଭୀ ରାଜନୀତିଜ୍ଞ– ଏମିତି ଏମିତି ସମାଜର ବିଶିଷ୍ଟ ସ୍ଥାନ ଅଧିକାର କରିବସନ୍ତି। ଚୋର, ତସ୍କର, ଡକାୟତ, ନରହନ୍ତା, ମଧ ଏହି ବିଷମ ପରିବାର ଭିତରୁ ବାହାରିଥାନ୍ତି ଓ ସମାଜର ସୁଖ ଶାନ୍ତି ଓ ନିରାପତ୍ତାକୁ ବ୍ୟାହତ କରନ୍ତି।

ସବୁକାଳରେ ସବୁ ସମାଜତତ୍ତ୍ୱ ବିଶେଷଜ୍ଞମାନେ କହି ଆସିଛନ୍ତି ଯେ ପରିବାର ହିଁ ସବୁକଥାର ମୂଳ, ସବୁ ଅର୍ଥ ଅନର୍ଥର ମୂଳ ଉତ୍ସ। ଯୋଉ ଦେଶରେ ପରିବାରଗୁଡ଼ିକ ଦେହ, ପ୍ରାଣ, ମନ ଆଉ ଆତ୍ମାର ସ୍ୱାସ୍ଥ୍ୟ ବିଭବରେ ସୁସ୍ଥ ସେ ଦେଶର ସମାଜଜୀବନ ଖୁବ୍ ବିକଶିତ ଆଉ ସୁଖୀ। ସେଠି ଗଣତନ୍ତ୍ର କହ, ରାଜତନ୍ତ୍ର କହ, ସମାଜବାଦ କହ ସବୁ ଚାଲିବ ଠିକ୍ ରୂପେ।

ମଣିଷର ମୂଳ ମନସ୍ତତ୍ତ୍ୱ ହେଲା– ଯଦିଓ ସେ ଗୋଟିଏ ସାମାଜିକ ପ୍ରାଣୀ, ତଥାଚ ସେ ବହୁ ପରିମାଣରେ ବ୍ୟକ୍ତିବାଦୀ ଓ ସ୍ୱକେନ୍ଦ୍ରିକ। ଅନ୍ୟ ପ୍ରାଣୀମାନଙ୍କ ଭଳି ସେ କେବଳ ବଞ୍ଚିବାକୁ ଆସିନାହିଁ ଏ ପୃଥିବୀକି– ସେ ଆସିଛି ନିଜକୁ ପ୍ରତିଷ୍ଠା କରିବାକୁ ଓ ସର୍ବୋପରି ନିଜ ଭିତରେ ଥିବା ସୁପ୍ତ ଶକ୍ତିର ସମ୍ଭାବନାଟିକୁ ବିକାଶ କରିବାକୁ। ଏହି ଆତ୍ମବିକାଶ ବା ଆତ୍ମପ୍ରକାଶ କରିବା ପ୍ରଚଣ୍ଡ ସ୍ପୃହା ପ୍ରତି ମଣିଷର ରହିଚି। ପୁଣି ପ୍ରତି ମଣିଷ ଚାହେଁ ସେ ଅନ୍ୟକୁ ନିଜ ଅକ୍ତିଆରରେ ରଖିବ– ନିଜର ଅଧିକାର ଭୁକ୍ତ କରି ସମୃଦ୍ଧି ଲାଗି କାର୍ଯ୍ୟ କରିବ। ମଣିଷର ଏହି ସବୁ କାମନା ତାର ପିଲାଦିନୁଁ ମଧ ନାନା ଢ଼ଙ୍ଗରେ ନାନା ବାଗରେ ପ୍ରକାଶ ପାଏ। ସେ ପିଲାଟିଏ ବେଳୁ ତାର ଜିଦ୍ ବଜାୟ ରଖିବାକୁ ରାହା ଧରି କାନ୍ଦେ। ଅନ୍ୟ ଭାଇ ଭଉଣୀଙ୍କ ସଙ୍ଗେ ମାଡ଼ପିଟ୍ ଲଗାଏ। ସମସ୍ତଙ୍କଠାରୁ ନିଜର ଅଧିକ ଦାବୀ ଆଦାୟ କରିବାକୁ ଜବରଦସ୍ତି ଲଗାଏ। ସେ ଯଦି ପରିବାରର ଅଧିକ ବଳଶାଳୀ ହୋଇଥାଏ, ତେବେ ଅନ୍ୟମାନଙ୍କୁ ଧକ୍କାମାରି ଘୁଷିମାରି ସେ ସେମାନଙ୍କର ନ୍ୟାଯ୍ୟ ପ୍ରାପ୍ୟ ସେମାନଙ୍କଠାରୁ ଛଡ଼ାଇ ନିଏ ଓ ବାପ ମାଆଙ୍କ ପାଖେ ନିଜେ

ଦୈହିକ ବଳରେ ନ୍ୟୁନ ଥିବାରୁ ସେଠିମାନ ଅଭିମାନ କରି କାନ୍ଦିକାଟି ନିଜର ଦାବୀ ହାସଲ କରିବାକୁ ବସେ ଏବଂ ପରିବାରର ଅନ୍ୟ ପିଲାମାନେ ଏହି ଏକଜିଦିଆ ବଳପୂର୍ବା ପିଲାଟି ପାଖେ ହାରିଯାଇ ନିଜର ଅଚେତନରେ ହୁଅନ୍ତି ସେତେବେଳେ ସମାଜ ଏହି ଦୁଇ ଧରଣର ମାନସିକତା ସଂପନ୍ନ ବ୍ୟକ୍ତିକୁ ପାଏ। ବଳପୂର୍ବା ଏକଜିଦିଆ ଏବଂ ନ୍ୟୁନଭାବଗ୍ରସ୍ତ ଲୋକ ସମାଜର ବିଭିନ୍ନ କ୍ଷେତ୍ରରେ ଦାୟିତ୍ୱ ଗ୍ରହଣ କରି ସମସ୍ତଙ୍କୁ ବଡ଼ ହଇରାଣରେ ପକାଇଥାନ୍ତି।

ତେଣୁ ପରିବାରରେ ପିତାମାତା ବା ଅଭିଭାବକମାନେ ପ୍ରଥମରୁ ନିଜ ପିଲାମାନଙ୍କୁ ଆଗ ଗଢ଼ିବା ଉଚିତ। ତା' ସଙ୍ଗେ ସଙ୍ଗେ ନିଜେ ମଧ୍ୟ ଗଢ଼ି ହୋଇ ଚାଲିଥିବା ଉଚିତ। ଗୋଟିଏ ପରିବାର ସବୁ ଦିଗରୁ ସୁସ୍ଥ ମାନସିକତା ଭିତରେ ବଢ଼ି ଉଠିବାକୁ ସୁଯୋଗ ପାଇବ ସେ ଯେତେବେଳେ ପିଲାମାନେ ଦେଖିବେ ଯେ, ପିତା ଓ ମାତା ପରସ୍ପର ମଧ୍ୟରେ ଯୁକ୍ତିଯୁକ୍ତ ଭାବେ ବ୍ୟବହାର କରୁଛନ୍ତି ଓ ପରସ୍ପରକୁ ସ୍ନେହ କରୁଛନ୍ତି ଆଉମଧ୍ୟ ପରସ୍ପର ପାଇଁ ତ୍ୟାଗ ସ୍ୱୀକାର କରି ତଦ୍ୱାରା ସୁଖୀ ଓ ଆନନ୍ଦିତ ହେଉଛନ୍ତି। ତେଣୁ ପ୍ରତି ପରିବାର ଏହି ତିନୋଟି କଥାଉପରେ ସୁପରିଚାଳିତ ହୋଇପାରିବ। ସୁଯୁକ୍ତି, ସ୍ନେହପ୍ରେମ ଏବଂ ତ୍ୟାଗ।

ବାପା ଯଦି ମାଆଙ୍କ ସୁଖ ସ୍ନେହପୂର୍ଣ୍ଣ ତ୍ୟାଗପୂର୍ଣ୍ଣ ଯୁକ୍ତିଯୁକ୍ତ ସମ୍ପର୍କ ରଖୁଛନ୍ତି ଏବଂ ଜେଜେବାପା ଜେଜେମାଙ୍କ ସଙ୍ଗେ ମଧ୍ୟ ତଦ୍ରୂପ ସମ୍ପର୍କ ରଖୁଛନ୍ତି, ତେବେ ପିଲାମାନେ ତା'ର ସୁପରିଣାମ ନିଶ୍ଚୟ ଲକ୍ଷ୍ୟ କରିବେ ଓ ସେହି ସଦ୍‌ଗୁଣଟିକୁ ଆୟତ୍ତ କରିବା ଲାଗି ଆଗ୍ରହ ପ୍ରକାଶ କରିବେ। ଅବଶ୍ୟ ଏତେ ସହଜରେ ଏ କଥାଟି ଘଟିଯାଏ ନାହିଁ। କିନ୍ତୁ କ୍ରମଶଃ ଏହାର ସୁଫଳ ଫଳିଥାଏ। କାରଣ ମଣିଷର ମଣିଷ ସଙ୍ଗେ ସୁସଂପର୍କ ସର୍ବଦା ଏହି ତିନୋଟି ଜିନିଷ ଉପରେ ନିର୍ଭର କରେ। ପ୍ରତିଟି ସଂପର୍କ ହେବା ଉଚିତ ଯୁକ୍ତିଯୁକ୍ତ, ସ୍ନେହପୂର୍ଣ୍ଣ ଓ ତ୍ୟାଗପୂର୍ଣ୍ଣ।

କିନ୍ତୁ ଏ ସ୍ଥଳରେ ଗୋଟିଏ ବଡ଼ ଅସୁବିଧା ମଧ୍ୟ ରହିଛି। ସେଇଟି ହେଲା ଗୋଟିଏ ପରିବାରର ସବୁ ବ୍ୟକ୍ତି ସମାନ ବୁଦ୍ଧିବୃତ୍ତି ଓ ହୃଦୟବୃତ୍ତି ନେଇ ଜନ୍ମି ନଥାନ୍ତି। ସବୁରି ମାନସିକ ଉତ୍କର୍ଷ ମଧ୍ୟ ଠିକ୍ ଭାବେ ବିକଶିତ ହୋଇନଥାଏ ଏବଂ କାହାର କାହାର ଅବଚେତନରେ ନାନାପ୍ରକାର ବିକୃତିର ସମ୍ଭାବନା ମଧ୍ୟ ନିହିତଥାଏ। ଏ କ୍ଷେତ୍ରରେ ବୁଝାବଣା ଠିକ୍ ହୋଇ ପାରେ ନାହିଁ। କିନ୍ତୁ ଏ କ୍ଷେତ୍ରରେ ମଧ୍ୟ ପରିବାରର ସବୁଠାରୁ ଯେ, ସଚେତନ ବ୍ୟକ୍ତି ତାକୁ ବହୁ କଷ୍ଟ ସ୍ୱୀକାର କରିବାକୁ ପଡ଼ିବ– ବହୁ ଧୈର୍ଯ୍ୟ ସ୍ୱୀକାର କରିବାକୁ ପଡ଼ିବ। ପ୍ରତିଟି ଲୋକକୁ ଠିକ୍ ଭାବେ ଚଳେଇବାକୁ ହେଲେ ନିଜକୁ କେତେ ସ୍ଥିର, ଧୀର ଓ ପ୍ରେମପୂର୍ଣ୍ଣ କରି ରଖିବାକୁ ହେବ ତାହାର କିଛି ସୀମା ନାହିଁ। ଏହାଛଡ଼ା ଆଉ ଅନ୍ୟଗତି ମଧ୍ୟ ନାହିଁ। କାରଣ ଯେଉଁମାନେ ସମାଜ ସମାଜ ବୋଲି ପାଟିକରନ୍ତି– ସେମାନେ ଜାଣନ୍ତି ନାହିଁ ସମାଜର

ମୂଳ ହେଉଛି ବ୍ୟକ୍ତି– ଆଉ ସେହି ବ୍ୟକ୍ତିଟି ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ଗଢ଼ାହୁଏ ଗୋଟିଏ ପରିବାର ଭିତରେ। ଆମର ସମସ୍ତ ସାମାଜିକ ଅନୁଷ୍ଠାନ, ନୀତି ନିୟମାଦିର ସୁରକ୍ଷା ଓ ବିକାଶ ସୁପରିଚାଳିତ ପରିବାର ଉପରେ ନିର୍ଭର କରେ। ଭକ୍ତକବି ମଧୁସୂଦନଙ୍କ ଭାଷାରେ–

ବୈକୁଣ୍ଠ ସମାନ ଆହା ଅଟେ ସେହି ଘର
ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର।

ମାତ୍ର ପରିବାରଟିକୁ ବୈକୁଣ୍ଠ ସମାନ କରିବାକୁ ହେଲେ ପରିବାରର ବ୍ୟକ୍ତିମାନଙ୍କୁ କେତେ ଯେ, ସାଧ ସାଧନା କରିବାକୁ ପଡ଼େ ତାହା ଜାଣି ରଖିବା ଉଚିତ। ଆମ ଶାସ୍ତ୍ର କହୁଛି ସବୁ ଆଶ୍ରମଠାରୁ ଗୃହସ୍ଥାଶ୍ରମ ହିଁ ବଡ଼। ଗୃହ ଗୋଟିଏ ଆଶ୍ରମ ସଦୃଶ ହେବା ଉଚିତ। ପ୍ରତିଟି ଲୋକ ପରସ୍ପର ସଙ୍ଗେ ସହଯୋଗ କରି ସ୍ନେହ ପ୍ରେମରେ ଯଦି ପରିବାରଟିକୁ ସୁନ୍ଦର ଭାବେ ଗଢ଼ନ୍ତି ତେବେ ସମାଜ ମଧ୍ୟ ଦିବ୍ୟସମାଜରେ ପରିଣତ ହୋଇଯିବ।

ମାତ୍ର ଦୁଃଖର କଥା, ଆମ ଦେଶରେ ପାଶ୍ଚାତ୍ୟ ସଭ୍ୟତା ଅନୁସରଣରେ ପରିବାରମାନ ଭାଙ୍ଗି ପଡ଼ିଛି ଏବଂ ଗୋଟିଏ ଗୋଟିଏ ପରିବାର କେବଳ ସ୍ୱାମୀ ସ୍ତ୍ରୀ ଏବଂ ଦୁଇଟି ମାତ୍ର ସନ୍ତାନକୁ ହିଁ ବୁଝାଉଛି। ଗାନ୍ଧିଜୀ ତ ପରିବାରର ସୀମାକୁ ଗୋଟାଏ ଗ୍ରାମର ସୀମାଭୁକ୍ତ କରିଦେଇଛନ୍ତି। ସମଗ୍ର ଗ୍ରାମ ହେବ ଗୋଟାଏ ପରିବାର। ତା'ମାନେ ପରିବାରର ସମସ୍ତ ସୁନୀତି ଓ ସୁନିୟମ ଦାୟିତ୍ୱ କର୍ତ୍ତବ୍ୟ ଗୋଟିଏ ଗ୍ରାମ ପ୍ରତି ମଧ୍ୟ ପ୍ରଯୁଜ୍ୟ ହେବ। ତା'ହେଲେ ଯାଇ ଏହି ପାରିବାରିକ ସଂପର୍କ ଭିତ୍ତିରେ ଆମର ସମବାୟ ଯୋଜନା ମଧ୍ୟ ସୁଦୃଢ଼ ଭାବେ ଗଢ଼ି ଉଠିବ।

ଆଜି ଆମେ ଦେଖୁଛୁ – ଗାଁ' ଗହଳରେ ଏକାନ୍ନବର୍ତ୍ତୀ ପରିବାରମାନ ଭାଙ୍ଗିଯାଉଛି। ଏକାନ୍ନବର୍ତ୍ତୀ ପରିବାର ମଧ୍ୟ ଆଧୁନିକ ଯୁଗର ଜୀବନଯାତ୍ରାରେ ପୂର୍ବପରି ଆଉ ରହିପାରନ୍ତା ନାହିଁ! ବର୍ତ୍ତମାନର ପରିବାରତତ୍ତ୍ୱ ବିଶେଷଜ୍ଞମାନେ ସେହି ରୂପେ ଏକାନ୍ନବର୍ତ୍ତୀ ପରିବାରର ବହୁ କୁଫଳ ଆବିଷ୍କାର କରିଛନ୍ତି; ସେଥିରୁ ପ୍ରଧାନ କୁଫଳ ହେଲା– ଏକାନ୍ନବର୍ତ୍ତୀ ପରିବାର ଭିତରେ ଜଣକର କର୍ତ୍ତୃତ୍ୱ ରହିବାକୁ ବାଧ ଏବଂ ତା'ଫଳରେ ଅନ୍ୟମାନଙ୍କର ବ୍ୟକ୍ତିତ୍ୱର ବିକାଶ ହୋଇପାରେ ନାହିଁ। ବହୁ ବ୍ୟକ୍ତି ପାରିବାରିକ କର୍ତ୍ତା ଓ କର୍ତ୍ତୀଙ୍କ ଏକଛତ୍ରବାଦ ତାଡ଼ନାରେ ପେଷି ହୋଇଯାନ୍ତି ଏବଂ ତା' ଫଳରେ ବହୁ ମାନସିକ ବିକୃତି ଉଦ୍‌ଭବ ହୁଏ। କଥାଟିରେ ବହୁ ସତ୍ୟ ଅବଶ୍ୟ ରହିଛି। ଆଧୁନିକ ଯୁଗରେ ଚାରିଭାଇ ଏକଅନ୍ନ ଖାଇ ରହିପାରିବେ ନାହିଁ। ଜଣେ ଡାକ୍ତର, ଜଣେ ଚିତ୍ରକର, ଜଣେ କଣ୍ଟ୍ରାକ୍ଟର ଓ ଆଉ ଜଣକ ରାଜନୀତିଜ୍ଞ – ଏପରି ବହୁ ଧର୍ମୀ ଓ ବହୁ ସ୍ୱଭାବୀ ଭାଇମାନେ ଏକାଠି ଗୋଟିଏ ଅନ୍ନଖାଇ ରହିବେ କିପରି? ଏତେ ପ୍ରକାର ରୁଚି ମଧ୍ୟ ସଂଗତ ଭାବେ ସଂଗଠିତ ହେବ କିପରି? ତା'ଛଡ଼ା

ଗୋଟିଏ ରାଷ୍ଟ୍ର ବା ଦେଶରେ ବ୍ୟକ୍ତିକୁ ସବୁକ୍ଷେତ୍ରରେ ସ୍ୱାଧୀନତା ମିଳେ ନାହିଁ। ମାତ୍ର ଗୋଟିଏ ପରିବାରର ବାୟୁମଣ୍ଡଳ ଯଦି ମୁକ୍ତିପ୍ରଦ ନହେଲା ତା'ହେଲେ ବ୍ୟକ୍ତି ଅଣନିଃଶ୍ୱାସୀ ହୋଇ ମରିଯିବ।

କିନ୍ତୁ ଏକାନ୍ନବର୍ତ୍ତୀ ପରିବାର ଏଯୁଗରେ ସେଇ ପୁରୁଣା ଢ଼ାଞ୍ଚାରେ ନରହି ପାରିଲେ ବି ଅନ୍ୟ ଢ଼ାଞ୍ଚାରେ ନିଶ୍ଚୟ ରହିପାରିବ। ଭାଇ ଓ ଭଉଣୀମାନେ ବିଭିନ୍ନ ସ୍ଥାନରେ ବିଭିନ୍ନ କର୍ମରେ ନିଯୋଜିତ ରହିପାରନ୍ତି— ବିଭିନ୍ନ ରୁଚି ଓ ନୀତିର ହୋଇ ପାରନ୍ତି। ମାତ୍ର ସେମାନଙ୍କ ଭିତରେ ପ୍ରୀତି ଓ ନିର୍ଭରତା ଖୁବ୍ ସମ୍ମାନଜନକ ଭାବେ ବଜାୟ ରଖାଯାଇପାରେ। ଭାଇମାନଙ୍କ ଭିତରେ ଦୈବାତ୍ କାହାର କିଛି ଦୈବୀ ଦୁର୍ଘଟଣା ହେଲେ ଅନ୍ୟ ଭାଇଭଉଣୀମାନେ ତା' ପରିବାରର ସଂପୂର୍ଣ୍ଣ ଦାୟିତ୍ୱ ନେଇ ପାରନ୍ତି। ସମସ୍ତେ ବିଭିନ୍ନ ପର୍ବ ପର୍ବାଣୀରେ ବା ବିଭାବ୍ରତାଦି ଅନୁଷ୍ଠାନରେ କୌଣସି ଗୋଟିଏ ଯାଗାରେ ସାମୟିକ ଭାବେ କିଛିଦିନ କଟାଇପାରନ୍ତି। ଆମ୍ଭେମାନେ ଅନେକସ୍ଥାନରେ ଏ ପ୍ରକାର ସୁନ୍ଦର ଦୃଷ୍ଟାନ୍ତ ଏ ଯୁଗରେ ମଧ୍ୟ ଲକ୍ଷ୍ୟ କରିଛୁ ଓ ଏହା ମଧ୍ୟ ଲକ୍ଷ୍ୟ କରିଛୁ ଯେ, ସେ ସବୁ ସ୍ଥାନରେ ଆଧୁନିକ ଯୁଗରେ ଏକୁଟିଆ ହୋଇଯିବାର ଯେ, ଯନ୍ତ୍ରଣା ତାହା ନାହିଁ ଓ ସେମାନଙ୍କର ଭିତରେ ଯଥାର୍ଥ ସ୍ୱର୍ଗୀୟ ଭାବ ପ୍ରତିଷ୍ଠିତ ହୋଇ ରହିଛି।

ଆଉ ଗୋଟିଏ କଥା ହେଲା – ସହରମାନଙ୍କରେ (ଆଜିକାଲି ଗାଁମାନଙ୍କରେ ବି) ବାସ କରୁଥିବା ପରିବାରମାନେ ଅନ୍ୟ ପରିବାରମାନଙ୍କଠାରୁ ଏତେ ଅସଂଲଗ୍ନ ଓ ବିଚ୍ଛିନ୍ନ ଯେ ସେ ପରିବାରର ପୁଅଝିଅମାନେ ମଧ୍ୟ ପରିବାର ଭିତରୁ ବାହାରି ପଡ଼ିଲେ ବାହାର ଦୁନିଆଟିକୁ ନିତାନ୍ତ ଅପରିଚିତ ଓ ବିପଦସଙ୍କୁଳ ବୋଲି ମନେ କରିଥାନ୍ତି। ଏହି ପ୍ରକାର ମନୋଭାବରୁ ସେମାନେ ବାହାରେ ସର୍ବଦା ନିଜକୁ ବିପନ୍ନ ଓ ଅସହାୟ ମନେକରନ୍ତି। ଫଳରେ ନିଜକୁ ନିରାପଦରେ ରଖିବାର ଅବଚେତନ ଗତ ତାଡ଼ନାରେ ସେମାନେ ଗୁଣ୍ଡାଶ୍ରେଣୀର ପିଲାମାନଙ୍କ ସଙ୍ଗେ ମିଶି ଗୁଣ୍ଡା ଓ ଆକ୍ରମଣକାରୀ ଦଳମାନ ଗଢ଼ନ୍ତି। ନଚେତ୍ ରାସ୍ତାଘାଟରେ ଲଫଙ୍ଗାଙ୍କ ପରି ବୁଲୁଥାନ୍ତି ଯଦି ସେମାନଙ୍କର ପିତାମାତାମାନେ ସହରରେ ଯଥେଷ୍ଟ ବନ୍ଧୁ ଅର୍ଜନ କରିଥାନ୍ତେ – ତେବେ ସେହି ପିଲାମାନେ ଏପରି ବିଚ୍ଛିନ୍ନତାବୋଧ କରନ୍ତେ ନାହିଁ ଓ ସେହି କାରଣରୁ ମଧ୍ୟ ଅପର ମଣିଷ ପ୍ରତି, ମୋଟାମୋଟି ସମାଜ ପ୍ରତି ଭୟଭୀତ ହୋଇ ପଡ଼ନ୍ତେ ନାହିଁ।

ସମାଜ ହେଉଛି ବ୍ୟକ୍ତି ନିକଟରେ ଗୋଟିଏ ଦୁର୍ବୋଧ ଆକାଶୀୟ ଧାରଣା। ଏହା ମଧ୍ୟ ଆକାଶପରି ଅନନ୍ତ ରହସ୍ୟମୟ ଓ ଭୀତିପଦ ମନେ ହୁଏ। ଯଦି ବ୍ୟକ୍ତି ତା ସମାଜକୁ ବାସ୍ତବରେ ତା' ହାତ ପାଆନ୍ତିରେ ପ୍ରତ୍ୟକ୍ଷ ନକରେ। ପ୍ରତିଟି ମଣିଷ ପିଲା ତା'ର ନିଜ ସମାଜ ଭିତରେ ଦେଖିବାକୁ ଚାହେଁ, ତାର ଆପଣାର ଲୋକଟିକୁ– ଯେ ତାର ବାପ, ମା, ଭାଇ, ଭଉଣୀ, କକା, ଖୁଡ଼ୀ, ମଉସା, ମାଉସୀ, ପିଉସା,

ପିଉସୀ, ମାମୁଁ, ମାଇଁ ମାଷ୍ଟ୍ରେ ହୋଇଥିବେ– ତା' ସାଙ୍ଗେ ପ୍ରତ୍ୟକ୍ଷ ସମ୍ପର୍କ ରଖିଥିବେ। ମାତ୍ର ଆମର ଏହି ନାଗରିକ ସଭ୍ୟତା (ବର୍ତ୍ତମାନ ଗ୍ରାମ ଭିତରେ ବି ସେଇକଥା) ବର୍ତ୍ତମାନ ଆମକୁ ଏମିତି କରିଦେଲାଣି ଯେ ଆମେ ତ ଆଉ ଆମର ରକ୍ତସମ୍ପର୍କୀୟଙ୍କ ସାଙ୍ଗେ ସମ୍ପର୍କ ରଖୁନାହିଁ– ଆମର ପ୍ରୀତିବାନ୍ଧବ ବି ନାହାନ୍ତି। ଆମେ କାହା ସାଙ୍ଗରେ ସଙ୍ଗାତ ମଇତ୍ର ବସିବୁ କି କାହା ହାତରେ ମହାପ୍ରସାଦ ଦେଇ ଅଭଡ଼ା'' ବସି ନାହୁଁ ଯେ ଆମର ପିଲାମାନେ ବି ତାଙ୍କ ରହୁଥିବା ଜାଗାମାନଙ୍କରେ ତାଙ୍କ ପିତାମାତାଙ୍କ ପ୍ରୀତିବାନ୍ଧବମାନଙ୍କୁ ମଉସାମାଉସୀ ରୂପେ ପାଇବେ ଓ ଭାବିବେ ଯେ ତାଙ୍କ ଲୋକ ଏ ସମାଜରେ ବହୁତ ଅଛନ୍ତି– ତେଣୁ ଭୟ ଅହେତୁକ। ଏପରି ହେଲେ ପିଲାମାନେ ଅବାଟରେ ମଧ୍ୟ ଯିବା ସମ୍ଭବ ହେବନାହିଁ। କାରଣ ତାଙ୍କ ଚାରିପଟେ ଅସଂଖ୍ୟ ମଉସାମାଉସୀ ସ୍ନେହ ସଚେତନ ଦୃଷ୍ଟି ଘେରିରହିଛି ଯେ !

ଆମ ପିଲାମାନେ କେବଳ ସକାଳୁ ଉଠି ଦେଖୁଛନ୍ତି ସେଇମାନଙ୍କୁ ଯେଉଁମାନଙ୍କ ସାଙ୍ଗେ ଆମର କିଛି ହାର୍ଦ୍ଦିକ ସମ୍ପର୍କ ନାହିଁ। ବାସନ ମାଜିବାକୁ ଆସୁଥିବା ସ୍ତ୍ରୀଲୋକଟି, ପୋଷ୍ଟପିଅନ, ମାଲେରିଆ ନିରାକରଣ କର୍ମଚାରୀ, ଖବର କାଗଜବାଲା ଏମାନଙ୍କ ସାଙ୍ଗେ ମଧ୍ୟ ଆମେ ହାର୍ଦ୍ଦିକ ସମ୍ପର୍କ ରଖିନାହୁଁ। ଏପରି ଏକ ହୃଦୟହୀନ ଅସଂପୃକ୍ତ ସମାଜରେ ପରିବାରଗୁଡ଼ିକ ଯଥାର୍ଥରେ ବୈକୁଣ୍ଠ ସମାନ ହେବ କିପରି ? ଆମର ପିଲାମାନେ ଏଇ ପରିବାର ଭିତରୁ ସୁସ୍ଥ ଦେହ ମନ ନେଇ ଉତୁରିବେ କିପରି ?

ସେଥିପାଇଁ ତ ବାରଂବାର ସାମାଜିକ ମନୋବିଜ୍ଞାନୀମାନେ କହୁଛନ୍ତି– ସମାଜ ସମାଜ ନହୋଇ ଆଗ ପରିବାରଗୁଡ଼ିକୁ ସୁନ୍ଦର ଭାବେ ଗଢ଼ାଯାଉ। ପ୍ରୀତିପ୍ରଦ ରୂପେ ଗଢ଼ାଯାଉ। ସଂଙ୍ଗତିପୂର୍ଣ୍ଣ ଭାବେ ଗଢ଼ାଯାଉ। ସମାଜ ତା' ମନକୁ ଗଢ଼ି ହୋଇଯିବ।

**

# ପରିବର୍ତ୍ତିତ ପରିପ୍ରେକ୍ଷୀରେ ପୁରୁଷ ଓ ନାରୀ

*(୧୯୭୬ ମହିଳାସମ୍ବତ୍ସର ଉପଲକ୍ଷେ)*

ସଂପ୍ରତି ପୁରୁଷ ଓ ମହିଳା ସମାଜ ମଧ୍ୟରେ ଏକ ଅବିରତ ପ୍ରତିଯୋଗିତା ପ୍ରତୀୟମାନ। କେହି କାହାର ପ୍ରଭୁତ୍ୱ ସ୍ୱୀକାରକରିବାକୁ ଯେପରି ପ୍ରସ୍ତୁତ ନୁହନ୍ତି, ତାହା ଆଜିର ଏହି ପରିବର୍ତ୍ତିତ ଯୁଗରେ ବେଶ ପରିଦୃଷ୍ଟ। ସମାଜର ପ୍ରତ୍ୟେକ କାର୍ଯ୍ୟକଳାପରେ ପୁରୁଷମାନଙ୍କ ସହ ସମାନ ସୁବିଧାସୁଯୋଗ ଗ୍ରହଣ କରି ସେମାନଙ୍କ ଦାବୀକୁ ସାବ୍ୟସ୍ତ କରିବା ନିମନ୍ତେ ସେମାନଙ୍କ ମଧ୍ୟରେ ଅପୂର୍ବ ଉତ୍ସାହ ଓ ପ୍ରେରଣା ବର୍ତ୍ତମାନ ବେଶ୍ ସ୍ପଷ୍ଟ ହୋଇ ଉଠିଛି। ସେମାନେ ସେମାନଙ୍କ ତଥାକଥିତ ପାରଂପାରିକ ଭୂମିକାରୁ ଅପସରିଯାଇ ନିଜର ସୃଜନଶୀଳତା ତଥା ମାନସିକ ଶକ୍ତିର ବିନିଯୋଗ କରି ଏକ ନୂତନ ଯୁଗର ଅଭ୍ୟୁଦୟ କରିବା ନିମନ୍ତେ ଦୃଢ଼ ପ୍ରତିଜ୍ଞ। ଘର କୋଣରେ ବସିରହି ନିଜକୁ ନିଃଶେଷିତ କରିବା ଏକ ଅର୍ଥହୀନ ବ୍ୟାପାର ବୋଲି ଆଜି ସେମାନେ ମନେକରୁଛନ୍ତି। ଅଥଚ ସେମାନଙ୍କର ଏହି ବଳିଷ୍ଠଯୁକ୍ତି ଆଜି ପୁରୁଷମାନଙ୍କ ବିଦ୍ରୂପ, ଧମକ ଓ ପରିହାସର ବିଷୟ ହୋଇପଡ଼ିଛି।

ସାଧାରଣତଃ ପୁରୁଷ ଓ ମହିଳାମାନଙ୍କ ମୌଳିକ ଚିନ୍ତାଧାରାରେ କେତେକ ପାର୍ଥକ୍ୟ ପରିଲକ୍ଷିତ ହୋଇଥାଏ। ଏଣୁ ମହିଳାମାନଙ୍କୁ ପୁରୁଷମାନଙ୍କ ସହ ସମକକ୍ଷ କରିବା ନିମନ୍ତେ ଭୂଲ ବୁଝାମଣା ଓ ଆଶଙ୍କା ପ୍ରକାଶ ପାଇବା ସ୍ୱାଭାବିକ। ହିଂସା ଓ କ୍ରୋଧ ପୁରୁଷମାନଙ୍କର ଏକ ସହଜାତ ପ୍ରବୃତି। କୌଣସି ଏକ ସମସ୍ୟାର ସମାଧାନ ନିମନ୍ତେ ସେମାନଙ୍କୁ ହିଂସା ଓ କ୍ରୋଧର ଆଶ୍ରୟ ନେବାକୁ ପଡ଼ିଥାଏ। ଅପର ପକ୍ଷରେ, ନାରୀମାନେ ଶାନ୍ତ ନମନୀୟ ଓ ସହନଶୀଳ ଉପାୟରେ ଉପସ୍ଥିତ ସମସ୍ୟାଗୁଡ଼ିକର ସମାଧାନ କରନ୍ତି। ପିଲା ଅବସ୍ଥାରେ ବାଳକ ଓ ବାଳିକାମାନଙ୍କ ଚାଲିଚଳନ ଓ କାର୍ଯ୍ୟ କଳାପରେ ମଧ୍ୟ କେତେକ ପାର୍ଥକ୍ୟ ପରିଲକ୍ଷିତ ହୁଏ ବୋଲି ସମାଜବିଦ୍‌ମାନେ ମତ ପୋଷଣ କରିଥାନ୍ତି।

ପିଲାମାନଙ୍କ ମଧ୍ୟରେ କୌଣସି ପ୍ରକାରର ବିବାଦ ଉପସ୍ଥିତ ହେଲେ ପ୍ରଥମେ ବାଳକମାନେ ହିଂସାମାଧ୍ୟମରେ ତାହାର ସମାଧାନ କରିବାର ଦେଖାଯାଏ। ସେମାନେ ବଳ ପ୍ରୟୋଗ କରି ଧମକ ଜରିଆରେ ନିଜ ନିଜ ଦାବୀ ଉପସ୍ଥାପିତ କରନ୍ତି। କିନ୍ତୁ ବାଳିକାମାନେ ନିଜ ନିଜ ମଧ୍ୟରେ ଆପୋଷ ମିଳାମିଶା, ସଂପର୍କ ସ୍ଥାପନ,

ସହନଶୀଳତା ତଥା ଅଭିମାନ ଜରିଆରେ ଉପସ୍ଥିତ ବିବାଦର ସମାଧାନ କରିଥାନ୍ତି । ଉକ୍ତ ମନୋଭାବ ପ୍ରାୟ ସମସ୍ତଙ୍କ ନିକଟରେ ଦେଖିବାକୁ ମିଳିଥାଏ ଓ ଏହା ଦୀର୍ଘଦିନ ଧରି ସ୍ଥାୟୀ ହୋଇରହେ ।

ପୁରୁଷମାନଙ୍କ ଭିତରେ ବାଲ୍ୟକାଳର ଗୋଟାଏ ଦୁର୍ଦ୍ଧର୍ଷତା ଓ ଆକ୍ରମଣାତ୍ମକ ମନୋଭାବ ଏବଂ ବ୍ୟବହାର ପରିଲକ୍ଷିତ ହେବାର ବହୁ ସାମାଜିକ ଓ ମନସ୍ତାତ୍ତ୍ୱିକ କାରଣମାନ ନିଶ୍ଚୟ ରହିଛି । ଯୁଗ ଯୁଗ ଧରି ପୁରୁଷପିଲାକୁ ଗୋଟାଏ ଧାରଣା ଦିଆଯାଇଛି ଯେ ସେ ଏ ପୃଥିବୀକୁ ଶାସନ କରିବ ଓ ନାରୀମାନଙ୍କର ପ୍ରଭୁ ଓ ଭର୍ତ୍ତା ହେବ । ଏହି ପ୍ରଭୁତ୍ୱ ମନୋଭାବର ଅଭ୍ୟାସ ତାକୁ ଏଭଳି ଆକ୍ରମଣାତ୍ମକ ବ୍ୟବହାର ଶିଖାଇଛି । ମାତ୍ର ଏହା ସଙ୍ଗେ ସଙ୍ଗେ ଆହୁରି ଗୋଟିଏ ଧାରଣା ମଧ୍ୟ ସମସ୍ତଙ୍କ ଭିତରେ ବହୁକାଳ ପ୍ରତିଷ୍ଠିତ ହୋଇ ଯାଇଛି ଯେ ପୁରୁଷ ନାରୀ ଠାରୁ ଦୈହିକ ଶକ୍ତିରେ ଖୁବ୍ ବଳୁଆ ଏବଂ ନାରୀ ହେଉଛି ଅବଳା–ନବନୀତ କୋମଳା । ନାରୀଶରୀରର କୋମଳତା ବା ନମନୀୟତା ତାର ଦେହ ଗଠନର ଏକ ବିଶେଷ ଗୁଣ– ଦୋଷ ନୁହଁ । ଦୈହିକ କୋମଳତା କେବେହେଲେ ଶକ୍ତିହୀନତାର ପରିଚାୟକ ନୁହେଁ ଯେପରି କୋମଳମନା ବ୍ୟକ୍ତିର ଚିତ୍ତବୃତ୍ତି ମଧ୍ୟ ବେଶ୍ ଦୃଢ଼ ରହିପାରେ ।

ଶରୀର ବିଜ୍ଞାନ ପର୍ଯ୍ୟାଲୋଚନା କରାଗଲେ ସ୍ପଷ୍ଟ ରୂପେ ଅନୁମିତ ହୁଏ ଯେ ମହିଳାମାନେ ଶାରୀରିକ ଶକ୍ତି ଅନୁପାତରେ ପୁରୁଷମାନଙ୍କଠାରୁ କେତେକାଂଶରେ ଦୁର୍ବଳ ହେଲେ ମଧ୍ୟ, ସେମାନେ ଆବୟବିକ ସଙ୍ଗଠନ ଦୃଷ୍ଟିରୁ ପୁରୁଷମାନଙ୍କ ଠାରୁ ବେଶ୍ ଶକ୍ତିଶାଳୀ ଓ କାର୍ଯ୍ୟକ୍ଷମ ଅଟନ୍ତି । ଆଧୁନିକ ଯୁଗରେ ଶକ୍ତିର କ୍ରମଶଃ ଅପଚୟ ଘଟୁଥିବାରୁ ଶାରୀରିକ ଶକ୍ତିର ମୂଲ୍ୟାୟନ କରିବା ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ନୁହେଁ । ମନସ୍ତତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାରକଲେ ଜଣାଯାଏ ଯେ ନାରୀମାନେ ବେଶ କୁଶଳତାର ସହ ମାନସିକ ସମସ୍ୟା ସଂକଟଗୁଡ଼ିକର ସାହସିକ ମୁକାବିଲା କରିପାରନ୍ତି । ଏପରି ସ୍ଥଳେ ପୁରୁଷମାନେ ତତ୍‌କ୍ଷଣାତ୍ ନୈରାଶ୍ୟରେ ଭାଙ୍ଗିପଡ଼ନ୍ତି । ଫଳରେ ସେମାନେ ପାରିବାରିକ ତଥା ନିଜ ନିଜକର୍ମ କ୍ଷେତ୍ରରେ ବହୁ ବାଧା ବିଘ୍ନର ସମ୍ମୁଖୀନ ହୁଅନ୍ତି । ଏପରି ମଧ୍ୟ ଦେଖାଯାଇଛି କି ପୁରୁଷମାନେ ସେମାନଙ୍କର କର୍ମକ୍ଷେତ୍ରରୁ ଘରକୁ ଫେରିଆସି ନିଜର କାର୍ଯ୍ୟକଳାପର ଏକ ରହସ୍ୟ ରୋମାଞ୍ଚପୂର୍ଣ୍ଣ ବିବରଣୀ ନିଜ ଗୃହିଣୀ ଆଗରେ ବାଢ଼ି ବସନ୍ତି । ଏତଦ୍‌ଦ୍ୱାରା ସେମାନେ ସେମାନଙ୍କ ଗୃହିଣୀ ମନରେ ଏଇ ଧାରଣା ସୃଷ୍ଟି କରିଥାଆନ୍ତି, ''ଦେଖ – ତୁମେମାନେତ ଘରକୋଣରେ ପିଲାଛୁଆ ରନ୍ଧା ବଢ଼ାକୁ ନେଇ ନିଶ୍ଚିତରେ ରହିଲ ପଇସାରୋଜଗାର ଯେ କି କଷ୍ଟ ଓ ତାହା ଅର୍ଜନ କରିବା ପାଇଁ କେତେ କୌଶଳ, କେତେ ବ୍ୟର୍ଥତା ଓ ଯନ୍ତ୍ରଣାର ଶୀକାର ହେବାକୁ ହୁଏ ତାହା ତୁମେ କିପରି ଜାଣିବ ?''

କିନ୍ତୁ ଏ ଶତାବ୍ଦୀରେ ପୁରୁଷର ରୋଜଗାର ନ ଖାଉଥିବା ଓ ନିଜେ ଉପାର୍ଜନ କରୁଥିବା ଶିକ୍ଷିତା ଗୃହିଣୀକୁ ତାର ସ୍ୱାମୀ ଏପରି ଆଉ କହିପାରିବ କି ?

ପୁରୁଷମାନଙ୍କ ଦ୍ୱାରା ପରିଚାଳିତ ବାଣିଜ୍ୟ ବ୍ୟବସାୟଗୁଡ଼ିକ କ୍ଷେତ୍ରରେ ଏକ ତୀବ୍ର ପ୍ରତିଯୋଗିତା ଲାଗିରହିଛି । ସେଥିରେ ହିଂସା ଓ ଦ୍ୱେଷ ଭରି ରହିଛି । ସଂପୃକ୍ତ

କର୍ମଚାରୀମାନଙ୍କ ମଧ୍ୟରେ ସହଯୋଗ ଓ ସହିଷ୍ଣୁତା ଦେଖିବାକୁ ମିଳେ ନାହିଁ। ଦଳଗତ କାର୍ଯ୍ୟ ଆଜିର ଶିଳ୍ପ ତଥା ପ୍ରଶାସନିକକ୍ଷେତ୍ରରେ ଏକ କୌଶଳରୂପେ ଅଭିହିତ। ପ୍ରଶାସନିକକ୍ଷେତ୍ରରେ କାର୍ଯ୍ୟ କରୁଥିବା ପ୍ରତ୍ୟେକ ବ୍ୟକ୍ତି ଆଜି କ୍ଷମତାର ପ୍ରଲୋଭନର ଶୀକାର ହୋଇଛନ୍ତି। ନିମ୍ନୋକ୍ତ ଉଦାହରଣରୁ ଏହା ସ୍ପଷ୍ଟ ରୂପେ ପ୍ରତିପାଦିତ ହୁଏ।

ବମ୍ବେସ୍ଥିତ ଓବେରୋଇ ସେରାଟୋନ୍ ନାମକ ସ୍ଥାନରେ ଏକଦା ଜଣେ ଉଚ୍ଚ ପଦସ୍ଥ ଏକ୍ସିକ୍ୟୁଟିଭ୍ ଅଫିସରଙ୍କୁ ବ୍ୟବସାୟୀମାନଙ୍କ ତରଫରୁ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା। ଇତ୍ୟବସରରେ ସେ କୁଆଡ଼େ ଶୁଣିବାକୁ ପାଇଲେ ଯେ ସେ ନିଜର କ୍ଷମତା ନିର୍ଦ୍ଧାରଣ ନିମନ୍ତେଣ ନିର୍ଦ୍ଦେଶକମଣ୍ଡଳୀର ଏକ ନିର୍ଦ୍ଦେଶକଙ୍କ ସହ ପ୍ରତିଯୋଗିତାରେ ସଂପୃକ୍ତ। ସେ ଏହା ଶୁଣି ଏପରି ଭାବରେ ରାଗିଗଲେ ଯେ ତାଙ୍କ ଅପର ପକ୍ଷ ପ୍ରତିଦ୍ୱନ୍ଦୀଙ୍କୁ ପୂରାପୂରି ନିଶ୍ଚିହ୍ନ କରିବା ପାଇଁ ପ୍ରସ୍ତୁତ ହେଲେ। ଏଥିରୁ ସ୍ପଷ୍ଟ ରୂପେ ପ୍ରତୀୟମାନ ହୁଏ ଯେ ପୁରୁଷମାନେ ସାମାନ୍ୟ ସାମାନ୍ୟ କଥାରେ ଅଚାନକ ରାଗିଯାଇ ଭୟାବହ ପରିଣତି ସୃଷ୍ଟି କରିବାପାଇଁ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ ସେମାନଙ୍କର ଏତାଦୃଶ ମନୋଭାବ ପୁରୁଷୋଚିତ ବୋଲି ଧରାଯାଇଥାଏ। କିନ୍ତୁ ସାମାନ୍ୟ କଥାରେ ରାଗିବା ନାରୀର ସ୍ୱଭାବ ନୁହେଁ। ସେମାନେ ଧୈର୍ଯ୍ୟର ସହ ସମସ୍ୟାର ସମାଧାନ ନିମନ୍ତେ ବିଭିନ୍ନ ପନ୍ଥା ବାହାର କରନ୍ତି। ସେମାନେ ସହଜରେ ନୈରାଶ୍ୟରେ ଭାଙ୍ଗି ପଡ଼ନ୍ତି ନାହିଁ। ସମସ୍ୟାର ସମାଧାନ ନିମନ୍ତେ ସେମାନେ କୌଣସି ହିଂସାବୃତ୍ତିର ଆଶ୍ରୟ ନିଅନ୍ତି ନାହିଁ। କିନ୍ତୁ ପୁରୁଷମାନେ ଏହାକୁ ଦୁର୍ବଳତାର ପରିଚାୟକ ବୋଲି ଅଭିହିତ କରନ୍ତି। ମହିଳାମାନେ ବିଭିନ୍ନ ପ୍ରକାର ମତ ଅନୁସରଣ କରି ସମସ୍ୟାର ସମାଧାନ ନିମନ୍ତେ ଯେପରି ଏକ ସୂତ୍ର ଖୋଜି ବସନ୍ତି, ତାହା ହେଉଛି ସମସ୍ୟା ସମାଧାନର ଏକ ବାସ୍ତବ ପନ୍ଥା।

ପୁରୁଷମାନଙ୍କ ଭଳି ମହିଳାମାନେ ମଧ୍ୟ ସଂସାରିକ କ୍ଷେତ୍ରରେ ବିଭିନ୍ନ ଗୁରୁଦାୟିତ୍ୱ ବହନ କରନ୍ତି। ସେମାନେ ପରିବାରର ସମସ୍ତ ବ୍ୟକ୍ତିଙ୍କ ସହ ଯେପରି ସୁ–ସମ୍ପର୍କ ସ୍ଥାପନ କରାଯାଇପାରିବ ସେଥିନିମନ୍ତେ ସମସ୍ତ ଉଦ୍ୟମ କରନ୍ତି। ପରିବାରର ଚଳାଚଳ ନିମନ୍ତେ ଖର୍ଚ୍ଚ ଅଟକଳ ପ୍ରସ୍ତୁତ କରନ୍ତି। ଉନ୍ନତ ମାର୍ଗର ପରିବାରର ସମସ୍ତ ବ୍ୟକ୍ତିଙ୍କ ଜୀବନଧାରର ପରିବର୍ତ୍ତନ ନିମନ୍ତେ ସେମାନଙ୍କ ତ୍ୟାଗ ବାସ୍ତବରେ ପ୍ରଶଂସନୀୟ। ସେଥି ନିମନ୍ତେ ଆବଶ୍ୟକ ବିଭିନ୍ନ ନିଷ୍ପତ୍ତିମାନ ମଧ୍ୟ ସେ ଗ୍ରହଣ କରନ୍ତି। ପରିବାରର ପିଲାମାନଙ୍କ ଶିକ୍ଷାକ୍ଷେତ୍ରରେ ତଥା ଅନ୍ୟାନ୍ୟ କାର୍ଯ୍ୟକଳାପଗୁଡ଼ିକରେ ସେମାନଙ୍କ ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ। ପରିସ୍ଥିତି ତଥା ସମସ୍ୟାର ବାସ୍ତବଅନୁଶୀଳନ ସେମାନଙ୍କର ଏକ ମହତ୍ୱ ପୂର୍ଣ୍ଣ ବୈଶିଷ୍ଟ ଯାହାକି ପୁରୁଷମାନଙ୍କ ପାଖରେ ଦେଖିବାକୁ ମିଳେ ନାହିଁ।

ମହିଳାମାନେ କ୍ରମଶଃ ଅତିରିକ୍ତ ଦାୟିତ୍ୱ ବହନକରିବା ଫଳରେ ପାରିବାରିକକ୍ଷେତ୍ରରେ ପୁରୁଷମାନଙ୍କ ଭୂମିକା ହ୍ରାସ ପାଉଛି। ଓ କେତେକ କ୍ଷେତ୍ରରେ ସୀମିତ ହେବାକୁ ବସିଛି। ମହିଳାମାନେ ଆବଶ୍ୟକତା ଦୃଷ୍ଟିରୁ କର୍ତ୍ତବ୍ୟର ଆହ୍ୱାନରେ ତଥା ନିଜର ଇଚ୍ଛାନୁଯାୟୀ ବାହାରକୁ ଯିବା ଫଳରେ ପୁରୁଷମାନଙ୍କ ମନୋଭାବର ଦ୍ରୁତ ପରିବର୍ତ୍ତନ ଘଟୁଛି। ବାସ୍ତବ ସ୍ୱାଧୀନତା ନିମନ୍ତେ ସେମାନଙ୍କ ଅବିଶ୍ରାନ୍ତ ଉଦ୍ୟମ ଫଳରେ ଆଜି ପୁରୁଷମାନଙ୍କ ମଧ୍ୟରେ ଏକ ନୈରାଶ୍ୟର ଛାୟା ଘନିଭୂତ ହେବାକୁ ବସିଛି। ସେଥିପାଇଁ ସେମାନଙ୍କ ଉତ୍କ୍ଷିପ୍ତ ପ୍ରତିହିଂସାମୂଳକ ମନୋଭାବ ଆଜି ବେଶ୍ ପ୍ରତୀୟମାନ ହେଲାଣି।

ଯେଉଁ ନାରୀମାନଙ୍କ ମଧ୍ୟରେ ଏହି ସ୍ୱାଧୀନ ବିକାଶମୂଳକ ଚେତନା ଆଜି ପରିସ୍ଫୁଟ, ସେମାନଙ୍କ ମଧ୍ୟରେ ବନ୍ଧୁତା ଓ ସୌହାର୍ଦ୍ଦ୍ୟର ଏକ ଯୁଗାନ୍ତକାରୀ ମିଳନ ଘଟିଛି। କିନ୍ତୁ ଯେଉଁମାନେ ରକ୍ଷଣଶୀଳତାର ମନୋଭାବ ନେଇ ଘରକୋଣରେ ବସି ରହିବାକୁ ଇଚ୍ଛା କରନ୍ତି, ସେମାନେ ପ୍ରକୃତରେ ଦୁଃଖୀ ଅଟନ୍ତି ଓ ଅନାବଶ୍ୟକ ଖୁସି ଗପ କରି ଦିନ କାଟନ୍ତି। ଘରକାମ କରିବା ଯେ ବାଞ୍ଛନୀୟ ନୁହେଁ ତାହା ଭାବିବା ଉଚିତ ନୁହେଁ କିନ୍ତୁ ଏହା ମନେରଖିବା ଉଚିତ ଯେ ଘର କାମ ବାହାନାରେ ସମାଜରେ ନାରୀମାନଙ୍କୁ ଶୋଷଣ କରି ସେମାନଙ୍କୁ ଏକ ଗୌଣ ସ୍ଥାନ ଦେବା ନିତାନ୍ତ ପରିତାପର ବିଷୟ। ପରିବାରରେ ଘରକାମ ଛଡ଼ା ସମାଜର ବିଭିନ୍ନ କ୍ଷେତ୍ରରେ ମଧ୍ୟ ସେମାନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି।

ସମୟର ଦ୍ରୁତ ପରିବର୍ତ୍ତନ ଘଟିଛି। ପୁରୁଷ ନାରୀମାନଙ୍କୁ ନିଜର ସହକର୍ମିଣୀ, ପଦସ୍ଥ କର୍ମଚାରୀ, ନିଜର ଧର୍ମପତ୍ନୀ, ଶିକ୍ଷୟତ୍ରୀ, ଛାତ୍ରୀ ଓ ପ୍ରଫେସର ପ୍ରଭୃତି ବିଭିନ୍ନ ଭୂମିକାରେ ସମ୍ପ୍ରତି ଦେଖିବାକୁ ପାଉଛି। ଏହା ପୁରୁଷକୁ ବିଭ୍ରାନ୍ତମୂଳକ ବୋଲି ମନେ ହେଉଛି। ପୁରୁଷ ନିଜର ପ୍ରଭୁତ୍ୱ ବିସ୍ତାର କରି ତଥା ପ୍ରତିହିଂସାମୂଳକ ମନୋଭାବ ନେଇ ସ୍ତ୍ରୀ ସହିତ ସମ୍ପର୍କସ୍ଥାପନ କରିବାର ସମୟ ଆଉ ନାହିଁ। ନାରୀକୁ ଅଦ୍ୟାବଧି ବିଳାସବ୍ୟସନର ଏକ ବସ୍ତୁ ତଥା କେବଳ ଗୃହାଙ୍ଗନର ପରିଚାଳିକା ଭାବରେ ସମାଜରେ ଗୌଣ ସ୍ଥାନ ଦିଆଯାଉଥିଲା। କିନ୍ତୁ ଯୁଗର ବିବର୍ତ୍ତନ ଫଳରେ ସମାଜରେ ସେମାନଙ୍କ ଭୂମିକାର ପରିବର୍ତ୍ତନ ଘଟିଛି।

କିନ୍ତୁ ଯଦି ଜଣେ ପୁରୁଷ ନିଜ ସହକର୍ମିଣୀ ତଥା ପଦସ୍ଥ କର୍ମଚାରୀ ଭାବେ ଏକ ସୁଶୋଭନା ଓ ସୁଶିକ୍ଷିତା ନାରୀକୁ ଦେଖିବାକୁ ପାଏ, ତେବେ ତାହାର ପ୍ରତିକ୍ରିୟା କ'ଣ ହେବ? ତାହା ଅବଶ୍ୟ ଏକ ଅନୁଧ୍ୟାନର ବିଷୟ। କିନ୍ତୁ ଅଧୁନା ଏକ ନୂତନ ଯୁଗର ଅଭ୍ୟୁଦୟ ହେବା ସଙ୍ଗେ ସଙ୍ଗେ ପୁରାତନ ପାରମ୍ପାରିକ ପ୍ରଥାର ବିଲୟ ଘଟିଛି। ସମାଜର ପ୍ରତ୍ୟେକ କ୍ଷେତ୍ରରେ ପୁରୁଷ ଓ ନାରୀ ଉଭୟ ପରସ୍ପର ମଧ୍ୟରେ ସମ୍ପର୍କ ସ୍ଥାପନ କରି ବିଭିନ୍ନ ସମସ୍ୟାର ସମାଧାନ କରୁଛନ୍ତି। ଜୀବନରେ ପରିବର୍ତ୍ତନ ଯେ ଅବଶ୍ୟମ୍ଭାବୀ ଓ ହିଂସାତ୍ମକ ଆଚରଣ ଯେ ପ୍ରଗତିଶୀଳ ଚିନ୍ତାଧାରାର

ପରିପନ୍ଥୀ ଏହା ପ୍ରାୟ ସମସ୍ତେ ବୁଝିଲେଣି। ଉକ୍ତ ଅନୁଚିନ୍ତା ଓ ମନୋଭାବର ସଫଳ ରୂପାୟନ ହେଲେ ତାହା ଅନାଗତ ଭବିଷ୍ୟତ ନିମନ୍ତେ କଲ୍ୟାଣମୟ ହେବ, ଏଥିରେ ସନ୍ଦେହର ଅବକାଶ ନାହିଁ।

ସମାଜରେ ପୁରୁଷମାନଙ୍କ ସହ ନାରୀଙ୍କୁ ସମାନ ପଦମର୍ଯ୍ୟାଦା ଦିଆଗଲେ ଏକ ନୂତନ ଯୁଗର ଅଭ୍ୟୁଦୟ ହେବା ସଙ୍ଗେ ସଙ୍ଗେ ନାରୀମାନଙ୍କ ଉପରେ ଗୁରୁଦାୟିତ୍ୱ ଅର୍ପଣ କରାଯିବ। ନାରୀମାନଙ୍କ ବିରୁଦ୍ଧରେ ପୁରୁଷମାନଙ୍କ ଅବିରତ ସଂଗ୍ରାମ, ଅତ୍ୟାଚାର ଓ ନିର୍ଯ୍ୟାତନାର ପରିସମାପ୍ତି ଘଟିବ। ଫଳରେ ପୁରୁଷ ଓ ନାରୀମାନଙ୍କ ମଧ୍ୟରେ ଚିରାଚରିତ ବୈଷମ ଲୋପପାଇ ଏକ ଅନାବିଳ ସମ୍ମାନଜନକ ସମ୍ପର୍କ ବିରାଜମାନ କରିବ। ସାମ୍ପ୍ରତିକ ମହିଳାମାନଙ୍କ କାର୍ଯ୍ୟକଳାପ ଏହାର ସ୍ପଷ୍ଟ ସୂଚନା ଦିଏ। ପ୍ରତ୍ୟେକ ଦିନ ଅନ୍ୟାୟ ଓ ଅତ୍ୟାଚାର ଫଳରେ ସମାଜରେ ଘଟୁଥିବା ଘଟଣାଗୁଡ଼ିକ ବିରୁଦ୍ଧରେ ମହିଳାମାନେ ସମୁଚିତ ପଦକ୍ଷେପ ନେବା ଉଚିତ। ଆମେ ଯେଉଁ ନୂତନ ସମାଜର ପରିକଳ୍ପନା କରିଛୁ ତାହା ଯେ ମହିଳାମାନଙ୍କର ଅନ୍ତର୍ନିହିତ ଶକ୍ତି ତଥା ପୁରୁଷ ଓ ନାରୀମାନଙ୍କ ନିମନ୍ତେ ବାସ୍ତବ ସ୍ୱାଧୀନତା ପ୍ରତି ଏକ ସମୁଜ୍ଜ୍ୱଳ ଆହ୍ୱାନ ତାହା କହିଲେ ଅତ୍ୟୁକ୍ତି ହେବନାହିଁ।

❋❋

# ନାରୀ ମର୍ଯ୍ୟାଦା ଓ ବିଜ୍ଞାପନର ବିକୃତ ବିଶ୍ୱ

*(ଆନ୍ତର୍ଜାତିକ ମହିଳାସମ୍ବତ୍ସର ୧୯୭୬—ଉପଲକ୍ଷେ)*

ଆନ୍ତର୍ଜାତିକ ମହିଳାସମ୍ବତ୍ସର ଶେଷ ହେଲା। ଏବଂ ସେହି ବର୍ଷକ ମଧ୍ୟରେ ପୃଥିବୀର ବିକଶିତ, ଅର୍ଦ୍ଧବିକଶିତ ଓ ଅବିକଶିତ ସବୁ ଦେଶର ମହିଳାମାନଙ୍କ ଦୁରବସ୍ଥା ସମ୍ପର୍କରେ ବିଭିନ୍ନ ପତ୍ର ପତ୍ରିକାରେ ଅଗଣିତ ଲେଖାମାନ ମଧ୍ୟ ପ୍ରକାଶ ହୋଇପଡ଼ିଲା। ନାରୀକୁ ମର୍ଯ୍ୟାଦା ଦେବାଲାଗି, ନାରୀର ସ୍ୱତନ୍ତ୍ରତା ଅକ୍ଷୁର୍ଣ୍ଣ ରଖିବାଲାଗି, ନାରୀକୁ ପୁରୁଷ ସହ ସମାନ ଆସନ ଓ ମୂଲ୍ୟ ଦେବା ଲାଗି ବହୁଯୁକ୍ତି, ବିଚାର ଓ ନିର୍ଦ୍ଦେଶନାରେ ପୁଣି ବହୁ ଉପଦେଶ, ଦୃଷ୍ଟାନ୍ତ ଓ ଧ୍ୱନି ପ୍ରତିଧ୍ୱନିରେ ସାରା ବିଶ୍ୱର ସମ୍ବାଦପତ୍ର ଓ ପତ୍ର ପତ୍ରିକାମାନେ ଉଚ୍ଛ୍ୱସିତ ଓ ମୁଖର ହୋଇପଡ଼ିଲେ। ଏସବୁ ଉତ୍ସାହ ଉଦ୍ଦୀପନା ବେଶ୍ ଆନନ୍ଦର କଥା। ମାତ୍ର ଏ ସମ୍ବନ୍ଧେ ଟିକିଏ ତଳେଇ କରି ଦେଖିଲେ ମନେ ହୁଏ ଏ ସବୁ ଯେତେ ମାତ୍ରାରେ ଧ୍ୱନିସର୍ବସ୍ୱ ବା ଋବାଡ଼ମ୍ବର ସର୍ବସ୍ୱ ସେତିକି ପରିମାଣରେ ଗଭୀର ଆନ୍ତରିକତା ଏଥିରେ ହୁଏତ ନାହିଁ। ଏହା କେବଳ ଗୋଟାଏ ଆଇଡ଼ିଆକୁ ନେଇ କିଛି ବେଳ ମାତିଯିବା। ପୃଥିବୀ ଏମିତି ବେଳେ ବେଳେ ମାତିବାକୁ ଗୋଟାଏ କିଛି ତୁଷ୍ଟା ପାଇଲେ ଘଡ଼ିଏ ଅଧେ, ମାସେ, ପକ୍ଷେ, ଛ'ମାସେ ବର୍ଷେ, ବିତିଯାଏ। ମଣିଷମାନେ ଏମିତି ମଝିରେ ମଝିରେ ମାତନ୍ତି କ'ଣ ଗୋଟେ କିଛିକୁ ନେଇ। ସତକୁ ସତ କିନ୍ତୁ କ'ଣ ନେଇ ମାତିବାକୁ ପଡ଼ୁଛି ସେ ବିଷୟରେ ଅଧିକାଂଶ ସଚେତନ ନ ଥାନ୍ତି।

ଏପରି ଆଶଙ୍କା ବା ମତପୋଷଣ କରିବାର ହେତୁ ମଧ୍ୟ ଜଣାଇ ରଖୁଛି। ଅନ୍ୟାନ୍ୟ ବର୍ଷ କଥା ଛାଡ଼ି ଦିଅନ୍ତୁ— ଗତ ମହିଳା ବର୍ଷରେ ମହିଳା— ମାନମର୍ଯ୍ୟାଦା— ସଂରକ୍ଷକ ଯେତେ ପତ୍ରପତ୍ରିକା ପ୍ରକାଶିତ ହୋଇଛି ସେଗୁଡ଼ିକର ପୃଷ୍ଠା ଓଲଟାଇ ଦେଖନ୍ତୁ— ଦେଖିବେ— ଗୋଟିଏ ପୃଷ୍ଠାରେ ନାରୀର ମର୍ଯ୍ୟାଦା ରକ୍ଷାକରିବା ଦିଗରେ ପ୍ରବନ୍ଧଟିଏ ପ୍ରକାଶିତ ହୋଇଛି। ପୁଣି ଆର ପୃଷ୍ଠାରେ ନାରୀର ଦୁରାବସ୍ଥା ବା ନିର୍ଯ୍ୟାତନାର କାହାଣୀଟିଏ ପ୍ରକାଶ ପାଇଛି। ମାତ୍ର ସେହି ପତ୍ରିକାରେ ଏପରି କେତୋଟି ବିଜ୍ଞାପନ ବାହାରୁଛି ଯେଉଁଥିରେ ନାରୀର ମର୍ଯ୍ୟାଦାକୁ ଯାଚ୍ଛାତାଇଭାବେ ଉଲଘଂନ କରି ନାରୀତ୍ୱର ଅବମାନନା କରାଯାଇଛି। ନାରୀକୁ କେବଳ ଯୌବନଭାବ ଉଦ୍ଦୀପକ ପ୍ରତୀକଟିଏ ରୂପେ ଭାବି ଅର୍ଦ୍ଧନଗ୍ନ ଯୁବତୀମାନଙ୍କର ଫଟୋ ମାଧ୍ୟମରେ ବ୍ୟବସାୟୀମାନେ

ସେମାନଙ୍କର ପଣ୍ୟ ସାମଗ୍ରୀଗୁଡ଼ିକୁ ବିକ୍ରୟ କରିବା ଲାଗି ବିଜ୍ଞାପନମାନ ପ୍ରକାଶ କରିଛନ୍ତି। ନାରୀର ନଗ୍ନ ଦେହକୁ ଦେଖାଇ ସିନେମା ନିର୍ମାତାମାନେ ବହୁ ଅର୍ଥ ଉପାର୍ଜନ କରୁଛନ୍ତି। ସେହିପରି ମଧ୍ୟ ଶିଳ୍ପସଂସ୍ଥା ଓ ବିଜ୍ଞାପନସଂସ୍ଥା ସମ୍ବାଦପତ୍ର ସଂସ୍ଥାମାନଙ୍କର ଏକପ୍ରକାର ଅର୍ଥଗୃଧ୍ନ—ମନୋଭାବଜନିତ—ପାପ-ମେଣ୍ଟରୁ ସମ୍ଭବ ହୋଇଛି ଏପରି ଅଶ୍ଳୀଳ ଓ ବର୍ବର ସଂସ୍କୃତି, ଯାହାକି କେବଳ ନାରୀର ନଗ୍ନଦେହ ଓ କାମୋଦ୍ଦୀପକ ହାବ-ଭାବ ବିଳାସକୁ ନେଇ ସଂପ୍ରଚାରିତ ହୋଇ ଚାଲିଛି। କେବଳ ଅର୍ଥ ଉପାର୍ଜନକୁ ମୁଖ୍ୟ ଲକ୍ଷ୍ୟ ରଖିବା ବା ଯେକୌଣସି ପ୍ରକାରେ ଲାଭ ମାରିନେବା ମନୋଭାବଟି ହେଲା ଏକ ବର୍ବର ପୁଞ୍ଜିବାଦୀ ମନୋଭାବ ଏହି ଆଦ୍ୟଲାଭ ପର-ଶୁଭ-ପ୍ରୟାସୀ ପୁଞ୍ଜିବାଦୀ ମନୋଭାବାପନ୍ନ ସଂସ୍ଥାମାନେ ଏପରି ବିଚିତ୍ର କୌଶଳ ଅବଲମ୍ବନକରି ବାକ୍ୟ, ଶବ୍ଦ ଓ ଛବିମାନ ପ୍ରକାଶ କରନ୍ତି ଯାହା ବାହାରକୁ ସେତେ ଅସୁବିଧାଜନକ ବୋଲି ମନେ ନ ହେଲେ ବି ଭିତରେ ଭିତରେ ଖୁବ୍ ଇଙ୍ଗିତପୂର୍ଣ୍ଣ ଏବଂ ଏହି ଇଙ୍ଗିତ ମାତ୍ରେଇ ଯୌନ—ବାସନାଉଦ୍ରେକକାରୀ ଇଙ୍ଗିତ।

ଗୋଟିଏ ବିଜ୍ଞାପନରେ—ସୁନ୍ଦରୀ ଯୁବତୀଟିଏ ରାତ୍ରିର ପୋଷାକ ପିନ୍ଧି ଟେପ୍ ରେକର୍ଡ଼ଟିର ପ୍ଲଗ୍ ଲଗାଉଛନ୍ତି ଏବଂ ତା ତଳେ ଲେଖାଯାଇଛି—"ଆପଣ ଏହା ସଙ୍ଗେ ଆଜି ରାତିରେ ବିଛଣାକୁ ଯାଇପାରନ୍ତି"। ନାରୀ ପ୍ରତି ପୁରୁଷର ଯୌନାଭିଳାଷକୁ ଏଥିରେ ଉତ୍ତେଜିତ କରି ଟେପରେକର୍ଡ଼ଟି ବିକ୍ରିକରିବାର ହୀନ କୌଶଳ ବୁଝିପାରୁଛନ୍ତି ତ ? ପାଶ୍ଚାତ୍ୟ ଦେଶମାନଙ୍କରେ ବିଜ୍ଞାପନ ଆହୁରି ନିମ୍ନସ୍ତରକୁ ଓହ୍ଲାଇଯାଇଛି। ସିନେମାଘର ବହିଦୋକାନ ସର୍ବତ୍ର ନାରୀର ଅଙ୍ଗସୌଷ୍ଠବକୁ ନେଇ ନାନା ପ୍ରକାର ଅସଦ୍ ପ୍ରଦର୍ଶନୀ ଚାଲିଛି। ବିଜ୍ଞାପନଦାତାମାନେ ପୁରୁଷମାନଙ୍କ ଆଗରେ ନାରୀକୁ କେବଳ ଏକ ଯୌନଆକାଂକ୍ଷା ଉଦ୍ଦୀପନକାରିଣୀଜୀବଟି ରୂପେ ଉପସ୍ଥାପିତ କରି ଚାଲିଛନ୍ତି। ଆହୁରି ଲଜ୍ଜାକର କଥା ହେଉଛି—ଏହି ପ୍ରକାର ବିଜ୍ଞାପନଗୁଡ଼ିକ ପୁଣି ସହର ବଜାର, ଗାଁଗଣ୍ଡା, ଟ୍ରେନ୍, ବସ୍, ପ୍ଲାଟଫର୍ମ, ଦୋକାନ, ହୋଟେଲ ସର୍ବସାଧାରଣ ସ୍ଥାନ ବା ଶୌଚାଗାର ଏପରିକି ଅଫିସ ଓ ଡ୍ରଇଁରୁମ୍ ଭିତରେ ବି ସାଜସଜ୍ଜାର ଅଙ୍ଗ ରୂପେ ଆଦରଣୀୟ ହେଉଛି। ପୁରୁଷ ବା ନାରୀ ଦେହର ବା ଅଙ୍ଗ ସୌଷ୍ଠବର ଯେ ଅନ୍ୟପ୍ରକାର ବ୍ୟଞ୍ଜନାରହିଛି—କେବଳ ଯୌନବ୍ୟଞ୍ଜନା ନୁହେଁ— ଏ କଥାରେ ଆମର ଲାଭଖୋର ବିଜ୍ଞାପନଦାତାମାନେ ମୁଣ୍ଡ ଖେଳାନ୍ତି ନାହିଁ। ଏଣେ ପୁଣି ଆମର ସମ୍ବାଦପତ୍ର ଓ ପତ୍ରପତ୍ରିକାକୁ କର୍ମକର୍ତ୍ତାମାନେ ମଧ୍ୟ ଏହିସବୁ ଅଶ୍ଳୀଳ ବିଜ୍ଞାପନ ଦ୍ୱାରା ସେମାନଙ୍କର ପତ୍ରପତ୍ରିକାକୁ ଯୌନ—ଉଦ୍ଦୀପନାବିଳାସୀ ପାଠକ ପାଠିକାମାନଙ୍କ ପାଖରେ ଅଧିକରୁ ଅଧିକତର ଆକର୍ଷଣୀୟ କରିବାଲାଗି ବରାବର ଲାଗି ପଡ଼ିଛନ୍ତି।

ପାଶ୍ଚାତ୍ୟ ଦେଶରେ ଶିଳ୍ପପତି ଓ ବେପାରୀମାନଙ୍କର ଏହି ଦ୍ରବ୍ୟ ବିକ୍ରୟ କୌଶଳଟିକୁ ମଧ୍ୟ ଆମଦେଶର ବଣିକମାନେ ଆଖିବୁଜି ବା ଆଖିମେଲା କରି ଅନୁକରଣ

କରି ଲାଗିଛନ୍ତି। ଗତ କେତେବର୍ଷ ହେଲା ଆମ ଦେଶର ବାଣିଜ୍ୟବ୍ୟବସାୟ କ୍ଷେତ୍ରରେ କେବଳ ନାରୀର କାମୋଦ୍ଦୀପକ ନଗ୍ନଦେହର ବିଭିନ୍ନ ଭଙ୍ଗୀ ଓ ଭଙ୍ଗୀମାକୁ ନେଇ ବିଜ୍ଞାପନ ଦିଆଯାଉଛି। ଆମର ଆର୍ଟିଷ୍ଟମାନେ, ଫଟୋଗ୍ରାଫରମାନେ, ବାଣିଜ୍ୟକାରଗଣ ଓ ବିଜ୍ଞାପନଦାତାମାନେ ଏହି ବୀଭତ୍ସ କୌଶଳ ପ୍ରଦର୍ଶନ କ୍ଷେତ୍ରରେ ରୀତିମତ ପ୍ରତିଯୋଗିତା ମଧ୍ୟ ଚଳାଉଛନ୍ତି। ସେମାନଙ୍କର ଆଉ ଲୋକଲଜ୍ଜା, ସଙ୍କୋଚ, ସୁନୀତି ବା ସୁରୁଚି ପ୍ରତି ତିଳେମାତ୍ର ଭ୍ରୂକ୍ଷେପ ନାହିଁ।

ଏହି ଧରଣର ବିଜ୍ଞାପନ କେଉଁ କେଉଁ ବିଷୟକୁ ନେଇ ଦିଆଯାଉଛି—ତାହା ଦେଖାଯାଉ। ପ୍ରଥମେ ନାରୀମାନଙ୍କର କେତେକ ବ୍ୟବହାର୍ଯ୍ୟ ଜିନିଷର ବିକ୍ରୟ ଉଦ୍ଦେଶ୍ୟରେ ଯଥା:—ବ୍ରେସିଆରସ୍, ଟଏଲଟସ୍, କସ୍‌ମେଟିକ୍‌ସ ଓ ଶାଢ଼ୀ ପ୍ରଭୃତି। ଏଗୁଡ଼ିକର ନିର୍ମାତାମାନେ ବିଜ୍ଞାପନଗୁଡ଼ିକରେ କେତେକ ସ୍ୱାଭାବିକ ସୌନ୍ଦର୍ଯ୍ୟହୀନ ଗ୍ଲାମର ଝିଅମାନଙ୍କର ନାନା ଭଙ୍ଗୀର ଫଟୋ ଛାପିଥାନ୍ତି। ସେଥିରେ କେତେକ ମଡ଼େଲ ଗ୍ଲାମର-ଝିଅ ଯେଉଁସବୁ ଭଙ୍ଗୀ ଦେଖାଇଥାନ୍ତି, ସେଗୁଡ଼ିକ କେବଳ ଯୌନଲିପ୍‌ସା ଉଦ୍ରେକ କରିବା ଲାଗି ଅଭିପ୍ରେତ। ଆଉ ଗୋଟିଏ ଧରଣର ବିଜ୍ଞାପନ ହେଲା, ନାରୀମାନଙ୍କର ବକ୍ଷୋଜ ଉନ୍ନୟନ ଲାଗି ଗୋଟାଏ ଉପକରଣ। ଛବିରେ ମୂଳରୁ କେତୋଟି ଛବି ଦିଆଯାଇଥାଏ। ପ୍ରଥମ ଛବିଟିରେ ଜଣେ ସମତଳବକ୍ଷାନାରୀ ମୁହଁ ଶୁଖାଇ ଠିଆ ହୋଇଛନ୍ତି। ମାତ୍ର ଉକ୍ତ କମ୍ପାନୀର ବକ୍ଷୋଜଉନ୍ନୟନକାରୀ ଉପକରଣଟିକୁ ବ୍ୟବହାର କରିସାରିବା ପରେ ଶେଷ ଛବିରେ ସେହି ପୁଣି ଦେଖାଇଛନ୍ତି ପୀନପୟୋଧର ରୂପେ। ଖୁବ୍ ଗର୍ବର ସହିତ ସେ ନିଜର ବକ୍ଷୋଜ ଦୁଇଟିକୁ ଉଦ୍ଧତଭାବେ ପ୍ରଦର୍ଶନ କରି କହୁଛନ୍ତି—ମାତ୍ର ତିନୋଟି ସପ୍ତାହରେ ମୁଁ ଏହି ଫଳ ଦୁଇଟି ଲାଭ କରିଛି। ଏ ଛବି ଦେଖି—ସମତଳବକ୍ଷା ନାରୀମାନେ ସେହି ଉପକରଣଟିକୁ ବ୍ୟବହାର କରିବାକୁ ଲାଳାୟିତ ହୋଇପଡ଼ନ୍ତି। ସେହିପରି କସ୍‌ମେଟିକ୍‌ସ୍ ସମ୍ପର୍କୀୟ ବିଜ୍ଞାପନ ମାନଙ୍କରେ ରୂପାନ୍ୱିତ ଅଙ୍ଗନାମାନଙ୍କର ନାନାଦି କାମ ବିଲୋଳବିହ୍ୱଳ ଭାବଭଙ୍ଗୀର ଚିତ୍ର ଦିଆଯାଇଥାଏ।

ଏଥିରୁ ଜଣାଯାଏ, କାମୀ ପୁରୁଷମାନେ ନାରୀର ମୂଲ୍ୟକୁ କେବଳ ଏକ ଲାବଣ୍ୟମୟୀ ମୁଖମଣ୍ଡଳ ଓ ଯୌନଉଦ୍ଦୀପନ ଅଙ୍ଗସୌଷ୍ଠବର ବିଗ୍ରହ ଭିତରେ ଆବଦ୍ଧ କରି ରଖିଛନ୍ତି; ଏବଂ ଆମର ଅତି ବିଖ୍ୟାତ ଓ ତଥାକଥିତ ସମ୍ଭ୍ରାନ୍ତ ପତ୍ରପତ୍ରିକାମାନେ ମଧ୍ୟ ଅର୍ଥ ଓ ପ୍ରସାର ଲୋଭରେ ଏହି ଯୌନ ଭାବନା ପରିପୁଷ୍ଟଅଙ୍ଗ ବିବର୍ଦ୍ଧନୀ ବିଜ୍ଞାପନମାନ ପୂରା ପୃଷ୍ଠାରେ ଛପାଉଛନ୍ତି। ଏପରି ବିଜ୍ଞାପନ ତଳେ ପୁଣି ଲେଖା ଯାଇଥାଏ "ଆଜିସୁଦ୍ଧା ଭାରତର ଦୁଇଲକ୍ଷ ମହିଳା ଏବଂ ବକ୍ଷୋଜ ଉନ୍ନୟନକାରୀ ଉପକରଣଟିକୁ ବ୍ୟବହାରକରି ସୁଫଳ ପାଇଲେଣି"। ବିଭିନ୍ନ ଧରଣର ସ୍ତ୍ରୀଲୋକ କିମ୍ବା ଜଣେ ଚିତ୍ରତାରକା, ଅଥବା ଅଜ୍ଞାତ କୁଳଶୀଳା କନ୍ୟାଟିଏ ବା ଇମିତି ସେମିତି ସାଧାରଣ ବଧୂଟିଏ ଖୁବ୍ ଆହ୍ଲାଦ ଗୌରବରେ ପୀବର ବକ୍ଷ ଦେଖାଇ

ହସି ହସି କହୁଛି—"ମୁଁ ମାତ୍ର ଆଠଟି ସପ୍ତାହ ଭିତରେ ମୋର ଅଧଃପତିତ ସ୍ତନକୁ ଏପରି ପୀନପୟୋଧର କରିପାରିଛି"। କିମ୍ୱା ଆଉ ଗୋଟିଏ ଛବିରେ ମହିଳାଟିଏ କହୁଛି "ବହୁଦିନ ପରେ ଯାଇ ବୁଝିଲି, କେବଳ ସୁନ୍ଦର ମୁହଁଟିଏ ଥିଲେ ପୁରୁଷ ଚିତ୍ତକୁ ଜୟ କରାଯାଇ ପାରେନା। ଉନ୍ନତ ବକ୍ଷୋଜ ଦ୍ୱୟ ହିଁ ନାରୀର ଯଥାର୍ଥ ଆକର୍ଷଣୀୟ ସୌନ୍ଦର୍ଯ୍ୟସମ୍ପଦ"।

ବହୁ ବିଜ୍ଞାପନଦାତା ସାଧାରଣ ନାରୀମାନଙ୍କ ମନରେ ଏହି ଭ୍ରମଧାରଣା ସୃଷ୍ଟିକରି ଦେଇଛନ୍ତି ଯେ ଇଉରୋପ ଓ ଆମେରିକାରେ ସୌନ୍ଦର୍ଯ୍ୟ ପ୍ରତିଯୋଗିତାରେ କିମ୍ୱା ଚିତ୍ରତାରକା ମନୋନୟନରେ ଏହି ବକ୍ଷୋଜବର୍ଦ୍ଧକ ଉପକରଣହିଁ ପ୍ରକୃତ ଗୁପ୍ତ ରହସ୍ୟ।

ଏହି ଭାବେ ନାରୀର ନାରୀତ୍ୱକୁ କେବଳ ଗ୍ଲାମର, ଶାରୀରିକ ସୌନ୍ଦର୍ଯ୍ୟ ଓ ଯୌନ ଉଦ୍ଦୀପକ ବ୍ୟକ୍ତିତ୍ୱ ସଙ୍ଗେ ସମାନ କରି ଦିଆଯାଇଛି। ନାରୀର ପ୍ରକୃତ ସୁଖଶାନ୍ତି କୁଆଡ଼େ ଏହି ସବୁଥିରେ ନିହିତ ରହିଛି। ମନୁଷ୍ୟ ଜୀବନର ସଫଳତା କୁଆଡ଼େ ବହୁ ପ୍ରକାରେ ନିର୍ଭର କରୁଛି ଏବଂ ବିଶେଷ ଧରଣର କ୍ରିମ୍ ବା ସ୍ନୋ ଉପରେ କିମ୍ୱା ଗୋଟାଏ କ୍ଷୌର ପରବର୍ତ୍ତୀ ବ୍ୟବହାର୍ଯ୍ୟ ଲୋସନ ଉପରେ ଅଥବା ଏକ ବିଶେଷ ଧରଣର ବିଚିତ୍ରିତା କପଡ଼ା ଉପରେ। ଏଇତକ ହାସଲ କରିପାରିଲେ କୁଆଡ଼େ ଯେ କେହି ଯେ କୌଣସି ଦାୟିତ୍ୱପୂର୍ଣ୍ଣ ଓ ଗୁରୁତ୍ୱପୂର୍ଣ୍ଣ ଜବ୍ ଲାଗି ଫିଟ୍ ହୋଇଯିବ। ଗୋଟିଏ ବିଜ୍ଞାପନରେ ଏକ ଭାରତୀୟ ଟେକ୍ସଟାଇଲ ଫାର୍ମ ଦାବୀ କରନ୍ତି, ଆମେ ଯେମିତି ସ୍ତ୍ରୀଲୋକଙ୍କ ମନକୁ ବୁଝିଛୁ, ସେପରି ଆଉ କେହି ବୁଝି ପାରନ୍ତି ନାହିଁ। ଅସଲ କଥାଟି କିନ୍ତୁ ହେଲା କେବଳ ସୌନ୍ଦର୍ଯ୍ୟ ସଚେତନ ଅଙ୍ଗନାମାନଙ୍କ ଲାଗି ଶାଢ଼ୀ ବିକ୍ରୀ କରିବାର ମତଲବ। ଆହାରେ। ନାରୀମନ ବୁଝିପାରିବାର କି ବିଦଗଧ୍ ପ୍ରତିଭା!! ଆଉ ଗୋଟିଏ ସିଫନ୍‌ସିଲକ୍ ବିକ୍ରିର ବିଜ୍ଞାପନ ବଡ଼ ଚଟୁଳ ଭଙ୍ଗୀରେ କହୁଛି, ନାରୀ ତାର ଦେହର ପ୍ରତିଟି ଉତ୍‌ଥାନ ପତନ (curve) କୁ ଭଲଭାବେ ପ୍ରଦର୍ଶନ କରିବା ଉଚିତ। କାରଣ ଏହାର ଫଳରେହିଁ ସେ ପୁରୁଷର ଚିତ୍ତକୁ ବିମୋହିତ କରିପାରିବ।

କୁଆଡୁ କେମିତି କଳାଟଙ୍କା ରୋଜଗାର କରି ଟିଙ୍କପରି ଫୁଲି ଯାଇଥିବା ଆମ ସମାଜର କେତେକ ଶିକ୍ଷିତ ଅଥଚ ଅମାର୍ଜିତ ନରନାରୀଙ୍କର ଗୋଟିଏ ଗୋଟିଏ ଅଶ୍ଳୀଳ ଛଇଛଟକର କୁତ୍ସିତ ସଂଧ୍ୟା ବା ରାତିର ବିକୃତ ମଉଜମଜଲିସକୁ ରୂପରଙ୍ଗରେ ଜାଜ୍ୱଲ୍ୟମାନ କରିଦେବା ଲାଗି, ଏହିସବୁ ଦାୟିତ୍ୱହୀନ ସମ୍ପାଦକ ଓ ବିଜ୍ଞାପନ ସଂସ୍ଥାମାନେ ନାରୀ ପୁରୁଷର ମୌଳିକ, ସାମାଜିକ ଓ ଆତ୍ମିକ ସଂପର୍କକୁ ଗୋଟାଏ ବିଭତ୍ସ ମୂଲ୍ୟାୟନ ଭିତରକୁ ଟାଣି ଆଣୁଛନ୍ତି ସିନା।

ଏହାପରେ ପୁଣି ପୁରୁଷମାନଙ୍କ ଲାଗି ଉଦ୍ଦିଷ୍ଟ ବିଜ୍ଞାପନଗୁଡ଼ିକୁ ମଧ୍ୟ ଦେଖନ୍ତୁ। ପୁରୁଷଙ୍କ ପାଇଁ ସୁଟ୍-କ୍ଷୋର ପରବର୍ତ୍ତୀ ବ୍ୟବହାର୍ଯ୍ୟ ଲୋସନ ବା କ୍ରିମ୍ ଅଥବା

ବ୍ଲେଡ୍, ମୋଜା, ଟାଇ ଏବଂ ସେହିପରି ଆହୁରି ଅନେକ ବ୍ୟକ୍ତିଗତ ଜିନିଷର ବିକ୍ରୟ ଲାଗି ନାରୀମାନଙ୍କର ମଡ୍ରେଲ ରୂପେ ରଖି-ବିଜ୍ଞାପନ ଦିଆଯାଉଛି। ଏସବୁ ବିଜ୍ଞାପନରେ ଦେଖିବେ—ପୁରୁଷଟିଏ ଆପାଦଗ୍ରୀବା ପୋଷାକ ପିନ୍ଧି ଠିଆହୋଇଛି, ମାତ୍ର ତା' ପାଖରେ ଠିଆହୋଇ ତାକୁ ବ୍ଲେଡ୍ ବଢ଼ାଇ ଦେଉଥିବା ଅଥବା ଏକ ବିଶେଷ ଧରଣର ପୁଷ୍ଟିକର ଦୁଗ୍ଧମିଶ୍ରିତ ପାନୀୟ ବଢ଼ାଇ ଦେଉଥିବା ବା ଲୋସନ ବଢ଼ାଇ ଦେଉଥିବା ନାରୀଟି ଦିଶୁଛି ଅଧାଲଙ୍ଗୁଳି ଡାହାଣୀଟିଏ ଭଳି। ବେଳେବେଳେ କୁକୁରୀଟିଏ ଭଳି (Bitch)। କେତେକ ବିଜ୍ଞାପନରେ ପୁରୁଷର ଛବିଟି ଦିଶୁଛି ରାଜା ଭଳି ବା ସିଂହ ଭଳି ଏବଂ ତା' ପାଦ ତଳେ ଶଯ୍ୟା ସଙ୍ଗିନୀ ବା ଯୌନମୁଖ ଚରିତାର୍ଥିନୀ କ୍ରୀତଦାସୀଟିଏ ଭଳି—ଅଗୌରବରେ ବସିଛି ନାରୀଟିଏ। ବହୁସ୍ଥଳରେ ପୁରୁଷର ଛବିଟି ଯେତିକି ଶୌର୍ଯ୍ୟବନ୍ତ ଦିଶୁଛି, ବୁଦ୍ଧୀଦିପ୍ତ ଦିଶୁଛି—ତା' ପାଖରେ ଠିଆହୋଇଥିବା ନାରୀଟି କିନ୍ତୁ ତଦନୁପାତରେ ଦିଶୁଛି ଦୁର୍ବଳତର ଓ ପୁରୁଷର ପଦଶରଣ ନିର୍ଭର କେବଳ ରଚିଲାଳସୀ "ଆହା ବିଚାରୀ ସ୍ତ୍ରୀ ଲୋକଟିଏ ଭଳି"।

ଆଉ ଗୋଟିଏ କଥା ଦେଖନ୍ତୁ। ଟୁଥ୍‌ପେଷ୍ଟ, ପିଲାଙ୍କ ଟନିକ୍, ରନ୍ଧାସରଞ୍ଜାମ ଖଟ ଉପରେ ଗଦି ବା କାରପେଟ୍ ଆଦି ଘରକରଣା ସରଞ୍ଜାମମାନ ବିକ୍ରି ହେବାର ବିଜ୍ଞାପନଗୁଡ଼ିକୁ ଦେଖନ୍ତୁ। ସେଠି ମଧ୍ୟ ନାରୀ ମଡ୍ରେଲଟିଏ ରହିଛି। ଏଥିରୁ ଜଣାପଡୁଛି ସତେକି ଏବେ ବି ସମସ୍ତଙ୍କ ମନରେ ସେହି ବଦ୍ଧମୂଳକଧାରଣାଟି ରହିଛି କେବଳ ଗୃହାଙ୍ଗନର ନାରୀର ପରିସର। ଗୃହ ପରିଚାଳନାଦି ବ୍ୟାପାରରେ ସେ ଉଭୟ ପୁରୁଷ ଓ ନାରୀ ସମାଜ ଦାୟିତ୍ୱ ନେବା ଉଚିତ; ଏକଥା ଏବେ ବି ସମସ୍ତଙ୍କ ମନରେ ସୁସ୍ପଷ୍ଟ ହୋଇନାହିଁ। ଭଲ ଶିଳଟିଏ କିଣିଲାବେଳେ ହେଉ ବା ପିଲାଙ୍କ ପାଇଁ ଟନିକ୍‌ଟିଏ କିଣିବାଲାଗି ହେଉ ବା କୁକୁର ଲାଗି ବ୍ରସ୍‌ଟିଏ କିଣିଲାବେଳେ କିମ୍ୱା ଅଣ୍ଡା-ଫେଣ୍ଟା-ଯନ୍ତ୍ରଟିଏ କିଣିଲାବେଳେ, ଜିନିଷଟି ପସନ୍ଦ କରିବାର ବା ମନୋନୀତ କରିବାର ଦାୟିତ୍ୱ ଉଭୟ ପକ୍ଷର। ଯେଉଁ ଯେଉଁ ପରିବାରରେ ସ୍ତ୍ରୀ ବାହାରେ କାର୍ଯ୍ୟ ନକରି କେବଳ ଗୃହର ଦାୟିତ୍ୱ ତୁଲାଉଥାନ୍ତି; ସେଠାରେ ମଧ୍ୟ ଯାବତୀୟ ଘରୋଇ ସରଞ୍ଜାମ ସହିତ ସ୍ୱାମୀର ସମ୍ପର୍କ ଓ ପରିଚୟ ଥିବା ଉଚିତ।

ଆଉ ଗୋଟିଏ କଥା, ଚାରିଆଡ଼େ ଗୋଟିଏ ପ୍ରକାର ମନୋଭାବ ବଳବତ୍ତର ରହିଛି ଯେ ପ୍ରତିଟି ନାରୀର ଆପ୍ରଭାତରାତ୍ରି ମନଧ୍ୟାନ ହେଲା କୁଆଡ଼େ କେବଳ ପୁରୁଷର ଚିତ୍ତକୁ କିପରି ଆକର୍ଷଣ କରିବ। ଏହା ନାରୀ ପ୍ରତି ବା ନାରୀର ବ୍ୟକ୍ତିତ୍ୱ ପ୍ରତି ଗୋଟାଏ ଅବମାନନାକର ମନୋବୃତ୍ତି। ଯେକୌଣସି ନାରୀ ଯେକୌଣସି ପୁରୁଷ ଭଳି ସଂସାରର ହଜାର କଥାରେ ମୁଣ୍ଡ ଖେଳାଇ ଥାଏ କେବଳ ପୁରୁଷଟିଏ ତାର ଧ୍ୟାନ ଓ ଧ୍ୟେୟ ବସ୍ତୁ ହେବ କାହିଁକି? ଏକ ବିଶେଷ ଆଚାରକମ୍ପାନୀ ତାଙ୍କର ଆମ୍ବ ଓ ଲଙ୍କା ଆଚାରର ବିଜ୍ଞାପନ ଦେବାକୁ ଯାଇ କହନ୍ତି—'ଆମର ଏଇ

ଆମ୍ବ ଓ ଲଙ୍କା ଆଚାର ଆପଣଙ୍କ ସ୍ୱାମୀଙ୍କ ଜିହ୍ୱାକୁ ନଚେଇ ଦେବ—ଏବଂ ହେ ଶ୍ରୀମତୀ ଅମୁକ ! ଏଇ ବାଟ ଦେଇ ଆପଣ ପ୍ରବେଶ କରିବେ ଆପଣଙ୍କ ସ୍ୱାମୀଙ୍କ ଅନ୍ତରର ଗଭୀର ନିଭୃତକୁ ?'' ଆହାରେ ଆଚାରବାଲା। ତୁମେ କ'ଣ ଭାବିଛ ପ୍ରେମ ବ୍ୟାପାରରେ ଅନ୍ତରପ୍ରବେଶ କେବଳ ନାରୀର ଦାୟିତ୍ୱ ? ପୁରୁଷର ନୁହେଁ ? କାହିଁକି—ଏହି ବିଜ୍ଞାପନଟିକୁ ଓଲଟାଇ ଦେଉନାହଁ ? ସ୍ୱାମୀ ଅଚାରବୋତଲଟିଏ କିଣି ଆଣି ତାକୁ ଫିଟାଇ ସେଥିରୁ ଖଣ୍ଡିଏ ସ୍ତ୍ରୀର ଜିଭରେ ମାରି ଦେଉଛି ପ୍ରଣୟବିହ୍ୱଳ ହୋଇ। ଆଉ ସ୍ତ୍ରୀର ଜିଭଟି ନାଚିଉଠିଛି ଅପୂର୍ବଅମ୍ଳ-ରସ-ସଞ୍ଜାତ ପୁଲକ ବେପଥୁରେ। ତା' ତଳକୁ ଲେଖିଦିଅ—''ହେ ଶ୍ରୀଯୁକ୍ତ ଅମୁକ ? ଆପଣ ଏଇବାଟେ ହିଁ ଆପଣଙ୍କ ସ୍ତ୍ରୀଙ୍କ ଅନ୍ତରକୁ ପ୍ରବେଶ କରିଯିବେ।''

ଅସଲ କଥା ହେଲା—ଏହିସବୁ ଏକପାଖିଆ ଅମାର୍ଜିତ ବିଜ୍ଞାପନଗୁଡ଼ିକ ଦ୍ୱାରା ବଡ଼ କ୍ଷତି ହେଉଛି—ସ୍ତ୍ରୀ ଜାତି ପ୍ରତି ପୁରୁଷର ମନୋଭାବକୁ ସେହି ପୁରୁଣାକାଳିଆ ଅମାର୍ଜିତକରି ରଖିବା। ସମସ୍ତେ ବର୍ତ୍ତମାନ ସ୍ପଷ୍ଟ ବୁଝିଯିବା ଚାହୀ ଯେ ସ୍ତ୍ରୀ କେବଳ ପୁରୁଷର ମନୋହାରିଣୀ ହେବାକୁ ଜନ୍ମ ନାହିଁ। ତା' ପୁଣି କେବଳ ତା'ର ଦୈହିକ ସୌନ୍ଦର୍ଯ୍ୟ ପ୍ରଦର୍ଶନ ଦ୍ୱାରା ଆଦୌ ନୁହେଁ। ସ୍ତ୍ରୀଟିଏ ତାର ବ୍ୟକ୍ତିତ୍ୱର ବିକାଶ ଦ୍ୱାରା ଯଥା; ତା'ର ବୌଦ୍ଧିକ ବିକାଶ, ସୌନ୍ଦର୍ଯ୍ୟବୋଧର ବିକାଶ, ଆଧ୍ୟାତ୍ମିକ ଚେତନାର ବିକାଶ ଓ ବିଚିତ୍ର କର୍ମକୁଶଳତାଦ୍ୱାରା ସମାଜର ଦୃଷ୍ଟି ଆକର୍ଷଣ କରିବ ଏହିପରି କର୍ମକୁଶଳା, ବୁଦ୍ଧିମତୀ ନାରୀମାନଙ୍କୁ ନେଇ ଏ ସବୁ ବିଜ୍ଞାପନ ପ୍ରକାଶ ପାଇଲେ ଅବଶ୍ୟ ଆପତ୍ତି କରିବାର କିଛି ନାହିଁ। ନାରୀ ହେଉ ବା ପୁରୁଷ ହେଉ—ଚରିତ୍ର, ବ୍ୟକ୍ତିତ୍ୱ ଓ ବୌଦ୍ଧିକ ଆଧ୍ୟାତ୍ମିକ ଚେତନାର ବିକାଶକୁ ବଡ଼ କରିବା ମୂଳକରି ବିଜ୍ଞାପନମାନ ପ୍ରସ୍ତୁତ ହେବା ଉଚିତ।

ଏହି ଅବସରରେ ଦେଶର ସମସ୍ତ ସମ୍ବାଦପତ୍ର ଓ ପତ୍ରପତ୍ରିକା ସମ୍ପାଦକ, ମାଲିକ, ପରିଚାଳକ ଓ ବିଜ୍ଞାପନଦାତାମାନେ ସଚେତନ ଓ ସାବଧାନ ହୁଅନ୍ତୁ—ଏଣିକି ନାରୀକୁ କେବଳ ପୁରୁଷର ଯୌନସୁଖସଙ୍ଗିନୀ ବା ରତିରଙ୍ଗିଣୀ ଛଇଳା ସ୍ତ୍ରୀ ଲୋକଟିଏ ରୂପେ ସେମାନେ ଚିତ୍ରଣ ନ କରନ୍ତୁ। ଏହି ଅସଭ୍ୟ ବର୍ବର ଲୀଳା ଶୀଘ୍ର ବନ୍ଦ ହେଉ। ସମ୍ପାଦକ ବିଜ୍ଞାପନଦାତାମାନେ ଇଚ୍ଛାକଲେ ସମାଜରେ ଉଚିତ ମୂଲ୍ୟବୋଧ ଓ ଉନ୍ନତରୁଚି ସୃଷ୍ଟି କରିପାରିବେ।

କିନ୍ତୁ ଏସବୁ କଥା କହିଲା ବେଳେ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଷୟ ଉପରେ ଏ ଲେଖକ ସଚେତନ ରହିଛି। ତାହା ହେଉଛି—ଶାରୀରିକ ସୌନ୍ଦର୍ଯ୍ୟ ବା ଦୈହିକ କଳା ବିଳାସକୁ ଏତଦ୍ୱାରା ଗୌଣସ୍ଥାନ ଦିଆଯାଉନାହିଁ। ଶରୀର ମଧ୍ୟ ଈଶ୍ୱରଙ୍କର ମନୁଷ୍ୟ ପ୍ରତି ଗୋଟାଏ ଖୁବ୍ ବଡ଼ ଦାନ। ସେହି ଶରୀରକୁ ସୁସ୍ଥ ସବଳ ରଖିବା ଲାଗି ଯେପରି ପୁଷ୍ଟିକର ଖାଦ୍ୟ ଓ ବ୍ୟାୟାମ ଆବଶ୍ୟକ ତଦ୍ରୂପ ସେହି ଶରୀରକୁ

ସୁନ୍ଦର ଓ ମନୋଗ୍ରାହ୍ୟ କରିବା ମଧ୍ୟ ଆମର ଅବଶ୍ୟ କର୍ତ୍ତବ୍ୟ। ଶରୀରର ସ୍ୱାଭାବିକ ସୌନ୍ଦର୍ଯ୍ୟକୁ ମଧ୍ୟ ଆପଣାର ସୌନ୍ଦର୍ଯ୍ୟ ଜ୍ଞାନ ଦ୍ୱାରା ସୁନ୍ଦରପ୍ରସାଧାନ ବା ସୁନ୍ଦରପୋଷାକ ମାଧ୍ୟମରେ ଆହୁରି ମାର୍ଜ୍ଜିତ ଓ ରୁଚିକର, ମନୋରମ କରାଯାଇ ପାରେ। ମାତ୍ର ଶରୀରର ସୌନ୍ଦର୍ଯ୍ୟ ସମ୍ପାଦନର ମୂଳ ଲକ୍ଷ୍ୟ ଯେପରି ନହୁଏ ଅନ୍ୟ ଚିତ୍ତରେ କେବଳ ଯୌବନ ଉଦ୍ଦୀପନାର ଉଦ୍‌ବେଳନ ସୃଷ୍ଟି କରିବା। ଏ ସ୍ଥଳେ ଶାରିରୀକ ସୌନ୍ଦର୍ଯ୍ୟ ସମ୍ପାଦନ ମଧ୍ୟ କେବଳ ନାରୀର ଏକମାତ୍ର କାର୍ଯ୍ୟ ନୁହେଁ। ପୁରୁଷ ପକ୍ଷରେ ମଧ୍ୟ ଆପଣାର ଶାରୀରିକ ସୌନ୍ଦର୍ଯ୍ୟ ସମ୍ପାଦନ ଗୋଟିଏ ରୁଚିସମ୍ମତ କର୍ତ୍ତବ୍ୟ। ଆମର କହିବାର ଲକ୍ଷ୍ୟ ହେଉଛି—ପୁରୁଷ ହେଉ ବା ନାରୀ ହେଉ—କେବଳ ପରସ୍ପରକୁ କାମୋଚ୍ଚାଟିତ କରିବା ଦିଗରେ ଯେପରି ଏହି ଦୈହିକ ସୌନ୍ଦର୍ଯ୍ୟକୁ ପ୍ରଦର୍ଶନ କରା ନଯାଉ। ଶୌର୍ଯ୍ୟ, ବୀର୍ଯ୍ୟବତ୍ତା, ବୁଦ୍ଧିମତା, ନୈତିକତା, ହୃଦୟବତ୍ତା ଆଦି ମାନବୀୟ ଗୁଣାବଳୀର ବହୁବିଧ ଉଦାହରଣ ଦେଇ ନାରୀ ବା ପୁରୁଷ ଯାହାକୁ ହେଲେ ମଡ଼େଲ୍ ରୂପେ ବିଜ୍ଞାପନ ଦେଲେ—କୌଣସି କାହାରି ଆପତ୍ତି ରହିବ ନାହିଁ।

ଗୋଟିଏ ବିକାଶଶୀଳ ଅଗ୍ରସର ସମାଜରେ ପୁରାତନ ବହୁ ଅମାର୍ଜ୍ଜିତ ମୂଲ୍ୟବୋଧକୁ ବିତାଡ଼ନ କରି ତା'ସ୍ଥଳେ ନୂତନ ମାର୍ଜିତ ପ୍ରଗତି ସହାୟକ ମୂଲ୍ୟବୋଧମାନ ସୃଷ୍ଟି କରାଯାଇଥାଏ। ଆମର ପତ୍ରପତ୍ରିକା ଓ ସମ୍ବାଦପତ୍ରର ସମ୍ପାଦକ ପରିଚାଳକ ଗଣ ଓ ବିଜ୍ଞାପନଦାତାମାନେ ଏବଂ କଳାକାରମାନେ ସେମାନଙ୍କର ତଥ୍ୟ, କଳ୍ପନା ଓ ସୃଜନୀଶକ୍ତି ଦ୍ୱାରା ସର୍ବସାଧାରଣ ଜନଗଣଙ୍କ ଚିତ୍ତଭୂମିରେ ନୂତନ ମୂଲ୍ୟବୋଧ, ନୂତନ ରୁଚି, ନୀତି ଓ ମତବାଦର ବୀଜ ସହଜରେ ରୋପଣ କରିପାରିବେ। କିନ୍ତୁ କେବଳ ଯଦି ଯେନ ତେନ ପ୍ରକାରେଣ ଅର୍ଥଲାଭକୁହିଁ ସେମାନେ ଶୁଭଙ୍କର ଲକ୍ଷ୍ୟ ବୋଲି ଧରିଥାନ୍ତି ତେବେ ତଦ୍ୱାରା ସେମାନେ ଅତୀତରେ ଯେପରି କରି ଆସୁଥିଲେ ଅର୍ଥାତ୍ ଜନଚିତ୍ତକୁ ବିଭ୍ରାନ୍ତି, ବିକୃତ, ଅଶ୍ଳୀଳ ଓ ଅମାର୍ଜ୍ଜିତ କରି ଆସୁଥିଲେ ସେହିପରି ଭବିଷ୍ୟତରେ ମଧ୍ୟ କରି ଚାଲିବେ।

ମାତ୍ର ସେମାନେ ମନେରଖନ୍ତୁ—ବେଳ ଥାଉଁ ଥାଉଁ ସେମାନେ ସଚେତନ ହୋଇଯାନ୍ତୁ—ଯେ ସେମାନଙ୍କର ଏହିପ୍ରକାର ଅଭଦ୍ର, ଅଶ୍ଳୀଳ, ରୁଚି, ଲୁଣ୍ଠନକାରୀ ମନୋଭାବ ଓ ଅପକୌଶଳକୁ ଏଣିକି ଆଉ କେହି ବରଦାସ୍ତ କରିବେ ନାହିଁ।

ଅନ୍ୟର ରୁଚି ଓ ନୀତିକୁ ଲୁଣ୍ଠନକରି ଆପଣାର ଅର୍ଥଲାଭ କରିବାର ମନୋଭାବ ହେଉଛି ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ଏକ ବିକୃତ ମନୋଭାବ। ସାମ୍ରାଜ୍ୟ ବିସ୍ତାର ଓ ପୁଞ୍ଜି ବିସ୍ତାରଭଳି ସମାନ ଧରଣର ବିକୃତ ମାନସିକତା ଭିତରୁ ଓ ଅସାମଞ୍ଜସ୍ୟ ଅସୁସ୍ଥ ମାନସିକତା ଭିତରୁ ଏ ପୃଥିବୀରେ ଜନ୍ମ ହୋଇଛି ସାମ୍ରାଜ୍ୟବାଦ ଓ ପୁଞ୍ଜିବାଦ ଏବଂ ଉଭୟେ ଅଶ୍ଳୀଳତା ଓ ବର୍ବରତାର ଜୟଗାନ କରନ୍ତି।

**

# ଆଜି ପାଇଁ ନା ଆସନ୍ତାକାଲି ପାଇଁ ?

ଆଜି ସମଗ୍ର ବିଶ୍ୱରେ ଭୟଙ୍କର ଭାବେ ଜନସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି ଏବଂ ସେହି ବିପୁଳ କ୍ରମବର୍ଦ୍ଧମାନ ଜନତା ଲାଗି ଖାଦ୍ୟ, ବସ୍ତ୍ର, ଗୃହ, ଔଷଧ, ଯାନବାହନ ଓ ଅନ୍ୟାନ୍ୟ ଆବଶ୍ୟକ ବସ୍ତୁ ଯୋଗାଇବା ଏବେ ଗୋଟାଏ କଠିନ ସମସ୍ୟା ହୋଇ ଉଠିଛି—ଆମ ଦେଶରେ ତ ନିଶ୍ଚୟ। ତେବେ ବଡ଼ ବଡ଼ ଧନଶାଳୀ ରାଷ୍ଟ୍ରରେ ବି ସମସ୍ୟା ତଦ୍ରୂପ। ଏଥିଲାଗି ଯେତେ ଯାହା ଯୋଜନା ହେଉଛି—ତାହା ଆଶାନୁରୂପ ସଫଳତା ଅର୍ଜନ କରିପାରୁ ନାହିଁ। ତା'ର କାରଣ ସ୍ୱରୂପ ଦେଖାଯାଉଛି ଆଶାନୁରୂପ ସମ୍ବଳର ଅଭାବ ଏବଂ ପାରିପାର୍ଶ୍ୱିକ ସଂଗତି ରକ୍ଷା କରିପାରୁ ନଥିବା ବିଭିନ୍ନ ପ୍ରକାର ପରସ୍ପର ବିଚ୍ଛିନ୍ନ ଯୋଜନାଗୁଡ଼ିକର ବିଫଳତା। ଅବଶ୍ୟ ଏ କଥା କେତେକାଂଶରେ ସତ୍ୟ ମାତ୍ର ସବୁଠାରୁ ବଡ଼ କାରଣଟି ହେଉଛି ବୋଧହୁଏ "ଆମର ବହୁଳ ଦ୍ରବ୍ୟ ବ୍ୟବହାର ଅଭ୍ୟାସ ଓ ପ୍ରବଣତା"। "ଏହା ଆମର ସାଧାରଣଜୀବନ ଯାପନ ଶୈଳୀରେ ମିଶିଗଲାଣି ଏବଂ ନାନାପ୍ରକାର ବିଜ୍ଞାପନ ମାଧ୍ୟମରେ ବି ବହୁ ପ୍ରକାର ଜିନିଷ ବ୍ୟବହାରର ପ୍ରଚୋଦନା ଲୋକେ ପାଉଛନ୍ତି ଏବଂ ଏହି ହଟଚମଟକାରୀ ବିଜ୍ଞାପନଦାତାମାନେ ଲୋକଙ୍କ ରୁଚି ଓ ନୀତିକୁ ତିଆରି କରି ଚାଲିଛନ୍ତି। ଏପର୍ଯ୍ୟନ୍ତ ଖୁବ୍ କମ ଲୋକ ବୁଝିଛନ୍ତି ଯେ ଯେଉଁପ୍ରକାର ଅର୍ଥନୀତିକ, ରାଜନୀତିକ ଓ ସାମାଜିକ ମୂଲ୍ୟବୋଧ ଉପରେ ଜନସାଧାରଣଙ୍କର ଜୀବନଯାପନ ପ୍ରଣାଳୀ ଗତି କରୁଛି ତାହାର ଭବିଷ୍ୟତ କେତେ ଅନ୍ଧକାରମୟ। ପ୍ରାଚୁର୍ଯ୍ୟପୂର୍ଣ୍ଣ ସୁସମୃଦ୍ଧ ଦେଶଗୁଡ଼ିକରେ ମଧ୍ୟ ବର୍ତ୍ତମାନକାଳଟି ଯେପରି ଭାବେ ଅତିବାହିତ ହେଉଛି ସେଥିରୁ ଭବିଷ୍ୟତରେ ଏ ପୃଥିବୀ ଗ୍ରହଟିର ଅବସ୍ଥା ଯେ କି ଶୋଚନୀୟ ହୋଇପଡ଼ିବ ସେକଥା ମଧ୍ୟ ଏବେଠୁ ବୁଝି ବିଚାରିବାର ଅଛି।

ବହୁ ଡେରିରେ ହେଲେ ବି ବର୍ତ୍ତମାନ ପୃଥିବୀରେ ବହୁ ବୁଦ୍ଧିମାନ ଲୋକେ ବୁଝି ସାରିଲେଣି ଯେ, କୌଣସି ଉତ୍ପାଦନ ବା ସୃଜନ ସୀମାହୀନ ଗତିରେ ଚାଲିପାରେ ଏବଂ ସବୁବିଷୟର ଗୋଟାଏ ଗୁଣାତ୍ମକ ପରିବର୍ତ୍ତନ ହେବା ନିତ୍ୟାନ୍ତ ଆବଶ୍ୟକ। ବଞ୍ଚିବାଲାଗି ଏକ ନୂତନ ଧାରା ବା ମୂଲ୍ୟବୋଧର ସୃଷ୍ଟି ହେବା ଚାହିଁ। ସୁସ୍ଥ ଓ ସୁନ୍ଦରଭାବେ ବଞ୍ଚିବାକୁ ହେଲେ ଏବଂ ଜନ୍ମସଂଖ୍ୟାକୁ ଶୃଙ୍ଖଳିତ କରିବାକୁ ହେଲେ ଆମକୁ ବର୍ତ୍ତମାନ ହିଁ ତତ୍ପର ହେବାକୁ ପଡ଼ିବ।

ଏ ସବୁ କାହିଁକି ହେଉଛି? କାହିଁକି ଜିନିଷପତ୍ରର ଏତେ ସଂଗ୍ରହ ପ୍ରବଣତା ଓ କାହିଁକି ଜିନିଷପତ୍ରଗୁଡ଼ିକ ପ୍ରତି ଏତେ ଅଯତ୍ନ, ଏତେ ଅବହେଳା, ଏତେ ଅପଚୟ? ଶ୍ରୀଅରବିନ୍ଦ କହନ୍ତି–''ଏସବୁ ବ୍ୟକ୍ତିମାନଙ୍କର ପ୍ରାଣଶକ୍ତିର ଅଯଥା ଉତ୍ତେଜନା ଏବଂ ତାମସିକ ଜଡ଼ତାରୁ ହୋଇଥାଏ।'' ଜିନିଷପତ୍ର ସଂଗ୍ରହ କରିବାରେ କେହି କେହି ଖୁବ୍ ଉତ୍ତେଜନାଜନିତ ଆନନ୍ଦ ପାଆନ୍ତି। ମାତ୍ର ଜିନିଷପତ୍ରର ଯତ୍ନ ନେଲାବେଳକୁ ସେମାନଙ୍କୁ ଏକ ତାମସିକ ଜଡ଼ତା ଘାରି ବସେ। ଯେଉଁ ପରିବାରରେ ଓ ଯେଉଁ ଦେଶରେ ଏଭଳି ଲୋକଙ୍କ ସଂଖ୍ୟା ବେଶି ବୃଦ୍ଧିଲାଭ କରୁଥାଏ ସେ ପରିବାର ଓ ସେ ଦେଶରୁ ଅଚିରେ ଲକ୍ଷ୍ମୀ ଛାଡ଼ି ଚାଲିଯାନ୍ତି। ସେ ପରିବାର ଓ ସେ ଦେଶର ଅଭାବ ହୁଏ ନିତ୍ୟ ସହଚର। ଧନ ସମ୍ପଦ ଅନ୍ୟାନ୍ୟ ଶକ୍ତି ଭଳି ଗୋଟାଏ ମୁଖ୍ୟ ଶକ୍ତି। ମାତ୍ର ତା'ର ଅସଦବ୍ୟବହାର ଅପଚୟ ହେଲେ ସେ ଶକ୍ତି ଦୁର୍ବଳ ହୋଇଯାଏ।

ଆମେ ବିଜ୍ଞାନ ବଳରେ ବହୁ ଖାଦ୍ୟ ଉତ୍ପନ୍ନ କରିପାରୁ ବହୁ ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟ ଉତ୍ପାଦନ କରିପାରୁ ମାତ୍ର ଯଦି ଏ ପଟେ ଅପଚୟ ଓ ବିଶୃଙ୍ଖଳା ବଢ଼ିଚାଲେ, ତେବେ ଆମ ଦୁର୍ଦ୍ଦଶା କେବେ ବି ଘୁଞ୍ଚିବ ନାହିଁ। ଲକ୍ଷ୍ମୀ ଛାଡ଼ିଯାନ୍ତି ଓ ତାଙ୍କ ଆସନରେ ବସନ୍ତି ହତଲକ୍ଷ୍ମୀ ବା ଅଲକ୍ଷ୍ମୀ।

ମାତ୍ର ତା'ମାନେ ନୁହେଁ ଯେ ଆମେ ଅଧିକ ଉତ୍ପାଦନ ବା ଉତ୍ପନ୍ନ କରିବୁ ନାହିଁ କି ଅଧିକ ଖର୍ଚ୍ଚ ବା ଭୋଗ କରିବୁ ନାହିଁ। ପୂର୍ଣ୍ଣାଙ୍ଗଭାବେ ମଣିଷଟିଏ ହେବାକୁ ହେଲେ ବା ଗୋଟିଏ ସଙ୍ଗତ ଜୀବନଯାପନ କରିବାକୁହେଲେ ଆତ୍ମସଂଯମ ଓ ଭୋଗ୍ୟବସ୍ତୁଗୁଡ଼ିକର ସଦ୍‌ବ୍ୟବହାର ନିତାନ୍ତ ଆବଶ୍ୟକ। ଅନେକ ବ୍ୟକ୍ତି ଅଛନ୍ତି ଯେଉଁମାନେ ଖୁବ୍ କଠୋର ଜୀବନଯାପନ କରନ୍ତି। ଭଲ ଖାନ୍ତି ନାହିଁ କି ଭଲ ପିନ୍ଧନ୍ତି ନାହିଁ। ଏକ ତ୍ୟାଗର ଜୀବନ ସେମାନଙ୍କର। ସେମାନଙ୍କର ନିବୃତ୍ତି ମାର୍ଗ ଗୋଟିଏ ପୂର୍ଣ୍ଣାଙ୍ଗ ଏବଂ ସୁସଂଗତ ସୁନ୍ଦର ମଧୁର ଜୀବନ ଲାଗି ଏପରି କରେ ଜୀବନର ଆବଶ୍ୟକତା ନାହିଁ–ଏପରି ଉଗ୍ର ନିବୃତ୍ତି ବା ନିରୋଧ ମାର୍ଗ ମଧ୍ୟ ଆଦର୍ଶ ନୁହେଁ। କିନ୍ତୁ ଶ୍ରୀ ଅରବିନ୍ଦ ସ୍ପଷ୍ଟଭାବେ କହିଛନ୍ତି–ଆଦୌ ଆତ୍ମସଂଯମ ନ ଥିବା ଲୋକ ଅପେକ୍ଷା କଠୋର ସଂଯମଶୀଳ ନିବୃତ୍ତି ମାର୍ଗୀ ସନ୍ନ୍ୟାସୀର ଜୀବନ ନିଶ୍ଚୟ ଭଲ।

ବସ୍ତୁ ଜଗତ ଉପରେ ପ୍ରଭୁତ୍ୱମାନେ କ'ଣ? ଶ୍ରୀ ଅରବିନ୍ଦ କହନ୍ତି–ବସ୍ତୁ ଜଗତ ଉପରେ ପ୍ରଭୁତ୍ୱର ମାନେ ନୁହଁ ଯେ ପ୍ରଚୁର ଉତ୍ପାଦନ କର। ପ୍ରଚୁର ଜିନିଷପତ୍ରର ମାଲିକ ହୁଅ ଓ ଯଥେଚ୍ଛାଚାରୀ ଭାବେ ସେଗୁଡ଼ିକର ଅପଚୟ କର ଏବଂ ଯେତେ ଶୀଘ୍ର ପାର ସେଗୁଡ଼ିକ ପୂର୍ଣ୍ଣ ବା ଅର୍ଦ୍ଧଭୋଗ କରି ଫୋପାଡ଼ି ଦିଅ। ବସ୍ତୁ ଜଗତ ଉପରେ ପ୍ରଭୁତ୍ୱର ପ୍ରକୃତ ଅର୍ଥହେଲା–ବସ୍ତୁଗୁଡ଼ିକର ସଠିକ ଓ ସଯତ୍ନ ବ୍ୟବହାର ବିନିଯୋଗ ଏବଂ ସେଗୁଡ଼ିକୁ ଭୋଗକରିବା ଦିଗରେ ଯଥାର୍ଥ ଆତ୍ମସଂଯମ।

**ଅପଚୟର ସଙ୍କଟ**

ସମାଜର ସ୍ୱଚ୍ଛଳ ଶ୍ରେଣୀର ବ୍ୟକ୍ତିମାନେ ତାଙ୍କର ଜୀବନଧାରଣ ପ୍ରଣାଳୀର ମାନ ସ୍ୱରୂପ ଯୁଗଯୁଗଧରି ଯେପରି ଭାବେ ଖାଦ୍ୟଦ୍ରବ୍ୟଗୁଡ଼ିକର ବହୁଳ ଅପବ୍ୟବହାର କରି ଆସୁଛନ୍ତି, ତାହାକୁ ସର୍ବାଗ୍ରେ ବନ୍ଦ କରିବା ଉଚିତ। କାରଣ ବ୍ୟବହାର୍ଯ୍ୟ ବସ୍ତୁଗୁଡ଼ିକର ଉତ୍ପାଦନ ଯଦି ସୀମାଭିତରେ ରହିବାକୁ ବାଧ୍ୟ, ସେହିପରି ସେଗୁଡ଼ିକର ଅପବ୍ୟବହାର ବା ନଷ୍ଟକୁ ମଧ୍ୟ ରୋକିବାକୁ ପଡ଼ିବ। ଯଦି ଅପଚୟକୁ ରୋକିବା ଦରକାର, ସେମିତି ଆମର ଚାହିଦାଗୁଡ଼ିକୁ ମଧ୍ୟ ନିୟନ୍ତ୍ରଣ କରିବା ଉଚିତ। ଆମର ଯେତେବେଳେ ଯାହା ଇଚ୍ଛା ହେବ, ତାହା ଆମେ କିଣିଦେବୁ ଓ ବ୍ୟବହାର କରି ସାରିଦେବୁ—ଏପରି ମନୋଭାବ ବା ଅଭ୍ୟାସ ଆଉ ଏଣିକି ଚଳିବ ନାହିଁ। ଏହା ବର୍ତ୍ତମାନ ଆମ ଆଗରେ ଏକ କଠିଣ ଆହ୍ୱାନ। ଏହା କେବଳ କୌଣସି ପ୍ରକାର ଜିନିଷପତ୍ରର ଦରଦାମ ବୃଦ୍ଧିଜନିତ ବ୍ୟାପାର ନୁହେଁ ବରଂ ଆମର ଅତିରିକ୍ତ ଓ ଯଥେଚ୍ଛା ଦ୍ରବ୍ୟ ବ୍ୟବହାରଜନିତ ଏକ ବିଷମ ସଙ୍କଟ ଏବଂ ଏଥିପାଇଁ ଆମେ ସମସ୍ତେ ଦାୟୀ।

ସମାଜରେ ସବୁପ୍ରକାର ସାମ୍ୟ ପ୍ରତିଷ୍ଠାଲାଗି ବିପ୍ଳବ ବଢ଼ିଚାଲିଛି। ଯୁଗ ଯୁଗ ଧରି ଲାଞ୍ଛିତ ଓ ଶୋଷିତ କୃଷ୍ଣକାୟ ଜାତିମାନେ ସେମାନଙ୍କର ମର୍ଯ୍ୟାଦା ଓ ଅଧିକାର ସାବ୍ୟସ୍ତ କରିବାଲାଗି ଆନ୍ଦୋଳନମାନ କରିଚାଲିଛନ୍ତି। ପୁଣି ସବୁ ଦେଶରେ ଯୁବଗୋଷ୍ଠୀ ମଧ୍ୟ ଯେପରି ନିଜର ଆତ୍ମମର୍ଯ୍ୟାଦା ଲାଗି ବିଦ୍ରୋହ କରି ଚାଲିଛନ୍ତି ଓ ପୁରୁଷମାନଙ୍କ ଅଧିକାର ଭିତରୁ ମୁକ୍ତି ପାଇବା ଲାଗି ନାରୀମାନେ ଯେମିତି ଆନ୍ଦୋଳନ ଆରମ୍ଭ କରି ଦେଲେଣି, ସେଥିରୁ ଜଣାପଡୁଛି ଯେ ଆମର ସାମାଜିକ ଓ ରାଷ୍ଟ୍ରୀୟ ଜୀବନଧାରାରେ ନିଶ୍ଚୟ ତୃମୂଳ ବୈପ୍ଳବିକ ପରିବର୍ତ୍ତନ ଆବଶ୍ୟକ। ତା' ଛଡ଼ା, ସାଧାରଣତଃ ଲୋକମାନେ ମଧ୍ୟ ସେହି ନିଷ୍ଫଳ, ଗତିହୀନ ଘାଣ୍ଣୁ ସାମାଜିକ ଅନୁଷ୍ଠାନଗୁଡ଼ିକୁ ଓ ତା'ର ନେତୃବୃନ୍ଦଙ୍କୁ ଆଉ ମାନିବାକୁ ରାଜି ନୁହନ୍ତି; କିମ୍ବା ସେସବୁର ଅନୁଶାସନରେ ରହିବାକୁ ଚାହୁଁ ନାହାନ୍ତି, ଏବଂ ଯେଉଁସବୁ ସାମାଜିକ ମୂଲ୍ୟବୋଧ ଓ ଜୀବନାଦର୍ଶ ଉପରେ ସେହି ଅନୁଷ୍ଠାନ ଓ ନେତୃତ୍ୱ ଆଜିପର୍ଯ୍ୟନ୍ତ ପ୍ରତିଷ୍ଠିତ ରହିଥିଲା—ତା' ଉପରୁ ମଧ୍ୟ ସାଧାରଣ ମନୁଷ୍ୟର ଆସ୍ଥା ତୁଟିଗଲାଣି। ଏହାହିଁ ଜଣାଇ ଦେଉଛି ଯେ ମାନବ ସମାଜ ତାକୁ ବାନ୍ଧିରଖିଥିବା ଅନୁଷ୍ଠାନ ଗୁଡ଼ିକର ବନ୍ଧନୀଗାର ଡେଇଁ ଆମକୁ ଆଗକୁ ମାଡ଼ିଯିବାକୁ ଇଚ୍ଛା କଲାଣି। ଜୀବନପ୍ରତି ଓ ସାମାଜିକ ସଙ୍ଗଠନଗୁଡ଼ିକ ପ୍ରତି ଆମର ନୂଆ ପ୍ରକାରର ମନୋଭାବ, ଯୋଜନା, ଓ କର୍ମପନ୍ଥା ଯେପରିଭାବେ କ୍ରମଶଃ ପ୍ରକାଶିତ ହୋଇପଡ଼ିବ ସେ ଦିଗରେ ସଚେତନ ଓ ସକ୍ରିୟ ହେବାର ବେଳ ହେଉଛି ବର୍ତ୍ତମାନ। ଏହି ଦୃଷ୍ଟିରୁ ହିଁ 'ଆଜି' ଓ 'ଆସନ୍ତାକାଲି' ପରସ୍ପର ସଙ୍ଗେ ସଂପୃକ୍ତ ସମ୍ବନ୍ଧାନ୍ୱିତ। କାହିଁକିନା ଆଜି ହିଁ ପ୍ରସ୍ତୁତ ହୋଇଚାଲିବ ଆସନ୍ତାକାଲି ଆଡ଼କୁ ଓ ଭବିଷ୍ୟତର ରୂପରେଖ ଆଜି ପ୍ରସ୍ତୁତ ହେବ।

ପୃଥିବୀ ଯେପରିଭାବେ ବିଜ୍ଞାନ ଓ କାରିଗରୀ କୌଶଳର ପ୍ରଭାବ ଭିତରେ ବୁଡ଼ିଗଲାଣି ଏବଂ ଆମେ ମଧ୍ୟ ଯେପରିଭାବେ ଆମ ପରିସ୍ଥିତି ଦ୍ୱାରା ତାଡ଼ିତ ହୋଇ ଗୋଟାଏ ଗୋଳମାଳିଆ ଅବସ୍ଥାରେ ପହଞ୍ଚି ଗଲୁଣି; ସେଥିରେ କେଉଁ ରଣଧର "ଆଜି" ଯେ "ଆସନ୍ତାକାଲିକୁ" ପ୍ରସବ କରିବ ସେକଥା ନିର୍ଣ୍ଣୟ କରିବା ଖୁବ୍ କଷ୍ଟକର ନିଶ୍ଚୟ। "ଆଜି" ଓ "ଆସନ୍ତାକାଲି" ସବୁ ଗୋଳିଆମିଶା ହୋଇଗଲାଣି କାରଣ ଆମର ଯେଉଁ ଜୀବନାଦର୍ଶ ଓ ଯେଉଁ ମୂଲ୍ୟବୋଧ ଏପରି ଅବସ୍ଥାକୁ ଡାକି ଆଣିଛି ତାହାମଧ୍ୟ ସେହିପରି ଗୋଳିଆମିଶା ହୋଇଯାଇଛି।

ଏହି କେତେବର୍ଷ ମଧ୍ୟରେ ଆମ୍ଭେମାନେ ଯେଉଁସବୁ ବାସ୍ତବ ସମସ୍ୟାଗୁଡ଼ିକର ସମ୍ମୁଖୀନ ହେଉଛୁ ତାହାର ସମାଧାନ ଦିଗରେ ଆମକୁ ଯେଉଁସବୁ ପନ୍ଥା ଗ୍ରହଣ କରିବାକୁ ପଡ଼ିବ ସେ ଦିଗରେ ଅଗ୍ରସର ହେବାଲାଗି ଆମକୁ କ୍ରମେ କ୍ରମେ ଆମର ଏହି ଗୋଳିଆମିଶା ଚିନ୍ତାଧାରାକୁ ପ୍ରଥମରୁ ପରିଷ୍କାର କରିନେବାକୁ ହେବ। ତା'ମାନେ ଆମେ ଚିନ୍ତାକ୍ଷେତ୍ରରେ ଏକ ସରଳ ସ୍ପଷ୍ଟ ବାସ୍ତବ ଆଦର୍ଶକୁ ସ୍ଥିର କରିନେବା ଉଚିତ।

## ଅତ୍ୟଧିକ ଚାହିଦା—ଏକ ଦୁରାଭ୍ୟାସ

ପ୍ରତ୍ୟେକ ବ୍ୟକ୍ତି ଅତ୍ୟଧିକ ଭୋଗ୍ୟ ପଦାର୍ଥ ନିଜର ବ୍ୟବହାର ଲାଗି ଚାହିଁବ ନା ସର୍ବନିମ୍ନ ଆବଶ୍ୟକତା ପାଇଁ ସନ୍ତୁଷ୍ଟ ହେବ—ଏହା ନିଶ୍ଚୟ ଏ ଯୁଗରେ ଏକ ଜଟିଳ ସାମାଜିକ ଓ ମନସ୍ତାତ୍ତ୍ୱିକ ବ୍ୟାପାର। ଗତ ଶତକରେ ମାନବୀୟ ସାମ୍ୟବାଦ ଓ ସମାନ ନ୍ୟାୟ ବିଚାର ସମାଜରେ ପ୍ରତିଷ୍ଠା କରିବା ଲାଗି ବିଶ୍ୱର ସବୁରାଷ୍ଟ୍ରରେ ଯେଉଁ ବିପ୍ଳବ ସଂଘଟିତ ହୋଇଥିଲା—ସେତେବେଳର ଆହ୍ୱାନ ଥିଲା ପ୍ରତ୍ୟେକ ବ୍ୟକ୍ତିକୁ ସର୍ବନିମ୍ନ ଆବଶ୍ୟକତା ପୂରଣର ସୁଯୋଗ ସୁବିଧା ଓ ଅଧିକାର ଦିଆଯାଉ। ମାତ୍ର ଏହାଥିଲା ବିପ୍ଳବର ପ୍ରଥମ ଭାଗର ଆହ୍ୱାନ।

କ୍ରମଶଃ ସାରାପୃଥିବୀରେ ବ୍ୟାପିଗଲା ଆଉ ଗୋଟାଏ ମନୋଭାବ। ତାହାହେଉଛି—ସର୍ବୋଚ୍ଚ ପରିମାଣରେ ଉତ୍ପାଦନ କରାଯାଉ ଓ ଯଥେଚ୍ଛା ପରିମାଣରେ ମଧ୍ୟ ଭୋଗ କରାଯାଉ। କିନ୍ତୁ ଏକଥା ମଧ୍ୟ ସଙ୍ଗେ ସଙ୍ଗେ ସ୍ପଷ୍ଟ ହୋଇଥିଲା ଯେ ବହୁଳ ଉତ୍ପାଦନ ଓ ଯଥେଚ୍ଛା ଭୋଗବାଦ ମନୁଷ୍ୟ ସମାଜରେ ପରସ୍ପରକୁ ଲୁଣ୍ଠନ କରିବାରେ ପ୍ରବର୍ତ୍ତନା ଦେଉଅଛି ଓ ତଦ୍ଦ୍ୱାରା ମନୁଷ୍ୟ ମନୁଷ୍ୟ ମଧ୍ୟରେ ଅସାମ୍ୟ ହିଁ ବଢ଼ିଚାଲିଛି।

ସେ ଦୃଷ୍ଟିରୁ ସାରାଜଗତରେ ଚିନ୍ତାଶୀଳ ବ୍ୟକ୍ତିମାନେ ଘୋଷଣା କଲେ ଯେ ଯଥେଚ୍ଛା ଭୋଗବାଦ ହେଲା ଅର୍ଥନୈତିକ ଓ ଉତ୍କୃଷ୍ଟ ସାମାଜିକ ଅବା ମାନବୀୟ ମୂଲ୍ୟବୋଧ ଦୃଷ୍ଟିରୁ ଅତ୍ୟନ୍ତ ଗର୍ହିତ ବ୍ୟାପାର। କାରଣ ଏହା କେବଳ ବ୍ୟବହାର୍ଯ୍ୟ ପଦାର୍ଥଗୁଡ଼ିକର ବୃଥା ଅପଚୟ ଯୋଗୁଁ ନୁହେଁ ବରଂ ଏହା ପଛରେ ଥିବା ମନସ୍ତାତ୍ତ୍ୱିକ

ଦିଗଟି ମଧ୍ୟ ପାପଜନକ। ତା'ଛଡ଼ା ଆମେ ଯଦି ଯଥେଚ୍ଛା ଭୋଗକରି ଚାଲିବା ତେବେ ନିଶ୍ଚିତ ଭାବେ ଆମେ ଆଉ କେତେକ ଲୋକଙ୍କ ସ୍ୱାର୍ଥ ପ୍ରତି ଆଖିବୁଜି ଦେବା ଏବଂ ସମାଜର ଭବିଷ୍ୟତଟିକୁ ମଧ୍ୟ ନୈରାଶ୍ୟଜନକଭାବେ ବିପର୍ଯ୍ୟସ୍ତ କରିପକାଇବା।

ଏହି ବିଚାରଟି ଯେପରି ଯୁକ୍ତିସଙ୍ଗତ, ସେହିପରି ବିଜ୍ଞାନସମ୍ମତ ମଧ୍ୟ। ଏହା ଗୋଟିଏ ଦିଗରୁ ଅପଚୟ ରୋକିବାର ଓ ଅନ୍ୟଦିଗରେ ଯଥେଚ୍ଛା ଭୋଗସ୍ପୃହାକୁ ସଂଯତ କରିବାରେ ସାହାଯ୍ୟ କରିଥାଏ। ଏଥିରେ ସନ୍ଦେହ ନାହିଁ ଯେ ଅନ୍ୟର ସୁଖ ସୁବିଧା ପ୍ରତି ଧ୍ୟାନ ନଦେଇ ନିଜେ ଆଖିବୁଜି ଜୀବନକୁ ଯଥେଚ୍ଛା ଭାବେ ଭୋଗ କରିବାର ପ୍ରବୃତ୍ତି ଏକ ସ୍ୱାର୍ଥପର ପୁଞ୍ଜିବାଦୀ ସଭ୍ୟତା ଏ ସଂସ୍କୃତି ଭିତରୁ ସୃଷ୍ଟି ହୋଇଛି।

**ଲୋଡ଼ା ଏକ ଯୁକ୍ତି ସମ୍ମତ ସିଦ୍ଧାନ୍ତ**

ଏ ପ୍ରସଙ୍ଗରେ ଆମର ବିଚାରଟି ବିପ୍ଳବାତ୍ମକ ହେବା ମଧ୍ୟ ସ୍ୱାଭାବିକ। ସାହାସ ଓ ସୂକ୍ଷ୍ମଦୃଷ୍ଟି ସହିତ ଆମକୁ ଏ ଦିଗରେ ଏକ ରାଜନୀତିକ ସଙ୍କଳ୍ପ ନେବାକୁ ହେବ। ଯଥେଚ୍ଛା ଭୋଗକାମୀ ସମାଜର ମନସ୍ତାତ୍ତ୍ୱିକ ପରିବର୍ତ୍ତନ ଆଣିବାକୁ ହେଲେ, ଆଗ ଗୋଟିଏ ସତ୍ୟ ସମସ୍ତଙ୍କ ଆଗରେ ଟେକି ଧରିବାକୁ ହେବ ଯେ ବିଜ୍ଞାନ ଓ କାରିଗରୀ କୌଶଳର ବିକାଶ ଦ୍ୱାରା ସୀମାହୀନ ପରିମାଣରେ କୌଣସି ଦ୍ରବ୍ୟର ଉତ୍ପାଦନ ବଢ଼ି ଯାଇପାରିବ ନାହିଁ ଏବଂ ବିଜ୍ଞାନର ମଧ୍ୟ ଏହା ଲକ୍ଷ୍ୟ ନୁହେଁ ଯେ ମନୁଷ୍ୟ ଭିତରେ ଯଥେଚ୍ଛା ଭୋଗ କାମନା ଜାଗ୍ରତ କରି ତାକୁ ଅସଂଯତ ଭାବେ ପୂରଣ କରି ଚାଲିଥିବା। ବର୍ତ୍ତମାନ ଯେଉଁସବୁ ବିଜ୍ଞାପନ ଅତି ଚମତ୍କାର କୌଶଳ ପ୍ରୟୋଗ କରି ମଣିଷ ଭିତରେ ବହୁ ପ୍ରକାର ଦ୍ରବ୍ୟର ବ୍ୟବହାର କରିବା ସପକ୍ଷରେ ପ୍ରରୋଚନା ଦେଇ ଚାଲିଛନ୍ତି; ସେ ସବୁକୁ ଆଗ ସଞ୍ଜତ କରିବାକୁ ହେବ। ପ୍ରତିଦିନ ଖବରକାଗଜ ପତ୍ରପତ୍ରିକା ଓ କାନ୍ଥବାଡ଼ରେ ଯେଉଁସବୁ ନୟନପ୍ରୀତିକର ଛବି ସହ ବିଭିନ୍ନ ଦ୍ରବ୍ୟର ବ୍ୟବହାର ସଂପର୍କରେ ଯେଉଁସବୁ ପରୋକ୍ଷ-ପ୍ରବର୍ତ୍ତନ-କୌଶଳ-ପ୍ରୟୋଗ କରାଯାଉଛି ସେଗୁଡ଼ିକ ପ୍ରାୟ ସବୁ ବ୍ୟକ୍ତିଙ୍କର ଦ୍ରବ୍ୟ-ଚାହିଦା-ସ୍ୱାଧୀନତାକୁ ଆକ୍ରାନ୍ତ କରୁଛନ୍ତି ତେଣୁ ରାଷ୍ଟ୍ରଶକ୍ତିର ତୀକ୍ଷ୍ଣଦୃଷ୍ଟି ପ୍ରଥମେ ସେଗୁଡ଼ିକ ଉପରେ ପଡ଼ିବା ଉଚିତ।

ଆଉ ଗୋଟିଏ କଥା—ଜନସାଧାରଣଙ୍କର ଦ୍ରବ୍ୟ-ବ୍ୟବହାରରେ ସେହିସବୁ ପ୍ରାଚୀନ ରୁଚି, ଅଭ୍ୟାସ, କାମନା ଏବଂ ଚାହିଦାଗୁଡ଼ିକ ପରିବର୍ତ୍ତନ କରି ସେଗୁଡ଼ିକୁ ବର୍ତ୍ତମାନ ଆଦର୍ଶ-ଅଭିମୁଖୀ କରିବା ଦିଗରେ, ଦେଶର ବୁଦ୍ଧିଜୀବୀ ଶ୍ରେଣୀ ତଥା କବି, ଲେଖକ, ନାଟ୍ୟକାର ଓ ଶିଳ୍ପୀମାନଙ୍କର ସଚେତନ ଉଦ୍ୟମ ଆବଶ୍ୟକ। ପ୍ରାଚୁର୍ଯ୍ୟ ଯେଉଁଠି—ଅପଚୟ ସେଇଠି—ଏମିତି ଏକ ଆପାତ ଯୁକ୍ତିଯୁକ୍ତ ନୀତିବାକ୍ୟର ଅଶୁଦ୍ଧତାକୁ ପ୍ରମାଣ କରି ଦେଖାଇ ଦେବାକୁ ହେବ। ଉତ୍ପାଦନର ପ୍ରାଚୁର୍ଯ୍ୟ ମଧ୍ୟ ଅନ୍ୟ ଅଭାବଗ୍ରସ୍ତ ବ୍ୟକ୍ତି ବା ଦେଶର ଅଭାବ ପୂରଣରେ ଉପଯୋଗ ହୋଇପାରେ।

ସଂଗତ ସାମାଜିକଜୀବନ ସଂପର୍କରେ ଅନେକ କଥା ଚିନ୍ତା କରିବାକୁ ଅଛି ଓ ଅନେକ କାର୍ଯ୍ୟ ମଧ୍ୟ କରିବାକୁ ଅଛି। ଗୋଟିଏ ଗୋଟିଏ ରାଜ୍ୟରେ ପିଲାମାନଙ୍କର ପାଠ୍ୟପୁସ୍ତକ ଛପାଇବା ଲାଗି କାଗଜର ଅଭାବ ଘଟୁଥିବା ବେଳେ ବିଭିନ୍ନ ରାଜ୍ୟମାନଙ୍କରେ ପଠନଯୋଗ୍ୟ ବିଷୟ କିଛି ନଥାଇ ମଧ୍ୟ ଶହ ଶହ ଦୈନିକ, ସାପ୍ତାହିକ, ପାକ୍ଷିକ ଓ ମାସିକ ପତ୍ରିକା ବହୁଳ ସଂଖ୍ୟାରେ ଛାପା ଯାଉଛି, ବଣ୍ଟା ଯାଉଛି ବା ବିକ୍ରୟ କରାଯାଉଛି। ସେହିପରି ମନଇଚ୍ଛା ଚା ଓ କଫିପାନ ଦ୍ୱାରା ଚିନିର ବ୍ୟବହାର ଅତ୍ୟଧିକ ବଢ଼ି ଯାଇଛି। ପୋଷାକପତ୍ରରେ ମଧ୍ୟ ଦିନକୁ ଦିନ ଏପରି ବାହୁଲ୍ୟ ଘଟୁଛି—ଏବଂ କି ବୃଦ୍ଧ, ଯୁବା, ବାଳକ, ବାଳିକା ସମସ୍ତଙ୍କ ଭିତରେ ନୂଆ ନୂଆ ଫେସନ୍ ପ୍ରତି ଏପରି ତୀବ୍ର ଆକାଂକ୍ଷା ଓ ଲାଳସା ଦେଖା ଦେଇଛି—ଯାହା ଦେଖିଲେ ମନେ ହୁଏ—ସତେ କି ଆଧୁନିକ ମଣିଷଟିର ରୁଚି ଓ ମାନସିକତା ଜୀବନର ଆଉ ଅନ୍ୟ ଦିଗଗୁଡ଼ିକ ପ୍ରତି ବୀତସ୍ପୃହ ହୋଇଗଲାଣି। ଏପ୍ରକାର ମନୋଭାବ ଖୁବ୍ ବେଶି ଉନ୍ନତ ସଂସ୍କୃତିର ପରିଚୟ ଦିଏ ନାହିଁ, ବରଂ ଫେସନ୍ ପ୍ରତି ଏହି ବାହୁଲ୍ୟ ଏକାଗ୍ରତା ଏକ ଅଧଃପତିତ ସଂସ୍କୃତିର ପ୍ରତୀକ ହୋଇଥାଏ। ବ୍ୟକ୍ତି ପକ୍ଷରେ ମଧ୍ୟ ଏହି ଫେସନ୍-ପ୍ରବଣତା ତା'ର ବ୍ୟକ୍ତିତ୍ୱର ଗଭୀର ବିକାଶ ପଥରେ ଗୋଟିଏ ଦିଗରୁ ଅନ୍ତରାୟ ସୃଷ୍ଟି କରେ। ତା'ର ଆତ୍ମ-ସ୍ୱାଧୀନତା ଲୋପପାଇ ସେ କେବଳ ଅନ୍ୟର ବାହ୍ୟ-ପ୍ରବର୍ତ୍ତନାର ଶୀକାର ହୋଇଯାଏ।

ଦିନ ଥିଲା—ଯେତେବେଳେ କି ଲୋକେ ଗୋଟିଏ ଜିନିଷ କିଣିବାବେଳେ ତା'ର ସ୍ଥାୟିତ୍ୱ ଉପରେ ଆଗ ପ୍ରଶ୍ନ କରୁଥିଲେ। ଏହି ଶାଢ଼ୀଟି କେତେଦିନ ଯିବ—ଏହି ଲଣ୍ଠନଟି କେତେଦିନ ଟେକିବ—ଏହି କଲମଟିରେ କେତେ ପୃଷ୍ଠା ଲେଖି ହେବ—ଏଇଟା ଥିଲା ଖରିଦ୍‌ଦାରଙ୍କ ବଡ଼ ପ୍ରଶ୍ନ। ମାତ୍ର ବର୍ତ୍ତମାନ ଜିନିଷର ସ୍ଥାୟିତ୍ୱ ନାହିଁ—ତାର ଉପରର ଚାକଚକ୍ୟ ଉପରେ ଜୋରଟା ବେଶି; ବରଂ ଜିନିଷଟି କମ୍ ଦିନ ଟେକିଲେ ଭଲ—କାରଣ ତା'ହେଲେ ଅଚିରେ ଆଉ ଗୋଟିଏ ନୂଆ ଫେସନର ଜିନିଷ କିଣି ହେବ।

ଯେ ଯେତେ ଏମିତି ନୂଆ ଜିନିଷମାନ କିଣି ପାରୁଛି—ବା ସେଗୁଡ଼ିକ ଦ୍ୱାରା ତା'ର ଘର ଭର୍ତ୍ତି କରିପାରୁଛି—ତା'ର ସାମାଜିକ ମର୍ଯ୍ୟାଦା ପୁଣି ଆମ ଆଖିରେ ଖୁବ୍ ବେଶୀ। ଆମେ ଜାଣିପାରୁନୁ—ଏହି କ୍ରୟ-ବାହୁଲ୍ୟ କିପରି ଉତ୍ପାଦନ-ବାହୁଲ୍ୟକୁ ଡାକି ଆଣୁଛି ଓ ଏହି ଉତ୍ପାଦନ ବାହୁଲ୍ୟ କିପରି ଘୋର ଅପଚୟଜନିତ ବିପର୍ଯ୍ୟୟ ଆଡ଼କୁ ଟାଣି ନେଉଛି ସମଗ୍ର ପୃଥିବୀକୁ। ଆମେରିକା ଭଳି ସମୃଦ୍ଧି ପୂର୍ଣ୍ଣ ଦେଶରେ ମଧ୍ୟ ଗୋଟିଏ ଗୋଟିଏ ଜାଗାରେ ଭଙ୍ଗା ମଟରର ସ୍ତୂପ ଦେଖି ଜାଗ୍ରତ ଅର୍ଥନୀତିଜ୍ଞମାନେ ପ୍ରମାଦ ଗଣିଲେଣି ସେହିପରି ଆମ ଦେଶରେ ଯେକୌଣସି ବଡ଼ ସହରର ଅଳିଆଗଦା ଆଡ଼କୁ ଦୃଷ୍ଟି ପକାନ୍ତୁ—ଦେଖିବେ ଭଙ୍ଗା ଟିଣ, ପାଉଡ଼ର ଡବା, ନେଇପଲିସି କାଚ ଇତ୍ୟାଦିର ଗଦା। କେହି କ'ଣ ବୁଝିଛି ଯେ ଏ ପୃଥିବୀ ଚିରଦିନ ଏମିତି ଲୁହା,

କୋଇଲା, କିରାସିନି ବା ପେଟ୍ରୋଲ ଯୋଗାଇ ଚାଲିଥିବ ନାହିଁ? ଏସବୁ ଜିନିଷ ଶୀଘ୍ର ସରିଯିବ। ସେ ଦୃଷ୍ଟିରୁ ଆମକୁ ବର୍ତ୍ତମାନ ନୂତନ ବିଚାରଧାରା ଓ ନୂତନ ମୂଲ୍ୟବୋଧକୁ ପ୍ରଚଳନ କରିବାକୁ ହେବ। "ସରଳ ଜୀବନଧାରା ସଙ୍ଗେ ଉନ୍ନତ ଚିନ୍ତାର ସଂଯୋଗ" ଭଳି ପୁରାତନ ନୀତିବାକ୍ୟଟିକୁ ପୁଣି ଥରେ ଆଧୁନିକ ମୂଲ୍ୟବୋଧର ମର୍ଯ୍ୟାଦା ଉପରେ ପ୍ରତିଷ୍ଠିତ କରିବାକୁ ହେବ ଏବଂ ଆମ୍ଭେମାନେ ଆଜି ପର୍ଯ୍ୟନ୍ତ ଯେଉଁ ନକଲି ଛଦ୍ମ ମୂଲ୍ୟବୋଧ ଉପରେ ବସି ସଭ୍ୟତାର ଢକ୍କା ପିଟୁଥିଲୁ, ତାକୁ ଖୁବ୍ ଶୀଘ୍ର ବଦଳାଇ ଦେବାକୁ ପଡ଼ିବ। ଗୋଟିଏ ଦୃଷ୍ଟାନ୍ତ ଦିଆଯାଉ। ପ୍ରତିଥର ଦୁଆର ଓ ଝରକା ଲାଗି ନୂଆ ପର୍ଦ୍ଦାମାନ ନ କିଣି ଆମେ କ'ଣ ଆମର ପୁରୁଣା ଚିରା ଶାଢ଼ୀ ଦ୍ୱାରା ପର୍ଦ୍ଦା ତିଆରି କରିପାରନ୍ତେ ନାହିଁ? ଏ ବ୍ୟାପାରରେ ଧନୀ, ମଧ୍ୟବିତ୍ତ ଓ ଦରିଦ୍ର ସମସ୍ତଙ୍କର ସମାନ ରୁଚି ଓ ନୀତି ରହିବା ଉଚିତ ନୁହେଁ କି? ଏଭଳି ଉଦାହରଣ ଆପଣା ମନରୁ ବହୁତ ଆବିଷ୍କାର କରିବେ ନାହିଁ କି?

### ଏକ ସଙ୍ଗଠିତ ଅପଚୟ

ଆମର ଏଇ ଆଧୁନିକ ସଭ୍ୟସମାଜରେ କେତେପ୍ରକାର ଅପଚୟର ଲୀଳା ଚାଲିଛି—ତାକୁ ଭାବି ବସିଲେ ମୁଣ୍ଡ ଘୂରାଇ ଯିବ। ସଭ୍ୟତା ଓ ସଂସ୍କୃତି ନାମରେ ଏକ ଯଥେଚ୍ଛାଚାରୀ ମନୋଭାବ ଭଦ୍ର ଓ ଧନୀ ସମାଜରେ କିପରି କାମ କରୁଛି, ଶୁଣିବେ କି? ଏଇ ଧରନ୍ତୁ—ଆମର ଟୁରିଜିମ୍ ବା ପର୍ଯ୍ୟଟନବାଦ ବିଷୟଟି। ଯାନବାହାନର ପରିଣାମାତ୍ମକ ଓ ଗୁଣାତ୍ମକ ଅଭିବୃଦ୍ଧି ଯୋଗୁଁ ବର୍ତ୍ତମାନ ଗୋଟିଏ ସ୍ଥାନର ଲୋକେ ଅନ୍ୟ ସ୍ଥାନକୁ ଅତି ସହଜରେ ଯିବା ଆସିବା କରି ପାରୁଛନ୍ତି। ସେଥିଯୋଗୁଁ ସାରା ପୃଥିବୀରେ ବିଭିନ୍ନ ବିଦେଶ ଘୁରି ବୁଲିବା ଗୋଟାଏ ଅଯଥା ମାନସିକ ପ୍ରବଣତାରେ ପରିଣତ ହୋଇଗଲାଣି। ଏହାର ମୂଳ ଉଦ୍ଦେଶ୍ୟ ହେଲା—ଗୋଟିଏ ଅଜଣା ଯାଗାକୁ ଯାଇ ସେ ଜାଗାର ସଭ୍ୟତା, ସଂସ୍କୃତି ସଙ୍ଗେ ପରିଚିତ ହେବା—ଏବଂ ତା'ର ସନ୍ଦେଶ ଆଣି ନିଜ ଦେଶରେ ପ୍ରଚାର କରି ବିଶ୍ୱମାନବୀୟ ସଂସ୍କୃତିକୁ ପରିପୁଷ୍ଟ କରିବାରେ ସାହାଯ୍ୟ କରିବା କିମ୍ବା ଏକ ଅଜଣା ରହସ୍ୟର ସନ୍ଧାନରେ ଦୁଃସାହସିକ ଅଭିଯାନ କରିବା କିମ୍ବା କୌଣସି ତୀର୍ଥକୁ ଗମନ କରି ବା ଦେବଦର୍ଶନ କରି ନିଜର ଚିତ୍ତଶୁଦ୍ଧି ବା ଆତ୍ମଶୁଦ୍ଧି କରିବା। ମାତ୍ର ବର୍ତ୍ତମାନ ଏହି ଯେ ଲକ୍ଷ ଲକ୍ଷ କୋଟି କୋଟି ଅର୍ଥପ୍ରାଚୁର୍ଯ୍ୟବନ୍ତ ବ୍ୟକ୍ତି ପୃଥିବୀର ଏପ୍ରାନ୍ତରୁ ସେ ପ୍ରାନ୍ତ ଯାଏ ଘୁରିବୁଲୁଛନ୍ତି ବା ଉଡ଼ି ବୁଲୁଛନ୍ତି ଏମାନଙ୍କର ଏହି ଭ୍ରମଣଲୀଳାର ପ୍ରକୃତ ଲକ୍ଷ୍ୟ କ'ଣ? ବହୁ ଉଦାହରଣ ଦେଇ ହେବ ଯେଉଁଥିରେ କି ଆମେ ଜାଣିପାରିବା ଯେ ଏହା କେବଳ ଧନବନ୍ତମାନଙ୍କ ଏକ ଖିଆଲି ବିଳାସ। କେତେକ କ୍ଷେତ୍ରରେ ଏହା ଏକ ଅସ୍ଥିର ମନୋଭାବରୁ ମଧ୍ୟ ସୃଷ୍ଟି ହୋଇଥାଇ ପାରେ। କିନ୍ତୁ ପ୍ରତ୍ୟକ୍ଷ ଭାବେ ଏତଦ୍ୱାରା କେତେ ଯାନବାହାନର

ଜାଳେଣୀ ତେଲ ଅପଚୟ ନ ହେଉଛି ଓ ପରୋକ୍ଷରେ କେତେ ଦ୍ରବ୍ୟର ଅପଚୟ ନ ଘଟୁଛି। ସଂସ୍କୃତିର ଆଦାନ ପ୍ରଦାନ ବା ପ୍ରାକୃତିକ କୌଣସି ନୂତନ ରହସ୍ୟର ଉଦ୍‌ଘାଟନ କିମ୍ବା ଧର୍ମଭାବ ଅର୍ଜନ, କୌଣସିଟି ଲକ୍ଷ୍ୟ ସହ ବିରାଟ ଭ୍ରମଣଲୀଳା ଦ୍ୱାରା ସାଧିତ ହେଲାଭଳି ମନେ ହୁଏ ନାହିଁ। କାରଣ ଏହି ସଘଂବଦ୍ଧ ପର୍ଯ୍ୟଟନ ପଛରେ କୌଣସି ଗଭୀର ଆନ୍ତରିକ ସାଂସ୍କୃତିକ ପ୍ରେରଣା ରହିନାହିଁ। ବରଂ ରହିଛି ଅନିୟଂତ୍ରିତ ନିମ୍ନ ପ୍ରାଣ-ଶକ୍ତିର ଘୋର ଅସ୍ଥିର ଅମାର୍ଜିତ ଅଧୀର ବାଇଚ୍ଛୁରିଆ ତାଡ଼ନା।

ଏସବୁ ଦ୍ୱାରା କଞ୍ଚା ମାଲ, ଜାଳେଣୀ ଦ୍ରବ୍ୟ ଏବଂ ସମୟର ଘୋର ଅପଚୟ ତ ନିଶ୍ଚୟ ଆମ ଆଖିରେ ପଡୁଛି—ତା’ ଛଡ଼ା ଆମ ଆଖିରେ ନ ପଡୁଥିବା ବହୁ କ୍ଷୟକ୍ଷତି ମଧ ଘଟି ଯାଉଛି—ଯାହା ପ୍ରତି ଆମେ ଆଜିଠୁଁ ସଚେତନ ନହେଲେ—ଆମର ଆସନ୍ତାକାଲିଟି ନଷ୍ଟଭ୍ରଷ୍ଟ ହୋଇଯିବାର ଆଶଙ୍କା ରହିଛି। ଆମର ପର୍ଯ୍ୟଟନ ବ୍ୟାପାରଟି ବର୍ତ୍ତମାନ କେବଳ ଅସ୍ଥିର ମଣିଷମାନଙ୍କର ବୁଲା ପ୍ରକୃତିର ଏକ ଅନର୍ଥକ ଲୀଳା କହିଲେ ଅତ୍ୟୁକ୍ତି ହେବ ନାହିଁ।

## ଶିକ୍ଷା ଆଉ ଗବେଷଣା କ୍ଷେତ୍ରରେ

ଶିକ୍ଷା ଆଉ ଗବେଷଣା କ୍ଷେତ୍ରରେ ମଧ ଆମର ତୀକ୍ଷ୍ଣ ସଚେତନାର ଆବଶ୍ୟକତା ରହିଛି। ବର୍ତ୍ତମାନ ଆମେ ଯେଉଁ ଶିକ୍ଷାପଦ୍ଧତି ଚଳାଇଛୁ—ତାକୁ ଭଲଭାବେ ପର୍ଯ୍ୟବେକ୍ଷଣ କଲେ ଜଣାଯିବ ଯେ ଆମର ଛାତ୍ର, ଶିକ୍ଷକ ଓ ଅଧାପକମାନଙ୍କ କେତେ ମୂଲ୍ୟବାନ ସମୟ ଅଯଥା ନଷ୍ଟ ହେଉଛି। କକ୍ଷା ଶ୍ରେଣୀଗୁଡ଼ିକରେ ବର୍ଷକୁ ଛାତ୍ରମାନେ କେତେ ସମୟ ପଢୁଛନ୍ତି ବା ଶିକ୍ଷକମାନେ କେତେ ସମୟ ପଢ଼ାଉଛନ୍ତି ଏବଂ ଅବଶେଷ ସମୟର କିପରି ଫଳପ୍ରସୂ ବ୍ୟବହାର କରାଯାଇପାରେ—ସେ ସମ୍ବନ୍ଧେ ଆଜି ହିଁ ଆମକୁ ଚିନ୍ତାକରି ଯୋଜନା କରିବାକୁ ପଡ଼ିବ। ତେଣେ ଗାଁ ଗହଳରେ କୃଷି କ୍ଷେତ୍ରରେ ଧୋଇ ମରୁଡ଼ି ବା କର୍ଷଣ ଆମଦାନୀରେ ସାହାଯ୍ୟ କରିବା ଲାଗି ଆମେ ଆମର ଶିକ୍ଷାବିତ ଯୁବକ-ଯୁବତୀମାନଙ୍କର ଉଦ୍‌ବୃତ୍ତ ସମୟକୁ ଲଗାଇ ପାରୁଛୁ କି? କୋଟି କୋଟି ଟଙ୍କା ବ୍ୟୟରେ ଦେଶସାରା ଯେଉଁ ବୃହତ୍ ଶିକ୍ଷାଳୟ ଓ ସଂଗଠନମାନ ଗଢ଼ି ଉଠିଛି—ତଦ୍ୱାରା ଦେଶ କେତେ ଫଳ ପାଉଛି—ତା’ର ବିଚାର ଆଜି ହିଁ କରିବା ଉଚିତ ନୁହେଁ କି? ଆମେ ଆମର ଶିକ୍ଷା ବ୍ୟବସ୍ଥା ଦ୍ୱାରା କି ପ୍ରକାର ନାଗରିକ ଭବିଷ୍ୟତ ପାଇଁ ତିଆରି କରୁଛି—ଆଉ ଆମର ବାଳକ ବାଳିକା ଓ ଯୁବକ ଯୁବତୀମାନଙ୍କର ମାନସିକ ଉତ୍କର୍ଷ କେତେ ପରିମାଣରେ ବଢ଼ାଇ ପାରୁଛୁଁ ତା’ର ହିସାବ ଆମେ ଆଜି ହିଁ ଦେଖିବା ଉଚିତ। ତଦନୁଯାୟୀ ଆମର ଶିକ୍ଷା ବ୍ୟବସ୍ଥାର ପରିବର୍ତ୍ତନ ମଧ କରିବାକୁ ହେବ ଆଜିଠାରୁ। ସେହିପରି ଆମର ବିଜ୍ଞାନ ଓ ଗବେଷଣା ସଂସ୍ଥାମାନଙ୍କୁ ମଧ ଆସନ୍ତାକାଲି ଦୃଷ୍ଟିରୁ ପରିଚାଳିତ କରିବାକୁ ହେବ। କେତେକ ଆଧୁନିକ କବିତା ଭଳି,

ବିଜ୍ଞାନ-ଗବେଷଣା କାର୍ଯ୍ୟକୁ କେବଳ ଖିଆଲି ଦାୟିତ୍ୱ ହୀନ ଭାବେ ଚଳାଇ କୋଟି କୋଟି ଟଙ୍କା ସେ ବାବଦରେ ଖର୍ଚ୍ଚ କରି ଚାଲିବା ଏକ ଅବିବେକିତାର କାର୍ଯ୍ୟ। କେଉଁ କେଉଁ ବିଷୟରେ ଆଜି ଗବେଷଣାକଲେ ଆସନ୍ତାକାଲି ତା'ର ବାସ୍ତବ ସଫଳତା ଭୋଗ କରିବା—ସେ ସମ୍ବନ୍ଧେ ଆଜି ହିଁ ସଚେତନ ହେବାକୁ ପଡ଼ିବ।

## ଆଗମୀ କାଲିର ସଚେତନ ସ୍ରଷ୍ଟା

ଆମକୁ ହିଁ ଆଜି ହେବାକୁ ପଡ଼ିବ—ଆଗାମୀକାଲିର ସଚେତନ ସ୍ରଷ୍ଟା। ଆମେ କେବଳ ଆଜି ଲାଗି ବଞ୍ଚିବା ନାହିଁ। ଆସନ୍ତାକାଲି ଆମେ ହୁଏତ ବଞ୍ଚିବା ଅଥବା ବଞ୍ଚି ନଥିବା। କିନ୍ତୁ ଆମର ଉତ୍ତରାଧିକାରୀମାନେ ବଞ୍ଚିବେ। ଅପରିମାଣଦର୍ଶୀ ପିତାମାତା ଯେପରି ନିଜର ମଉଜ ମଜଲିସ୍‌ରେ ପିତୃପିତାମହ ଅର୍ଜିତ ଧନସମ୍ପତ୍ତି ଉଡ଼ାଇ ଦିଅନ୍ତି ଓ ତାଙ୍କର ପିଲାମାନେ ଅନାଥ ହୋଇ ବାରଦ୍ୱାର ଶୁଣ୍ଢି ପିଣ୍ଡା ହୋଇଥାନ୍ତି। ଆମେ ଯେପରି ସେହିପରି କାଣ୍ଡ କାରଖାନା କରି ନ ବସୁ। ଆମକୁ ସ୍ମରଣ ରଖିବାକୁ ହେବ—ଏ ପୃଥିବୀରେ ଅସରନ୍ତି ଲୁହାଖଣିମାନ୍ ନାହିଁ, ଅସରନ୍ତି ପେଟ୍ରୋଲ ବା କିରୋସିନି ନାହିଁ। ଅସରନ୍ତି କୋଇଲା ଆମର ପାତାଳପୁରୀ ଗଚ୍ଛିତ ହୋଇ ରହିନାହିଁ। ବିଦ୍ୟୁତ୍‌ଶକ୍ତିର ଉତ୍ପାଦନ ଲାଗି ଆମ ଗ୍ରହରେ ଅଫୁରନ୍ତ ଉତ୍ପାଦନ ଗଚ୍ଛିତ ନାହିଁ।

ଆମକୁ ମଧ୍ୟ ସ୍ମରଣ ରଖିବାକୁ ହେବ ଏ ପୃଥିବୀରେ ଆମେ ମନଇଚ୍ଛା ଆମର ବଂଶବୃଦ୍ଧି କରିପାରିବୁ ନାହିଁ। ଏ ପୃଥିବୀ ମଧ୍ୟ କେବଳ ମୋରି ଲାଗି ଓ ମୋରି ବଂଶଙ୍କ ଭୋଗ ଉପଭୋଗ ଲାଗି ତିଆରି ହୋଇ ନାହିଁ।

ଆମକୁ ପରିଶେଷରେ ସଚେତନ ହେବାକୁ ପଡ଼ିବ ଯେ ଆମେ ଆମର 'ଆଜି'କୁ ଏପରି ଭାବେ ତିଆରି କରିବା—ଯେପରିକି ତା ଗର୍ଭରୁ ସୁନ୍ଦର ସଙ୍ଗତିପୂର୍ଣ୍ଣ ସମୃଦ୍ଧିବନ୍ତ ଓ ଯତ୍‌ପରୋନାସ୍ତି ସଞ୍ଜାତ ନିରାପଦ 'ଆଗାମୀ କାଲି'ଟିଏ ଜନ୍ମଲାଭ କରି ପାରିବା।



# ମନ୍ଥରା ଯୁଗେ ଯୁଗେ

ସତ୍ୟସନ୍ଧ, ପରମକାଣିକ, ପ୍ରଜାନୁଗତ ପ୍ରାଣ, ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ରଙ୍କ ରାଜତ୍ୱରେ ସମସ୍ତେ ଅଖଣ୍ଡ ସୁଖ ଶାନ୍ତିରେ ବାସ କରୁଥିଲେ । ଯଥାସମୟରେ ବାରିବର୍ଷଣ କରୁଥିଲେ ପର୍ଜନ୍ୟଗଣ। କୃଷିକାରୀମାନେ ଧରିତ୍ରୀ କର୍ଷଣକରି ପର୍ଯ୍ୟାପ୍ତ ଶସ୍ୟ ଅମଳ କରୁଥିଲେ । ବଣିକମାନେ ପୃଥିବୀ ପର୍ଯ୍ୟଟନ କରି ନିରାପଦରେ ଦ୍ରବ୍ୟ-ସମ୍ଭାର ଆମଦାନୀ ଓ ରପ୍ତାନି କରୁଥିଲେ । ବ୍ରାହ୍ମଣମାନେ ଯଜନ ଯାଜନ ଅଧ୍ୟାପନରେ ବ୍ରହ୍ମତ୍ୱର ବିକାଶ ଓ ପ୍ରକାଶ କରି ରାଜ୍ୟର ବୃଦ୍ଧି ଓ ଶାନ୍ତିରକ୍ଷା କରୁଥିଲେ । ମୁନି ଋଷିଗଣ ନିର୍ବିଘ୍ନରେ ଯଜ୍ଞ ତପସ୍ୟାଦି ସାଧନ ପୂର୍ବକ ରାଜା ଓ ପ୍ରଜାମାନଙ୍କ ଲାଗି ତପଫଳ ସଂଚୟ ଓ ସଂପ୍ରଦାନ କରୁଥିଲେ । ବିଚାରାଳୟମାନଙ୍କରେ ନ୍ୟାୟ ସୁପ୍ରତିଷ୍ଠିତ ଓ କାଳୋଚିତ ମଙ୍ଗଳ ବିଧାନରେ ଗତିଶୀଳ ଥିଲା । ଭାଗ୍ୟହୀନମାନଙ୍କ ଲାଗି ରାଜଦୃଷ୍ଟି ସର୍ବଦା ଜାଗ୍ରତ ଓ ସକ୍ରିୟ ଥିଲା । ସବଳମାନେ ରାଜଦଣ୍ଡ ଭୟରେ ଓ ରାଜା ରାମଙ୍କର ପବିତ୍ର ଚରିତ୍ରର ଶୁଭପ୍ରଭାବରେ ଦୁର୍ବଳମାନଙ୍କ ଉପରେ ଅତ୍ୟାଚାର କରିବା ପରିବର୍ତ୍ତେ ସେମାନଙ୍କୁ ଆପଦବିପଦରେ ସହାୟତା କରୁଥିଲେ । ଶିଶୁ ଓ ନାରୀମାନେ ଅଖଣ୍ଡନିରାପତ୍ତା, ମର୍ଯ୍ୟାଦା ଓ ବାତ୍ସଲ୍ୟ ପ୍ରଣୟାଦି ଭୋଗକରି ସମାଜକୁ ମାଧୂର୍ଯ୍ୟ ଓ ସୌନ୍ଦର୍ଯ୍ୟ ବିମଣ୍ଡିତକରି ରଖିଥିଲେ । ମୋଟ ଉପରେ ବ୍ୟାପାରଟି ଥିଲା "ରାମରାଜ୍ୟ" । ରଘୁବଂଶୀୟମାନଙ୍କର ଆଦର୍ଶ ରାଜତ୍ୱ ପରଂପରାକୁ ଯୁଗପୁରୁଷ ରାମଚନ୍ଦ୍ର ଆହୁରି ସମୃଦ୍ଧ ଓ ପ୍ରଗତିଶୀଳ କରି ଆଣୁଥିଲେ । ରାମଚନ୍ଦ୍ରଙ୍କ ମହିମା ଓ ଯଶୋଗାନରେ ଅଯୋଧ୍ୟା ଓ ତତ୍‌ସଂଲଗ୍ନ ରାଜ୍ୟମାନ ନିତିପ୍ରତି ମୁଖରିତ ହେଉଥିଲା ।

କିନ୍ତୁ ତଥାପି, ସେତେବେଳେ ବି ଅଯୋଧ୍ୟାରେ ଜମ୍ବୁକୋପମ କ୍ଷୁଦ୍ରବୁଦ୍ଧି ଓ କ୍ଷୁଦ୍ରଚରିତ ବ୍ୟକ୍ତିମାନଙ୍କର ଅଭାବ ନଥିଲା । ସେମାନଙ୍କୁ "ସବୁ ଠିକ୍ ଚାଲୁଛି" ବା "ସବୁ ଠିକ୍ ଚାଲିବାକୁ ଉପକ୍ରମ କରୁଛି"—ଏହି କଥାଟା ଆଦୌ ଭଲ ଲାଗୁନଥିଲା । ସୁହାଉ ମଧ ନଥିଲା । ପେଚକାଦି ରାତ୍ରିଚର ପ୍ରାଣୀମାନେ ଦିବାଲୋକ ପ୍ରତି ଅସହିଷ୍ଣୁ ଓ ଈର୍ଷାନ୍ୱିତ ହେଲାଭଳି ସେମାନେ ରାମରାଜ୍ୟର ଉପକ୍ରମ ପ୍ରତି ଈର୍ଷାଜର୍ଜରିତ ଓ ଅସହନଶୀଳ ହୋଇଉଠିଲେ । ବହୁବର୍ଷ ପୂର୍ବେ ରାମଙ୍କୁ ରାଜା ରୂପେ ଅଭିଷିକ୍ତ କରିବା ପ୍ରସ୍ତାବ ଓ ସିଦ୍ଧାନ୍ତ ବେଳେ ମଧ ସେମାନେ ଉପସ୍ଥିତ ଥିଲେ ଓ ମନ୍ଥରା ଥିଲା ସେମାନଙ୍କର ମୁଖପାତ୍ରୀ । ମନ୍ଥରା କେବଳ ଦେହରେ କୁବ୍‌ଜୀ ନଥିଲା—ତାର

ଦେହ ସମେତ ମନ ଓ ପ୍ରାଣ ମଧ୍ୟ ଥିଲା କ୍ୟୁବ୍‌ଜା ଓ ନ୍ୟୁବ୍‌ଜା (full of angularities) ତାକୁ ଚନ୍ଦନ ଓ କସ୍ତୁରୀର ସୁବାସ ଭଲ ଲାଗୁ ନଥିଲା । ଗତଘନା ରାକାଶଶୀଶୋଭନା ଯାମିନୀରେ ତା'ର ଚିତ୍ତ ଦଗ୍ଧ ହୋଇ ଯାଉଥିଲା । ଉଲ୍ଲାସ ଆନନ୍ଦାପ୍ଲୁତ ଶାନ୍ତି ଓ ପ୍ରୀତି ପୂର୍ଣ୍ଣପରିବେଶ ତାକୁ ଅସ୍ଥିର ଲାଗୁଥିଲା । ସର୍ବସମ୍ମତିକ୍ରମେ ଗୃହୀତ କୌଣସି ସିଦ୍ଧାନ୍ତ ତା'ର ମନକୁ ପାଉନଥିଲା । ଘଟଣାର ସହଜ ସ୍ୱାଭାବିକ ସରଳଗତି ବା ପରିଣତି ତାକୁ ଦୁଃସହ ବୋଧ ହେଉଥିଲା । ଯେଉଁ ରାମଚନ୍ଦ୍ରଙ୍କୁ ଦର୍ଶନ କରିବା ମାତ୍ରେ ବ୍ରହ୍ମଜ୍ଞ ମୁନିଋଷିଙ୍କର ଚିତ୍ତ ବିଚଳିତ ହୋଇଯାଉଥିଲା—ପ୍ରଜାମାନଙ୍କର ହୃଦୟ ବିମୋହିତ ହୋଇଯାଉଥିଲା—ସେହି ସୌମ୍ୟଦର୍ଶନ କୋଟିକାମଗଞ୍ଜନ ପଦ୍ମପଳାଶନେତ୍ର ନବଦୁର୍ବାଦଳଶ୍ୟାମ ରାମଚନ୍ଦ୍ରଙ୍କୁ ଦେଖିବାମାତ୍ରେ ତା'ର ଆଖିରେ ନିଆଁ ଲାଗିଯାଉଥିଲା । ଦେଣ୍ଡାପୋଡ଼ିହୋଇ ଯାଉଥିଲା । ସେହି ମନ୍ଥରାର ବିଷଦିଗ୍ଧ ଅନ୍ତର ଭିତରୁହିଁ ନିଃଶ୍ୱସିତ ହୋଇ ଉଠିଲା—ଦେବଚରିତ ରାମଚନ୍ଦ୍ରଙ୍କ ପ୍ରତି କୁତ୍ସିତ ଈର୍ଷାସଂଶୟାଚ୍ଛନ୍ନ କ୍ଷୁଦ୍ର କୁହେଳିକାଟିଏ ଯାହାକି ଅଚିରେ ରାତିପାହି ସକାଳ ହେବାଯାଏ ମଧ୍ୟ ଅପେକ୍ଷା ନକରି, ସାରା ଅଯୋଧ୍ୟାର ଆକାଶକୁ ମଧ୍ୟ ଅଶିବଅନ୍ଧାରରେ ଆଚ୍ଛନ୍ନ କରି ପକାଇଲା ।

କେବଳ ମନ୍ଥରା ନୁହେଁ—ସେତେବେଳେ ମନ୍ଥରା ସଦୃଶା କେତେ ସଂଖ୍ୟକ କ୍ୟୁବ୍‌ଜ ଓ ନ୍ୟୁବ୍‌ଜ ସ୍ୱଭାବର ନରନାରୀ ମଧ୍ୟ ଅଯୋଧ୍ୟାରେ ଥିଲେ—ଯେଉଁମାନେ କି ମନପ୍ରାଣରେ ରାମ ବିରୋଧୀ ଓ ରାମରାଜ୍ୟ—ବିରୋଧୀ ଏବଂ ଆଶ୍ଚର୍ଯ୍ୟ ଅନୁଶୋଚନାର କଥା ଯେ, ସେମାନଙ୍କର ସେହି ବିକୃତ-ବୁଦ୍ଧି-ପ୍ରସୂତ-ଚକ୍ରାନ୍ତ ସେଥରକ ଅନାୟାସରେ ସଫଳ ହୋଇଯାଇଥିଲା । ମର୍ଯ୍ୟାଦାପୁରୁଷୋତ୍ତମ ଦୀନବନ୍ଧୁ ଦେବୋପମ ରାମଚନ୍ଦ୍ର ଲକ୍ଷ୍ମଣ ଭଳି ଭାଇ ଆଉ ସୀତାଙ୍କ ପରି ପତ୍ନୀ ସହିତ ଚଉଦ ବର୍ଷକାଳ ବନବାସୀ ହେବାକୁ ବାଧ୍ୟ ହୋଇପଡ଼ିଲେ ।

ପୁଣି ଦୀର୍ଘ ଚଉଦବର୍ଷ ପରେ ତ୍ରିପୁରଉତ୍ପୀଡ଼କ ରାବଣେଶ୍ୱରକୁ ସବଂଶେନିଧନ କରି, ବହୁ ସାଧୁସଜ୍ଜନ ମୁନିଋଷିଙ୍କ ଦ୍ୱାରା ଅଭିନନ୍ଦିତ ହୋଇ କୀର୍ତ୍ତିମାନ ରାମଚନ୍ଦ୍ର ଯେତେବେଳେ ବନବାସରୁ ପ୍ରତ୍ୟାବର୍ତ୍ତନ କରି ବହୁ ହର୍ଷ ଉଲ୍ଲାସ ଆନନ୍ଦ ଆଶା ଆଶ୍ୱାସନାରେ ଅଭିଷିକ୍ତ ହୋଇ ରାଜସିଂହାସନରେ ଅଧିରୂଢ଼ ହେଲେ ଓ ରାମରାଜ୍ୟ ପ୍ରତିଷ୍ଠାଦିଗରେ ପ୍ରୟାସବାନ ହେଲେ, ସେତେବେଳେ ମଧ୍ୟ ଅଯୋଧ୍ୟାର ସେହି କ୍ଷୁଦ୍ରଚେତା କ୍ୟୁବ୍‌ଜ ଓ ନ୍ୟୁବ୍‌ଜ ଗୋଷ୍ଠୀ ପୁନର୍ବାର ଈର୍ଷାଦଗ୍ଧ ଚିତ୍ତରେ ଜାଗି ଉଠିଲେ—ସକ୍ରିୟ ହୋଇ ଉଠିଲେ । ଏଥରକ କିନ୍ତୁ ସେମାନଙ୍କର କଣ୍ଟକଦୃଷ୍ଟି ବଦ୍ଧହେଲା ସତୀଶିରୋମଣୀ ସୀତାଙ୍କ କପାଳରେ । ଏକାନ୍ତ ରାମଗତପ୍ରାଣା ସୀତାଙ୍କ ଅଗ୍ନିଶୁଦ୍ଧ ସୁବର୍ଣ୍ଣ ଚରିତ୍ରରେ କଳଙ୍କ ଆରୋପିତ କରି ତାଙ୍କୁ ଏକାକିନୀ ବନବାସିନୀ କରିଦେବାକୁ ହେବ । ସୀତା-ପରିତ୍ୟାଗୀ ଅଥଚ ସୀତାଗତପ୍ରାଣ ରାମଚନ୍ଦ୍ରଙ୍କୁ ଭଗ୍ନ-ହୃଦୟ କରିଦେବାକୁ ହେବ ।

ସେଦିନ ଅତିକ୍ଷୁଦ୍ର ଜନରବର ମୃଦୁ ଅଥଚ ତୀକ୍ଷ୍ଣ ଶକ୍ତିଶାଳୀ ଗୁଞ୍ଜରଣଟିଏ ଅଯୋଧ୍ୟା ରାଜଧାନୀର ଉପାନ୍ତରେ, ଅତି ନଗଣ୍ୟ ଅନାମଧେୟା ଜଣେ ରଜକ କୁଟୀର ଭିତରୁ ସାମାନ୍ୟ ଧୂମଶିଖାଟିଏ ଭଳି, ସାମାନ୍ୟ ଊର୍ଦ୍ଧ୍ୱଗାମୀ ହେଉ ହେଉ, ସମତଳ ଭୂମିର ନୀଚମନୋବାୟୁ ଦ୍ୱାରା ଆକର୍ଷିତ ଓ ତାଡ଼ିତ ହୋଇ ଅଯୋଧ୍ୟାନଗରୀରେ କଳାଧୂଆଁ ଭଳି ଘୂରି ବୁଲିଲା। ଅଯୋଧ୍ୟାର ଅବଶିଷ୍ଟ ସାଧାରଣ ପରସ୍ପର ମଧ୍ୟରେ କୁହାକୁହି ହେଲେ–''ସତେ ତ! ଆମେ ଏକଥା ବିଚାରି ନଥିଲୁ! ରାବଣ ଦ୍ୱାରା ସଶରୀରେ ସବଳେ କୋଳାଗ୍ରତ ଅବସ୍ଥାରେ ଅପହୃତା ହୋଇ ଏତେଦିନ ରାବଣ ଗୃହରେ ଅବସ୍ଥାନ କରି ଅଯୋଧ୍ୟାର ରାଜରାଣୀ ରାମହୃଦୟେଶ୍ୱରୀ ସୀତା କ'ଣ ପ୍ରକୃତରେ କଳଙ୍କ-ବିମୁକ୍ତା? ଶୁଦ୍ଧ ଚରିତ୍ରା? ସର୍ବସଂଶୟ ବିନିର୍ମୁକ୍ତା? କେଜାଣି? ....କେଜାଣି?? .....ସ୍ତ୍ରୀୟାଂ ଚରିତ୍ରଂ ପୁରୁଷସ୍ୟ ଭାଗ୍ୟଂ—ଦେବା ଜନାନାନ୍ତି କୁତଃ ମନୁଷ୍ୟାଃ?

ଜାଣିବାଶୁଣିବା ଲୋକେ ଆର୍ତ୍ତକଣ୍ଠରେ ଚିତ୍କାର କରି ଉଠିଲେ—ସାଧୁ ସାବଧାନ—ସତୀଶିରୋମଣୀ ସୀତାଙ୍କର ଜାଜ୍ଜ୍ୱଲ୍ୟମାନ ସୁବର୍ଣ୍ଣ ଚରିତ୍ରରେ କେହି ସଂଶୟବାଦ କର ନାହିଁ। ଜନକତନୟା ଅଭୂତପୂର୍ବ ଭୀଷଣ ଅଗ୍ନିପରୀକ୍ଷାରେ ସମୁତ୍ତୀର୍ଣ୍ଣା ହୋଇଛନ୍ତି। ସୀତା ଚରିତ୍ରରେ ସନ୍ଦେହାରୋପଣ ନାରକୀୟ ପାପ ଯେ କେହି ପାଷାଣ୍ଡ ତାଙ୍କର ପୂଣ୍ୟଚରିତ୍ରକୁ ନେଇ ମିଥ୍ୟା ଜନରବ ସୃଷ୍ଟି କରିବ, ତା'ର ଜିହ୍ୱା ଛିଡ଼ି ପଡ଼ିବ ସମଗ୍ର ଅଯୋଧ୍ୟାର ଜିହ୍ୱା ଛିଡ଼ି ପଡ଼ିବ—ଅଯୋଧ୍ୟାର କର୍ଣ୍ଣଗହ୍ୱର ଭିତରେ ବଜ୍ରପାତ ହେବ।...

କିନ୍ତୁ ହା'ଦୈବ! ହାୟରେ ବିଶ୍ୱାସ! ଆକାଶର କୋଣ ତ୍ରିକୋଣରେ କ୍ଷୁଦ୍ର ମେଘଟିଏ ସହସା ଆବିର୍ଭୂତ ହୋଇ ଅବିଳମ୍ୱେ ସମଗ୍ର ଆକାଶକୁ ଆଚ୍ଛାଦିତ କରି ଦେଲା ଭଳି, ମଳିନବସ୍ତ୍ର-ଉପଜୀବିନୀ ଜଣେ ସ୍ୱେଚ୍ଛାଚାରିଣୀ ସାମାନ୍ୟ ସ୍ତ୍ରୀ ଲୋକର କୁମୁଖ-ନିଃସୃତ ସେହି କ୍ଷୁଦ୍ରାବୀଭତ୍ସ ସଂଶୟୋକ୍ତି ସମସ୍ତ ଅଯୋଧ୍ୟାର ସୁଧୀଜନଙ୍କ ହୃଦୟାକାଶକୁ ମଧ୍ୟ ସେମାନଙ୍କ ଅଗୋଚରରେ ଘୋଟିଗଲା। ସେଦିନ ସେ ଯୁଗର ସେହି ଅସ୍ପୃଶ୍ୟା ଅଶୁଚୀମତୀ ହୃଦୟହୀନା ଅବମିତ କାବ୍ୟ-ଉଚ୍ଛିଷ୍ଟକୁ ଅତ୍ୟନ୍ତ ପାପାଗ୍ରହରେ ଆବ୍ରାହ୍ମଣଚଣ୍ଡାଳ ସମସ୍ତେ ନିଜ ନିଜ କର୍ଣ୍ଣଦ୍ୱାରରେ ଶ୍ରବଣ କରି, ପୁନର୍ବାର ପରସ୍ପର ନିକଟରେ ମୁଖଦ୍ୱାରରେ ବମନ କରିଚାଲିଥିଲେ। ସାରା ଅଯୋଧ୍ୟା ପରସ୍ପରର ବମିତ ଉଚ୍ଛିଷ୍ଟକୁ ଗ୍ରହଣ କରି ପରସ୍ପର ନିକଟରେ ବମନ କରି ଚାଲିଥିଲେ।

ଫଳରେ ଅଯୋଧ୍ୟାର କୁତ୍ସିତମନା ପ୍ରଜାମାନଙ୍କ ମନଆକାଶରେ ଏକ ସମୂହପାପର କରାଳଛାୟା ଘୋଟିଗଲା। ଏକ ଶୋଚନୀୟ ଅଶୁଭ ପ୍ରେରଣାରେ ଅଯୋଧ୍ୟାବାସୀଙ୍କ ବାକ୍ ଓ ଶ୍ରୁତିର ଶକ୍ତି ବିମଳିନ ହୋଇଗଲା। ଶେଷରେ ସେହି ଘୋର ଦୁଃଖଦାୟକ ଅତ୍ୟନ୍ତ ଗ୍ଲାନିକର ରାମରାଜ୍ୟର ସଂପୂର୍ଣ୍ଣ ବିପରୀତ ଅନୀତିକର ଦୁର୍ଘଟଣାଟି ଘଟିଗଲା।

ବିନା ଦୋଷରେ ସତୀ-ସୀତା ବନକୁ ନିର୍ବାସିତା ହୋଇଗଲେ। ପରିଶେଷଟି ପୁଣି ଆହୁରି ମର୍ମନ୍ତୁଦ, ଆହୁରି ସକରୁଣ, ଆହୁରି ଅନୁତାପ-ଦଗଧ୍ ଓ ଚିରଦିନଲାଗି ଶୋଚନାକ୍ରାନ୍ତା ପୃଥିବୀମାତା ଦୁଇଫାଳ ହୋଇ ବିଦୀର୍ଣ୍ଣା ହୋଇଯାଇଥିଲେ—ସ୍ୱୀୟା କନ୍ୟାର ଏହି ଅବାଞ୍ଛିତ, ଅବିଚାରିତ ଓ ଅହେତୁକ ଅପମାନ ଓ ଲାଞ୍ଛନାକୁ ସହ୍ୟକରି ନପାରି। ତାହାଥିଲା ଚରମ ପ୍ରତିବାଦ ଓ ଚରମ ପ୍ରତିଶୋଧର ଏକ ହୃଦୟବିଦାରକ କରୁଣ ଶେଷାଙ୍କର ସର୍ବଶେଷ ଦୃଶ୍ୟ।....

ହଜାର ହଜାର ବର୍ଷତଳେ ଘଟିଥିବା ଏହି ଦୁର୍ଘଟଣାଟି ଆଜି ପର୍ଯ୍ୟନ୍ତ ସମଗ୍ର ମନୁଷ୍ୟ ସମାଜ ପ୍ରତି ଗୋଟିଏ ଚେତାବନୀ। ଅହେତୁକ ସଂଶୟବାଦ ଓ ଅସହିଷ୍ଣୁତା ସଂଜାତ କୁତ୍ସାବନ୍ଦରୁ ଉଦ୍‌ଭୂତ ଜନରବର ପରିଣତି କେତେ ନିଦାରୁଣ, ଗ୍ଲାନିକର ଓ ଶୋଚନୀୟ—ତାହା ଏତିକିରୁ ହିଁ ଅନୁମିତ ହୋଇପାରିବ। ପ୍ରକାଶଥାଉକି, ରାମଙ୍କର ବନବାସ ଓ ସୀତାଙ୍କର ନିର୍ବାସନଲାଗି ଏହି ବିବେକହୀନ, ତୁଣ୍ଡୋଦ୍‌ଭବ ନିରାଶ୍ରୟୀ ଜନରବ ହିଁ ମୁଖ୍ୟତଃ ଦାୟୀ ଏବଂ ଏହି ଭଳି ଜନରବର ସ୍ରଷ୍ଟାଭାବେ ହେଉ, ବା ପୋଷକଭାବେ ହେଉ, ଉଣାଅଧିକେ ଆମ୍ଭେମାନେ ଯେ ଏଥିପାଇଁ ବହୁଳାଂଶରେ ଦାୟୀ, ଏ ସତ୍ୟକୁ ଅମାନିଆପଣରେ କେହି ଉଡ଼ାଇଦେବା ଆତ୍ମପ୍ରବଞ୍ଚନାଛଡ଼ା ଆଉ କିଛି ନୁହେଁ। ଯେ କୌଣସି ମାନବୀୟ ହୃଦୟବାନ ବ୍ୟକ୍ତି ଏଥିରେ ନିଜ ଦାୟିତ୍ୱଟି ଉପରେ ସଚେତନ ହେଲାମାତ୍ରେ ହିଁ ତା'ର ଛାତିଥରି ଉଠିବ। ନିଜଉପରେ ମଧ ଧିକ୍‌କାର ଆସିବ ଏବଂ ଏଥିପାଇଁ ସମଗ୍ର ମାନବଜାତିର ପ୍ରକୃତିରେ ଅନ୍ତର୍ଲୀନ ନୀଚତା ପ୍ରତି ମଧ ଶୁଦ୍ଧ ଜାଗ୍ରତମନ ଘୋର କ୍ଷୋଭ ଏବଂ ପରିତାପାନଳରେ ଦଗ୍ଧ ହୋଇଯିବ।

ବେଳେବେଳେ ଆତ୍ମସମୀକ୍ଷଣର କୌଣସି ମାହେନ୍ଦ୍ରବେଳାରେ ମନେହୁଏ ସତେକି ଏହି ଶୋଚନୀୟ ଲୋକପବାଦଜନିତ ଦୁର୍ଘଟଣାଗୁଡ଼ିକ ପଛରେ ମୋର ଅଲକ୍ଷ୍ୟରେ ବି ମୋ ନିଜର କିଛି ହାତ ଅଛି। ସତେକି ମୋର ନିଜମନର କେଉଁ ଅନ୍ଧିକନ୍ଧି ଗଳି ଉପଗଳିର ଅନ୍ଧକାରବୃତ ଏକ କ୍ଷୁଦ୍ର କୁତ୍ସିତ କୋଠରୀଟି ଭିତରେ ବି ଏହିଭଳି ନୀଚମନା ସଂଶୟୀ ରଜନୀଟିଏ, ଅଥବା ଶୁଭବିମୁଖା ଅସହିଷ୍ଣୁ ମନ୍ଥରାଟିଏ ତଥାପି ମଧ ମୋର ଅଗୋଚରରେ ବଞ୍ଚି ରହିଛି ଏବଂ ଏହିଭଳି ସଂଶୟବାଦକୁ ଉପଜୀବିକା କରି ଏବଂ ବିଧି କୁତ୍ସାମୂଳକ ଅପବାଦର ଜନରବ ସୃଷ୍ଟି କରିବା ଲାଗି, ଅଥବା ପ୍ରଚାର କରିବାଲାଗି ସର୍ବଦା ଉଦ୍‌ଗ୍ରୀବ, ଉତ୍‌କର୍ଣ୍ଣ ଓ ଉଦ୍‌ଜିହ୍ୱ ହୋଇ ସେମାନେ ତଥାପି ମୋ ଭିତରେ ବଞ୍ଚିରହିଛନ୍ତି। ଖାଲି ମୋ ଭିତରେ ନୁହେଁ—ସାମୂହିକ ଅବଚେତନାର ଅତଳଗହ୍ୱରରେ ସଂଶୟ ଓ ଅସହିଷ୍ଣୁତାର ଉଲ୍ଲଙ୍ଗ ପିଶାଚିନୀମାନେ ଲୁଚିରହି ବହୁ ଅଘଟଣ ଅପଘଟଣର କାରଣ ବା କର୍ତ୍ତୀ ହୋଇଥାନ୍ତି। ଏହି ପୈଶାଚିକ ଅପଶକ୍ତିଗୁଡ଼ିକର ଅପଚେଷ୍ଟା ଓ ଅପକୌଶଳରେ ଯୁଗେ ଯୁଗେ ରାମାଭିଷେକର ଶୁଭ ମୁହୂର୍ତ୍ତମାନ

ମନ୍ଥର ହୋଇଯାଏ–ବିଳମ୍ବିତ ହୋଇଯାଏ। ରାମରାଜ୍ୟର ପ୍ରେରଣା ମଧ୍ୟ ଭଗ୍ନମନୋରଥ ହୋଇଯାଏ। ଅସହିଷ୍ଣୁତା, ସଂଶୟବାଦ ଓ କୁତ୍ସାମୂଳକ ଜନରବ ଏହିଭଳି ସାମୂହିକ ଅବଚେତନା ଭିତରେ ହଠାତ୍ ବାହାରି ପଡ଼ି ଯୁଗେ ଯୁଗେ ଆଲୋକର ବିରୋଧୀଶକ୍ତି ରୂପେ ଓ ଅନ୍ଧକାରର ସହାୟକରୂପେ ସବୁ ଶୁଦ୍ଧତାକୁ, ସବୁ ଶୁଭ କଲ୍ୟାଣୀୟ ଉପକ୍ରମକୁ ପ୍ରତିରୋଧ କରନ୍ତି। ସବୁ ପ୍ରଗତି ଓ ବିକାଶର ଯଜ୍ଞରେ ଅମେଧ୍ୟ ବସ୍ତୁ ନିକ୍ଷେପ କରନ୍ତି। ଆଉ ଏକଥା ମଧ୍ୟ ନ ମାନିବାର ଉପାୟ ନାହିଁ ଯେ, ଏହି ଅପଶକ୍ତିଗୁଡ଼ିକ ଆମର ବିନା ସହାୟତାରେ ବଂଚି ନାହାନ୍ତି। ଆମର ବିନାସମର୍ଥନରେ ତିଷ୍ଠି ନାହାନ୍ତି। ଆମର ବିନାପ୍ରେରଣାରେ ବି ସକ୍ରିୟ ଓ ସଫଳକାମ ହେଉନାହାନ୍ତି।

ଏଣେ ପୁଣି ଯୁଗେ ଯୁଗେ, ଏବଂ ଆଜି ମଧ୍ୟ ରାମରାଜ୍ୟ ପ୍ରତିଷ୍ଠା କରିବାରେ ଯେଉଁମାନେ ପଣ ନେଇଛନ୍ତି, ବ୍ରତୀ ହୋଇଛନ୍ତି, ସେମାନେ ଯେତିକି ପରିମାଣରେ ନିଜ ଆଚରଣ ଓ ସଂକଳ୍ପରେ ସୁସ୍ପଷ୍ଟ ଓ ପରିଶୁଦ୍ଧ ରହିବେ, ଏବଂ ନିଜର ସହକର୍ମୀ ଓ କର୍ମଚାରୀମାନଙ୍କର କର୍ମ ଅପକର୍ମାଦି ଉପରେ ତୀକ୍ଷ୍ଣ ଦୃଷ୍ଟିରଖି ସେମାନଙ୍କ ପ୍ରତି ଯଥା ସମୟରେ ଯଥାଉଚିତ କ୍ରିୟାନୁଷ୍ଠାନ କରିବେ, ରାଜ୍ୟରୁ ଏହିସବୁ ଲୋକାପବାଦର ଷଡ଼ଯନ୍ତ୍ରଗୁଡ଼ିକ ନିଶ୍ଚିତଭାବେ ପ୍ରତିହତ ହୋଇଯିବ। ପ୍ରକୃତ ସୂର୍ଯ୍ୟଙ୍କୁ କେତେ ସମୟ ବା କୃଷ୍ଣମେଘ ଆବୃତ କରି ରଖି ପାରିବ? ତା'ଛଡ଼ା ଯଥାର୍ଥ ସତ୍ୟାନୁସନ୍ଧିତ୍ସୁମାନେ ସୂର୍ଯ୍ୟଙ୍କୁ ନ ଦେଖି ମଧ୍ୟ ମେଘାବରଣ ଭେଦକରି ବିଚ୍ଛୁରି ଆସୁଥିବା ସୂର୍ଯ୍ୟାଲୋକକୁ ଦେଖି ସତ୍ୟ ସୂର୍ଯ୍ୟଙ୍କର ଯଥାସ୍ଥିତ ଯଥାର୍ଥଭାବେ ଅନୁମାନ କରିପାରନ୍ତି।

❋❋

# ଗୁରୁ ଦିବସର ମହତ୍ତ୍ୱ

ସେପ୍‌ଟେମ୍ବର ପାଞ୍ଚ ତାରିଖ। ଏହି ଦିବସଟି ଭାରତବର୍ଷର ଜଣେ ବିଶିଷ୍ଟ ମନୀଷୀ ଦାର୍ଶନିକ ସର୍ବପଲ୍ଲୀ ରାଧାକୃଷନ୍‌ଙ୍କ ଜନ୍ମ ହେତୁ ଆମ୍ଭମାନଙ୍କ ପକ୍ଷରେ ଏକ ସ୍ମରଣୀୟ ଦିବସ ରୂପେ ବିବେଚିତ ହୋଇ ଆସିଛି। ସଂପ୍ରତି ଏହା ଗୁରୁଦିବସ ରୂପେ ପରିପାଳିତ ହେଉଛି। ପୁଣ୍ୟଶ୍ଳୋକ ରାଧାକୃଷନ କେବଳ ଭାରତବର୍ଷର ନୁହଁ ପୃଥିବୀର କତିପୟ ବିଶିଷ୍ଟ ଚିନ୍ତାନାୟକମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ ଏବଂ ତାଙ୍କର ପ୍ରତିଭା ବଳରେ ବିଶ୍ୱବନ୍ଦିତ ମହିମା ଅର୍ଜନ କରିଥିଲେ। ସେଥିଲାଗି ମହାତ୍ମାଗାନ୍ଧୀଙ୍କଠାରୁ ଆରମ୍ଭକରି ଜବାହରଲାଲ ନେହେରୁ, ରାଜଗୋପାଳଚାରୀ, ରବୀନ୍ଦ୍ରନାଥ ଠାକୁର ପ୍ରମୁଖ ମହାନ ପୁରୁଷମାନେ ତାଙ୍କୁ ଯଥୋଚିତ ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରୁଥିଲେ ଏବଂ ଏହି ମହତ-ଲବ୍‌ଧଶ୍ରଦ୍ଧା ଓ ସମ୍ମାନ ତାଙ୍କୁ ଭାରତବର୍ଷର ସର୍ବୋଚ୍ଚ ଆସନରେ ଅଧିରୂଢ଼ କରାଇ ଦେଇଥିଲା। ସେ ଭାରତବର୍ଷର ରାଷ୍ଟ୍ରପତି ଆସନ ଅଲଂକୃତ କରି ଦାର୍ଶନିକ ପ୍ଲେଟୋଙ୍କର ଭବିଷ୍ୟତବାଣୀ ସଫଳ କରିଥିଲେ। ବହୁବର୍ଷ ତଳେ ଗ୍ରୀକ୍ ଦାର୍ଶନିକ ଭବିଷ୍ୟବାଣୀ କରିଥିଲେ (ତାଙ୍କର "ଆଦର୍ଶ ରାଷ୍ଟ୍ର ଗ୍ରନ୍ଥରେ) ଯେ ଭବିଷ୍ୟତର ଆଦର୍ଶ ରାଷ୍ଟ୍ରରେ ଜଣେ ଦାର୍ଶନିକ ସର୍ବୋଚ୍ଚ ଶାସକର ଆସନରେ ବସିବେ।

ଏହି ଭାରତବର୍ଷରେ ତାହା ସମ୍ଭବ ହୋଇଥିଲା। ପୂଜନୀୟ ରାଧାକୃଷନ୍ ସର୍ବୋଚ୍ଚ ଦାର୍ଶନିକ ଥିଲେ ସତ୍ୟ, ସବୁଠାରୁ ଉଲ୍ଲେଖଯୋଗ୍ୟ କଥା ହେଲା–ସେ ଥିଲେ ଜୀବନବ୍ୟାପୀ ଜଣେ ଆଦର୍ଶ ଶିକ୍ଷକ, ଅଧ୍ୟାପକ। ତାଙ୍କର ଅଧ୍ୟାପକ ଜୀବନ ସମ୍ପର୍କରେ ଏତେ ଜନଶ୍ରୁତି ଓ କିମ୍ବଦନ୍ତୀ ପ୍ରଚଳିତ ଯେ ତାହାହିଁ ତାଙ୍କର ମହତ୍ତ୍ୱର ଶିକ୍ଷକତା ସଂପର୍କରେ ସବୁଠାରୁ ବଡ଼ ପ୍ରମାଣ। କଥିତ ଅଛି ଯେ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରୁଥିଲାବେଳେ ତାଙ୍କୁ ଗୋଟିଏ ବଗି ଗାଡ଼ିରେ ବସାଇ ଘୋଡ଼ା ବଦଳରେ ପରମଶ୍ରଦ୍ଧା ଓ ଭକ୍ତିର ସହିତ ଛାତ୍ରମାନେ ଗାଡ଼ିଟିକୁ ଟାଣି ଟାଣି ତାଙ୍କ ଘର ପର୍ଯ୍ୟନ୍ତ ନେଇ ଯାଉଥିଲେ। ଭାରତର ଆଉ ଜଣେ ଯୋଗଜନ୍ମା ମହାପୁରୁଷ ଶ୍ରୀ ଅରବିନ୍ଦ ବରୋଦା କଲେଜରେ ଅଧ୍ୟାପନା କରୁଥିଲାବେଳେ ତାଙ୍କ ଗାଡ଼ିକୁ ମଧ୍ୟ ଛାତ୍ରମାନେ ଏହିପରି ବେଳେବେଳେ ଟାଣି ନେଉଥିବାର ଜନଶ୍ରୁତି ରହିଛି।

କେବଳ ଏହି ଦୁଇଜଣ ନୁହନ୍ତି, ଏ ଦେଶର ଓ ଆମ ଓଡ଼ିଶାର ବହୁ ବିଶିଷ୍ଟ ବ୍ୟକ୍ତି (ନୀଳକଣ୍ଠ, ଗୋଦାବରୀଶ, ଆଚାର୍ଯ୍ୟ ହରିହର ପ୍ରମୁଖ) ଯେଉଁମାନେ କି

ଜନନାୟକ ବା ଦେଶନିର୍ମାତା ରୂପେ ଆମ୍ଭମାନଙ୍କର ପୂଜନୀୟ ହୋଇଛନ୍ତି। ସେମାନେ ସମସ୍ତେ ମୂଳତଃ ଶିକ୍ଷକହିଁ ଥିଲେ। ଶିକ୍ଷକଙ୍କୁ ଦେଶ ଓ ଜାତିର ଯେ ମେରୁଦଣ୍ଡ ବୋଲି କୁହାଯାଇଛି–ଏହି ବିଶେଷୋକ୍ତିର ନିଦର୍ଶନ ଏହିସବୁ ମହାନ୍ ବ୍ୟକ୍ତିମାନେ ଆପଣା ଆପଣା ଜୀବନରେ ଦେଖାଇ ଯାଇଛନ୍ତି।

ତେବେ ଭାରତବର୍ଷର ଇତିହାସ ପର୍ଯ୍ୟାଲୋଚନା କଲେ ଆମେ ଦେଖିବା ଯେ ଯୁଗ ଯୁଗ ଧରି ଏ ଦେଶରେ ରାଷ୍ଟ୍ରନିର୍ମାତାମାନେ ଏହି ଶିକ୍ଷକ କୁଳରୁହିଁ ଉଦ୍‌ଭୂତ ହୋଇ ଆସିଛନ୍ତି, ଏବଂ ଯେଉଁସବୁ କ୍ଷେତ୍ରରେ ଏହା ନ ଘଟିଛି ସେଠାରେ ଗୁରୁ ବା ଶିକ୍ଷକମାନେ ରାଜା ଓ ଶାସକମାନଙ୍କର ପ୍ରତ୍ୟକ୍ଷ ବା ପରୋକ୍ଷ ଉପଦେଷ୍ଟାଭାବେ ରହି ଆସିଛନ୍ତି। ଶିକ୍ଷକ କେବଳ ଛାତ୍ରମାନଙ୍କୁ ପାଠ ପଢ଼ାନ୍ତି ନାହିଁ। ଶିକ୍ଷକର ମୁଖ୍ୟ ଭୂମିକା ହେଲା ସମାଜକୁ ସର୍ବଦା ସବୁଦିଗରେ ଠିକଣା ବାଟଟିକୁ ଧରିବା ଲାଗି ଶିକ୍ଷାଦେବା। ଦେଶର ରାଜନୀତି, ଅର୍ଥନୀତି, ଧର୍ମ, ସାହିତ୍ୟ, ସଂସ୍କୃତି ଓ ଲୋକାଚାର ଉପରେ ଆଦର୍ଶ ଶିକ୍ଷକମାନେ ସର୍ବଦା ସଚେତନ ଦୃଷ୍ଟି ରଖିଥାନ୍ତି। ସମାଜର ସଙ୍କଟ ସମୟରେ ବା ସମାଜ ଯେତେବେଳେ ଗୋଟିଏ ବିରାଟ ପରିବର୍ତ୍ତନ ଭିତର ଦେଇ ଗତି କରୁଥାଏ ସେତେବେଳେ ସମସ୍ତେ ବିହ୍ୱଳ ହୋଇପଡ଼ିଥିବା ବେଳେ ସଜାଗଚିତ୍ତ ଶିକ୍ଷକହିଁ ତା'ର ମତି ସ୍ଥିର ରଖିଥାଏ। ତା'ର ଦୃଷ୍ଟି ସ୍ଥିର ରଖିଥାଏ। ଶିକ୍ଷକ ନିଜେ କାଳର ପ୍ରଭାବ ଭିତରେ ଥାଇ ମଧ କାଳଠାରୁ ନିଜକୁ ମାନସିକ ଭାବେ ଦୂରେଇ ରଖି ଅତୀତ ଓ ବର୍ତ୍ତମାନକୁ ବିବିଧ ଭାବରେ ବିଶ୍ଳେଷଣକରି ଭବିଷ୍ୟତ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିଥାଏ। କାଳର ଘାତପ୍ରତିଘାତ ଭିତରେ ଶିକ୍ଷକ ନିଜେ ହୁଏତ ଆତଙ୍କାତ ହୁଏ। ମାତ୍ର ସେ ନିର୍ଭୀକ ରହିବହିଁ ରହିବ। କୌଣସି ବାହ୍ୟଶକ୍ତି ତା'ର ଉନ୍ନତ ଶିରକୁ ଅବନତ କରିପାରିବ ନାହିଁ। ଯଦି ସେ ନିଜକୁ ଜାତିର ଶିକ୍ଷକ ଭୂମିକାରେ ରଖିବାରେ ସକ୍ଷମ ବା ସମର୍ଥ ହୋଇପାରେ। ସେ ନିରପେକ୍ଷ ଓ ଦେଶର ରାଜା, ପ୍ରଜା, ଶାସକ, ଶାସିତ, ଧନୀ ନିର୍ଦ୍ଧନ, ବିଦ୍ୱାନ, ମୂର୍ଖ, ଶିଷ୍ଟ, ବିଶିଷ୍ଟ ଓ ଅଶିଷ୍ଟ ସମସ୍ତଙ୍କ ପ୍ରତି ତା'ର ହୃଦୟ ବାତ୍ସଲ୍ୟ-ପରାୟଣ। ସେ ଚାହେଁ ସମସ୍ତେ ଭଲ ହୁଅନ୍ତୁ ସମସ୍ତେ ପ୍ରଜ୍ଞା ଲାଭ କରନ୍ତୁ, ସମସ୍ତେ ଶିଷ୍ଟ ହୁଅନ୍ତୁ—ସମସ୍ତଙ୍କର ଅକ୍ଷର ପରିଚୟ ହେଉ। ସମସ୍ତେ ଶୂନ୍ୟରୁ ପୂର୍ଣ୍ଣ ଆଡ଼କୁ ଅଗ୍ରସର ହେବାର ସାଧନା କରନ୍ତୁ। ଶିକ୍ଷକର ବୃତ୍ତିକୁ ପବିତ୍ର କହିବାର କାରଣ ହେଲା–ସେ ତା'ର ଛାତ୍ରମାନଙ୍କୁ ଜ୍ଞାନଦେବା ମାଧ୍ୟମରେ ନିଜକୁହିଁ ଦେଇ ଚାଲିଥାଏ ଆଜୀବନ। ଜଣେ ଶିକ୍ଷକଠାରୁ ତା'ର ଛାତ୍ର ବେଶୀ ଜ୍ଞାନୀ ହେଉ—ବେଶୀ ସମ୍ମାନ ଓ ଐଶ୍ୱର୍ଯ୍ୟର ଅଧିକାରୀ ହେଉ—ଏହାହିଁ ତା'ର ଆନ୍ତରିକ କାମନା। ସେ ନିଜେ ଜୀବନକୁ ଅଧ୍ୟୟନ କରି ଚାଲିଥାଏ ଓ ଅପରକୁ ତା'ର ଅଧ୍ୟୟନ ଲବ୍ଧଜ୍ଞାନ ଦାନ କରି ଚାଲିଥାଏ। ତା' ନିଜର ଅନ୍ତର ଭିତରେ ସେ ସର୍ବଦା ଆଲୋକ ଜଳାଇ ରଖିଥାଏ। ସେ ଯାହା ସଂସ୍ପର୍ଶରେ ଆସେ

ତାକୁ ଆଲୋକିତ କରିଦିଏ—ତା' ଭିତରେ ଆଲୁଅ ଜଳାଇ ଦିଏ। ନିଜକୁ ସର୍ବଦା ପ୍ରଜ୍ୱଳିତ ରଖିବା ଓ ଅନ୍ୟକୁ ପ୍ରଜ୍ୱଳିତ କରିବା ହେଲା ତା' ଜୀବନର ଅହରହ ସାଧନା।

ପ୍ରତିଟି ଦେଶ ବା ଜାତି ତା'ର ଏବଂବିଧ ଶିକ୍ଷକ ନିକଟରେ ସର୍ବଦା ନତ ହୋଇ ରହିବା ଉଚିତ। ପ୍ରତିଟି ସରକାର ଶିକ୍ଷକକୁଳକୁ ଚିନ୍ତା ବ୍ୟକ୍ତ କରିବାର ଯଥୋଚିତ ସ୍ୱାଧୀନତା ଓ କର୍ତ୍ତୃତ୍ୱ ମଞ୍ଜୁର କରିବା ଉଚିତ। ଆମ ଦେଶରେ ପ୍ରାୟ ସବୁ ଶିକ୍ଷକ, ଅଧ୍ୟାପକ ସରକାରୀ କର୍ମଚାରୀ। ମାତ୍ର ଅନ୍ୟାନ୍ୟ ସରକାରୀ କର୍ମଚାରୀଙ୍କ ଦାୟିତ୍ୱ ଓ କର୍ମଧାରା ଏବଂ ଶିକ୍ଷକର ଦାୟିତ୍ୱ ଓ କର୍ମଧାରା ଭିତରେ ଯେଉଁ ମୌଳିକ ପାର୍ଥକ୍ୟ ରହିଛି ତାକୁ ଦେଶର ସରକାର ସମେତ ଦେଶବାସୀ ମଧ୍ୟ ସ୍ୱୀକାର କରିବା କଥା।

କିନ୍ତୁ ଏହିଠାରେ ଗୋଟିଏ ପ୍ରଶ୍ନ ଉଠେ—ଜଣେ ବ୍ୟକ୍ତି ଶିକ୍ଷକ ବୃତ୍ତି ଗ୍ରହଣ କଲାବେଳେ ନିଜକୁ ଶିକ୍ଷକ ରୂପେ ଗଢ଼ିବାର ବାସନା ନେଇ ଚାକିରିରେ ଯୋଗଦିଏ ନା ଏହାକୁ ଅନ୍ୟବିଧ ସରକାରୀ ଚାକିରି ଭଳି କେବଳ ଚାକିରିଟିଏ ମାତ୍ର ବୋଲି ଗ୍ରହଣ କରେ ? କାରଣ ଏହାର ଉପରେ ହିଁ ଦୁଇପଟର ଦାୟିତ୍ୱ, କର୍ତ୍ତବ୍ୟ ଓ ଅଧିକାର ଦେବାନେବା ପୂର୍ଣ୍ଣତଃ ନିର୍ଭର କରିଥାଏ।

ବହୁଦିନ ଧରି ଆମ ଦେଶରେ ଗୋଟିଏ ପ୍ରଶ୍ନ ବାରମ୍ବାର ଜିଜ୍ଞାସିତ ହୋଇଥାଏ। ତା' ହେଉଛି, ଶିକ୍ଷକମାନେ ରାଜନୀତିରେ ଭାଗନେଇ ପାରିବେ କି ନାହିଁ? ଏ ପ୍ରଶ୍ନ ଆମ୍ଭମାନଙ୍କ ମତରେ ଅବାନ୍ତର। ଜଣେ ଶିକ୍ଷକ ଦେଶର, ଜାତିର, ସମାଜର ଓ ବିଶ୍ୱର ସର୍ବବିଧ ଉନ୍ନତିକର ଯୋଜନା ସଙ୍ଗେ ଯଦି ମାନସିକ ସ୍ତରରେ ସଂଯୁକ୍ତ ରହେ, ତେବେ ଜଣେ ଶୁଭବୁଦ୍ଧି ସଂପନ୍ନ ଶିକ୍ଷକ ଜାଣେ। ସବୁ ଜ୍ଞାତବ୍ୟ ଓ କର୍ତ୍ତବ୍ୟ ଭିତରେ ସେ କିପରି ସଙ୍ଗତି ରକ୍ଷା କରିପାରିବ।

ତେବେ ସେପ୍‌ଟେମ୍ବର ପାଞ୍ଚ ତାରିଖ—ଏହି "ଗୁରୁଦିବସ"ଟିର ମହତ୍ତ୍ୱ ଅନ୍ୟ ଦୃଷ୍ଟିରୁ ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ। ଏହି ଦିନଟି ଆମକୁ ସ୍ମରଣ କରାଇ ଦିଏ—ସମାଜର ଜୀବନରେ ଗୁରୁକୁଳର ଭୂମିକା କେତେ ଗୁରୁତ୍ୱପୂର୍ଣ୍ଣ। ଆମ ଦେଶ କିନ୍ତୁ ବଡ଼ ଅଦ୍ଭୁତ ମାନସିକତାର ଦେଶ। ଯେଉଁ ଦେଶରେ ପୂର୍ଣ୍ଣାବତାର ଭଗବାନ ଶ୍ରୀକୃଷ୍ଣଙ୍କୁ ଗୋବିନ୍ଦ ଗୋପାଳ ବୋଲି ଭକ୍ତ ଗଦଗଦ କଣ୍ଠରେ ଭଜନା କରାଯାଏ। ସେହି ଦେଶରେ ଗୋରୁମାନଙ୍କ ଦୁର୍ଦ୍ଦଶା କହିଲେ ନସରେ। ସେହିପରି "ଗୁରୁଦିବସ"ଟି ପାଳନ କରିବାର ଏକ ସାମାଜିକ ବିଧାନ ରଖିଦେଇ ଆମ୍ଭେମାନେ ଶିକ୍ଷକମାନଙ୍କ ସମ୍ବନ୍ଧେ ଏକ ପରିହାସାତ୍ମକ ଆଶଙ୍କା ପ୍ରକାଶ କରିଥାଉ। ତାହେଲା—ବାରବର୍ଷ ଶିକ୍ଷକତା କଲାପରେ ଲୋକଟିର ମୁଣ୍ଡରେ ଆଉ କିଛି ମସଲା ଅବଶିଷ୍ଟ ଅଛି କି ନାହିଁ? ଏ କଥା ଯଦି ଜଣେ ଶିକ୍ଷକ ସମ୍ବନ୍ଧେ ସତ୍ୟ ବୋଲି ପ୍ରମାଣିତ ହୋଇଯାଏ, ତେବେ ଜଣେ ଡାକ୍ତର,

ଇଞ୍ଜିନିୟର, କିରାଣୀ, ହାକିମ, ଅଭିନେତା, ରାଜନୀତିଜ୍ଞ, ମଧ୍ୟ ସ୍ୱ ସ୍ୱ ବୃତ୍ତିକୁ ବାରବର୍ଷ ଧରି ନିଷ୍ଠାପର ଭାବେ ସାଧନା କଲାପରେ ସେମାନଙ୍କୁ ମଧ୍ୟ ତଦ୍ରୂପ ପରୀକ୍ଷାକରି ଦେଖାଯାଇପାରେ। ଅସଲ କଥା ବୁଦ୍ଧିର ବିକାଶ କୌଣସି ବୃତ୍ତି ବିଶେଷ ଉପରେ ନିର୍ଭର କରେ ନାହିଁ। ତାହା କରେ ବ୍ୟକ୍ତିଟିର ଜୀବନଚର୍ଯ୍ୟା ଉପରେ ତା'ର ବୃତ୍ତିଟିକୁ ତା'ର ପ୍ରବୃତ୍ତି ସଙ୍ଗେ ମିଶାଇ ପାରିବାର କ୍ଷମତା ଉପରେ ଏବଂ ଶେଷରେ ସମାଜ ଜୀବନର ବିଭିନ୍ନ କ୍ଷେତ୍ର ସଙ୍ଗେ ନିଜ ବୃତ୍ତିଟିର ସଚେତନ ସଂଯୋଗ ଓ ସଙ୍ଗତି-ସାଧନ ଉପରେ। ଯେଉଁ ବ୍ୟକ୍ତି ଏହା ନ କରିପାରେ, ସେ ଡାକ୍ତର ହେଉ, ଇଞ୍ଜିନିୟର ହେଉ ବା ପ୍ରଶାସକ ହେଉ ତା'ର ବୁଦ୍ଧି ମାନ୍ଦ୍ୟ ଅବସ୍ଥା ଆସିବହିଁ ଆସିବ।

ଏହି ପ୍ରସଙ୍ଗର ଉପସଂହାର ରୂପେ ମୁଁ ଗୋଟିଏ ଆଦର୍ଶ ଶିକ୍ଷକର ଆବେଗମୟ ଘୋଷଣା ପତ୍ରଟିକୁ ସଂଯୋଜିତ କରୁଛି। ସୁଧୀପାଠକ ସେତେକ ଅଧ୍ୟୟନ କରି ଶିକ୍ଷକ ବା ଗୁରୁ ବ୍ୟକ୍ତିଟିର ଅସଲ ମର୍ମକଥାକୁ ବୁଝିପାରିବେ ଏବଂ ତତ୍ ସଙ୍ଗେ ସଙ୍ଗେ ଏ ଦେଶର ଗୁରୁଦିବସ ପାଳନର ଯଥାର୍ଥତା ମଧ୍ୟ ଉପଲବ୍ଧି କରିପାରିବେ।

**

# ଏକ ଶିକ୍ଷକର ଘୋଷଣା

ଈଶ୍ୱରଙ୍କୁ ଧନ୍ୟବାଦ ! ଧନ୍ୟବାଦ ମୋର ନିୟତିକୁ। ଗଭୀର ସନ୍ତୋଷ ଓ କୃତଜ୍ଞତାର ସହିତ ମୁଁ ଆଜି ସ୍ୱୀକାର କରୁଛି ଯେ ଶିକ୍ଷକର ବ୍ରତ ଗ୍ରହଣ କରି ମୁଁ ଆଜି ଧନ୍ୟକାମ ଓ ପୂର୍ଣ୍ଣକାମ ହୋଇଛି। ଶିକ୍ଷକତା ମୋର ବୃତ୍ତି ନୁହେଁ। ଏହା ମୋର ପ୍ରବୃତ୍ତି, ମୋର ଧର୍ମ। ମୋର ଆନ୍ତରଚେତନାର ଆଦର୍ଶାନୁଗତ ଓ ଆଦେଶାନୁଗତ ଏହି ଧର୍ମ ପାଳନ କରି ଚାଲିଛି। ମୁଁ ଶିକ୍ଷା ଦେଇ ଦେଇ ମୁଁ ନିଜେ ଶିକ୍ଷିତ ହୋଇ ଚାଲିଛି। ଅନ୍ୟକୁ ଗଠନ କରୁ କରୁ ମୁଁ ନିଜେ ସୁଗଠିତ ହୋଇଚାଲିଛି। କୁମ୍ଭକାର କଞ୍ଚାମାଟିକୁ ଚକ ଉପରେ ବୁଲାଇ ତାକୁ ବର୍ତ୍ତୁଳ ଓ ସୁଠାମ କୁମ୍ଭଟିଏରେ ପରିଣତ କରୁ କରୁ ଯେପରି ତାର ନିଜର ଶିଳ୍ପୀ ଆତ୍ମା ସମେତ ତା'ର ହାତ ଓ ଅଙ୍ଗୁଳିଗୁଡ଼ିକ ଏକ ସୂକ୍ଷ୍ମ ପାରଦର୍ଶିତା ଲାଭ କରେ ତା'ର ନିଜର ଅଲକ୍ଷ୍ୟରେ ମୁଁ ସେହିପରି ଅପରକୁ ସୂକ୍ଷ୍ମ ସୁଠାମ ଚେତନାରେ ରୂପାନ୍ତରିତ କରୁ କରୁ ନିଜେ ହୋଇ ଉଠୁଛି ସୂକ୍ଷ୍ମତା ଓ ସୁଠାମତାର ଏକ ଜୀବନ୍ତ ବିଗ୍ରହ। ପ୍ରତିଟି ଛାତ୍ରର ଅନ୍ତରରେ ମୁଁ ଆଲୋକ ଧରାଇ ଦେଇ ଚାଲିଛି। ଆଉ ସେହି ସବୁ ପ୍ରଜ୍ୱଳନ୍ତ ଶିଖାର ଆଲୋକରେ ମୁଁ ଦେଖୁଛି ମୋର ଅନ୍ତରାତ୍ମାର ଚତୁଃପାର୍ଶ୍ୱସ୍ଥ ଘନ ଘଞ୍ଚ ପୁଞ୍ଜିଭୂତ ଅନ୍ଧକାର ଆଲୋକରେ ରୂପାନ୍ତରିତ ହୋଇଯାଉଛି କ୍ରମଶଃ କ୍ରମଶଃ। ମୋ ଭିତରେ ଅନନ୍ତ ଆଶୀର୍ବାଦ, ଅନନ୍ତ କଲ୍ୟାଣ, ଅନନ୍ତ ଆଶା ଓ ଅନନ୍ତ ଉଦ୍ୟମ, ଅନନ୍ତ ଉତ୍ସାହର ସମୁଦ୍ର। ମୁଁ ଦେଖେ ମୋର ଆତ୍ମୋପମ ଛାତ୍ରଗଣ ତା' ମଧ୍ୟରେ ନିତ୍ୟ ଅବଗାହନ କରୁଛନ୍ତି। ସେହି ଆଲୋଡ଼ନ ମୋର ପୁରସ୍କାର। ସେହି ଆଲୋଡ଼ନ ମୋର ପୁଣ୍ୟଫଳ। ସେଇଥିଲାଗି ତ ମୁଁ ନିତ୍ୟ ପୂର୍ଣ୍ଣ। କିନ୍ତୁ ଏହି ପୂର୍ଣ୍ଣବୋଧ ମୋତେ ସ୍ଥାଣୁ କରେ ନାହିଁ। ମୋର ଶିଷ୍ୟମାନେ ସେମାନଙ୍କର ନିତ୍ୟ ଆଲୋଡ଼ନ ଫଳରେ ମୋତେ ସର୍ବଦା ଚଞ୍ଚଳ ଓ ପ୍ରବାହରତ କରାଇ ରଖନ୍ତି। ମୁଁ ନିଜେ ଏକ ଅନନ୍ତ ସମ୍ଭାବନାର ଓ ପ୍ରତିଶ୍ରୁତିର ଶାଳଗ୍ରାମ। ମୋର ଛାତ୍ରମାନେ ସେହି ପ୍ରସ୍ତର ସଙ୍ଗେ ନିତ୍ୟ ଘର୍ଷିତ ହୋଇ ସତ୍ୟ ଓ ଜ୍ଞାନର ବହ୍ନି ଉତ୍ପାଦନ କରିଥାନ୍ତି। ଆମ ଦୁଇଙ୍କ ସଂଘର୍ଷ ପ୍ରସୂତ ସେହି ସତ୍ୟ ଓ ଜ୍ଞାନର ଅଗ୍ନିକଣାକୁ ଲାଭକରି ଜଗତ ଧନ୍ୟ ହେଉଅଛି।

ମୁଁ ଅଦ୍ଭୁତ ଭାବେ କରିତ୍କର୍ମା। ମୁଁ ଅନନ୍ତ ଜ୍ଞାନକୁ ସ୍ୱୟଂ ଧାରଣ କରିପାରେ। ମାତ୍ର ସେହି ଜ୍ଞାନକୁ ମୋର ସ୍ୱାର୍ଥରେ ବ୍ୟୟ କରିବାକୁ ମୋତେ ପରମାତ୍ମା ବାରଣ କରିଛନ୍ତି।

ମୋର ଛାତ୍ରମାନେ ସେହି ଜ୍ଞାନର ଅଧିକାରୀ ଓ ସେହି ଜ୍ଞାନର ଭୋକ୍ତା ଓ ଉପଯୋଗକାରୀ। ମୁଁ ତେଣୁ ବ୍ୟବହାରିକ ଜୀବନରେ ଦରିଦ୍ର ନିଃସ୍ୱ। ମାତ୍ର ଆନ୍ତରଜୀବନରେ ମହାଧନୀ, ସର୍ବାଧିକାରୀ ଓ ମହାଦାନୀ। ମୋର କିଛି ଅନୁଶୋଚନା ନାହିଁ।

ସମସ୍ତ ପୃଥିବୀ ମୋର ବିଦ୍ୟାଳୟ।

ସମସ୍ତ ମାନବ ଗୋଷ୍ଠୀ ମୋର ଛାତ୍ରବୃନ୍ଦ।

ପ୍ରତିଟି ବ୍ୟକ୍ତିର ଅନ୍ତରରେ ମୁଁ ବିପ୍ଳବର ବହ୍ନି ଜଳାଇଦେଇ ପାରେ। ସମାଜର ଓ କାଳର ମହାସଙ୍କଟ କ୍ଷଣରେ ମୁଁ ଲେଖନୀ ତ୍ୟାଗକରି ଧନୁର୍ବାଣ ଧାରଣ କରିପାରେ। ସମଗ୍ର ଜୟ ପରାଜୟର ମହାଜର୍ଣ୍ଣବରେ ମୁଁ ଅବସ୍ଥାନ କରୁଥାଏ। ମାତ୍ର ସମସ୍ତ ଜୟ ପରାଜୟ ମୋରି ଇଙ୍ଗିତରେ ହିଁ ପରିଚାଳିତ ଓ ପ୍ରତିଫଳିତ ହୋଇଥାଏ। ମୁଁ ସମସ୍ତ ସ୍ୱାର୍ଥ ତ୍ୟାଗ କରିଅଛି। ତେଣୁ ସମସ୍ତଙ୍କର ସ୍ୱାର୍ଥର ଅଧିକାରୀ ମୁହିଁ। ଏ ଗ୍ରାମର ପ୍ରତିଟି ଘର ମୋର ଛାତ୍ରର। ଏ ପୃଥିବୀର ସମସ୍ତ ମଣିଷ ମୋର ଛାତ୍ର। ମୁଁ ଏକାକୀ ମାତ୍ର ମୁଁ ନିଃସଙ୍ଗ ନୁହେଁ। କାଳ ମୋତେ ନିତ୍ୟ ଆକର୍ଷିତ କରୁଅଛି। ମାତ୍ର ମୋର ପ୍ରତିଟି ଛାତ୍ର ଭିତରେ ମୁଁ କାଳାତୀତ ହୋଇ ଅବସ୍ଥାନ କରୁଅଛି। ମୋର ବାର୍ଦ୍ଧକ୍ୟ ନାହିଁ ମୋର କ୍ଳାନ୍ତି ନାହିଁ, ମୋର ଉଦ୍ୟମର ଅନ୍ତ ନାହିଁ। ଏ ପୃଥିବୀକୁ ଜ୍ଞାନାଲୋକିତ କରିବାର ନିରବଚ୍ଛିନ୍ନ ଓ ନିଃସନ୍ଦେହ ବ୍ରତ; ମୁଁ ସ୍ୱୟଂ ମୋର ସ୍କନ୍ଧ ଉପରେ ଗ୍ରହଣ କରିଅଛି। ମୋର ଉଦ୍ୟମ ମହା ଉଦ୍ୟମ।

ମୁଁ ବେତ୍ରଧାରୀ। ମୁଁ ବିବେକର ପ୍ରହରୀ। କିଏ ମୋ ହାତରୁ ଏହି ବେତ ଛଡ଼ାଇ ନେଇ ପାରିବ? ଯେତେଦିନ ମୋ ହାତରେ ଏହି ବେତ୍ର ଖଣ୍ଡିକ ଅଛି, ସେତେଦିନ ମୁଁ ତୁମ୍ଭମାନଙ୍କ ମହାତେଜସ୍ୱୀ ଗୁରୁ। କେହି ତୁମ୍ଭେମାନେ ମୋ ଠାରୁ ଖସି ଅନ୍ଧକାର ଭିତରକୁ ଚାଲିଯାଇପାରିବ ନାହିଁ। ମୁଁ ସଦାଜାଗ୍ରତ, ସଦାକ୍ରୋଧୀ, ସର୍ବଦା ରକ୍ତଚକ୍ଷୁ। ମୋର ଚକ୍ଷୁ ସର୍ବଦା ରକ୍ତ ଓ ଅଶ୍ରୁବର୍ଷଣ କରୁଅଛି। ଅଜ୍ଞାନ ମୋର ଶତ୍ରୁ। ଅନ୍ଧକାର ମୋର ଶତ୍ରୁର ରାଜ୍ୟ। ତାହା ଏଯାବତ୍ ମୋର ଅନଧିକୃତ, ମୋର ଅନଧିଗମ୍ୟ। ହେ ମୋର ସଂଗ୍ରାମୀ ଆଲୋକ ପିପାସୁ ଛାତ୍ରଗଣ। ତୁମ୍ଭେମାନେ ଅନ୍ଧକାର ରାଜ୍ୟକୁ ଆକ୍ରମଣ କର। ଅଜ୍ଞାନକୁ ସିଂହାସନଚ୍ୟୁତ କରି ବନ୍ଦୀକରି ମୋ ପାଖକୁ ଧରିଆଣ। ମୁଁ ତୁମ୍ଭମାନଙ୍କ ପଛରେ ଅଛି। ସମସ୍ତ ଯୁଦ୍ଧବିଦ୍ୟା ମୋତେ ଜଣା। ସମସ୍ତ ରଣକୌଶଳ ମୋତେ ଜଣା। ଅନ୍ଧକାର ରାଜ୍ୟର ସମସ୍ତେ ଗୁପ୍ତ ଦୁର୍ଗକୁ ଗୁପ୍ତ ପ୍ରବେଶ ଦ୍ୱାରମାନ ମୋତେ ଜ୍ଞାତବ୍ୟ ଅଛି। ତୁମ୍ଭେମାନେ ଅଜ୍ଞାତ ସଙ୍ଗେ ଯୁଦ୍ଧ କର। ମାତ୍ର ଅଜ୍ଞାନ ପ୍ରଲୁବ୍ଧ ଅନ୍ଧକାର ରାଜ୍ୟରେ ନିଜେ ବନ୍ଦୀ ହୁଅ ନାହିଁ। ଯଦି ତାହା କର, ତେବେ ଚାହଁ ମୋର ଦକ୍ଷିଣ ହସ୍ତରେ ଏହି ବେତ୍ର ଯଷ୍ଟିକୁ। ତୁମ୍ଭେମାନେ ଅଜ୍ଞାନର ମାୟାରେ ଆଚ୍ଛନ୍ନ ହୋଇ ପ୍ରଲୁବ୍ଧ ହୋଇ ଯଦି ଜ୍ଞାନ ପଥଚ୍ୟୁତି ଆଲୋକର ରାଜ୍ୟରୁ ଖସି ପଳାଇ ଯିବାକୁ ଚେଷ୍ଟାକର—ଯଦି

ତୁମ୍ଭେମାନେ ମୋ ବିରୁଦ୍ଧରେ ନାନା ଅମୋଘ ବାଣ ନେଇ ବିଦ୍ରୋହ ଆରମ୍ଭ କର–ଯଦି ତୁମ୍ଭେମାନେ ଅଜ୍ଞାନର ବଶୀଭୂତ ହୋଇ ମୋତେ ଆକ୍ରମଣ କର ତେବେ ଦେଖ। ମୁଁ କିଛି ମାନିବି ନାହିଁ। ଏଇ ବେତରେ ପିଟିପିଟି ମୁଁ ତୁମ୍ଭମାନଙ୍କୁ ସାବାଡ଼୍ କରିଦେବି। ପିଠିରୁ ଛାଲ ଉତାରି ଦେବି। କାନ ଛିଣ୍ଡାଇ ଦେବି। ମୁଁ କେଉଁ ଅମୋଘ ଅସ୍ତ୍ରକୁ ଡରେ ନାହିଁ। କାରଣ ସବୁ ଅସ୍ତ୍ର ମଧ୍ୟ ମୋର ସୃଷ୍ଟି। ମୁଁ କୌଣସି ରଣ-କୌଶଳକୁ ଭ୍ରୂକ୍ଷେପ କରେ ନାହିଁ। କାରଣ ସମସ୍ତ କୌଶଳର ଗୁରୁ ମୁଁ।

ଆଉ ଦେଖ। ଜାଣିରଖ। ମୁଁ ଜ୍ଞାନ ଓ ଆଲୋକର ରକ୍ଷକ, ଅଭିଭାବକ ଓ ଗୁରୁ। ତୁମ୍ଭେମାନେ ମୋର ଶରଣାଗତ ହୁଅ, ମୋତେ ପ୍ରଣିପାତ କର, ପରିପ୍ରଶ୍ନ କର, ମୋର ସେବାକର। ଆଉ ମୋ ଠାରୁ ସମସ୍ତ ଜ୍ଞାନ, ପ୍ରେମ, ସତ୍ୟ ଓ କର୍ମକୌଶଳମାନ ଅକାତରେ ଲୁଟିନିଅ। ତୁମରିମାନଙ୍କ ଲାଗି ମୋର ଏହି ତପସ୍ୟା, ତୁମରିମାନଙ୍କ ଲାଗି ମୋର ଏହି ସିଦ୍ଧି। ଏ ତପସ୍ୟା ସବୁ ତୁମର। ଏ ସିଦ୍ଧିମାନଙ୍କର ତୁମ୍ଭେମାନେ ହିଁ ଉତ୍ତରାଧିକାରୀ।

ଆରେ ଦକ୍ଷିଣା ଦେବା ବନ୍ଦକର। ଦକ୍ଷିଣା ତୁମ୍ଭେମାନେ ମୋତେ କେହି ଦେଇପାରିବ ନାହିଁ। ତୁମ୍ଭମାନଙ୍କର ବିଦ୍ୟାଶିକ୍ଷା ସରିନାହିଁ। ସଂଗ୍ରାମ ମଧ୍ୟ ସମାପ୍ତ ହୋଇ ନାହିଁ। ତୁମ୍ଭେମାନେ ଅନ୍ଧକାର ରାଜ୍ୟକୁ ଜୟ କରିନାହଁ। ଅଜ୍ଞାନ-ସମ୍ରାଟକୁ ବାନ୍ଧି ଆଣି ମୋ ପାଖରେ ହାଜର କରିନାହଁ। ବହୁତ ଡେରି। ତା' ପୂର୍ବରୁ କିଏ ତୁମକୁ ଛୁଟିଦେବ? କିଏ ତୁମକୁ ଡିଗ୍ରୀ ଦେବ? ତଦବଧି ତୁମ୍ଭମାନଙ୍କର ଛୁଟି ନାହିଁ। ମୋର ମଧ୍ୟ ଛୁଟି ନାହିଁ।

ଯେତେଦିନଯାଏ ତୁମ୍ଭେମାନେ ଆଲୋକର ସାମ୍ରାଜ୍ୟ ସ୍ଥାପନ ନ କରିଛ, ଯେତେଦିନଯାଏ ତୁମ୍ଭେମାନେ ସତ୍ୟ, ଜ୍ଞନ, ମମତା, ସଙ୍ଗତ ଓ ପ୍ରେମର ସାମ୍ରାଜ୍ୟ ସ୍ଥାପନ କରି ତା'ର ଅଧୀଶ୍ୱର ନ ହୋଇଛ–ସେବଧି ମୁଁ ଅର୍ଦ୍ଧାଶନ ଓ ଅର୍ଦ୍ଧବସନରେ ବାମ ହସ୍ତରେ ଥାଳ ଧରି ଓ ଦକ୍ଷିଣ ହସ୍ତରେ ବେତ୍ରଧରି ତୁମ୍ଭମାନଙ୍କୁ ବର୍ଣ୍ଣମାଳା ପଢ଼ାଉଥିବି। ତୁମମାନଙ୍କର କ୍ଳାନ୍ତି ନାହିଁ। ମୁଁ ମଧ୍ୟ ଅକ୍ଳାନ୍ତ। ତୁମ୍ଭମାନଙ୍କର ମୃତ୍ୟୁ ନାହିଁ। ମୁଁ ମଧ୍ୟ ଅଜାମର।

ବତ୍ସଗଣ; ଆଗେଇ ଚାଲ, ଆଗେଇ ଚାଲ। ଏକ ସ୍ୱରରେ ଫଙ୍କା ଘୋଷ; ମାଭୈଃ, –ମାଭୈଃ। ଏକ ମନରେ ବୁଝିଯାଅ–ଏକତ୍ୱେ–ତିନିତାର ପ୍ରକାଶ–ସତ୍ୟ, ଶିବ, ସୁନ୍ଦର। ସେହି ତୁମର ଆଦ୍ୟ ପାଠ–ବ୍ୟକ୍ତି, ସମାଜ ଓ ଈଶ୍ୱର।

ମୋର ସମସ୍ତ ଆଶୀର୍ବାଦ ଗ୍ରହଣକର ବତ୍ସଗଣ। ମୋର ସମସ୍ତ ଜ୍ଞାନ ଗ୍ରହଣ କର। ଗହଣକର ସମସ୍ତ ପ୍ରତିଶ୍ରୁତି ଓ ପ୍ରୋତ୍ସାହନ।

**

# ଦୁର୍ନୀତି କୋକୁଆ

ସାରଳା ଦାସଙ୍କ ମହାଭାରତରେ ବର୍ଣ୍ଣିତ ଅଛି–ଯଦୁବଂଶ ଧ୍ୱଂସ ହେବାର ଅବ୍ୟବହିତ ପୂର୍ବରୁ ଭଗବାନ ଶ୍ରୀକୃଷ୍ଣର ବଂଶଧର ଓ କୁଟୁମ୍ବମାନଙ୍କ ମଧ୍ୟରେ ହଠାତ୍ ଗୋଟିଏ ମୃତ୍ୟୁ ଆଶଙ୍କାର ସାମୂହିକ ଭାବତରଙ୍ଗ ଖେଳିଗଲା। ସମସ୍ତେ ଗୋଟିଏ ଆସନ୍ନ ବିପଦର କଳାଛାଇ ଦେଖିବାକୁ ପାଇଲେ। ଛାୟା ମୂର୍ତ୍ତିଟି ଥିଲା ଅଶରୀର। ମାତ୍ର ଶରୀରଧାରୀ ମୂର୍ତ୍ତିଟିଏଠାରୁ ତା'ର ଥିଲା ସମୂହମନ ଉପରେ ଅଧିକ ଶକ୍ତିଶାଳୀ ପ୍ରଭାବ। ସେହି ଛାୟା ମୂର୍ତ୍ତିଟି ଏତେ ବିକଟ, ବିକୃତ ଓ ବିଭସ ଦିଶୁଥିଲା ଯେ, ପ୍ରତ୍ୟେକର ମନ ଉପରେ ତାହା ଏକ ନୈରାଶ୍ୟଜନକ ପରାହତ ମନୋଭାବ ସୃଷ୍ଟି କଲା। ପ୍ରଭାସ ତୀର୍ଥରେ ଯଜ୍ଞ, ଦାନ, ଧର୍ମାଦି କାର୍ଯ୍ୟକରି ବ୍ରାହ୍ମଣ–ଶାପରୁ ମୁକ୍ତ ହେବା ଲାଗି ଭଗବାନ ଶ୍ରୀକୃଷ୍ଣ ଯେଉଁ ଆଶା ଆଶ୍ୱାସନାମୟ ଉଦ୍ୟମମୂଳକ ଉପଦେଶ ବା ନିର୍ଦ୍ଦେଶ ଦେଇଥିଲେ। ଯଦୁବଂଶୀମାନେ ତାହାକୁ ପ୍ରଥମେ ପ୍ରଥମେ କାୟମନୋବାକ୍ୟରେ ପାଳନ କରୁଥିଲେ। ମାତ୍ର ଏହି ବିକଟ ବିକୃତ ବୀଭତ୍ସ ଛାୟା ମୂର୍ତ୍ତିଟିକୁ ଦେଖି ସମସ୍ତେ ସବୁ ପ୍ରକାର ଆଶା ବିଶ୍ୱାସ ଓ ଆସ୍ଥା ହରାଇ ବସିଲେ। ଫଳରେ ବଞ୍ଚି ରହିବା ଲାଗି ଯେଉଁ ଧର୍ମ ସମ୍ମତ ଦାନ ପୁଣ୍ୟାଦି କର୍ମ କରିବାକୁ ଭଗବାନ ଶ୍ରୀକୃଷ୍ଣ କହିଥିଲେ–ସେତିକି ଉଦ୍ୟମ କରିବା ଲାଗି ଆଉ ସେମାନଙ୍କର ମନ ବଳିଲା ନାହିଁ। ସେମାନେ ଭାବିଲେ–ଆଉ ରକ୍ଷା ନାହିଁ। ଆଉ ଉଦ୍ଧାର ନାହିଁ। ଆଉ ମଧ୍ୟ ଉପାୟ ନାହିଁ। ଆମ୍ଭେମାନେ ନିଶ୍ଚୟ ମରିବା। ପରସ୍ପର ଭିତରେ ହଣାକଟା ହୋଇ ମରିବା। ଯଦୁବଂଶ ନିଶ୍ଚୟ ଧ୍ୱଂସ ହେବ। ଋଷି ଅର୍ଥାତ୍ ସାଧୁ ସନ୍ଥ ପୁଣ୍ୟବାନ ବ୍ୟକ୍ତିଙ୍କୁ ପୂର୍ବେ ଅପମାନିତ କରି ଥିବାର ଯେ ଅଭିଶାପ ତାହା ଆଉ ଅନ୍ୟଥା ହେବ ନାହିଁ। ଖଣ୍ଡିତ ମଧ୍ୟ ହୋଇପାରିବ ନାହିଁ।

ଏହିଭଳି କୋକୁଆଗ୍ରସ୍ତ ହୋଇଯିବା ଫଳରେ ଯଦୁବଂଶୀମାନଙ୍କର ମନୋବଳ ଭାଙ୍ଗି ପଡ଼ିଲା। ସମସ୍ତ ଉଦ୍ୟମ ଓ ଚେଷ୍ଟା ଶିଥିଳ ହୋଇଗଲା। ସେମାନେ ଧ୍ୱଂସରୂପୀ ଛାୟାମୂର୍ତ୍ତି ପାଖେ ନିଜକୁ ସମର୍ପଣ କରିଦେଲେ। ଯଦୁବଂଶ ଅଳ୍ପ ସମୟ ମଧ୍ୟରେ ପରସ୍ପର ହଣାକଟା ଫଳରେ ଧ୍ୱଂସ ହୋଇଗଲା।

ବର୍ତ୍ତମାନ ଆମ ସମାଜରେ ତଦ୍ରୂପ ଏକ କୋକୁଆ ଦେଖାଦେଇଛି। ତାକୁ ଦୁର୍ନୀତି କୋକୁଆ କୁହାଯାଇପାରେ। ସମାଜର ପ୍ରତିସ୍ତରର ଲୋକଙ୍କର ଗୋଟାଏ ଆଶଙ୍କା ହେଲାଣି ଯେ ଏଣିକି ଆଉ ଦୁର୍ନୀତି କରିବା ବ୍ୟତୀତ ବଞ୍ଚିବା ଲାଗି

ଅନ୍ୟ ପନ୍ଥା ନାହିଁ। ସମସ୍ତେ ଭାବିନେଲେଣି ଯେ—ସମାଜର ଅଚିି କନ୍ଦିରେ ଦୁର୍ନୀତିର ଚେର ମାଡ଼ିଗଲାଣି। କୌଣସି ବ୍ୟକ୍ତି ଆଉ ଦୁର୍ନୀତି ମୁକ୍ତ ନୁହେଁ। ଦୁର୍ନୀତି କରିବା ବ୍ୟତୀତ ଆଉ କୌଣସି ଉପାୟରେ କେହି ଚଳି ପାରିବେ ନାହିଁ—କେହି ମଧ୍ୟ ଚଳିପାରୁ ନାହାନ୍ତି।

ଏହି ବିଷାକ୍ତ ବଦ୍ଧମୂଳ ଧାରଣାଟି ସମସ୍ତଙ୍କ ମୁଣ୍ଡରେ ଏପରି ପଶିଯାଇଛି ଯେ ସମସ୍ତେ ଅତର୍କା ହୋଇ ଦୁର୍ନୀତି କୋକୁଆ ବିକଟ ମୁହଁ ଭିତରକୁ ପଶି ଯାଉଛନ୍ତି। ଅବସ୍ଥା ଏପରି ହେଲାଣି ଯେକୌଣସି ବ୍ୟକ୍ତି ଆଉ ବର୍ତ୍ତମାନ ବିଶ୍ୱାସ କରିବାକୁ ନାରାଜ ଯେ ଆମ ସମାଜରେ ତଥା ଅନ୍ୟ ଦେଶରେ ତଥାପି ମଧ୍ୟ ବହୁ ନୀତିବାନ୍ ଲୋକ ଅଛନ୍ତି ଓ ବହୁ ନୀତିପୂର୍ଣ୍ଣ କାର୍ଯ୍ୟ ମଧ୍ୟ ହେଉଛି।

ଏଭଳି କୋକୁଆ ଭୟ ସମାଜର ମନରେ ସୃଷ୍ଟି ହେଲା କିପରି ? ଗତ କେତେ ବର୍ଷ ଧରି କେତେକ ମିଥ୍ୟାବାଦୀ କୁତ୍ସାଶ୍ରୟୀ ସମ୍ବାଦପତ୍ର ଓ କେତେକ କୁତ୍ସାରଟନା ଉପାୟଜୀବୀ ତଥାକଥିତ ନେତୃବୃନ୍ଦ ଏହି କୋକୁଆ ଭୟ ସୃଷ୍ଟି ଲାଗି ମୁଖ୍ୟତଃ ଦାୟୀ ଏଥିରେ ସନ୍ଦେହ ନାହିଁ। ଏଣେ ପୁଣି କୁତ୍ସା ଶୁଣିବା ଲାଗି ମଧ୍ୟ ଆମ୍ଭମାନଙ୍କ ମନ ଗହନରେ କେତେକଙ୍କର ଏକ ବିକୃତ ଶ୍ରଦ୍ଧା ଲୁଚି ରହିଛି। ଫଳରେ ସତ୍ ଲୋକକୁ ଅସତ୍ ବୋଲି କେହି ଯଦି ମିଥ୍ୟା ବିଜ୍ଞାପିତ କରେ—ତେବେ ତାହା ଜନମାନସରେ ବଢ଼ିପାଣି ଭଳି ମାଡ଼ିଯାଏ। ଏହିପରିଭାବେ ଗତ କେତେ ବର୍ଷ ଧରି ଆମ ଦେଶରେ କେବଳ କୁତ୍ସା ପ୍ଲାବନ ଚାଲିବା ଫଳରେ ମହତ୍‌କୁ ସାନ କରି, ପୁଣ୍ୟବାନ୍‌କୁ ପାପୀ କରି, ସତ୍ୟାଶ୍ରୟୀକୁ ମିଥ୍ୟାଚାରୀରେ ପରିଣତ କରି ଲୋକ ବିଶ୍ୱାସ ଭିତରକୁ ଠେଲିଦିଆ ଯାଉଛି। ତେଣୁ ଏବେ ଅବସ୍ଥା ଅସମ୍ଭାଳ ହୋଇ ଉଠିଲାଣି।

ମଣିଷ ଭିତରେ ବୁଦ୍ଧିର କ୍ରମବିକାଶ ଦ୍ୱାରା ମଣିଷ ପଶୁ ସ୍ତରକୁ ଅତିକ୍ରମ କରିଗଲା। ମାତ୍ର ଏହି ବୁଦ୍ଧିଟି ତାକୁ ଯେତିକି ମଣିଷ ହେବାରେ ସାହାଯ୍ୟ କଲା—ସେତିକି ମଧ୍ୟ ଅମଣିଷ ହୋଇ ଯିବାକୁ ବାଟ ବତାଇ ଦେଲା। ପଶୁପକ୍ଷୀ ଦୁର୍ନୀତି କ'ଣ ଜାଣନ୍ତି ନାହିଁ। କାରଣ ଦୁର୍ନୀତି ଲାଗି ଏକ କୁଟବୁଦ୍ଧିର ଆବଶ୍ୟକତା ଥାଏ। କିନ୍ତୁ ମଣିଷର ସ୍ୱାର୍ଥପର ମନୋଭାବଟି ଏକ ପଶୁ ଗୁଣ। ପଶୁ ଭିତରେ ସାଧାରଣତଃ ମଣିଷ ଭଳି ସାମାଜିକ ତ୍ୟାଗ ପ୍ରେମ ପ୍ରଭୃତି ଗୁଣ ବିକାଶ ପାଏ ନାହିଁ। ପଶୁର ଅନୁଭବ ହେଲା—ମୁଁ ଖାଇଯିବି, ମୁଁ ଡେଇଁ ଯିବି—ମୁଁ ମାଡ଼ି ବସିବି ଓ ମୁଁ ମାରିଯିବି। ଏହି ପଶୁ ଗୁଣଟି ଆମେ ଉତ୍ତରାଧିକାରୀ ସୂତ୍ରରେ ପଶୁଙ୍କଠାରୁ ପାଇଛୁ। ଯଦି ଏହି ଅସାମାଜିକ ସ୍ୱାର୍ଥପର ପଶୁ ଗୁଣଟିକୁ ବଞ୍ଚାଇ ରଖିବାକୁ ବା ବଢ଼ାଇ ଚାଲିବାକୁ ଆମେ ଆମର ବୁଦ୍ଧି ଖଟାଉ ତେବେ ଆମେ ଦୁର୍ନୀତି କରିବାକୁ ବାଧ୍ୟ। ମାତ୍ର ଆମେ ଯଦି ଆମର ଦୟା, କ୍ଷମା, ପ୍ରେମ, ସହାନୁଭୂତି ଓ ତ୍ୟାଗ ଆଦି ସାମାଜିକ ଗୁଣଗୁଡ଼ିକୁ ବଢ଼ାଇବାକୁ ବସୁ। ତେବେ ଆମ ବୁଦ୍ଧି ମଧ୍ୟ ସେଥିପାଇଁ ଆମକୁ ସାହାଯ୍ୟ କରିବ।

ଏ ପ୍ରକାର ବୁଦ୍ଧି ହେଲା—ଶୁଭବୁଦ୍ଧି। ଏହି ଶୁଭବୁଦ୍ଧି ବଢ଼ିଲେ ସମାଜ ତିଷ୍ଠିବ, ଅଶୁଭ, କୁଟବୁଦ୍ଧି ବଢ଼ିଲେ ସମାଜ ଧ୍ୱଂସ ପାଇଥିବ।

ବର୍ତ୍ତମାନ ଆମ ସମାଜରେ କୁଟବୁଦ୍ଧି ଯେମିତି ବଢ଼ି ଚାଲିଛି ବୋଲି ଆଶଙ୍କା ହେଉଛି ସେମିତି ଆରପଟେ ଶୁଭବୁଦ୍ଧି ମଧ୍ୟ ତାକୁ ପ୍ରତିରୋଧ କରିବାକୁ ବଢ଼ି ଚାଲିଛି। ଦୁର୍ନୀତି ଯେମିତି ବଢ଼ିଛି ବୋଲି ଆମେ ଭାବୁଛୁ ବା ଆଶଙ୍କା କରୁଛୁ—ସେମିତି ସୁନୀତି ମଧ୍ୟ ବଢ଼ିଚାଲିଛି। କିନ୍ତୁ ଆମେ ଏପଟର ଆଲୁଅଟିକୁ ଦେଖି ପାରୁନୁ। ଆମ ସମାଜରେ ଏବେ ବି ବହୁ ନୀତିବାନ୍ କୃଷକ, ଶ୍ରମିକ, ଶିକ୍ଷକ, ସରକାରୀ କର୍ମଚାରୀ, ରାଜନୀତିଜ୍ଞ ଓ ବ୍ୟବସାୟୀ ଅଛନ୍ତି ଏବଂ ଯେତେ କଷ୍ଟକର ବୋଲି ମନେ ହେଲେ ବି ସେମାନେ ସେ କଷ୍ଟକୁ ଭ୍ରୂକ୍ଷେପ ନକରି ଜୀବନ ପଥରେ ଆଗେଇ ଚାଲିଛନ୍ତି। ମାତ୍ର ଦୁର୍ନୀତି କୋକୁଆ ଆମମାନଙ୍କୁ ଘାରିଥିବାରୁ ଆମେ ସେମାନଙ୍କୁ ଦେଖିପାରୁ ନାହୁଁ। ଆମକୁ କେବଳ ଚାରିଆଡ଼ ଦୁର୍ନୀତିମୟ ଦେଖାଯାଉଛି। ତେଣୁ ଯେତେଶୀଘ୍ର ଆମେ ଏହି ଦୁର୍ନୀତି କୋକୁଆଭୟ ଗ୍ରାସରୁ ମୁକ୍ତି ପାଇବୁ, ସେତେ ତାହା ଆମ ପାଇଁ ଓ ଦେଶ ପାଇଁ ମଙ୍ଗଳପ୍ରଦ ହେବ।

ଅତିଶୟ ଦୁଃଖର କଥା ହେଉଛି—ବର୍ତ୍ତମାନର ବହୁ ଯୁବକ ମଧ୍ୟ ମନୁଷ୍ୟର ନୀତିଗତ ଜୀବନ ଉପରୁ ଆସ୍ଥା ହରାଇଲାଣି। ଯୁବକମାନେ ହିଁ ସବୁ ଦେଶରେ ସବୁ କାଳରେ ବିପ୍ଲବୀ। ଯଦି ପୂର୍ବପୁରୁଷମାନେ ଏକ ଦୁର୍ନୀତିମୟ ସାମାଜିକ ସଂସ୍ଥା ଭିତରକୁ ଆମ୍ଭମାନଙ୍କୁ ଠେଲି ଦେଇଛନ୍ତି ତେବେ ଆମକୁ ସେଇ ଦୁର୍ନୀତିଗ୍ରସ୍ତ ସଂସ୍ଥାଗୁଡ଼ିକୁ ବିଶୋଧନ କରିବାକୁ ହେବ। ଦୁର୍ନୀତି ପ୍ରତି ଅଂଗୁଳି ନିର୍ଦ୍ଦେଶ କରି ସେଗୁଡ଼ିକୁ ସମୂଳରେ ଉତ୍ପାଟନ କରିବାର ଦାୟିତ୍ୱ ଯୁବଗୋଷ୍ଠୀର। ମାତ୍ର ସ୍ୱୟଂ ଯୁବଗୋଷ୍ଠୀ ଯଦି ଦୁର୍ନୀତି କୋକୁଆଗ୍ରସ୍ତ ହୋଇ ନିଜେ ଦୁର୍ନୀତିର ସର୍ବଗ୍ରାସୀ ମୁହଁ ଆଡ଼କୁ ଟାଣି ହୋଇଯାଆନ୍ତି ତେବେ ଦୁର୍ନୀତି ବିରୁଦ୍ଧରେ ଆଉ ସଂଗ୍ରାମ କରିବେ କେଉଁମାନେ। ପୁଣି ସଂଗ୍ରାମ ବା ହେବ କିପରି ? ଏ ସମ୍ବନ୍ଧେ ସହର ଓ ଗ୍ରାମାଞ୍ଚଳର ଯୁବଗୋଷ୍ଠୀ ସଚେତନ ହେବେ କି ?

କିନ୍ତୁ ଦୁର୍ନୀତି ବିରୁଦ୍ଧରେ ସଂଗ୍ରାମ କରିବା ଗୋଟେ କଥା–ପୁଣି ଦୁର୍ନୀତି କୋକୁଆଗ୍ରସ୍ତ ହୋଇ ନିଜେ ଦୁର୍ନୀତିର ଶୀକାର ହୋଇଯିବା ଆଉ ଗୋଟେ କଥା। ସମାଜରେ ଦୁର୍ନୀତି ପ୍ରତି ସାମାଜିକ ଭାବେ ସଚେତନ ଓ କ୍ରିୟାଶୀଳ ହେବା ନିତାନ୍ତ ଆବଶ୍ୟକ। ମାତ୍ର ବିଭିନ୍ନ ପ୍ରକାର କୁସା ପ୍ରତି ଆକର୍ଷିତ ହୋଇଯାଇ ଦୁର୍ନୀତି କୋକୁଆର ଧ୍ୱଂସକାରୀ ମୁହଁ ଆଡ଼କୁ ନିରୁପାୟ ଓ ଅବଶଭାବେ ଟାଣି ହୋଇଯିବା ନିଦାରୁଣ ବିପଦକୁ ଡାକି ଆଣିବ—ଏଥିରେ ସନ୍ଦେହ ନାହିଁ।



# ହରିଜନ ସମସ୍ୟାର ଅନ୍ୟଦିଗଟି

ପ୍ରାୟ ଚାଳିଶିବର୍ଷ ତଳେ, କବିଗୁରୁ ରବୀନ୍ଦ୍ରନାଥ ଘୋର ବ୍ୟଥିତଚିତ୍ତରେ ଭାରତବାସୀଙ୍କ ଉଦ୍ଦେଶ୍ୟରେ ଭବିଷ୍ୟତବାଣୀ ଶୁଣାଇଥିଲେ–

ହେ ମୋର ଦୁର୍ଭାଗାଦେଶ
ଯାଦେର କରେଛ ଅପମାନ
ଅପମାନେ ହତେ ହବେ, ତାହାଦେର ସବାର ସମାନ ।

କବିତାଟିର ଉଦ୍ଦେଶ୍ୟ ଥିଲା–ଯେଉଁ କୋଟି କୋଟି ହରିଜନ ଓ ଆଦିବାସୀଙ୍କୁ ଯୁଗ ଯୁଗ ଧରି ଅବହେଳିତ, ଲାଞ୍ଛିତ, ଓ ଲୁଣ୍ଠିତ କରି ସମାଜର ଅତ୍ୟନ୍ତ ନିମ୍ନ ସୋପାନରେ ସେମାନଙ୍କୁ ଅସ୍ପୃଶ୍ୟ କରି ରଖା ଯାଇଥିଲା ସେମାନଙ୍କ ସମ୍ପର୍କରେ ସମାଜର ଅନ୍ୟଶ୍ରେଣୀ ମନରେ ନୂତନ ଜାଗରଣ ଓ ମନୋଭାବ ସୃଷ୍ଟି କରିବା । ସମାଜର ଗୋଟିଏ ଶ୍ରେଣୀକୁ ଚିରଦିନ ନିର୍ଦ୍ଧନ ଓ ଅପାଠୁଆ କରି ରଖି, ସେମାନଙ୍କୁ ଅର୍ଦ୍ଧପଶୁରେ ପରିଣତ କରି ନିର୍ଦ୍ଵନ୍ଦରେ ଅପରଗୋଷ୍ଠୀ ସେମାନଙ୍କ ସେବା ଲୁଣ୍ଠନ କରି ଚାଲିଥିଲେ । ଏଇ ଭୟଙ୍କର ନାରକୀୟ ସାମାଜିକ ଅପରାଧ ବା ପାପ ଭିତରୁ ସମାଜକୁ ରକ୍ଷା କରିବାଲାଗି ଜାତିର ପିତା ମହାତ୍ମାଗାନ୍ଧୀ ଆନ୍ଦୋଳନ ଆରମ୍ଭ କରିଥିଲେ । କବିଗୁରୁ ସେଇ ଆନ୍ଦୋଳନର ବୈତାଳିକ ହୋଇ ଏଇ କବିତାଟି ଲେଖିଥିଲେ ।

ବହୁପୂର୍ବରୁ, ମାନେ ଷୋଡ଼ଶଶତାବ୍ଦୀରୁ କିନ୍ତୁ ପ୍ରେମଭକ୍ତିର ଅବତାର ପୁରୁଷ ଶ୍ରୀଚୈତନ୍ୟ ବୈଷ୍ଣବଧର୍ମର ପ୍ରଚାର କରୁ କରୁ ଏହି ଭୟଙ୍କର ସଂକୀର୍ଣ୍ଣ ଜାତିଭେଦବାଦ ଉପରେ ପ୍ରତିଷ୍ଠିତ ଅସ୍ପୃଶ୍ୟତା ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ସେ ସ୍ପଷ୍ଟଭାବେ ଘୋଷଣା କଲେ ଯେଉଁ ବ୍ୟକ୍ତି ଭଗବତ ପରାୟଣ ହୁଏ ବା ଶୁଦ୍ଧସତ୍ୟ ଜୀବନଯାପନ କରେ ସେ ତଥାକଥିତ ନୀଚକୁଳରେ ଜନ୍ମଲାଭ କଲେ ବି ବ୍ରାହ୍ମଣଠାରୁ ଉଚ୍ଚତର ପର୍ଯ୍ୟାୟଭୁକ୍ତ ଅଟେ । ଏବଂ ବିପରୀତରେ ଉଚ୍ଚକୂଳରେ ଜନ୍ମଲାଭ କରିଥିବା ବ୍ୟକ୍ତି ଶଠ, ମିଥ୍ୟାଚାରୀ ଓ ନାସ୍ତିକ ହେଲେ ସେ ଚଣ୍ଡାଳଠାରୁ ମଧ୍ୟ ହୀନ ହୁଏ । ଏହି ପ୍ରେମଭକ୍ତିର ପବିତ୍ର ପ୍ଲାବନରେ ସମାଜରେ ଜାତିଭେଦ ବ୍ରାହ୍ମଣ ଚଣ୍ଡାଳ ଭେଦ ଲୋପ ପାଇଥିଲା । ଶ୍ରୀ ଚୈତନ୍ୟ କହିଲେ–ସମସ୍ତେ ସମାଜରୂପୀ ଭଗବାନଙ୍କର ସେବାକର ଓ ତାହାରି ମାଧ୍ୟମରେ ଈଶ୍ୱରଙ୍କୁ ଉପଲବ୍ଧି କର । ସେଥିଲାଗି ବୈଷ୍ଣବ ଧର୍ମରେ ଦୀକ୍ଷିତ ହେଲା ମାତ୍ରେ ବ୍ରାହ୍ମଣ, କ୍ଷେତ୍ରିୟ, ବୈଶ୍ୟ ଓ ଶୁଦ୍ରକୁଳରେ ଜନ୍ମିଥିଲେ ବି ସମସ୍ତେ ନିଜର ମୌଳିକ ସାଙ୍ଗିୟା ବା ଉପାଧି ତ୍ୟାଗ କରି ନାମ ପଛରେ

''ଦାସ'' ଉପାଧି ବ୍ୟବହାର କରୁଥିଲେ । ସେଇ ଧାରାରେ ବ୍ରାହ୍ମଣ କୁଳଜାତ ଭକ୍ତଶିରୋମଣି ଭାଗବତର କବି ଜଗନ୍ନାଥ ଯେପରି ଜଗନ୍ନାଥ ଦାସ ନାମରେ ପରିଚିତ, ସେହିପରି ଶୂଦ୍ରକୁଳଜାତ ମହାଭକ୍ତ ରାମାୟଣ ପ୍ରଣେତା ବଳରାମ ମଧ ବଳରାମ ଦାସ ନାମରେ ପରିଚିତ ଓ ଜାତି ଚିରରେ ସମାନଭାବେ ସମ୍ମାନିତ । ଶ୍ରୀଚୈତନ୍ୟ ସେତେବେଳେ ବହୁ ହରିଜନଙ୍କୁ ମଧ ବୈଷ୍ଣବ ମନ୍ତ୍ରରେ ଦୀକ୍ଷିତ କରି ଦାସ ଉପାଧି ପ୍ରଦାନ କରିଥିଲେ । ତା'ପରେ ଉନବିଂଶ ଶତାବ୍ଦୀଠାରୁ ରାଜା ରାମମୋହନଙ୍କଠାରୁ ଆରମ୍ଭ କରି ପରମପୁରୁଷ ରାମକୃଷ୍ଣ, ସ୍ୱାମୀ ବିବେକାନନ୍ଦ ଓ ଶ୍ରୀ ଅରବିନ୍ଦଙ୍କ ପର୍ଯ୍ୟନ୍ତ ସମସ୍ତେ ଏହି ଜାତିଭେଦର କୁତ୍ସିତ ନିଗଡ଼କୁ ଭାଙ୍ଗି ଏବଂ ଅସ୍ପୃଶ୍ୟତା ଭାବକୁ ସମୂଳେ ଲୋପକରି ଏକ ନୂତନ ସମାଜ ଗଢ଼ିବାର ଆହ୍ୱାନ ଦେଇଥିଲେ । ଗାନ୍ଧୀଜୀ ତ ଏହାକୁ ଏକ ଆନ୍ଦୋଳନରେ ପରିଣତ କରିଦେଲେ ।

ମାତ୍ର ଆମ ଶାସ୍ତ୍ର, ଅବତାର ଓ ଜାତି ନିର୍ମାତାବୃନ୍ଦ ଏହା ଉପରେ ଯେତେ ଜୋର ଦେଲେ ବି ଆମର ଅବାଧ୍ୟ ଅନମନୀୟ ସମାଜ ଏପର୍ଯ୍ୟନ୍ତ ଏହି ମହାନ୍ ମହାନୀୟ ସଦ୍‌ଗୁଣକୁ ଆୟତ୍ତ କରି ପାରୁନାହିଁ । ଏହାଠାରୁ ବଳି ଶୋଚନୀୟ କଥା ଆଉ କ'ଣ ଅଛି ? ଗାନ୍ଧିଜୀ ସମାଜର ମନରୁ ଏହି ଅସ୍ପୃଶ୍ୟତା ବ୍ୟାଧି ଦୂରକରିବା ଲାଗି କି ସାଧ୍ୟ ସାଧନା କରି ନାହାନ୍ତି ? ମାତ୍ର ତଥାପି, ଆଜି ମଧ ଭାରତର ସବୁ ଦେବମନ୍ଦିର ହରିଜନମାନଙ୍କ ପାଇଁ ଖୋଲା ଯାଇ ପାରିଲା ନାହିଁ । ଆଜି ମଧ ପ୍ରତି ଦିନର ଖବର କାଗଜରେ ହରିଜନମାନଙ୍କ ଉପରେ ସବର୍ଣ୍ଣ-ହିନ୍ଦୁଙ୍କ ନୃଶଂସ ଅତ୍ୟାଚାରର କରୁଣ କାହାଣୀ ପଢ଼ି ମନ ଘୋର କ୍ଷୋଭ ଓ ହତାଶରେ ଭାଙ୍ଗିପଡ଼େ । ଆଜି ମଧ ହରିଜନ ଓ ଆଦିବାସୀମାନଙ୍କୁ ବହୁସ୍ତରରେ ଅତି ହେୟ ରୂପେ ଦେଖିବାର ଓ ବିଚାରିବାର ହୀନତମ ମନୋବୃତ୍ତି ପ୍ରବଳ ପ୍ରଗାଢ଼ ହୋଇ ରହିଛି ।

## ରାଜନୈତିକ ଦୃଷ୍ଟିରୁ ନୁହେଁ

ମହାତ୍ମାଗାନ୍ଧୀ ଏହି ହରିଜନ ଆଦିବାସୀ ସମସ୍ୟାକୁ କେବଳ ରାଜନୈତିକ ଦୃଷ୍ଟିରୁ ବିଚାର କରୁନଥିଲେ । ସେ ଏହି ସମସ୍ୟାକୁ ଅର୍ଥନୈତିକ ଓ ସାମାଜିକ ଦୃଷ୍ଟିକୋଣରୁ ବିଶ୍ଳେଷଣ କରୁଥିଲେ ଏବଂ ଏହାର ସମାଧାନ ଧାର୍ମିକ ବା ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ବାହାର କରୁଥିଲେ । ସେଥିଲାଗି ହରିଜନମାନଙ୍କର ମନ୍ଦିର ପ୍ରବେଶ ଉପରେ ସେ ଏତେ ଜୋର ଦେଇଥିଲେ । ''ହରିଜନ'' ଶବ୍ଦଟିର ମୂଳରେ ମଧ ଗାନ୍ଧୀଜୀଙ୍କର ଏହି ଆଧ୍ୟାତ୍ମିକ ଭାବଧାରା ରହିଛି । ସମାଜର ଯେଉଁ ଶ୍ରେଣୀଟି ନାନାଦି କାରଣରୁ ହଜାରବର୍ଷ ଧରି ସବୁ ଦିଗରୁ ଅବନତ ହୋଇ ରହିଛି ତାକୁ ସବୁ ଦିଗରୁ ଉପରକୁ ଉଠାଇ ଆମର ସମାସ୍କନ୍ଧ କରିବାକୁ ହେବ । ତା' ହେଲେ ଯାଇ ସେଇ ଶ୍ରେଣୀଟି ସଙ୍ଗେ ଆମର ଆତ୍ମିକ ସମ୍ପର୍କ ସ୍ଥାପନ ସମ୍ଭବ ହୋଇପାରିବ । ସବର୍ଣ୍ଣ ଓ ହରିଜନଙ୍କ ଭିତରେ ଭାତୃତ୍ୱ ବନ୍ଧନ ନିବିଡ଼ ମଧୁର ଓ ହାର୍ଦ୍ଦିକ ହୋଇପାରିବ ।

ଏଥିଲାଗି, ସେମାନଙ୍କୁ କିଛିବର୍ଷ ଲାଗି କେତେ ସ୍ୱତନ୍ତ୍ର ସୁବିଧା ଦେବାଲାଗି ଗାନ୍ଧିଜୀ ଓ ଅନ୍ୟାନ୍ୟ ନେତୃବର୍ଗ ପ୍ରସ୍ତାବ ଦେଇଥିଲେ ଓ ତଦନୁଯାୟୀ ସରକାରମାନେ ସେଦିଗରେ ଯଥା–ଯୋଜନା ଓ ବ୍ୟବସ୍ଥା କରି ଆସୁଛନ୍ତି। ଯାହା ଆଶା କରିବା କଥା–ତା' ହେଉଛି ଏହି ବିଗତ ତିରିଶିବର୍ଷ ଭିତରେ ସବର୍ଣ୍ଣ ଓ ହରିଜନ ଭିତରେ ଥିବା ବିଭେଦର ପରିଖାଟି ବନ୍ଧ ପର୍ଯ୍ୟନ୍ତ ପୋତି ହୋଇ ଯାଇଥାନ୍ତା।

## ବିଭେଦ ବଢୁଛି

କିନ୍ତୁ ଦେଖା ଯାଉଛି–ଯେତିକି ପରିମାଣରେ ହରିଜନମାନଙ୍କର ଆର୍ଥିକ ଓ ସାମାଜିକ ଉନ୍ନତି କରାଯାଉଛି, ସେତିକି ପରିମାଣରେ ସବର୍ଣ୍ଣ ହିନ୍ଦୁଙ୍କ ସହ ସେମାନଙ୍କର ସାମାଜିକ ବିଭେଦର ଖାତି ଆହୁରି ଗଭୀର ହୋଇ ଚାଲିଛି। ଆଜି ଗ୍ରାମେ ଗ୍ରାମେ ସବର୍ଣ୍ଣ ଓ ହରିଜନଙ୍କ ଭିତରେ ହିଂସାତ୍ମକ ମନୋଭାବ ବୃଦ୍ଧି ପାଇଛି। ପରସ୍ପରକୁ ଘୋର ଈର୍ଷା ଓ ଜିଘାଂସା କରୁଛନ୍ତି। ପରସ୍ପର ଭିତରେ ଶତ୍ରୁତା ବୃଦ୍ଧି ପାଉଛି। ଏହାର କାରଣ କ'ଣ ତା'ର ନିରାକରଣରେ ମଧ ବାଟ କ'ଣ ସେ ସମ୍ବନ୍ଧେ ଆମର ସାମାଜିକ ନେତୃବୃନ୍ଦ (ଯଥା–ଶିକ୍ଷକ, ଅଧ୍ୟାପକ, ଧର୍ମପ୍ରଚାରକ, କବି, ଲେଖକ, ପ୍ରଭୃତି) ଏବଂ ରାଜନୈତିକ ନେତୃବୃନ୍ଦ (ଯଥା–ମନ୍ତ୍ରୀ, ଏମ୍.ଏଲ୍.ଏ. ଚେୟାରମାନ, ସରପଞ୍ଚ ଓ ବିଭିନ୍ନ ଦଳର ସଭ୍ୟବୃନ୍ଦ) ମୁଣ୍ଡ ଖେଳାଇବା ଉଚିତ ଏବଂ ସେଦିଗରେ ସମାଜକୁ ପରିଚାଳିତ କରିବା ଉଚିତ୍।

## ସମସ୍ୟାର ମୂଳ କେଉଁଠି

ହରିଜନ ଆଦିବାସୀ ସମସ୍ୟା ବର୍ତ୍ତମାନ କେବଳ ଅର୍ଥନୈତିକ ସ୍ତରରେ ରହି ନାହିଁ। ଏହାର ମୂଳ ରହିଛି ସମାଜର ମନସ୍ତାତ୍ତ୍ୱିକ ଓ ଆଧ୍ୟାତ୍ମିକ ସ୍ତରରେ। ଗାନ୍ଧିଜୀ ସେହି ସ୍ତରରୁ ଏ ସମସ୍ୟାର ସମାଧାନ କରିବାକୁ ଚାହିଁଥିଲେ। କିନ୍ତୁ ଯାହା ଦେଖାଯାଉଛି–ବର୍ତ୍ତମାନ ଏହାକୁ କେବଳ ରାଜନୈତିକ ସ୍ତରରେ ପକାଇ ଏଥିରୁ ରାଜନୈତିକ ମୁନାଫା ଉଠାଇବାକୁ ସମସ୍ତେ ବ୍ୟଗ୍ର ହୋଇ ପଡ଼ିଛନ୍ତି। ଫଳରେ ଏ ସମସ୍ୟା ଅଧିକ ଜଟିଳ ହୋଇ ଯାଉଛି ଦିନୁଁଦିନ। ରାଜନୈତିକ ନେତାମାନେ ସେମାନେ ଯେଉଁ ଦଳର ହୁଅନ୍ତୁ ନା କାହିଁକି–ସେମାନେ ସବର୍ଣ୍ଣ ହୁଅନ୍ତୁ ବା ହରିଜନ ଆଦିବାସୀ ହୁଅନ୍ତୁ–ସେମାନେ ଯଦି ଏହି ସମସ୍ୟାକୁ ସେମାନଙ୍କର କ୍ଷମତାଲାଭର ଶସ୍ତ୍ର ରୂପେ ବ୍ୟବହାର କରନ୍ତି ବା ଅନ୍ୟକୁ କ୍ଷମତାଚ୍ୟୁତ କରିବାର ଅସ୍ତ୍ର ରୂପେ ବ୍ୟବହାର କରନ୍ତି, ତେବେ ଏ ସମସ୍ୟା ଦିନକୁ ଦିନ ଆହୁରି ଭୟାବହ ହୋଇ ପଡ଼ିବ ଏବଂ ଆଫ୍ରିକା ଆମେରିକାର ବର୍ଣ୍ଣବିଦ୍ୱେଷଠାରୁ ଏହାର ପରିଣତି ଆହୁରି କଦର୍ଯ୍ୟ ଅମାନବୀୟ ସ୍ତରକୁ ଚାଲିଯିବ। ବର୍ତ୍ତମାନ ଏ ସମସ୍ୟା ସେଇ ଆଡ଼କୁ ଦ୍ରୁତଗତିରେ ମୁହାଁଇ ଯାଉଛି ବୋଲି ବହୁ ଚିନ୍ତାଶୀଳ ବ୍ୟକ୍ତି ଆଶଙ୍କା ପ୍ରକାଶ କଲେଣି। ଯେକୌଣସି

ସାମାଜିକ ସମସ୍ୟାକୁ କେବଳ ରାଜନୈତିକ ଦୃଷ୍ଟିରୁ ବା ସ୍ତରରୁ ଗ୍ରହଣ କରି ବ୍ୟବହାର କଲେ ଏହି ଫଳ ଅଣ୍ଟିତ ହେବା ଅବଶ୍ୟମ୍ଭାବୀ।

## ଅତୀତର ଅଭିଜ୍ଞତା

ଯେପରି ହିନ୍ଦୁ ମୁସଲମାନ ସମସ୍ୟାଟିର ଦଶା ହୋଇଥିଲା ମୁସଲମାନମାନେ ବୈଦେଶିକ ଆକ୍ରମଣକାରୀ ଭୂମିକାରୁ ଓହ୍ଲାଇ ଆସି ଯେତେବେଳେ ଏ ଦେଶରେ ସ୍ଥାୟୀ ବାସିନ୍ଦା ହେଲେ, ସେତେବେଳେ ସମାଜ ପଡ଼ୋଶୀ ଭାବେ ସେମାନଙ୍କୁ ଗ୍ରହଣ କରିନେଲା। ଏବଂ ଏ ଦେଶର ସାମାଜିକ ପରମ୍ପରାରେ ମୁସଲମାନ, ହିନ୍ଦୁ ପରସ୍ପର ମଧ୍ୟରେ ଏକ ଆଦାନ ପ୍ରଦାନ ବ୍ୟବସ୍ଥାରେ ଓ ସମ୍ପର୍କ ସ୍ଥାପନରେ ଯଥା ସୀମା ରଖି ଚଳିବାରେ ଗୋଟିଏ ମୂଳଦୁଆ ପଡ଼ି ଯାଇଥିଲା। ମାତ୍ର ଇଂରେଜମାନେ ପୁଣି ଯେତେବେଳେ ଏହି ସମସ୍ୟାକୁ ଏକ ରାଜନୈତିକ ଅସ୍ତ୍ରଭାବେ ବ୍ୟବହାର କଲେ, ସେତେବେଳେ ଏହା ଏକ ନିଦାରୁଣ ଚରମ ପରିଣତି ଆଡ଼କୁ ମୁହାଇଁଯାଇ ଭାରତବର୍ଷକୁ ଫଟାଇ ଦେଲା। ଆମେ ସେହି ଅଭିଜ୍ଞତାର ଯଥା ଶିକ୍ଷା ଲାଭକରି ବର୍ତ୍ତମାନ ଆମ ଆଗରେ ପ୍ରଚଣ୍ଡହୋଇ ଠିଆହୋଇଥିବା ଏହି ହରିଜନ ଆଦିବାସୀ ସମସ୍ୟାଟିର ସମାଧାନ ଦିଗରେ ଅଗ୍ରସର ହେବା ଉଚିତ।

## ଅର୍ଥନୈତିକ ଦୃଷ୍ଟିକୋଣରୁ

ପ୍ରଥମ କଥା—ଅର୍ଥନୈତିକ ଓ ସାମାଜିକ ଦୃଷ୍ଟିରୁ ବିଚାର କଲାବେଳେ ଆମକୁ ପ୍ରଥମେ ଦେଖିବାକୁ ହେବ—ଦାରିଦ୍ର୍ୟ ସୀମାରେଖା ତଳେଥିବା ଲୋକଙ୍କୁ ପ୍ରଥମେ କେମିତି ସୁସ୍ଥ ସ୍ୱାଧୀନ ଓ ଭଦ୍ରଭାବେ ଜୀବନଯାପନ କରିବାର ସୁଯୋଗ ଓ ଅଧିକାର ଯୋଗାଇ ଦିଆଯିବ। ଏହି ବ୍ୟବସ୍ଥାରେ ଭୂମିହୀନଙ୍କୁ କିଛି ଭୂମିଦାନ, କର୍ମ କରି ରୋଜଗାର କରିବାକୁ ଚାହୁଁଥିବା ଲୋକଙ୍କୁ କର୍ମ ଓ ଶ୍ରମ ଉପଯୋଗୀ ଯଥା ମଜୁରୀ ପ୍ରଦାନର ବ୍ୟବସ୍ଥା—ବାସହୀନଙ୍କୁ ବାସଗୃହ ବା ବାସଢ଼ିଅ ଯୋଗାଣ ଆଦି ଯୋଜନା ତୁରନ୍ତ କାର୍ଯ୍ୟକାରୀ ହେବା। ମାତ୍ର ଏହାକୁ କାର୍ଯ୍ୟକାରୀ କଲାବେଳେ, କର୍ତ୍ତୃପକ୍ଷ ଏପରି ମନୋଭାବ ପୋଷଣ କରିବା ଉଚିତ୍ ଓ ଏପରି ବାୟୁମଣ୍ଡଳ ସୃଷ୍ଟି କରିବା ଉଚିତ୍ ଯେଉଁଥିରୁ ସାଧାରଣ ଲୋକ ଜାଣିବେ ଯେ କୌଣସି ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀଲାଗି ଏ ବ୍ୟବସ୍ଥା ହେଉନାହିଁ—ଅତି ନିଦାରୁଣ ଦାରିଦ୍ର୍ୟ ଭୋଗୁଥିବା ଲୋକଙ୍କ ପାଇଁ ଏ ବ୍ୟବସ୍ଥା ହେଉଛି। ଏବଂ ଏ ବ୍ୟବସ୍ଥାର ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଆଦିବାସୀ ପ୍ରଭୃତି ଜାତି ଧର୍ମ ନିର୍ବିଶେଷରେ ସମସ୍ତଙ୍କୁ ଅର୍ଥନୈତିକ ଦୃଷ୍ଟିରୁ ହିଁ ବିଶେଷ ସୁଯୋଗ ଦିଆଯାଉଛି: ନା' ନହେଲେ ସବର୍ଣ୍ଣ ଲୋକଙ୍କ ମନରେ ଏକ ବୃଥା ଧାରଣା ସୃଷ୍ଟି ହୋଇଯିବ ଯେ ଗୋଟିଏ ନିର୍ଦ୍ଦିଷ୍ଟ ଗୋଷ୍ଠୀକୁ ତୋଷଣ କରିବା ହିଁ ସରକାରଙ୍କ ଉଦ୍ଦେଶ୍ୟ ହୋଇଛି। ଅତୀତରେ ଏ ସମ୍ବନ୍ଧେ ସଚେତନ ନ ହେବା ଫଳରେହିଁ

ଏ ପ୍ରକାର ଅବାଞ୍ଛିତ ମନସ୍ତାତ୍ତ୍ୱିକ ବାୟୁମଣ୍ଡଳ ଦେଶରେ ଖେଳିଯାଇଛି। ତେଣୁ ଏହା ଦୂରକରିବା ଦିଗରେ ସରକାରୀ ଓ ବିରୋଧୀଦଳର କର୍ମୀମାନେ ଲୋକଙ୍କ ସଙ୍ଗେ ଘନିଷ୍ଠଭାବେ ମିଶି ଏକ ଯଥାର୍ଥ ବାୟୁମଣ୍ଡଳ ସୃଷ୍ଟି କରିବା ଦିଗରେ ଯତ୍ନବାନ ହେବା ଉଚିତ୍। ଏ ବିଷୟରେ ଖବରକାଗଜଗୁଡ଼ିକର ମଧ୍ୟ ଦାୟିତ୍ୱ ରହିଛି। ଖବର କାଗଜରେ ଦରିଦ୍ର ଓ ହରିଜନମାନଙ୍କ ଉନ୍ନତି କଳ୍ପେ ଅପେକ୍ଷାକୃତ ସ୍ୱଚ୍ଛଳ ଓ ସ୍ୱଚ୍ଛନ୍ଦ ଜୀବନଯାପନ କରୁଥିବା ଶ୍ରେଣୀର ଲୋକେ କିଛିଦିନ ପାଇଁ ସ୍ୱାର୍ଥତ୍ୟାଗ କରନ୍ତୁ—ଏହି ମର୍ମରେ ପ୍ରତିଦିନ ବିଭିନ୍ନ ରୀତିରେ କିଛି ଲେଖା ପ୍ରକାଶ ପାଇବା ଉଚିତ। ଆମର କବି ଓ ଲେଖକମାନେ ମଧ୍ୟ ଏ ଦିଗରେ ମୁଣ୍ଡଖେଳାଇ ଏହି ଭାବକୁ ପୋଷଣ କରି ଗଳ୍ପ ଓ କବିତାଦି ଲେଖିପାରନ୍ତି। ବିଭିନ୍ନ ସାଂସ୍କୃତିକ ଉତ୍ସବରେ ମଧ୍ୟ ଏହି ଭାବକୁ ଆନ୍ତରିକତା ସହିତ ବିଭିନ୍ନ କଳା ଆଙ୍ଗିକରେ ପ୍ରକାଶ କରି ଲୋକମାନଙ୍କ ଚିତ୍ତରେ ଅନୁକୂଳ ମନୋଭାବ ସୃଷ୍ଟି କରିବା ଉଚିତ। ଥିଏଟର ସିନେମା ପ୍ରଭୃତିରେ ମଧ୍ୟ ଏଇ ଭାବ ଅବଲମ୍ବନରେ ନାଟକ ଓ ଛବି ପ୍ରଦର୍ଶିତ ହେବା ଉଚିତ୍।

## ଦୁଇପଟରୁ ସମାନ ବିଚାର

କିନ୍ତୁ ଏସବୁ କଲାବେଳେ ମଧ୍ୟ ଆମକୁ ସର୍ବଦା ମନେରଖିବାକୁ ହେବ—ଯେପରି ଆମେ ହରିଜନ ଓ ଆଦିବାସୀଙ୍କ ପ୍ରତି ସମଗ୍ର ସମାଜର ମନୋଭାବରେ ପରିବର୍ତ୍ତନ ଆଣିବାକୁ ଚେଷ୍ଟା କରୁ କରୁ, ଆମର ଅସାବଧାନତା ହେତୁ ବା ଅବହେଳା ହେତୁ ବା ସମାଜର ସାମଗ୍ରିକ ରୂପ ବା ସଂହତି ପ୍ରତି ଅମନଯୋଗୀତା ହେତୁ, ବା ଏକପାଖିଆ ମନୋଭାବ ପ୍ରବଣତା ହେତୁ—ଏବଂ ଶେଷରେ ଏକ ଶୁଭ ପ୍ରେରଣା ସଞ୍ଜାତ ଆନ୍ତରିକତାର ଅଭାବ ହେତୁ—ଆମେ ଯେପରି ସମାଜର ଅନ୍ୟ ଗୋଷ୍ଠୀର ମନରେ ଅଯଥା ସନ୍ଦେହ, ବିଭେଦ ଅପମାନବୋଧ ଓ ବିଦ୍ୱେଷର ନିଆଁ ଲଗାଇ ନ ଦେଉ। ହରିଜନଙ୍କ ବିଶେଷତ୍ୱ ବା ପ୍ରତିଷ୍ଠା ରକ୍ଷା କରିବାକୁ ଯାଇ ଆମେ ଅଯଥାରେ ଯେପରି ସବର୍ଣ୍ଣ ଗୋଷ୍ଠୀର ଯଥାର୍ଥ ମହିମାଗୁଡ଼ିକୁ ମ୍ଳାନ କରି ନ ଦେଉ। ଭାରତୀୟ ଚେତନାରେ ଜଣଙ୍କୁ ପ୍ରତିଷ୍ଠିତ କରିବାକୁ ଯାଇ ଅନ୍ୟକୁ ଭୂଲୁଣ୍ଠିତ କରି ଦେବାର ଆଦର୍ଶ ନାହିଁ। ମହାତ୍ମାଗାନ୍ଧୀ ଏହି ମର୍ମଟିକୁ ଭଲଭାବେ ବୁଝି ବୁଝାଇ ଯାଇଛନ୍ତି। ଆମେ ଯଦି ତାଙ୍କର ଆଦର୍ଶ ଅନୁଯାୟୀ ଯଥାର୍ଥରେ ଏ ଦିଗରେ କାର୍ଯ୍ୟ କରିବା ତେବେ ଆମେ ନିଶ୍ଚିତଭାବେ ଏହି ବିପର୍ଯ୍ୟୟରୁ ରକ୍ଷା ପାଇପାରିବା।

## ଉଦାହରଣ ସ୍ୱରୂପ

ଉପରଲିଖିତ କଥାଗୁଡ଼ିକର ଯଥାର୍ଥ ପ୍ରତିପାଦନ ପାଇଁ ନିମ୍ନ ଉଦାହରଣଟି ଦିଆଗଲା। ସୁଧୀ ପାଠକବୃନ୍ଦ ଏ ଦିଗରେ ଚିନ୍ତା କରିବେ ବୋଲି ଆଶା କରୁ। ଖବରକାଗଜରେ "ହରିଜନବାଳିକା ଉପରେ ଅତ୍ୟାଚାର" ଶୀର୍ଷକ ସମ୍ବାଦଟି ପଢ଼ି ବହୁ ଲୋକ କହିବାର

ଆମେ ଶୁଣିନ୍ତୁ—ଯେ ଆଜି ପର୍ଯ୍ୟନ୍ତ ଏହିଭଳି ଖବର ଏହି ରୀତିରେ ପ୍ରକାଶ ପାଇବାର କାରଣ କ'ଣ ? ଜଣେ ଅସହାୟା ବାଳିକା ଉପରେ ଦୁର୍ବୃତ୍ତମାନଙ୍କ ଅତ୍ୟାଚାର'' ଏହି ମର୍ମରେ ଖବରଟି ବାହାରିଲେ ସାମାଜିକ ମନସ୍ତତ୍ତ୍ୱକୁ ଠିକଣାବାଟେ ପରିଚାଳିତ କରିବାରେ ଏହା ଅଧିକ ସାହାଯ୍ୟ କରନ୍ତା କାହିଁକି ? ଯେତେ ବାଳିକାଙ୍କ ଉପରେ ଦୁର୍ବୃତ୍ତମାନେ ଅତ୍ୟାଚାର କରୁଛନ୍ତି—ସେ ବାଳିକାମାନଙ୍କର ଜାତି ଗୋତ୍ର ପ୍ରକାଶ କରିବା କ'ଣ ନିତ୍ୟାନ୍ତ ଉଚିତ୍ ? ସେହିଭଳି କୌଣସି ଗ୍ରାମରେ ଭାଗଚାଷୀ ମଜୁରିଆ ବା ନୂତନଭାବେ ଜମି ଦଖଲକରି ଚାଷ କରୁଥିବା ଅସହାୟ ଲୋକଙ୍କ ଉପରେ ଥିଲାବାଲାମାନେ ଯଦି ଅତ୍ୟାଚାର କରୁଥାନ୍ତି—ଏବଂ ସେ ଅତ୍ୟାଚାରିତ ବ୍ୟକ୍ତିମାନେ ଯଦି ଦୁର୍ଭାଗ୍ୟକ୍ରମେ ହରିଜନ ଶ୍ରେଣୀର ହୋଇଥାନ୍ତି—ତେବେ ଏହି ଘଟଣାଟିକୁ ଲୋକଲୋଚନକୁ ଆଣିବାବେଳେ ଆମେ ''ହରିଜନ'' ଶବ୍ଦଟି ବ୍ୟବହାର ନ କରି ''ଅସହାୟ'' ବା ''ଦରିଦ୍ର'' ପ୍ରଭୃତି ଶବ୍ଦ ବ୍ୟବହାର କଲେ ସବୁ ଦିଗରୁ କଲ୍ୟାଣକର ହୁଅନ୍ତା ନାହିଁକି ? କଥାରେ ଅଛି—ଯଥାର୍ଥ ପତିପରାୟଣ ପତ୍ନୀଟି ଉଠୁଣୁ ଯାଉଣୁ ତା' ପତିର ନାମ ଯଥେଚ୍ଛ ଉଚ୍ଚାରଣ କରେନାହିଁ। ସେହି ଭଳି ଯଥାର୍ଥ ଗୁରୁ ଆଦର୍ଶ ପରାୟଣ ଗୁରୁଭକ୍ତ ଶିଷ୍ୟଟି ଯେତେବେଳେ ସେତେବେଳେ ତା'ର ଗୁରୁର ନାମ ଧରେ ନାହିଁ। ବାସ୍ତବ ଆନ୍ତରିକତାର ଏହି ରୀତିସିନା ! ମାତ୍ର ଆମେ ଯେତେ ମାତ୍ରାରେ ''ହରିଜନ'' ଶବ୍ଦଟି କଥା କଥାକେ ବ୍ୟବହାର କରୁଛୁ—ସନ୍ଦେହ ହେବା ସ୍ୱାଭାବିକ ଯେ—ଆମର ସେତିକି ଆନ୍ତରିକତା ହୁଏତ ସତକୁସତ ସେମାନଙ୍କ ପ୍ରତି ନାହିଁ। ଗୋଟିଏ ମାଙ୍ଗଳିକ ସତ୍ୟ, ଯଦି କେବଳ ହଟ ଗୋଳୀୟ ମୌଖିକ ''ବୋଲୀ''ରେ ପରିଣତ ହୋଇଯାଏ, ତେବେ ତାହା ଭୟଙ୍କର କୁଫଳ ପ୍ରସବ କରିଥାଏ। ବର୍ତ୍ତମାନ ବେଳ ଆସିଛି—ଆମେ ଏ ସମ୍ବନ୍ଧେ ଅଧିକ ଚିନ୍ତାଶୀଳ, ସାବଧାନ ଓ କ୍ରିୟାଶୀଳ ହେବା।

ଅନ୍ୟ ପକ୍ଷରେ କବି ଗୁରୁ ରବୀନ୍ଦ୍ରନାଥଙ୍କର ସେହି ମହାନୀୟ ତେତାବନୀ ବାରମ୍ବାର ଆମର କର୍ଣ୍ଣଗୋଚରେ ହୋଇ ଆମର ମର୍ମଭେଦ କରୁ—

ଯାରେ ତୁମି ନୀଚେ ଫେଲ୍
    ସେ ତୋମାରେ ବାନ୍ଧିବେ ଯେ ନୀଚେ
ପଶ୍ଚାତେ ରେଖେଛ ଯାରେ
    ସେ ତୋମାରେ ପଶ୍ଚାତେ ଟାନିଛେ।

ସେଥିପାଇଁ ଆମ୍ଭେମାନଙ୍କ ପ୍ରତି ବିଶ୍ୱପିତା ବିଧାତାପୁରୁଷଙ୍କର କଠୋର ଆଦେଶ ହେଉଛି—

ବିଧାତାର ରୁଦ୍ରରୋଷେ—ଦୁର୍ଭିକ୍ଷେର ଦ୍ୱାରେ ବସେ ଭାଗ କରେ ଖେତେ ହବେ, ସକଲେର ସାଥେ ଅନ୍ନପାନ ଅପମାନେ ହତେ ହବେ, ତାହାଦେର ସବାର ସମାନ।



# ମୋର ପ୍ରିୟ ଭାରତ

ଅସଂଖ୍ୟ ନଦନଦୀ, ପାହାଡ଼ପର୍ବତ, ହ୍ରଦସମୁଦ୍ର, ତଡ଼ାଗପ୍ରାନ୍ତର, ଶସ୍ୟକ୍ଷେତ୍ର, ମରୁଭୂମି ଆଉ ଅରଣ୍ୟାନୀ ପରିପୂର୍ଣ୍ଣ ଏହି ବିଶାଳ ଭୂଖଣ୍ଡ ଆମର ଅତି ପ୍ରିୟ। ପ୍ରିୟତର ଏହାର ସୂର୍ଯ୍ୟ, ଏହାର ଚନ୍ଦ୍ର, ଅସଂଖ୍ୟ ଜ୍ୟୋତିବିନ୍ଦୁ ଖଚିତ ଏହାର ନୈଶପୂଜାକାଶ, ଏହାର ମେଘ ମେଦୁରାମ୍ବର ଧରାତଳ ଶ୍ୟାମସ୍ତମାଳ ଦ୍ରୁମେ। ପ୍ରିୟାଦ୍ ପ୍ରିୟତର ଏହାର ରଜତଧବଳ ବିପୁଳ ବିସ୍ତୃତ ଜ୍ୟୋତ୍ସ୍ନା—ଏହାର ନାନା ବିଚିତ୍ର ଧାତୁପୂର୍ଣ୍ଣ ମୃତ୍ତିକା—ଏହାର ଗ୍ରୀଷ୍ମଶୈତାଦି ଷଡ଼ଋତୁ—ଏହାର ବିଚିତ୍ର ସୁରଙ୍ଗ-ସୁରସ-ସୁବାସିତ ଫଳପୁଷ୍ପରାଜି। ନାନାବିଧ ପଶୁପକ୍ଷୀ, ନାନାବିଧ ଶସ୍ୟସମ୍ପଦ ଓ ନାନାବିଧ ରୂପ-ରସ-ଗନ୍ଧ-ଶବ୍ଦ ଓ ସ୍ପର୍ଶାଦିରେ ପରିପୂର୍ଣ୍ଣ ଏହି ଦେଶ ସଙ୍ଗେ ଆମର ପ୍ରୀତିସମ୍ପର୍କ ଜନ୍ମ ଜନ୍ମାନ୍ତରର। ଆମେ ଭାରତ ଜନନୀର ଦେହ ଭିତରୁ ଜନ୍ମଲାଭ କରିଛୁ—ଏବଂ ସେହି ଦେହର ରସଶୋଷଣ କରି ବର୍ଦ୍ଧିତ ହୋଇଛୁ ତାର ସେହି ବହୁ ଅଭିଜ୍ଞତାପୁଷ୍ଟ ପୌରାଣିକ ଦୈହିକ ସମ୍ପଦକୁ ଆମର ସମସ୍ତ ଇନ୍ଦ୍ରିୟ ଦେଇ ଭୋଗ କରିଛୁ—ମୋଟ ଉପରେ ଆମେ ଜନ୍ମ ଜନ୍ମ ଧରି ଏ ଦେଶର ଦେହ ମଧ୍ୟରେ ହିଁ ବାସକରି ଆସିଛୁ। ଆମର ପିତାମାତା, ଭ୍ରାତାଭଗ୍ନୀ, ପୁତ୍ର, କନ୍ୟା ଓ ବନ୍ଧୁପରିଜନଙ୍କ ପ୍ରିୟ ଶରୀର ଭାରତବର୍ଷର ଏହି ସୁବିପୁଳ ସ୍ନେହ ଶ୍ରଦ୍ଧାର ମହାନ ଆଧାର ରୂପ-ବିଗ୍ରହର ନିବିଡ଼ ଆଲିଙ୍ଗନ ଭିତରେ ଆମେ ଆଜୀବନ ମୋହାବିଷ୍ଟ ହୋଇ ପଡ଼ିରହିଛୁ। ବେଳେବେଳେ ବନ୍ୟା, ମରୁଡ଼ି, ଭୂମିକମ୍ପ, ମହାସାମୁଦ୍ରିକ ପାବନାଦି ବହୁ ବହୁ ରିଷ୍ଟ କଷ୍ଟ ମହାମାରୀ ଆଉ ଇତିଭୟର ଅତି କଷ୍ଟଦାୟକ ଏହାର ଆକସ୍ମିକ ପ୍ରାକୃତିକ ତାଡ଼ନା ସତ୍ତ୍ୱେ। ଥରେ ଗର୍ଭରୁ ଜନ୍ମଗ୍ରହଣ କରିସାରିବା ପରେ ଏହାର ଗର୍ଭସ୍ଥ ପଦ୍ମଠାରୁ ଆମର ନାଡ଼ୀ ଆଉ ବିଲଗ୍ନ ବା ବିଚ୍ଛିନ୍ନ ହୋଇ ନାହିଁ କି ହେବ ନାହିଁ। କାରଣ ବାରମ୍ୱାର ଆମେ ତାହାର କୁକ୍ଷୀଭୂତ ହେଉଥିବୁ ଓ ତାରି କୋଳରେ ପୁନର୍ଜନ୍ମ ଲାଭ କରୁଥିବୁ। ଆମର ତା'ସଙ୍ଗେ ଦୈହିକ ବିଚ୍ଛେଦ ଅସମ୍ଭବ ଓ ଅବାସ୍ତବ। ଭାରତ ସଙ୍ଗେ ଜନ୍ମଜନ୍ମାନ୍ତର ଜଡ଼ିତ କରିବା ହିଁ ଆମର ଭୁକ୍ତି ଓ ମୁକ୍ତିର ସ୍ୱୟଂସାଧ ସାଧନା—ଆମର ଆତ୍ମବିକାଶର ଶ୍ରେୟତମ ପନ୍ଥା।

କିନ୍ତୁ କେବଳ ଦୈହିକ ସଂଯୋଗରେ ଆମେ ତା'ସଙ୍ଗେ ସଂଯୁକ୍ତ ନୁହେଁ। ଭାରତ ଜନନୀଙ୍କର ଅନ୍ୟତମ ବରପୁତ୍ର ଜବାହରଲାଲ ନେହେରୁଙ୍କ ଭାଷାରେ ଭାରତବର୍ଷ

ଆମ ଚେତନାରେ ଅଧିଷ୍ଠିତା ଏକ ପରମ ରହସ୍ୟମୟ ଦେବୀ—ଏକ ପ୍ରାଗ୍ ଐତିହାସିକ ପ୍ରହେଳିକାମୟ ସ୍ୱପ୍ନିଳ କିମ୍ବଦନ୍ତୀର ଭାବମୟୀ ନାୟିକା ଯେ କି ସହସ୍ର ସହସ୍ର ବର୍ଷଧରି କାହାଠାରୁ କେଉଁ ଏକ ପରମଗୁହ୍ୟ ମନ୍ତ୍ର ଶ୍ରବଣରେ ସେହି ମନ୍ତ୍ର ପ୍ରଭାବରେ ନିତ୍ୟ ଉଚ୍ଚାଟିତା ହୋଇ ରହିଅଛି। ଭାରତବର୍ଷ ଆମ ଚେତନାରେ ଏକ ମହାଭାବମୟୀ ରୂପକଳ୍ପ ପୁଣି କଳ୍ପଲୋକର ପ୍ରଚୋଦନାଦାୟିନୀ ଏକ ଅତିକ୍ରାନ୍ତ ବାସ୍ତବତା। ତଥାପି ଆମର ଏହି ସ୍ଥୂଳଦୃଷ୍ଟିରେ ବି ସେ ନିତ୍ୟ ପ୍ରତ୍ୟକ୍ଷଭୂତା—ନିତ୍ୟ ବର୍ତ୍ତମାନ ଓ ଚିରଆବର୍ତ୍ତମାନା ଏକ ଅସୀମ ବ୍ୟାପକତା।

ଅତି ପ୍ରାଚୀନ, ବିଚିତ୍ର ମାନସିକ ତା'ର ଅଧିକାରିଣୀ, ପ୍ରହେଳିକାମୟୀ, ଅପରୂପ ସୌନ୍ଦର୍ଯ୍ୟାନ୍ୱିତା, ଅଶେଷ ଗୁଣବତୀ ଏହି ରମଣୀ, ତା'ର କଦାଚିତ ଉତ୍‌କ୍ଷିପ୍ତ ଭାବାବେଗରେ ତା'ର ବହୁକାଳ ବିସ୍ମୃତ ଅବଚେତନାରୁ ଉଦ୍‌ଭୂତ ଏକ ଅବୋଧ ଅନ୍ଧଉନ୍ମାଦନାରେ, ମହାକାଳ ବକ୍ଷରେ ବହୁବାର ଅନ୍ଧକାରମୟ ପିଚ୍ଛିଳ ପଥରେ ଖସିଯାଇଛି ସେହି ଆଦିମ ଅନ୍ଧକାରମୟ ରାତ୍ରୀଗୁଡ଼ିକର ଅତଳ ଶ୍ୱାସରୋଧୀ ଗହ୍ୱରମାନଙ୍କ ଭିତରକୁ। କିନ୍ତୁ ସମଗ୍ର ପୃଥିବୀକୁ ଚମକିତ କରିଦେଇ ମୁହୂର୍ତ୍ତକ ମଧ୍ୟରେ ଯୁଗ ଯୁଗ ଧରି ଅର୍ଜିତ ତା'ର ଅତିଚେତନାର ଆଉ ଏକ ବିଚିତ୍ର ଆବେଗ ଆଉ ଉଦ୍ବୁନନାର ଦୁର୍ବୋଧ ତାଡ଼ନାରେ ଆପଣାର ସହଜାତ ଶକ୍ତିରେ ବାରମ୍ବାର ସେ ପୁଣି ଫେରି ଆସିଛି ଦ୍ରୁତଗତିରେ ଅପେକ୍ଷାକୃତ ଊର୍ଦ୍ଧ୍ୱଲୋକର ଅତ୍ୟୁଜ୍ଜ୍ୱଳ ସୂର୍ଯ୍ୟାଲୋକିତ ପ୍ରମୁକ୍ତ ପ୍ରବୁଦ୍ଧ ଶାନ୍ତି ଓ ଆନନ୍ଦମୟ ସମୁଚ୍ଚ ଓ ବିସ୍ତୃତ ସ୍ୱର୍ଗୀୟ ଶୃଙ୍ଗଗୁଡ଼ିକର ଶୀର୍ଷଦେଶକୁ। କେତେ କେତେବାର ଇତିହାସର ବହୁ ବହୁ ସନ୍ଧିକ୍ଷଣରେ ତା'ର କ୍ରିୟାକଳାପ ହୋଇ ଉଠିଛି ଆମ୍ଭମାନଙ୍କ ପକ୍ଷରେ ଅତ୍ୟନ୍ତ ଲଜ୍ଜାଜନକ, ଅତ୍ୟନ୍ତ ଗ୍ଲାନିଦାୟକ, ଆଉ ବିରକ୍ତିକର। ବେଳେ ବେଳେ ପୁଣି ତା'ର ଆଚରଣ ହୋଇ ଉଠିଛି ଉନ୍ମାଦିନୀ ନାରୀଟିଏ ଭଳି ଉତ୍‌କ୍ଷିପ୍ତ ବିକାରଗ୍ରସ୍ତ, ଉତ୍‌ପୀଡ଼ନମୟ, ଆଉ ଅବାଧ—ଭୟଙ୍କର ପୀଡ଼ା ଆଉ ଶୋଚନାଦାୟକ। କିନ୍ତୁ ଏତଦ୍ ସତ୍ତ୍ୱେ ତା'ର ମାଦକତାମୟ ପ୍ରେମର ଆକର୍ଷଣ କେବଳ ଆମ ପକ୍ଷରେ କାହିଁକି, ତାକୁ ଦୂରରୁ ଦେଖୁଥିବା ପ୍ରେମକାଙ୍ଗାଳମାନଙ୍କ ପକ୍ଷରେ ବି ଅନିବାରଣୀୟ—ପ୍ରଚଣ୍ଡ ଉଦ୍ଦୀପନା ଆଉ ଉତ୍ତେଜନାମୟ। ଏହି ଅନେକ ଇତିହାସ ସମ୍ବଳା ଓ ପ୍ରଭୃତି ସମ୍ଭାବନାମୟୀ ଅଦ୍‌ଭୂତ ବ୍ୟକ୍ତିତ୍ୱସମ୍ପନ୍ନ ମହାପ୍ରେମମୟୀ ନାୟିକାର ସମସ୍ତ ସ୍ୱାମୀ, ପ୍ରେମିକ ଓ ପୁତ୍ର କନ୍ୟାଗଣ ଶତଚେଷ୍ଟା କଲେ ମଧ୍ୟ ତା'ର ମୋହିନୀ ମାୟାପାଶରୁ ଜନ୍ମଜନ୍ମାନ୍ତରରୁ ମୁକ୍ତ ହୋଇପାରିବେ ନାହିଁ। କାରଣ ତା'ର ସୁପ୍ରାଚୀନ ଅଭିଜ୍ଞତା ସମୃଦ୍ଧ ଜୀବନର ସମଗ୍ର ସଫଳତା ଓ ବିଫଳତାର ଏବଂ ସମସ୍ତ ଉଚ୍ଚାରୋହଣ ଓ ନିମ୍ନାବତରଣର ଅଂଶ ସେମାନେ, ସହକର୍ମୀ ସେମାନେ, ସହଧର୍ମୀ ମଧ୍ୟ ସେମାନେ। ତା'ର ସେହି ସୁଗଭୀର, ସୁବିପୁଳ ସମୁଦ୍ରୋପମ ସୁନୀଳ ଦୃଷ୍ଟିରୁ ଦିଗନ୍ତରେ ଅନାଦିକାଳରୁ ଅନନ୍ତକାଳ ପର୍ଯ୍ୟନ୍ତ ଆମେ ସମସ୍ତେ ପ୍ରତିଫଳିତ ଓ

ପ୍ରତିବିମ୍ବିତ ହୋଇରହିଛୁ ଓ ରହିଥିବୁ। ସେ ଆମର ନିତ୍ୟକାଳର ଜନନୀ, ଭଗିନୀ ଓ ପ୍ରିୟତମା। ତା'ର ସେହି ନିତ୍ୟକାଳର ସ୍ନେହମେଦୁର ଦୃଷ୍ଟି, ଏ ସଂସାର ଆଉ ଜୀବନର ବହୁ ବହୁ ଲୀଳା ପ୍ରତ୍ୟକ୍ଷ କରିଛି ବହୁ—ଉତ୍‌ଥାନ ଓ ପତନର ଦୃଶ୍ୟ ସଙ୍ଗେ ବହୁ ସତ୍ୟ ଓ ମିଥ୍ୟା, ପାପ ଓ ପୁଣ୍ୟର ଦ୍ୱନ୍ଦମୟ ନାଟକାଭିନୟ ଦର୍ଶନ କରିଛି ଏବଂ ଏ ସବୁ ଭିତରେ ବି ଚିରଦିନ ସେ ନିରୀକ୍ଷଣ କରିଆସିଛି, ପରମସତ୍ୟର ସେହି ସବୁ ସୌରକରୋଦ୍ ଭାସିତ ସମୁଚ୍ଚ ଶିଖରଗୁଡ଼ିକର ଶୀର୍ଷସ୍ଥାନକୁ କିମ୍ବା ପରମ ଅସତ୍ୟର ଅତଳ ବିତଳ ରସାତଳର ଦୃଶ୍ୟହୀନ ଗହ୍ୱରଗୁଡ଼ିକର ଅଭ୍ୟନ୍ତରକୁ।

ଏବଂବିଧା ଏବଂ ଏବଂଭୂତା ଭାରତବର୍ଷ କ୍ରମେ କ୍ରମେ ଅଗ୍ରସର ହେଉଅଛି ତା'ର ନିୟତିନିକଷ ପଥରେ ନିଜକୁ ଆବିଷ୍କାର କରୁ କରୁ, ସ୍ୱଧର୍ମର ସାଧନା କରୁ କରୁ—ପରମ ସତ୍ୟର ଅନ୍ୱେଷଣ କରୁ କରୁ—ସେ ଦିନ ନିଶ୍ଚିତ ଭାବରେ ତା'ର ଅଭିପ୍ରେତ ସିଦ୍ଧିଲାଭ କରିବ ହିଁ କରିବ ଏବଂ ଏହି ଶ୍ରାନ୍ତ କ୍ଲାନ୍ତ ହତୋତ୍ସାହ ଜଗତ ତା'ର ଜାଣତ ବା ଅଜାଣତରେ ଭାରତବର୍ଷର ସେହି ପରମ ସିଦ୍ଧିର ସଂଜୀବନୀ ବିଭୂତି ପାଇବା ଲାଗି ଅପେକ୍ଷମାଣ ହୋଇ ରହିଅଛି।

ଆଜି ଭାରତବର୍ଷରେ ଇତିହାସର ବିଚିତ୍ର ନିର୍ଦ୍ଦେଶରେ ଯେଉଁ ସବୁ ହଠକାରୀ ଘଟଣାମାନ ଘଟିଯାଉଛି ସେ ସବୁକୁ ଦେଖି ଆମ୍ଭେମାନେ ହତୋତ୍ସାହିତ ବା ମ୍ରିୟମାଣ ହେବା ଉଚିତ୍ ନୁହେଁ। କିମ୍ବା ଆଜି ରାଜନୀତି ରଙ୍ଗମଞ୍ଚରେ ଯେଉଁ ସବୁ ନେତା ଓ ଅଭିନେତାଗଣ ନିୟତି ନିର୍ଦ୍ଦିଷ୍ଟ ଭୂମିକାରେ ଅବତରଣ କରି ଗୋଟିଏ ଆଧୁନିକ ଉଦ୍ଭଟ ନାଟକର ଅବତାରଣା କରିଛନ୍ତି, ତା'ର କେତୋଟି ମାତ୍ର ଦୃଶ୍ୟ ଦେଖି ମଧ ଆମ୍ଭମାନଙ୍କର ବିଚଳିତ ହେବା ଉଚିତ୍ ନୁହେଁ। ସବୁ ଉଦ୍ଭଟ ନାଟକର ମଧ ଶେଷଦୃଶ୍ୟ ଅଛି ଏବଂ ତାହା ଖୁବ୍ ଶୀଘ୍ର ପହୁଞ୍ଚିଯାଏ ତା'ର ଅବ୍ୟବହିତ ପୂର୍ବରୁ କ୍ଷଣକାଳ ଲାଗି ରଙ୍ଗମଞ୍ଚ ଅନ୍ଧକାର ହୋଇଯାଏ। ଏହି ଅନ୍ଧକାରକୁ ଦେଖି ମଧ ଭୟଭୀତ ହେବା ଉଚିତ୍ ନୁହେଁ। ସବୁ ଉଦ୍ଭଟ ନାଟକର ଅନ୍ଧକାରମୟ ଶେଷଦୃଶ୍ୟ ପରେ ଯଥାର୍ଥ ନାଟକର ଆରମ୍ଭ ମଧ ହୋଇଥାଏ। ଏବଂ ତତ୍‌ପୂର୍ବରୁ ପ୍ରେକ୍ଷଗୃହରେ ଆଲୋକ ଜଳିଉଠେ। ମା'ଭୈ! ଜୟ ଭାରତ!

ଜୟ ଭାରତ, ଜୟ ଭାରତ।

**

# ଧର୍ମ ନିରପେକ୍ଷ ଓ ନିରପେକ୍ଷ ଧାର୍ମିକ

ଏହି ଧର୍ମନିରପେକ୍ଷ ରାଷ୍ଟ୍ର ଭାରତବର୍ଷରେ ମୋର ଜନ୍ମ। ମୁଁ ଆନନ୍ଦ ଓ ଗୌରବର ସହିତ ଘୋଷଣା କରୁଛି ଯେ ମୁଁ ଜଣେ ହିନ୍ଦୁ। ମୁଁ ମୋର ସମୃଦ୍ଧ ପରମ୍ପରା, ମୋର ଧର୍ମଶାସ୍ତ୍ର, ପୁରାଣ, ଦେବଦେବୀ, ମଠମନ୍ଦିର, ଧର୍ମବିଶ୍ୱାସ, ସାଧୁସନ୍ଥ, ମୁନିଋଷି, ଯୋଗୀସନ୍ନ୍ୟାସୀ, ପୂଜାର୍ଚ୍ଚାଚରଣ, ଯାନିଯାତ୍ରା, ମୂର୍ତ୍ତିପୂଜା, ଅଦ୍ୱୈତ୍ୟ ଚେତନା ନିରାକାରବାଦ, ବିବାହ ବ୍ରତାଦି ସାମାଜିକ ଅନୁଷ୍ଠାନ, ଆଚାର ବ୍ୟବହାର, ସଂସ୍କୃତି ଇତ୍ୟାଦିକୁ ଭଲପାଏ ଓ ସେହି ଅନୁଯାୟୀ ସ୍ୱାଧୀନଭାବେ ବଞ୍ଚିବାକୁ ଓ ମରିବାକୁ ଶ୍ରେୟଃ ମନେକରେ। ମୋ ଧର୍ମ ପ୍ରତି ବୀତସ୍ପୃହ ହୋଇ ବା ଅନ୍ୟ କୌଣସି ଧର୍ମ ପ୍ରତି ଆକୃଷ୍ଟ ହୋଇ ଯଦି ମୋ ଧର୍ମର ପ୍ରତି କେହି ବ୍ୟକ୍ତି ଅନ୍ୟ ଧର୍ମ ଗ୍ରହଣ କରେ–ତେବେ ମୋର ଦୁଃଖ ହେଲେ ବି ମୁଁ ସେମାନଙ୍କ ପ୍ରତି ଈର୍ଷାନ୍ୱିତ ହୁଏ ନାହିଁ। କେହି ଯଦି ଅନ୍ୟ ଧର୍ମାବଲମ୍ବୀ ବ୍ୟକ୍ତି ତା' ଧର୍ମ ପ୍ରତି ବୀତସ୍ପୃହ ହୋଇ ମୋ ଧର୍ମ ଗ୍ରହଣ କରେ, ତେବେ ମୁଁ ତାକୁ ଆନନ୍ଦରେ ସ୍ୱାଗତ ଜଣାଏ। କିନ୍ତୁ ମୋ ଦେଶରେ କେହି ଯଦି (ସେ ମୋ ଧର୍ମର ହେଉ ବା ଅନ୍ୟ ଧର୍ମର ହେଉ) ଦାରିଦ୍ର୍ୟ, ରୋଗ, ଦୂରବସ୍ଥା, ଅସହାୟତାଦିର ସୁଯୋଗ ନେଇ ସେବା କି ସାହାଯ୍ୟ ବାହାନାରେ କାହାକୁ କୌଶଳରେ ଧର୍ମାନ୍ତରିତ କରାଏ, ତେବେ ·ଜଣେ ସଚ୍ଚୋଟ ହିନ୍ଦୁ ଭାବେ ମୁଁ ଏହାର ପ୍ରତିବାଦ କରିବି। କେହି ଯଦି କାହାକୁ ବଳପ୍ରୟୋଗକରି ଧର୍ମାନ୍ତରିତ କରାଏ, ତେବେ ମଧ୍ୟ ମୁଁ ଏହାର ପ୍ରତିବାଦ କରିବି। ମୁଁ ମୋର ଗ୍ରାମ ଓ ସହରରେ ଅନ୍ୟ ଧର୍ମାବଲମ୍ବୀ ଲୋକଙ୍କ ସହ ବନ୍ଧୁଭାବେ ବାସକରିବାକୁ ଚାହେଁ। ମୁଁ ଚାହେଁ, ଆମରି ମନ୍ଦିର ପରି ଦେଶଯାକ ସୁନ୍ଦର ମସଜିଦ ଓ ଚର୍ଚ୍ଚମାନ ଗଢ଼ିଉଠୁ ଏବଂ ସଂରକ୍ଷିତ ହେଉ। ଅତି ପ୍ରଭାତରୁ ଆମ ଶିବମନ୍ଦିରରେ ଘଣ୍ଟା କାହାଳୀ ବାଜିବା ସଙ୍ଗେ ସଙ୍ଗେ ନିକଟସ୍ଥ ମସଜିଦରୁ ଧାର୍ମିକ ମୁସଲମାନଙ୍କ ଗମ୍ଭୀର କଣ୍ଠରୁ ଆଜାନ୍ ମନ୍ତ୍ର ଶୁଣିପାରିଲେ ମୋତେ ଲାଗେ ବାୟୁମଣ୍ଡଳ ଧାର୍ମିକତାରେ ପୂରି ଉଠୁଛି। ଗୀର୍ଜାରେ ଘଣ୍ଟାଧ୍ୱନି ଶୁଣିଲେ ମଧ୍ୟ ମତେ ପବିତ୍ର ବୋଧହୁଏ। ମୁସଲମାନ ଭାଇମାନଙ୍କର ଇଦ୍ କି ମହରମ ପର୍ବରେ ମୋତେ ସେମାନଙ୍କୁ ଶୁଭେଚ୍ଛା ଜଣାଇବାକୁ ଭଲ ଲାଗେ। ସେମାନଙ୍କର ତାଜିଆ ଶୋଭା ଯାତ୍ରାରେ ଯୋଗଦେଇ ପାରିଲେ ମୁଁ ଖୁସୀ ହୁଏ। ଆମ ଘରେ ମୁଁ ଯୀଶୁଖ୍ରୀଷ୍ଟଙ୍କର ଛବି ରଖିଛି ଓ ତାହା ସର୍ବଦା ମାଲ୍ୟବୃତି ହୋଇଥାଏ। ମୋର ପଠିତ ଧର୍ମଶାସ୍ତ୍ରଗୁଡ଼ିକ ଭିତରେ ମୁଁ ଇଂରାଜୀରେ ଅନୁଦିତ ପବିତ୍ର ବାଇବେଲ ଓ କୋରାନକୁ ମଧ୍ୟ ସ୍ଥାନ ଦେଇଛି। ବେଳେ ବେଳେ ମୁଁ ସେଗୁଡ଼ିକ ଅଧ୍ୟୟନ କରି ଆଧ୍ୟାତ୍ମ ଉଲ୍ଲାସ ଏବଂ ପୁଲକ ଅନୁଭବ କରିଥାଏ। ମୋର ଧାରଣା, ଯୀଶୁଖ୍ରୀଷ୍ଟ ଈଶ୍ୱରପୁତ୍ର ଏବଂ ମହମ୍ମଦ ଈଶ୍ୱର ପ୍ରେରିତ ପରମ ପୂଜନୀୟ ଆଦିଷ୍ଟ ଦୂତ। ମୁସଲମାନ ଓ

ଖ୍ରୀଷ୍ଟୀଆନ ଧର୍ମର ଅନେକ ସାମାଜିକ ପ୍ରଥା ମତେ ଖୁବ ଭଲ ଲାଗେ। ମୋର ଇଚ୍ଛା—ସେଗୁଡ଼ିକ ଆମେ ହିନ୍ଦୁମାନେ ଅନୁସରଣ କଲେ ଖୁବ୍ ଭଲ ହୁଅନ୍ତା। ସେହିପରି ମୋ ଧର୍ମରେ କେତେକ ସାମାଜିକ ଅନୁଷ୍ଠାନ ଅଛି ଯାହାକି ସେମାନେ ଗ୍ରହଣ କଲେ ଭଲ ହୁଅନ୍ତା ବୋଲି ମୋର ବିନୀତ ମତ। ମୋ ଧର୍ମ ସବୁଠାରୁ ଶ୍ରେଷ୍ଠ ବୋଲି ମୁଁ ଦାବୀକରେ ନାହିଁ। କିନ୍ତୁ ସମସ୍ତେ ସବୁ ପ୍ରକାର ଧର୍ମାଚରଣର ଅଧିକାରୀ ନୁହନ୍ତି ବୋଲି ମୋର ଦୃଢ଼ ଧାରଣା। ସମସ୍ତେ ପିତୁଳା ବା ମୂର୍ତ୍ତି ଭିତରେ ଈଶ୍ୱରଙ୍କୁ ଅନୁଭବ କରିପାରିବେ ନାହିଁ। ସେହିପରି ସମସ୍ତେ ମଧ୍ୟ ଶୂନ୍ୟବାଦରେ ଆସ୍ଥା ରଖିପାରିବେ ନାହିଁ। ପ୍ରତ୍ୟେକ ବ୍ୟକ୍ତିର ଆତ୍ମା ତାର ନିଜସ୍ୱ ରୀତି ରୁଚି ଓ ଗୁଣ ଅନୁଯାୟୀ ତା'ର ଉପାସନା ପଦ୍ଧତି ଗ୍ରହଣ କରିପାରିବ ଏବଂ ଆବଶ୍ୟକ ପଡ଼ିଲେ ସ୍ୱେଚ୍ଛାରେ ମଧ୍ୟ ପରିତ୍ୟାଗ କରିପାରିବ। ପ୍ରତ୍ୟେକ ଲୋକର ହୃଦୟ ବୃତ୍ତି ମଧ୍ୟ ବିଭିନ୍ନ ଉପାଦାନରେ ଗଠିତ। ବୁଦ୍ଧି ବୃତ୍ତିର ମଧ୍ୟ ସ୍ୱତନ୍ତ୍ର ବିଚାରଶୀଳତା ରହିଛି। କିନ୍ତୁ ଏସବୁ ସତ୍ତ୍ୱେ ଆମେ ପରସ୍ପରର ବିଶ୍ୱାସ, ଆଚାର, ଅନୁଷ୍ଠାନ ଓ ବିଚାର ପଦ୍ଧତି ପ୍ରତି ସହନଶୀଳ, ଶ୍ରଦ୍ଧାବାନ ଓ ଉଦାରମନା ରହିବା ଉଚିତ। ରହିମ ଚଚ୍ଚାଙ୍କୁ ନିର୍ଜନରେ ନୀରବରେ ନମାଜ ପଢ଼ିବାକୁ ଭଲ ଲାଗେ। ହରିଭାଇନାଙ୍କୁ ଘଣ୍ଟ ଘଣ୍ଟା ବଜାଇ ରାଧାକୃଷ୍ଣ ମୂର୍ତ୍ତିକୁ ଆଳତି କରି ଉପାସନା କରିବାକୁ ଭଲ ଲାଗେ। ମୋର ଦୁହିଁଙ୍କ ପ୍ରତି ସମାନ ଅନୁରାଗ—ସମାନ ଶ୍ରଦ୍ଧା।

ମୁଁ ଜାଣେ ସଚ୍ଚୋଟ ହିନ୍ଦୁ ହେଲେ ବି ଯଦି ମୋର ଧର୍ମଯାଜକମାନେ ମୋ ଘରୁ ଯୀଶୁଖ୍ରୀଷ୍ଟଙ୍କ ଫଟୋ ଏବଂ ବାଇବେଲ ବାହାର କରିଦେବାକୁ ମତେ ଆଦେଶ ଦିଅନ୍ତି, ତେବେ ମୁଁ ତାହା ମାନିବି ନାହିଁ। ତା'ଫଳରେ ହିନ୍ଦୁଧର୍ମର ତାଲିକାରେ ମୋର ନାମ ନ ରହିଲେ ବି ମୋର ଖାତିର ନାହିଁ। ମୁଁ ରାମ, କୃଷ୍ଣ, ବୁଦ୍ଧ ଓ ଖ୍ରୀଷ୍ଟ ସମସ୍ତଙ୍କ ଛବି ମୋ ଘରେ ରଖିବାକୁ ଭଲପାଏ। ମୋ ପାଖରେ ଗୀତା, ଭାଗବତ, ବାଇବେଲ ଓ କୋରାନ ସମାନଭାବେ ସମ୍ମାନନୀୟ। ହିନ୍ଦୁ ଧର୍ମର ମୁଁ ମୋର ଧର୍ମ କ୍ଷୁଧା ମେଣ୍ଟାଇବା ଲାଗି ଅଧିକ ଖାଦ୍ୟ ପାଉଛି ଏକଥା ସତ୍ୟ। ମାତ୍ର କୋରାନ କି ବାଇବେଲ ଯେ ମୋର ଧାର୍ମିକ କ୍ଷୁଧା ଲାଗି ଆଦୌ ଖୋରାକ ଦେଉନାହାନ୍ତି। ତାହା ଭାବିବା ଠିକ୍ ନୁହେଁ। ବରଂ ମୋର ଧାର୍ମିକ ଚିତ୍ତବୃତ୍ତିକୁ ଗଠନ କରିବା ଦିଗରେ ସମସ୍ତେ ପରିପୂରକ। ମହାପୁରୁଷ ମହମ୍ମଦଙ୍କ ପବିତ୍ର ଜୀବନୀ ପାଠକଲେ ମୋର ଭିତରେ ଧାର୍ମିକ ଚେତନା ଉଦ୍‌ବୁଦ୍ଧ ହୋଇଥାଏ।

ମୋ ଗାଁରେ ଖ୍ରୀଷ୍ଟୀଆନ ଓ ମୁସଲମାନମାନେ ଅଛନ୍ତି। ସେମାନଙ୍କ ସହ ଆମର ପ୍ରୀତିବନ୍ଧୁ ସମ୍ପର୍କ। ସେମାନେ ଥିବାରୁ ଆମ ଗାଁ ଆହୁରି ସୁନ୍ଦର ଓ ଆହୁରି ପରିପୂର୍ଣ୍ଣ ଲାଗେ। ଜଣେ ଧାର୍ମିକ ବୃଦ୍ଧ ମୁସଲମାନ, ଜଣେ ଧାର୍ମିକ ବୃଦ୍ଧ ଖ୍ରୀଷ୍ଟୀଆନ ଓ ଜଣେ ଧାର୍ମିକ ବୃଦ୍ଧ ହିନ୍ଦୁକୁ ଦେଖିଲେ ମୋ ମନରେ ଧାର୍ମିକ ବିଶ୍ୱାସ ଉଲ୍ଲାସ ଓ ଆନନ୍ଦ ଖେଳିଯାଏ। ଇତିହାସ ପଢ଼ି ମୁଁ ସେମାନଙ୍କୁ ଏ ଦେଶରେ ବିଦେଶୀ ବୋଲି ଜାଣିଥିଲି।

ମାତ୍ର ଆମ ଗାଁର ରହିମଚାଚା, ରାମଜାନ ମଉସା, ଅହମ୍ମଦ ଭାଇଙ୍କୁ କିମ୍ବା ଜନାଥନ୍ ମଉସା, ଦାନିଏଲ ଅଜା ଆଦିଙ୍କୁ ମୁଁ କେବେ ବି ବିଦେଶୀ ବୋଲି ଭାବିପାରିବି ନାହିଁ। ମୋ ଗାଁ କଥା ମନରେ ଉଠିଲେ ସବୁ ପ୍ରିୟାପ୍ରୀତିପୂର୍ଣ୍ଣ ମୁହଁ ଗୁଡ଼ିକ ଭିତରେ ସେମାନଙ୍କ ମୁହଁ ମଧ୍ୟ ମୋ ହୃଦୟ ଫଳକରେ ଭାସି ଉଠେ। ସେମାନେ ମୋ ଧର୍ମର ନୁହନ୍ତି। ମାତ୍ର ସେମାନେ ମୋର ଖୁବ୍ ନିଜର। ଯେଉଁ ଧର୍ମଭାବ ମୋ ହୃଦୟକୁ ଗଠନ କରିଛି ସେଇ ହୃଦୟ ଭିତରେ ସେମାନେ ଆପଣା ମହିମାରେ ସ୍ୱୟଂ ଜୀବିତ ଓ ସ୍ୱୟଂ ପାଳିତ।

ମୁଁ ହିନ୍ଦୁ, ମୁଁ ଓଡ଼ିଆ, ମୁଁ ଭାରତୀୟ। ଏ ତିନୋଟି ଭାବ ଭିତରେ ସାମାନ୍ୟତମ ବିରୋଧ ନାହିଁ। ଯଦି ଖୁବ୍ ସୂକ୍ଷ୍ମ ଭାବରେ ବି କୌଣସି ଜାଗାରେ କିଛି ବିରୋଧ ଦେଖାଦିଏ, ତେବେ ତାହା ଯେତେ ସୂକ୍ଷ୍ମ ହେଲେ ବି ଆମ ସମସ୍ତଙ୍କ ପକ୍ଷରେ ଅତି ମାରାତ୍ମକ। ଏ ଦେଶରେ କେବଳ ଧର୍ମାଚାରକୁ ନେଇ ସଂଖ୍ୟାଗୁରୁ ଓ ସଂଖ୍ୟାଲଘୁ ସଂପ୍ରଦାୟ ସୃଷ୍ଟି କରିବା ଅତି ମାରାତ୍ମକ ମୂଢ଼ତା।

ମୁସଲମାନ ଓ ଖ୍ରୀଷ୍ଟିଆନମାନଙ୍କ ଏଠି ସଂଖ୍ୟାଲଘୁ ସଂପ୍ରଦାୟ କହିବାରେ ଆଦୌ କୌଣସି ହେତୁ ନାହିଁ। ଧର୍ମ ନିରପେକ୍ଷ ରାଷ୍ଟ୍ରରେ ଧର୍ମକୁ ନେଇ କାହିଁକି ଗୁରୁ ଲଘୁ ବିଚାର କରାଯାଉଛି ?

ଗୋଟିଏ ମସଜିଦ ଆଗରେ ହିନ୍ଦୁମାନେ ତାଙ୍କର ଆରାଧ୍ୟ ଠାକୁରଙ୍କୁ ବିମାନରେ ବସାଇ ବାଜା ବଜାଇ ଯାଇପାରିବେ କି ନାହିଁ? ଯିବା ଉଚିତ କି ନୁହଁ? ଯଦି ଯିବେ କେମିତି ଯିବେ ? ସେ କଥା ଯଦି ସେହି ଅଞ୍ଚଳର ହିନ୍ଦୁ ମୁସଲମାନ ସଂପ୍ରଦାୟର ପ୍ରକୃତ ଧାର୍ମିକ ବ୍ୟକ୍ତିମାନେ ଏକାଠି ବସି ସ୍ଥିର କରି ନ ପାରିବେ, ଯଦି ଏଥିରେ ଉଭୟ ପଟର ବିଧର୍ମି କ୍ଷମତାଲୋଭୀ ରାଜନୀତିକ ଟାଉଟରମାନେ କାରପଟଦାର ହେବେ, ଯଦି କ୍ଷମତାଲୋଭୀ ମନ୍ତ୍ରୀମାନେ ଏଥିରେ ମୁଣ୍ଡ ଖେଳାଇବେ, ଯଦି ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିମାନେ ଏ ବିଷୟ ହାତକୁ ନେବେ, ଯଦି ଗୁଣ୍ଡା ଏବଂ ନୃଶଂସ ଆତତାୟୀମାନେ ଏହି ସମସ୍ୟାଟିକୁ ନିଜ ହାତକୁ ନେବେ ତେବେ ଧର୍ମଭାବତ ଲୋପ ପାଇଯିବ, ସମାଜ ମଧ୍ୟ ଭାଙ୍ଗି ପଡ଼ିବ। ଏହି ମହାନ ପ୍ରାଚୀନ ଦେଶର ମୂଳଦୁଆ ମଧ୍ୟ ଭୁଷୁଡ଼ି ପଡ଼ିବ। ରାଜନୈତିକ ଟାଉଟର ଓ ଯେକୌଣସି ଧରଣର ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିମାନେ ହିଁ ଆମର ବର୍ତ୍ତମାନ ପ୍ରକୃତ ଶତ୍ରୁ।

ଗୋଟିଏ ରାଷ୍ଟ୍ରକୁ ଧର୍ମ ନିରପେକ୍ଷ ବୋଲି ଘୋଷଣା କଲା ପରେ ଆମର ପ୍ରଥମ କର୍ତ୍ତବ୍ୟ ହେଉଛି—ସବୁ ଅଞ୍ଚଳର ସାମାଜିକ ବିଧିବ୍ୟବସ୍ଥାର ସଂରକ୍ଷଣ ଓ ସମସ୍ୟା ସଙ୍କଟରେ ସମାଧାନ ପାଇଁ ଆମେ ସବୁ ଧର୍ମର ଧାର୍ମିକଲୋକଙ୍କୁ ନେଇ ମଣ୍ଡଳମାନ ତିଆରି କରିବା ଓ ସେହିମାନଙ୍କ ହାତରେ ସମାଜର ଦାୟିତ୍ୱ ଅର୍ପଣ କରିବା ଏବଂ ଆମକୁ ସାବଧାନ ରହିବାକୁ ପଡ଼ିବ। ଯେମିତି କି କ୍ଷମତାଲୋଭୀ ଓ ଧନଲୋଭୀ ବ୍ୟକ୍ତିମାନେ ତା' ଭିତରକୁ ପ୍ରବେଶ ନ କରନ୍ତି।



# ଧର୍ମନିରପେକ୍ଷ ଧାର୍ମିକ ଜାତୀୟତା ସମ୍ଭବ କି ?

ବର୍ତ୍ତମାନ ପ୍ରଶ୍ନ ଉଠୁଛି, ଭାରତବର୍ଷରେ ବାସକରୁଥିବା ବିଭିନ୍ନ ଧର୍ମାବଲମ୍ବୀ ବ୍ୟକ୍ତିଗଣ କୋଉ ଭାବକୁ ଆଶ୍ରୟ କରି ଏ ଦେଶ ପ୍ରତି ଅନୁଗତ ରହିବେ ? ଗତ ଦେଢ଼ଶତ ବର୍ଷ ଧରି ଆମର ମହାଜନମାନେ ଏକ ସ୍ୱରରେ ଘୋଷଣା କରି ଆସୁଛନ୍ତି ଯେ ଭାରତ ଧର୍ମର ଦେଶ। ଏ ବିଶ୍ୱରେ ବିଭିନ୍ନ ଦେଶ ଓ ଜାତି ସମଗ୍ର ମାନବ ସମାଜର କଲ୍ୟାଣ ଲାଗି ବିଭିନ୍ନ ଅବଦାନ ଦେଉଥିଲାବେଳେ, ଭାରତ ବିଶ୍ୱକୁ କେବଳ ଧର୍ମଭାବ ହିଁ ଦେବ। ଏହି ଧର୍ମ ହିଁ ହେଉଛି ଭାରତ—ଆତ୍ମାର ମୂଳ ବୈଶିଷ୍ଟ୍ୟ ଓ କର୍ତ୍ତବ୍ୟକର୍ମ ଏବଂ ସାଧସାଧନ।

କିନ୍ତୁ ଭାରତ ସ୍ୱାଧୀନ ହେଲା ପରେ ଆମେ ଏହାକୁ ଧର୍ମନିରପେକ୍ଷ ରାଷ୍ଟ୍ର ବୋଲି ଘୋଷଣା କରିଛୁ ଏବଂ ଘୋର ଅବଶୋଷର କଥା ଯେ, ସ୍ୱାଧୀନତା ପୂର୍ବଠାରୁ ଆଜି ପର୍ଯ୍ୟନ୍ତ ଭାରତରେ ବାସକରୁଥିବା ବିଭିନ୍ନ ଧର୍ମାବଲମ୍ବୀମାନେ ଧର୍ମକୁ ହିଁ କେନ୍ଦ୍ର କରି ମରାମରି ହେଉଛନ୍ତି ଏବଂ ଏ ସମ୍ବନ୍ଧେ ଆମର ରାଜନୀତିର ନେତାଗଣ କୌଣସି ସ୍ୱଷ୍ଟ ନୀତି ଘୋଷଣା ନ କରି କେବଳ ନିଜର ନିରାପତ୍ତାଦୃଷ୍ଟେ ତତ୍କାଳୀନ ସହଜ ପନ୍ଥାଟିଏ ବାହାର କରି କାଳ ପ୍ରବାହକୁ ପାରି ହୋଇ ଯାଉଛନ୍ତି।

ତେଣୁ ମୌଳିକ ପ୍ରଶ୍ନଟି ସମସ୍ତଙ୍କୁ ପଚରାଯାଉ। ବିଭିନ୍ନ ଧର୍ମାବଲମ୍ବୀ ଭାରତୀୟମାନେ ଏହି ଧର୍ମନିରପେକ୍ଷ ଦେଶରେ କେଉଁ ଆଦର୍ଶକୁ ମୂଳବୋଲି ଧରିବେ ଏବଂ ପ୍ରତ୍ୟେକର ଚିନ୍ତା ଓ କର୍ମ ଭିତରେ କେଉଁ ଆଦର୍ଶକୁ ପ୍ରକଟିତ କରିବାପାଇଁ ପ୍ରୟାସ କରିବେ ? ଅନ୍ୟ ଭାଷାରେ କହିଲେ—ଏହି ବିଶାଳ ବିଚିତ୍ର ଭୂଖଣ୍ଡର ଜାତୀୟ ସଂହତି କୋଉ କୋଉ ଭାବାବେଗ ଆଦର୍ଶକୁ ନେଇ ଗଠିତ ହୋଇଛି ବା ହେବ ?

ଦୁଇଶବର୍ଷ ତଳେ ଭାରତର ଜାତୀୟତା ଥିଲା ଧର୍ମଭିତ୍ତିକ। ଏବଂ ସେ ଧର୍ମଟି ଥିଲା ହିନ୍ଦୁ ଧର୍ମ। ଏହି ଧର୍ମକୁ କେନ୍ଦ୍ରକରି ଆମର ସାହିତ୍ୟ କଳା, ସଂସ୍କୃତି, ବିଜ୍ଞାନ ଓ ଏପରିକି ଆମର ପ୍ରାତ୍ୟହିକ ଜୀବନଚର୍ଯ୍ୟା ମଧ୍ୟ ପରିଚାଳିତ ହେଉଥିଲା। ଅତୀତ ଭାରତ ବହୁ ରାଜନୈତିକ ବିଭାଗରେ ବିଭକ୍ତ ଥିଲେ ବି ଗୋଟିଏ ମାତ୍ର ସନାତନ ଉଦାର ହିନ୍ଦୁ ସଂସ୍କୃତି ସବୁ ଅଞ୍ଚଳକୁ ଗୋଟିଏ ଭାବସୂତ୍ରରେ ବାନ୍ଧି ରଖିଥିଲା। ଦ୍ରାବିଡ଼, ଆର୍ଯ୍ୟ, ଆଦିବାସୀ ଓ ହରିଜନ ସମସ୍ତ ଗୋଟିଏ ବିଶାଳ ଓ ସର୍ବଗ୍ରହଣକ୍ଷମ ହିନ୍ଦୁ ସଂସ୍କୃତିକୁ ଜାବୁଡ଼ି ଧରିଥିଲେ। ସେଥିପାଇଁ ଆଜିପର୍ଯ୍ୟନ୍ତ ବଶିଷ୍ଠ, ବିଶ୍ୱାମିତ୍ର, ଭରଦ୍ୱାଜ, ଅଗସ୍ତ୍ୟ, ମୈତ୍ରେୟ, ବ୍ୟାସ, ବାଲ୍ମୀକି, ନାରଦ—ରାମ, କୃଷ୍ଣ, ବୁଦ୍ଧ,

ଚୈତନ୍ୟ, ଶଙ୍କର, ରାମାନୁଜ, ବେଦ, ଉପନିଷଦ, ରାମାୟଣ, ମହାଭାରତ, ଗୀତା, ଭାଗବତ, ପୁରାଣ, ଗଙ୍ଗା, ଯମୁନା, ନର୍ମଦା, ସିନ୍ଧୁ, କାବେରୀ, ଗୋଦାବରୀ, ମଥୁରା, ଅଯୋଧ୍ୟା, ବୃନ୍ଦାବନ, ଦ୍ୱାରକା, କାଞ୍ଚୀ, ରାମେଶ୍ୱର, ପୁରୀ–ଗଣପତି, ଶିବ, ଦୁର୍ଗା, ସୂର୍ଯ୍ୟ, ବିଷ୍ଣୁ–ଜଗନ୍ନାଥ, ତିରୁପତି, ବିଶ୍ୱନାଥ, ବିଠଲଦେବ, ଅହଲ୍ୟା, ଦ୍ରୌପଦୀ, ତାରା, କୁନ୍ତୀ, ମନ୍ଦୋଦରୀ, ସୀତା, ସାବିତ୍ରୀ, ଦମୟନ୍ତୀ, ଅନୁସୂୟା, ଉଦ୍ଧବ, ହନୁମାନ, ଗୁହକ, ଜାରା, ବିଭୀଷଣ, ନୈମିଷାରଣ୍ୟ, ଦଣ୍ଡକାରଣ୍ୟ, ପଞ୍ଚବଟୀ, ଇତ୍ୟାଦି ପ୍ରତି ଭାରତୀୟର ମନରେ ଧାର୍ମିକ ସଂସ୍କୃତ ସୂତ୍ରରେ ଗଭୀର ଭାବାବେଗ ସୃଷ୍ଟି କରିଥାଏ ।

ସେହିପରି ମଧ୍ୟ ଉନବିଂଶ ଶତାବ୍ଦୀର ନବଜାଗରଣ କାଳରେ ସ୍ୱାମୀ ଦୟାନନ୍ଦ, ରାମକୃଷ୍ଣପରମହଂସ, ସ୍ୱାମୀ ବିବେକାନନ୍ଦ, ଶ୍ରୀ ଅରବିନ୍ଦ, ବାଳଗଙ୍ଗାଧର, –ମାଲବ୍ୟ ଗାନ୍ଧିଜୀ, ରବୀନ୍ଦ୍ରନାଥ ପ୍ରମୁଖ ମହାନ ବ୍ୟକ୍ତିମାନଙ୍କୁ ଆମେ ଆମର ନବଭାରତୀୟ ଜାତୀୟତା ପ୍ରତିଷ୍ଠାତା ବୋଲି ସ୍ୱୀକାର କରିବୁ । ଏଇମାନଙ୍କର ଜୀବନଚର୍ଯ୍ୟା, ଏଇମାନଙ୍କ ପ୍ରଦର୍ଶିତ ଜୀବନଧାରା ଓ ଜୀବନାଦର୍ଶ ଆମ ମନ ଭିତରେ ଭାରତୀୟ ଜାତୀୟତାର ମୂଳ ଧର୍ମରୂପେ ଗୃହୀତ ଓ ପ୍ରତିଷ୍ଠିତ ହୋଇଯିବା ଉଚିତ । ବୈଦିକ ଯୁଗରୁ ଆଜି ପର୍ଯ୍ୟନ୍ତ ଏହି ଭଳି ମହାନ୍ ବ୍ୟକ୍ତିମାନଙ୍କର ମନନ, ବିଶ୍ୱାସ ଉପଲବ୍ଧି ଓ ବାଣୀ ଭିତରକୁ ହିଁ ଆମକୁ ଆଜି ଭାରତୀୟ ଜାତୀୟତାର ମୂଳମନ୍ତ୍ରଟିକୁ ବାହାର କରିବାକୁ ହେବ ।

ଆଜି ମୁଁ ନିଜକୁ ଭାରତୀୟ ବୋଲି କହିଲାବେଳେ ମୋ ମନ ଭିତରେ କୋଉ ପ୍ରକାର ଆବେଗ' ଆସୁଛି ? ଏ ଦେଶର ଆତ୍ମାର ପରିଚୟ ପାଇ ମୁଁ ଯାକୁ ଶ୍ରଦ୍ଧା କରୁଛି–ନା' କେବଳ ରାଜନୈତିକ ଓ ଅର୍ଥନୈତିକ ନିରାପତ୍ତାକୁ ସମ୍ବଳ କରି ମୁଁ ନିଜକୁ ଭାରତୀୟ ବୋଲାଉଛି ?

ତେଣୁ ବର୍ତ୍ତମାନ ମୁଖ୍ୟ ପ୍ରଶ୍ନ ହେଲା–ଭାରତରେ ବାସକରୁଥିବା ବିଭିନ୍ନ ଧର୍ମଗୋଷ୍ଠୀର ଲୋକେ ଏ ଦେଶର ସାଂସ୍କୃତିକ ଓ ଆଧ୍ୟାତ୍ମିକ ପରମ୍ପରାକୁ ଶ୍ରଦ୍ଧା କରୁଛନ୍ତି କି ନାହିଁ ? ବିଭିନ୍ନ ଧର୍ମସଂପ୍ରଦାୟ ଭିତରେ ସାମାଜିକ ଓ ଧାର୍ମିକ ଆଚରଣରେ କେତେକ ପ୍ରଭେଦ ଥାଇପାରେ । ସେମିତି ପ୍ରଭେଦ ମଧ୍ୟ ଆମର ଗୁରୁସମ୍ବରଖିଆ ତେଲେଙ୍ଗା, ମାଛ-ସନ୍ଦେଶଖିଆ ବଙ୍ଗାଳୀଙ୍କ ଭିତରେ ଅଛି । ପଗଡ଼ି ଭିଡ଼ା ଦାଢ଼ିଆ ପଞ୍ଜାବୀ ଆଉ ଫାଳଟାମରା ମାଖୁନା ତାମିଲିଙ୍କ ଭିତରେ ଅଛି । ଆମର ବିବାହ, ବ୍ରତ, ଶ୍ରାଦ୍ଧାଦି ବ୍ୟାପାରର ମଧ୍ୟ ପ୍ରଦେଶ ପ୍ରଦେଶ ଭିତରେ ପାର୍ଥକ୍ୟ ରହିଛି । ମାତ୍ର ଏସବୁ ବାହ୍ୟ । ସବୁ ପ୍ରଭେଦ ଭିତରେ ବି ଆକୁମାରୀ ହିମାଳୟ ସବୁ ଲୋକଙ୍କ ଭିତରେ ଭାରତର ସାଂସ୍କୃତିକ ଓ ଆଧ୍ୟାତ୍ମିକ ପରମ୍ପରା ପ୍ରତି ସମାନ ଶ୍ରଦ୍ଧା ଓ ଆକର୍ଷଣ ରହିଆସିଛି ।

ବିଶେଷତଃ ଗତ ଶତାବ୍ଦୀ ଭିତରେ ରାମକୃଷ୍ଣ, ବିବେକାନନ୍ଦ, ଶ୍ରୀଅରବିନ୍ଦ, ଗାନ୍ଧିଜୀ ଓ ରବୀନ୍ଦ୍ରନାଥଙ୍କ ଉଦାର ଜାତୀୟଭାବାଦର୍ଶ ଆମକୁ ନୂତନ ଭାବରେ ଯୁଗୋପଯୋଗୀ ଭାରତୀୟ ଜାତୀୟତା ଭାବରେ ଅନୁପ୍ରାଣିତ ଓ ଉଦ୍‌ବୁଦ୍ଧ କରୁଅଛି। କହିବା ବାହୁଲ୍ୟ ଯେ, ଏହି ମହାନ ନେତାମାନେ ଯଥାର୍ଥରେ ଧର୍ମନିରପେକ୍ଷ, ଅଥଚ ପରମଧାର୍ମିକ। ଏମାନଙ୍କ ସମୁଦ୍ରୋପମ ହୃଦୟରେ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ ପ୍ରଭୃତ ସବୁ ଧର୍ମର ସାରସତ୍ତ୍ୱ ମିଶି ଏକୀଭୂତ ହୋଇଯାଇଛି ଏବଂ ଗୀତା, କୋରାନ, ବାଇବେଲ ପ୍ରଭୃତି ଧମଗ୍ରନ୍ଥର ମୂଳମର୍ମ ଏହିମାନଙ୍କ ଦିବ୍ୟହୃଦୟରେ ସମଭାବରେ ଉଦ୍‌ଘାଟିତ ଓ ଉପଲବ୍‌ଧିର ବିଷୟ ହୋଇ ପ୍ରମାଣିତ ହୋଇଯାଇଛି। ଏହିମାନେ ହିଁ ଆଧୁନିକ ଭାରତୀୟ ଜାତୀୟ ଜୀବନାଦର୍ଶନର ଦ୍ରଷ୍ଟା, ପ୍ରବକ୍ତା ଓ ନିଦର୍ଶନ ମଧ। ଏମାନେ ଦୈବାତ୍ ହିନ୍ଦୁକୁଳରେ ଜନ୍ମ ହୋଇଥିଲେ ବି ସେହି ନିର୍ଦ୍ଦିଷ୍ଟ କୁଳସୀମାକୁ ଆପଣା ବିସ୍ତାରରେ ଅତିକ୍ରମ କରିଅଛନ୍ତି। ଏମାନେ ସବୁ ଧର୍ମକୁ ଆପଣାର ବୋଲି ଗ୍ରହଣ କରିନେଇଛନ୍ତି ଏବଂ ଗୋଟିଏ କଥାରେ କହିଲେ, ଏଇମାନେ ହିଁ ଆମେ ସମସ୍ତଙ୍କ ଲାଗି ଧର୍ମନିରପେକ୍ଷ ଧାର୍ମିକ ଭାରତବର୍ଷର ଧାର୍ମିକ ଆଦର୍ଶ ଓ ଜାତୀୟତାର ଆଦର୍ଶ।

ଆଧୁନିକ ଭାରତରେ ଯେ କୌଣସି ଧର୍ମସଂପ୍ରଦାୟର ଯେ କେହି ଯଦି ଏମାନଙ୍କ ପ୍ରତି ହୃଦୟର ଗଭୀର ଶ୍ରଦ୍ଧା ଓ ବିଶ୍ୱାସ ଅର୍ପଣ କରୁନଥାଏ। ଯଦି ସେମାନଙ୍କ ଭାବାଦର୍ଶକୁ ଅନୁସରଣ କରୁନଥାଏ, ତେବେ ତା'କୁ ଆମେ ଭାରତବାସୀ ହିନ୍ଦୁ, ମୁସଲମାନ ବା ଖ୍ରୀଷ୍ଟାନ ବୋଲି କହିବା ସିନା—ତାକୁ ଯଥାର୍ଥ ଭାରତୀୟ ବୋଲି କୁହାଯାଇ ପାରିବ ନାହିଁ।

ଆଧୁନିକ ଭାରତର ଧର୍ମନିରପେକ୍ଷ ନୀତି କୌଣସି ଧର୍ମ ପ୍ରତି ଅବହେଳା ବା ଉଦାସୀନତା ପ୍ରଦର୍ଶନ ନୁହେଁ କିମ୍ବା କେବଳ ଅନ୍ୟ ଧର୍ମପ୍ରତି ଅସଂପୃକ୍ତ ସହିଷ୍ଣୁତା ମାତ୍ର ନୁହେଁ। ଭାରତର ମୂଳଧର୍ମ ସନାତନ ହିନ୍ଦୁଧର୍ମ ସବୁ ଧର୍ମକୁ ଗ୍ରହଣ କରି ଆପଣାର କରି ବିକାଶଲାଭ କରିଆସିଛି ଏବଂ ବର୍ତ୍ତମାନ ମଧ ଭାରତର ଧର୍ମ ନିରପେକ୍ଷ ଧାର୍ମିକ ଜାତୀୟତା ଏ ଦେଶର ସବୁ ଧର୍ମକୁ ଗ୍ରହଣ କରି ଓ ସବୁ ଧର୍ମକୁ ଆପଣାରକରି ବିକାଶଲାଭ କରିବ। ଏହା ଭାରତର ଜାତୀୟତାବାଦର ସ୍ୱତନ୍ତ୍ର ଗୁଣ। ଏ ଦେଶର ସାଂପ୍ରଦାୟିକ ଧର୍ମାନ୍ଧ ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟିଆନମାନେ ଏତେକ ଭଲ ଭାବରେ ମନେରଖନ୍ତୁ ଓ ହୃଦୟଙ୍ଗମ କରନ୍ତୁ। ଏ ଦେଶର ମୁସଲମାନ, ପାକିସ୍ଥାନ ବା ଇରାନର ମୁସଲମାନ ଭଳି ହୋଇ ରହିପାରିବ ନାହିଁ କିମ୍ବା ଏ ଦେଶର ଖ୍ରୀଷ୍ଟୀଆନ ମଧ ଆମେରିକା ବା ଇଟାଲୀ, ବା ଇଂଲଣ୍ଡର ଖ୍ରୀଷ୍ଟାନ ହୋଇପାରିବେ ନାହିଁ। ଭାରତୀୟ ଉଦାର ସର୍ବ ଗ୍ରହଣକ୍ଷମ ଓ ସର୍ବପରିପାକକ୍ଷମ ସଂସ୍କୃତିରୁ ଯେଉଁମାନେ

ନିଜକୁ ବିଚ୍ଛିନ୍ନ ମନେକରିବେ, ସେମାନେ ମନପ୍ରାଣ ଆତ୍ମାରେ କେବେ ବି ଭାରତୀୟ ହୋଇପାରିବେ ନାହିଁ।

ଏ ପ୍ରସଙ୍ଗରେ ମନରେ ଏତିକି ସଂକଳ୍ପ ଯେ, ଆମେ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟାନ, ପାରସିକ, ବୌଦ୍ଧ, ଜୈନ, ଶିଖ ସମସ୍ତେ ମିଳିମିଶି ସମସ୍ତଙ୍କର ଆନ୍ତରିକ ଧର୍ମବିଶ୍ୱାସ, ଧର୍ମାଚାର ଓ ଧର୍ମୋପଲବ୍‌ଧିରେ ଆମେ ଭାରତବର୍ଷର ଧାର୍ମିକ ସଂସ୍କୃତି ଓ ଜାତୀୟତା'କୁ ନିର୍ମାଣ କରିଚାଲିବୁ। ଭାରତବର୍ଷକୁ ଧର୍ମର ଦେଶ ହୋଇ ରହିବାକୁ ପଡ଼ିବ ମାତ୍ର କୌଣସି ଗୋଟିଏ ମାତ୍ର ଧର୍ମର ନୁହେଁ କିମ୍ବା ପରସ୍ପରଠାରୁ ବିଚ୍ଛିନ୍ନ ଧର୍ମମାନଙ୍କର ବି ନୁହେଁ। ଏକ ସମ୍ମିଳିତ ଉଦାର, ଗଭୀର ଧର୍ମଚର୍ଯ୍ୟାର ସର୍ବପ୍ରଥମ, ଏକ ମାତ୍ର ଓ ସର୍ବପ୍ରଧାନ ତୀର୍ଥକ୍ଷେତ୍ର ହେବ ଏହି ଭାରତଭୂମି। ସମଗ୍ର ମାନବ ସମାଜର ଆଧ୍ୟାତ୍ମ ଆଦର୍ଶ ଏହିଠାରେ ହିଁ ପ୍ରକଟିତ ହେବ। କିନ୍ତୁ ତା' ପୂର୍ବରୁ ଆମକୁ ଆଗ ଧନ ଓ କ୍ଷମତାଲୋଭୀଙ୍କ ଚକ୍ରାନ୍ତ ବ୍ୟୂହ ଭିତରୁ ଭାରତବର୍ଷକୁ ମୁକ୍ତ କରିବାକୁ ପଡ଼ିବ।

❋❋

# ଆମ ଜାତୀୟତାର ସ୍ପଷ୍ଟୀକରଣ

ଆଜି ଦକ୍ଷିଣଭାରତରେ କେତେକ ବ୍ୟକ୍ତି ଓ ଗୋଷ୍ଠୀ ନିଜକୁ ଭାରତର ମୂଳ ଜାତୀୟତାଠାରୁ ସ୍ୱତନ୍ତ୍ର ଏବଂ ପୃଥକ୍ ବୋଲି ଭାବିବାକୁ ଆରମ୍ଭ କରିଛନ୍ତି। ଏପରି ମନୋଭାବ ସୃଷ୍ଟି ପଛରେ ବହୁ କାରଣ ରହିଛି। ହିନ୍ଦୀକୁ ରାଷ୍ଟ୍ରଭାଷା କରିବାର ଉତ୍ତରଭାରତୀୟ ମତଲବ ଓ ଜିଦିକୁ କେତେକ ଏଥିପାଇଁ ଦାୟୀ ବୋଲି ଭାବିଥାଆନ୍ତି। ଆଉ କେତେକଙ୍କ ମତରେ ରାଜଧାନୀ ଦିଲ୍ଲୀରେ ଉତ୍ତର ଓ ଦକ୍ଷିଣଭାରତର ରାଜନୈତିକ ଓ ପ୍ରଶାସନିକ ପ୍ରଭାବର ଗୁରୁତ୍ୱ ଓ ଲଘୁତ୍ୱ ଉପରେ ଏହି ବିବାଦ ଓ ସଂଶୟ ଜନ୍ମଲାଭ କରିଛି। କିନ୍ତୁ ଏହାର ମୂଳ କାରଣ ଆହୁରି ଗଭୀରରେ ରହିଛି। ଏହା ଭାରତୀୟ ସଂସ୍କୃତିମୂଳକ ଜାତୀୟତାବୋଧର ଐକ୍ୟ ବିଧାୟକ ମନୋଭାବର ଅଭାବରୁ ଜାତ ହୋଇଛି। କେତେକ ଉତ୍ତରଭାରତୀୟ ମହାପଣ୍ଡିତ ଅଧ୍ୟାପକ ଗବେଷକପ୍ରବର ରାମାୟଣର ମର୍ମ ବ୍ୟାଖ୍ୟା କରୁ କରୁ ମତପ୍ରକାଶ କରିଛନ୍ତି ଯେ ରାମଙ୍କର ରାବଣ ଉପରେ ବିଜୟ ହେଉଛି, ଉତ୍ତରଭାରତର ବା ଆର୍ଯ୍ୟ ସଂସ୍କୃତିର ଦକ୍ଷିଣଭାରତ ବା ଦ୍ରାବିଡ଼ ସଂସ୍କୃତି ଉପରେ ବିଜୟ। ରାମାୟଣ ମହାକାବ୍ୟ ହେଲା ହିନ୍ଦୁମାନଙ୍କ ପାଇଁ ଏକ ଧର୍ମଗ୍ରନ୍ଥ ଏବଂ ସମଗ୍ର ମାନବ ସମାଜ ପାଇଁ ଏକ ନୀତିକାବ୍ୟ। ରାମ ଆମ ଦୃଷ୍ଟିରେ ଈଶ୍ୱରଙ୍କର ଅବତାର ପୁରୁଷ ଏବଂ ରାମାୟଣରୁ ଜଣାପଡ଼େ ସେକାଳେ ସବୁ ବଡ଼ବଡ଼ ଋଷିମାନେ ଦକ୍ଷିଣଭାରତରେ ହିଁ ଥିଲେ। ତା'ଛଡ଼ା ଗୁହକ ଶବର, ସୁଗ୍ରୀବ, ବାଳୀ, ଜଟାୟୁ, ହନୁମାନ, ଜାମ୍ବବାନ ଓ ବିଭୀଷଣ ପ୍ରଭୃତି ରାମସପକ୍ଷ ବିଖ୍ୟାତ ବ୍ୟକ୍ତିମାନେ ସମସ୍ତେ ଦକ୍ଷିଣଭାରତୀୟ। ରାମାୟଣର ମର୍ମ ହେଲା– ସ୍ୱାର୍ଥସର୍ବସ୍ୱ ଅହଂକାରୀ ଦୁଷ୍ଟ ଅସୁର ସ୍ୱଭାବ ଅତ୍ୟାଚାରୀ ଭୋଗପ୍ରବଣ ବ୍ୟକ୍ତିମାନଙ୍କର ପ୍ରଭୁତ୍ୱ ଓ କ୍ଷମତାକୁ ପ୍ରଦମନ କରି ଶିଷ୍ଟ ଓ ସତପ୍ରକୃତିର ବ୍ୟକ୍ତିମାନଙ୍କୁ ଅଭୟ ପ୍ରଦାନ କରିବା ଏବଂ ଧର୍ମପ୍ରତିଷ୍ଠା କରିବା। ଏହି ମୌଳିକ ଭାବଟିକୁ ଛାଡ଼ିଦେଇ ନିଜର କ୍ଷୁଦ୍ର ମତଲବକୁ ଚରିତାର୍ଥ କରିବାପାଇଁ ମନଇଚ୍ଛା ରାମାୟଣ ପରି ଅଧ୍ୟାତ୍ମ ଗ୍ରନ୍ଥର ବ୍ୟାଖ୍ୟା କରି ଦେଶରେ ବିଭେଦାତ୍ମକ ମନୋଭାବ ସୃଷ୍ଟି କରିବାରେ ଏହି ଆତ୍ମପ୍ରତିଷ୍ଠାକାମୀ ଓ ଖ୍ୟାତି ପଦପଦବୀ ଲାଳସା ଅସତ୍ ପ୍ରକୃତିର ଅଧ୍ୟାପକ ଗବେଷକମାନେ ଆଉ ସବୁ ଉଚ୍ଚ ମୂଲ୍ୟଗୁଡ଼ିକ ପ୍ରତି ଆଖିବୁଜି ଦେଉଥାନ୍ତି। ଏମାନେ ହିଁ ଦେଶର ବଡ଼ଶତ୍ରୁ।

ଆଉ ଗୋଟିଏ କାରଣ ହେଲା, ସ୍ୱାଧୀନତା ପୂର୍ବରୁ ଧର୍ମ, ଜାତି, ବର୍ଣ୍ଣ, ଶ୍ରେଣୀ ନିରପେକ୍ଷ ଭାରତବର୍ଷର ଯେଉଁ ନୂତନ ଭାରତୀୟ ଜାତୀୟତା ଭାବର ସୃଷ୍ଟି

ହୋଇଥିଲା ତାହା ସ୍ୱାଧୀନ ଭାରତରେ ଆଜି ପର୍ଯ୍ୟନ୍ତ ଆଦୌ ସ୍ପଷ୍ଟ ଓ ଦୃଢ଼ଭାବରେ ଏବଂ ନିଷ୍ପାପର ଆନ୍ତରିକତାରେ ଅନୁସୃତ ହୋଇପାରି ନାହିଁ। ଏପରି କି ବୟୋଜ୍ୟେଷ୍ଠ ଓ କର୍ମଜ୍ୟେଷ୍ଠ ଭାରତୀୟ ଜାତୀୟ କଂଗ୍ରେସ ବି ଏ ଦିଗରେ ସମୁଚିତ ଦୃଷ୍ଟି ଏବଂ ପଦକ୍ଷେପ ନେଇ ନାହାନ୍ତି।

ରେଡ଼ିଓ ଏବଂ ପାଠ୍ୟ ପୁସ୍ତକ ମାଧ୍ୟମରେ ଯେଉଁ ଜାତୀୟତା ପ୍ରଚାର କରାଯାଉଛି, ତାହା ଆନ୍ତରିକ ନୁହଁ ଓ ଅତ୍ୟନ୍ତ ଲଘୁ। ଆମ ପିଲାମାନେ ସ୍କୁଲରୁ କଲେଜ ପର୍ଯ୍ୟନ୍ତ ବିବେକାନନ୍ଦ ଅରବିନ୍ଦ, ଗାନ୍ଧୀ ଓ ରବୀନ୍ଦ୍ରନାଥଙ୍କୁ ଭଲ ଭାବେ ଜାଣିବାର ସୁଯୋଗ ପାଉନାହାନ୍ତି। ତେଣୁ ଆମ ପିଲାଙ୍କ ମନରେ ଜାତୀୟତା ଭାବ ସ୍ପଷ୍ଟ ହୋଇ ନାହିଁ। ତାମିଲନାଡ଼ୁ ବା କେରଳର ପିଲାଟିଏ କିମ୍ବା ଓଡ଼ିଶା କି ପଞ୍ଜାବର ପିଲାଟିଏ ବା ନାଗାଲାଣ୍ଡର ପିଲାଟିଏ ଭାରତ ଶବ୍ଦ ବହୁବାର ଶୁଣିଲେ ବି ଭାରତୀୟ ଜାତୀୟତା'ର ଚେତନାଟି କେଉଁ କେଉଁ ଭାବ ଏବଂ ଆବେଗରେ ଗଠିତ ହୋଇଛି ଏବଂ କେଉଁ କେଉଁ ବ୍ୟକ୍ତିଙ୍କ ଜୀବନାଦର୍ଶନ ଉପରେ ପ୍ରତିଷ୍ଠିତ ହୋଇଛି, ସେକଥା ତାକୁ ଜଣାପଡ଼ୁ ନାହିଁ। ତେଣୁ କୌଣସି ବିଦେଶୀ ରାଷ୍ଟ୍ର ଆମ ଦେଶ ଉପରେ ଆକ୍ରମଣ କଲେ ଆମେ ସମସ୍ତେ ଏକାଠି ହୋଇଯାଉଛୁ। ଏପରି ଗୋଟେ ଦି'ଟା ଉଦାହରଣ ଦେଖି ଭାରତବର୍ଷରେ ଜାତୀୟ ଐକ୍ୟ ପ୍ରତିଷ୍ଠିତ ହୋଇଗଲାଣି ବୋଲି ଭାବି ନାହିରେ ତେଲ ଦେଇ ଶୋଇପଡ଼ିବା ଅତ୍ୟନ୍ତ ବୋକାମୀ। ପରସ୍ପର ଜାତିବିରୋଧୀ ପ୍ରାଣୀମାନେ ମଧ୍ୟ ପ୍ରାକୃତିକ ବିପଦ ବା ଦୁର୍ଯ୍ୟୋଗ ବେଳେ ଏକତ୍ର ହୋଇଯିବାର ବହୁ ଉଦାହରଣ ରହିଛି। ଏହାକୁ ଆତ୍ମରକ୍ଷା ପ୍ରବୃତ୍ତିରୁ ଜାତ ନିରାପତ୍ତାମୂଳକ ରାଜନୈତିକ ଜାତୀୟତା ବୋଲି କୁହାଯାଇପାରେ ସିନା, ପ୍ରକୃତ ଜାତୀୟତା ଏହା ନୁହେଁ।

ଭାରତବର୍ଷରେ ବାସ କରୁଥିବା ପ୍ରତ୍ୟେକ ଲୋକ ଭିତରେ ଭାରତବର୍ଷକୁ ନେଇ ଏକ ଭାବାବେଗ ପ୍ରେରିତ ଐକ୍ୟ, ସଂହତି ବା ଗୌରବବୋଧ ପ୍ରତିଷ୍ଠିତ ହେବାର ଉଦାହରଣ ନ ଦେଖିଲେ ଜାତୀୟତାବୋଧ ସୃଷ୍ଟି ହୋଇଛି ବୋଲି କୁହାଯାଇ ପାରିବ ନାହିଁ। ପ୍ରତିଟି ଧର୍ମ, ଜାତି, ବର୍ଣ୍ଣ ଓ ଭାଷାଭାଷୀର ଲୋକଙ୍କ ଭିତରେ ଭାବଗତ ଆଦାନ ପ୍ରଦାନ ନ ହେଲେ ଜାତୀୟ ଭାବାବେଗ ସୃଷ୍ଟି ହେବ କେମିତି ? କେବଳ ପରସ୍ପର ପ୍ରତି ସହନଶୀଳତା ଯଥେଷ୍ଟ ନୁହେଁ ଗ୍ରହଣଶୀଳତା ହିଁ ହେଉଛି ମୁଖ୍ୟ କଥା। ପ୍ରତ୍ୟେକ ଧର୍ମ ଭିତରେ ମଧ୍ୟ ଗ୍ରହଣଶୀଳତା ଦରକାର। ହିନ୍ଦୁମାନେ ଖ୍ରୀଷ୍ଟ ଓ ମହମ୍ମଦଙ୍କୁ ସ୍ୱୀକାର କରିବେ। ଖ୍ରୀଷ୍ଟାନ୍ ଓ ମୁସଲମାନମାନେ ରାମ ଓ କୃଷ୍ଣଙ୍କୁ ସ୍ୱୀକାର କରିବେ, ତେବେ ଯାଇ ଗ୍ରହଣଶୀଳତା ସମ୍ଭବ ହେବ। ତାମିଲମାନେ ଦୁର୍ଗାପୂଜା ଉପଭୋଗ କରିବେ ଓ ବଙ୍ଗାଳୀମାନେ ପଙ୍ଗଲ ଉତ୍ସବକୁ ନିଜର ବୋଲି ଭାବିବେ। ତା'ହେଲେ ଯାଇ ଆଦାନପ୍ରଦାନ ସମ୍ଭବ ହେବ। ପଞ୍ଜାବୀକନ୍ୟା ବିବାହ ତାମିଲବରକୁ କରିବ ଗୁଜୁରାଟୀବର ବଙ୍ଗାଳୀ କନ୍ୟାକୁ ବିବାହ କରିବ, ଓଡ଼ିଆବର

ମରହଟ୍ଟୀ କନ୍ୟାର ପାଣିଗ୍ରହଣ କରିବ, ତେବେ ଯାଇ ଭାବଗତ ଜାତୀୟ ସଂହତି ପ୍ରତିଷ୍ଠିତ ହେବ। ଏପରି କି ବିଭିନ୍ନ ଧର୍ମାବଲମ୍ବୀଙ୍କ ଭିତରେ ମଧ୍ୟ ଏହି ବୈବାହିକ ସମ୍ବନ୍ଧ ସ୍ଥାପିତ ହେବା ଉଚିତ। ଏସବୁ କିପରି ସମ୍ଭବ ହୋଇ ପାରିବ, ତାହା ଏମିତି ଚଞ୍ଚଳ ସ୍ପଷ୍ଟଭାବେ କହିହେବ ନାହିଁ। ମାତ୍ର ଏହା କରିବାକୁ ମନସ୍ଥ କଲେ ଓ ସିଦ୍ଧାନ୍ତ କଲେ, ଏହା ନିଶ୍ଚୟ ସମ୍ଭବ ହୋଇ ପାରିବ। ଏହା ବ୍ୟତୀତ ଭାରତବର୍ଷର ଐତିହ୍ୟ ଓ ପରମ୍ପରା ପ୍ରତି ଏବଂ ତା'ର ସ୍ରଷ୍ଟା ସେହି ମହାନ ପୁରୁଷ ଓ ନାରୀମାନଙ୍କ ପ୍ରତି ଏ ଦେଶରେ ବାସକରୁଥିବା ପ୍ରତ୍ୟେକ ନରନାରୀର ସମାନ ଶ୍ରଦ୍ଧା ଓ ଆସ୍ଥା ମଧ୍ୟ ରହିବା ଉଚିତ। ବିବେକାନନ୍ଦ, ରାମକୃଷ୍ଣ, ଶ୍ରୀଅରବିନ୍ଦ ଓ ଗାନ୍ଧୀଙ୍କୁ ଯଦି ଅନ୍ୟ ଧର୍ମାବଲମ୍ବୀଗଣ କେବଳ ହିନ୍ଦୁନେତା ବା ହିନ୍ଦୁସନ୍ନ୍ୟାସୀ ବୋଲି ମନେକରନ୍ତି ତେବେ ସେପରି ଭାବନା ଭିତରୁ ଭାରତର ଯଥାର୍ଥ ଜାତୀୟତା ଉଦ୍ଭବ ହୋଇ ପାରିବ ନାହିଁ। ସେଥିପାଇଁ ଗାନ୍ଧିଜୀଙ୍କ ପ୍ରାର୍ଥନାସଭାରେ ଗୀତା, ବାଇବେଲ ଓ କୋରାନ ପାଠ କରାଯାଉଥିଲା। ବିଭିନ୍ନ ଧର୍ମର ଭଜନ ଓ ପ୍ରାର୍ଥନାମାନ ଆବୃତ୍ତି ହେଉଥିଲା। ଏବେ ଆମର ରେଡ଼ିଓରେ ପ୍ରତିଦିନର ଭଜନ କାର୍ଯ୍ୟକ୍ରମରେ ସପ୍ତାହରେ କେତେଦିନ ମୁସଲମାନ ଓ ଖ୍ରୀଷ୍ଟିଆନ ଭଜନଗୁଡ଼ିକ ମଧ୍ୟ ଗାନହେବା ଉଚିତ ନୁହେଁ କି? ସେହିପରି ବିଭିନ୍ନ କାର୍ଯ୍ୟକ୍ରମରେ ବାଇବେଲ, କୋରାନ ଓ ଅନ୍ୟାନ୍ୟ ଧର୍ମଗ୍ରନ୍ଥରୁ ମଧ୍ୟ କିଛି ଅଂଶ ଆବୃତ୍ତି ହେବା ଉଚିତ। ସେମିତି ଆମର ସାମାଜିକ ଚଳଣି ଭିତରେ ବି ସଂପ୍ରଦାୟ ସଂପ୍ରଦାୟ ଭିତରେ ସବୁ ଧର୍ମର ଆଚାର ବିଚାର ଆଦାନପ୍ରଦାନ ସୂତ୍ରରେ ପ୍ରବେଶ କରିବା ଉଚିତ।

ଭାରତବର୍ଷର ଜାତୀୟ ଧର୍ମକୁ ବାଦ ଦେଇ ଗଢ଼ାଯାଇ ପାରିବ ନାହିଁ ଏବଂ ଏହି ଧର୍ମ ଏଠାରେ ପ୍ରତିଷ୍ଠିତଥିବାରୁ ସବୁ ଧର୍ମର ସମ୍ମେଳନ ଭିତରୁ ନୂଆ ହୋଇ ଜନ୍ମଲାଭ କରିବ। ଏହି ସର୍ବଧର୍ମ ସମନ୍ୱିତ ମହାଭାରତୀୟ ଜାତୀୟ ଚେତନା ଭାରତମା'ତାଙ୍କ ଗର୍ଭରୁ ସର୍ବାଙ୍ଗ ପରିପୂର୍ଣ୍ଣ ହୋଇ ଭୂମିଷ୍ଠ ହୋଇସାରିଛି। ବର୍ତ୍ତମାନ, ଆମ୍ଭମାନଙ୍କ କର୍ତ୍ତବ୍ୟ ହେଲା, ସେହି ସର୍ବାଙ୍ଗ ପରିପୂର୍ଣ୍ଣ ଶିଶୁକୁ ସର୍ବାଙ୍ଗ ପରିପୁଷ୍ଟ କରି ଦିନୁଦିନ ବୃଦ୍ଧି ପାଇବାରେ ସାହାଯ୍ୟ କରିବା।

ଆମ ସମସ୍ତଙ୍କର ମନେରଖିବାର ଅଛି ଯେ ଭାରତବର୍ଷ କେବଳ ଗୋଟିଏ ଭୌଗଳିକ ଭୂଖଣ୍ଡ ମାତ୍ର ନୁହେଁ କିମ୍ବା ଗୋଟିଏ ରାଜନୈତିକ ରାଜିନାମାରେ ନିରାପତ୍ତା ନିର୍ଭର ରାଷ୍ଟ୍ରସଂଘଟିଏ ମାତ୍ର ନୁହେଁ। ସ୍ୱାମୀବିବେକାନନ୍ଦ ଓ ଶ୍ରୀଅରବିନ୍ଦ ଭାରତବର୍ଷକୁ ଗୋଟିଏ ଦେବୀ ରୂପେ ଦେଖିଥିଲେ, ଉପଲବ୍ଧି ମଧ୍ୟ କରିଥିଲେ। ଭାରତବର୍ଷର ଏକ ମହାନ୍ ଆତ୍ମା ରହିଛି ଓ ଏହି ମହାନ୍ ଆତ୍ମାର ବିଶ୍ୱପ୍ରତି ଏକ ମହାନ୍‌ବାଣୀ ରହିଛି, କର୍ତ୍ତବ୍ୟ ରହିଛି ଓ ମାନବ ସମାଜଲାଗି ଏକ ସ୍ୱତନ୍ତ୍ର ଏବଂ ଦିବ୍ୟ ଦିଗ୍‌ଦର୍ଶନ ମଧ୍ୟ ରହିଛି।

ଯେଉଁମାନେ ଭାରତବର୍ଷର ଏହି ରୂପ ଦେଖିନାହାନ୍ତି ବା ଏହିଭାବରେ ଭାରତବର୍ଷକୁ ଭଜିନାହାନ୍ତି, ସେମାନେ ଭାରତବର୍ଷରେ ବାସକରି ମଧ୍ୟ ଭାରତୀୟ ହୋଇପାରି ନାହାନ୍ତି। ଯେଉଁମାନେ ଭାରତମାତାଙ୍କର ଏହି ସ୍ୱରୂପକୁ ପ୍ରତ୍ୟକ୍ଷ କରିଛନ୍ତି ଓ ନିଜ ଜୀବନରେ ପରିଶୀଳନ କରି ସେହିଭାବକୁ ସାଧାରଣରେ ପ୍ରଚାର କରିଛନ୍ତି ସେ ତାମିଲ ଭାଷାରେ କଥା କହନ୍ତୁ କି ବଙ୍ଗଳାଭାଷାରେ କଥା କହନ୍ତୁ ମସଜିଦରେ ଉପାସନା କରନ୍ତୁ ବା ମନ୍ଦିରରେ ପୂଜା-ପ୍ରାର୍ଥନା କରନ୍ତୁ ସେହି ହେବେ ଆମର ଅସଲ ନେତା ଓ ଆମ ଜାତୀୟତାର ଅସଲ ପ୍ରବକ୍ତା।

❋❋

# ଭେଦ-ବୁଦ୍ଧିର ବିଭୀଷିକା

ଅନେକ ସମୟରେ ବିଚକ୍ଷଣ ରାଜନୀତିକ ଭେଦବୁଦ୍ଧି ସମ୍ପନ୍ନ ବ୍ୟକ୍ତିମାନେ ଓ ବୁଦ୍ଧିଆଳ ପଣ୍ଡିତ ଅଧ୍ୟାପକମାନେ ସମୟ ଅସମୟରେ, ଏଠି ସେଠି, ଏପରି କଥା ସବୁ କହି ଦିଅନ୍ତି—ଯାହା'ର ଫଳ ବିଷମୟ ହୋଇଯାଏ। ସାମାଜିକକ୍ଷେତ୍ରରେ ଗୋଟାଏ ବିଷମ ଆଲୋଡ଼ନ ସୃଷ୍ଟି ହୋଇଯାଏ। ଲୋକଙ୍କ ଭିତରେ ଗୋଟାଏ ଭୁଲ ବୁଝାମଣା ଦେଖାଦିଏ। ଏସବୁ କଥା ସେତିକିବେଳେ ଘଟେ, ଯେତେବେଳେ ନାନାଦି ଜଣା ଓ ଅଜଣା କାରଣରୁ ସମାଜରେ ବିଭିନ୍ନ ଶ୍ରେଣୀ ଭିତରେ ବହୁ ଜଟିଳ ବିଭ୍ରାଟ ଘଟି ଚାଲିଥାଏ।

ଉଦାହରଣ ସ୍ୱରୂପ, ଆମ ଦେଶର ବର୍ତ୍ତମାନ ଅବସ୍ଥା। ବର୍ତ୍ତମାନ ଆମର ରାଜନୈତିକ ଓ ସାମାଜିକ ଅବସ୍ଥା ଅତି ଗଣ୍ଡଗୋଳିଆ ପରିସ୍ଥିତିରେ ରହିଛି। ପ୍ରାଦେଶିକତା, ଆଞ୍ଚଳିକତା, ବର୍ଣ୍ଣବିଦ୍ୱେଷ, ଜାତି ବା ଗୋଷ୍ଠୀଗତ ସଙ୍କୀର୍ଣ୍ଣତାଦି ବହୁ ବିଭେଦାତ୍ମକ ପରିସ୍ଥିତି ବର୍ତ୍ତମାନ ସାରା ଦେଶରେ ବଡ଼ ଦୁଃସହ ଅବସ୍ଥା ସୃଷ୍ଟି କରିଛି। ଏପରି ଅବସ୍ଥାରେ ଆମ ସମାଜର ପ୍ରଭାବଶାଳୀ ବ୍ୟକ୍ତିମାନେ—ଯଥା ରାଜନୀତିକ ନେତାମାନେ, କବି, ସାହିତ୍ୟକମାନେ, ପଣ୍ଡିତ ଅଧ୍ୟାପକମାନେ, କଳାକାରମାନେ ଏପରି କଥା କହିବା ଉଚିତ, ଏପରି କାର୍ଯ୍ୟକରିବା ଉଚିତ, ଏପରି ନିର୍ଦ୍ଦେଶ ଦେବା ଉଚିତ, ଯାହାକି ଦେଶବାସୀଙ୍କ ମନରେ ସଂକୀର୍ଣ୍ଣ ବିଭେଦାତ୍ମକ ମନୋଭାବ ଜାଗ୍ରତ ନ କରି, ଉଦାର ଐକ୍ୟ ଓ ସମଭାବ ଜାଗ୍ରତ କରିବାରେ ସାହାଯ୍ୟ କରିବ। ତା' ନହେଲେ ରାଜନୈତିକ ଦୃଷ୍ଟିରୁ ଦେଶ ଗୋଟିଏ ହୋଇ ରହିଲେ ବି ସାଂସ୍କୃତିକ ଦୃଷ୍ଟିରୁ ବା ଭାବାତ୍ମକ ଦୃଷ୍ଟିରୁ ଦେଶ ବହୁ ଭାଗରେ ବିଭକ୍ତ ହୋଇଯିବ ଏବଂ ସାଂସ୍କୃତିକ ବା ଭାବାତ୍ମକ ଦୃଷ୍ଟିରୁ ଦେଶବାସୀଙ୍କ ମନରେ ବିଭେଦଭାବଟି ପ୍ରବଳ ହୋଇଉଠିଲେ ଏହା ଦିନେ ଦେଶର ରାଜନୈତିକ ଏକତାକୁ ମଧ୍ୟ ଭାଙ୍ଗି ଛିନ୍ନଛତର କରିଦେବ।

କେତୋଟି ଉଦାହରଣ ନିଆଯାଉ। ପଚିଶି ବର୍ଷ ତଳେ ଉତ୍ତରଭାରତର କେତେ ଜଣ ତଥା କଥିତ ପଣ୍ଡିତ ଅଧ୍ୟାପକ ସେମାନଙ୍କର ବିଚିତ୍ର ବୌଦ୍ଧିକତା ପ୍ରଦର୍ଶନ କରିବା ପାଇଁ—ଏବଂ ପାଣ୍ଡିତ୍ୟର ପରାକାଷ୍ଠାଦେଖାଇବା ପାଇଁ ଆମର ଅମର ମହାକାବ୍ୟ ରାମାୟଣକୁ ବିଚିତ୍ର ଭାବରେ ଅର୍ଥ କରି ବା ବ୍ୟାଖ୍ୟା ବିଶ୍ଳେଷଣ କରି ପ୍ରଚାର

କଲେ ଯେ—ରାମଙ୍କର ରାବଣବଧ ବ୍ୟାପାରଟି ଆଉ କିଛି ନୁହେଁ—ତାହା ହେଲା ଉତ୍ତର ଭାରତର ଆର୍ଯ୍ୟମାନଙ୍କର ଦକ୍ଷିଣ ଭାରତର ଦ୍ରାବିଡ଼ମାନଙ୍କ ଆକ୍ରମଣ ଓ ବିଜୟ।

ଏହି କଥାଟି ପ୍ରଥମେ ସୌଖୀନ ବୌଦ୍ଧିକତାର ମତବିଳାସରୁ ଜନ୍ମ ନେଲା ସତ—କିନ୍ତୁ ପରେ ପରେ ଏହାକୁ ରାଜନୈତିକ ଅସ୍ତ୍ରରୂପେ ବ୍ୟବହାର କରି ବସିଲେ ଉତ୍ତର ଭାରତର କେତେକ ବିଶିଷ୍ଟ ଓ ପାତିରାଜନୈତିକ ନେତୃବୃନ୍ଦ। କହିବା ବାହୁଲ୍ୟ ଯେ—ଏହାର ଫଳ ଏମିତି ବିଷମୟ ହୋଇ ଉଠିଲା ଯେ ଦକ୍ଷିଣଭାରତରେ ତାର ତୀବ୍ର ପ୍ରତିକ୍ରିୟାଜନିତ କୁଫଳ ଦେଖାଗଲା। ଦକ୍ଷିଣଭାରତର କେତେକ ସୌଖୀନ ବୁଦ୍ଧିଜୀବୀ ବା ବୁଦ୍ଧି-ବିଳାସୀ ପଣ୍ଡିତ ପ୍ରଥମେ ଏହାର ବାଚନିକ ପ୍ରତିବାଦ କରିବାକୁ ଆରମ୍ଭ କରିଦେଲେ। ଏବଂ ସେମାନେ ନିଜକୁ ଦ୍ରାବିଡ଼ ସମ୍ରାଟ ରାବଣର ଜାତୀୟ ଉତ୍ତରାଧିକାରୀ ବୋଲି ମନେ କରିନେଇ, ରାମଙ୍କ ଅପେକ୍ଷା ରାବଣର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାକୁ ଲାଗିପଡ଼ିଲେ। ଏବଂ ଯେ କୌଣସି ମତେ ପ୍ରମାଣ କରି ଥୋଇଦେଲେ ଯେ ଦ୍ରାବିଡ଼ପୁତ୍ର ରାବଣ ସବୁ ପ୍ରକାରେ ଆର୍ଯ୍ୟପୁତ୍ର ରାମଙ୍କଠାରୁ ଶ୍ରେଷ୍ଠ ଥିଲେ। ରାମ ଅତ୍ୟନ୍ତ ନୀଚ ପ୍ରକୃତିର ମନୁଷ୍ୟ ହୋଇ ମଧ୍ୟ ରାବଣ ଶାସିତ ଦ୍ରାବିଡ଼ ରାଜ୍ୟରେ ଅନୁପ୍ରବେଶ କରି ନାନାବିଧ ଅମାନୁଷିକ କାର୍ଯ୍ୟ କରି ଓ ନାନାଦି କୂଟନୀତି ପ୍ରୟୋଗ କରି ଦ୍ରାବିଡ଼ ରାଜ୍ୟଗୋଷ୍ଠୀ ମଧ୍ୟରେ ନାନା ବିଭେଦ ଜନ୍ମାଇ ଶେଷରେ ଅନୁପମ ଦ୍ରାବିଡ଼ ସମ୍ରାଟ ରାବଣକୁ ସବଂଶେ ନିଧନ କରାଇଲା।

ଏହି କଥାଟିକୁ ସଙ୍ଗେ ସଙ୍ଗେ ଦକ୍ଷିଣ ଭାରତର ରାଜନୀତିକ ନେତାମାନେ ବ୍ରହ୍ମାସ୍ତ୍ର ରୂପେ ଗ୍ରହଣ କରି ସେମାନଙ୍କର ରାଜନୈତିକ ସ୍ୱାର୍ଥଯୁଦ୍ଧରେ ବ୍ୟବହାର କରି ବସିଲେ। ଫଳରେ ଦକ୍ଷିଣ ଭାରତର ଏକ ବିଶେଷ ଗୋଷ୍ଠୀ ଏହି ବିଭେଦାତ୍ମକ ଓ ଭ୍ରମାତ୍ମକ ମତବାଦର ପ୍ରଚଣ୍ଡ ଭାବରେ ଅନୁପ୍ରାଣିତ ହୋଇ ଉତ୍ତର ଭାରତ ଓ ଆର୍ଯ୍ୟ ସଭ୍ୟତାର ବିରୋଧୀ ହୋଇ ଉଠିଲେ। ଅଧିକାଂଶ ସ୍ଥଳରେ ରାମଙ୍କର ମୂର୍ତ୍ତି ତିଆରି କରି ତାକୁ ପୋଡ଼ାଗଲା ଏବଂ ରାମଙ୍କ ମୂର୍ତ୍ତି ପୂଜାପାଉଥିବା ମନ୍ଦିରଗୁଡ଼ିକ ଉପରେ ମଧ୍ୟ ଆକ୍ରମଣ କରାଗଲା। ସଂସ୍କୃତ ଓ ଦ୍ରାବିଡ଼ ଭାଷାରେ ଲିଖିତ ରାମାୟଣଗୁଡ଼ିକୁ ବର୍ଜନ କରାଗଲା ଏବଂ ଦକ୍ଷିଣ ଭାରତରେ ରାବଣକୁ ଜଣେ ରାଜନୈତିକ ଶହୀଦ ଓ ଅପୂର୍ବ ଧାର୍ମିକ ଓ ନୀତିବାନ ବୀରପୁରୁଷ ରୂପେ ପୂଜା କରିବାକୁ ମଧ୍ୟ ବହୁ ଲୋକେ ଲାଗି ପଡ଼ିଲେ ଏବଂ ଆଜି ପର୍ଯ୍ୟନ୍ତ ମଧ୍ୟ ଦକ୍ଷିଣ ଭାରତରେ କେତେକ ଗୋଷ୍ଠୀ ଏହି ରାବଣପ୍ରୀତି ଓ ପୂଜାକୁ ଜୀଆଁଇ ରଖିଛନ୍ତି ଏବଂ ତାର ପ୍ରତ୍ୟୁତ୍ତର ସ୍ୱରୂପ ଉତ୍ତର ଭାରତରେ ପ୍ରତିବର୍ଷ ଏକ ନିର୍ଦ୍ଦିଷ୍ଟ ସମୟରେ ରାମାୟଣ ପାରାୟଣ ହେଲା ଭଳି, ରାବଣର ମୂର୍ତ୍ତି ତିଆରି କରାଯାଇ ମହା ଜିଜ୍ଞାସାପୂର୍ଣ୍ଣ ଅନ୍ତରରେ ଖୁବ ହଉଲ୍ଲାସ କରି ତାକୁ ସର୍ବସାଧାରଣ ସମ୍ମୁଖରେ ନିଆଁ ଲଗାଇ ପୋଡ଼ା ଯାଉଛି ଏବଂ ତା ବି ଦେଖି ଲୋକେ ଖୁବ ଆନନ୍ଦ ଉତ୍ତେଜନାରେ ମାତୁଛନ୍ତି।

ପ୍ରକାଶ ଥାଉକି, ଆମର ଚିରନ୍ତନ ମହାକାବ୍ୟ ଦୁଇଟିର ଆଭିମୁଖ୍ୟ କେବେ ଏଭଳି ନଥିଲା। ମହାମତି ବାଲ୍ମୀକି ଓ ବିଶାଳ ବୁଦ୍ଧେ ବ୍ୟାସଦେବ କୌଣସି ହୀନ ଅଭିସନ୍ଧି ରଖି ଏ କାବ୍ୟ ଦୁଇଟି ଲେଖି ନଥିଲେ। ହୋଇପାରେ, ଏହି ମହାକାବ୍ୟ ଦୁଇଟିରେ ତତ୍‌କାଳୀନ ଭାରତବର୍ଷର ରାଜନୈତିକ, ସାମାଜିକ ଓ ନୈତିକ ଜୀବନର ସ୍ପଷ୍ଟ ଓ ସତ୍ୟ ଛବି ସବୁ ଉଲ୍ଲେଖ ରହିଛି। ମାତ୍ର ବର୍ତ୍ତମାନ ଆମେ ଯେଉଁ କେତେକ କୃତ୍ରିମ ରାଜନୈତିକ ବିଭେଦାତ୍ମକ ବୁଦ୍ଧିରୁ ସବୁ କଥା ଦେଖୁଛୁ ସେତେବେଳେ ସେହି ମହାକବି ଦ୍ୱୟ ଏପରି ବିଚାରବୁଦ୍ଧିକୁ ନେଇ ତାହା ଲେଖି ନ ଥିଲେ ରାବଣକୁ ଦ୍ରାବିଡ଼ ଜାତିର ପ୍ରତିନିଧି ବା ରାମଙ୍କୁ ଆର୍ଯ୍ୟଜାତିର ପ୍ରତିନିଧି ରୂପେ ସେମାନେ ଗ୍ରହଣ କରି ନ ଥିଲେ। ଆର୍ଯ୍ୟ, ଅନାର୍ଯ୍ୟ, ଦ୍ରାବିଡ଼ ପ୍ରଭୃତି ଶବ୍ଦଗୁଡ଼ିକ ଆଧୁନିକ ସଂକୀର୍ଣ୍ଣ ବିଭେଦାତ୍ମ ରାଜନୈତିକ ଅର୍ଥ ବହନ କରୁ ନଥିଲା। ମନୁଷ୍ୟର ଚିରନ୍ତର ଶୁଭଙ୍କରୀ ଉଦାର ଧାର୍ମିକ ବା ନୈତିକ ମୂଲ୍ୟବୋଧରୁ ଏ ଶବ୍ଦଗୁଡ଼ିକର ସୃଷ୍ଟି। ସେହିପରି ରାମାୟଣ ମହାଭାରତରେ ବର୍ଣ୍ଣିତ ବହୁ ଘଟଣାକୁ ଆମେ ଏହି ଦୃଷ୍ଟିରୁ ଗ୍ରହଣ ନ କରି ଯଦି ଆଧୁନିକ ସଂକୀର୍ଣ୍ଣ ବିଚାର ପଦ୍ଧତି ପ୍ରୟୋଗ କରି ସେଗୁଡ଼ିକର କୂଟବୁଦ୍ଧି ପ୍ରସୂତ ବା ରାଜନୀତିକ ବୁଦ୍ଧିପ୍ରସୂତ ଅର୍ଥ ଅର୍ଥାନ୍ତର କରି ବସୁ—ତା'ହେଲେ—ଏହି ମହାକାବ୍ୟ ଦୁଇଟିର ଅର୍ଥଗୌରବ ତ ହାନି ହେବ ନିଶ୍ଚୟ—ସମଗ୍ର ଦେଶର ବା ଜାତିର ଯେଉଁ ଚିରନ୍ତନ ଉଦାରସାଂସ୍କୃତିକ ବା ସାମାଜିକ ଐକ୍ୟ ବିଧାୟକ ମୂଲ୍ୟବୋଧ ଏପର୍ଯ୍ୟନ୍ତ ଆମ ସମସ୍ତଙ୍କୁ ଶତ ଝଡ଼ଝଞ୍ଜା ଭିତରେ ବି ସଂହତ ଓ ପ୍ରୀତିଯୁକ୍ତ କରି ବାନ୍ଧିରଖିଛି ସେହି ବନ୍ଧନ ଅଚିରେ ଛିଣ୍ଡି ଖଣ୍ଡ ଖଣ୍ଡ ହୋଇଯିବ। ଏକଥା ଘଟିବାର ଅଳ୍ପ ସୂଚନା ବର୍ତ୍ତମାନ ଦେଖାଦେଇଛି। ମାତ୍ର ଏହି ଦୁର୍ଘଟଣା ସଂପୂର୍ଣ୍ଣ ଭାବେ ଘଟିବା ଆଗରୁ ଆମେ ନିଶ୍ଚୟ ସାବଧାନ ହେବା ଉଚିତ ନୁହେଁ କି ?

ଆସନ୍ତାଥରଠାରୁ ଆମେ ଏହି ପ୍ରସଙ୍ଗରେ ସେପରି କେତୋଟି ଘଟଣାର ଉଲ୍ଲେଖ ଓ ବିଶ୍ଳେଷଣ କରି ପରୀକ୍ଷା କରିବା।

❋❋

# ଦ୍ରୋଣ ଏକଲବ୍ୟ ବୃତ୍ତାନ୍ତ

କେତେକ ପ୍ରଭାବଶାଳୀ ରାଜନୈତିକ ନେତା କିମ୍ବା ଅଧ୍ୟାପକ କିମ୍ବା ସାହିତ୍ୟିକ ସେମାନଙ୍କର ପ୍ରତିଷ୍ଠା ପାଇଁ କିମ୍ବା ଗୋଟାଏ ଚମକ ସୃଷ୍ଟି କରି ବାହାଦୂରି ନେବା ପାଇଁ ଥରେ ଥରେ ଏପରି ଗୋଟେ ଗୋଟେ କଥା ସର୍ବସାଧାରଣରେ କହିଦିଅନ୍ତି ବା ଲେଖିଦିଅନ୍ତି—ଯାହାଫଳରେ କି ଜନସାଧାରଣଙ୍କ ମନରେ ବୁଦ୍ଧିଭେଦ ସୃଷ୍ଟି ହୋଇଯାଏ—ଭୁଲ ବୁଝାମଣା ସୃଷ୍ଟି ହୋଇଯାଏ। ଏବଂ ତାର ଫଳ କିପରି ସମାଜରେ ବିଷମୟ ପରିସ୍ଥିତି ସୃଷ୍ଟି କରେ, ତାହାର ଗୋଟିଏ ଉଦାହରଣ 'ବୁଦ୍ଧ ଭେଦର ବିଭୀଷିକା' ନିବନ୍ଧରେ ଆଲୋଚନା କରାଯାଇଛି। ବର୍ତ୍ତମାନ ଆଉ ଗୋଟିଏ ଉଦାହରଣ ଶୁଣନ୍ତୁ।

ବହୁ ସମୟରେ ସେମାନେ ଆମର ତିନୋଟିଯାକ ମହାକାବ୍ୟ ରାମାୟଣ, ମହାଭାରତ ଓ ଭାଗବତରୁ ବିଚ୍ଛିନ୍ନ ଭାବେ କେତୋଟି ଉଦାହରଣ ନେଇ ପୂର୍ବାପର ସଙ୍ଗତି ଛାଡ଼ିଦେଇ ନିଜ ମନମୁତାବକ ସେଗୁଡ଼ିକର ଅର୍ଥ ଅର୍ଥାନ୍ତର କରି ଲୋକମାନଙ୍କ ଆଗରେ ପ୍ରକାଶ କରିଥାନ୍ତି। ଓଡ଼ିଶାର ଜଣେ ବିଶିଷ୍ଟ ବୟୋବୃଦ୍ଧ ନେତା ଆଜିକୁ ପଚିଶବର୍ଷ ଧରି ସଭାସମିତିରେ କହି ଆସୁଛନ୍ତି ଓ ପତ୍ରପତ୍ରିକାରେ ଲେଖି ଆସୁଛନ୍ତି ଯେ ମହାଭାରତରେ ବର୍ଣ୍ଣିତ ଦ୍ରୋଣ ଓ ଏକଲବ୍ୟ ବୃତ୍ତାନ୍ତଟି ଆଦିବାସୀ ସମାଜ ପାଇଁ ବଡ଼ ଦୁଃଖଦାୟକ ଘଟଣା। ଦ୍ରୋଣାଚାର୍ଯ୍ୟ ଏକଲବ୍ୟଙ୍କଠାରୁ ଗୁରୁଦକ୍ଷିଣା ସ୍ୱରୂପ ବୃଦ୍ଧାଙ୍ଗୁଳିଟି ଦାବି କରିବା ଦ୍ୱାରା ତାଙ୍କର ଆଦିବାସୀ ଯୁବକ ଶିଷ୍ୟଟି ପ୍ରତି ଜିଘାଂସା ଭାବର ପରିଚୟ ମିଳିଲା। ଏଥିରୁ ପ୍ରମାଣିତ ହେଉଛି ଯେ ସେତେବେଳେ ଆଦିବାସୀମାନଙ୍କୁ ଅଣ-ଆଦିବାସୀମାନେ ଭାରି ଘୃଣାକରୁଥିଲେ। ଏବଂ ସେମାନଙ୍କର ଉନ୍ନତି ସହ୍ୟ କରିପାରୁ ନଥିଲେ। ଏଥିଲାଗି ମହାଭାରତରୁ ସେହି ପ୍ରସଙ୍ଗଟି ବାଦ ଦେଇ ଦେବା ଉଚିତ।

ଟିକିଏ ତଳେଇ କରି ଦେଖିଲେ ପ୍ରଥମେ ଆମେ ବୁଝିପାରିବା ଯେ ଏହି ପ୍ରକାର ମତବାଦ ଦେଉଥିବା ଲୋକଙ୍କର ସତକୁ ସତ ଦୁଇଟି କଥାର ଅଭାବ ଥାଏ। ପ୍ରଥମଟି ହେଲା—ସେମାନେ ମହାଭାରତକୁ ଯେପରି ପଢ଼ିବା କଥା ପଢ଼ି ନାହାନ୍ତି—ଯେଉଁ ଧାରାରେ ବୁଝିବା ଉଚିତ, ବୁଝି ନାହାନ୍ତି। ଦ୍ୱିତୀୟଟି ହେଲା—ଏଭଳି ବ୍ୟକ୍ତିମାନେ ଯେ ସତକୁ ସତ ଆଦିବାସୀମାନଙ୍କୁ ଖୁବ୍ ଭଲ ପା'ନ୍ତି—ତାହା ନୁହେଁ।

ଏମାନଙ୍କର ମତବାଦ ପଛରେ ବହୁ ପ୍ରଚ୍ଛନ୍ନ ମତଲବମାନ କାମ କରୁଥାଏ। ସେମାନେ ହୁଏତ ନିଜେ ସେ ସମ୍ବନ୍ଧେ ସଚେତନ ମଧ୍ୟ ନ ଥାଇ ପାରନ୍ତି। ଖୁବ୍ ଉଚ୍ଚାକାଂକ୍ଷାପ୍ରବଣ ନେତା ଅଧ୍ୟାପକ ଓ ସାହିତ୍ୟିକମାନେ ପ୍ରାୟଶଃ ଏହିଭଳି ପ୍ରମାଦ ଘଟାଇଥାନ୍ତି।

ଉପରୋକ୍ତ ଦ୍ରୋଣ ଏକଲବ୍ୟ ବୃତ୍ତାନ୍ତଟିର ପୂର୍ବାପରି ସଙ୍ଗତି ସହ ମର୍ମ ଅନ୍ୟ ପ୍ରକାର। ଏକଲବ୍ୟ ଥିଲେ ଜଣେ ବନାଞ୍ଚଳବାସୀ ନିଷଦ ରାଜପୁତ୍ର। ମହାଭାରତର ଅନେକ ସ୍ଥଳରେ ବିଭିନ୍ନ ସଭା ଓ ଯଜ୍ଞ ଉତ୍ସବାଦିକୁ ଏକଲବ୍ୟ ନିମନ୍ତ୍ରିତ ହୋଇ ଯୋଗଦେବାର ଉଲ୍ଲେଖ ରହିଛି। ତେଣୁ ଜଣେ ଆଦିବାସୀ ବୋଲି ତାଙ୍କୁ କେହି କୌଣସି ସ୍ଥାନରେ ଅବଜ୍ଞା କରିଥିବାର ପ୍ରମାଣ ନାହିଁ।

ପ୍ରକୃତ କଥା ହେଲା—ଦ୍ରୋଣାଚାର୍ଯ୍ୟ ପାଣ୍ଡବ, କୌରବ, କର୍ଣ୍ଣ ଓ ନିଜପୁତ୍ର ଅଶ୍ୱତ୍ଥମାଙ୍କୁ ବହୁ ନିଗୂଢ଼ ରଣକୌଶଳ ଶିକ୍ଷା ଦେଇଥିଲେ। ମାତ୍ର ନିଗୂଢ଼ତମ ରଣକୌଶଳଟିକୁ ସେ କେବଳ ନିଜର ଅତି ପ୍ରିୟତମ ଶିଷ୍ୟ ଅର୍ଜ୍ଜୁନଙ୍କୁ ଶିଖାଇ ଥିଲେ ଅତି ଗୋପନରେ। କିନ୍ତୁ ଦିନେ ଅରଣ୍ୟରେ ରାଜପୁତ୍ରମାନଙ୍କୁ ନେଇ ଲକ୍ଷ୍ୟଭେଦ କୌଶଳ ପରୀକ୍ଷା ହେଉଥିଲା ବେଳ, ଦ୍ରୋଣ ଓ ଅର୍ଜ୍ଜୁନ ଲକ୍ଷ୍ୟ କଲେ ଯେ ଏକଲବ୍ୟ ନାମକ ବୀର ନିଷାଦ ରାଜପୁତ୍ର କୌଣସି ବାଟରେ ସେହି ନିଗୂଢ଼ତମ କୌଶଳଟିକୁ ଶିଖିନେଇଛନ୍ତି। ଏହା ଦେଖି ଅର୍ଜ୍ଜୁନ ଏହି ଗୁରୁତ୍ୱପୂର୍ଣ୍ଣ କଥାଟି ଦ୍ରୋଣାଚାର୍ଯ୍ୟଙ୍କୁ ଜଣାଇଲେ। ଦ୍ରୋଣ କାହିଁକି ସେହି ନିଗୂଢ଼ତମ ରଣକୌଶଳଟି ଅର୍ଜ୍ଜୁନଙ୍କ ଛଡ଼ା ଆଉ କାହାକୁ ଶିଖାଇ ନ ଥିଲେ—ତାର ବହୁ ରାଜନୈତିକ, କୁଟନୈତିକ ଓ ନୈତିକ କାରଣ ଥିଲା। ଭବିଷ୍ୟତରେ ଅର୍ଜ୍ଜୁନଙ୍କ ଦ୍ୱାରା ଦ୍ରୋଣାଚାର୍ଯ୍ୟ ବହୁ ଗୁରୁତ୍ୱପୂର୍ଣ୍ଣ ରାଜନୈତିକ କାର୍ଯ୍ୟସାଧନ କରିବେ ବୋଲି ସ୍ଥିର କରିଥିଲେ। ଏବଂ ସେ ଭଲଭାବେ ଜାଣିଥିଲେ ଯେ ଅର୍ଜ୍ଜୁନଙ୍କ ଭଳି ଏକ ବିଶେଷଧରଣର ବ୍ୟକ୍ତିତ୍ୱ ହିଁ ସେହି ନିଗୂଢ଼ରଣକୌଶଳଟିକୁ ଶିକ୍ଷାକରି ମଧ୍ୟ ତାହା ଗୋପନୀୟ ରଖିପାରିବ ଓ ସାମାନ୍ୟ ଯୁଦ୍ଧକନ୍ଦଳରେ ଅସଂଯତ ଭାବେ ତାହା ବ୍ୟବହାର କରିବସିବ ନାହିଁ। କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ଏବଂ ତତ୍କାଳୀନ ଭାରତବର୍ଷରେ ଏହି ଦୃଷ୍ଟିରୁ ଅଭୁତ ବ୍ୟକ୍ତିତ୍ୱସମ୍ପନ୍ନ ବୀରପୁରୁଷ ଅର୍ଜ୍ଜୁନଙ୍କୁ ଛାଡ଼ି ଆଉ କେହି ନ ଥିଲେ—ତାହା ମହାଭାରତରୁ ଭଲ ଭାବେ ପଢ଼ି ବୁଝିଥିବାଲୋକେ ଜାଣନ୍ତି ଏବଂ ପରବର୍ତ୍ତୀକାଳରେ ଅର୍ଜ୍ଜୁନହିଁ ନିଜଜୀବନରେ ତାର ପରୀକ୍ଷା ଓ ପ୍ରମାଣ ମଧ୍ୟ ଦେଇଥିଲେ।

ଅନ୍ୟ ଦିଗରେ ଏକଲବ୍ୟ ଯେ ଜଣେ ଖୁବ ବିଶିଷ୍ଟ ବ୍ୟକ୍ତିତ୍ୱବାନ ବୀରପୁରୁଷ ଥିଲେ—ତାହା ମଧ୍ୟ ନିଃସନ୍ଦେହ। କିନ୍ତୁ ଦ୍ରୋଣାଚାର୍ଯ୍ୟଙ୍କ ପ୍ରଦତ୍ତ ଏହି ନିଗୂଢ଼ ରଣକୌଶଳଟିକୁ ଶିଖି ଯାଇଥିଲେ ମଧ୍ୟ, ସେ ଯେ ଏହାକୁ ନିର୍ଦ୍ଦିଷ୍ଟ ଦିବସ ପର୍ଯ୍ୟନ୍ତ ସଂଯତଭାବେ ଗୋପନ ରଖିପାରିବେ। ଦ୍ରୋଣାଚାର୍ଯ୍ୟଙ୍କର ଏ ବିଶ୍ୱାସ ବା ଆସ୍ଥା ତାଙ୍କ ଉପରେ ନଥିଲା। ମହାଭାରତରେ କେବଳ ଏକଲବ୍ୟ ଯେ ଖୁବ୍ ଉନ୍ନତ ବ୍ୟକ୍ତି ଥିଲେ

ତା' ନୁହେଁ, ଏକମାତ୍ର ଗୁରୁଭକ୍ତ ଥିଲେ—ତା'ବି ନୁହେଁ। ଯୁଧିଷ୍ଠିର, କର୍ଣ୍ଣ ପ୍ରଭୃତି ବୀରମାନେ ମଧ୍ୟ କମ୍ ଗୁରୁଭକ୍ତ ନ ଥିଲେ। କଥାଟା କେବଳ ଆବେଗାତ୍ମକ ଗୁରୁଭକ୍ତିରେ ନାହିଁ। ଏହା ବଡ଼ ଜଟିଳ ବ୍ୟାପାର। ଗୁରୁ କୋଉ ଶିଷ୍ୟକୁ କୃପାପୂର୍ବକ ତାଙ୍କର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ନିଗୂଢ଼ ବିଦ୍ୟାଟିକୁ ଶିଖାଇ ଦେବେ—ତାହା ସେହି ଗୁରୁ ଜାଣନ୍ତି। ଆଉ କେହି ସେ ସମ୍ବନ୍ଧେ ବାକବିତଣ୍ଡା କରି ପାରିବେ ନାହିଁ। ଏପରି ଦେଖାଯାଇଛି ଯେ, ଗୁରୁଙ୍କୁ ପ୍ରଚଣ୍ଡ ଭାବେ ବିରୋଧ କରିଥିବା ଶିଷ୍ୟଟିକୁ ହିଁ ଗୁରୁ ତାଙ୍କର ଗୁରୁତ୍ୱପୂର୍ଣ୍ଣ ବିଦ୍ୟାଟି ଶିଖାଇ ଦେଇଛନ୍ତି। ଦିନରାତି ଗୁରୁଙ୍କୁ ତାଙ୍କ ଶିର ଚରଣ ସେବା କରୁଥିବା ଶିଷ୍ୟଟି ଗୁରୁଙ୍କର ବିଦ୍ୟାନୁଗ୍ରହ ନ ପାଇ ପାରେ।

ଏହା ବ୍ୟତୀତ, ଆଉ ଗୋଟିଏ କଥା ମଧ୍ୟ ସମସ୍ତେ ମନେରଖିବା ଉଚିତ। ରାମାୟଣ ମହାଭାରତ ଓ ଭାଗବତରେ ବହୁ ରାଜନୈତିକ, ସାମାଜିକ ଘଟଣାର ଇତିହାସ ବର୍ଣ୍ଣିତ ଥିଲେ ମଧ୍ୟ, ଏହା କେବଳ ଏକ ପାର୍ଥୀବ ଭାବଧାରାରେ ଭାରାକ୍ରାନ୍ତ ଏକ ସୁଖପାଠ୍ୟ ଗ୍ରନ୍ଥ ନୁହେଁ। ଏଥିରେ ଲୌକିକ ସହିତ ଅଲୌକିକ, ସ୍ଥୂଳ ସହିତ ସୂକ୍ଷ୍ମ, ଦୃଶ୍ୟମାନ ସହିତ ଅଦୃଷ୍ଟ, ଆର୍ଥିକ ସହିତ ପାରମାର୍ଥିକ ଭାବ, ଚିନ୍ତା, ଅନୁଭୂତି, ଉପଲବ୍ଧି ଓ ଆଦର୍ଶମାନଙ୍କର ସମନ୍ୱୟ ଘଟିଛି। ଏବଂ ସବୁ ବିଷୟର ମୂଳରେ ରହିଛି ଏକ ଉଦାର ପ୍ରଦୀପ୍ତ ଉପାଦେୟ ଆଧ୍ୟାତ୍ମିକ ବୌଦ୍ଧିକତା। ବ୍ୟାସଙ୍କୁ ସେଥିପାଇଁ ଭଗବାନ ଓ ବିଶାଳବୁଦ୍ଧ ବିଶେଷଣରେ ବିଶେଷିତ କରାଯାଇଛି। ସେଥିପାଇଁ ଯେ କୌଣସି ପୌରାଣିକ ଘଟଣାକୁ କେବଳ ସାମାଜିକ ବା ରାଜନୈତିକ ବୁଦ୍ଧିରୁ ବିଚାର ବିଶ୍ଳେଷଣ କରି ସିଦ୍ଧାନ୍ତ ମାନ ଥୋଇଦେବା ଅନୁଚିତ। ରାମ ଓ କୃଷ୍ଣଙ୍କୁ ଭଗବାନଙ୍କ ଅବତାର ବୋଲି ପ୍ରତିପାଦିତ କରି ରାମାୟଣ, ମହାଭାରତ ଲେଖାଯାଇଛି। ଯଦି ଏ ସିଦ୍ଧାନ୍ତ ଉପରେ ବିଶ୍ୱାସ ନ ରଖି କେହି ରାମାୟଣ, ମହାଭାରତ ପଢ଼େ ଓ ବ୍ୟାଖ୍ୟା କରେ ତା'ହେଲେ ସେ କେବେଳ ଲୌକିକ ବା ପାର୍ଥିବ ବିଚାର ସିଦ୍ଧାନ୍ତମାନ ଥୋଇ ଲୋକଚିତ୍ତକୁ ବିଭ୍ରାନ୍ତ କରି ବସିବ।

ଏହି ଦୃଷ୍ଟିରୁ ଦେଖିଲେ, ଦ୍ରୋଣ ଏକଲବ୍ୟ ବୃତ୍ତାନ୍ତକୁ ଜଣେ ବ୍ରାହ୍ମଣ ଗୁରୁ ଓ ଜଣେ ଆଦିବାସୀ ଶିଷ୍ୟ ସମ୍ବନ୍ଧୀୟ ଅବ୍ୟାପାର ବୋଲି ପ୍ରମାଣ କରିବା—କେବଳ ଦୁଷ୍ଟବୁଦ୍ଧି ବା ଅହଂକାରୀ ବୁଦ୍ଧିସମ୍ପନ୍ନ ବ୍ୟକ୍ତିମାନଙ୍କର 'ଅବ୍ୟାପାରେଷୁ ବ୍ୟାପର' ବୋଲି ପରିଗଣିତ ହେବ।

**

# ଶମ୍ବୁକ ବଧ ବୃତ୍ତାନ୍ତ

ବର୍ତ୍ତମାନ ଆମ ସମାଜରେ ହରିଜନ ଓ ଆଦିବାସୀମାନଙ୍କ ସମସ୍ୟା ଉପରେ ଅଧିକ ଗୁରୁତ୍ୱ ଦିଆଯାଉଛି। ସେମାନଙ୍କର ଅର୍ଥନୈତିକ, ଆଧ୍ୟାତ୍ମିକ, ନୈତିକ, ସାଂସ୍କୃତିକ ଓ ଶିକ୍ଷା ସ୍ୱାସ୍ଥ୍ୟର ଉନ୍ନତି କଳ୍ପେ ବହୁ ଯତ୍ନ ନିଆଯାଉଛି। ସେମାନଙ୍କୁ ସବୁ ମତେ ସମାଜର ଅନ୍ୟ ଉନ୍ନତଗୋଷ୍ଠୀ ସଙ୍ଗେ ସମପର୍ଯ୍ୟାୟକୁ ଅଣାଯିବା ଲାଗି ବହୁ ସାଧ ସାଧନା କରାଯାଉଛି ଓ ଉପାୟ ଖୋଜା ଯାଉଛି। ଏହା ଅତ୍ୟନ୍ତ ଭଲ କଥା। କିନ୍ତୁ ଆଳରେ କ୍ଷମତାଗତପ୍ରାଣ ଚତୁର, ସ୍ୱାର୍ଥପର ରାଜନୈତିକ ନେତାମାନେ, ଏବଂ ଯଶ ଓ ଏହି ପ୍ରତିଷ୍ଠାକାମୀ ଚତୁର ବୁଦ୍ଧିଜୀବୀମାନେ, ହରିଜନ ଆଦିବାସୀଙ୍କ ଚଡ୍‌କାଳୀନ ସମର୍ଥନ ସହାନୁଭୂତି ଓ ସମ୍ମାନ ପାଇବା ଲାଗି ବହୁ ଏକପାଖିଆ ଭେଦବାଦୀ ମତବାଦ ପ୍ରଚାର କରିଦିଅନ୍ତି। ତାର ଫଳ ବିଷମୟ ହୁଏ—ଏବଂ ବର୍ତ୍ତମାନ ହେଲାଣି ମଧ୍ୟ। ପୂର୍ବ ପ୍ରବନ୍ଧ ଦୁଇଟିରେ ଆମେ ସେ ସମ୍ବନ୍ଧେ କିଛି ଆଲୋଚନା କରିଛେ। ବର୍ତ୍ତମାନ ମୁଁ ଆଉ ଗୋଟିଏ ଉଦାହରଣ ଦିଏ। ରାମାୟଣରେ ବର୍ଣ୍ଣିତ ଏହି ଘଟଣାଟିକୁ ଜଣେ ବିଶିଷ୍ଟ ବୟୋବୃଦ୍ଧ ରାଜନୀତିକ ନେତା କିପରି ଗତ ପଚିଶ ବର୍ଷ ହେଲା ଭୁଲ ଅର୍ଥ କରି ଭେଦ ବୁଦ୍ଧି ସୃଷ୍ଟିକରି ଚାଲିଛନ୍ତି ତାହା ଆପଣମାନେ ଜାଣିପାରିବେ।
ଘଟଣାଟି ହେଲା—

ଦିନେ ଅଯୋଧ୍ୟାରେ ଜନପ୍ରିୟ ପ୍ରଜାପାଳକ ରାଜା ରାମଚନ୍ଦ୍ର ଶାନ୍ତ ମନରେ ତାଙ୍କ ଅମାତ୍ୟବର୍ଗଙ୍କ ସହିତ ରାଜସଭାରେ ବସିଛନ୍ତି—ହଠାତ୍ ଜଣେ ବ୍ରାହ୍ମଣ ତାଙ୍କର ଅକାଳମୃତ ପୁତ୍ରକୁ କାନ୍ଧରେ ପକାଇ କାନ୍ଦି କାନ୍ଦି ରାମଚନ୍ଦ୍ରଙ୍କ ସମ୍ମୁଖରେ ଉଭା ହୋଇ କହିଲେ—ମହାରାଜ! ମୁଁ ପ୍ରତିଜ୍ଞା କରି କହୁଛି—ମୁଁ କେବେ ମିଥ୍ୟାଚାର କରି ନାହିଁ—ଧର୍ମସୀମା ଲଙ୍ଘନ କରି ନାହିଁ—ହିଂସାବାଦ କରି ନାହିଁ। ତେବେ ମୋର ଏକମାତ୍ର ପୁତ୍ର ଅକାଳରେ ମଲା କାହିଁକି? କେଉଁ ଦୋଷରେ? କାହା ଦୋଷରେ? ମୁଁ ଜାଣେ—ରାଜାଅଧର୍ମାଚାରୀ ହେଲେ ରାଜ୍ୟରେ ଏଭଳି ଦୁର୍ବିପାକ ଘଟିଥାଏ। କିମ୍ବା ରାଜ୍ୟରେ ଦୁଷ୍ଟ ଦୁର୍ବୃତ୍ତ ଲୋକମାନେ ଅଧିକ ସଂଖ୍ୟାରେ ଅନ୍ୟାଚାର ଘଟାଇଲେ, ଯଦି ରାଜା ସେମାନଙ୍କୁ ଶାସନ କରି ଦମନ ନ କରନ୍ତି—ତେବେ ମଧ୍ୟ ରାଜ୍ୟର ପ୍ରଜାମାନେ ଏଭଳି ଆକସ୍ମିକ ଦୈବୀବିପତ୍ତି ଭୋଗ କରନ୍ତି। କିନ୍ତୁ ମୁଁ ଜାଣେ ଯେ ଆପଣଙ୍କ ତୁଲ୍ୟ ଧାର୍ମିକ ନୀତିବାନ ରାଜା ଓ ଭୂ-ଭାରତରେ ନାହାନ୍ତି। କିନ୍ତୁ ମୋର ସନ୍ଦେହ ଯେ ଆପଣଙ୍କ ରାଜ୍ୟରେ ଦୁଷ୍ଟଦୁର୍ବୃତ୍ତମାନେ ଦୁଷ୍କାର୍ଯ୍ୟ କରୁଛନ୍ତି—ଏବଂ ଆପଣଙ୍କ ଶାସନ ସେମାନଙ୍କ ଉପରେ ପଡ଼ିନାହିଁ। ତେଣୁ ଆମେ ସାଧୁଲୋକମାନେ ଏ ପ୍ରକାର ଦୈବୀ ବିପତ୍ତି ଭୋଗ କରୁଛୁ। ଆପଣ ଶୀଘ୍ର ଏହାର ପ୍ରତିବିଧାନ କରନ୍ତୁ। ନଚେତ ମୁଁ ଓ ଏହି ମୃତ ବାଳକର ମାତାଦୁହେଁଯାକ ଆପଣଙ୍କ ସମ୍ମୁଖରେ ଆତ୍ମହତ୍ୟା କରିବୁ।

ରାମ ଚିନ୍ତିତ ହୋଇ ବଶିଷ୍ଠ, ମାର୍କଣ୍ଡେୟ, ଗୌତମ ଓ ନାରଦାଦି ମୁନିଋଷିମାନଙ୍କୁ ଏହାର କାରଣ ପଚାରିଲେ। ତ୍ରିପୁରଚାରୀ ଓ ତ୍ରିକାଳଦର୍ଶୀ ମହାମୁନି ନାରଦ କହିଲେ—ମହାରାଜ ! ଶୈବଳ ନାମକ ପର୍ବତ ତଳେ ଗୋଟିଏ ସରୋବର କୂଳରେ ଶମ୍ବୁକ ନାମକ ଦୁର୍ବୃତ୍ତ ଶୂଦ୍ର ଗୋଟିଏ ବୃକ୍ଷ ଡାଳରେ ଦୁଇ ଗୋଡ଼ବାନ୍ଧି ତଳକୁ ମୁଣ୍ଡ ଝୁଲାଇ ଅତି କଠିନ ତପସ୍ୟା କରୁଛି। ସେହି ପାପ ହେତୁ ଏ ବାଳକଟି ଅକାଳରେ ମରିଛି।

ନାରଦ ପୁନଶ୍ଚ କହିଲେ—ହେ ମହାରାଜ ! ବିଭିନ୍ନ ଯୁଗରେ ବିଭିନ୍ନ ବୃତ୍ତିରେ ଲୋକେ ତପସ୍ୟା କରି ଆସିଛନ୍ତି। ମାତ୍ର ଧର୍ମାଧର୍ମ ଉପରେ ଦୃଷ୍ଟି ନ ଦେଇ କଠୋର ତପସ୍ୟା ଦ୍ୱାରା ଦୁର୍ବୃତ୍ତମାନେ ଯେଉଁ ତପଃଫଳ ଲାଭ କରନ୍ତି ତଦ୍ଦ୍ୱାରା ସୃଷ୍ଟିର ଅମଙ୍ଗଳ ହେଉଛି ଏବଂ କ୍ରମଶଃ ଅଧର୍ମ ପାଦେ ପାଦେ ହୋଇ ଏ ପୃଥିବୀକୁ ଆକ୍ରାନ୍ତ କରିଛି। ମନ୍ଦ ଅଭିପ୍ରାୟରେ ମନ୍ଦବୁଦ୍ଧି ଲୋକମାନେ କଠିନ ତପଶ୍ଚର୍ଯ୍ୟା କରିବା ଦ୍ୱାରା ନିଜର ଓ ସଂସାରର ପାପମାତ୍ରା ବୃଦ୍ଧି କରନ୍ତି। ହେ ରାଘବ ! ଆପଣ ତୁରନ୍ତ ଏହାର ପ୍ରତିବିଧାନ କରନ୍ତୁ।

ଅତଃପର ରାମ ଏହା ଶୁଣି ସେହି ଶମ୍ବୁକ ନିକଟକୁ ଯାଇ ତାହାହିଁ ଦେଖିଲେ। ରାମ କହିଲେ—"ହେ ସୁବ୍ରତ ! ତୁମେ ଧନ୍ୟ। ମୁଁ ଦାଶରଥି ରାମ କୌତୂହଳବଶତଃ ପଚାରୁଛି—କାହିଁକି ତୁମେ ଏ ଦୁଷ୍କର ତପସ୍ୟା କରୁଛ ?

ଶମ୍ବୁକ ସ୍ପଷ୍ଟ ଭାବେ ଦାମ୍ଭିକତାର ସହିତ କହିଲେ—ହେ ରାଜା ! ମୁଁ ଦେବଲୋକ ଜୟ କରିବାକୁ ଚାହେଁ। ମୁଁ ଦେବତ୍ୱ ଲାଭ ପାଇଁ ଏ ତପସ୍ୟା କରୁଛି।

ରାମ ଏହା ଶୁଣି ଖଡ୍‌ଗ ଦ୍ୱାରା ତାର ଶିରଚ୍ଛେଦ କଲେ। ରାମଙ୍କର ଏହି କାର୍ଯ୍ୟ ଦେବଗଣଙ୍କ ଦ୍ୱାରା ସମର୍ଥିତ ହୋଇଥିଲା। ମହର୍ଷି ଅଗସ୍ତି ମଧ୍ୟ ଏହାକୁ ଭଲକାର୍ଯ୍ୟ ବୋଲି ସାଧୁବାଦ ଦେଇଥିଲେ।

କହିବା ବାହୁଲ୍ୟ ଯେ ଶମ୍ବୁକର ହତ୍ୟା ପରେ ହିଁ ଦେବରାଜଇନ୍ଦ୍ର ଅକାଳମୃତ ବ୍ରାହ୍ମଣ ବାଳକକୁ ପୁନର୍ଜୀବନ ଦାନ କରିଥିଲେ।

ଏହି ଘଟଣାଟି ଭିତରକୁ ଆଜି କାଲିକାର ଜାତିଭେଦ ବ୍ୟାପାର ଆଣିବା ଉଚିତ ନୁହେଁ। 'ତପସ୍ୟା' ଗୋଟିଏ ଅତି ପ୍ରାଚୀନ ସାଧନା। ପରବର୍ତ୍ତୀ ଯୁଗରେ 'ତନ୍ତ୍ର ସାଧନା' ମଧ୍ୟ ଗୋଟିଏ ତଦ୍ରୂପ ଦୁଷ୍କର କାର୍ଯ୍ୟରୂପେ ପ୍ରଚଳିତ ଥିଲା। ମାତ୍ର ତପସ୍ୟା ବା ତନ୍ତ୍ରସାଧନା ସର୍ବଦା ଅଧିକାରବାଦ ଉପରେ ପ୍ରଚଳିତ ଥିଲା। ଗୁରୁମାନେ ଉପଯୁକ୍ତ ଅଧିକାରୀ ବୋଲି ବିବେଚନା ନ କଲେ, କାହାକୁ ଗୂଢ଼ବିଦ୍ୟା ଶିଖାଉ ନଥିଲେ। କାରଣ, ବିଦ୍ୟାଟି ଜାଣିଗଲେ ଅନଧିକାରୀ ଅନୁପଯୁକ୍ତ ଶିଷ୍ୟତାର ଅପପ୍ରୟୋଗ କରି ନିଜର ଓ ଅନ୍ୟମାନଙ୍କର କ୍ଷତିସାଧନ କରିବ। ଏ ପୃଥିବୀରେ ଅସୁର ପ୍ରକୃତିକ ଲୋକମାନେ ବାରମ୍ବାର କଠିନ ତପସ୍ୟା କରି, ବ୍ରହ୍ମା ଶିବାଦି ଦେବଗଣଙ୍କଠାରୁ

ଦୁର୍ଲ୍ଲଭ ବରମାନ ପ୍ରାପ୍ତ ହୋଇ ଏ ପୃଥିବୀର ଯାହା ଅନିଷ୍ଟ ସାଧନ କରିଛନ୍ତି ତାହା ପୁରାଣମାନଙ୍କରେ ବର୍ଣ୍ଣିତ ଅଛି। ସ୍ୱୟଂ ରାବଣ ମଧ ଏହିପରି ଦୁଷ୍କର ତପସ୍ୟା କରି ସିଦ୍ଧି ପାଇଥିଲା। ଫଳରେ ସେ ଅମରମରା ହୋଇ କି ଅନିଷ୍ଟମାନ ନ କଲା ଭଲା ! ଋଷିମାନେ ଶମ୍ବୁକର ଚରିତ୍ର ଓ ପ୍ରକୃତି ଭଲରୂପେ ଜାଣିଥିଲେ। ତାର ଅନଧିକାରୀ ମନ୍ଦ ଅଭିପ୍ରାୟ ମଧ ଜାଣିଥିଲେ। 'ରାମ ରାଜ୍ୟ'ରେ ଏଭଳି ଅସଙ୍ଗତ କାର୍ଯ୍ୟକୁ ଦୃଢ଼ଭାବରେ ଦମନ କରାଯାଉଥିଲା।

ଅନ୍ୟପକ୍ଷରେ ରାମଙ୍କର ଯଦି ଶୂଦ୍ରଜାତି ପ୍ରତି ବିଦ୍ୱେଷ ବା ଘୃଣାଥାନ୍ତା ତେବେ ସେ ଶବରଣୀର ଅଇଂଠାଫଳ ଖାଇ ନ ଥାନ୍ତେ। ଗୁହକ ଶବର ରାଜାର ବନ୍ଧୁ ହୋଇ ନଥାନ୍ତେ। ସୁଗ୍ରୀବ, ହନୁମାନାଦି କେଉଁ ଜାତିର ଲୋକଥିଲେ କେଜାଣି ରାମଙ୍କର ତାଙ୍କ ସଙ୍ଗେ ଏତେ ବନ୍ଧୁତା କିପରି ହେଲା ? ରାବଣ ପୁଣି ଥିଲେ ବ୍ରାହ୍ମଣ। ରାମ ବ୍ରାହ୍ମଣ ବଧ କିପରି କଲେ ? ସେହିପରି ରାମଚନ୍ଦ୍ରଙ୍କ ପିତା ଦଶରଥ ତାଙ୍କର ଯୌବନ କାଳରେ ଶବ୍ଦଭେଦୀ ବାଣ ଦ୍ୱାରା ଯେଉଁ ମୁନିବାଳକକୁ ହତ୍ୟା କରି ତା ଅନ୍ଧପିତା ଓ ଅନ୍ଧୁଣୀ ମାତାର ଅଭିଶାପକୁ ମଥାପାତି ବରଣ କରିଥିଲେ। ସେହି ଅନ୍ଧପିତା ଶୁଦ୍ର ତପସ୍ୱୀ ନ ଥିଲେ କି ? ଶୁଦ୍ରଜାତିର ଲୋକଙ୍କୁ ତପସ୍ୟା ମନା ନଥିଲା। ମାତ୍ର ଅଳ୍ପବୁଦ୍ଧି ବ୍ୟକ୍ତିଙ୍କର ହୀନ ଅଭିପ୍ରାୟରେ ଦୁଷ୍କର ତପସ୍ୟାକୁ ଉତ୍ସାହିତ କରାଯାଉ ନଥିଲା।

ରାମାୟଣ ମହାଭାରତରେ ଜାତିପ୍ରଥା ଥିଲା ଓ ବ୍ରାହ୍ମଣଙ୍କୁ ଶ୍ରେଷ୍ଠସ୍ଥାନ ଦିଆଯାଇଥିଲା। ଏବଂ ତାହା ସହିତ ମଧ ବ୍ରାହ୍ମଣର ବୃତ୍ତି, ପ୍ରବୃତ୍ତି, ପ୍ରକୃତି ଓ କର୍ତ୍ତବ୍ୟ କଣ ହେବା ଉଚିତ ତାହା ଦୃଢ଼ଭାବେ ଧାର୍ଯ୍ୟ କରାଯାଇଥିଲା। ସବୁ ଜାତିର ଲୋକଙ୍କର ମନର ଅଭିଳାଷ ଥିଲା। ଏ ଜନ୍ମରେ ହେଉ ବା ପରଜନ୍ମରେ ହେଉ ବା ଜନ୍ମଜନ୍ମାନ୍ତରେ ହେଉ ନିଜର ଜୀବନସାଧନା ବା ଜୀବନଚର୍ଯ୍ୟା ଦ୍ୱାରା ଏହି ମହତ୍ ବ୍ରାହ୍ମଣତ୍ୱ ଲାଭ କରିବା।

ସ୍ୱାମୀ ବିବେକାନନ୍ଦ ଓ ଶ୍ରୀଅରବିନ୍ଦ ବହୁ ସ୍ଥାନରେ ଭାରତର ସାମାଜିକ ଓ ମାନବିକ ଆଦର୍ଶ ସମ୍ବନ୍ଧେ ଆଲୋଚନା କରି ସ୍ପଷ୍ଟ କହିଛନ୍ତି ଯେ ବହୁପୂର୍ବେ ଭାରତରେ ଜାତିଭେଦ ପ୍ରଥା ବରାବର ଗୁଣକର୍ମ ବିଭାଗରେ ଥିଲା। ଜନ୍ମଭିତ୍ତିକ ନଥିଲା। ପରବର୍ତ୍ତୀ କାଳରେ ଏହା ଜନ୍ମଭିତ୍ତିକ ହେବାରୁ ସମାଜର ଅବକ୍ଷୟ ଆରମ୍ଭ ହୋଇଗଲା। ତା' ସତ୍ତ୍ୱେ ସବୁ ଜାତିର ଜୀବନାଦର୍ଶ ଥିଲା ବ୍ରାହ୍ମଣ ହେବା। କ୍ଷତ୍ରୀୟ, ବୈଶ୍ୟ, ଶୁଦ୍ର ସମସ୍ତଙ୍କର ସେହି ଗୋଟିଏ ଲକ୍ଷ୍ୟ ଥିଲା।

ବର୍ତ୍ତମାନ କିନ୍ତୁ ଶୁଦ୍ରତ୍ୱକୁ ଆଦର୍ଶ ଦିଆଯାଉଛି। ରାଜନୈତିକ ଅଭିସନ୍ଧିରୁ ଶୁଦ୍ରତ୍ୱକୁ ଗୋଟାଏ ଶ୍ରେଣୀ ବା କ୍ଲାସ ବୋଲି ଗ୍ରହଣ କରି ସମାଜରେ ଭେଦବୁଦ୍ଧି ସୃଷ୍ଟି କରାଯାଉଛି। ଏଥିପ୍ରତି ସମସ୍ତେ ସଜାଗ ରହିବା ଉଚିତ୍।

❋❋

# ପର୍ଯ୍ୟଟନ : ସାଂସ୍କୃତିକ କି ଅର୍ଥନୈତିକ ?

## (ଏକ)

ସମଗ୍ର ଦେଶରେ ଏବଂ ବିଶେଷତଃ ଓଡ଼ିଶାରେ ପର୍ଯ୍ୟଟନ ବିଭାଗର କିଛି ଗୁରୁତ୍ୱ ଏବେ ବଢ଼ିଯାଇଛି ବୋଲି ମନେ ହୁଏ । ଏ ବିଭାଗଟିର କାର୍ଯ୍ୟ ହେଲା ଦେଶର ବିଭିନ୍ନ ଦର୍ଶନୀୟ ସ୍ଥାନ ବା ଐତିହାସିକ ସ୍ଥାନଗୁଡ଼ିକ ସୁରକ୍ଷିତ କରି ଏବଂ ସେଠାରେ ଆକର୍ଷଣୀୟ ପରିବେଶ ସୃଷ୍ଟିକରି ବାହାରର ପର୍ଯ୍ୟଟକ ବା ଭ୍ରମଣକାରୀମାନଙ୍କୁ ସେଠାକୁ ଆକର୍ଷଣ କରି ଆଣିବା । ଯେମିତି ଓଡ଼ିଶାର ପୁରୀ, ଭୁବନେଶ୍ୱର, କୋଣାର୍କ, ଶିମିଳିପାଳର ସଂରକ୍ଷିତ ଅରଣ୍ୟ, ଚିଲିକା ଓ ସମ୍ବଲପୁରର ନୃସିଂହନାଥ ପ୍ରଭୃତି ସ୍ଥାନଗୁଡ଼ିକ ସୁନ୍ଦର ପ୍ରାକୃତିକ ପରିବେଶକୁ ଉପଭୋଗ କରିବା ପାଇଁ ଏବଂ ପ୍ରାଚୀନ କଳା ଓ ସ୍ଥାପତ୍ୟର ପରାକାଷ୍ଠା ସଂପନ୍ନ ମନ୍ଦିର ଓ ଦୁର୍ଗଗୁଡ଼ିକ ଦେଖି ଚେତନାର ଉତ୍କର୍ଷ ବଢ଼ାଇବା ପାଇଁ ଏବଂ ବିଭିନ୍ନ ଦେଶ ଭ୍ରମଣ କରି ସେ ଦେଶ ସମ୍ବନ୍ଧେ ଜ୍ଞାନଅର୍ଜନ କରିବା ପାଇଁ କିମ୍ବା ଧର୍ମପୀଠ ଓ ତୀର୍ଥମାନ ଦର୍ଶନ କରି କିଛି ପୁଣ୍ୟ ଅର୍ଜନ କରିବା ପାଇଁ ଲୋକେ ଆପଣା ଦେଶରୁ ବାହାରି ପ୍ରଚୁର ଅର୍ଥ ଖର୍ଚ୍ଚକରି ଓ ବହୁ କଷ୍ଟ ସହ୍ୟକରି ଅନ୍ୟ ଦେଶ ଭ୍ରମଣରେ ବାହାରନ୍ତି ଏବଂ ଯେଉଁ ଦେଶରେ ଏହିସବୁ ଦର୍ଶନୀୟ ସ୍ଥାନର ସଂଖ୍ୟା ଅଧିକ, ସେ ଦେଶର ଖ୍ୟାତି ଗୌରବ ଏ ଦୃଷ୍ଟିରୁ ଅଧିକ ବଢ଼ିଯାଏ । ଏବଂ ବହୁ ପର୍ଯ୍ୟଟକ ସମାବେଶ ହେତୁ ସେ ଦେଶ ମଧ ଆର୍ଥିକ ଦୃଷ୍ଟିରୁ ବହୁ ଲାଭବାନ ହୁଏ । ଗତ କେତେ ବର୍ଷ ପର୍ଯ୍ୟଟନ ବିଭାଗର ଆୟବ୍ୟୟ ପରିସଂଖ୍ୟାନରୁ ଜଣାଯାଏ ଯେ ଭାରତବର୍ଷ ଇତିମଧ୍ୟରେ ଏଥିଯୋଗୁଁ ବହୁ ବୈଦେଶିକ ମୁଦ୍ରା ଅର୍ଜନ କରିପାରିଛି । ପର୍ଯ୍ୟଟନ ବ୍ୟାପାରରୁ ଉଭୟ ଖ୍ୟାତି ଓ ଧନ ଅର୍ଜନ ସମ୍ଭବ ହେଉଥିବାରୁ ଆମ ଦେଶର ସବୁ ରାଜ୍ୟ ବର୍ତ୍ତମାନ ତାଙ୍କର ପର୍ଯ୍ୟଟନ ବିଭାଗଟିର ପରିସର ଓ ଶ୍ରୀ ବୃଦ୍ଧି କରିବାରେ ଲାଗି ପଡ଼ିଛନ୍ତି ।

ପର୍ଯ୍ୟଟନ ବ୍ୟାପରକୁ ଏହାର ଅର୍ଥକାରିତା ଯୋଗୁଁ ଗୋଟିଏ ଶିଳ୍ପ ରୂପେ ଗ୍ରହଣ କରିଛନ୍ତି ଆମର ସରକାର । କିନ୍ତୁ ଗତ ଜନତା ସରକାରଙ୍କ ତତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀ ମୋରାରଜୀ ଦେଶାଇ ପର୍ଯ୍ୟଟନ ବିଭାଗକୁ ଭାରତବର୍ଷରେ ଏକ ଅର୍ଥକାରୀ ବେପାର ବଣିଜ ବ୍ୟାପାର ବୋଲି ମନେ ନ କରି ଏହାକୁ ଏକ ସାଂସ୍କୃତିକ ବିଷୟ ରୂପେ ଗ୍ରହଣ କରିବାକୁ ବାରମ୍ବାର କହୁଥିଲେ । କିନ୍ତୁ ତାଙ୍କ କହିବା କଥା ଥିଲା ତାଙ୍କ ସରକାରୀ ନୀତିଠାରୁ ଅଲଗା । କାରଣ ତାଙ୍କ ସରକାରରେ ବି ପର୍ଯ୍ୟଟନ ବିଭାଗଟି ଥିଲା ବାଣିଜ୍ୟ ଅଭିମୁଖୀ ।

କିନ୍ତୁ ଶ୍ରୀଯୁକ୍ତ ଦେଶାଇଙ୍କର ମୁହଁର କଥାଟିକୁ ମଧ୍ୟ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଦିଗରୁ ଗୁରୁତ୍ୱ ଦିଆଯାଇ ପାରେ। ତାହା ହେଲା ଭାରତବର୍ଷର ପାରଂପରିକ ସଂସ୍କୃତିରେ ଏହି ପର୍ଯ୍ୟଟନ ବ୍ୟାପାରଟି ପ୍ରକୃତରେ ଏକ ଧାର୍ମିକ ଅନୁଷ୍ଠାନ ରୂପେ ଗୃହୀତ ହେଉଥିଲା ଭାରତବର୍ଷର ଲୋକେ ମୂଳତଃ ନିଜ ସ୍ଥାନ ଛାଡ଼ି ବା ନିଜ ଦେଶ ଛାଡ଼ି ସାଧାରଣତଃ ଅନ୍ୟ ଦେଶକୁ ଯାଉ ନଥିଲେ। ସମୁଦ୍ର ପାରି ହୋଇ ଅନ୍ୟ ଦେଶକୁ ଯାଇ ଫେରି ଆସିଲେ ପ୍ରାୟଶ୍ଚିତ୍ତ କରିବାକୁ ପଡୁଥିଲା। ଅବଶ୍ୟ ଆମ ଦେଶର ବଣିକବୃନ୍ଦ ସମୁଦ୍ରରେ ଜାହାଜ ନେଇ ବିଭିନ୍ନ ଦ୍ୱୀପକୁ ବଣିଜ କରିବାକୁ ଯାଉଥିଲେ। ସେଥିପାଇଁ ସେମାନେ ପ୍ରାୟଶ୍ଚିତ କରୁ ନଥିଲେ। ସେହିପରି ହନୁମାନଜୀ ସମୁଦ୍ର ଡେଇଁ ଲଙ୍କାକୁ ଯାଇ ସୀତାଙ୍କୁ ଠାବ କରି ଫେରି ଆସିଲା ପରେ ତାଙ୍କ ପାଇଁ କୌଣସି ପ୍ରାୟଶ୍ଚିତ ଅନୁଷ୍ଠାନ କରିବାକୁ ପଡ଼ି ନଥିଲା। ସେହିପରି ସମୁଦ୍ର ଯାତ୍ରାର ବହୁ ପୌରାଣିକ ଓ ଐତିହାସିକ ପ୍ରମାଣ ମଧ୍ୟ ରହିଛି।

କିନ୍ତୁ ସେଥିରୁ ଗୋଟିଏ କଥା ପ୍ରମାଣିତ ହୁଏ ଯେ, ଭାରତୀୟମାନେ ବିନା ଉପଦେଶରେ ଅର୍ଥାତ୍ ଦାୟରେ ନପଡ଼ିଲେ କେହି ସମୁଦ୍ର ପାରି ହୋଇ ଅନ୍ୟ ଦେଶକୁ ଧାଡ଼ି ଦେଉ ନଥିଲେ। ଗୁପ୍ତଚର ବୃତ୍ତି, ଲୁପ୍ତଧନର ଉଦ୍ଧାର, ବାଣିଜ୍ୟ ବ୍ୟବସାୟ ଏସବୁ ଲାଗି ମଧ୍ୟେ ମଧ୍ୟେ ଭାରତୀୟମାନେ ଅନ୍ୟ ଦେଶକୁ ଯାଉଥିଲେ। କିନ୍ତୁ ଧନ, ସମୟ ବ୍ୟୟ କରି କେବଳ ଖିଆଲଖୁସିରେ ହୋଲେ ଡ଼ୋଲେ ମନ ନେଇ କେହି ସାଧାରଣତଃ ସମୁଦ୍ର ଆର ପାରିକୁ ଯାଉ ନଥିଲେ।

ଅବଶ୍ୟ ୟା'ମାନେ ନୁହଁ ଯେ, ଅନିକେତ, ଅସଞ୍ଚୟ ଓ ଅବନ୍ଧନ ଭିତ୍ତିକ ଜୀବନ ଦର୍ଶନରେ ବିଶ୍ୱାସୀ ଭାରତୀୟମାନେ ଘୋର ତାମସିକ ଗତିହୀନତାର ବଶବର୍ତ୍ତୀ ହୋଇ କେବେ କେବଳ ଆପଣାର ଭିଟାମାଟିକୁ ଜାବୁଡ଼ିଧରି ବା କାମୁଡ଼ିଧରି ପଡ଼ିରହୁଥିଲେ। ସେମାନଙ୍କ ଉଦାର ଆକ୍ଷି ଆଗରେ ଆକାଶ ବିସ୍ତୃତ ହେଉ ନଥିଲା। ବା ପୃଥିବୀ ଖୋଲି ଖୋଲି ଯାଉ ନଥିଲା। ସୁଦୂରର ସ୍ୱପ୍ନ ସେମାନଙ୍କୁ ଘାରୁ ନଥିଲା ବା ସୁଦୂରର ଡାକ ପ୍ରତି ସେମାନେ ବଧିର ଥିଲେ।

କିନ୍ତୁ ଏହି ସୁଦୂରଟି ନ ଥିଲା ସବୁବେଳେ ଆପଣାର ଆଖିଦେଖା ଏଇ ସ୍ଥୂଳ ଜଗତର ବାହାରେ ଆଉ ଗୋଟିଏ ସ୍ଥୂଳ ଜଗତ ଭିତରେ। ବଙ୍ଗୋପସାଗର ବା ଆରବସାଗରକୁ ଦେଖି ସାରିଲା ପରେ ସେମାନେ ଆଉ ଗୋଟିଏ ଲବଣାକ୍ତ ବିସ୍ତୃତ ତରଙ୍ଗ କ୍ଷୁବ୍ଧ ବା ନିସ୍ତବଧ ଜଳଭଣ୍ଡାର ଦେଖିବାକୁ କିଛି କୌତୂହଳ ଅନୁଭବ କରୁ ନଥିଲେ। ସେମିତି ମଧ୍ୟ କାଶ୍ମୀରର ତୁଷାରପାତ ଦେଖିସାରି ସେମାନେ ଏ ପୃଥିବୀର ଆଉ କୌଣସି ସ୍ଥାନର ତୁଷାରଶୋଭା ଦେଖିବାକୁ ବ୍ୟାକୁଳ ହେଉ ନ ଥିଲେ। କିମ୍ବା ଭାରତବର୍ଷର ସୂର୍ଯ୍ୟ, ଚନ୍ଦ୍ର ମେଘ, ତାରା, ଆକାଶ, ବନଭୂମି ଆଉ ନଦୀ, ପର୍ବତ ଦେଖିସାରିଲା ପରେ ଆଉ କୋଉ କୋଉ ଦେଶକୁ ଯାଇ ପୁଣି ସେହି ସେହି ପରି ପ୍ରାକୃତିକ ଦୃଶ୍ୟ ଦେଖିବାର ଆଗ୍ରହ ସେମାନଙ୍କ ଭିତରେ ଉଗ୍ର ନଥିଲା।

ସେହିପରି ଭାରତବର୍ଷର ବିଚିତ୍ର ଜନସମାଜ ଦେଖିଲା ପରେ ସେମାନେ ଆଉ ଅନ୍ୟ ଦେଶକୁ ଯାଇ ମଣିଷର ବିଚିତ୍ର ଗୁଣାଗୁଣ ବା ରୂପରଙ୍ଗର ବୈଚିତ୍ର୍ୟ ଦେଖିବା ଲାଗି କୌତୂହଳୀ ହେଉ ନଥିଲେ। ସେମାନେ ସମଗ୍ର ପ୍ରାକୃତିକ ପୃଥିବୀଟିକୁ ଏହି ଭାରତ ବର୍ଷରେ ହିଁ ପ୍ରତ୍ୟକ୍ଷ କରି ପାରୁଥିଲେ। ତେଣୁ 'ସୁଦୂର' ସେମାନଙ୍କ ପକ୍ଷରେ ଏକ ପ୍ରାକୃତିକ ବା ଭୌଗଳିକ ସ୍ଥାନ ବା ବ୍ୟକ୍ତିବିଶେଷ ନଥିଲା। ଭାରତବର୍ଷ ଭିତରେ ଥିଲା ଅନନ୍ତ ଆକାଶ ଆଉ ବିପୁଳ ପୃଥିବୀ। ତେଣୁ ସେମାନେ 'ସୁଦୂର'କୁ ଖୋଜୁଥିଲେ ଆପଣା ଭିତରେ–ଆପଣା ଅନ୍ତରର ଅନନ୍ତ ଚେତନାଭୂମିରେ। ଅନନ୍ତ ଚିଦାକାଶ ଓ ଅନନ୍ତ ଚିତ୍ତଭୂମିରେ ଘଟୁଥିବା ଅନନ୍ତ ଅଭିଜ୍ଞତାମାନଙ୍କର ପରିଚୟ ପାଇବା ଥିଲା ସେମାନଙ୍କର କେବଳ ଧେୟ। ଆପଣା ଅନ୍ତରର ବିଶାଳତାକୁ ଆବିଷ୍କାର କରି ଚାଲିବା ଥିଲା ସେମାନଙ୍କର ମୁଖ୍ୟ ଉଚ୍ଚାଟନ। ଭାରତୀୟର ବିଶ୍ୱାସ ଥିଲା ଆଗ ନିଜକୁ ଦେଖ, ନିଜକୁ ଆବିଷ୍କାର କର, ଏତିକି ପାଇଁ ମଧ୍ୟ ଜୀବନକାଳ ଅଣ୍ଟିବ ନାହିଁ। ନିଜକୁ ଦେଖିଲେ ଜଗତକୁ ଦେଖିବ। ନିଜକୁ ପାଇଲେ ଜଗତକୁ ପାଇବ।

## (ଦୁଇ)

ନିଜକୁ ଆବିଷ୍କାର କରିବା ଲକ୍ଷ୍ୟ ନେଇ ଭାରତୀୟମାନେ ତେଣୁ ନିଜ ଭିତରକୁ ଯାତ୍ରା କରୁଥିଲେ। ଏବଂ ଏହି ଯାତ୍ରା ଥିଲା ଲକ୍ଷ୍ୟରେ ଆତ୍ମାଭିମୁଖୀ ଏବଂ ଏହି ଯାତ୍ରା ମଧ୍ୟ ଅନ୍ୟ ସବୁ ବାହ୍ୟ ଭ୍ରମଣଠାରୁ ଆହୁରି ଅଧିକ ଦୁଃସାହସିକ ଓ ଦୁଃସାଧ୍ୟ ଅଭିଯାନ ଥିଲା।

ତଥାପି, ଭାରତବର୍ଷର କୁମାରିକା ଅନ୍ତରୀପଠାରୁ ହିମାଳୟ ପର୍ଯ୍ୟନ୍ତ ଏବଂ ବ୍ରହ୍ମଦେଶଠାରୁ ଗାନ୍ଧାର ରାଜ୍ୟ ପର୍ଯ୍ୟନ୍ତ ଏହି ବିଶାଳ ଭୂଖଣ୍ଡକୁ ବାରମ୍ବାର ପ୍ରଦକ୍ଷିଣ କରୁଥିଲେ ଭାରତୀୟ ଯୋଗୀ, ସନ୍ନ୍ୟାସୀ, ଧର୍ମପ୍ରଚାରକ ଓ ଭକ୍ତବୃନ୍ଦ। ଏହି ବିଶାଳ ଭୂଖଣ୍ଡ ମଧ୍ୟରେ ବହୁ ରମଣୀୟ ସ୍ଥାନକୁ 'ତୀର୍ଥକ୍ଷେତ୍ର' ରୂପେ ମାନ୍ୟ କରାଯାଏ। ବହୁ ନଦୀକୁ ପବିତ୍ର ବୋଲି ମାନ୍ୟ କରାଯାଏ। ବହୁ ଅରଣ୍ୟକୁ ମଧ୍ୟ ତପୋଭୂମି ରୂପେ ମାନ୍ୟ କରାଯାଏ। ବହୁ ନଗରକୁ ପ୍ରଧାନ ଦେବ ଦେବଙ୍କ ପୀଠ ବା କ୍ଷେତ୍ରରୂପେ ଗଣ୍ୟ କରାଯାଏ। ତେଣୁ ଭାରତୀୟମାନେ ଯେତେବେଳେ ଆପଣା ଗ୍ରାମ ବା ନଗରରୁ ଅନ୍ୟ ଦେଶ ଭ୍ରମଣରେ ବହିର୍ଗତ ହୁଅନ୍ତି–ସେତେବେଳେ ସେମାନଙ୍କର କେବଳ ଲକ୍ଷ୍ୟଥାଏ, ତୀର୍ଥଭୂମି ପର୍ଯ୍ୟଟନ, ଇଷ୍ଟମୂର୍ତ୍ତି ଦର୍ଶନ, ପବିତ୍ର ନଦୀରେ ସ୍ନାନ, ଅଥବା ଅରଣ୍ୟବାସୀ ତପୋଧନମାନଙ୍କ ପାଖରୁ ଆତ୍ମତତ୍ତ୍ୱ ଶ୍ରବଣ। ମୋଟ କଥା, ଧାର୍ମିକତା ଦୃଷ୍ଟିରୁ ପୁଣ୍ୟ ଅର୍ଜନ କରିବା ପାଇଁ ଭାରତୀୟମାନଙ୍କ ବିଦେଶ ଭ୍ରମଣରେ ଯାଉଥିଲେ।

ଏବଂ ଏହି ତୀର୍ଥଯାତ୍ରୀଙ୍କ ବ୍ୟତୀତ ଆଉ ଯେଉଁମାନେ ବାଣିଜ୍ୟବେପାର ଉଦ୍ଦେଶ୍ୟରେ ବିଭିନ୍ନ ସ୍ଥାନକୁ ଯାଉଥିଲେ, ସେମାନଙ୍କ ମନ ଭିତରେ ବି ଏହି ତୀର୍ଥଦର୍ଶନର

ଆକାଂକ୍ଷା ରହୁଥିଲା। ଆମର ଲୋକକଥା ଓ ସଂସ୍କୃତ ପ୍ରାକୃତ ନାଟକମାନଙ୍କରେ ଓ ପୁରାଣାଦିରେ ଏହାର ବହୁ ଉଦାହରଣ ରହିଅଛି। ତେଣୁ ଭାରତୀୟ ସଂସ୍କୃତି ପରମ୍ପରାରେ ପର୍ଯ୍ୟଟନ ମାତ୍ରେ ଇ ଥିଲା ତୀର୍ଥ ପର୍ଯ୍ୟଟନ।

ଏବଂ ଅଧିକାଂଶ କ୍ଷେତ୍ରରେ ଏହି ତୀର୍ଥଯାତ୍ରୀମାନେ ପଦଯାତ୍ରୀ। କ୍ୱଚିତ୍ ଯାନବାହନର ମଧ ପ୍ରଚଳିତ ଥିଲା। ଏବଂ ଏହିସବୁ ପର୍ଯ୍ୟଟନର ପ୍ରକୃତି ଥିଲା ଧୀର, ସ୍ଥିର, ଉଦାସୀନ, ଅସୁସ୍ଥ ଓ ସର୍ବସହିଷ୍ଣୁ। ଏହି ଲକ୍ଷ୍ୟର ପର୍ଯ୍ୟଟନକାରୀମାନେ ଥିଲେ ପ୍ରଶାନ୍ତ ଚିତ୍ତ, ପ୍ରସନ୍ନ ହୃଦୟ, ଗ୍ରହଣଶୀଳ, ନିର୍ବିକାର ଓ ସହାନୁଭୂତିସଂପନ୍ନ।

ମାତ୍ର ଆଜି ପର୍ଯ୍ୟଟନର ଲକ୍ଷ୍ୟ ବଦଳି ଯାଇଛି। ପର୍ଯ୍ୟଟକମାନଙ୍କ ପ୍ରକୃତି ମଧ ବଦଳିଯାଇଛି। ବିଶେଷ କରି ପାଶ୍ଚାତ୍ୟ ଦେଶମାନଙ୍କରେ ଜଡ଼ ବିଜ୍ଞାନର ଅନୁଗ୍ରହରୁ ଲୋକେ ଖୁବ୍ ଧନଶାଳୀ ହୋଇଯିବା ପରଠାରୁ ଏବଂ ଧନକୁ କେନ୍ଦ୍ରକରି ଜୀବନକୁ କେବଳ ଉପଭୋଗ କରିବାର ଦୁର୍ବାର ବାସନାରୁ ଏବଂ ମନୁଷ୍ୟ ଭିତରେ ସମ୍ପର୍କଟି ସର୍ବଦା ସବୁ କ୍ଷେତ୍ରରେ ପ୍ରତିଦ୍ୱନ୍ଦିତାମୂଳକ ହୋଇ ଉଠିବାରୁ ପାଶ୍ଚାତ୍ୟ ଦେଶବାସୀଙ୍କ ଭିତରେ ସର୍ବଦା ଏକ ଦୁଃସହ ଅସ୍ଥିରତାର ସୃଷ୍ଟି ହୋଇଯାଇଛି। ସେ ଦେଶମାନଙ୍କରେ ପରିବାର ଭାଙ୍ଗିଯାଇ ଧର୍ମଭାବ ଶିଥିଳ ହୋଇପଡ଼ିଛି ଧର୍ମର ମଧ ଆଉ ଧାରଣ କରିବାର ଶକ୍ତି ନାହିଁ। ଜୀବନକୁ ନେଇ ଆଉ କ'ଣ କରିବାକୁ ହେବ ଅଥବା ଏ ଜୀବନରେ ଆଉ କ'ଣ ସବୁ ସାଧିବାକୁ ହେବ। ଏକଥା ସେମାନଙ୍କୁ ଜଣାନାହିଁ। ନିତ୍ୟ ନୂଆ ନୂଆ ଜିନିଷର ଉପଭୋଗ-ଏବଂ ସେହିସବୁ ଜିନିଷ ଉପରେ ଖୁବ ଶୀଘ୍ର ବିରକ୍ତି ଓ ଅବସାଦ-ବାରମ୍ବାର ତୃଷ୍ଣା ଓ ବାରମ୍ବାର ଉପଭୋଗ ଏବଂ ପୁନଶ୍ଚ ଅବସାଦ ଏଇ ହେଲା ବର୍ତ୍ତମାନ ପାଶ୍ଚାତ୍ୟ ମନର ଅବସ୍ଥା। ତେଣୁ ଅଧୀରତା, ଅସ୍ଥିରତା ଏବଂ ଅକାରଣ ଉତ୍କ୍ଷିପ୍ତ ବ୍ୟାକୁଳତା ସଙ୍ଗେ ଅକାରଣ ଅବସାଦଜନିତ ବିକ୍ଷିପ୍ତ ଅଶାନ୍ତ ଚିତ୍ତବୃତ୍ତି ନେଇ ସେ ଦେଶର ଲୋକେ ଆଉ ଗୋଟିଏ ମାତ୍ର ସ୍ଥାନରେ ବ୍ୟବସ୍ଥିତ ହୋଇ ବସିପାରୁ ନାହାନ୍ତି। ଏହି ଉତ୍କ୍ଷିପ୍ତ ଅବସନ୍ନ, ଆକୁଳ, ବିକ୍ଷିପ୍ତ ଓ ବିଚଳିତ ମାନସିକତାରେ ପୀଡ଼ିତ ହୋଇ ସେ ଦେଶର ଧନୀ ଲୋକେ ବର୍ତ୍ତମାନ ଆଉ ଗଣ୍ଡୁଷେ ଜଳରେ ତୃଷ୍ଣା ନିବାରଣ କରିପାରୁ ନାହାନ୍ତି। କଣିକାଏ ନିର୍ମାଲ୍ୟମାତ୍ରାରେ କ୍ଷୁଧା ଉପଶମ କରିପାରୁନାହାନ୍ତି। ଜୀବନ ପ୍ରତି ସେମାନଙ୍କର ଦାବୀ ହେଲା ପ୍ରତି ମୁହୂର୍ତ୍ତରେ ଜୀବନ ଯେପରି ସେମାନଙ୍କୁ ନୂଆ ନୂଆ ଉତ୍ତେଜନା ଦେଉ। ନୂଆ ନୂଆ ତୃଷ୍ଣା ଦେଉ ଓ ନୂଆ ନୂଆ ତୃଷ୍ଣା ଉପଶମ ଲାଗି ନୂଆ ନୂଆ ପାନୀୟ ଦେଉ। ଜୀବନର ପ୍ରତିଟି ମୁହୂର୍ତ୍ତ ହେଉ ଉତ୍ତେଜନାମୟ ଉଚ୍ଚାଟନମୟ ବିହ୍ୱଳ ଓ ଉନ୍ମତ୍ତ। ଏହି ଢଙ୍ଗରେ ହିଁ ସେମାନେ ସେମାନଙ୍କ ଜୀବନକୁ ଉପଭୋଗ କରିବାକୁ ଚାହାନ୍ତି। ମୋଟ ଉପରେ ସେମାନେ ବର୍ତ୍ତମାନ ପଡ଼ିଛନ୍ତି ଅବସାଦର ଅନ୍ଧକୂପ ଭିତରେ ଏବଂ ସେମାନେ ଚାହୁଁଛନ୍ତି ବିପୁଳ ଉତ୍ତେଜନା ଏବଂ ଏଥିଲାଗି ମୁହୁଃ ମୁହୁଃ ମଦ୍ୟପାନ ଓ ଯୌନସୁଖ ଉଲ୍ଲାସ ହିଁ ଏକମାତ୍ର ବ୍ୟବସ୍ଥା ଏବଂ

ତାହା ପୁଣି ଗୋଟିଏ ସ୍ଥାନରେ ନୁହେଁ ବୁଲି ବୁଲି ଧାଇଁ ଧାଇଁ ସର୍ବତ୍ର ବିଶେଷତଃ ଅଜଣା ଅଦେଖା ସ୍ଥାନମାନଙ୍କରେ ଅବସାଦ ବା ବୋରଡ଼ମ୍ (Boredom)ରୁ ରକ୍ଷା ପାଇବା ହିଁ ସେହିମାନଙ୍କର ଏକମାତ୍ର ଅଭିଳାଷ। ତା' ଅର୍ଥ ସର୍ବଦା ସେମାନେ ରହିଛନ୍ତି ଗୋଟିଏ ସ୍ନାୟୁବିକ ଉତ୍‌କ୍ଷେପ ଭିତରେ ଏବଂ ସେଥିରୁ ରକ୍ଷା ପାଇବାପାଇଁ ସେମାନେ ଏଣେ ତେଣେ ବାଇଆଙ୍କ ଭଳି ଦୌଡ଼ୁଛନ୍ତି–ଧାଉଁଛନ୍ତି। ଅନ୍ୟ ବାଗରେ କହିଲେ ହେବ ଯେ ସେମାନେ ସର୍ବଦା ନିଜଠାରୁ ପଳାୟନ କରିବାକୁ ବ୍ୟଗ୍ର। ନିଜକୁ ସମ୍ମୁଖୀନ ହେବାପାଇଁ ସେମାନଙ୍କର ମହାଭୟ। ଜୀବନକୁ ତାର ସମସ୍ତ ଉପଭୋଗ୍ୟ ଉପାଦାନ ଓ ଉପକରଣ ଯୋଗାଇ ଦେବା ସତ୍ତ୍ୱେ ବି ଜୀବନ ସେମାନଙ୍କ ପକ୍ଷରେ ଏକ ଛଟପଟ ନିଃସଙ୍ଗତା ଏକ ଅଣନିଃଶ୍ୱାସୀ ଧାଁ' ଧପଡ଼। ଅସଲ କଥା ହେଲା ସେମାନେ ଗୋଟିଏ ଜାଗାରେ ସ୍ଥିର ଆତ୍ମସ୍ଥ ହୋଇ ବସି ପାରିବେ ନାହିଁ। ଗୋଟିଏ ଦୃଶ୍ୟକୁ ଆତ୍ମସ୍ଥ ହୋଇ ଦେଖି ପାରିବେ ନାହିଁ। ଗୋଟିଏ ସ୍ୱରକୁ ଆତ୍ମସ୍ଥ ହୋଇ ଶୁଣି ପାରିବେ ନାହିଁ।

ଆପଣା ବଗିଚାରେ ଥିବା ବଉଳ ଭରା ଆମ୍ବଗଛଟି କିମ୍ବା ତା' ଭିତରେ ଅଧାଲୁଚି ବସି ବୋବାଉଥିବା କୋଇଲିଟି, ବଗିଚା ଭିତରୁ କୁଲୁ କୁଲୁ ହୋଇ ଦଉଡ଼ୁଥିବା ଗୁଣ୍ଡୁଚି ମୂଷାଟିକୁ ସେମାନେ ଦିନ ଦିନ ଧରି ଆତ୍ମସ୍ଥ ଦୃଷ୍ଟିରେ ଦେଖି ବା ଶୁଣି ପାରିବେ ନାହିଁ। ସେମାନଙ୍କର ବର୍ତ୍ତମାନର ପ୍ରକୃତି ହେଲା ଗୋଟିଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନକୁ, ଗୋଟିଏ ରୂପରୁ ଆଉ ଗୋଟିଏ ରୂପକୁ, ଗୋଟିଏ ସ୍ୱରରୁ ଆଉ ଗୋଟିଏ ସ୍ୱରକୁ ଏବଂ ଗୋଟିଏ ସମୟରୁ ଆଉ ଗୋଟିଏ ସମୟକୁ ଉତ୍‌କ୍ଷିପ୍ତ ହୋଇ ଡେଇଁ ଚାଲିବା।

ଏବଂ ଏହି ଉଚ୍ଚାଟକ ପ୍ରବୃତ୍ତିର ଚରିତାର୍ଥ କରିବା ପାଇଁ ସେମାନଙ୍କ ହାତରେ ମଧ୍ୟ ରହିଛି ପ୍ରଚୁର ଧନ, ମଟର, ଏରୋପ୍ଲେନ, ଟ୍ରେନ୍। ଅତୀତର ଐଶ୍ୱର୍ଯ୍ୟକୁ ଦେଖାଇ ବିଦେଶୀ ମୁଦ୍ରା ଅର୍ଜନଲୋଭୀ, ଧନ ଓ ମନରେ ଦରିଦ୍ର ହୋଇପଡ଼ିଥିବା ଭାରତବର୍ଷ ଭଳି ଦେଶମାନେ ପୁଣି ସେମାନଙ୍କୁ ଅହରହ ଆବାହନ କରୁଛନ୍ତି। ସେଥିପାଇଁ ଭାରତବର୍ଷରେ ବର୍ତ୍ତମାନ ବିଦେଶୀ ପର୍ଯ୍ୟଟକମାନେ ଭିଡ଼ ବାନ୍ଧୁଛନ୍ତି। କିନ୍ତୁ ଭାରତରେ ସେମାନେ କ'ଣ ଦେଖିବାକୁ ବ୍ୟାକୁଳ ?

## (ତିନି)

ଭାରତବର୍ଷରେ ଏମିତି କ'ଣ ସବୁ ଅଛି ଯାହା ଦେଖିବା ପାଇଁ ବିଦେଶୀ ପର୍ଯ୍ୟଟକମାନେ ଏତେ ଏମିତି ଉଚ୍ଚାଟିତ ? ଏତେ କୁତୂହଳୀ ? ଭାରତବର୍ଷର ଚିରସବୁଜ ଅରଣ୍ୟ, ବଣ୍ୟଜୀବଜନ୍ତୁ, ହ୍ରଦ, ସମୁଦ୍ର, ପାହାଡ଼ପର୍ବତ ପ୍ରତି ସେମାନେ ଆକୃଷ୍ଟ। ଆଉ ମଧ୍ୟ, ଭାରତବର୍ଷର ପ୍ରାଚୀନ କାରୁକାର୍ଯ୍ୟପୂର୍ଣ୍ଣ ମନ୍ଦିର ଓ ସ୍ତୂପ ପ୍ରଭୃତି ଦେଖିବାକୁ

ମଧ୍ୟ ସେମାନେ ଉଦ୍‌ଗ୍ରୀବ। ଏଭଳି ଦେଖିବାର ଆକାଂକ୍ଷା ଆଦୌ ଦୂଷଣୀୟ ନୁହେଁ। କିନ୍ତୁ ପ୍ରାକୃତିକ ଦୃଶ୍ୟ ଦେଖି ମନ ଭିତରେ ତାର ଯୋଉ ଶାନ୍ତ ପ୍ରଭାବ ପଡ଼େ, ସେଭଳି ପ୍ରଶାନ୍ତି ଏହି ଅସ୍ଥିରମତି ପର୍ଯ୍ୟଟକମାନେ ସତକୁ ସତ ଲାଭ କରନ୍ତି କି? ଅବଶ୍ୟ ସେମାନଙ୍କ ଭିତରେ ସତକୁ ସତ କେତେକ ପର୍ଯ୍ୟଟକ ଥିବେ, ଯେଉଁମାନେ ଭାରତବର୍ଷର ଶାନ୍ତପ୍ରକୃତିର ପବିତ୍ର ସୁକୁମାର ସ୍ପନ୍ଦନ ଅନୁଭବ କରିବାକୁ ଆସନ୍ତି। କିନ୍ତୁ ଆମେ ଆମର ପ୍ରାକୃତିକ ଦୃଶ୍ୟସ୍ଥଳିଗୁଡ଼ିକର ସେହି ଶାନ୍ତ ନୀରବ ପବିତ୍ର ବାତାବରଣକୁ ରକ୍ଷା କରୁଛୁ କି? ଏପରି କି ଆମର ବିଶିଷ୍ଟ ପର୍ଯ୍ୟଟନ କେନ୍ଦ୍ରଗୁଡ଼ିକ ବି ପରିଚ୍ଛନ୍ନତା ଓ ନୀରବତା ଦୃଷ୍ଟିରୁ ଅତି ଦୟନୀୟ ଅବସ୍ଥାରେ ରହିଛି।

ସେହିପରି ଆମର ଜୀର୍ଣ୍ଣ ଓ ଭଗ୍ନ ମନ୍ଦିର, ମସ୍‌ଜିଦଗୁଡ଼ିକ ମଧ୍ୟ ଆମେ ଯେପରିଭାବେ ବିଦେଶୀ ପର୍ଯ୍ୟଟକମାନଙ୍କୁ ଦେଖାଇ ଚାଲିଛୁ ତାହା ଅତ୍ୟନ୍ତ ଲଜ୍ଜାକର। ଅଧିକାଂଶ ପର୍ଯ୍ୟଟକ ଆମର ଦେବତାବର୍ଜିତ ଜୀର୍ଣ୍ଣ ପ୍ରାଚୀନ ମନ୍ଦିର ଗାତ୍ରରୁ କେବଳ ଅଶ୍ଳୀଳ ମୂର୍ତ୍ତିଗୁଡ଼ିକର ସନ୍ଧାନ କରି ଫଟୋ ନେଉଥାନ୍ତି। ଭାରତବର୍ଷର ମନ୍ଦିର ଗାତ୍ରରେ ଯେଉଁସବୁ କାରୁକାର୍ଯ୍ୟ ହୋଇଛି ତାହା ପାଶ୍ଚାତ୍ୟ ଶିଳ୍ପ ବା କଳା ପରି ନୁହେଁ। ଆମର କାରୁକାର୍ଯ୍ୟ ପଛରେ ଧାର୍ମିକ ଚେତନା ରହିଛି। ଶ୍ରୀ ଅରବିନ୍ଦ ତାଙ୍କର "ଫାଉଣ୍ଡେସନ୍ ଅଫ୍ ଇଣ୍ଡିଆନ କଲଚର" ବା "ଭାରତୀୟ ସଂସ୍କୃତିର ଭିତ୍ତିଭୂମି" ଗ୍ରନ୍ଥରେ ଭାରତୀୟ କଳାକୃତିର ପଛରେ ଯେଉଁସବୁ ଆଧ୍ୟାତ୍ମ ଚେତନା ରହିଛି ତାର ବିଶ୍ଳେଷଣ କରି କହିଛନ୍ତି ଯେ, ଭାରତୀୟ କଳା ଆପାତତଃ ତାର ବାହ୍ୟ ରୂପରେ ଯେତେ ପାର୍ଥିବ ବିଷୟ ବୋଲି ମନେହେଲେ ବି ଯଥାର୍ଥରେ କେବଳ ପାର୍ଥିବ ପ୍ରେରଣାରେ ସେଗୁଡ଼ିକ ସୃଷ୍ଟି କରାଯାଇନାହିଁ। ସବୁ କଳାକୃତିର ମୂଳ ପ୍ରେରଣା ହେଲା ଏହିସବୁ ପାର୍ଥିବ ଦୃଶ୍ୟଗୁଡ଼ିକ ମାଧ୍ୟମରେ ସେହି ଅପାର୍ଥିବ ଶାଶ୍ୱତ ସତ୍ୟ-ଶିବ ଓ ସୁନ୍ଦର ପାଖରେ ଉପନୀତ ହେବା। ତେଣୁ ପାଶ୍ଚାତ୍ୟ ପର୍ଯ୍ୟଟକ ଦଳ ଆମ ମନ୍ଦିରଗାତ୍ରସ୍ଥ ଶିଳ୍ପକଳାକୁ ଯୋଉ ଦୃଷ୍ଟିରୁ ଦେଖୁଛନ୍ତି ତଦ୍ୱାରା ସେମାନେ ଆମ ସଂସ୍କୃତିକୁ କିପରି ଭୁଲ ଭାବେ ଦେଖୁଛନ୍ତି ଓ ଅର୍ଥ କରୁଛନ୍ତି ତାହା ନ ଜାଣି ଆମେ କେବଳ ଆମର ପର୍ଯ୍ୟଟକ ସଂଖ୍ୟା ବୃଦ୍ଧିର ଆଶା କରି ଚାଲିଛୁ। କାରଣ, ଆମେ ପର୍ଯ୍ୟଟନକୁ କେବଳ ଅର୍ଥନୈତିକ ଦୃଷ୍ଟିରୁ ଦେଖୁଛୁ ଏବଂ ଏହାର ସାଂସ୍କୃତିକ ଦିଗଟି ପ୍ରତି ପୁରାପୁରି ଆଖି ବୁଜି ଦେଇଛୁ। ଆମର ପର୍ଯ୍ୟଟନ ବିଭାଗରେ ଆମେ ଯୋଉ ସବୁ ଗାଇଡ଼ ନିଯୁକ୍ତ କରୁଛୁ ସେହି ଗାଇଡ଼ମାନେ ଯଥାର୍ଥରେ ଆମର ସଂସ୍କୃତି ଉପରେ କେତେଦୂର ବିଜ୍ଞତା ଅର୍ଜନ କରିଛନ୍ତି ଓ ସେମାନଙ୍କର ଆମ ସଂସ୍କୃତି ଉପରେ କେତେଦୂର ଆନ୍ତରିକ ଆସ୍ଥା ଓ ବିଶ୍ୱାସ ରହିଛି ସେ ବିଷୟରେ ଆମର କର୍ତ୍ତାମାନେ ନିଶ୍ଚିନ୍ତ ଅଛନ୍ତି ତ? ବିଭିନ୍ନ ସ୍ତରରେ ପର୍ଯ୍ୟଟକମାନଙ୍କ ଲାଗି ଆମର ଗାଇଡ଼ ବ୍ୟବସ୍ଥାଟିକୁ ଆମେ କେତେଦୂର ସୁବ୍ୟବସ୍ଥିତ କରୁଛୁ?

ଏସବୁ ପ୍ରତି ବର୍ତ୍ତମାନର ସରକାର ଯଥାଯଥ ଦୃଷ୍ଟିଦେବା ଉଚିତ। ଏହା ବ୍ୟତୀତ ଆଉ ଗୋଟିଏ କଥା ମଧ ଆମର ଲୋକପ୍ରତିନିଧିମୂଳକ ସରକାର ବୁଝିବା ଉଚିତ। ତା'ହେଲା–ପର୍ଯ୍ୟଟନ କେନ୍ଦ୍ରଗୁଡ଼ିକରେ କେବଳ ଫାଇଭ ଷ୍ଟାର ହୋଟେଲ ନିର୍ମାଣ କରିଦେଇ ସରକାର ନିଶ୍ଚିନ୍ତ ହୋଇ ବସନ୍ତୁ ନାହିଁ। ବର୍ତ୍ତମାନର ସମସ୍ୟା ହେଲା, ଆମର ନିଜ ଲୋକେ ଅଳ୍ପ ଖର୍ଚ୍ଚରେ କେମିତି ସାରା ଓଡ଼ିଶା ବୁଲି ନିଜ ରାଜ୍ୟର ପ୍ରଧାନ ସ୍ଥାନଗୁଡ଼ିକ ସପରିବାର ଦେଖିପାରିବେ। ଅବଶ୍ୟ ରାଜ୍ୟ ସରକାର ଗମନାଗମନ ଦିଗରେ କିଛି ବ୍ୟବସ୍ଥା କରିଛନ୍ତି; କିନ୍ତୁ ସାଧାରଣ ନିମ୍ନବିତ୍ତ ଓଡ଼ିଆ ପର୍ଯ୍ୟଟକମାନଙ୍କ ଲାଗି କୋଣାର୍କ, ରମ୍ଭା, ଶିମିଳିପାଳ, ନୃସିଂହନାଥ, ହରିଶଙ୍କର ପ୍ରଭୃତି ସ୍ଥାନରେ ସରକାର ଯଦି ମଧ୍ୟମ ଧରଣର ଚଟିଘର ନିର୍ମାଣ କରନ୍ତେ ତେବେ ଅଳ୍ପ ଭଡ଼ା ଦେଇ ସେମାନେ ସେ ସବୁ ଚଟିଘରେ ଖାଇପିଇ ରହନ୍ତେଓ ପର୍ଯ୍ୟଟନକୁ ଆନନ୍ଦ ଉପଭୋଗ କରନ୍ତେ। ଚଟିଘର ଗୁଡ଼ିକ ଅଳ୍ପ ଖର୍ଚ୍ଚରେ ଟାଇଲ ବା ଆଜବେଷ୍ଟସ ହେଲେ ମଧ କ୍ଷତି ନାହିଁ ଏବଂ ସେ ସବୁ ଘରେ କେବଳ ସାଧା ଖଟ, ପାଇଖାନା ଓ ପାଣି ଯୋଗାଇ ଦେଇପାରିଲେ ମଧ ଯଥେଷ୍ଟ ହୁଅନ୍ତା।

ପୂର୍ବେ ତୀର୍ଥସ୍ଥାନମାନଙ୍କରେ ଧନୀ ଲୋକମାନେ ଧର୍ମଶାଳାମାନ ନିର୍ମାଣ କରୁଥିଲେ ଓ ରାସ୍ତାକଡ଼ରେ ବିଶେଷ ବିଶେଷ ଘାଟିଜାଗାମାନଙ୍କରେ ଚଟିଘର ନିର୍ମାଣ କରାଯାଇ ପଥିକମାନଙ୍କୁ ସ୍ୱଳ୍ପ ଭଡ଼ାରେ ରହିବାକୁ ସୁବିଧା ଦିଆଯାଉଥିଲା; ମାତ୍ର ଆଉ ବର୍ତ୍ତମାନ ସେପରି ଧର୍ମଶାଳା ବା ଚଟିଘର ନିର୍ମାଣ କରାଯାଉ ନାହିଁ। ଧନୀ ଲୋକେ ବରଂ ହୋଟେଲ ନିର୍ମାଣ କରି ଲାଭବାନ ହେବାକୁ ବସିଲେଣି। ଏ ସ୍ଥଳେ ଆମର ପର୍ଯ୍ୟଟନ ବିଭାଗ ଏ ସବୁର ଦାୟିତ୍ୱ ନେଲେ ସାଧାରଣ ଲୋକେ ବହୁ ଭାବରେ ଉପକୃତ ହୁଅନ୍ତେ।

ପରିଶେଷରେ ଆମର କୋଣାର୍କ ପର୍ଯ୍ୟଟନ କେନ୍ଦ୍ରଟି ସମ୍ବନ୍ଧେ ଅଳ୍ପ କିଛି କହି ଏ ପ୍ରବନ୍ଧ ସାଙ୍ଗ କରୁଛି। ପର୍ଯ୍ୟଟନ ବିଭାଗ କୋଣାର୍କକୁ ସୁନ୍ଦର କରିବା ପାଇଁ ଓ ସ୍ୱାଚ୍ଛନ୍ଦ୍ୟପୂର୍ଣ୍ଣ କରିବାପାଇଁ ଯେତେ ଯାହା କରନ୍ତୁ ଭଲକଥା। ମାତ୍ର କୋଣାର୍କ ପରିବେଶର ସେହି ସ୍ୱପ୍ନାଚ୍ଛନ୍ନଭାବ, ସେହି ପ୍ରଶାନ୍ତ ନିରବତା, ସେହି ପବିତ୍ର ଗାମ୍ଭୀର୍ଯ୍ୟ, ସେହି ସହଜ ସାବଲୀଳ ସ୍ୱାଭାବିକତାକୁ ନଷ୍ଟ କଲାଭଳି କୌଣସି କାର୍ଯ୍ୟ ଯେପରି ନ କରନ୍ତି। ଅନେକ ସମୟରେ କର୍ମକର୍ତ୍ତାମାନଙ୍କର ଯଥାର୍ଥ ଜ୍ଞାନ, ବିଜ୍ଞତା, ସୌନ୍ଦର୍ଯ୍ୟ ଓ ସୌନ୍ଦର୍ଯ୍ୟବୋଧର ଅଭାବରେ କେବଳ ହଇଚଇ କରି ହାଲୋଳମୟ କରିଦେବାର ଉନ୍ମାଦନାରୁ ଗୋଟିଏ ସୁନ୍ଦର ଐତିହାସିକ ରମଣୀୟ ସ୍ମୃତିପୀଠର ମୌଳିକ ଧର୍ମଟି ନଷ୍ଟଭ୍ରଷ୍ଟ ହୋଇଯାଏ ଏବଂ ତାହା କେବଳ ହୋଟେଲ, କିଣା-ବିକା ଓ ବୃଥା କୋଳାହଳପୂର୍ଣ୍ଣ ଭିଡ଼ଁଭାଡ଼ଁରେ ପର୍ଯ୍ୟବସିତ ହୋଇଉଠେ।



# ଉନ୍ମତ୍ତ କାରୁଣ୍ୟ

ସେଦିନ ଖବର ପ୍ରକାଶ ପାଇଛି ଯେ, ମାର୍କ ଡେଭିଡ୍ ଚାପମାନ ନାମକ ଜଣେ ଉନ୍ମାଦଗ୍ରସ୍ତ ଯୁବକ ବିଟଲସମାନଙ୍କ ଗୁରୁ ଓ ପ୍ରଖ୍ୟାତନାମା ରକ ସଙ୍ଗୀତଜ୍ଞ ଜନ ଲେନନ୍‌ଙ୍କୁ ଗୁଳିମାରି ହତ୍ୟା କରିଛନ୍ତି ଏବଂ ଏହି ହତ୍ୟାକାରୀ ଚାପମାନ ବର୍ତ୍ତମାନ ମନୋବୈଜ୍ଞାନିକ ତତ୍ତ୍ୱାବଧାନରେ ଚିକିତ୍ସିତ ହେଉଛନ୍ତି। ମନ-ଡାକ୍ତରମାନେ ତାଙ୍କୁ ପ୍ରତି ପନ୍ଦର ମିନିଟରେ କଣ ସବୁ ପରୀକ୍ଷା ନିରୀକ୍ଷା କରୁଛନ୍ତି। ଚାପମାନ କାହିଁକି ଲେନନଙ୍କ ଭଳି ଜଣେ ପ୍ରଖ୍ୟାତ ଲୋକପ୍ରିୟ କବି ଓ ସଙ୍ଗୀତଜ୍ଞଙ୍କୁ ହତ୍ୟାକଲେ ତାର କାରଣ ଏ ଯାବତ୍ ପୋଲିସ ଗୁଇନ୍ଦାମାନେ ଜାଣିପାରି ନାହାନ୍ତି।

କିନ୍ତୁ ଡେଭିଡ୍ ମୁର ନାମକ ଜଣେ ମାନବବାଦୀ ଉତ୍ସାହୀ ଜନସେବକ କେତେକ ତଥ୍ୟ ପ୍ରକାଶ କରିଛନ୍ତି, ଯେଉଁଥିରୁ ଲେନନଙ୍କ ହତ୍ୟାକାରୀ ଡେଭିଡ୍ ଚାପମାନଙ୍କ ସମ୍ବନ୍ଧେ କିଛି ଜାଣିବାକୁ ମିଳେ। ଡେଭିଡ୍ ମୁର ନିଜେ ଚାପମାନଙ୍କ ସାଙ୍ଗେ ଭିଏତନାମର ଶରଣାର୍ଥୀମାନଙ୍କ ଥଇଥାନ ନେଇ କାର୍ଯ୍ୟ କରୁଥିଲେ। ଡେଭିଡ୍ ମୁରଙ୍କ ମତରେ ଚାପମାନ ଅନେକ ଦିନଧରି ଏଇ ଲେନନ ଓ ତାଙ୍କର ବିଟଲ୍‌ସ କବି, ଗାୟକମାନଙ୍କ ଉପରେ ବିରକ୍ତ ଓ କ୍ରୁଦ୍ଧ ହୋଇରହିଥିଲେ; କାରଣ ଲେନନ୍ କୁଆଡ଼େ ବହୁବାର ପ୍ରଚାର କରି ବୁଲୁଥିଲେ ଯେ, ତାଙ୍କର ବିଟଲ୍‌ସ କବି ଓ ଗାୟକମାନେ ଯୀଶୁଖ୍ରୀଷ୍ଟଙ୍କଠାରୁ ବେଶି ଲୋକପ୍ରିୟ ହୋଇପଡ଼ିଲେଣି। ଚାପମାନ ଏହାଶୁଣି ଖୁବ୍ କ୍ଷୁବ୍ଧ ହୋଇ ବାରମ୍ବାର କ୍ରୋଧୋକ୍ତି କରୁଥିଲେ—ଏହି ବିଟଲ୍‌ସମାନେ ନିଜକୁ ଏମିତି କଣ ମନେକରୁଛନ୍ତି ଯେ ସ୍ୱୟଂ ଈଶ୍ୱରପୁତ୍ର ଯୀଶୁଖ୍ରୀଷ୍ଟଙ୍କ ସଙ୍ଗେ ନିଜକୁ ତୁଳନା କରୁଛନ୍ତି ? ଏଇ ଆଡ଼୍‌ବାଇଆମାନଙ୍କର ଆସ୍ପର୍ଦ୍ଧା ତ କିଛି କମ ନୁହେଁ!

ମୁର ମଧ୍ୟ ହତ୍ୟାକାରୀ ଚାପମାନଙ୍କ ସମ୍ବନ୍ଧେ ଆହୁରି ଗୋଟିଏ ତଥ୍ୟ ପ୍ରକାଶ କରିଛନ୍ତି, ତା'ହେଲା ଚାପମାନ ୧୯୭୦-୭୫ ମସିହାଠାରୁ ଏକ ଦୁଃସହ ମାନସିକ ବିପର୍ଯ୍ୟୟର ଶିକାର ହୋଇପଡ଼ିଥିଲେ। ତାଙ୍କର ପିତା-ମାତାଙ୍କ ବିବାହ-ବିଚ୍ଛେଦ ପରେ ପରେ ହିଁ ଚାପମାନଙ୍କର ମସ୍ତିଷ୍କ ବିକୃତି ଆରମ୍ଭ ହେଲା ଏବଂ ଲେନନ୍‌ଙ୍କୁ ହତ୍ୟା କରିବା ପଛରେ ଏହି ମସ୍ତିଷ୍କ ବିକୃତିର ଅନ୍ଧ ଓ ଅସଂଯତ ଉତ୍ତେଜନା ହିଁ ରହିଛି।

ଏଣେ ଡାକ୍ତରଖାନା କର୍ତ୍ତୃପକ୍ଷ ଆଶଙ୍କା ପ୍ରକାଶ କରୁଛନ୍ତି ହୁଏ ତ ନରହତ୍ୟା କେସ୍‌ର ସମ୍ମୁଖୀନ ପାଇଁ ଚାପମାନଙ୍କର ମାନସିକ ଭାରସାମ୍ୟ ଯଥେଷ୍ଟ ହୋଇ ନ ପାରେ।

ଲେନନ୍‌ଙ୍କ ମୃତ୍ୟୁପରେ ତାଙ୍କ ପତ୍ନୀଙ୍କ ପରାମର୍ଶ ଅନୁସାରେ ତାଙ୍କର ମୃତଦେହକୁ ବହୁ ଦୂରସ୍ଥ ଏକ ନିର୍ଜନ ସ୍ଥାନରେ କବର ଦିଆଯାଇଛି; କାରଣ ବିଟେଲ୍‌ସମାନଙ୍କ ଗୁରୁ ଏବଂ ପ୍ରାଣାଧିକ କବି ଓ ସଙ୍ଗୀତଜ୍ଞ ମୃତ୍ୟୁରେ ତାଙ୍କର ସମର୍ଥକମାନେ ଏତେଦୂର ମୂହ୍ୟମାନ ଓ ଶୋକୋନ୍ମତ୍ତ ହୋଇପଡ଼ିଛନ୍ତି ଯେ, କବରଟିର ସନ୍ଧାନ ପାଇଲେ ସେମାନେ ଲେନନ୍‌ଙ୍କର ମୃତଦେହକୁ ତା' ଭିତରୁ ଖୋଳି ବାହାର କରି ଓ ତାକୁ କୁଣ୍ଡାଇ ଧରି କି ଯେ ସବୁ ଉନ୍ମାଦନାପୂର୍ଣ୍ଣ ଲୀଳା ବା କାଣ୍ଡକାରଖାନା ସୃଷ୍ଟିକରି ବସିବେ, ତାହା ଆଗରୁ କଳ୍ପନା କରି ହେବ ନାହିଁ; କାରଣ ଏହି ମୃତ୍ୟୁ ସମ୍ବାଦ ଶୁଣିବାମାତ୍ରେ ଦୁଇଜଣ ଲେନନ୍-ଅନୁରକ୍ତ ଯୁବକ ସଙ୍ଗେ ସଙ୍ଗେ ଆତ୍ମହତ୍ୟା କରି ସାରିଲେଣି ଏବଂ ଜଣେ ଅଳ୍ପବୟସ୍କା ତରୁଣୀ ମାତ୍ରାତିରିକ୍ତ ଭାବେ ଶୋକବିହ୍ବଳା ହୋଇ ଅତ୍ୟଧିକ ନିଦ୍ରାବଟିକା ଖାଇ ଚିରଦିନ ଲାଗି ଶୋଇଗଲାଣି । ଆଉ ଜଣେ ତିରିଶି ବର୍ଷର ଯୁବକ ନିଜକୁ ଗୁଳିକରି "ଚିରଦିନ ଲାଗି ଲେନନ୍‌ଙ୍କ ମୃତ୍ୟୁଜନିତ ଦୁଃଖରୁ ତ୍ରାହି ପାଇଲେ" ବୋଲି ଖଣ୍ଡିଏ କାଗଜରେ ଲେଖିଯାଇଛନ୍ତି । କ୍ରମଶଃ ମୃତ ଲେନନ୍‌ଙ୍କ ପାଇଁ ଶୋକବିହ୍ବଳ ଜନିତ ଆତ୍ମହତ୍ୟାର ସଂଖ୍ୟା ମଧ୍ୟ ବଢ଼ୁଛି ଏବଂ ଲେନନ୍‌ଙ୍କ ଅନୁରକ୍ତ ଶିଷ୍ୟ, ପ୍ରଶିଷ୍ୟମାନେ ଶୋକ-ଗମ୍ଭୀର କଣ୍ଠରେ ଘୋଷଣା କରିଛନ୍ତି ଯେ, "ବର୍ଷକ ଭିତରେ ବହୁ ଆତ୍ମହତ୍ୟା ଦ୍ୱାରା ଲେନନଙ୍କର ସେହି ମହନୀୟ ମୃତ୍ୟୁ ପ୍ରତି ପରମ ଓ ଚରମ ପ୍ରୀତିପୂର୍ଣ୍ଣ ସମ୍ମାନ ପ୍ରଦର୍ଶନ କରାଯିବ ।" ଲେନନ୍ ବିରୋଧୀ ଗୋଷ୍ଠୀର ଜଣେ ଭଦ୍ରବ୍ୟକ୍ତିଙ୍କ ପତ୍ନୀ ଲେନନ୍‌ଙ୍କର ଏତେ ଅନୁରକ୍ତା ଯେ, ସେ ପ୍ରକାଶ୍ୟ ଭାବେ ଘୋଷଣା କରିଛନ୍ତି ବିଟେଲ୍‌ମାନେ ଯିଶୁଖ୍ରୀଷ୍ଟଙ୍କ ଠାରୁ ଲୋକପ୍ରିୟ ହୁଅନ୍ତୁ ବା ନ ହୁଅନ୍ତୁ; କିନ୍ତୁ ଲେନନ ନିଜେ ଥିଲେ ଏଇ ସବୁ ତଥାକଥିତ ଖ୍ରୀଷ୍ଟିଆନ ଓ ବିଟେଲ୍‌ମାନଙ୍କ ଅପେକ୍ଷା ଅଧିକ ଜନପ୍ରିୟ ଓ ମହାନ ଆତ୍ମା ।

ଏଣେ ପୁଣି ହତ୍ୟାକାରୀ ଚାପମାନଙ୍କ ପତ୍ନୀ ମଧ୍ୟ ଲେନନ୍‌ଙ୍କ ମୃତ୍ୟୁରେ ତାଙ୍କର ଶୋକସନ୍ତପ୍ତ ପରିବାର ପ୍ରତି ଗଭୀର ଦୁଃଖ ଓ ସମବେଦନା ପ୍ରକାଶ କରି କହିଛନ୍ତି ଯେ, ଲେନନଙ୍କ ମୃତ୍ୟୁ ପାଇଁ ସେ ଖୁବ୍ ଦୁଃଖିତ; କିନ୍ତୁ ଲେନନ୍‌ଙ୍କର ଏମିତି ମରିବା ଛଡ଼ା ଗତ୍ୟନ୍ତର ନ ଥିଲା ଏବଂ ତାଙ୍କର ପତ୍ନୀ ଓ ପୁତ୍ରଙ୍କ ଲଲାଟରେ ମଧ୍ୟ ଏ ଦୁଃଖ ଭୋଗିବା ଛଡ଼ା ଆଉ କିଛି ନ ଥିଲା ।

କିନ୍ତୁ ମୃତ ଲେନନ୍‌ଙ୍କ ପତ୍ନୀ, ତାଙ୍କ ପତିଙ୍କର ଅଗଣିତ ସମର୍ଥକ, ସମ୍ବେଦକ, ଅନୁଗାମୀ ଓ ଅନୁରକ୍ତମାନଙ୍କ ଉଦ୍ଦେଶ୍ୟରେ ବ୍ୟାକୁଳ ଅନୁରୋଧ ଜଣାଇ କହିଛନ୍ତି ଯେ, ଏତେ ସାନ୍ତ୍ୱନାବାଣୀ, ଏତେ ଫୁଲ, ଏତେ ଉନ୍ମତ୍ତ ଶୋକ ଓ ଏତେ ଆତ୍ମହତ୍ୟା ପରିବର୍ତ୍ତେ ଯଦି ତାଙ୍କୁ ପତି ସ୍ଥାପନ କରିଥିବା ସ୍ପିରିଟ ଫାଉଣ୍ଡେସନ ନାମକ ଦାତବ୍ୟ ଅନୁଷ୍ଠାନକୁ କେହି କିଛି ଟଙ୍କା ମୁକ୍ତହସ୍ତରେ ଦାନ କରନ୍ତେ ତା'ହେଲେ ଲେନନ୍‌ଙ୍କ ସ୍ପିରିଟ୍ (ଜୀବାତ୍ମା) ପ୍ରତି ଯଥେଷ୍ଟ ଓ ଯଥାର୍ଥପ୍ରେମ ଓ ସମ୍ମାନ ପ୍ରଦର୍ଶନ କରାଯାଇ ପାରନ୍ତା ।

ଏମିତି ଭାବେ ଲେନନ୍‌ଙ୍କ ହତ୍ୟାକାଣ୍ଡ ପରେ ପରେ ସେଇସବୁ ପାଶ୍ଚାତ୍ୟ ଦେଶମାନଙ୍କର ନାନାଦି ହାଇହୋଳି ଖେଳିଯାଇଛି। କହିବା ବାହୁଲ୍ୟ ଯେ, ଆମ ଭାରତୀୟମାନଙ୍କ ତଥାକଥିତ ଶାନ୍ତ ସମାହିତ ଧାର୍ମିକ ଦୃଷ୍ଟିରେ ଏ ସମସ୍ତ କାଣ୍ଡକାରଖାନା ହେଲା ଅଶାନ୍ତ ଉନ୍ମାଦଗ୍ରସ୍ତ ଲୋକଙ୍କ ଅସ୍ଥିର କର୍ମକାଣ୍ଡ। ତା'ହେଲେ ବି ଯେ କେହି ହୃଦୟବାନ ଓ ଯଥାର୍ଥ ସ୍ଥିରମସ୍ତିଷ୍କ ବ୍ୟକ୍ତି ଏଇସବୁ ଉନ୍ମତ୍ତ କ୍ରିୟାକଳାପ ଭିତରୁ କିଛି ନା କିଛି ମାନବିକ ସମ୍ବେଦନା ଓ ଧାର୍ମିକତାର ପରିଚୟ ନିଶ୍ଚୟ ପାଇପାରିବ। ଅବଶ୍ୟ ଏଥିରେ ସନ୍ଦେହ ନାହିଁ ଯେ, ଏ ସବୁ ହେଲା ନିମ୍ନ ପ୍ରାଣଶକ୍ତିର ଉନ୍ମତ୍ତ ଅନିୟନ୍ତ୍ରିତ ଉତ୍ତେଜନା; କିନ୍ତୁ ଏହାର ଦ୍ୱାହି ଦେଇ ଆମେ ଆମ ଭାରତୀୟମାନଙ୍କର ପ୍ରତିକ୍ରିୟାହୀନ, ଅନୁଭୂତିହୀନ, ପ୍ରତ୍ୟୁତ୍ତରହୀନ, ଭାବାବେଗଲେଶହୀନ ଅସଂପୃକ୍ତ ଅହଂକୈନ୍ଦ୍ରିକ ଘୋର ତାମସିକତାରେ ଜଡ଼ୀଭୂତ ସ୍ଥିତିକୁ ମଧ୍ୟ ମଣିଷର ଆଦର୍ଶବସ୍ଥା ବୋଲି ଭାବି ନେବା ଘୋର ମୂଢ଼ତା ହେବ।

କିନ୍ତୁ ଭାରତୀୟମାନେ ମଧ୍ୟ କମ୍ ଉନ୍ମତ୍ତ ନୁହନ୍ତି। କିନ୍ତୁ ସେ ଉନ୍ମତ୍ତତାର ସ୍ୱରୂପ ଓ କାରଣ ଭିନ୍ନ।

**

# ହାଇଫେନ୍ ଉଠିଗଲା ?

ଆମ ପିଲାଦିନେ ହାଇସ୍କୁଲ କି କଲେଜରେ ପଢ଼ିଲାବେଳେ, ସେତେବେଳର ଜଣେ ବିଖ୍ୟାତ ଜନପ୍ରିୟ ପ୍ରଣୟ-ପ୍ରଧାନ ଉପନ୍ୟାସ ଲେଖକ ସ୍ୱର୍ଗତ ଚନ୍ଦ୍ରମଣି ଦାସଙ୍କ କୃତ 'ହାଇଫେନ୍' ନାମକ ଖଣ୍ଡିଏ ଉପନ୍ୟାସ ପ୍ରକାଶିତ ହୋଇ ହଠାତ୍ ସାରା ଓଡ଼ିଶାରେ ଚହଳ ପକାଇଦେଲା ଓ ବହିଟି ଅଳ୍ପଦିନ ଭିତରେ ବହୁସଂଖ୍ୟାରେ ବିକ୍ରୀ ହୋଇ ସଙ୍ଗେ ସଙ୍ଗେ ଦୁଇ ତିନୋଟି ସଂସ୍କରଣ ବାହାରି ପଡ଼ିଲା। ସେ ବହିଟି ହଠାତ୍ ଏତେ ଜନାଦୃତ ହେବାର କାରଣ ହେଲା, ବହିଟିରେ ଜଣେ ଯୁବକ ଓ ଜଣେ ଯୁବତୀଙ୍କର ଗୋପନ ପ୍ରୀତି ବିଷୟ ଖୁବ୍ ରସାଳ ଭଙ୍ଗୀରେ ଯୌନଭାବ ଉତ୍ତେଜକ ଭାଷା ଓ ବର୍ଣ୍ଣନାରେ ଲିଖିତ ହୋଇଥିଲା। ଏପରିକି କି ଯୁବକ-ଯୁବତୀଙ୍କର ଦୈହିକ ମିଳନ ବିଷୟଟି ମଧ୍ୟ ତହିଁରେ ବର୍ଣ୍ଣିତ ହୋଇଥିଲା ଏବଂ ଲେଖକ ସେପରି ଦୁର୍ଘଟଣାଟି ବର୍ଣ୍ଣନା କଲାବେଳେ ଯୌନକ୍ରିୟାସୂଚକ ଶବ୍ଦମାନଙ୍କୁ ବ୍ୟବହାର ନ କରି ସେ ସ୍ଥଳରେ ଗୋଟିଏ ହାଇଫେନ୍ ଦେଇ କଥାଟି ସୂଚାଇ ଦେଇଥିଲେ। କହିବା ବାହୁଲ୍ୟ, ଏପରି ବହିଟିକୁ ପଢ଼ିବାଲାଗି ସେକାଳେ ଆବାଳ-ବୃଦ୍ଧ-ବନିତା ଓ ଆମୂର୍ଖ ପଣ୍ଡିତ ସମସ୍ତେ ଆଗ୍ରହାନ୍ୱିତ ହେଉଥିଲେ। କେତେକ ପାଠକ ପାଠିକା ନିଶ୍ଚିନ୍ତ ଭାବେ ଯୌନଭାବ ଉଦ୍ଦୀପନା ଲାଳସାରେ ଓ ଅନ୍ୟ କେତେକ କେବଳ କୌତୂହଳର ବଶବର୍ତ୍ତୀ ହୋଇ ବହିଟିକୁ ଯୋଉଠୁ ହେଲେ ଆଣି ଯୋଗାଡ଼ କରି ପଢୁଥିଲେ ଏବଂ ସମସ୍ତେ ପଢ଼ିସାରି ଖୁବ୍ ଆନନ୍ଦ ଉଲ୍ଲାସରେ ଲେଖକ ଚନ୍ଦ୍ରମଣିବାବୁଙ୍କୁ ନିନ୍ଦା କରୁଥିଲେ। ମୋର ମନେଅଛି, ମୋର ଜଣେ ଚାଳିଶି ପଇଁଚାଳିଶ ବର୍ଷର ଶିକ୍ଷକ ସେ ବହିଟିକୁ ପଢ଼ିସାରି ଆମ କ୍ଲାସରେ ସେଇ ବହିଟିର ଉଲ୍ଲେଖ କରି ସେହି ନୀତି ଓ ରୁଚିହୀନ ଚରିତ୍ରନଷ୍ଟକାରୀ ଅଶ୍ଳୀଳ ବହିଟିକୁ କେହି ଯେପରି ନ ପଢ଼ନ୍ତି, ସେଥିଲାଗି କଡ଼ା ନିର୍ଦ୍ଦେଶ ଓ ଉପଦେଶ ଦେଇଥିଲେ ଏବଂ ସମଗ୍ର ଯୌବନକାଳଟିକୁ କଠିନ ବ୍ରହ୍ମଚର୍ଯ୍ୟ ସାଧନ ଦ୍ୱାରା ଚିରସ୍ଥାୟୀ କରିବାକୁ ମଧ୍ୟ ଉପଦେଶ ଦେଇଥିଲେ।

କହିବା ବାହୁଲ୍ୟ ଯେ, ମୁଁ ସେଇଦିନ 'ହାଇଫେନ' ବହିଟିର ନାମ ଶୁଣିଲି ଏବଂ ତାକୁ ପଢ଼ିବାର ଅଦମ୍ୟ କୌତୂହଳ ଓ ଆଗ୍ରହକୁ ସମ୍ଭାଳି ନ ପାରି, ମୋର ଭାଉଜଲେଖା ହେବ ଜଣକଠାରୁ ବହିଟି ଆଣି ରାତିସାରା ଅନିଦ୍ରା ହୋଇ ଲଣ୍ଠନ ଆଲୋକରେ ପଢ଼ି ଶେଷ କରିଦେଲି। ବହିଟି ମୋତେ ସେ ବୟସରେ ସତକୁ ସତ ଖୁବ୍ ଭଲ ଲାଗିଥିଲା। ଏବଂ କହିବାରେ ଲଜ୍ଜା ନାହିଁ ଯେ ତାହା ମୋ

ମନରେ କିଞ୍ଚିତ୍ ପରିମାଣରେ ଯୌନଭାବର ଅନୁଭୂତି ସଂଚାର କରି ମନକୁ ଖୁବ୍ ଉଲ୍ଲସିତ କରିଥିଲା। ମାତ୍ର ମୋର ବର୍ତ୍ତମାନ ଭଳି ମନେଅଛି—ଚନ୍ଦ୍ରମଣିବାବୁ ବହିଟିରେ ଅଯଥା ଏତେ ହାଇଫେନ୍ କାହିଁକି ବ୍ୟବହାର କରିଥିଲେ ବୋଲି ମୋ ମନରେ ପ୍ରଶ୍ନ ଜାଗିଥିଲା। 'ଚୁମ୍ବନ' 'ଆଲିଙ୍ଗନ' ଆଦି ଶବ୍ଦଗୁଡ଼ିକ ପାଇଁ ଏତେ ଲଜ୍ଜା ସଙ୍କୋଚର ବା କ'ଣ ଆବଶ୍ୟକ ଥିଲା ? ସେଥିରେ ଏମିତି କିଛି ଦୈହିକ ଅଶ୍ଳୀଳ ବର୍ଣ୍ଣନା ଥିବା ଭଳି ମୋର ଏବେ ବି ମନେହେଉ ନାହିଁ। କିନ୍ତୁ ସମ୍ଭବତଃ ସେତେବେଳେ ବହିଟି ଯୁବସମାଜକୁ ବିପଥଗାମୀ କରିବ ଓ ଯୁବକ ଯୁବତୀମାନଙ୍କର ନୀତି ଓ ରୁଚିବୋଧକୁ ବିଗାଡ଼ି ଦେବ, ଏହି ଆଶଙ୍କାରେ ସରକାର ସେ ବହିଟିକୁ ବାଜ୍ୟାପ୍ତ କରିଥିଲେ।

ଇତିମଧ୍ୟରେ ତିରିଶି-ପଇଁତିରିଶ ବର୍ଷ ଅତୀତ ହୋଇଗଲାଣି। ଓଡ଼ିଆ ଭାଷାରେ କେତେ ଗଳ୍ପ ଉପନ୍ୟାସ ଲେଖାହେଲାଣି ଏବଂ ସେଥିରୁ ବହୁ ଗଳ୍ପ ଉପନ୍ୟାସରେ ଏପରି ଘଟଣାମାନଙ୍କର ବର୍ଣ୍ଣନା ରହିଛି ଓ ଏପରି ଶବ୍ଦ ଓ ବାକ୍ୟମାନ ଲିଖିତ ହୋଇଛି ଯେ, ସେଦିନର 'ହାଇଫେନ' ଲେଖକ ଚନ୍ଦ୍ରମଣିବାବୁ ଆଜି ଯଦି ଥାଆନ୍ତେ, ତେବେ ତାଙ୍କ ମୁଣ୍ଡ ତଳକୁ ହୋଇଯାନ୍ତା।

କିନ୍ତୁ ଗଳ୍ପ ଉପନ୍ୟାସର କଥା ମୁଁ ଏଠି କହୁନାହିଁ; କାରଣ ଗଳ୍ପ ଉପନ୍ୟାସାଦିରେ ବର୍ଣ୍ଣିତ ବିଷୟଟି ଆପାତତଃ ଅଶ୍ଳୀଳ ମନେହେଲେ ବି ସହଜରେ ତାକୁ ଅଶ୍ଳୀଳ ବୋଲି କହିହେବ ନାହିଁ; କାରଣ ଯୌନ ବ୍ୟାପାରଟିଏ ବର୍ଣ୍ଣନା କରିଦେଲେ ବା ସେ ସମ୍ପର୍କୀୟ କଥାଟି କହିଲେ ତାହା ଅଶ୍ଳୀଳ ହୋଇଯାଏ ନାହିଁ। ଅଶ୍ଳୀଳ ହୋଇ ମଧ୍ୟ ତାହା ଯଦି ସୁନ୍ଦର ହୋଇଥାଏ, ତାହା ଯଦି ଅନ୍ୟାନ୍ୟ ଗଭୀର ଭାବ ବା ଅନୁଭୂତିଗୁଡ଼ିକୁ ଉଜ୍ଜୀବିତ କରୁଥାଏ, ତେବେ ତାହା ଅଶ୍ଳୀଳ ହେଲେ ବି ନିଶ୍ଚୟ ଗ୍ରହଣୀୟ ହେବ। କୁଳବଧୂଟିଏ ସର୍ବସମକ୍ଷରେ ଉଲଗ୍ନ ହେବା ବ୍ୟାପାରଟି ନିଶ୍ଚୟ ଅଶ୍ଳୀଳ; ମାତ୍ର ଶ୍ରୀକୃଷ୍ଣଙ୍କର ଗୋପୀମାନଙ୍କ ବସ୍ତ୍ରହରଣ ବ୍ୟାପାରଟି ଅଶ୍ଳୀଳ ହେଲେ ବି ଆଧ୍ୟାତ୍ମ ଦୃଷ୍ଟିରେ ପରମ ସୁନ୍ଦର ଓ ଏହା ଅନ୍ୟ ଏକ ଜଗତ ବା ସ୍ତରର ସୂକ୍ଷ୍ମ-ସୁକୁମାର ଓ ଗଭୀର ପବିତ୍ର ଭାବର ଉଦ୍ରେକ କରିଥାଏ ଏବଂ ଏହା ପଛରେ ଭାଗବତୀ ମଙ୍ଗଳଭାବ ରହିଥାଏ; ମାତ୍ର ଗୁରୁଜନଙ୍କ ସମ୍ମୁଖରେ କୁରୁସଭାରେ ରଜସ୍ୱଳା ଦ୍ରୌପଦୀଙ୍କୁ କେଶାକର୍ଷଣ ପୂର୍ବକ ମନ୍ଦବୁଦ୍ଧି ଓ ହୀନଚେତା ଦୁଃଶାସନ ଯେମିତି ଉଲଗ୍ନ କରି ବସିଲା, ତାହା ଯେପରି ଅଶ୍ଳୀଳ, ସେହିପରି ଅସୁନ୍ଦର, ଗର୍ହିତ, ଅପବିତ୍ର; ଅତିସ୍ଥୂଳ ପୈଶାଚିକ, କୁତ୍ସିତ, ବୀଭତ୍ସ ବ୍ୟାପାର ବ୍ୟତୀତ ଆଉ କିଛି ନୁହେଁ ଏବଂ ସେଥିପାଇଁ ଏହା ଭୟଙ୍କର ଅମଙ୍ଗଳର ଭବିତବ୍ୟକୁ ଡାକିଆଣିଥିଲା।

'ହାଇଫେନ୍' ଉପନ୍ୟାସ ଲେଖାର ୩୦/୩୫ ବର୍ଷ ପରେ ଆମେ ଯଦି ଓଡ଼ିଆମାନଙ୍କ ଭାଷା-ରୁଚି କେଉଁ ସ୍ତରରେ ପହୁଞ୍ଚିଛି, ତାହା ଜାଣିବାକୁ ଇଚ୍ଛା କରିବା,

ତା'ହେଲେ ଆମକୁ ବେଶି ପରିଶ୍ରମ କରି ଗବେଷଣା କରିବାକୁ ପଡ଼ିବ ନାହିଁ। ଆମର ସହରଠାରୁ ମଫସଲ ପର୍ଯ୍ୟନ୍ତ ଆମର ବଜାର, ହାଟ, ସ୍କୁଲ, କଲେଜ, ବିଶ୍ୱବିଦ୍ୟାଳୟ, ମନ୍ଦିର ମଠ, ଯେ କୌଣସି ଜାଗାରେ ଆପଣ କାନ ଦିଅନ୍ତୁ, ଆମର ଶ୍ରମିକ, ଦୋକାନୀ ସ୍କୁଲ ଓ କଲେଜର ଛାତ୍ର, ପୁରୋହିତ, ପୂଜାରୀ, ବାବାଜୀ, ଓକିଲ ଇତ୍ୟାଦି ଯେକୌଣସି ସଂପ୍ରଦାୟର ଲୋକଙ୍କ କଥାକୁ କାନ ଡେରନ୍ତି—ଆପଣ ଆମର ଭାଷା ବ୍ୟବହାରରେ, ରୁଚି ସମ୍ପର୍କରେ ସ୍ପଷ୍ଟ ନମୁନା ଜାଣିପାରିବେ। ଆମ କଥାବାର୍ତ୍ତାରେ ତାହା ଫିସ୍ ଫିସ୍ କଥାବାର୍ତ୍ତା ହେଉ, ବା ଉଚ୍ଚସ୍ୱରର କଥାବାର୍ତ୍ତା ହେଉ ସବୁଥିରେ ଆଉ ଅଯଥା ହାଇଫେନର ଆବଶ୍ୟକତା ରହୁ ନାହିଁ। କି ଶିକ୍ଷିତ, ଅଶିକ୍ଷିତ, ଅର୍ଦ୍ଧଶିକ୍ଷିତ ଓ ଉଚ୍ଚଶିକ୍ଷିତ, ସମସ୍ତେ କଥା କଥାକେ ବିନା ଦ୍ୱିଧାସଙ୍କୋଚରେ ହାଇଫେନ ଉଠାଇ ଦେଇ ସ୍ପଷ୍ଟଭାବେ ଯୌନସମ୍ପର୍କୀୟ ଶବ୍ଦମାନ ଅବଲୀଳାକ୍ରମେ ଯେଉଁଠି ଇଚ୍ଛା ସେଠି ଯାହା ଆଗରେ ମନେ ତା' ଆଗରେ, ପିଲା ଆଗରେ ବା ବୁଢ଼ା ଆଗରେ ବା ସ୍ତ୍ରୀଲୋକ ଆଗରେ ବା ଶିକ୍ଷକ-ଶିକ୍ଷୟତ୍ରୀ ଆଗରେ କହିଚାଲିଛନ୍ତି। ଆଉ ହାଇଫେନ ନାହିଁ—ହାଇଫେନ୍‌ର ଆବଶ୍ୟକତା ବି ନାହିଁ।

ଏଇ ଗତ କୋଡ଼ିଏ ତିରିଶିବର୍ଷ ଭିତରେ ଶିକ୍ଷା ଓ ଉଚ୍ଚଶିକ୍ଷା ପ୍ରସାର ଏତେଦୂର ବଢ଼ିବା ସାଙ୍ଗେ ସାଙ୍ଗେ ଓଡ଼ିଆଜାତି ଏତେ ନିର୍ଲଜ୍ଜ ହୋଇଗଲା ? ଓଡ଼ିଆଙ୍କ କଥ୍ୟଭାଷା ଏତେ ଇତର ହୋଇଗଲା ?

ହେ ଭଗବାନ !

**

# କ୍ଷୁଧାର୍ତ୍ତ ମାନବାତ୍ମା

ସାଂପ୍ରତିକ ବିଶ୍ୱର ଧାତ୍ରୀ ସ୍ୱରୂପିଣୀ, କରୁଣାମୟୀ ମଦର ଟେରେସା ଏବେ ଆମେରିକା ଓ ଅନ୍ୟାନ୍ୟ ଧନଶାଳୀ ପାଶ୍ଚାତ୍ୟ ଦେଶଗୁଡ଼ିକର ଅଧିବାସୀଙ୍କ ସମ୍ପର୍କରେ ଗଭୀର ହୃଦୟରୁ ମନ୍ତବ୍ୟ ପ୍ରକାଶ କରି କହିଛନ୍ତି—ଏଇସବୁ ଦେଶର ଲୋକେ ଆମର ଧନହୀନ ଭାରତବାସୀଙ୍କ ଅପେକ୍ଷା ଅଧିକ କ୍ଷୁଧାର୍ତ୍ତ ଓ ଅଧିକ ଦୁଃଖ-କଷ୍ଟରେ ଜୀବନ ଯାପନ କରୁଛନ୍ତି। ପେଟକୁ ଦୁଇଓଳି ମୁଠାଏ ଖାଇବାକୁ ପାଉ ନ ଥିବା ଓ ଅଣ୍ଟା ପିଠିକୁ ଖଣ୍ଡିଏ ପିନ୍ଧିବାକୁ ପାଉ ନଥିବା ଜଣେ ଭାରତବାସୀ ବରଂ ଅଧିକ ସୁଖୀ ଓ ଅଧିକ ସାର୍ଥକ (meaningful) ଜୀବନ ବିତାଇ ଥାଏ।

ମଦର ଟେରେସା ତାଙ୍କର ମନ୍ତବ୍ୟର ବ୍ୟାଖ୍ୟା କରି କହିଛନ୍ତି ଯେ, କେବଳ ପ୍ରଭୁତ ଧନସମ୍ପଦର ଅଧିକାରୀ ହେଲେ ମଣିଷ ଯଥାର୍ଥରେ ଧନୀ ହୋଇଯାଏ ନାହିଁ। କିମ୍ବା ସୁଖଶାନ୍ତିରେ ବଞ୍ଚେ ନାହିଁ। ସେଥିଲାଗି ଆଉ ଗୋଟିଏ ବିଶେଷ ଧରଣର ସମ୍ପଦ ଦରକାର। ଭାରତବାସୀ ସେହି ଅମୂଲ୍ୟ ସମ୍ପଦର ଅଧିକାରୀ। ସେହି ବିଶେଷ ସମ୍ପଦଟି ହେଲା—ଜଣେ ଦରିଦ୍ର ଭାରତବାସୀ ପେଟର କ୍ଷୁଧାରେ ବିକଳ ହେଉଥିଲେ ବି କେବେ ନିଜକୁ ନିଃସଙ୍ଗ ବା ଏକୁଟିଆ ମନେ କରେ ନାହିଁ। କେବେ ନିଜକୁ ତା'ର ଜ୍ଞାତି କୁଟୁମ୍ବଙ୍କଠାରୁ ବିଚ୍ଛିନ୍ନ ବୋଧ କରେ ନାହିଁ। ବିକଟ ଦାରିଦ୍ର୍ୟର ଘୋର କଷାଘାତରେ ପଡ଼ି ମଧ୍ୟ ଜଣେ ଭାରତବାସୀ ତାର ଦରିଦ୍ର ଅସହାୟ ଭାଇ, ଭଉଣୀ, ଭିଣୋଇ, ଜ୍ଞା, ଖୁଡ଼ୀ, ମାଉସୀ, ପିଉସୀ, ମାମୁଁ, ମାଇଁ ଇତ୍ୟାଦିଙ୍କର ସମ୍ପର୍କଜନିତ ଦାୟିତ୍ୱ ବା ବୋଝ ନିଜ ମୁଣ୍ଡ ଉପରୁ ଖସାଇ ଦେଇପାରେ ନାହିଁ। ଦରିଦ୍ର ଭାରତୀୟମାନେ ନିଜ ଭିତରେ ଛନ୍ଦାଛନ୍ଦି ହୋଇ ରହନ୍ତି। ନିଜ ନିଜର ଦୁଃଖକଷ୍ଟ ସହିତ ଜ୍ଞାତିକୁଟୁମ୍ବ ଓ ଭାଇ ବିରାଦରଙ୍କ ସୁଖ-ଦୁଃଖରୁ ଅଂଶ ଗ୍ରହଣ କରିଥାନ୍ତି। ଫଳରେ ସେମାନେ ଜୀବନରେ ବହୁ କଷ୍ଟ ପାଆନ୍ତି। ହୁଏତ ସେମାନେ ଦୁଃଖୀ ନୁହନ୍ତି। ସେମାନଙ୍କ ହୃଦୟ ଓ ମନ କେବେ ଶୂନ୍ୟ ହୁଏ ନାହିଁ। ନିଷ୍କରୁଣ ଶୁଷ୍କ ମରୁଭୂମିର ଧୂ ଧୂ ଖାଁ ଖାଁ ଶୂନ୍ୟତାରେ ସେମାନଙ୍କ ହୃଦୟ କେବେ ଯନ୍ତ୍ରଣାଗ୍ରସ୍ତ ହୋଇଯାଏ ନାହିଁ। ଉଦରର କ୍ଷୁଧାରେ ନିତ୍ୟଜର୍ଜରିତ ସେହିସବୁ କଂକାଳସାର ଶରୀର ଭିତରେ ସେମାନଙ୍କର ହୃଦୟଟି କିନ୍ତୁ ଥାଏ ସବୁବେଳେ ସତେଜ, ସଜୀବ ଓ ପରିପୂର୍ଣ୍ଣ। ସେମାନେ ମନ ବା ହୃଦୟରେ କେବେ କ୍ଷୁଧିତ ହୁଅନ୍ତି ନାହିଁ। ଅଧିକାଂଶ ଭାରତବାସୀ ପୁଣି ଧର୍ମ ବିଶ୍ୱାସୀ, ଈଶ୍ୱର ବିଶ୍ୱାସୀ। ସେହି ଭାବରେ ସବୁରି ହୃଦୟ ପରିପୂର୍ଣ୍ଣ ଥାଏ।

କିନ୍ତୁ ଅନ୍ୟ ପକ୍ଷରେ ଆମେରିକା ପ୍ରଭୃତି ବିତ୍ତବଶାଳୀ ଦେଶର ଅଧିବାସୀମାନେ ଯେତେ ବିଳାସ ବ୍ୟସନପ୍ରାଚୁର୍ଯ୍ୟ ଭିତରେ ରହିଲେ ବି ସେମାନେ ପାରିବାରିକ ସୁଖସୌହାର୍ଦ୍ଦ୍ୟ କ'ଣ ଜାଣନ୍ତି ନାହିଁ। ପାରସ୍ପରିକ ସ୍ନେହ ବା ମାୟାକୁ ଅବଲମ୍ବନ କରି ଯେଉଁ କୌଟୁମ୍ବିକ ବନ୍ଧନ ତାର ଯେ ତ୍ୟାଗପୂତ ସୁଖ, ସେଥିରୁ ସେମାନେ ସଂପୂର୍ଣ୍ଣ ବଞ୍ଚିତ। ଭାରତବର୍ଷରେ ପୁଣି ଏଇ ଆଧୁନିକ କାଳରେ ବି ବାଲ୍ୟକାଳରୁ ବାପ ଛେଉଣ୍ଡ ହୋଇଥିବା ପୁଅ, ଝିଅଙ୍କ ଭିତରୁ ସବା ବଡ଼ଭାଇ ବା ଭଉଣୀଟି ନିଜେ ଖୁବ୍ କଷ୍ଟମଷ୍ଟେ ଯୋଗ୍ୟ ହୋଇ ଉପାର୍ଜନକ୍ଷମ ହେଲା ପରେ ପ୍ରଥମେ ନିଜର ଛେଉଣ୍ଡ ଭାଇ, ଭଉଣୀମାନଙ୍କୁ ସଂସାରରେ ଠିଆ ନକଲା ପର୍ଯ୍ୟନ୍ତ ନିଜେ ବିବାହ କରେ ନାହିଁ। ଏମନ୍ତ ଉଦାହରଣ ଏ ଦେଶରେ ଖୁବ୍ ବେଶି। କିନ୍ତୁ ପାଶ୍ଚାତ୍ୟ ଦେଶରେ ଏ କଥା କେହି କଳ୍ପନା ବି କରିପାରିବେ ନାହିଁ। ଶେଷନିଃଶ୍ୱାସ ଛାଡ଼ିବା ପର୍ଯ୍ୟନ୍ତ ବୃଦ୍ଧ ଓ ଅକର୍ମଣ୍ୟ ପିତା ମାତାଙ୍କୁ ତାର ପୁଅ-ବୋହୂ ବା ଝିଅ-ଜୋଇଁମାନେ ଆପଣା ସୁଖ-ସ୍ୱାଚ୍ଛନ୍ଦ୍ୟରୁ କିଛି ଜଳାଞ୍ଜଳି ଦେଇ ଯେପରି ଭାବେ ସେବାଯତ୍ନ କରି ପ୍ରତିପାଳନ କରନ୍ତି, ସେପରି ଉଦାହରଣ ଆମ ଭାରତବର୍ଷ ଛଡ଼ା ଆଉ କେଉଁଠି ମିଳେ ନାହିଁ। ତେଣୁ ଆମ ଲୋକେ ସାମାଜିକ ନିଃସଙ୍ଗତା କ'ଣ ତାହା ଜାଣନ୍ତି ନାହିଁ; କିନ୍ତୁ ସେସବୁ ଦେଶରେ ବର୍ତ୍ତମାନ ଯେଉଁ ରୋଗଟି ସବୁଠାରୁ ମାରମ୍ଭକ ତାହା କାନ୍‌ସର ବା ହୃଦରୋଗ ନୁହେଁ; ତାହା ହେଲା ଏହି ନିଃସଙ୍ଗତାଜନିତ ପୀଡ଼ା ବା ଯନ୍ତ୍ରଣା ଏବଂ ଏହି ନିଃସଙ୍ଗତା ବା ଏକୁଟିଆ ହେବାର ଯନ୍ତ୍ରଣାଟି ସଂପୂର୍ଣ୍ଣଭାବେ ସାମାଜିକ।

ମଦର ଟେରେସା ଶେଷ ମନ୍ତବ୍ୟଟି ଦେଇ କହିଛନ୍ତି—ପେଟରେ କ୍ଷୁଧା ଭୋଗୁଥିବା ଲୋକକୁ ତୁମେ ମୁଠାଏ ଖାଦ୍ୟ ଦେଇ ତାର କଷ୍ଟ ଦୂର କରିପାରିବ; ମାତ୍ର ନିଃସଙ୍ଗତାଜନିତ ଏଇ ମାନସିକ ବ୍ୟାଧିଟିରେ ପ୍ରପୀଡ଼ିତ ହୋଇ ଘୋର ଯନ୍ତ୍ରଣା ଭୋଗୁଥିବା ଲୋକଟିକୁ ତୁମେ କଅଣ ଓ କିପରି ଦେଇ ତାକୁ ଯନ୍ତ୍ରଣାମୁକ୍ତ କରିପାରିବ? ମଦର ଟେରେସାଙ୍କ ମତରେ ସମଗ୍ର ପାଶ୍ଚାତ୍ୟ ଦେଶରେ ଏହି ବ୍ୟକ୍ତିଗତ ସ୍ନେହ, ପ୍ରେମ ସମ୍ପର୍କର ବନ୍ଧନ ଆଜି ଛିଣ୍ଡିଯାଇଛି। ଗୋଟିଏ ଧନଶାଳୀ ଶୃଙ୍ଖଳିତ ଶାସନ ଜାରି କରିପାରୁଥିବା ରାଷ୍ଟ୍ର ହୁଏତ ତା'ର ଅଧିବାସୀଙ୍କୁ କିଛି ବିଳାସବ୍ୟସନର ଉପକରଣ ଓ କିଛି ସାମାଜିକ ନିରାପତ୍ତା ଯୋଗାଇ ପାରେ; ମାତ୍ର ସାମାଜିକ ପ୍ରୀତି ଓ ମାୟାର ବନ୍ଧନଜନିତ ସୁଖ ଯୋଗାଇଦେବା ସେ ରାଷ୍ଟ୍ର ପକ୍ଷରେ ସମ୍ଭବ ନୁହେଁ।

ଏହି ବ୍ୟକ୍ତିଗତ ସ୍ନେହ-ପ୍ରୀତିର ସମ୍ପର୍କକୁ ରକ୍ଷାକରି ମଣିଷକୁ ସାମାଜିକ ନିଃସଙ୍ଗତା ବା ଏକୁଟିଆ ବୋଧ କରିବାର ଯନ୍ତ୍ରଣାରୁ ମୁକ୍ତିଦେବା କ୍ଷମତାଟି କିନ୍ତୁ ପ୍ରକୃତରେ କାହା ଉପରେ ନିର୍ଭର କରେ? ଗୋଟିଏ କଥାରେ କହିଲେ ତାହା ନିର୍ଭର କରେ ମନୁଷ୍ୟର ଆନ୍ତର୍ନିହିତ ଧର୍ମବୁଦ୍ଧି ବା ଆଧ୍ୟାତ୍ମିକ ଚେତନା ସୃଷ୍ଟି ହୁଏ ଓ ପରିପୁଷ୍ଟି

ଲାଭକରେ ଗୋଟିଏ ଜାତିର ପରମ୍ପରାବାହିତ ଜାତୀୟ ସଂସ୍କୃତିର ସଚେତନ ଅନୁଶୀଳନ ଦ୍ୱାରା। ପ୍ରତିଟି ଦେଶର ସରକାର ତାହା ସମାଜବାଦୀ ହେଉ ବା ସାମ୍ୟବାସୀ ହେଉ, ସେହି ଦେଶର ଜାତୀୟ ସଂସ୍କୃତିର ପରମ୍ପରାକୁ ଭିତ୍ତି କରି ତାର ରାଷ୍ଟ୍ରିକ ଆଦର୍ଶ ଗଠନ ଓ ଚାଳନ କରିବା ଉଚିତ; କିନ୍ତୁ ଯୋଉ ସରକାର ହେଉ ବା ଯୋଉ ଦେଶ ବା ଯୋଉ ଜାତି ହେଉ, ଯେତେ ଦିନ ପର୍ଯ୍ୟନ୍ତ ଜୀବନର ସର୍ବକ୍ଷେତ୍ରରେ ''ପ୍ରତିଦ୍ୱନ୍ଦିତା''କୁ ହିଁ ବ୍ୟକ୍ତିଗତ ବା ଜାତିଗତ ଉତ୍କର୍ଷର ମୂଳଭିତ୍ତି ଓ ମୂଳଉପାୟ ରୂପେ ଗ୍ରହଣ କରାଯାଇଥିବ। ଏହି ସାମାଜିକ ନିଃସଙ୍ଗଜନିତ ବ୍ୟାଧିରୁ ସେ ଦେଶର ବ୍ୟକ୍ତି ବା ସମାଜ କେହି କୌଣସି ପ୍ରକାରେ ମୁକ୍ତି ପାଇବେ ନାହିଁ।

ମହାମାନ୍ୟା ମଦର ଟେରେସା ଭାରତବାସୀଙ୍କ ଜୀବନର ମୌଳିକ ଧର୍ମଟିକୁ ଠିକ୍ ବୁଝିଛନ୍ତି ଓ ବୁଝାଇଛନ୍ତି। ମାତ୍ର ବର୍ତ୍ତମାନ ପାଶ୍ଚାତ୍ୟ ଜଗତର ଏହି ପ୍ରତିଦ୍ୱନ୍ଦିତାମୟ ବ୍ୟକ୍ତିଗତ ଉତ୍କର୍ଷର ଆଦର୍ଶ ଶିକ୍ଷିତ ଓ ଉଚ୍ଚ ଶିକ୍ଷିତ ଭାରତବାସୀର ଜୀବନକୁ ମଧ୍ୟ ଖୁବ୍ ଆକ୍ରାନ୍ତ କରି ବସିଲାଣି। ଏହା ଦିଲ୍ଲୀ, ବମ୍ବେ, କଲିକତା ପ୍ରଭୃତି ବଡ଼ ବଡ଼ ସହରରୁ ଆରମ୍ଭ ହୋଇ କଟକ, ସମ୍ବଲପୁର, ବ୍ରହ୍ମପୁର ବାଟେ ଆମର ଗାଁ ଗହଳର ଜୀବନକୁ ମଧ୍ୟ ସଂକ୍ରମିତ ହୋଇଗଲାଣି। ଫଳରେ ଭାରତବର୍ଷରେ ବର୍ତ୍ତମାନ ସେହି ପାରମ୍ପାରିକ ରାମାୟଣ, ମହାଭାରତର ବ୍ୟକ୍ତିଗତ ସ୍ନେହ, ପ୍ରୀତି, ମାୟା ବନ୍ଧନର ତ୍ୟାଗପୂତ ଆଦର୍ଶ ଆଉ ସେତେଦୂର ସକ୍ରିୟ ହୋଇ ରହୁନାହିଁ। ଆମ ମତରେ, ବର୍ତ୍ତମାନର ଭାରତବାସୀ ଉଦରକ୍ଷୁଧାଜନିତ ଯନ୍ତ୍ରଣା ସଙ୍ଗେ ପାଶ୍ଚାତ୍ୟବାସୀଙ୍କ ଭଳି ସାମାଜିକ ବିଚ୍ଛିନ୍ନତାଜନିତ ଯନ୍ତ୍ରଣା ମଧ୍ୟ ଭୋଗ କରୁଛି ଏବଂ ଆଜହୁଁ ସାବଧାନ ନ ହେଲେ ଏହି ଉଭୟବିଧ ଯନ୍ତ୍ରଣାରେ ଭାରତବାସୀର ଏଡ଼େ ସମୃଦ୍ଧ ଓ ବଳିଷ୍ଠ ଜାତୀୟ ଆତ୍ମା ଜର୍ଜରିତ ହୋଇ କ୍ରମେ ନଷ୍ଟ ହୋଇଯିବ। ଉପନିଷଦର ସେହି ଚିରନ୍ତନବାଣୀ ଆମ ରାଷ୍ଟ୍ର ଓ ସାମାଜିକ ଜୀବନର ଜ୍ୱଳନ୍ତ ଆଦର୍ଶ ହୋଇ ରହୁ—''ଏ ଜଗତ ଭଗବାନଙ୍କ ଦ୍ୱାରା ଆଚ୍ଛାଦିତ। —ଏଠି କେହି କାହାର ଧନ ଅପହରଣ କରେ ନାହିଁ—ସମସ୍ତେ ସମସ୍ତଙ୍କୁ ପ୍ରାପ୍ତ ହୁଅ—ଅନ୍ୟକୁ ଦାନ କରି ବା ଅନ୍ୟପାଇଁ ତ୍ୟାଗ କରି ନିଜେ ଭୋଗକର ବା ସୁଖୀ ହୁଅ।'' ଏହି ଆଦର୍ଶ ଛଡ଼ା ''ନାନ୍ୟ ପନ୍ଥା ବିଦ୍ୟତେ ଅନାୟ।''

❋❋

# ନାନ୍ୟପନ୍ଥା ବିଦ୍ୟତେ ଅୟନାୟ

ଗତ ରବିବାର ସକାଳେ ମୁଁ ଜଣେ ଅଧ୍ୟାପକ ବନ୍ଧୁଙ୍କ ଘରୁ ବୁଲିଯାଇଥିଲି। ବନ୍ଧୁ ଜଣେ ସାମାଜିକ ପ୍ରତିଷ୍ଠାବନ୍ତ ବ୍ୟକ୍ତି ଏବଂ ବହୁ ବିଶିଷ୍ଟ ବ୍ୟକ୍ତି ବେଳେ ବେଳେ ତାଙ୍କ ଘରେ ରୁଣ୍ଡ ହୁଅନ୍ତି। ନାନାବିଧ ସାମାଜିକ ଓ ରାଜନୈତିକ ଏବଂ ସାଂସ୍କୃତିକ ସମସ୍ୟା ଉପରେ ଘଣ୍ଟା ଘଣ୍ଟା ଧରି ଆଲୋଚନା କରନ୍ତି। ସେଦିନ ଦେଶର ହରିଜନ ସମସ୍ୟା ଉପରେ କଥାପଡ଼ିଥାଏ ଏବଂ ଆସରରେ ଜଣେ ହରିଜନ ଅଧ୍ୟାପକ ଏବଂ ଆଉଜଣେ ହରିଜନ ନେତା ମଧ୍ୟ ଉପସ୍ଥିତ ଥାଆନ୍ତି। ମୁଁ ଚୁପ୍‌ରହି ସେମାନଙ୍କ କଥାବାର୍ତ୍ତା ଶୁଣୁଥାଏ। ଗୋଟିଏ କଥା ଶୁଣି ମୁଁ ଆଶ୍ଚର୍ଯ୍ୟ ହେଲି ଯେ ହରିଜନ ଅଧ୍ୟାପକ ଏବଂ ହରିଜନ ନେତା ଦୁହେଁଯାକ ବର୍ତ୍ତମାନ ହରିଜନ ସମସ୍ୟାକୁ ଯେପରି ରାଜନୈତିକ ଦୃଷ୍ଟିରୁ ଗ୍ରହଣ କରି ତାର ସମାଧାନ କରିବାକୁ ଚେଷ୍ଟା କରାଯାଉଛି, ତାର ଘୋର ନିନ୍ଦା କରୁଥିଲେ। ସେମାନେ ସ୍ପଷ୍ଟ ଭାବରେ ମତ ଦେଉଥିଲେ ଯେ, ହରିଜନ ଗିରିଜନମାନଙ୍କୁ ସ୍ୱତନ୍ତ୍ର ଭାବେ ବିଚାର କରୁଥିବାରୁ ସମାଜରେ ବର୍ତ୍ତମାନ ବିଭେଦାତ୍ମକ ଓ ଈର୍ଷାମୂଳକ ମନୋଭାବ ମୁଣ୍ଡ ଟେକିଛି। ଫଳରେ ହରିଜନ ଗିରିଜନ ଓ ସମାଜର ଅନ୍ୟ ବର୍ଣ୍ଣର ଲୋକଙ୍କ ଭିତରେ ବର୍ତ୍ତମାନ ସମ୍ପର୍କ ଫାଟିଗଲାଣି। ହରିଜନ-ଗିରିଜନ ହେଉନ୍ତୁ ବା ଅନ୍ୟ ବର୍ଣ୍ଣର ଲୋକ ହୁଅନ୍ତୁ, ସେମାନଙ୍କୁ ଧନୀ-ଦରିଦ୍ର ଓ ଶିକ୍ଷିତ-ଅଶିକ୍ଷିତ ଏହି ଭାବେ ଶ୍ରେଣୀ ବିଭାଗ କରିଦେବା ଉଚିତ। ଯେଉଁମାନେ ଦାରିଦ୍ର୍ୟର ସୀମାରେଖା ତଳେ ରହିଛନ୍ତି ଓ ଯେଉଁମାନେ ସର୍ବନିମ୍ନ ଶିକ୍ଷା ପାଇପାରୁ ନାହାନ୍ତି—ସେମାନେ ଯୋଉ ଜାତିର ହୁଅନ୍ତୁ ପଛେ ସେମାନଙ୍କୁ ଏକଶ୍ରେଣୀଭୁକ୍ତ କରି ସେମାନଙ୍କର ଅର୍ଥନୈତିକ ଓ ଶିକ୍ଷାଗତ ବିକାଶ ପାଇଁ ଯୋଜନା କରିବା ଦରକାର। ତା' ନହେଲେ ଆମେ ଶ୍ରେଣୀହୀନ ସମାଜ କରିବାକୁ ଯାଇ ଆଉ ଗୋଟାଏ ବାଗରେ ସମାଜକୁ ଶ୍ରେଣୀସଚେତନ କରାଇ ଦେଉଛୁ। ଶିକ୍ଷାକ୍ଷେତ୍ରମାନଙ୍କରେ ଆଦିବାସୀମାନଙ୍କ ପାଇଁ ସ୍ୱତନ୍ତ୍ର ଛାତ୍ରାବାସର ମଧ୍ୟ ସେମାନେ ନିନ୍ଦାକଲେ। ସେମାନଙ୍କ ମତ ହେଲା ଏହା ଦ୍ୱାରା ଆଦିବାସୀମାନଙ୍କୁ ଅଣଆଦିବାସୀମାନଙ୍କଠାରୁ ପୃଥକ୍ କରି ଦିଆଯାଉଛି। ସେମାନଙ୍କ ଭିତରେ ଭାଷାଗତ, ସାଂସ୍କୃତିକ ଓ ନୈତିକ ବା ଧାର୍ମିକ ବୁଝାମଣା ହୋଇପାରୁ ନାହିଁ। ତା' ଅପେକ୍ଷା ବରଂ ସେମାନଙ୍କୁ ଯଥେଷ୍ଟ ବୃତ୍ତି ଦେଇ ସର୍ବସାଧାରଣ ଛାତ୍ରାବାସରେ ରଖିବା ଉଚିତ।

ହରିଜନ ଅଧ୍ୟାପକ ଦ୍ୱୟଙ୍କ ମୁହଁରୁ ଏ କଥା ଶୁଣିବା ପରେ ମୁଁ ଖୁବ୍ ଉତ୍ସାହ ସହକାରେ ନିକଟରେ ହରିଜନମାନଙ୍କର ଧର୍ମାନ୍ତର ଗ୍ରହଣ ପ୍ରସଙ୍ଗ ଉଠାଇ; ଏ ସମ୍ବନ୍ଧେ ସେ ଦୁହିଙ୍କ ମତାମତ ଜାଣିବାକୁ ଚାହିଁଲି।

ମୋ କଥା ଶୁଣି ଶୁଣି ହରିଜନ ଅଧ୍ୟାପକ ଜଣକ ଖୁବ୍ ପ୍ରୁଦ୍ଧ ଗଳାରେ କହିଲେ—ମୁଁ ହରିଜନମାନଙ୍କର ସେହି ଧର୍ମାନ୍ତର ଗ୍ରହଣକୁ ସମର୍ଥନ କରେ ନାହିଁ। ସେମାନେ ଭୀରୁ, ପଳାତକ, ସୁବିଧାବାଦୀ।

ମୁଁ କହିଲି—ଆଜ୍ଞା ! ଆପଣ ତାହା ସିନା କହୁଛନ୍ତି; କିନ୍ତୁ ସେହି ସବୁ ପ୍ରଦେଶରେ ଅଣହରିଜନମାନେ ହରିଜନମାନଙ୍କ ଉପରେ ଯେଉଁ ଅକଥନୀୟ ଅତ୍ୟାଚାର କରୁଛନ୍ତି ଏବଂ ଯେପରି ଅପମାନ ଦେଉଛନ୍ତି, ସେଥିରେ ବିଚାରା ସେହି ହରିଜନମାନେ ଆଉ କଣ କରିଥାନ୍ତେ ? ବରଂ ମୁସଲମାନ ଧର୍ମ ଗ୍ରହଣ କରି ସେମାନେ ଏ ସବୁ ଗ୍ଲାନିରୁ ମୁକ୍ତ ହେଲେ।

ଅଧ୍ୟାପକ ସେଠୀ ମୋ କଥା ଶୁଣି ଆହୁରି ଉତ୍ତ୍ୟକ୍ତ ହୋଇ କହିଲେ—ସେ କଥା କୁହନ୍ତୁ ନାହିଁ। ମୁସଲମାନ ହୋଇଗଲେ ଯଦି ମଣିଷର ସବୁ ଗ୍ଲାନି ଚାଲିଯାନ୍ତା ତାହେଲେ ସାରା ବିଶ୍ୱ ମୁସଲମାନ ହୋଇଯା'ନ୍ତାଣି ଏବଂ ମୁସଲମାନଙ୍କ ଭିତରେ ସେ ସାମାଜିକ ସାମ୍ୟଭାବ ଏତେଦୂର ରହିଛି ତାହା କେବଳ ବାହ୍ୟଦୃଷ୍ଟିରୁ। ଜଣେ ଗରିବ ଅଶିକ୍ଷିତ ମୁସଲମାନକୁ ଆଉ ଜଣେ ଧନିକ ଓ ଉଚ୍ଚଶିକ୍ଷିତ ମୁସଲମାନ କିଭଳି ଅବଜ୍ଞା ଦୃଷ୍ଟିରେ ଦେଖେ ତାହା ଆପଣ ଜାଣିନାହାନ୍ତି। ବର୍ତ୍ତମାନ ଇସ୍‌ଲାମ ରାଷ୍ଟ୍ରମାନଙ୍କରେ ସମାଜ ଜୀବନରେ କି କଦର୍ଥନା ଘଟୁଛି ତାହା ଆପଣ ଦେଖୁଛନ୍ତି ତ ? ମୋର ମତ ହେଲା ସେହି ସହସ୍ରାଧିକ ହରିଜନମାନେ ନିଜ ଧର୍ମରେ ରହି ନିଜର ଅଧିକାର ସାବ୍ୟସ୍ତ କରିବା ଲାଗି ଆନ୍ଦୋଳନ କରିଥାନ୍ତେ। ତାହା ହିଂସାତ୍ମକ ହେଲେ ବି କିଛି କ୍ଷତି ନାହିଁ; କିନ୍ତୁ ଗାନ୍ଧିଜୀଙ୍କ ଅହିଂସା ନୀତିରେ ମଧ୍ୟ ସତ୍ୟାଗ୍ରହ କରାଯାଇପାରନ୍ତା। ହରିଜନମାନେ ଜବରଦସ୍ତି ସେମାନଙ୍କ ଅଧିକାର ହାସଲ କରୁନାହାନ୍ତି କାହିଁକି ? ସେମାନେ ଜବରଦସ୍ତି ମନ୍ଦିର ଭିତରେ ସଂଘବଦ୍ଧ ଭାବେ ପଶୁନାହାନ୍ତି ? ସର୍ବସାଧାରଣ କୂଅରୁ ପାଣି ନେଉନାହାନ୍ତି ? ଏବଂ ଏହିଭଳି ସବୁପ୍ରକାର ସାମାଜିକ ଓ ଧାର୍ମିକ ଅଧିକାର ଯାହା ହିନ୍ଦୁ ଜାତିର ସମସ୍ତ ଲୋକ ଉପଭୋଗ କରନ୍ତି ସେ ସବୁକୁ ହିଂସାତ୍ମକ ବିପ୍ଳବ ଦ୍ୱାରା ହେଉ କିମ୍ବା ଅହିଂସାତ୍ମକ ସତ୍ୟାଗ୍ରହ ଦ୍ୱାରା ହେଉ କାହିଁକି ସେମାନେ ଏହାକୁ ଅର୍ଜନ କରୁନାହାନ୍ତି ? ଏଥିପାଇଁ ଯଦି କୌଣସି ହରିଜନକୁ ଜୀବନ ଦେବାକୁ ପଡ଼େ, ତେବେ ସେ ଜୀବନ ଦେଉ, ମାଡ଼ ଖାଉ; ମାତ୍ର ସଂଘବଦ୍ଧଭାବେ ତାକୁ ମୁକାବିଲା କରାଯାଉ।

ତାଙ୍କ କଥା ନ ସରୁଣୁ, ଗୃହକର୍ତ୍ତା ବିଜ୍ଞ ଅଧ୍ୟାପକ ଜଣକ ଏଥର ମୁହଁ ଖୋଲିଲେ। ସେ କହିଲେ—ସମାଜରେ ହରିଜନଙ୍କ ସଂଖ୍ୟା ହୁଏତ କମ୍; ମାତ୍ର ସମଗ୍ର

ଦେଶର ଜନମତ ଓ ବିବେକ ସେମାନଙ୍କ ସପକ୍ଷରେ ରହିଛି। ସମ୍ବାଦପତ୍ରମାନେ ହରିଜନ ଗିରିଜନମାନଙ୍କ ପକ୍ଷରେ ରହିଛନ୍ତି। ଗୋଟିଏ ଗ୍ରାମରେ ବା ସହରରେ ଯଦି ହରିଜନମାନେ ସଂଘବଦ୍ଧଭାବେ ଗାନ୍ଧିଜୀଙ୍କ ଅହିଂସାପନ୍ଥା ଅବଲମ୍ବନ କରି ନିଜର ନ୍ୟାୟ ଅଧିକାର ହାସଲ କରିବା ପାଇଁ ଆଗଭର ହୁଅନ୍ତେ ତାହାହେଲେ ସେହି ଗ୍ରାମର ଅନେକ ଶିକ୍ଷିତ ମାର୍ଜିତ, ଶୁଭବୁଦ୍ଧିସମ୍ପନ୍ନ ଅଣହରିଜନ ବ୍ୟକ୍ତି ମଧ୍ୟ ତାଙ୍କ ସଙ୍ଗେ ସହଯୋଗ କରିବାକୁ ବାହାରି ଆସିବେ ଏବଂ ସେହି ଗ୍ରାମର ରାଜନୈତିକ ବ୍ୟକ୍ତିମାନେ ମଧ୍ୟ ଯୋଉ କାରଣରୁ ହେଉ ସେମାନଙ୍କୁ ସମର୍ଥନ କରନ୍ତେ; ମାତ୍ର ତା ନ କରି, ଅଭିମାନରେ ସ୍ୱଧର୍ମ ତ୍ୟାଗକରି ଅନ୍ୟ ଧର୍ମ ଗ୍ରହଣ କରାଯିବାରେ ସେମାନଙ୍କ ସମସ୍ୟାର ମୌଳିକ ସମାଧାନ ହୋଇପାରିବ ନାହିଁ।

ବନ୍ଧୁଙ୍କର ଏହି ମନ୍ତବ୍ୟଟି ସର୍ବସମ୍ମତି କ୍ରମେ ଆମ୍ଭମାନଙ୍କ ଭିତରେ ଗୃହୀତ ହୋଇଗଲା। କାରଣ, ଏହା ହିଁ ଆମ ସମାଜରେ ବର୍ତ୍ତମାନ ହରିଜନ ସମସ୍ୟାର ସମାଧାନ ପାଇଁ ଏକମାତ୍ର ସରଳ, ସହଜ ଓ ନ୍ୟାଯ୍ୟ ପନ୍ଥା। ହରିଜନମାନେ ଯଦି ସଂଘବଦ୍ଧ ଭାବେ ଗାନ୍ଧିଜୀଙ୍କ ମାର୍ଗରେ ଏହିପରି ସତ୍ୟାଗ୍ରହ ଆନ୍ଦୋଳନ କରନ୍ତେ, ତେବେ ସେମାନଙ୍କ ପଛରେ ସବୁ ରାଜନୈତିକ ଦଳ, ସମ୍ବାଦପତ୍ର ଓ ଶିକ୍ଷିତଗୋଷ୍ଠୀ ଏକ ଭାବରେ ଦଣ୍ଡାୟମାନ ହେବା ଉଚିତ। ମୋର ମତେହୁଏ ଏହି ପନ୍ଥା ବ୍ୟତୀତ ଏହାର ସମାଧାନ ପାଇଁ ଆଉ ଅନ୍ୟ ପନ୍ଥା ଦେଖାଯାଉ ନାହିଁ।

**

# ସ୍ୱଧର୍ମେ ନିଧନ ଶ୍ରେୟ କି ?

ସଂପ୍ରତି ଧର୍ମନିରପେକ୍ଷ ରାଷ୍ଟ୍ର ଭାରତବର୍ଷର ବିଭିନ୍ନ ସ୍ଥାନରେ ହଜାର ହଜାର ହରିଜନ ମୁସଲମାନ ଧର୍ମ ଗ୍ରହଣ କରିଯିବାରୁ ହିନ୍ଦୁମାନଙ୍କ ଭିତରେ ଯେପରି ଭାଳେଣି ପଡ଼ିଛି, ମୁସଲମାନମାନଙ୍କ ଭିତରେ ସେହିପରି ଖୁବ୍ ହର୍ଷୋତ୍‌ଫୁଲ୍ଲ ଉତ୍ସାହ ନିରବରେ ପ୍ରକାଶ ପାଉଛି। ହଜାର ହଜାର ହରିଜନ ହଠାତ୍ ଏମିତି ସ୍ୱଧର୍ମ ତ୍ୟାଗକରି ପରଧର୍ମ ଗ୍ରହଣ କଲେ, ତାର କାରଣ ସମ୍ବନ୍ଧେ ନାନାଦି ମତ ମଧ୍ୟ ପ୍ରକାଶ ପାଇଲାଣି। କେତେକ ଏହାକୁ ସବର୍ଣ୍ଣ ହିନ୍ଦୁଙ୍କର ହରିଜନଙ୍କ ଉପରେ ଅତ୍ୟାଚାରର ଫଳ ବୋଲି କହୁଥିବା ସ୍ଥଳେ, କେତେକ କହୁଛନ୍ତି ଏହା ବିଦେଶର ବିଧର୍ମୀମାନଙ୍କର ଷଡ଼ଯନ୍ତ୍ର ମୂଳକ କାର୍ଯ୍ୟର ନିଦର୍ଶନ।

ଇତିମଧ୍ୟରେ ଥରେ ମୋର ଦୁଇଜଣ ହିନ୍ଦୁ ଓ ମୁସଲମାନ ବନ୍ଧୁ ଆମ ଘରେ ବିଭିନ୍ନ କାରଣରୁ ଏକା ସମୟରେ ମିଳିତ ହେଲେ ଏବଂ ପ୍ରସଙ୍ଗ କ୍ରମେ ଏହି ତାଜା ଖବରଟି ଆମ ଆଳାପ ଭିତରକୁ ସବଳେ ପଶି ଆସିଲା। ପ୍ରକାଶ ଥାଉକି ମୁସଲମାନ ବନ୍ଧୁଜଣକ ଜଣେ ଖୁବ୍ ଉଚ୍ଚଶିକ୍ଷିତ, ପଣ୍ଡିତ ଓ ଧର୍ମସମ୍ବଳ ମୌଲବୀ ଏବଂ ହିନ୍ଦୁ ବନ୍ଧୁଜଣକ ମଧ୍ୟ ଜଣେ ବ୍ରାହ୍ମଣ କୁଳୋଦ୍‌ଭବ ନୈଷ୍ଠିକ ସନାତନୀ ପଣ୍ଡିତ। ମୁଁ ଲକ୍ଷ୍ୟ କଲି ଯେ ମୌଲବୀ ମହାଶୟଙ୍କ ସୁର୍ମାଙ୍କିତ ଆଖି ଦୁଇଟି ଉଜ୍ଜ୍ୱଳ, ମୁଖମଣ୍ଡଳ ହର୍ଷୋତ୍‌ଫୁଲ୍ଲ ଓ ଶ୍ମଶ୍ରୁ ରାଶି ଉତ୍ସାହ ବ୍ୟାଲୋଳ। ସେ ଖୁବ୍ ଜୋର ଗଳାରେ ଆଜାନ ହାକିଲା ଭଳି କହିଲେ ଖାଲି ହିନ୍ଦୁସ୍ଥାନ କାହିଁକି ସମସ୍ତ ମାନବସମାଜ ଯେ ଦିନେ ଏହି ମହାନ ମୁସଲମାନ ଧର୍ମ ଗ୍ରହଣ କରିବାକୁ ଆପଣାଛାଏଁ ବାଧ୍ୟ ହେବ ଏଥିରେ ଆଉ ସନ୍ଦେହ ନାହିଁ। କାରଣ ସାମ୍ୟ, ମୈତ୍ରୀ, ଏକତା ଓ ଭ୍ରାତୃଭାବ ହେଲା ଏ ଧର୍ମର ମୂଳ କଥା ଏବଂ ଏହି ଧର୍ମର ଦ୍ୱାର ସର୍ବଦା ଅନ୍ୟମାନଙ୍କ ଲାଗି ଦିନରାତି ମେଲା ଥାଏ। ବର୍ତ୍ତମାନ ସାରା ପୃଥିବୀରେ ମୁସଲମାନ ଧର୍ମର ଲୋକସଂଖ୍ୟା ବେଶି ଓ ଏହା ପ୍ରତିଦିନ ବଢ଼ିବାରେ ଲାଗିଛି।

ତା'ପରେ ମୌଲବୀ ମହାଶୟ ମୁସଲମାନ ଧର୍ମର ମହତ୍ତ୍ୱ ସମ୍ବନ୍ଧେ ଯେତେ କଥା ସବୁ କହିଲେ ତାହା ଶୁଣି ଯେ କୌଣସି ସଂପ୍ରଦାୟର ଯେ କୌଣସି ଯଥାର୍ଥ ଧର୍ମପ୍ରାଣ ବ୍ୟକ୍ତି ମନେ କରିବା ସ୍ୱାଭାବିକ ଯେ ଯଦି ଏମନ୍ତ ଏ ଧର୍ମର ମହିମା, ତେବେ ଭାରତବର୍ଷର ମାତ୍ର କେତେ ହଜାର ପତିତ ହରଜନ କାହିଁକି, ଲକ୍ଷ ଲକ୍ଷ ସଂଖ୍ୟାରେ ଆମର ବ୍ରାହ୍ମଣ ରୂପୀ ବ୍ରହ୍ମଦୈତ୍ୟମାନେ ମଧ୍ୟ ତୁରନ୍ତ ସେହି ମହାନ

ଧର୍ମ ଗ୍ରହଣ କରି ସ୍ୱ ସ୍ୱ ଆତ୍ମାର ସଦଗତି ବିଧାନ କରନ୍ତୁ। ତାହା ଦେଶ ପକ୍ଷରେ ପରମ କଲ୍ୟାଣକର ହେବ।

କିନ୍ତୁ ଏଣେ ମୋର ଡ୍ରଇଁ ରୁମରେ ସେହି ବ୍ରାହ୍ମଣ ବନ୍ଧୁଟି ମୌଲବୀ ସାହେବଙ୍କ କଥା ଶୁଣି କ୍ରୋଧ ଓ ଅପମାନରେ ଜଳି ଉଠିଲେଣି। ସେ ଖୁବ୍ ଉଚ୍ଚ୍ୟକ୍ତ ଗଳାରେ କହିଲେ—ସେହି ପାଷାଣ୍ଡ ହରିଜନମାନେ ନିଶ୍ଚୟ ନରକଗାମୀ ହେବେ। ଯମଦେବ ସେମାନଙ୍କୁ ତତଲା ତେଲ କଡ଼େଇରେ ପକାଇ କଡ଼ କଡ଼ କରି ଭାଜିବ। ମୁଁ ସ୍ମିତହାସ୍ୟ କରି ପଚାରିଲି, କାହିଁକି ହେ? ବ୍ରାହ୍ମଣ ପୁଙ୍ଗବ କହିଲେ—କାହିଁକି? ଗୀତା ପଢ଼ ଜାଣିବ। ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ଶ୍ରୀମୁଖରେ କହିଛନ୍ତି, ସ୍ୱଧର୍ମରେ ରହି ପଛେ ମରିବ କିନ୍ତୁ ଭୟାବହ ପରଧର୍ମ ଗ୍ରହଣ କଲେ ଘୋର ପାପରେ ଭାଗୀ ହୋଇ ଶେଷରେ ନରକକୁ ଯିବ। ମୁଁ ହସି ହସି କହିଲି ବାଜେ କଥା। ସେଇ ହରିଜନମାନେ କଣ ଆଉ ତୁମ ଶ୍ରୀକୃଷ୍ଣଙ୍କ ଅଧୀନରେ ଅଛନ୍ତି? ସେମାନେ ବର୍ତ୍ତମାନ ମହମ୍ମଦଙ୍କ ଖାସ ହେପାଜତ୍‌କୁ ଚାଲିଗଲେଣି। ମହମ୍ମଦଙ୍କ ସୁପାରିଶରେ ତାଙ୍କ ଆଲ୍ଲା ସେମାନଙ୍କ ପାଇଁ ଯୋଉ ପ୍ରକାର ସ୍ୱର୍ଗ ସୁଖର ବ୍ୟବସ୍ଥା କରିଛନ୍ତି ତାହା ତୁମର ଇନ୍ଦ୍ର ତ ଇନ୍ଦ୍ର ସ୍ୱୟଂ ବିଷ୍ଣୁ ମଧ୍ୟ ଭୋଗ କରୁ ନଥିବେ। ସେମାନଙ୍କୁ ନରକକୁ ପଠାଇବାକୁ ହେଲେ ତୁମ ଶ୍ରୀକୃଷ୍ଣଙ୍କୁ ମହମ୍ମଦଙ୍କ ସହିତ ଜେହାଦ (ଧର୍ମଯୁଦ୍ଧ) କରିବାକୁ ପଡ଼ିବ।

ବ୍ରାହ୍ମଣ ବନ୍ଧୁ ମୋ ଉପରେ ରାଗିଉଠି କହିଲେ, ତୁମକୁ ଥଟ୍ଟା ଲାଗୁଛି? ଜାଣ? ଭାରତବର୍ଷର ହିନ୍ଦୁ ସଂଖ୍ୟା କେତେ ଦ୍ରୁତଗତିରେ କମିବାକୁ ଲାଗିଛି? ତେଣେ ମୁସଲମାନ ଓ ଖ୍ରୀଷ୍ଟିଆନଙ୍କ ସଂଖ୍ୟା ହୁ ହୁ କରି ବଢ଼ି ଚାଲିଛି। ମୁଁ କହିଲି—ବନ୍ଧୁ! ସେଥିରେ —ନ ଚମେ ଲାଭଃ ନ ଚମେ କ୍ଷତିଃ। ଭାରତବର୍ଷରେ ଶୃଗାଳଙ୍କ ସଂଖ୍ୟା ବଢୁଛି କି ଘୁଷୁରୀଙ୍କ ସଂଖ୍ୟା କମୁଛି ସେଥିରେ ତୁମେ ବା ଆଉ କିଏ ମୁଣ୍ଡ ଖେଳାଉଛି ଖେଳାଉ, ମୋ ମୁଣ୍ଡ କିନ୍ତୁ ଅନ୍ୟଆଡ଼େ ଖେଳୁଛି। ବ୍ରାହ୍ମଣ ବନ୍ଧୁ ପଚାରିଲେ, କୋଉଥିରେ ଖେଳୁଛି? ମୁଁ କହିଲି—ଆମର ଜଙ୍ଗଲ ସବୁ ପଦାହୋଇ ଆସୁଛି। ଜଙ୍ଗଲରୁ ବାଘ, ଭାଲୁ, ହରିଣ, କୁତ୍ରାଦି ପ୍ରାଣୀ ଓ ସୁନ୍ଦର ସୁନ୍ଦର ଚଢ଼େଇଙ୍କ ସଂଖ୍ୟା କମିଯାଇଛି, ଜିନିଷପତ୍ରର ଦରଦାମ ବଢ଼ି ଚାଲିଛି, ଆୟ ବଢୁ ନାହିଁ। ଅସାମାଜିକଲୋକଙ୍କ ସଂଖ୍ୟା ବଢ଼ି ଚାଲିଛି। ଲୋକଙ୍କର ସ୍ୱାଭାବିକ ସାଧୁତା, ସଦାଚାର ଓ ଭଦ୍ରତା କମିଯାଉଛି। ଏହିଭଳି ହଜାରେ କଥାରେ ମୁଁ ବିବ୍ରତ। ତୁମ ହିନ୍ଦୁଙ୍କ ସଂଖ୍ୟା ବଢ଼ିଲେ କି ଛିଡ଼ିଲେ କିମ୍ବା ମୁସଲମାନ ଓ ଖ୍ରୀଷ୍ଟିଆନଙ୍କ ସଂଖ୍ୟା ବଢ଼ିଲେ କି ଛିଡ଼ିଲେ ସେଥିରେ ମୋର ସାମାନ୍ୟ ମୁଣ୍ଡବ୍ୟଥା ନାହିଁ।

ବ୍ରାହ୍ମଣ ବନ୍ଧୁଜଣକ କହିଲେ—ତୁମେ କଣ ହିନ୍ଦୁ ନୁହଁ? ମୁଁ କହିଲି, ଯଦି ତୁମ ସଂପ୍ରଦାୟର ଲୋକସଂଖ୍ୟା ବଢ଼ାଇବା ଉଦ୍ଦେଶ୍ୟରେ ମୋତେ ହିନ୍ଦୁ ଭାବରେ

ଗଣିବାକୁ ଚାହଁ—ତେବେ ମୁଁ ହିନ୍ଦୁ ନୁହେଁ। ଏହାଶୁଣି ସେ ମୋତେ ଖତେଇ ହେଲାପରି କହିଲେ—ତା' ହେଲେ ସେଇ ପାଷାଣ୍ଡ ହରିଜନମାନଙ୍କ ପରି ତୁମେ ମୁସଲମାନ ହୋଇଯାଉନ କାହିଁକି! ମୁଁ ସହଜଭାବରେ ଉତ୍ତର ଦେଲି—ମୁସଲମାନ ସଂପ୍ରଦାୟର ଲୋକସଂଖ୍ୟା ବଢ଼ାଇବା ଲାଗି ମଧ୍ୟ ମୋର ଆଦୌ ଆକାଂକ୍ଷା ନାହିଁ।

ବ୍ରାହ୍ମଣବନ୍ଧୁ ଏଥର ମୋର ଧର୍ମନିରପେକ୍ଷ ମସ୍ତିଷ୍କଟିକୁ ଧୂଳିସାତ୍ କରିବା ଉଦ୍ଦେଶ୍ୟରେ କହିଲେ—ତୁମଭଳି ନାସ୍ତିକ ପାଷାଣ୍ଡମାନଙ୍କ ପାଇଁ ଆଜି ଧର୍ମଭୂମି ଭାରତବର୍ଷର ଏହି ଦୁରାବସ୍ଥା। ହିନ୍ଦୁ ଧର୍ମ ହେଲା ସନାତନଧର୍ମ। ଏହା ବେଦମୂଳ। ବେଦ ପୁଣି ଅପୌରୁଷେୟ। ତୁମେ ଏ ଧର୍ମରେ ଜନ୍ମହୋଇ ଏ ଧର୍ମ ପ୍ରତି ଓ ଦେଶ ପ୍ରତି କଣ କର୍ତ୍ତବ୍ୟ ତା' ଜାଣିପାରୁ ନାହଁ? ଧିକ୍ ତୁମକୁ!

ମୁଁ ହସି ହସି କହିଲି—ଭାଇ! ତୁମର ଏହି ଧର୍ମ ଯଦି ପ୍ରକୃତରେ ସନାତନ ଧର୍ମ ହୋଇଥାଏ, ଏବଂ ଭାରତବର୍ଷ ଯଦି ସତକୁ ସତ ଧର୍ମର ଦେଶ ହୋଇଥାଏ, ତେବେ ଏ ଦେଶର ଧାର୍ମିକ ଭବିଷ୍ୟତ ନିଶ୍ଚୟ ଉଜ୍ଜ୍ୱଳ। ସେହି ଧାର୍ମିକ ଦେଶ ସମ୍ବନ୍ଧେ ମୋର ଭବିଷ୍ୟତବାଣୀ ହେଲା—ଏ ଦେଶରେ ଭବିଷ୍ୟତରେ କୌଣସି ଧର୍ମସଂପ୍ରଦାୟ ରହିବ ନାହିଁ। କେବଳ ଧର୍ମ ହିଁ ରହିବ। କେତେ ହଜାର ବା ଲକ୍ଷ ହିନ୍ଦୁ ମୁସଲମାନ ହୋଇଗଲେ ମୁସଲମାନ ଧର୍ମସଂପ୍ରଦାୟର ଧାର୍ମିକ ମୂଲ୍ୟ ବଢ଼ିଯିବ ନାହିଁ କିମ୍ବା ହିନ୍ଦୁ ସଂପ୍ରଦାୟର ଧାର୍ମିକ ମୂଲ୍ୟ କମିଯିବ ନାହିଁ। ମଣିଷର ଏକେଶ୍ୱର ପୂଜା ବା ବହୁ ଦେବପୂଜାକୁ କେହି ରୋକିପାରିବେ ନାହିଁ। ଈଶ୍ୱରଙ୍କର ଅରୂପତ୍ୱ ବା ନିର୍ଗୁଣତ୍ୱକୁ ଯେମିତି କେହି କାଟିପାରିବେ ନାହିଁ—ତାଙ୍କର ସରୂପତ୍ୱ ବା ସଗୁଣତ୍ୱକୁ ବି ସେମିତି କେହି କାଟିପାରିବେ ନାହିଁ। ମଣିଷକୁ ଗୋମାଂସ ବା ଛାଗ ମାଂସ ଖାଇବାକୁ ଯେମିତି କେହି ବାଧକରି ପାରିବେ ନାହିଁ—ସେମିତି ନିରାମିଷାଶୀ ହେବାକୁ ବି କେହି ବାଧ କରିପାରିବେ ନାହିଁ। ମଣିଷ ସମାଜ କୋରାନ, ବାଇବେଲ, ଧମ୍ମପଦ, ଗୀତା, ଉପନିଷଦ, ରାମାୟଣ, ମହାଭାରତ ପ୍ରଭୃତି ଅମୂଲ୍ୟ ଧର୍ମପୁସ୍ତକ ଓ ମହମ୍ମଦ ଖ୍ରୀଷ୍ଟ, କୃଷ୍ଣ, ରାମ, ବୁଦ୍ଧ, ଶ୍ରୀଚୈତନ୍ୟ, ଶ୍ରୀରାମକୃଷ୍ଣ, ଶ୍ରୀଅରବିନ୍ଦ ପ୍ରମୁଖ ମହାନ ଆଦିଷ୍ଟପୁରୁଷ ବା ଅବତାର ପୁରୁଷମାନଙ୍କୁ କେବେ ଉପେକ୍ଷା କରିପାରିବ ନାହିଁ। ମନୁଷ୍ୟ ଚରମ ଧାର୍ମିକ ସିଦ୍ଧିର ଅଧିକାରୀ ହେବ—ଯେତେବେଳେ ସେ ସଂପ୍ରଦାୟକୁ ଛାଡ଼ି ସ୍ୱାଧୀନ ଭାବରେ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ତୀବ୍ର ଅଭୀପ୍ସା ଓ ଜୀବନସାଧନାରେ ବ୍ରତୀ ହେବ। ତୁମର ଏଇ କେତେ ହଜାର ହରିଜନ କେବେ ସତକୁ ସତ ଧାର୍ମିକ ନ ଥିଲେ—ଆସ୍ତିକ ନଥିଲେ କି ନାସ୍ତିକ ନ ଥିଲେ; କିମ୍ବା ଧର୍ମାନ୍ତର ଗ୍ରହଣ କରି ଧାର୍ମିକ ହୋଇଗଲେ ନାହିଁ। ସେମାନେ ନିଜର ସ୍ୱାର୍ଥ ଉଦ୍ଦେଶ୍ୟରେ ଅନ୍ୟ ଧର୍ମକୁ ଗଲେ। ଏଥିରେ ଖୁସି ବା ଦୁଃଖିତ ହେବାର କିଛି ନାହିଁ। ....କିନ୍ତୁ ବନ୍ଧୁ! ତୁମର ହିନ୍ଦୁ ସଂପ୍ରଦାୟ ଭିତରେ କେତେକ ଲୋକ ଅସହାୟ ଭାବେ ସେହି ସଂପ୍ରଦାୟର ଧନୀ ଓ ତଥାକଥିତ ଉଚ୍ଚବର୍ଣ୍ଣର

ଲୋକଙ୍କ ଦ୍ୱାରା ଅତ୍ୟାଚାରିତ ହୋଇ, ନିଷ୍ପେଷିତ ହୋଇ ଓ ଅପମାନିତ ହୋଇ, ତଥାପି ମଧ୍ୟ ସେହି ସଂପ୍ରଦାୟକୁ ସ୍ୱଧର୍ମ ବିଚାରି ତାର ଭିତରେ ରହି ନିଧନ ହେବେ—ଏଭଳି ଧାର୍ମିକ ଆଦର୍ଶ କିନ୍ତୁ ପର ଧର୍ମ ଗ୍ରହଣ କରିବାଠାରୁ ବହୁଗୁଣରେ ଭୟାବହ।

କିନ୍ତୁ ଏହା ମାନେ ନୁହେଁ ଯେ, ମୁସଲମାନ ବା ଖ୍ରୀଷ୍ଟିଆନ୍ ସମ୍ପ୍ରଦାୟ ଭିତରେ ମଣିଷ ମଣିଷଭିତରେ ସାମ୍ୟ, ମୈତ୍ରୀ, ପ୍ରେମ, ସହନଶୀଳତା ଓ ତ୍ୟାଗ ମନୋଭାବ ଏମିତି କିଛି ଆଦର୍ଶ ସ୍ଥାନରେ ପହଞ୍ଚି ଯାଇଛି।

ସଂପ୍ରଦାୟର ଲୋକ ସଂଖ୍ୟା ବଢ଼ାଇବାର ଉଦ୍ଦେଶ୍ୟ ଓ କର୍ମପନ୍ଥା ପଛରେ ଯେତେ ଧର୍ମଭାବ ନାହିଁ—ସେତେ ରାଜନୈତିକ ମତଲବ ପ୍ରଚ୍ଛନ୍ନ ରହିଛି।

**

# ହିଂସାର ଅଗ୍ନି—ଲିଭାଅ, ଲିଭାଅ

ଗତ କିଛିଦିନ ଧରି-ମାନେ-ପ୍ରାୟ ତିନିବର୍ଷଧରି ସାରା ପୃଥିବୀରେ ଯୋଉସବୁ ବୀଭତ୍ସ ଅମାନୁଷିକ ହିଂସାକାଣ୍ଡମାନ ଘଟିଯାଉଛି—ଖ୍ରୀଷ୍ଟ ଜଗତର ଧର୍ମଗୁରୁ ମହାମାନ୍ୟ ପୋପଜନ ପଲ (୨)ଙ୍କ ଉପରେ ଗୁଳିମାଡ଼ ଘଟଣାରେ ତାର ଚରମ ପରିଣତି ପ୍ରକାଶ ପାଇଲା ବୋଲି ମନରେ ଅନୁଶୋଚନା ଆସୁଛି। ପ୍ରତିଦିନ ଖବର କାଗଜଟିଏ ଖୋଲିବା ମାତ୍ରେ ଇ ଭଲ ଖବରଟିଏ ଆଖିରେ ପଡ଼ିବା ତ ଦୂରର କଥା—କେବଳ ଚୋରି, ଡକାୟତି, ରାହାଜାନି, ଧର୍ଷଣ, ଅତ୍ୟାଚାର, ଛୁରୀଭୁସା, ଦୁର୍ଘଟଣା, ଗୁଳିମାଡ଼, ଲୁଣ୍ଠନ ଓ ଅପମୃତ୍ୟୁ ଇତ୍ୟାଦିର ଖବରଗୁଡ଼ିକରେ ଖବରକାଗଜମାନଙ୍କର ପୃଷ୍ଠା ପୂରିଯାଉଛି। ଏହା କେବଳ ପାଶ୍ଚାତ୍ୟ ଜଗତରେ ନୁହେଁ—ଆମ ଦେଶରେ, ଆମ ରାଜ୍ୟରେ ଓ ଆମ ସହର ବା ଗାଁ ଗହଳିରେ ବି ପ୍ରତିଦିନ ଘଟିଚାଲିଛି ଏବଂ ଏହାର ପରିଣାମ ମଧ୍ୟ ଦିନକୁ ଦିନ ବଢ଼ିଚାଲିଛି। ସ୍କୁଲ, କଲେଜ, ବିଶ୍ୱବିଦ୍ୟାଳୟ, ଏପରି କି ମନ୍ଦିର ଦେବାଳୟଗୁଡ଼ିକର ପରିବେଶ ମଧ୍ୟ ଏହି ହିଂସାତ୍ମକ ପ୍ରଭାବରୁ ମୁକ୍ତ ନୁହେଁ। ଏସବୁ ଦେଖି ମନରେ କେବଳ ଦୁଃଖ, ନୈରାଶ୍ୟ ଓ ବିଭୀଷିକାର ଅନୁଭବ ଆସୁଛି ସିନା ଏହାର କାରଣ ଓ ନିରାକାରଣର ଉପାୟ କଣ—ସେ ସମ୍ବନ୍ଧେ ମନକୁ କିଛି ଆସୁନାହିଁ। କିମ୍ୱା ସମାଜକୁ ବିଶ୍ଳେଷଣ କରୁଥିବା ଦ୍ରଷ୍ଟାମାନେ ଅଥବା ସମାଜକୁ ଚଳାଉଥିବା କର୍ତ୍ତାମାନେ ମଧ୍ୟ ଏଥିରୁ ଉଦ୍ଧାର ପାଇବାର କିଛି ବାସ୍ତବ ଉପାୟ ବତାଇ ପାରୁ ନାହାନ୍ତି କି ଉଦ୍ୟମ ମଧ୍ୟ କରିପାରୁ ନାହାନ୍ତି।

ଏହି ହିଂସାକାଣ୍ଡ କିନ୍ତୁ ମୁଖ୍ୟତଃ ଚାରୋଟି କାରଣରୁ ଘଟୁଥିବାର ଅନୁମାନ କରାଯାଏ। ଅର୍ଥନୈତିକ କାରଣରୁ—ରାଜନୈତିକ କାରଣରୁ, ସାଂପ୍ରଦାୟିକ କାରଣରୁ ଓ ଯୌନାଭିଳାଷ କାରଣରୁ ବିଭିନ୍ନ କ୍ଷେତ୍ରର ସଂପୃକ୍ତ ବ୍ୟକ୍ତିମାନଙ୍କ ଭିତରେ ଏହି ହିଂସା ଓ ପ୍ରତିହିଂସାର ବହ୍ନି ହୁକିନା ଜଳିଉଠୁଛି। ଯେଉଁ ବ୍ୟକ୍ତି ହିଂସାକାଣ୍ଡ ଘଟାଉଛି ବହୁ କ୍ଷେତ୍ରରେ ପ୍ରମାଣିତ ହେଉଛି ଯେ ସେହି ହିଂସ୍ରକଟିର ମାନସିକସ୍ୱାସ୍ଥ୍ୟ ବିକଳ ବା ବିକୃତ। ଯେ କେବଳ ରାଜନୀତି, ଅର୍ଥନୀତି, ଧର୍ମ, ଦେବଦେ ପୂଜାରଦ୍ୱାହି ଦେଇ ହିଂସାକାଣ୍ଡଟି କରୁଛି। ହିଂସ୍ରକ ବ୍ୟକ୍ତିଟି ତା'ର ହିଂସାତ୍ମକ କାର୍ଯ୍ୟକଳାପକୁ ନିଜ ବିବେକ ଦ୍ୱାରା ଓ ସମାଜର ବିବେକଦ୍ୱାରା ସମର୍ଥିତ କରିବାଲାଗି ପୂର୍ବୋକ୍ତ କାରଣମାନଙ୍କ ଭିତରୁ ଗୋଟିଏ କାରଣକୁ ନିଜ ପକ୍ଷରୁ ଆତ୍ମସମର୍ଥନ ଲାଗି ବ୍ୟବହାର କରୁଛି ମାତ୍ର।

ହିଂସ୍ରକ ବ୍ୟକ୍ତିଟି କେବେ ହେଲେ ବି ସାଧାରଣ ସୁସ୍ଥ ମାନସିକତାରେ ଅଧିକାରୀ ନୁହେଁ। ଏବଂ ଆଶ୍ଚର୍ଯ୍ୟ ଓ ଦୁର୍ଭାଗ୍ୟର କଥା ଯେ ଗୋଟିଏ ଦେଶର ସ୍ୱୟଂ ରାଷ୍ଟ୍ରଚାଳକ ମଧ୍ୟ ଏହିଭଳି ଏକ ବିକଳ ମାନସିକତାର ଅଧିକାରୀ ହୋଇ ତାଙ୍କର ରାଜନୀତିକ ପ୍ରତିପକ୍ଷମାନଙ୍କୁ ପରୋକ୍ଷରେ ବା ପ୍ରତ୍ୟକ୍ଷରେ ହତ୍ୟା କରିଚାଲନ୍ତି। ଏହାର ଭୂରି ଭୂରି ଉଦାହରଣ ଗତି ତିନିବର୍ଷ ଭିତରେ ଆମ ପଡ଼ୋଶୀ ଦେଶମାନଙ୍କରେ ଘଟୁଥିବା ରାଜନୈତିକ ହିଂସାକାଣ୍ଡଗୁଡ଼ିକ ବିଶ୍ଳେଷଣ କଲେ ମିଳିପାରିବ। ବାଂଲାଦେଶ, ପାକିସ୍ଥାନ, ଇରାନ ପ୍ରଭୃତି ଦେଶରେ ଗତ କେତୋଟି ବର୍ଷ ଭିତରେ କି ବିଭତ୍ସ ରାଜନୈତିକ ହତ୍ୟାକାଣ୍ଡମାନ ଘଟି ନ ଯାଇଛି ବା ନ ଯାଉଛି। ଆମ ଦେଶରେ ମଧ୍ୟ, ପ୍ରତ୍ୟକ୍ଷଭାବେ ଏଭଳି ରାଜନୈତିକ ହତ୍ୟାକାଣ୍ଡ ଘଟୁ ନ ଥିଲେ ବି ଆମର ବହୁ ରାଜନୈତିକ ବ୍ୟକ୍ତିଙ୍କ ଅନ୍ତରରେ ତାଙ୍କର ପ୍ରତିପକ୍ଷଙ୍କ ପ୍ରତି ଘୋର ମାତ୍ସରିକ ହିଂସ୍ର ପ୍ରତିକ୍ରିୟା ଭରିରହିଛି ଓ ସେମାନେ ମଧ୍ୟ ପରୋକ୍ଷରେ ଅନ୍ୟମାନଙ୍କ ଦ୍ୱାରା ଏହି ହିଂସା ଓ ପ୍ରତହିଂସାତ୍ମକ କ୍ରିୟାକଳାପକୁ ଚଳେଇ ରଖିଛନ୍ତି।

ମାନବିକ ଗୁଣ-ଦୁର୍ଗୁଣର ନିର୍ଣ୍ଣୟକାରମାନଙ୍କ ମତରେ ହିଂସା ଅପେକ୍ଷା ପ୍ରତିହିଂସା ଆହୁରି ବିଭତ୍ସ ଓ ମାରାତ୍ମକ। ଏବଂ କହିବା ବାହୁଲ୍ୟ ଯେ, ଗୋଟିଏ ହିଂସାକାଣ୍ଡରୁ ଅନନ୍ତ ପ୍ରତିହିଂସାର ଉଦ୍‌ଭବ ହୋଇଥାଏ। ସମାଜରେ ଉଚ୍ଚ ଆସନରେ ଅଧିରୂଢ଼ ବ୍ୟକ୍ତିମାନେ ବା ରାଷ୍ଟ୍ରପରିଚାଳକମାନେ ଯଦି ସ୍ୱୟଂ ହିଂସାଭାବର ଅଧୀନ ହୁଅନ୍ତି ତେବେ ସଂକ୍ରାମକ ରୋଗ ପରି ଏହା ଦେଶର ବା ବିଶ୍ୱର ଅଗଣିତ ଇତର ମାନବର ହୃଦୟ ଭିତରକୁ ପ୍ରତିହିଂସା ରୂପରେ ସଂକ୍ରମିତ ହୋଇଯାଇ ସାରା ଦେଶରେ ଓ ସାରା ବିଶ୍ୱରେ ଘୋର ହିଂସାତ୍ମକ ଅଗ୍ନ୍ୟୁତ୍ପାତ ଘଟାଇ ଦିଏ। ପୋପ୍‌ଙ୍କୁ ଗୁଳି କରିଥିବା ଲୋକଟି ଏକ ଆନ୍ତର୍ଜାତିକ ଉଗ୍ରପନ୍ଥୀ ଗୋଷ୍ଠୀର ଲୋକ ଏବଂ ସେ ଏକ ରାଜନୀତିକ ଧର୍ମାନ୍ଧ ପାଗଳ ଲୋକ।

ଆମେ ଯଦି ଆମ ସମାଜର ବିଶେଷ ଆସନରେ ବସିଥିବା ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଦେଖିବା—ଅର୍ଥାତ୍ ଆମର ଶିକ୍ଷିତ, ଅଧ୍ୟାପକ, ଅଫିସର ଓ ବୁଦ୍ଧିଜୀବୀମାନଙ୍କୁ ଭଲ କରି ପରୀକ୍ଷାକରିବା ତା'ହେଲେ ଦେଖିବା ଯେ, ସେମାନେ ଛୁରି ଓ ବନ୍ଧୁକଚାଳନା ଦ୍ୱାରା ହୁଏତ ହିଂସାକାଣ୍ଡ ପ୍ରଦର୍ଶନ କରୁନାହାନ୍ତି—କିନ୍ତୁ ଅଧିକାଂଶ ବିଶିଷ୍ଟ ବ୍ୟକ୍ତିମାନଙ୍କ ହୃଦୟରେ ଅନ୍ୟ ପ୍ରତି ହିଂସା ଓ ଈର୍ଷାର ବହ୍ନି ସର୍ବଦା ଅନ୍ୟର ଓ ନିଜର ଅଲକ୍ଷ୍ୟରେ ପ୍ରଜ୍ୱଳିତ ହେଉଛି। ଏପରି କି ବହୁ କ୍ଷେତ୍ରରେ ପରିବାରମାନଙ୍କରେ ବି ପିତାମାତା, କକାଖୁଡ଼ୀ, ଶାଶୁଶଶୁର, ବଡ଼ଭାଇ—ଏମାନଙ୍କ ହୃଦୟରେ ମଧ୍ୟ ହିଂସା ଓ ଈର୍ଷାଭାବ ମାତ୍ରାଧିକ ଭାବେ ରହିଛି ଓ ନୀରବରେ ବା ଅଲକ୍ଷ୍ୟରେ କ୍ରିୟାଶୀଳ ହେଉଛି। ଅପ୍ରକାଶିତ ଈର୍ଷା ଓ ହିଂସାର ସ୍ପନ୍ଦନ ଅତ୍ୟନ୍ତ ଶକ୍ତିଶାଳୀ ଓ ମାରାତ୍ମକ।

ଗୋଟିଏ କଥାରେ କହିଲେ, ସମାଜର ବା ଦେଶର ଯେଉଁମାନେ ଯେ କୌଣସି ଭାବରେ ଅଭିଭାବକ ଆସନରେ ବସିଛନ୍ତି, ସେମାନଙ୍କ ହୃଦୟ ଯଥୋଚିତ ଭାବେ ହିଂସା ଓ ଈର୍ଷାଭାବରୁ ମୁକ୍ତ ହୋଇନାହିଁ–ଏବଂ ପ୍ରେମ, କରୁଣା ଓ ମୈତ୍ରୀ ଭାବେର ଅନୁପ୍ରାଣିତ ହୋଇନାହିଁ। ଫଳରେ ହିଂସା ବା ଈର୍ଷାଭାବ ଦିନକୁ ଦିନ ପ୍ରତିହିଂସା ଓ ପ୍ରତିଈର୍ଷାରେ ପରିଣତ ହୋଇ ବଢ଼ି ଚାଲିଛି।

ସରକାର ଚଳାଉଥିବା ଶାସକ ପ୍ରଶାସକମାନେ ଯଦି ସେମାନଙ୍କର ପ୍ରତିପକ୍ଷ ବା ସମାଲୋଚକମାନଙ୍କ ପ୍ରତି ହିଂସାପରାୟଣ ନ ହୁଅନ୍ତେ–ଶିକ୍ଷକ ଅଧ୍ୟାପକମାନେ ଯଦି ସେମାନଙ୍କ ଛାତ୍ରଛାତ୍ରୀମାନଙ୍କ ପ୍ରତି ହିଂସୁକ ବା ଈର୍ଷୁକ ନ ହୁଅନ୍ତେ–ଗୃହକର୍ତ୍ତା ବା ଗୃହକର୍ତ୍ତାମାନେ ଯଦି ସେମାନଙ୍କର ପାଳିତ ଭୃତ୍ୟ, ସେବକ ବା ଚାକରମାନଙ୍କ ପ୍ରତି ହିଂସାତ୍ମକ ଭାବ ନ ରଖି ପ୍ରୀତି ଓ ସହାନୁଭୂତିର ଭାବ ପୋଷଣ କରନ୍ତେ ତେବେ ଏ ସମାଜରୁ ବହୁ ପରିମାଣରେ ହିଂସାଭାବ କମି ଯାଆନ୍ତା।

ସମାଜରେ ହିଂସାଭାବ ବଢ଼ିବାର ଅନ୍ୟାନ୍ୟ ମନସ୍ତାତ୍ତ୍ୱିକ କାରଣଗୁଡ଼ିକ ମଧ୍ୟ ରହିଛି ଆମ ସମାଜରେ ପୁଣି ଜନସଂଖ୍ୟା ଏପରି ଅନିୟନ୍ତ୍ରିତ ଭାବେ ବଢ଼ିଚାଲିଛି ଯେ ଏହି କ୍ରମବର୍ଦ୍ଧିତ ଓ ନିତ୍ୟବର୍ଦ୍ଧିତ ଜନସାଧାରଣଙ୍କୁ ମାନବୀୟ ଗୁଣାବଳୀରେ ସୁଶିକ୍ଷିତ କରିବାକୁ ଆମର ଅଭିଳାଷ ଏବଂ ଉଦ୍ୟମ ପୁଣି ଏତେ କମ ଯେ ଆମର ଗାଁ ଗହଳ ଓ ସହରମାନଙ୍କରେ ଏହି ମାନସିକ ବିକାରଗ୍ରସ୍ତ ହିଂସୁକ ଲୋକଙ୍କ ସଂଖ୍ୟା ଅତି ଆଶଙ୍କାଜନକ ଭାବେ ବଢ଼ିଚାଲିଛି। ଆମର ସ୍କୁଲ କଲେଜରେ ଓ ପ୍ରତି ପରିବାରରେ ଯଦି ନିଜେ ଦୟା, କ୍ଷମା, ପ୍ରୀତି, ମୈତ୍ରୀ, ଉଦାରତା, ସହିଷ୍ଣୁତା ଆଦିମାନବୀୟ ସୁକୁମାର ଗୁଣଗୁଡ଼ିକ ଅର୍ଜନ କରିବା ଲାଗି ଆମର ପ୍ରାଚୀନ ଅଥଚ ଚିରନ୍ତନ ମହାକାବ୍ୟ–ରାମାୟଣ, ମହାଭାରତ ଓ ଭାଗବାଦି ଶାସ୍ତ୍ରମାନ ଅଧ୍ୟୟନ କରନ୍ତେ–ପିଲାମାନଙ୍କୁ ଅଧ୍ୟୟନ କରାନ୍ତେ–ଘରେ ସମସ୍ତଙ୍କ ସହିତ ସେହିସବୁ ପ୍ରସଙ୍ଗ ଆଲୋଚନା କରନ୍ତେ ଓ ନିଜ ନିଜ ଜୀବନରେ ଯଥାସମ୍ଭବ ସେହି ସୁକୁମାର ଭଦ୍ରଗୁଣଗୁଡ଼ିକର କିଛିତ ପ୍ରତିଫଳନ ଦେଖାନ୍ତେ–ତେବେ ଆମର ପିଲାମାନଙ୍କ ଉପରେ ତାର ନିଶ୍ଚୟ କିଛି ପ୍ରଭାବ ପଡ଼ନ୍ତା।

ଆମେ ବର୍ତ୍ତମାନ ସାରାବିଶ୍ୱରେ ଏକ ପ୍ରତିଦ୍ୱନ୍ଦିତାମୂଳକ ଜୀବନକୁ ଆଦର୍ଶ ବୋଲି ଚଳେଇ ନେଇଛୁ। କିନ୍ତୁ ତା' ବଦଳରେ ଯଦି ଆମେ ସହଯୋଗିତାମୂଳକ ଜୀବନଯାପନ କରିବାର ଆଦର୍ଶ ପ୍ରଚଳନ କରନ୍ତୁ–ତେବେ ମଧ୍ୟ ମଣିଷ ଭିତରୁ ମଣିଷଟି ପ୍ରତି ହିଂସାତ୍ମକ ଈର୍ଷାଭାବ ଯଥେଷ୍ଟ କମିଯାନ୍ତା। ଆମର ରାଜନୀତି, ଅର୍ଥନୀତି, ସଂସ୍କୃତି ଓ ଧର୍ମ ପ୍ରଭୃତି ପ୍ରୀତି ଓ ସହାନୁଭୂତିମୂଳକ ଏହି ସହଯୋଗିତାର ଆଦର୍ଶ ଉପରେ ପ୍ରତିଷ୍ଠିତ ନ ହେଲେ–ଏ ପୃଥିବୀରେ ସମଗ୍ର ମାନବଗୋଷ୍ଠୀ ଖୁବ୍ ଶିଘ୍ର ଆପଣା ଆପଣା ମଧ୍ୟରେ କାମୁଡ଼ାକାମୁଡ଼ି ହୋଇ ଧ୍ୱଂସ ହୋଇଯିବ। ହିଂସାରେ

ବର୍ତ୍ତମାନ ଏ ପୃଥିବୀ ଭଙ୍ଗୁର ହୋଇ ଉଠିଲାଣି। ଜାଣିବା ଶୁଣିବା ଲୋକେ ଓ ସମାଜର ଅଭିଭାବକ ମାନେ ଆଜ ହୁଁ ଏଥିପ୍ରତି ସତର୍କ ରହନ୍ତୁ ଓ ଏ ପୃଥ୍ୱୀକୁ ଅହିଂସାନୁପ୍ରାଣିତ କରିବା ଲାଗି ନିଜଆଡୁ ସର୍ବପ୍ରଥମେ ଉଦ୍ୟମ ଆରମ୍ଭ କରିଦିଅନ୍ତୁ। ପ୍ରୀତି, ମୈତ୍ରୀ, କ୍ଷମା, ଦୟା ଓ ସହାନୁଭୂତିର ଅଜସ୍ର ସ୍ପନ୍ଦନରେ ସାରା ମାନବ ସମାଜର ହୃଦୟକୁ ସ୍ପନ୍ଦିତ କରିବାଲାଗି ପ୍ରତିଟି ସଚେତନ ମଣିଷ ପ୍ରସ୍ତୁତ ହୋଇ ଯାଆନ୍ତୁ। ତା' ନହେଲେ ମନୁଷ୍ୟ ସମାଜର ଆଉ ରକ୍ଷା ନାହିଁ।

ଏବଂ କଥା ମଧ୍ୟ ସମସ୍ତେ ଜାଣି ରଖନ୍ତୁ ଯେ ଯେତେ ଉଗ୍ର ଓ ପ୍ରଚଣ୍ଡ ହିଂସାଭାବଠାରୁ ପବିତ୍ର ହିଂସା ଭାବଟି ଅମିତଗୁଣରେ ଶକ୍ତିଶାଳୀ ଓ ପ୍ରଭାବଶାଳୀ। ଯେକୌଣସି ବ୍ୟକ୍ତି ନିଜର ବ୍ୟକ୍ତିଗତ ଜୀବନରେ ଏହି ସତ୍ୟଟିକୁ ପରୀକ୍ଷା କରିପାରେ।

❋❋

# ଜନଗଣ ଓ ଜନତା ଜନାର୍ଦ୍ଦନ

୨୧।୮।୮୨

ଗୋଟିଏ ଦେଶର ଲୋକମାନଙ୍କୁ ଯଦି ରାଜନୈତିକ ଦୃଷ୍ଟିରୁ ଆମେ ଦୁଇଭାଗରେ ବିଭକ୍ତ କରିବା ତେବେ ସେଥିରୁ ଗୋଟିଏ ଭାଗରେ ରହିବେ ଶାସକ ଓ ପ୍ରଶାସକ ଗୋଷ୍ଠୀ ଏବଂ ଅନ୍ୟ ଭାଗଟିରେ ରହିବେ ଶାସିତ ଗୋଷ୍ଠୀ। ଏହି ଶାସିତ ଗୋଷ୍ଠୀଙ୍କୁ ଆମେ ଆମ ପ୍ରାଚୀନ ଭାରତୀୟ ସାଧୁ ଶବ୍ଦରେ କହିବା 'ପ୍ରଜାଗୋଷ୍ଠୀ'। ଏହି ପ୍ରଜାମାନଙ୍କୁ ଜନ ବୋଲି ମଧ କୁହାଯାଏ।

ଏହି ଜନଗୋଷ୍ଠୀକୁ ଆମେ ପୁନଶ୍ଚ ଦୁଇ ଭାଗରେ ଆମ ବିଚାର ପାଇଁ ବିଭକ୍ତ କରିପାରିବା। ଏହାର ଗୋଟିଏ ଭାଗ ହେଲା 'ଜନଗଣ' ବା ମାସ୍ (Mass) ଓ ଅପର ଭାଗଟି ହେଲା ଜନତା ଜନାର୍ଦ୍ଦନ ଗୋଷ୍ଠୀ।

ଏହି ମାସ୍ ବା ଜନଗଣ ଶବ୍ଦଟି ଆଜିକାଲି ସର୍ବଦା ଭଲ ବା ଶିଷ୍ଟ ଅର୍ଥରେ ବ୍ୟବହୃତ ହୁଏ ନାହିଁ। ଏହି ମାସ୍ ହେଲା ବହୁବେଳେ ଏକ ପରସ୍ପର ଅପରିଚିତ ଅସଂପୃକ୍ତ, ଅସମ୍ବନ୍ଧିତ ଅଥଚ ପରସ୍ପର ସନ୍ନିହିତ ଏକ ଅଜ୍ଞାନ, ଉନ୍ମତ୍ତ ଓ ପ୍ରବଳ ଜନ ସମାଗମ। ଏହି ଜନଗଣ ଏକତ୍ର ଗୋଟିଏ ରବ ଉଠାନ୍ତି—ତାକୁ କହନ୍ତି ଜନରବ ଓ ଏହି ଜନରବ ବା ସ୍ଲୋଗାନ ବଳରେ ଏମାନେ ଦେଶ ବା ଜାତି ଉପରେ କର୍ତ୍ତୃତ୍ୱ ବିସ୍ତାର କରନ୍ତି। କୋଳାହଳ ସୃଷ୍ଟିକରି ଉତ୍ସାହ ଉନ୍ମତ୍ତତାରେ ବେଳେ ବେଳେ ଆନ୍ଦୋଳନ ବି କରିପକାନ୍ତି।

କିନ୍ତୁ ଜନତା ଜନାର୍ଦ୍ଦନ ହେଲେ ଅଲଗା। ସେମାନେ ହେଲେ ଗୋଟିଏ ଜାତି ବା ଦେଶର ବୃହତ୍ତର ସଚେତନ ଲୋକଗୋଷ୍ଠୀ। ଏମାନଙ୍କର ଦୁନିଆ ସମ୍ପର୍କରେ, ଜୀବନ ସମ୍ପର୍କରେ, ମୃତ୍ୟୁ ସଂପର୍କରେ, ଧର୍ମାଧର୍ମ ସମ୍ପର୍କରେ, ନୀତିନ୍ୟାୟ ସମ୍ପର୍କରେ, ସତ୍ୟ ମିଥ୍ୟା ସମ୍ପର୍କରେ ଦେବାଦେବୀ ଓ ବ୍ୟକ୍ତିବିଶେଷଙ୍କ ସମ୍ପର୍କରେ ଗୋଟିଏ ସୁଚିନ୍ତିତ ବା ସୁବୋଧିତ ମୋଟାମୋଟି ଧାରଣା ଥାଏ, ବିଶ୍ୱାସ ଥାଏ ଓ ମତାମତ ମଧ ଥାଏ। ଏମାନଙ୍କ ଭିତରେ ନିରକ୍ଷର କୃଷକ ବା ମୂଲିଆଟିଠାରୁ ଆରମ୍ଭ କରି ଦେଶର ସର୍ବୋତ୍ତମ ଜ୍ଞାନୀ, ସୁଧୀ, ସାଧୁ ଓ ବିଜ୍ଞାନୀମାନେ ରହିପାରନ୍ତି ଏବଂ ଏମାନଙ୍କ ଭିତରେ ଚାକ୍ଷୁସ ବା ଶାରୀରିକ ସମ୍ବନ୍ଧ ନଥିଲେ ବି ଚେତନା ଓ ଲକ୍ଷ୍ୟ ଆଦର୍ଶରେ ସେମାନେ ଏକ ଅଦୃଶ୍ୟ ବନ୍ଧନରେ ବାନ୍ଧି ହୋଇ ରହିଥାନ୍ତି। ସେମାନଙ୍କ ଭିତରେ

ସ୍ଥାନ ବା କାଳଗତ ଦୂରତ୍ୱ ବ୍ୟବଧାନ ସୃଷ୍ଟିକରି ପାରେନା। ଏଇ ଜନତା ଜନାର୍ଦ୍ଦନ ଗୋଷ୍ଠୀ ସବୁ ଦେଖୁଥାନ୍ତି—ସବୁ କହୁଥାନ୍ତି—ସବୁ ଶୁଣୁଥାନ୍ତି—ସବୁ ବିଚାର କରୁଥାନ୍ତି ଓ ସବୁ ବିଷୟରେ ନିଷ୍କପଟ ଭାବେ ଓ ନିଷ୍କାମ ଭାବେ ସିଦ୍ଧାନ୍ତଟିଏ ନେଇଥାନ୍ତି। ଏହି ଜନତା ଜନାର୍ଦ୍ଦନମାନେ ଗୋଟିଏ ଦେଶ ବା ଜାତିର ସାମୂହିକ ଆତ୍ମାର ଅଧିକାରୀ। ସାମୂହିକ ସଂସ୍କୃତିର ମଧ୍ୟ ସ୍ରଷ୍ଟା ଓ ରକ୍ଷକ। ଏଇମାନଙ୍କ ଅଭିଳାଷ, ଆକାଂକ୍ଷା, ଅଭୀପ୍‌ସା, ସ୍ୱପ୍ନ ଓ ଆଚାର ଉଦ୍ୟମ ଫଳରେ ଗୋଟିଏ ଜାତୀୟ ଆତ୍ମାର ବିକାଶ ହୋଇଥାଏ ଏବଂ ଗୋଟିଏ ଜାତି ମଧ୍ୟ ପୃଥିବୀ ପୃଷ୍ଠରେ ସ୍ୱଧର୍ମ ଉପରେ ତିଷ୍ଠିରହେ।

ମାତ୍ର 'ମାସ୍' ସେକଥା ନୁହଁ। 'ମାସ୍' ଗୋଟାଏ ଅସ୍ଥାୟୀ ଓ ସାମୟିକ ଜାତୀୟ ପ୍ରାଣଶକ୍ତିର ଉନ୍ମାଦନାରୁ ସୃଷ୍ଟି ହୁଏ ଓ ତାରି ଭିତରେ ନାନାଦି ଶୁଭାଶୁଭ କାର୍ଯ୍ୟମାନ କରି ହଠାତ୍ ବିଲୀନ ହୋଇଯାଏ। 'ମାସ୍'ର କିଛି ସୁଦୂରପ୍ରସାରୀ ସ୍ୱପ୍ନ ନଥାଏ—ସୁଗଭୀର ଓ ଊର୍ଦ୍ଧ୍ୱତନ ଅଭୀପ୍‌ସା ନଥାଏ। କିଛି ସୁସ୍ଥିର ନୈଷ୍ଠିକ ଉଦ୍ୟମ ମଧ୍ୟ ନଥାଏ।

ଏକଥା ବି ସମାନ ଭାବରେ ସତ ଯେ, ଗୋଟାଏ ଗୋଟାଏ ସମୟରେ 'ମାସ୍' ମାତେ ଓ କେତେକ ସମୟରେ ଜନତା ଜନାର୍ଦ୍ଦନ ଜାଗ୍ରତ ହୁଅନ୍ତି। ମାସ୍ ବିଦ୍ରୋହ କରେ। ମାତ୍ର ଜନତା ଜନାର୍ଦ୍ଦନ ବିପ୍ଳବ କରନ୍ତି।

ପ୍ରତ୍ୟେକ ଯୁଗରେ ଓ ପ୍ରତ୍ୟେକ ଦେଶରେ ଏହି ମାସ୍ ଅଛନ୍ତି ଓ ଜନତା ଜନାର୍ଦ୍ଦନମାନେ ଅଛନ୍ତି। ରାଜତନ୍ତ୍ରଠାରୁ ଗଣତନ୍ତ୍ର ପର୍ଯ୍ୟନ୍ତ ସବୁପ୍ରକାର ଶାସନ ବେଳାରେ ଏହି ଦୁଇ ଶ୍ରେଣୀଙ୍କର ସ୍ୱ ସ୍ୱ ଭୂମିକା ରହିଛି। ପ୍ରକାଶ ଥାଉକି, ରାଜତନ୍ତ୍ର ହେଉ ବା ଗଣତନ୍ତ୍ର ହେଉ, ସବୁ ଶାସନରେ ଜନତା ଜନାର୍ଦ୍ଦନଙ୍କର ଧାରଣା, ବିଶ୍ୱାସ ଓ ମତାମତକୁ ଗୁରୁତ୍ୱ ଦିଆଯାଇଛି ଓ 'ମାସ'ର ପ୍ରାଦୁର୍ଭାବକୁ ଦମନ କରାଯାଇଛି। ଯେତେବେଳେ ଏହା ନ ହୋଇଛି ସେତେବେଳେ ଦେଶ ବା ଜାତିର ଅବସ୍ଥା ଶୋଚନୀୟ ହୋଇଛି।

ପ୍ରତ୍ୟେକ ବ୍ୟକ୍ତି ବିଶେଷତଃ ବିଶିଷ୍ଟ ବ୍ୟକ୍ତିମାନେ ଜାଣିରଖିବା ଉଚିତ ଯେ ସେମାନେ 'ମାସ୍'କୁ ଠକି ଦେଇ ପାରନ୍ତି—ଭୁଲେଇ ଦେଇ ପାରନ୍ତି, ଏପରି କି 'ମାସ୍'ର ବଳକୁ ବ୍ୟବହାର କରି ସାମୟିକ ଲାଭ ଉଠାଇ ପାରନ୍ତି—ଅଥବା ମାସ୍‌ର ଦାବୀକୁ ଦମନ କରି ସାମୟିକ ନିରାପତ୍ତା ପାଇ ପାରନ୍ତି—ମାତ୍ର ଜନତା ଜନାର୍ଦ୍ଦନଙ୍କୁ କେହି ଠକାଇ ଭୁଲାଇ ପାରିବେ ନାହିଁ—ବ୍ୟବହାର ବି କରିପାରିବେ ନାହିଁ—ଅଥବା ଦମନ ମଧ୍ୟ କରି ପାରିବେ ନାହିଁ।

ଆମ ଦେଶରେ ଗାନ୍ଧୀଜୀଙ୍କ ପଛରେ ଜନତା ଜନାର୍ଦ୍ଦନଙ୍କ ସମର୍ଥନ ଥିଲା। ମାସ୍‌ର ସମର୍ଥନ ପାଇ ସେ ନେତୃତ୍ୱ କରୁ ନଥିଲେ। ସେହିପରି ସେକାଳର ଯେତେ ବଡ଼ ବଡ଼ ଦେଶସେବୀ, କବି, ଲେଖକ, ଶିଳ୍ପୀ, ବୈଜ୍ଞାନିକ ଆଦି ପ୍ରସିଦ୍ଧ ହୋଇଛନ୍ତି ଓ

କାଳ ବକ୍ଷରେ ପ୍ରତିଷ୍ଠିତ ରହିଛନ୍ତି—ସେମାନଙ୍କ ପଛରେ ଏହି ଜନତା ଜନାର୍ଦ୍ଦନଙ୍କର ସଚେତନ, ପବିତ୍ର, ଗଭୀର ଓ ଆତ୍ମିକ ସମର୍ଥନ ରହି ଆସିଛି ଓ ରହିଥିବ। ସେମାନେ ଗୋଟାଏ ସୀମିତ କାଳର ଅଜ୍ଞାନ, ଉତ୍ତେଜିତ ଉନ୍ମତ୍ତ ମାସ୍‌ର ମତାମତ ବା ସ୍ଲୋଗାନକୁ ବାହନ କରି କାଳ ବକ୍ଷରେ ଗତି କରିନାହାନ୍ତି। ତା' ହୋଇଥିଲେ ସେହି ମହାନ୍ ବ୍ୟକ୍ତିମାନେ ଜାତିର ସ୍ମୃତିପଟରୁ ପୋଛି ହୋଇ ଯା'ନ୍ତେଣି।

ବେଳେ ବେଳେ କୌଣସି କୌଣସି ସ୍ଥାନରେ ଜନତା ଜନାର୍ଦ୍ଦନଙ୍କ ସଂଖ୍ୟା ଓ ଶକ୍ତି କମ୍ ଥିଲାବେଳେ ମାସ୍ ଉଠେ ଓ ବହୁତ ମାତେ ଓ ବହୁ ପ୍ରାଦୁର୍ଭାବ ଦେଖାଏ। ସେତେବେଳେ ସାରା ଦେଶରେ ନ୍ୟୁନ ବ୍ୟକ୍ତିମାନେ ଏହି ମାସ୍-ଡୁଷ୍ଟ-ନିଃସୃତ ସ୍ଲୋଗାନରେ ବିଶିଷ୍ଟ ହୋଇ ଉଠନ୍ତି। କ୍ଷୁଦ୍ରମନା ଟାଉଟରଟିଏ ବଡ଼ନେତା ହୋଇ ଉଠେ। ପ୍ରତିଭାହୀନ ପ୍ରଗଲ୍‌ଭ ଛୋଟ ଲୋକଟିଏ ବଡ଼ କବି ବା ଦାର୍ଶନିକର ଆଖ୍ୟା ପାଇଯାଏ। ଜନତା ଜନାର୍ଦ୍ଦନଙ୍କ ସମ୍ମୁଖରେ ଅଗ୍ନି ପରୀକ୍ଷାରୁ ସମୁତ୍ତୀର୍ଣ୍ଣା ସତୀ ସୀତାଙ୍କୁ ପୁନଶ୍ଚ ଏଇ ମାସ୍‌ର ସଂଶୟକୀର୍ଣ୍ଣ ସ୍ଲୋଗାନର ଦାଉରେ ପ୍ରପୀଡ଼ିତ ହୋଇ ସଶରୀରେ ପାତାଳଗାମୀ ହେବାକୁ ପଡ଼ିଥାଏ। ଏଇ ମାସ୍ ଯେତେବେଳେ ଗୋଟାଏ ସଂକୀର୍ଣ୍ଣ ଧର୍ମବିଶ୍ୱାସରେ ଅନ୍ଧ ଉନ୍ମତ୍ତ ହୋଇଯାଏ—ସେତେବେଳେ ତଥାକଥିତ ଧର୍ମଯୁଦ୍ଧ (ଜେହାଦ୍) ଲାଗି ଲକ୍ଷ ଲକ୍ଷ ନିରୀହ ସାଧୁ ଲୋକଙ୍କର ଜୀବନଯାଏ। ଏଇ ମାସ୍ ପୁଣି କେତେବେଳେ ଗୋଟିଏ ସାଧାରଣ ଗୁଣିଗାରେଡ଼ି ମଣିଷକୁ ଭଗବାନ କହି ବିମାନରେ କାନ୍ଧେଇ ବୁଲେ—ପୁଣି କେତେବେଳେ ଅତି ନିରୀହା ଅଥଚ ନାନାଦି ସୂକ୍ଷ୍ମ ଓ ଦିବ୍ୟ ଦର୍ଶନ ଉପଲବ୍ଧି କରୁଥିବା ଓ ପ୍ରକାଶ କରୁଥିବା ପବିତ୍ର ହୃଦୟା ସ୍ତ୍ରୀଲୋକଟିକୁ ଡାହାଣୀ ଆଖ୍ୟା ଦେଇ ନିଆଁରେ ପୋଡ଼ିମାରେ। ଏଇ ମାସ୍ ସତୀ ସ୍ତ୍ରୀ ଲୋକଟି ପ୍ରତି ସାମୂହିକ ଧର୍ଷଣ କରି ତାର ସତୀତ୍ୱକୁ ଗ୍ରାସ କରେ—ପୁଣି ହତଭାଗିନୀ ସ୍ତ୍ରୀଲୋକଟିକୁ ଦବରଦସ୍ତି ଟେକିନେଇ ତାର ମୃତସ୍ୱାମୀର ଚିତାଗ୍ନିରେ ପକାଇଦେଇ ତାକୁ ଜୀବନ୍ତ ଦଗ୍ଧ କରେ ଓ ସତୀଦାହ ପ୍ରଥାକୁ ଜାବୁଡ଼ି ଧରେ। ଜନତା ଜନାର୍ଦ୍ଦନ ଯେଉଁ କାରୁଣିକ ଶୁଦ୍ଧାତ୍ମା ବ୍ୟକ୍ତିଟିକୁ ତ୍ରାଣକର୍ତ୍ତା ବୋଲି ତା'ପଛରେ ଅନୁସରଣ କରେ, ମାସ୍ କଣ କରେ ନା' ତାକୁ ଟେକିନେଇ କ୍ରୁସରେ ଚଢ଼ାଇ ଦିଏ।

ଏହି ପ୍ରକାରେ ମାସ୍ ହେଲା ଗୋଟାଏ ଦେଶର ବା ଗୋଟାଏ ଜାତିର ଅନ୍ଧ ନିମ୍ନପ୍ରାଣ ଶକ୍ତିର ଏକ ଉନ୍ମତ୍ତ ପାଷଣ୍ଡ ଜନସଂଘ। ସେ କେତେବେଳେ କଣ ବୁଝେ, କଣ ଭାବେ କଣ କହେ—ତାହା ଆଗରୁ ଠଉରାଇବା ମୁସ୍କିଲ। ସେ ଯେତେବେଳେ ଲଙ୍ଗଳା ହେବାକୁ ବସେ ସମସ୍ତ ଜାତି ଲଙ୍ଗଳା ହେବାଟାକୁ ଫେସନ ବୋଲି ସାମୟିକ ଗ୍ରହଣ କରିନିଏ। ସେ ଯଦି ଉଚ୍ଚସ୍ୱରରେ କୋଳାହଳ କରି ଖୁସି ହୁଏ ତେବେ ସମଗ୍ର ଜାତିର ସାମୟିକ ଚିତ୍କାରରେ ଗଗନ ପବନ ଥରିଯାଏ। ମାସ୍ ଯଦି ଖଟ ଚଉକି ଚାହିଁଲା..ତେବେ ପୃଥିବୀ ବୃକ୍ଷଶୂନ୍ୟ ହେଲା। ମାସ୍ ଯଦି ଗାଡ଼ି ମଟରରେ

ବୁଲିବାକୁ ବସିଲା–ତେବେ ପୃଥିବୀ ତୈଳଶୂନ୍ୟ ହେଲା। ମାସ୍ ଯଦି ମନ୍ଦିର ଗଢ଼ିବାକୁ ଚାହିଁଲା–ତେବେ ଚାରିଆଡ଼େ ତ୍ରିନାଥ ମନ୍ଦିରରେ ପୂରିଗଲା। ମାସ୍ ଯଦି ଠାଏ ଥିର ନ ହୋଇ ଅସ୍ଥିର ଭାବରେ ସପ୍ତଦ୍ୱୀପା ମେଦିନୀ ଘୂରିବାକୁ ଚାହିଁଲା, ତେବେ ପୃଥିବୀକ ପଞ୍ଚତାରକା ବିଶିଷ୍ଟ ହୋଟେଲରେ ଛାଇ ହୋଇଗଲା। ମାସ୍ ଯଦି ମଦ ପିଇବାକୁ ଚାହିଁଲା ତେବେ–ପୃଥୀର ସବୁ ରସ ମଦ ହୋଇଗଲା। ମାସ୍ ଯଦି ମାଉଁସ ଖାଇବାକୁ ବସିଲା–ତେବେ ପୃଥିବୀ ପ୍ରାଣୀଶୂନ୍ୟ ହେଲା। ମାସ୍ ଯଦି କାମାତ୍ରିକ ହେଲା–ତେବେ ପୃଥିବୀରୁ ସତୀ ସଂଖ୍ୟା ହ୍ରାସ ପାଇଲା। ମାସ୍ ଯଦି ପଢ଼ିବାକୁ ଚାହିଁଲା ତେବେ ଖବରକାଗଜ ଓ ପତ୍ର ପତ୍ରିକାର ସଂଖ୍ୟା ବଢ଼ି ଚାଲିଲା। ଶୁଣିବାକୁ ବା ଦେଖିବାକୁ ଚାହିଁଲା–ତେବେ ସିନେମା, ଟେଲିଭିଜନ, ରେଡ଼ିଓ, ରେକର୍ଡ଼ର ସଂଖ୍ୟା ବଢ଼ି ଚାଲିଲା ଏବଂ ଏସବୁଗୁଡ଼ିକ ଏଇ ମାସର ନିମ୍ନପ୍ରାଣଶକ୍ତିର ଅନ୍ଧ ଭକ୍ତର ପ୍ରାଣଶକ୍ତିକୁ ଆହୁରି ଉତ୍ତେଜିତ କରି ତୁଷ୍ଟ କରିବାକୁ ନିୟୋଜିତ ହେଲା।

କହିବା ବାହୁଲ୍ୟ ଯେ ବର୍ତ୍ତମାନ ପୃଥିବୀରେ ଏବଂ ଆମ ଦେଶରେ ଏହି 'ମାସ୍'ର ପ୍ରାଦୁର୍ଭାବହିଁ ଘଟିଛି। ଜନତା ଜନାର୍ଦ୍ଦନ ଅର୍ଦ୍ଧସୁପ୍ତ ଓ ଅର୍ଦ୍ଧଜାଗ୍ରତାବସ୍ଥାରେ ନୀରବ ଓ ସ୍ଥିର ହୋଇ କାଳାନ୍ତରକୁ ଅପେକ୍ଷା କରି ବସିଛନ୍ତି।

❋❋

# ଜନତାର ଉନ୍ମତ୍ତତା

୪।୧୧।୮୨

ବର୍ତ୍ତମାନ ସମଗ୍ର ବିଶ୍ୱ ପରିସ୍ଥିତିକୁ ସବୁ ଦିଗରୁ ପର୍ଯ୍ୟାଲୋଚନା କଲେ ଜଣାପଡ଼େ ଯେ, କେବଳ ଆମ ଦେଶରେ ନୁହେଁ—ସାରା ପୃଥିବୀରେ ଜନତା ଜନାର୍ଦ୍ଦନ ବର୍ତ୍ତମାନ ଯୁପ୍ତ ଏବଂ ଜନଗଣ ବା ଜନତାହିଁ ପ୍ରବଳ ହୋଇ ମାତିଛନ୍ତି। ଏ ଯୁଗ ହେଲା ଜନତାର, ଜନତା ପାଇଁ ଓ ଜନତା ଦ୍ୱାରା ସୃଷ୍ଟି ଯୁଗ। ରାଜନୈତିକ ଭାଷାରେ ଏମାନେ ହେଲେ ଗରିଷ୍ଠ ଜନସାଧାରଣ। ଏମାନଙ୍କ ପ୍ରଭାବ ସମାଜରେ ଶକ୍ତିଶାଳୀ ହେବାର ମୁଖ୍ୟ କାରଣ ହେଲା—ସେମାନଙ୍କର କ୍ରମବର୍ଦ୍ଧମାନ ସଂଖ୍ୟା ଗରିଷ୍ଠତା। ସେମାନେ ସର୍ବଦା ଜନ୍ମ ହୋଇ ଚାଲିଛନ୍ତି। ଜନ୍ମ ହେବା ଓ ଜନ୍ମ କରେଇବା ହେଲା ଜନତାର ମୁଖ୍ୟ ପ୍ରବୃତ୍ତି। କାରଣ ଯୌନସଙ୍ଗମ ଏବଂ କେବଳ ଯୌନସଙ୍ଗମରୁହିଁ ଜନତା ଆନନ୍ଦ ପାଏ। ଜନତା ପ୍ରେମ ପ୍ରେମ ବୁଝେନାହିଁ। ସେପରି କିଛି ବିଷୟ ଅଛି ବୋଲି ମଧ୍ୟ ଜାଣେ ନାହିଁ। ଜନତା ହେଲା ଅନ୍‌ରୋମାଣ୍ଟିକ, ହାବଭାବ, ଅନୁଭବ, ରାଗ ଅନୁରାଗ, ପ୍ରୀତି, ପ୍ରଣୟ, ବିରହ, ବିଚ୍ଛେଦ, ଶୋକ-ବିଷାଦ ପ୍ରଭୃତି ରୋମାଣ୍ଟିକ ପ୍ରେମ ପ୍ରୀତି କଣ, ସେ କଥାରେ ଜନତା ମୁଣ୍ଡ ଖେଳାଏ ନାହିଁ। ଯେତିକି ତା ଦେହ ଚାହେଁ ଓ ପ୍ରାଣ ଚାହେଁ ସେତିକି ସେ ଭୋଗ କରି ତୃପ୍ତ ହୁଏ। ଭୋଜନ, ଶୟନ ଓ ଯୌନସଙ୍ଗମ—ଏହି ପ୍ରାଣିକ ପ୍ରବୃତ୍ତିଗୁଡ଼ିକର ଚରିତାର୍ଥତା ହିଁ ତାକୁ ବଞ୍ଚିବାର ଆନନ୍ଦ ଓ ପ୍ରେରଣା ଯୋଗାଉଥାଏ ଏବଂ ସେହି ସମ୍ପର୍କୀୟ କଳା, ସାହିତ୍ୟ, ସଙ୍ଗୀତ ଓ ସଂସ୍କୃତିକୁ ଆରାଧନା କରୁଥାଏ।

ଏଇ ଜନତାର ମନ ବା ବୁଦ୍ଧି ବୋଲି ଯାହା ଅଛି-ତାହା କେବଳ ତାର ପ୍ରାଣୀକ ପ୍ରବୃତ୍ତିଗୁଡ଼ିକୁ ଚରିତାର୍ଥ କରିବା ଲାଗି ବ୍ୟବହୃତ ହୋଇଥାଏ। ଜନତା ଆଗ ବିଚାର କରି ପରେ କାର୍ଯ୍ୟ କରେ ନାହିଁ। ଆଗ ପ୍ରବେଶାକ୍ରାନ୍ତ ହୋଇ କାର୍ଯ୍ୟଟିଏ କରିଦିଏ ଓ ପରେ ତାର କୃତକର୍ମ ବା ଦୁଷ୍କର୍ମକୁ ବିଚାର ମର୍ଯ୍ୟାଦା ଦେଇଥାଏ। ନିଜର ଲୋଭ ବଶରୁ ସେ ଅନ୍ୟର ଧନ ଲୁଣ୍ଠନ କରେ ଓ ସେହି ଦୁଷ୍କର୍ମକୁ ବିଚାର ପ୍ରସୁତ ସିଦ୍ଧାନ୍ତର ମର୍ଯ୍ୟାଦା ଦେଇ କହେ ଯେ ଅନ୍ୟକୁ ପ୍ରବଞ୍ଚିତ ଓ ଲୁଣ୍ଠିତ କରି ଯେଉଁ ଧନ ସେ ପାପିଷ୍ଠ ଠୁଳ କରିଥିଲା ଆମେ ତାକୁ ଉଦ୍ଧାର କରିଛୁ।

ସେହିପରି ବ୍ୟକ୍ତିଗତ ଈର୍ଷା, ଅସହିଷ୍ଣୁତାଦି କାରଣରୁ ଜନତା ଦଙ୍ଗା ହଙ୍ଗାମା ଆରମ୍ଭ କରି ଦିଏ ଏବଂ ପରେ ତାକୁ ରାଜନୀତି, ଧର୍ମ ବା ଜାତି ବା ସଂସ୍କୃତି ଇତ୍ୟାଦି ସାଙ୍ଗେ ଯୋଡ଼େ।

ବହୁ ଅଂଶରେ ଏହି ଜନତା ହେଲା ଅନ୍ଧ। ବାହାରେ ଓ ଭିତରେ ଉଭୟତଃ ଅନ୍ଧ। ସେଥିପାଇଁ ଧୂର୍ତ୍ତ ରାଜନୀତିଜ୍ଞମାନେ ଉଚ୍ଚାଭିଳାଷୀ ଧର୍ମାନ୍ଧ ମୁଲ୍ଲା, ମହନ୍ତ, ପୁରୋହିତ ଓ ମିଶନାରୀମାନେ ଏହି ଅନ୍ଧ ଓ ଉନ୍ମତ୍ତ ଜନତାକୁ କରଗତ କରି ସେମାନଙ୍କର ଇଷ୍ଟସାଧନ କରାଇନିଅନ୍ତି। ଗୋଟିଏ ଧର୍ମ ସଂପ୍ରଦାୟର ଧର୍ମଯାଜକ ଯଦି ଜନତାକୁ କୌଣସି ପ୍ରକାର ବୁଝାଇଦେଲା ଯେ ପିତୁଳା ବା ମୂର୍ତ୍ତି ଭିତରେହିଁ ଦେବଦେବୀ ଅଛନ୍ତି ତେବେ ସେଇ ସଂପ୍ରଦାୟର ଜନତା ପିତୁଳା ଓ ମୂର୍ତ୍ତି ଗଢ଼ିବାରେ ମାତିଲେ ଏବଂ ସେଗୁଡ଼ିକୁ ପୂଜା ବଳି ଦେଇ ବାଜା ବଜାଇ ହଲ୍ଲାକରି ଚତୁର୍ଦ୍ଦିଗ ପକେଇଲେ, ଉଠେଇଲେ। ଯେ ଯୋଉଠି ପାରିଲେ ମୂର୍ତ୍ତିଟାଏ ବସାଇ ମନ୍ଦିର ତିଆରି କରି ବସିଲେ। ଯେଉଁମାନେ ମୂର୍ତ୍ତିଟାକୁ ତିଆରି କରି ନ ପାରିଲେ, ସେମାନେ କାଠଟାଏ ବା ପଥରଟାଏ ଥାପିଦେଇ ତା' ଉପରେ ଚୁଆ ଚନ୍ଦନ ସିନ୍ଦୂର ବୋଳି ଖଣ୍ଡେ ଛିଟକନା ଗୁଡ଼ାଇ ତାକୁ ଗୋଟାଏ ଦେବଦେବୀ ନାଁ ଦେଇ ପୂଜାଧିଜାରେ ମାତିଲେ। ଏହି ପ୍ରବୃତ୍ତିରୁହିଁ ବର୍ତ୍ତମାନ କାଳରେ ହିନ୍ଦୁ ସଂପ୍ରଦାୟ ଭିତରେ ପିତୁଳା ବା ମୂର୍ତ୍ତି ପୂଜାର ଭୟଙ୍କର ଉନ୍ମାଦ-ପ୍ରବଣତା ଦେଖାଦେଇଛି। ବର୍ତ୍ତମାନ କି ସହର, କି ମଫସଲ ସର୍ବତ୍ର ଗଣେଶ, ସରସ୍ୱତୀ, ଲକ୍ଷ୍ମୀ, କାଳୀ, ଖୁଦୁରିକୁଣୀ, ବିଶ୍ୱକର୍ମା, ଦୁର୍ଗା, ମହାଦେବ, କାର୍ତ୍ତିକ ପ୍ରଭୃତିଙ୍କ ମୂର୍ତ୍ତି ପୂଜା ଯେତେ ଅଧିକ ହେଲାଣି ଏବଂ ସେସବୁ ପଛରେ ଯେତେ ଟଙ୍କା, ସମୟ ଓ ଶକ୍ତି ଖର୍ଚ୍ଚ ହେଉଛି—ଏବଂ ସେସବୁ ପାଇଁ ଯୋଉଁସବୁ ଆଇନ ଶୃଙ୍ଖଳା ପରିସ୍ଥିତିର ବିପର୍ଯ୍ୟୟ ସୃଷ୍ଟି ହେଉଛି—ସେକଥା ଆଉ ବୁଝାଇବାକୁ ପଡ଼ିବ ନାହିଁ। ଏଇ ମୂର୍ତ୍ତିପୂଜା ଭିତର ଦେଇ ମଧ ଜନତାର ଆଦିମ ପ୍ରବୃତ୍ତିଗୁଡ଼ିକ ପୁନର୍ବାର ଜାଗ୍ରତ ହୋଇ ଚରିତାର୍ଥ ହେବାର ସୁଯୋଗ ମିଳୁଛି। ଦୁର୍ଗା ମେଢ଼ ବା ଗଣେଶ ମେଢ଼କୁ ବିସର୍ଜନ କରି ଭସାଣିକୁ ନେଲାବେଳେ ଭକ୍ତମାନେ ପ୍ରଚୁର ମଦ୍ୟ ଗଞ୍ଜାଇ ଆଦି ଖାଇ ଭୋଳ ଓ ଉନ୍ମତ୍ତ ହୋଇଥାନ୍ତି ଏବଂ ଏତିକିବେଳେ ହିଁ ସାହି ସାହି ଭିତରେ ଓ ସଂପ୍ରଦାୟ ସଂପ୍ରଦାୟ ଭିତରେ ଟିହାଟେହି ହୋଇ ଦଙ୍ଗା ହାଙ୍ଗାମା ଆରମ୍ଭ ହୋଇଯାଏ। ଖୁନି ଖରାବୀ ଘଟିଯାଏ।

ବର୍ତ୍ତମାନ ଏଇ ଯେଉଁ ମୂର୍ତ୍ତି ପୂଜାର ପ୍ରାଦୁର୍ଭାବ ଦେଖାଦେଇଛି ଏଥିରୁ ବୁଝିବାକୁ ହେବନାହିଁ ଯେ ଲୋକଙ୍କ ଭିତରେ ଧର୍ମଭାବ ବା ଆଧାତ୍ମିକଭାବ ବଢ଼ିଛି। ଠିକ୍ ଓଲଟା। ଧର୍ମଭାବ ବରଂ କମିଛି। ଅପସଂସ୍କୃତି ଓ ତାମସିକ ଭାବ ବଢ଼ିଛି। ଏଇ ସବୁ ମୂର୍ତ୍ତି ପୂଜାରେ ଉନ୍ମତ୍ତହୋଇ ମାତିଥିବା ଭକ୍ତଙ୍କ ଭିତରୁ ଅଧିକାଂଶ ହେଲେ ଗୁଣ୍ଡା, ଛୁରାଧାରୀ ନୃଶଂସ, ମଦ୍ୟପ ପାଷଣ୍ଡ ଡକାୟତ ଓ ଧର୍ଷଣକାରୀ। କିନ୍ତୁ ବର୍ତ୍ତମାନ

ଏହାକୁ ବନ୍ଦକରିପାରିବା ସହଜ ନୁହେଁ। କାରଣ ବର୍ତ୍ତମାନର ଗଣତାନ୍ତ୍ରିକ ରାଷ୍ଟ୍ର ଜନତାକୁ ନେଇ ଚାଲିଛି। ଭୋଟ ସବୁ ସେଇମାନଙ୍କ ହାତରେ ଏବଂ ରାଷ୍ଟ୍ରଚାଳକ ନେତାମାନେ ମଧ୍ୟ ଅଧିକାଂଶ ଆସିଛନ୍ତି ଏଇ ଜନତା ଭିତରୁ। ବର୍ତ୍ତମାନ କାଳର ଅଧିକାଂଶ ରାଜନୈତିକ ନେତା ପ୍ରଥମେ ଏଇ ଜନତା ଭିତରେ କ୍ଷୁଦ୍ର କ୍ଷୁଦ୍ର ଦଳ ଗଢ଼ି ତାର ଦାଦା ହୋଇ ଥିଲେ। 'ଦାଦା'ରୁ ହଠାତ୍ ରାଷ୍ଟ୍ର ନେତା ବନିଗଲେ। ଗୋଟିଏ ଦୃଷ୍ଟିରୁ ଦେଖିଲେ ବର୍ତ୍ତମାନ ଆମ ଦେଶରେ ରାଜନୀତିକ କ୍ଷେତ୍ରରେ ନେତା ଅପେକ୍ଷା 'ଦାଦା' ମାନଙ୍କର ପ୍ରଭାବ ଓ ଶକ୍ତି ବେଶି। ଦେଶର ରାଜନୈତିକ ଓ ପ୍ରଶାସନିକ କ୍ଷେତ୍ର ବର୍ତ୍ତମାନ ଏଇ ଦାଦାମାନଙ୍କ ଦ୍ୱାରା କବଳିତ। ଏଇ ଦାଦାମାନଙ୍କର ରୁଚି, ନୀତି, ଗତି ଓ କ୍ରିୟାକଳାପ ହିଁ ଜନତାର ବ୍ୟକ୍ତିଗତ ଓ ସାମାଜିକ ଜୀବନ ଦର୍ଶନ ହୋଇ ଉଠିଛି।



# ଜନତା ହାତରେ ସଭ୍ୟତା

୧୧।୧୧।୮୨

ମୁଁ କେବଳ ହିନ୍ଦୁ ଧର୍ମ ସଂପ୍ରଦାୟ ଭିତରେ ଜନତାର ପ୍ରାଦୁର୍ଭାବ କଥା କହିଲି। କିନ୍ତୁ ଆମ ଦେଶରେ ଓ ସାରା ବିଶ୍ୱରେ ବର୍ତ୍ତମାନ ସବୁ ଧର୍ମ ସଂପ୍ରଦାୟ ପଡ଼ିଯାଇଛି ସେଇ ଜନତାଙ୍କ ହାତରେ। ହିନ୍ଦୁ ଜନତା ଯଦି ପିତୁଳା ବା ମୂର୍ତ୍ତିପୂଜାକୁ ତାଙ୍କର ପରମ ଧାର୍ମିକ ଇଷ୍ଟମୂର୍ତ୍ତି ଭାବି ସେଥିରେ କାଣ୍ଡଜ୍ଞାନ ହରାଇ ଅନ୍ଧଭାବରେ ମାତିଲେ—ତା'ହେଲେ ମୁସଲମାନ ଧର୍ମ ସଂପ୍ରଦାୟର ଜନତା ଭାବିଲା—ଦେବମୂର୍ତ୍ତି ବା ପିତୁଳାକୁ ଭାଙ୍ଗିଲେ, ଧ୍ୱଂସ କଲେ କିମ୍ବା ଭ୍ରଷ୍ଟ କଲେ ଯାଇ ସେମାନଙ୍କର ଧାର୍ମିକ ଇଷ୍ଟ ସାଧନ ହୋଇ ପାରିବ। ତେଣୁ ସେମାନେ ଅନ୍ଧ ଉନ୍ମତ୍ତତାରେ ଦେବମୂର୍ତ୍ତିଗୁଡ଼ିକୁ ଭାଙ୍ଗି ଚାଲିଲେ। ଇତିହାସରେ ବିଭିନ୍ନ ଧର୍ମ ସଂପ୍ରଦାୟର ଅନ୍ଧ ଉନ୍ମତ୍ତ ଜନତା ବାରମ୍ବାର ଏମିତି କାଣ୍ଡ ସବୁ ଭିଆଇଛନ୍ତି। ଏସବୁ କଥା ବି କାହାକୁ ଅଜଣା ଅଛି ?

କେବଳ ଧର୍ମବ୍ୟାପର ନୁହେଁ—ସମାଜ ବା ଦେଶର ସବୁ କ୍ଷେତ୍ରରେ ଯେତେବେଳେ ଏହି ମାସ୍ ବା ଜନତାର ପ୍ରାଦୁର୍ଭାବ ପ୍ରବଳ ହୋଇଉଠେ, ସେତେବେଳେ 'ସଂସ୍କୃତି'ର ମର୍ଯ୍ୟାଦା ମଧ୍ୟ ଆଉ ରହିପାରେ ନାହିଁ। ଅପସଂସ୍କୃତିର ପ୍ରସାର ଆରମ୍ଭ ହୋଇଯାଏ। କିନ୍ତୁ ଏହି ଅପସଂସ୍କୃତିକୁ ଗଣସଂସ୍କୃତି ବୋଲି ଆଖ୍ୟା ଦେଇଦିଆଯାଏ।

ଧୂର୍ତ୍ତ ଲାଭଖୋର ପୁଞ୍ଜିପତିମାନେ ଏହି ଅସଂଖ୍ୟ ଉନ୍ମତ୍ତ ହାଉ ଯାଉ ଜନତାର ରୁଚିକୁ କୌଣସି ପ୍ରକାରେ ଅକ୍ତିଆର କରି ଏପରି ଜିନିଷ ସବୁ ପ୍ରସ୍ତୁତ କରି ବିକ୍ରୀ ଆରମ୍ଭ କରିନିଅନ୍ତି ଯାହାକୁ କି ଏହି ଅନ୍ଧ ଜନତା ନିଶାଗ୍ରସ୍ତ ବେପରୁଆ ସମ୍ମୋହିତ ଲୋକ ପରି କିଣିନିଏ ଓ ବ୍ୟବହାର ନ କରି ରହିପାରେ ନାହିଁ। ଆଜିକାଲି ହରେକ ରକମର ଫେସନ ସାମଗ୍ରୀ ଉତ୍ପାଦନ ଓ ବିକ୍ରୟ ପଛରେ ଏହି ମାସ୍ ସମ୍ମୋହନ-କୌଶଳ ରହିଅଛି।

ବର୍ତ୍ତମାନ କି ସହର ବା କି ମଫସଲ ସର୍ବତ୍ର ମଦଦୋକାନ ଖୋଲିଗଲାଣି ଏବଂ ସମସ୍ତେ ମଦ ଖାଇବାଟାକୁ ଏକ ଅପୂର୍ବ ଆନନ୍ଦ ଦାୟକ ଉଲ୍ଲାସ, ଫୁର୍ତ୍ତି ଏବଂ ସଭ୍ୟତା ସଂସ୍କୃତିର ଅଙ୍ଗ ବୋଲି ଧରି ନେଇଛନ୍ତି। ସେମିତି ବିଭିନ୍ନ ପ୍ରକାର

ଶାଢ଼ୀ, କନା, କୁର୍ତ୍ତା, ପ୍ୟାଣ୍ଟ ଆଦିର ଅଦ୍ଭୁତ ବିସ୍ଫୋରଣ ଘଟିଛି। ଆମ ସହର ମଫସଲରେ ସ୍ତ୍ରୀ ପୁରୁଷମାନେ ନାନା ଫେସନର ପୋଷାକ ପିନ୍ଧି ବାହାର ଦେଖାଇ ଦେଲେଣି। ସ୍ତ୍ରୀଲୋକମାନେ ସିନେମା ଅଭିନେତ୍ରୀମାନଙ୍କୁ ଅନୁସରଣ କରି ବେଶଭୂଷା ହୋଇ ବୁଲିଲେଣି। କିନ୍ତୁ ସେହି ଅନୁପାତରେ ସେମାନଙ୍କର ଶାଳୀନତା, ବିଚାର, ବୁଦ୍ଧି, ଜ୍ଞାନଭାବ, ଅନୁଭୂତି ଇତ୍ୟାଦି ବଢ଼ିନାହିଁ। ଯେଉଁସବୁ ସୂକ୍ଷ୍ମ ଅନୁଭୂତି, ସୁକୁମାର ରୁଚି, ଉନ୍ନତ ଜୀବନ ଲାଗି ଅଭୀପ୍‌ସା, ଶୁଭ ପ୍ରୟାସମାନ ମଣିଷକୁ ଓ ତାର ସମାଜକୁ କ୍ରମବିକାଶ ପଥରେ ଆଗେଇ ନିଏ, ସେ ସବୁର ଅନୁଶୀଳନ ଜନତା କରୁନାହିଁ। ସେଣେ ତାର ମନ ନାହିଁ।

ଅଥଚ ଜନତା ହାତକୁ ବର୍ତ୍ତମାନ ସଭ୍ୟତାର ସବୁତକ ସାମଗ୍ରୀ ଆସିଗଲାଣି। ରେଡ଼ିଓ, ସିନେମା, ଟେପ୍-ରେକର୍ଡ଼ର, ହୋଟେଲ, ମାଇକ୍ରୋଫୋନ୍, ମାସ ଏଡୁକେଶନ ବା ଅସଂଖ୍ୟ ତଥାକଥିତ ସ୍କୁଲ, କଲେଜ, ପେଟେଣ୍ଟ ମେଡ଼ିସିନ୍, ବିଦ୍ୟୁତଶକ୍ତି, ଦ୍ରୁତଗତି ଯାନବାହନ, ଛାପାଖାନା, ଖବରକାଗଜ ଓ ଏମିତି ଏମିତି ଅନେକ ଜିନିଷ।

କିନ୍ତୁ ଯଥାର୍ଥ ସଂସ୍କୃତି ନଥିବାରୁ ଓ ସଂସ୍କୃତିବନ୍ତ ହେବା କଥାଟି ବ୍ୟକ୍ତିଗତ ସାଧନାର ବିଷୟ ହୋଇଥିବାରୁ, ଜନତା କଣ କରୁଛି ନା ବିନା ଆୟାସରେ ଲବ୍ଧ ସଭ୍ୟତାର ଉପକରଣଗୁଡ଼ିକୁ ଅପସଂସ୍କୃତି ବ୍ୟାପାରରେ ଲଗାଇ ଆମୋଦ ପାଉଛି। ଜନତା ହାତରେ ଛାପାଖାନା ପଡ଼ିଥିବାରୁ ଯାଚ୍ଛାତାଇ ଛପା ଯାଉଛି। ସ୍କୁଲ କଲେଜ ପଡ଼ିଥିବାରୁ ଯା'ଚ୍ଛାତାଇ ପଢ଼ାଯାଉଛି। ମାଇକ୍ରୋଫୋନ ପଡ଼ିଥିବାରୁ କି ସହର କି ଗ୍ରାମ ସର୍ବତ୍ର ସବୁବେଳେ ଉଚ୍ଚକିତ କୋଳାହଳରେ ଶାନ୍ତି ଓ ନୀରବତା ବ୍ୟାହତ ହେଉଛି। ଯା'ଚ୍ଛାତା' ଗୀତ ସର୍ବତ୍ର ସର୍ବଦା ମହା ଉଚ୍ଚସ୍ୱରରେ ତୁମୁଳ କୋଳାହଳରେ ବାଜୁଛି। ଜନତା ହାତରେ ଯାନବାହାନ ପଡ଼ିଥିବାରୁ ଚାରିଆଡ଼େ କେବଳ ଲୋକମାନଙ୍କର ବୃଥା ହଇଚଇ ହାଉ ଯାଉ ଚାଲିଛି। କେହି କୋଉଠି ଦଣ୍ଡେ ଥୟଧରି ଚୁପ୍‌ଚାପ ବସିରହିବାକୁ ମନ କରୁନାହିଁ। ମନଦେଇ କେହି କେତୋଟି ଘଣ୍ଟା ନିରବଚ୍ଛିନ୍ନ ଭାବେ କାମଟିଏ କରୁନାହିଁ। ଚୁପ୍‌ଚାପ୍ ବସି ଆକାଶ, ମେଘ, ଚନ୍ଦ୍ର, ଗଛଲତା ବା ଫଳ, ପକ୍ଷୀଙ୍କୁ ଚାହୁଁନାହିଁ। କେହି ବିଛଣା ଉପରେ ଶୋଇ ଘଣ୍ଟାଟିଏ ସମୟ ଖର୍ଚ୍ଚକରି ପ୍ରିୟଜନ ପାଖକୁ ତିନିଚାରି ପୃଷ୍ଠା ଚିଠିଟିଏ କବିତା ଭଳି ବା ଗଳ୍ପ ଭଳି ବା ରମ୍ୟରଚନା ଭଳି ଲେଖି ବସୁନାହିଁ। ସମସ୍ତେ ଅଥୟ। ଏଠି ନୁହଁ ସେଠି। ସେଠି ନୁହଁ ଏଠି। ଏଣେ ନୁହଁ, ତେଣେ। ତେଣେ ନୁହଁ ଏଣେ। ଖାଲି ଏମିତି ଛୁଟନ୍ତ ଭାବ—ଉଡ଼ନ୍ତଭାବ। ଅସ୍ଥିର ଭାବ—ରେଷ୍ଟଲେସ୍। ପାଞ୍ଚଜଣ ବନ୍ଧୁ ଏକତ୍ର କୋଠରୀଟି ଭିତରେ ଚୁପ୍‌ଚାପ୍ ଦୁଇଘଣ୍ଟା କାଳ ବସି କେତୋଟି କ୍ଲାସିକାଲ ବା ଭଲ ସଙ୍ଗୀତ ଶୁଣିବା ଏ ଯୁଗରେ ଏଇ ଜନତା ଗୋଷ୍ଠୀର ଲୋକଙ୍କ ଦ୍ୱାରା ସମ୍ଭବ ନୁହେଁ।

ଯୋଉଠି ଏକାଠି ଠିଆହେବେ ହଇହଲ୍ଲା କରିବେ। ଚିଲିକା ଭିତରେ ଡଙ୍ଗାରେ ଯାଉଥିବେ; ରେଡ଼ିଓଟିରେ କିନ୍ତୁ ବାଜୁଥିବ ସିନେମା ଗୀତ। ଖଣ୍ଡଗିରି କି ନୃସିଂହନାଥକୁ ଯିବେ ବୁଲିବାକୁ; କାନ୍ଧରେ ଝୁଲୁଥିବ ଟ୍ରାଞ୍ଜିଷ୍ଟରଟିଏ। ବିବିଧ ଭାରତୀ ବାଜୁଥିବ ଉଚ୍ଚସ୍ୱରରେ। ବଣରେ ଚଢ଼େଇଙ୍କ ସ୍ୱର ଶୁଣିବେ ନାହିଁ। ପାଣି ଭିତରେ ମୃଦୁ ମୃଦୁ ବାଜୁଥିବା ଜଳତରଙ୍ଗ ଶୁଣିବେ ନାହିଁ। ଅଥଚ ଜନତା ବାଇବିହ୍ଲା ପରି ଚାରିଆଡ଼େ ବୁଲୁଛନ୍ତି, ବାଇଟଙ୍ଗରୀଙ୍କ ପରି ଚୁଙ୍ଗରୁ ମୁଙ୍ଗରୁ ହେଉଛନ୍ତି। ଏଣେ ସେମାନଙ୍କୁ ତୁଷ୍ଟ କରିବା ଲାଗି ସେମାନଙ୍କ ଟୁରିଷ୍ଟ କ୍ଳାନ୍ତିକୁ ଅପନୋଦନ କରିବା ଲାଗି ସବୁ ଶାନ୍ତ ସୁନ୍ଦର ଗମ୍ଭୀର ଓ ନିସର୍ଗ ପରିବେଶମାନଙ୍କରେ ହୋଟେଲ ଓ ବଜାର ବସି ଚାଲିଛି।

କିନ୍ତୁ କିଏ ଆଉ କଣ କରି ପାରିବ? ଜନତା ହାତରେ ପଡ଼ି ଯାଇଛି ଏ ଯୁଗ। ଜନତା ଜନାର୍ଦ୍ଦନ ଶୋଇଛନ୍ତି—ଯୋଗନିଦ୍ରାରେ କି କୋଭ ନିଦ୍ରାରେ କିଏ ଜାଣେ?

❋❋

# ଜନଗଣଙ୍କ ହାତରେ ସଂସ୍କୃତି-ବିଭ୍ରାଟ

୧୮।୧୧।୮୨

ଜନଗଣଙ୍କ ହାତରେ ସଭ୍ୟତାର ସବୁ ଉପକରଣ ପଡ଼ିଗଲାଣି। କିନ୍ତୁ ସେହି ଉପକରଣଗୁଡ଼ିକୁ ସେମାନେ ଯେଉଁଭାବେ ବ୍ୟବହାର କରୁଛନ୍ତି—ତାହା ସମାଜକୁ ସଂସ୍କୃତିସମ୍ପନ୍ନ ନ କରି କିପରି ଅପସଂସ୍କୃତିର ପ୍ରସାର ଦିଗରେ ସାହାଯ୍ୟ କରୁଛି—ତାହା ପୂର୍ବରୁ କହିଛି ଓ ପରେ ମଧ୍ୟ କହିବି।

ତା' ପୂର୍ବରୁ "ସଂସ୍କୃତି" କଥାଟି କଣ, ତାହା ବିଚାର କରିବା ଉଚିତ। ମୋଟାମୋଟି ସଂସ୍କୃତି କଥାଟି ହେଲା—ବ୍ୟକ୍ତିଗତ ଭାବେ ଓ ସାମୂହିକ ଭାବେ ଗୋଟିଏ ଦେଶର ଲୋକ କଣ ଭାବୁଛନ୍ତି କଣ ଅନୁଭବ କରୁଛନ୍ତି, କଣ କରୁଛନ୍ତି ଓ କଣ କରିବେ ବୋଲି ମନସ୍ଥ ବା ସଂକଳ୍ପ କରୁଛନ୍ତି—ସେହି ଭାବନା ବା ଚିନ୍ତା—ସେହି ଅନୁଭବ, ସେହି କର୍ମ ଓ ସେହି ସଂକଳ୍ପ ସେମାନଙ୍କ ଜୀବନକୁ ଯଦି ଏପରି ଦିଗକୁ ନେଇ ଯାଉଥାଏ—ଯାହା ଫଳରେ କି ସେହି ସମାଜରେ ଶାନ୍ତି, ପ୍ରୀତି, ସମତା, ସଙ୍ଗତି, ମାଧୁର୍ଯ୍ୟ, ଶୌର୍ଯ୍ୟ, ଐକ୍ୟ, ସୌନ୍ଦର୍ଯ୍ୟ, ଦେଶ ଓ ଜାତି ପ୍ରୀତି, ତ୍ୟାଗ, ଦାନ, ଧୈର୍ଯ୍ୟ, ସ୍ଥିରତା, ସଂହତି, ଶୁଦ୍ଧତା, ସହିଷ୍ଣୁତା, ସତ୍ୟନିଷ୍ଠା—ପାଶବିକ ବା ଜାନ୍ତବ ପ୍ରବୃତ୍ତିଗୁଡ଼ିକରୁ ମୁକ୍ତ ହୋଇ ଅଧିକତର ମାନବୀୟ ବା ଦିବ୍ୟ ପ୍ରବୃତ୍ତିଗୁଡ଼ିକୁ ପାଇବା ଲାଗି ବ୍ୟାକୁଳତା, ପ୍ରଭୃତି ସଦ୍‌ଗୁଣଗୁଡ଼ିକ ବହୁ ଭାବରେ ପ୍ରକାଶ ପାଉଥାଏ, ତେବେ ଆମେ ତାକୁ ସଂସ୍କୃତି କହିବା ଏବଂ ଯଦି ଏସବୁର ବିପରୀତ ଭାବ ପ୍ରକାଶ ପାଉଥାଏ, ତେବେ ତାକୁ କହିବା "ଅପସଂସ୍କୃତି"। ବର୍ତ୍ତମାନ ଆମ ସମାଜରେ—ଅର୍ଥନୈତିକ, ରାଜନୈତିକ, ମନସ୍ତାତ୍ତ୍ୱିକ, ନୈତିକ, ଧାର୍ମିକ ଓ ସାମାଜିକ ଭାବନା, ଆଚରଣ ଓ ସଙ୍କଳ୍ପରେ ଯେଉଁ ବିପର୍ଯ୍ୟୟ ଦେଖା ଦେଇଛି—ତାକୁ ଅପସଂସ୍କୃତି ନ କହି ଆଉ କଣ କୁହାଯିବ ?

ଏଠି କିନ୍ତୁ ଦେଖିବାର କଥା ଯେ ସଭ୍ୟତାର ଉପକରଣ ଓ ଅବଦାନଗୁଡ଼ିକ ସଂସ୍କୃତିର ପ୍ରସାର ମାଧମ ନ ହୋଇ କିପର ଅପସଂସ୍କୃତିର ପ୍ରସାର ମାଧମ ହୋଇଯାଇଛି।

ମାଇକ୍ରୋଫୋନଟିଏ ଜନଗଣଙ୍କ ହାତରେ ପଡ଼ିଗଲା। ତାର ବ୍ୟବହାର ଏପରି ହେଲାଣି ଯେ ତା' ଭିତରୁ ଉଚ୍ଚକିତ ସ୍ୱରରେ କେବଳ ଅଶ୍ଳୀଳ ଗୀତ ଓ କୋଳାହଳ ହିଁ ବାହାରୁଛି ଏବଂ ସାମାଜିକ ମନରୁ ସବୁତକ ସୂକ୍ଷ୍ମ ସୁକୁମାରତା ନଷ୍ଟ କରି ଚାଲିଛି।

ଆଜିକାଲି ମାଇକ୍ରୋଫୋନ ଲଗାଇ ପୁଣି ଭକ୍ତମାନେ ଝାଞ୍ଜ ମୃଦଙ୍ଗ ପିଟି ଅଷ୍ଟପ୍ରହରୀ ନାମସଂକୀର୍ତ୍ତନ କରୁଛନ୍ତି। ଏବେ ନୀରବ ପ୍ରାର୍ଥନାର ସମର୍ଥକ ମୁସଲମାନ ଧର୍ମପ୍ରଚାରକମାନେ ମଧ୍ୟ ହିନ୍ଦୁଧର୍ମର ଅସଂସ୍କୃତ, ଅମାର୍ଜିତ ହିନ୍ଦୁ ଗୁଣ୍ଡା ମୂର୍ଖ ପ୍ରଚାରକଙ୍କ ସହିତ ପ୍ରତିସ୍ପର୍ଦ୍ଧା କରି ମାଇକ୍‌ରେ ଉଚ୍ଚସ୍ୱରରେ ଆଜାନ ସହିତ ଧର୍ମପ୍ରଚାର କଲେଣି।

ଅନ୍ୟ ପକ୍ଷରେ ଏହି ଉନ୍ମତ୍ତ ଅନ୍ଧ ସଂଖ୍ୟାଗରିଷ୍ଠ ଜନତାକୁ ଭୁଲେଇ ଭଲେଇ ମତେଇ ଲାଭଖୋର ପୁଞ୍ଜିପତିମାନେ କିପରି ନିଜର ଲାଭ-ଶୁଭ ବଢ଼େଇ ଚାଲିଛନ୍ତି—ବର୍ତ୍ତମାନର ସିନେମାଶିଳ୍ପ ତାର ଏକ ବଡ଼ ଉଦାହରଣ। ଯା'ପରେ ଆସିଛି—ଟେଲିଭିଜନ। ପାଶ୍ଚାତ୍ୟ ଦେଶମାନଙ୍କରେ ଏହି ଟେଲିଭିଜନ ଏକ ନୈତିକ ସଂକଟ ଓ ବିପଦ ସୃଷ୍ଟି କଲାଣି ବୋଲି ସେଠି ଟେଲିଭିଜନ ବିରୋଧରେ ସଚେତନ ଲୋକେ ଆନ୍ଦୋଳନ କଲେଣି। ମଣିଷର ଅବଚେତନ ମନ ଭିତରେ ଚପି ରହିଥିବା, ଛପି ରହିଥିବା ବହୁ ଆଦିମ ହିଂସ୍ର ବଣ୍ୟ ପ୍ରବୃତ୍ତିଗୁଡ଼ିକୁ ବ୍ୟବହାର କରି ବର୍ତ୍ତମାନ ସିନେମା ଓ ଟେଲିଭିଜନ ଶିଳ୍ପର ବ୍ୟବସାୟ ଚଳେଇଛନ୍ତି ଲାଭଖୋର ବ୍ୟବସାୟୀମାନେ। ଅବଶ୍ୟ ରେଡ଼ିଓ ପରି ଟେଲିଭିଜନ ଏପର୍ଯ୍ୟନ୍ତ ଆମ ଦେଶରେ ସରକାରୀ ନିୟନ୍ତ୍ରଣରେ ଅଛି। ମାତ୍ର ସିନେମା ପଡ଼ିଛି ବର୍ତ୍ତମାନ କୋଟି କୋଟି ଟଙ୍କାର ମାଲିକ ପୁଞ୍ଜିପତିଙ୍କ ହାତରେ। ସେମାନେ ଏହାକୁ ସଂସ୍କୃତି ଦୃଷ୍ଟିରୁ ନ ବିଚାରି ବେପାର ବା ଶିଳ୍ପ ଭାବରେ ଗ୍ରହଣ କରି ସେଥିରୁ କୋଟି କୋଟି ଟଙ୍କା ମୁନାଫା ଉଠାଉଛନ୍ତି।

ଯୌନପ୍ରବୃତ୍ତି ଓ ତା' ସହିତ ମିଶିମାଶି ରହି ତାକୁ ଆହୁରି ପ୍ରଚଣ୍ଡ ଓ ଉନ୍ମତ୍ତ କରାଉଥିବା ରକ୍ତାକ୍ତ-ହିଂସାକାଣ୍ଡ ବର୍ତ୍ତମାନ ଓ ଏହି ଦୁଇଟି ପ୍ରଚଣ୍ଡ ଓ ଦୁର୍ଦ୍ଦଣ୍ଡ ପ୍ରବୃତ୍ତିର କ୍ରିୟା ପ୍ରତିକ୍ରିୟା ଉପରେ ପୁଞ୍ଜିପତିମାନଙ୍କ ଭଡ଼ାଟିଆ ବୁଦ୍ଧିଜୀବୀ ଆର୍ଟିଷ୍ଟମାନେ ବହୁ ଗବେଷଣା ଚଳାଇଛନ୍ତି। ମାର୍କିନ ଯୁକ୍ତରାଷ୍ଟ୍ରରେ ଜନତା ମନ ହରଣ କରି କିପରି ଅର୍ଥଲାଭ କରିବାକୁ ହେବ—ସେଥିପାଇଁ ସାହିତ୍ୟ ସଙ୍ଗୀତ, ନାଟକ, ନୃତ୍ୟ, ଇତ୍ୟାଦି, ସାଂସ୍କୃତିକ ମାଧ୍ୟମଗୁଡ଼ିକୁ ମଧ୍ୟ ପୁଞ୍ଜିପତିମାନେ ବ୍ୟବହାର କରୁଛନ୍ତି। ଜନତାର ରୁଚି ଅରୁଚି ବିଶେଷ କିଛି ନ ଥାଏ। ତା'ର କେବଳ ଦରକାର ଗୋଟାଏ ହଇଚଇ, ଗୋଟାଏ ଆଲୋଡ଼ନ। ସେ ସବୁ ଦେଶମାନଙ୍କରେ ଯାହାସବୁ ଉପନ୍ୟାସ ନାଟକ ରଚିତ ହୋଇ ଲକ୍ଷ ଲକ୍ଷ ସଂଖ୍ୟାରେ ସାରା ପୃଥିବୀରେ ବିକ୍ରୀ ହେଉଛି ସେଥିରେ ବିଷୟବସ୍ତୁ କେବଳ ଯୌନ ସଂଭୋଗଜନିତ କଥାବସ୍ତୁ। ଆମର ରେଳବାଇ ଷ୍ଟେସନର ବହି ଦୋକାନଗୁଡ଼ିକ ଉପରେ ଆଖି ପକାନ୍ତୁ। ଅସଂଖ୍ୟ ଚକ୍‌ମକ୍ ମଲାଟର ପତ୍ରପତ୍ରିକା ଓ ବହି ବିଭିନ୍ନ ଭାଷାରେ ପ୍ରକାଶିତ ହୋଇ ବ୍ରିକୀ ହେଉଛି। ବହୁ ଲୋକଙ୍କର ପଠନ— ସ୍ପୃହା ସେଇଥିରେ ମେଣ୍ଟୁଛି। ସେ ସବୁଥିରେ କେବଳ ଯୌନ ସଂସର୍ଗୀୟ ବ୍ୟାପାର ଓ ବିଭିନ୍ନ ପ୍ରକାର ହିଂସାତ୍ମକ ବିବରଣୀ ଓ ଅପରାଧମୂଳକ ପ୍ରସଙ୍ଗ ଛପା ହେଉଛି। ଅଧିକାଂଶ ବିକୃତ ପ୍ରତିଭାଶାଳୀ ଲେଖକ ସେ ସବୁ ପ୍ରସଙ୍ଗ ବିଚିତ୍ର

ଢଙ୍ଗରେ ଲେଖୁଛନ୍ତି। ବହୁ କଥା ମନରୁ କାଢ଼ି ଲେଖୁଛନ୍ତି ଏବଂ ସେଗୁଡ଼ିକ ପଢ଼ି ବା ସିନେମାରେ ଦେଖି ସମାଜରେ ଅପରିଣତ ମସ୍ତିଷ ଲୋକେ ସେଇସବୁ କଥାକୁ ସତକୁ ସତ ଜୀବନରେ ଆଚରଣ କରୁଛନ୍ତି। ଗୋଟିଏ ଲେଖାରେ କେତେ ଯୁବକ ପଢ଼ିଲେ ଯେ ପାଣିକଳ ପାଖରେ ସନ୍ଧ୍ୟାବେଳେ ପାଣି ନେଉଥିବା କେତୋଟି ଯୁବତୀଙ୍କ ମଧ୍ୟରୁ ଜଣକୁ ଚାରିଜଣ ଯୁବକ ଟେକିନେଇ ଗଣ ଧର୍ଷଣ କଲେ। ଏବଂ ତାହା ଏପରି ଶୈଳୀରେ ଲେଖାହୋଇଛି ଯେ, ତାକୁ ପଢ଼ି କେତେକ ଯୁବକଙ୍କ ମନରେ କେବଳ ସେଇକଥା ଉଦ୍ୟକ୍ତ କଲା। ତା'ପରେ ଦିନେ ଦେଖାଗଲା-ସେମାନେ ସେହିଭଳି ବର୍ବରୋଚିତ କାଣ୍ଡଟିଏ କରିସାରିଲେଣି।

ବହି ଦୋକାନମାନଙ୍କରେ ଉଚ୍ଚକୋଟିର ବହି ବେଶି ନାହିଁ। ସେ ସବୁ ଉଚ୍ଚକୋଟିର ବହି ମଧ୍ୟ ବେଶି ଲେଖାହେଉନାହିଁ। କାରଣ କିଏ କାହିଁକି ଲେଖିବ? ସେ କ'ଣ ବିକ୍ରୀହେବ? ଲାଭଖୋର ପାପୀ ପୁଞ୍ଜିପତିମାନେ ଜନଗଣଙ୍କ ରୁଚିକୁ କଳୁଷିତ କରି ସାରିଲେଣି-ବିକୃତ କରି ସାରିଲେଣି ଏବଂ ବିକୃତ ରୁଚିର ସୁଯୋଗ ନେଇ ସେମାନେ ପୁଞ୍ଜିବୃଦ୍ଧି କରିବାରେ ଲାଗିଛନ୍ତି।

ତା'ହେଲେ ଆମେ ଦେଖିଲେ ଆମର ସାହିତ୍ୟ, ସିନେମା, ଟେଲିଭିଜନ ଆଦି ଗଣଶିକ୍ଷା ମାଧ୍ୟମଗୁଡ଼ିକର ସୁଯୋଗ ନେଇ କିପରି ଅମନୁଷ୍ୟ ପୁଞ୍ଜିପତିମାନେ ସମାଜ ଜୀବନକୁ ନଷ୍ଟଭ୍ରଷ୍ଟ କରିଦେଲେଣି। ଏହି ବିକୃତି କ୍ରମଶଃ ସମସ୍ତ ସମାଜର ବିଚାରବୋଧ ଓ ରୁଚିକୁ ଗ୍ରାସ କରି ସାରିଲାଣି ଏବଂ ଏହି ଏହି ବିପୁଳ ଉତ୍ପୀଡ଼ ଜନଗଣଙ୍କୁ ଡରି ଜନତା ଜନାର୍ଦ୍ଦନ ସେମାନଙ୍କ ବିଚାର ଓ ରୁଚି ଇତ୍ୟାଦିକୁ ସାରୁପତ୍ରରେ ବାନ୍ଧି କାଞ୍ଜିପାଣି ହାଣ୍ଡି ସନ୍ଧିରେ ଲୁଚି ରହିବାକୁ ନିରାପଦ ମନେ କରୁଛନ୍ତି। କାରଣ ଦେଶର ଶାସନ ବ୍ୟବସ୍ଥା ଓ କ୍ଷମତା ସେମାନଙ୍କ ପଛରେ ନାହିଁ। ଶାସନ ବା ପ୍ରଶାସନ କ୍ଷମତା ଯେଉଁମାନଙ୍କ ହାତରେ ଅଛି—ସେମାନଙ୍କ ଭିତରେ ଯେଉଁମାନେ ସତକୁ ସତ ମାର୍ଜିତ ଓ ସଂସ୍କୃତିସମ୍ପନ୍ନ (ଅଧିକାଂଶ କିନ୍ତୁ ନୁହନ୍ତି) ସେମାନେ ସବୁ କଥା ବୁଝି ପାରିଲେ ବି ଜନଗଣଙ୍କ ଡରରେ ଜନଗଣଙ୍କୁ ସନ୍ତୁଷ୍ଟ କରିବା ପାଇଁ ସେଇମାନଙ୍କ ମତାମତ ଓ ରୁଚିକୁ ସମର୍ଥନ କରିବାକୁ ବାଧ୍ୟ ହୁଅନ୍ତି। ଜନତା ଜନାର୍ଦ୍ଦନ କେଣ୍ଟୁ ନୀରବରେ ଅପେକ୍ଷାକରି ରହନ୍ତି ଓ କେହି କେହି ସଙ୍କଳ୍ପ ଓ ପ୍ରାର୍ଥନା ମଧ୍ୟ କରୁଥାନ୍ତି ଯେ କୋଉଦିନ ମହାକାଳ ଆସିବେ ଓ କାଳକୃତ ଏଇ ସବୁ ଭୁଲ ପ୍ରମାଦଗୁଡ଼ିକୁ ସଂଶୋଧନ କରିବେ। ଏହାର କାରଣ ହେଲା—ଜନଗଣ କାଳ-ପ୍ରସୂତ ଓ କାଳକୁ ନେଇ ବଞ୍ଚନ୍ତି। ମାତ୍ର ଜନତା-ଜନାର୍ଦ୍ଦନ ଗୋଷ୍ଠୀ କାଳ ପ୍ରସୂତ ହେଲେ ବି କାଳକୁ ନେଇ ବଞ୍ଚନ୍ତି ନାହିଁ—ସେମାନେ ମହାକାଳର ଆଗମନୀକୁ ଅପେକ୍ଷା କରୁଥାନ୍ତି।

**

# ଜନରବ ଓ କିମ୍ବଦନ୍ତୀ

୧।୧୨।୮୨

ଥରେ ଜଣେ ବିଶିଷ୍ଟ ବ୍ୟକ୍ତିଙ୍କ ବୈଠକଘରେ ନାନାଦି ଆଳାପ ଆଲୋଚନା ଭିତରେ ଉତ୍କଳମଣି ଗୋପବନ୍ଧୁଙ୍କ ଆଡ଼କୁ ସମସ୍ତେ ମୁହାଁଇଗଲେ। ଯାଇ ନଥାନ୍ତେ—କିନ୍ତୁ କଥାଟି ଏସିଆଡ୍ ଗେମ୍‌ସରୁ ଇନ୍ଦିରା ଗାନ୍ଧୀ ଏବଂ ପ୍ରଚଳିତ ରାଜନୀତି ଏବଂ ଦିଲ୍ଲୀରୁ ହଠାତ୍ ଓଡ଼ିଶାକୁ ମାଡ଼ିଆସି ଓଡ଼ିଶାର ବର୍ତ୍ତମାନ ରାଜନୈତିକ ପରିସ୍ଥିତି ଏବଂ ରାଜନୈତିକ ନେତୃବୃନ୍ଦଙ୍କ କ୍ରିୟାକଳାପ ଉପରେ ବହୁ ସମୟ ଧରି "ଉଦ୍‌ସୂତ୍ର ତନ୍ତୁବାୟ ସୂତ୍ରପରକାରେ" ଚାଲିଲା। ସମସ୍ତେ ପ୍ରାୟ ଏକ ସ୍ୱରରେ ଏକମତ ହେଲେ ଯେ, ସେହ ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ପରେ ଆଉ ଓଡ଼ିଶାରେ ତଦ୍ରୂପ ନେତା ଜନ୍ମ ହୋଇନାହାନ୍ତି।

କିନ୍ତୁ ଆଲୋଚନାକାରୀଙ୍କ ଭିତରେ ଥିଲେ ଜଣେ ପ୍ରତିଷ୍ଠିତ କବି। ସେ ଏହି ସିଦ୍ଧାନ୍ତ ସପକ୍ଷରେ ଏକମତ ହେଉ ହେଉ କହି ପକାଇଲେ—କିନ୍ତୁ ଗୋପବନ୍ଧୁ ମଧ୍ୟ ପୂରା ନିର୍ଦ୍ଦୋଷ ନଥିଲେ। ତାଙ୍କ ନାମରେ ମଧ୍ୟ କେତେକ କଳଙ୍କ ଶୁଣାଯାଏ।

ତାଙ୍କ କଥା ଶୁଣି ଆଉ ଜଣେ କହିଲେ—ସେ କଳଙ୍କ କିଛି ନୁହେଁ। ଚନ୍ଦ୍ରରେ ମଧ୍ୟ କଳଙ୍କ ଅଛି। ଏହି କଥାକୁ ପ୍ରମାଣ କରିବା ପାଇଁ ସେ କାଳିଦାସଙ୍କର ପରିଚିତ ଶ୍ଳୋକଟିଏ ମଧ୍ୟ ବୋଲିଲେ। ତା'ପରେ ସେ ଗୋପବନ୍ଧୁଙ୍କ ସମ୍ବନ୍ଧେ ସେହି ଯେ ରୋମାଞ୍ଚକର ମାନବୀୟ ଆଦର୍ଶର ଗାଥାଟି ପ୍ରଚଳିତ ରହିଛି—ସେ କଥାଟିର ଉଲ୍ଲେଖ କଲେ। କହିଲେ—ଆଜିକାଲି କେତେଜଣ ଭଲା ନିଜର ଏକମାତ୍ର ରୁଗ୍‌ଣ ପୁତ୍ରକୁ ମୃତ୍ୟୁଶଯ୍ୟାରେ ଛାଡ଼ିଦେଇ ଦୁର୍ଗତ ଲୋକଙ୍କୁ ବଞ୍ଚାଇବା ପାଇଁ ରାତିଅଧରେ ଦଉଡ଼ି ଯାଉଛନ୍ତି କହିଲ? ସେମିତି ଆଉ ମହାତ୍ମା କିଏ ଅଛି? ଏତିକି କହି ସେ କବି ରାଧାମୋହନ ଗଡ଼ନାୟକଙ୍କର ଗୋପବନ୍ଧୁ ସମ୍ପର୍କୀୟ ସେହି ହୃଦୟସ୍ପର୍ଶୀ ଗାଥା କବିତାରୁ କେତୋଟି ଧାଡ଼ି ଆବେଗପୂର୍ଣ୍ଣ ଭାବେ ଆବୃତ୍ତି କରି ପକାଇଲେ।

ତାଙ୍କର ଗୋପବନ୍ଧୁ ଶ୍ରଦ୍ଧାବିଜଡ଼ିତ ଆବେଗପୂର୍ଣ୍ଣ କଣ୍ଠସ୍ୱରକୁ ଚପାଇ ଦେଇ ସେହି ପ୍ରତିଷ୍ଠିତ କବିଜଣକ କହିଲେ—ସେ ସବୁ ଭାବପ୍ରବଣ କବିତା ବନ୍ଦ କର ହୋ! ସେଠି କଣ ପାଇବ? ଏକମାତ୍ର ରୁଗ୍‌ଣ ପୁତ୍ରକୁ ମୃତ୍ୟୁଶଯ୍ୟାରେ ଛାଡ଼ି ବନ୍ୟାଦୁର୍ଗତଙ୍କ

ପାଖକୁ ରାତିଅଧରେ ଛୁଟିଯାଇଥିବା ଘଟଣାଟି ବିଷୟରେ ତାଙ୍କର ସତୀର୍ଥ ମହାମତି ମନୀଷୀ ପଣ୍ଡିତ ନୀଳକଣ୍ଠ ତାଙ୍କ ଆତ୍ମଜୀବନୀରେ କ'ଣ ଲେଖିଛନ୍ତି ଜାଣିଛ ? ସେ ଲେଖିଛନ୍ତି ଘଟଣାଟି ତାହା ମିଛ ।

ଏଥରକ କଥାଟିର ଗତି ଘୁରିଗଲା । ସଙ୍ଗେ ସଙ୍ଗେ ତାଙ୍କ କଥାକୁ ସମର୍ଥନ କରି ଆଉ ଜଣେ କହି ଉଠିଲେ—ମୁଁ ଜାଣେ ଯେ କଥାଟି ମିଛ । ସେଥିପାଇଁ ମୁଁ ବହୁ ପ୍ରମାଣ ମଧ୍ୟ ଯୋଗାଇ ଦେଇପାରିବି । ଜଣେ ମଧ୍ୟବର୍ଗୀୟ ନେତାଙ୍କୁ ବଡ଼ କରିବାକୁ ଯାଇ ତାର ଚାମଚାମାନେ ଏମିତି ଗୁଡ଼ାଏ ମିଛ ଆଦର୍ଶ କଥା ତା' ନାଁରେ ଯୋଡ଼ି ପ୍ରଚାର କରିଦିଅନ୍ତି ଏବଂ ଜନରବ ଉଠାଇ ଦିଅନ୍ତି । ବାସ୍ ! ତାହୁଁ ତାହୁଁ ଜନରବଟି ପ୍ରତିଷ୍ଠିତ ହୋଇଯାଏ ଏବଂ ସେ ନେତାଟି ମଧ୍ୟ ଆଦର୍ଶ ନେତା ବୋଲି ପ୍ରତିଷ୍ଠିତ ହୋଇଯାଏ । ଆଚ୍ଛା କୁହ ତ ଦେଖି; ଗୋପବନ୍ଧୁଙ୍କର କିଛି ଖରାପ ଗୁଣ ନଥିଲା ? ସେ କଣ ଦେବତା ଥିଲେ କି ? କାହିଁ ? କେହି ତ ତାଙ୍କ ଖରାପ ଗୁଣ ବିଷୟରେ କିଛି ଲେଖିନାହିଁ । କଣ ଦେବଦାସ ? ତୁମେ ଗୋପବନ୍ଧୁଙ୍କ ଖରାପ ଗୁଣ ବିଷୟରେ କିଛି ଜାଣିଛ ? ମୁଁ କିନ୍ତୁ ତାଙ୍କର ତିନିଟା ଖରାପ ଗୁଣ ଜାଣିଛି ।

କହିବା ବାହୁଲ୍ୟ ଯେ ବୈଠକ ଖାନାରେ ସମାବିଷ୍ଟ ଅନ୍ୟ ବିଜ୍ଞ ବ୍ୟକ୍ତିମାନେ ଗୋପବନ୍ଧୁଙ୍କର ଅନ୍ୟୂନ ପାଞ୍ଚୋଟି ଖରାପ ଗୁଣ ସମ୍ବନ୍ଧେ ଆଲୋଚନା କଲେ ।

ମୁଁ ନିଜେ ସବୁକଥା ଚୁପଚାପ ଶୁଣୁଥାଏ । କିଛି ସମୟ ପରେ ମୁଁ କହିଲି—ଆପଣମାନେ ଗୋପବନ୍ଧୁଙ୍କର ଯେଉଁ କେତୋଟି ଖରାପ ଗୁଣ ବୟାନ କଲେ, ତାହା ମଧ୍ୟ ତାଙ୍କର ଶତ୍ରୁମାନେ ତାଙ୍କ ସମୟରେ ଓ ତାଙ୍କ ପରେ ପ୍ରଚାର କରି ଆସିଥିଲେ ଏବଂ ତାହା ଜନରବରେ ସାରା ଓଡ଼ିଶାରେ ବ୍ୟାପି ଯାଇଥିଲା । ମାତ୍ର ତଥାପି ସାରା ଓଡ଼ିଆଜାତି ବର୍ତ୍ତମାନ ସୁଦ୍ଧା ଗୋପବନ୍ଧୁଙ୍କୁ ମୁଣ୍ଡରେ ବସାଇଛି ଓ ଭବିଷ୍ୟତରେ ମଧ୍ୟ ବସାଇବ । ତାଙ୍କର ସେଇ କେତୋଟି ଖରାପ ଗୁଣକୁ କୋଟି କୋଟି ଓଡ଼ିଆ ଆପଣମାନଙ୍କ ଭଳି କୀର୍ତ୍ତନ କରୁନାହାନ୍ତି । ସମସ୍ତେ ତାଙ୍କର ଭଲ ଗୁଣଗୁଡ଼ିକୁ ହିଁ କୀର୍ତ୍ତନ କରୁଛନ୍ତି । ରାତିଅଧରେ ରୁଗ୍‌ଣ ପୁଅକୁ ଛାଡ଼ି ସେ ବନ୍ୟାଦୁର୍ଗତ ଲୋକଙ୍କ ପାଖକୁ ଛୁଟିଯାଇଥିବା କଥାଟି ସତରେ ଘଟିଥାଉ ବା ନ ଥାଉ ଏହା ତାଙ୍କ ଭଳି ମାନବପ୍ରେମୀ ତ୍ୟାଗୀ ମହାତ୍ମାଙ୍କ ପକ୍ଷରେ ଖୁବ୍ ବେଶି ବଡ଼କଥା ନୁହେଁ । ସେ ତାହାଠାରୁ ବଳି ବଡ଼ ତ୍ୟାଗ କରି ଯାଇଛନ୍ତି । ସେଭଳି ତ୍ୟାଗଟିଏ ମୁଁ ମୋ ଜୀବନରେ ବି କରିଛି ଓ ମୋ ଭଳି ଖୁବ୍ ସାନ ଲୋକେ ମଧ୍ୟ ତାଙ୍କର ରୁଗ୍‌ଣା ସ୍ତ୍ରୀ ବା ପୁତ୍ରକନ୍ୟାକୁ ଛାଡ଼ି ପର ପାଇଁ ରାତି ଅଧରେ ଛୁଟିଯାଇଥିବା କଥା ମୁଁ ଦେଖିଛି । ଗୋବପନ୍ଧୁଙ୍କ ପକ୍ଷରେ ଏହା ଅତି ସାମାନ୍ୟ ତ୍ୟାଗ । ଅକିଞ୍ଚିତ୍‌କର ତ୍ୟାଗ । ଲୋକେ ଏ କଥାକୁ ସେଥିପାଇଁ ବିଶ୍ୱାସ କରି ଆସିଛନ୍ତି । ଏହା ଜନରବଟିଏ ମାତ୍ର ହୋଇଥିଲେ ଏହାର ଆଉ କିଛିମାତ୍ର ଶକ୍ତି ବା ପ୍ରଭାବ ନ ଥାନ୍ତା । ଏହା ଜନରବରୁ

କିମ୍ବଦନ୍ତୀକୁ ଉତ୍ତୀର୍ଣ୍ଣ ହୋଇଯାଇଛି। ଜନରବ ଅଳ୍ପ ସମୟ ଭିତରେ ନିଷ୍କୁପ ହୋଇଯାଏ। ମାତ୍ର କିମ୍ବଦନ୍ତୀ ଜାତିର ଚେତନାରେ ପ୍ରତିଷ୍ଠିତ ହୋଇଯାଏ।

ଜନରବ ହେଲା ଗୋଟାଏ "ହୋ"। ଉତ୍ସୁକ ଅଜ୍ଞାନ ଜନଗଣଙ୍କର ଗୋଟାଏ 'ହୋ'। ଏହା ସେମାନଙ୍କର ନିମ୍ନପ୍ରାଣ ସ୍ତରର ଆସକ୍ତି ବା ବିରକ୍ତିରୁ ଜାତ ହୋଇଥାଏ। ଜନରବ କାହାର ପ୍ରଶଂସାରେ ମୁଖର ହେଉ ବା ନିନ୍ଦାରେ ମୁଖର ହେଉ ତା ପଛରେ କିଛି ଯୁକ୍ତି ନଥାଏ—ନିଷ୍ଠା ନ ଥାଏ, ବିଶ୍ୱାସ ନଥାଏ କି ମହତ୍ତ୍ୱର ଲକ୍ଷ୍ୟ ନ ଥାଏ। ମାତ୍ର କିମ୍ବଦନ୍ତୀ ହେଲା ଜନତା ଜନାର୍ଦ୍ଦନଙ୍କର ସ୍ୱୀକୃତି ଓ ବିବୃତି। ଗୋଟିଏ ଜାତିର ଅବଚେତନାରେ ଯେଉଁ ଆଦର୍ଶ ବା ଲକ୍ଷ୍ୟ ଲୁଚି ରହିଥାଏ—ଯୁଗ ଯୁଗ ଧରି ଗୋଟିଏ ଜାତି ମାନବତାର ଯୋଉ ଉଚ୍ଚତମ ଶିଖରୀକୁ ଆରୋହଣ କରିବାକୁ ମନାସ କରୁଥାଏ—ତାର ଅବଚେତନାରେ ତା' ଅଜାଣତରେ ହେଉ ପଛେ ସେହି ଉଚ୍ଚତାରେ ପହଞ୍ଚିବାକୁ ଗୋଟାଏ ତୀବ୍ର ଏଷଣା ବା ଆବେଗ ଅନୁଭବ କରୁଥାଏ—ଚେତନାର ସେହି ଅଂଶକୁ ମହତ୍ତ୍ୱଭାବ ସମ୍ବଳିତ କିମ୍ବଦନ୍ତୀଟିଏ ଛାଏଁ ଛାଏଁ ସୃଷ୍ଟି ହୋଇଯାଏ ଏବଂ ଜାତିର ଜାଗ୍ରତ ଚେତନାରେ ସ୍ଥାୟୀ ହୋଇଯାଏ। ତାକୁ ସେଇ ଉଚ୍ଚତାରେ ପହଞ୍ଚିବାକୁ ମତାଉଥାଏ। ସେ କିମ୍ବଦନ୍ତୀଟି ତାର ଇଷ୍ଟଦେବତାଙ୍କ ସମ୍ବନ୍ଧେ ହେଉ ବା ତାର ଯଥାର୍ଥ ନେତାଙ୍କ ସମ୍ବନ୍ଧେ ହେଉ।

କିମ୍ବଦନ୍ତୀ ଜନତା-ଜନାର୍ଦ୍ଦନର ଦିବ୍ୟଚେତନା ଭିତରୁ ସୃଷ୍ଟି ହୁଏ ଓ ପୁଷ୍ଟ ହୁଏ। କିମ୍ବଦନ୍ତୀ ଭିତରେ ହିଁ ଗୋଟିଏ ଜାତିର ମହାନ ଅଭୀପ୍ସାର ଇତିହାସ ଲୁଚିରହିଥାଏ। କିମ୍ବଦନ୍ତୀକୁ ସାଧାରଣ ଜନରବ ବୋଲି ଭାବିବା ଉଚିତ ନୁହେଁ। କିମ୍ବଦନ୍ତୀ ହେଲା—ଗୋଟିଏ ଜାତିର ମହାନ୍ ଚେତନାରୁ ଉଦ୍‌ଭୂତ ସାହିତ୍ୟ। ଜାତି ତାକୁ ସାଇତି ରଖି ନିଜକୁ ସେହି ଅନୁସାରେ ଗଢ଼ିବାକୁ ସଙ୍କଳ୍ପ କରୁଥାଏ। ଅନେକ ସମୟରେ କିମ୍ବଦନ୍ତୀ ଆମର ତଥାକଥିତ ଏଇସବୁ ବାସ୍ତବ ଇତିହାସକୁ ମଧ୍ୟ ଅସ୍ୱୀକାର କରେ। ଗୋଟିଏ ଦୃଷ୍ଟିରୁ ଦେଖିଲେ—ଇତିହାସଠାରୁ କିମ୍ବଦନ୍ତୀ ଆଉରି ଗଭୀରତର ଭାବେ ସତ୍ୟ ଓ କଲ୍ୟାଣକର।

✱✱

# ମୁଖପାତ୍ର ଓ ମୁଖପତ୍ର

୭।୧୨।୮୨

ଗୋଟିଏ ଜାତିର ଏକ ସୁଉଚ୍ଚ ଆଦର୍ଶ ଥାଏ। ଗୋଟାଏ ସମୃଦ୍ଧ ମୂଲ୍ୟବୋଧ ମଧ୍ୟ ଥାଏ। ଏହି ଆଦର୍ଶ ଓ ମୂଲ୍ୟବୋଧକୁ ବ୍ୟାସଦେବ ତାଙ୍କର ମହାଭାରତରେ "ମର୍ଯ୍ୟାଦା" ବୋଲି କହିଛନ୍ତି। ବାଲ୍ମୀକି ମଧ୍ୟ ତାଙ୍କ ରାମାୟଣରେ ଶ୍ରୀରାମଚନ୍ଦ୍ରଙ୍କୁ "ମର୍ଯ୍ୟାଦା ପୁରୁଷୋତ୍ତମ" ବୋଲି ଆଖ୍ୟାତ କରିଛନ୍ତି। ଏହି ଯେଉଁ ମର୍ଯ୍ୟାଦା ଏବଂ ମର୍ଯ୍ୟାଦାବୋଧ ତା'ରି ଉପରେହିଁ ଜାତିର ସଂସ୍କୃତି ନିର୍ଭର କରେ। ଏହି ମର୍ଯ୍ୟାଦାକୁ ଭିତ୍ତି କରି ମଧ୍ୟ ଋଷି ଓ ସମାଜ ନିର୍ମାତାମାନେ ସଂହିତା ଓ ଅନୁଶାସନମାନ ତିଆରି କରିଛନ୍ତି।

ଏହି ମର୍ଯ୍ୟାଦାଟିକୁ ରକ୍ଷା କରିବା ଲାଗି ଓ ପ୍ରତିଷ୍ଠିତ କରିବା ଲାଗି ସମାଜରେ ଯେଉଁ ଶାସକ, ପୁରୋହିତ, ଅଧ୍ୟାପକ, ବଣିକ ଏବଂ ରାଜକର୍ମଚାରୀବୃନ୍ଦ ତତ୍ପର ଥାନ୍ତି- ସେମାନଙ୍କୁ ଆଦର୍ଶ ପୁରୁଷ ବୋଲି ସମାଜ ସ୍ୱୀକାର କରିଆସିଛି ଏବଂ ଏହି ମହାନ୍ ପୁରୁଷମାନଙ୍କୁ ଅନୁସରଣ କରିବା ଲାଗି ସମାଜର ସାଧାରଣ ଲୋକଙ୍କୁ ନିର୍ଦ୍ଦେଶ ଦିଆଯାଇଛି। ମର୍ଯ୍ୟାଦାସମ୍ପନ୍ନ ରାଜା, ରାଜପୁରୁଷ, ରାଜକର୍ମଚାରୀ, ବଣିକ, ପୁରୋହିତ ଓ ଅଧ୍ୟାପକମାନଙ୍କୁ "ମହାଜନ" ବୋଲି କୁହାଯାଉଥିଲା ଏବଂ ସେମାନଙ୍କ ଆଚରଣ ବା ଜୀବନଧାରଣର ପଥକୁ ଆଦର୍ଶ ବୋଲି ଗଣାଯାଉଥିଲା। "ମହାଜନ ଯେନ ଗତ ସଃ ପନ୍ଥା"।

ଏହି ମହାଜନମାନଙ୍କୁ ନେଇ କାବ୍ୟ, ମହାକାବ୍ୟ, ନାଟକ, ଇତିହାସାଦି ଲେଖାଯାଉଥିଲା। ଏହି ମହାଜନମାନଙ୍କ ବିଷୟରେ ଶୁଣିବାଲାଗି ମଧ୍ୟ ଜନସାଧାରଣ ଖୁବ୍ ଉତ୍କଣ୍ଠ ହୋଇ ରହୁଥିଲେ। ସେହି କାରଣରୁ ବ୍ୟାସ ବା ବାଲ୍ମୀକି ମହାଭାରତ କି ରାମାୟଣ ଲେଖିବାବେଳକୁ ରାମ, କୃଷ୍ଣ, ଯୁଧିଷ୍ଠିର, ଅର୍ଜୁନ, କର୍ଣ୍ଣ, ଭୀଷ୍ମ ପ୍ରଭୃତିଙ୍କ ସମ୍ବନ୍ଧେ ବହୁ କିମ୍ବଦନ୍ତୀ ଲୋକମୁଖରେ ପ୍ରଚଳିତ ହୋଇ ଯାଇଥିଲା। ଯୁଧିଷ୍ଠିରଙ୍କର ଅଟଳ ନ୍ୟାୟ-ପରାୟଣତା, ଅର୍ଜୁନଙ୍କର ଶୌର୍ଯ୍ୟପୂର୍ଣ୍ଣ ମର୍ଯ୍ୟାଦାବନ୍ତ ପୌରୁଷ, କର୍ଣ୍ଣଙ୍କର ମହାଦାନୀତ୍ୱ, ଦୁର୍ଯ୍ୟୋଧନଙ୍କର ସ୍ୱାଭିମାନ, ରାମଚନ୍ଦ୍ରଙ୍କର ବ୍ୟକ୍ତିଗତ ସମ୍ପର୍କରେ ଶୁଦ୍ଧତା, ଗଭୀରତା ଓ ଐକାନ୍ତିକତା, ଶ୍ରୀକୃଷ୍ଣଙ୍କର ଅଲୌକିକ ବ୍ୟକ୍ତିତ୍ୱ ଓ ବିଚିତ୍ର ଚରିତ୍ର ସମ୍ବନ୍ଧେ ସମାଜର ଲୋକମାନଙ୍କ ମନରେ ଦୃଢ଼ବିଶ୍ୱାସ ଓ ଆସ୍ଥା ଆସି ଯାଇଥିଲା।

ସେହିପରି ନଳ, ହରିଶ୍ଚନ୍ଦ୍ର, ମାନଧାତା, ରଘୁ, ବିଶ୍ୱାମିତ୍ର, ବଶିଷ୍ଠ, ସୀତା, କୁନ୍ତୀ, ଦ୍ରୌପଦୀ ଆଦି ଚରିତ୍ରମାନଙ୍କ ସମ୍ବନ୍ଧେ ସାମାଜିକ ବ୍ୟକ୍ତିମାନେ ପୁରୁଷାନୁକ୍ରମେ ଆଗ୍ରହଶୀଳ ଓ ଶ୍ରଦ୍ଧାଶୀଳ ଥିଲେ ଏବଂ ପ୍ରତିଟି ବ୍ୟକ୍ତିର ମନ ଭିତରେ ଏହିପରି ମଣିଷ ହେବାକୁ ଗୋଟାଏ ସଚେତନ ବା ଅଜାଣତ ଆକାଂକ୍ଷା ରହୁଥିଲା; ସ୍ୱପ୍ନ ବା କଳ୍ପନା ରହୁଥିଲା। ଫଳରେ ସବୁ କାଳରେ ଏମାନଙ୍କର କ୍ରିୟାକଳାପ ସମ୍ବନ୍ଧେ ଯେଉଁ ସମ୍ବାଦମାନ ସୃଷ୍ଟି ହେଉଥିଲା, କାଳକ୍ରମେ ସେଗୁଡ଼ିକ ଜନତା-ଜନାର୍ଦ୍ଦନଙ୍କ ମୁହଁରେ କିମ୍ବଦନ୍ତୀ ବା ଜନଶ୍ରୁତି ପାଲଟି ଯାଉଥିଲା। ବହୁ ବହୁ କିମ୍ବଦନ୍ତୀ ସତ୍ୟ, ଅର୍ଦ୍ଧସତ୍ୟ ବା ଏପରିକି ମିଥ୍ୟା ଉପରେ ମଧ ଗଢ଼ି ହୋଇ ଯାଉଥିଲା। ଯେମିତିକି ଯୁଧିଷ୍ଠିରଙ୍କର ଅଟଳ ନ୍ୟାୟବୋଧ ବା କର୍ଣ୍ଣଙ୍କର ଅକୁଣ୍ଠ ଦାନ ସମ୍ବନ୍ଧେ କେତୋଟି ସତ୍ୟ ସମ୍ବାଦ ସହିତ କେତୋଟି ଏବଂବିଧ କିମ୍ବଦନ୍ତୀ ମଧ ମିଶି ଯାଉଥିଲେ ଏବଂ ସେହି କିମ୍ବଦନ୍ତୀଗୁଡ଼ିକୁ ନେଇ କାବ୍ୟ, ମହାକାବ୍ୟ, ଖଣ୍ଡକାବ୍ୟମାନ ମଧ ରଚିତ ହୋଇ ଚାଲିଥିଲା ଏବଂ ନୃତ୍ୟ, ଗୀତ, ଚିତ୍ରକଳାଦି ସବୁପ୍ରକାର ସୁକୁମାର କଳା ଭିତରେ ମଧ ଏହି ''ମର୍ଯ୍ୟାଦା'' ବିଷୟଟି ଉପରେ ଜୋର ଦିଆଯାଉଥିଲା।

କିନ୍ତୁ କାଳକ୍ରମେ ଜନତା ବା ଜନଗଣର ହାତକୁ ଆସିଗଲା ରାଜନୈତିକ କ୍ଷମତା। ଗଣତନ୍ତ୍ର। ତା' ଆସିଲେ କିଛି କ୍ଷତି ନାହିଁ। କିନ୍ତୁ ଜନଗଣଙ୍କ ଆଗରେ ଗୋଟିଏ ''ମର୍ଯ୍ୟାଦା''ର ଅନୁଶାସନ ରହିବା ଉଚିତ ନୁହେଁ କି? ଜନଗଣଙ୍କ ଭିତରେ ଯେଉଁମାନେ ପୁଣି 'ଜନତା ଜନାର୍ଦ୍ଦନ'—ସେଇମାନଙ୍କ ପାଖରେ ଥାଏ ଏଇ ମର୍ଯ୍ୟାଦାବୋଧ। ଆମ ଗାଁରେ ଆଗେ ମୁଁ ରାମାୟଣ ମହାଭାରତର ମହାନ ଚରିତ୍ରମାନଙ୍କୁ ଆମ ଗାଁ ଲୋକମାନଙ୍କ ଭିତରେ ବି ପ୍ରତ୍ୟକ୍ଷ କରିଛି। ବାଉରି ସାଇର ଉଜ୍ଜ୍ୱଳା ଭୋଇକୁ ଦେଖିଲେ ମୋର ମହାଭକ୍ତ ଦାସିଆ ବାଉରି ବା ଭୀମ ଭୋଇ ମନେ ପଡ଼ୁଥିଲେ।

ଖଣ୍ଡେଇତ ସାହିର ବିରାଟ ଏକାନ୍ନବର୍ତ୍ତୀ ପରିବାରର କର୍ତ୍ତା ବଡ଼ ଭାଇ ବିଶୁନି ପଧାନଙ୍କୁ ଦେଖିଲେ ଧର୍ମ ଯୁଧିଷ୍ଠିଙ୍କ କଥା ମନେପଡ଼େ। ପାଞ୍ଚଭାଇ, ଭାଇବୋହୂ, ପୁଅ-ପୁତୁରା, ଝିଆରୀ ଇତ୍ୟାଦିଙ୍କୁ ନେଇ ବିରାଟ ପରିବାର। ଚାରିହଳ ବଳଦର ଚାଷ। ବିଶୁନି ପଧାନ କି ଭ୍ରାତୃପ୍ରେମୀ ନ୍ୟାୟବନ୍ତ ପୁରୁଷ ନଥିଲେ। ସେମିତି ଗଉଡ଼ସାହିର ନକୁଳ ବେହେରାକୁ ଦେଖିଲେ ମୋର କୃଷ୍ଣଭକ୍ତ ଉଦ୍ଧବଙ୍କ କଥା ମନେପଡ଼େ ଏବଂ ବ୍ରାହ୍ମଣ ଶାସନର କଣ୍ଠ ମିଶ୍ରଙ୍କୁ ଦେଖିଲେ ମୋର ମନେ ପଡ଼େ ସେଇ ପରମଭକ୍ତ ପବିତ୍ର—ହୃଦୟ ଦରିଦ୍ର ବ୍ରାହ୍ମଣ କୃଷ୍ଣସଖା ସୁଦାମାଙ୍କ କଥା। ଏମିତି ଏମିତି ସେତେବେଳେ ଆମ ଗାଁଗଣ୍ଡାରେ ରାମାୟଣ-ମହାଭାରତ ଭାଗବତର ଚରିତ୍ରମାନ ସାଧାରଣ ଲୋକଙ୍କ ଭିତରେ ଜୀବିତ ଥିଲେ। ସେମିତି ଜୀବନ ବଞ୍ଚୁଥିଲେ। ଏବେ ମଧ ସେମିତି ଲୋକ ଅଛନ୍ତି। କିନ୍ତୁ ତଫାତ ହେଲା ପୂର୍ବେ ଆମ ଗ୍ରାମବାସୀମାନେ ସେହି ସେହି ଲୋକମାନଙ୍କୁ ମାନ୍ୟ କରୁଥିଲେ। ପଞ୍ଚୁଆତି ହେଲେ ନ୍ୟାୟନିଶାପ

ବେଳେ ଲୋକେ ବିଶୁନି ପଧାନ, ନକୁଳ ବେହେରା, ଭଜବା ଭୋଇ, କଣ ମିଶ୍ର ଇତ୍ୟାଦି ଲୋକଙ୍କୁ ଡାକୁଥିଲେ। ସେମାନଙ୍କ ଉପରେ ବିଶ୍ୱାସ କରୁଥିଲେ ଓ ସେମାନଙ୍କ ସିଦ୍ଧାନ୍ତକୁ ମାନୁଥିଲେ।

ବର୍ତ୍ତମାନ କିନ୍ତୁ ସେଭଳି ଲୋକଙ୍କୁ କେହି ମାନୁ ନାହିଁ, କେହି ଡାକୁ ନାହିଁ। ଅନ୍ଧ, ଉନ୍ମତ୍ତ, ବଳପୂର୍ବା, ନୀତିହୀନ, ମର୍ଯ୍ୟାଦାହୀନ ଜନସାଧାରଣ ଏବେ ଯେଉଁମାନଙ୍କୁ ଖାତିର କରୁଛନ୍ତି ସେମାନେ ହେଲେ ଅନୀତିପରାୟଣ, ସଂସ୍କୃତିହୀନ, ମର୍ଯ୍ୟାଦାହୀନ ଓ ଯେକୌଣସି ମନ୍ଦ ଉପାୟରେ ଧନ ବା କ୍ଷମତା ଉପାର୍ଜନ କରୁଥିବା ପ୍ରଭାବଶାଳୀ ଠାଉଟର କିମ୍ବା ଅସାଧୁ ବ୍ୟବସାୟୀ।

କେବଳ ଗାଁ ଗହଳରେ ନୁହଁ, ସହରମାନଙ୍କରେ ବି ସେଇ ଏକା କଥା। ସରକାରୀ କ୍ଷେତ୍ରରେ ବି ସେହି ଏକା କଥା। ଶିକ୍ଷା, ସ୍ୱାସ୍ଥ୍ୟ ବିଭାଗାଦି ଠାରୁ ଆରମ୍ଭ କରି ପ୍ରଶାସନିକ ବିଭାଗ ପର୍ଯ୍ୟନ୍ତ ମର୍ଯ୍ୟାଦାବୋଧସମ୍ପନ୍ନ ନୀତିବାନ୍, କର୍ତ୍ତବ୍ୟବାନ ଲୋକଟିକୁ କେହି ଖାତିର କରୁନାହିଁ। ତାର ଉଚ୍ଚପଦକୁ ପ୍ରମୋସନ ହୋଇପାରୁ ନାହିଁ। ତା' ହାତରେ ପରିଚାଳନାର ଡୋର ନାହିଁ। ଡୋର ରହୁଛି ମର୍ଯ୍ୟାଦାହୀନ, ନୀତିହୀନ ଓ ଯେ କୌଣସି ପ୍ରକାରେ ନେଇଆଣି ଥୋଇପାରିବାରେ ଦକ୍ଷ ଲୋକଟି ଉପରେ। ଏଠି ମଧ୍ୟ ସେହିପରି ଜନତା ଜନାର୍ଦ୍ଦନର ବିଚାର ଚାଲିନାହିଁ। ଜନଗଣଙ୍କ ବିଚାର ଚାଲିଛି। ଜନଗଣଙ୍କ "ହୋ" ଶବ୍ଦ ବର୍ତ୍ତମାନ ଖବରକାଗଜବାଲାଙ୍କ କଲମରେ ରହିଛି। ଖବରକାଗଜବାଲାଏ ବଡ଼ପାଟି କରି ଯାହା ସପକ୍ଷରେ କହିଲେ–ସବୁତକ ଫୁଲମାଳା ପଡ଼ିବ ଯାଇ ତାରି ବେକରେ। ଖବରକାଗଜବାଲା ବଡ଼ପାଟି କରି ଯାହା ବିରୋଧରେ କହିବେ–ସବୁ ଟେକା ଢେଲାତକ ପଡ଼ିବ ଯାଇ ତାରି ମୁଣ୍ଡରେ।

ବର୍ତ୍ତମାନ ଜନସାଧାରଣଙ୍କ ମତାମତ ଓ ପାଟିତୁଣ୍ଡର ମୁଖପାତ୍ର ହେଲେ ସାମ୍ବାଦିକମାନେ ଓ ସେମାନଙ୍କ ସମ୍ବାଦପତ୍ରଗୁଡ଼ିକ ହେଲା ଜନସାଧାରଣଙ୍କର ମୁଖପତ୍ର।

❋❋

# ମୁଖପତ୍ର ଓ ମୁଖପାତ୍ର

୧୪।୧୨।୮୨

ମୁଁଖ ଉନ୍ନତ ଜନଗଣଙ୍କ ଭିତରେ ଯେଉଁମାନେ ସଚେତନ ଗୋଷ୍ଠୀ ଅର୍ଥାତ୍ ଯେଉଁମାନଙ୍କୁ ମୁଁ ଜନତା ଜନାର୍ଦ୍ଦନ ବୋଲି ଆଖ୍ୟାତ କରିଛି, ସେମାନଙ୍କର ମୁଖପତ୍ର ହେଲା ଶାସ୍ତ୍ର ଓ ମୁଖପାତ୍ର ହେଲେ ସମାଜର ବିଶିଷ୍ଟ ପ୍ରତିଭାଧାରୀ ଗୁଣବାନ ବ୍ୟକ୍ତିମାନେ। ଶାସ୍ତ୍ର ହେଲା—ସେହିସବୁ ଶୁଦ୍ଧ ମହାନ୍ ଚିନ୍ତା ଓ ଭାବରାଶି—ଯାହା ଯଥାର୍ଥ ଜ୍ଞାନବିଜ୍ଞାନ। ଏହା ଇହଲୋକର ବିଷୟକୁ ନେଇ ହେଉ ବା ପରଲୋକର ବିଷୟକୁ ନେଇ ହେଉ, ଏହି ଜ୍ଞାନବିଜ୍ଞାନ ହେଲା ମଣିଷ ପକ୍ଷରେ କଲ୍ୟାଣକର ବିଷୟ। ଏହି ଜ୍ଞାନବିଜ୍ଞାନକୁ ଆଶ୍ରୟ କରି ସମାଜ କ୍ରମେ ଉନ୍ନତତର ଅବସ୍ଥାକୁ ଗତି କରେ ଏବଂ ଏହି ଜ୍ଞାନବିଜ୍ଞାନାଦିର ଯେଉଁମାନେ ସ୍ରଷ୍ଟା—ଯେଉଁମାନେ ସତକୁସତ ମଣିଷର କଲ୍ୟାଣ ଲାଗି ବୈଜ୍ଞାନିକ ତତ୍ତ୍ୱ ଓ ତଥ୍ୟଗୁଡ଼ିକ ଆବିଷ୍କାର କରିଛନ୍ତି—ଯେଉଁମାନେ ମଣିଷକୁ ରୋଗମୁକ୍ତ କରିବା ପାଇଁ ଔଷଧମାନ ଆବିଷ୍କାର କରିଛନ୍ତି—ଏପରି କି ମହାକାଶ ବିଜୟରେ ବ୍ରତୀ ହୋଇଛନ୍ତି—ପୁଣି ଆଉ ଯେଉଁମାନେ ମନୁଷ୍ୟର ମନସ୍ତତ୍ତ୍ୱର ରହସ୍ୟମାନ ଉଦ୍‌ଘାଟନ କରିଛନ୍ତି—ଯେଉଁମାନେ ବ୍ୟକ୍ତି ଓ ସମାଜ ଲାଗି ନୈତିକ ନିୟମଗୁଡ଼ିକ ସଂସ୍ଥାପନ କରିଛନ୍ତି—ଯେଉଁମାନେ ଅର୍ଥନୀତି ବା ରାଜନୀତିକ ତତ୍ତ୍ୱ ତଥ୍ୟାଦି ଉପସ୍ଥାପନ କରିଛନ୍ତି—ଯେଉଁମାନେ ଉନ୍ନତ ଅନୁଭୂତି ଓ ଉପଲବ୍ଧିଗୁଡ଼ିକୁ ସାହିତ୍ୟ, କଳା, ସଙ୍ଗୀତ, ନାଟକାଦି ଭିତରେ ସୁନ୍ଦର ଭାବେ ପ୍ରକାଶ କରିଛନ୍ତି—ଯେଉଁମାନେ ଆତ୍ମସ୍ୱାର୍ଥକୁ ବିସର୍ଜନ ଦେଇ ସମାଜର ଅଭାବୀ, ଦୁଃଖ ଓ ଅତ୍ୟାଚାରିତ ଲୋକମାନଙ୍କର ସେବା କରିଛନ୍ତି ଏବଂ ଶେଷରେ ଯେଉଁମାନେ ମଣିଷକୁ ସତ୍ୟ-ଶିବ-ସୁନ୍ଦର ବା ଈଶ୍ୱରଙ୍କ ସହିତ ଏକୀଭୂତ କରିବା ଲାଗି ନିଜେ ତପସ୍ୟା କରିଛନ୍ତି—ସେହିସବୁ ମହାନ୍ ବ୍ୟକ୍ତିମାନେ ହେଲେ ଯଥାର୍ଥ ବୈଜ୍ଞାନିକ, ଦାର୍ଶନିକ, ଶିଳ୍ପୀ, କବି, ମନସ୍ତତ୍ତ୍ୱବିଦ୍, ନୀତିଶାସ୍ତ୍ରବିଦ୍, ଚିକିତ୍ସକ, ସମାଜସେବକ ଓ ଯୋଗୀ ତପସ୍ୱୀ। ଏହି ମହାନ୍ ବ୍ୟକ୍ତିମାନେ ହେଲେ ଜନତା ଜନାର୍ଦ୍ଦନଙ୍କର ଯଥାର୍ଥ ମୁଖପାତ୍ର। ଏଇମାନେ ହେଲେ ସମାଜର ମହାଜନ। ଏଇ ମହାଜନମାନଙ୍କ ପ୍ରଦର୍ଶିତ ପନ୍ଥାରେ ବା ନିର୍ଦ୍ଦେଶରେ ସାଧାରଣ ଲୋକେ ଯଦି

ଚଳନ୍ତି ତେବେ ସମାଜର ମଙ୍ଗଳ ଅବଶ୍ୟମ୍ଭାବୀ। ଏଇମାନେ ହିଁ ଯଥାର୍ଥରେ ସମାଜର ନେତା। ବ୍ୟକ୍ତି ଜୀବନରେ ବା ସାମାଜିକ ଜୀବନରେ ଯେତେବେଳେ ସଙ୍କଟ ଉପସ୍ଥିତ ହୁଏ—ଯେତେବେଳେ ଏଇମାନଙ୍କର ନିର୍ଦ୍ଦେଶ ହିଁ ଏକମାତ୍ର ଅବଲମ୍ବନୀୟ। ଏଇମାନେ ଯେଉଁ ସବୁ ସଦ୍‌ଗ୍ରନ୍ଥ ଲେଖିଛନ୍ତି—ସେଇ ସବୁଗୁଡ଼ିକ ହିଁ ଜନସାଧାରଣଙ୍କର ମୁଖପତ୍ର।

କିନ୍ତୁ ଅନ୍ଧ ଉନ୍ମତ୍ତ ସ୍ୱାର୍ଥପର ଜନଗଣ ଏସବୁ ଶାସ୍ତ୍ରକୁ ସେମାନଙ୍କର ମୁଖପତ୍ର ରୂପେ ଗ୍ରହଣ କରନ୍ତି ନାହିଁ କିମ୍ୱା ସେହି ମହାନ୍ ଆତ୍ମାମାନଙ୍କୁ ମୁଖପାତ୍ର ବୋଲି ସ୍ୱୀକାର କରନ୍ତି ନାହିଁ। ସେମାନଙ୍କର ମୁଖପତ୍ର ହେଲା ଆଧୁନିକ କାଳରେ ସମ୍ବାଦପତ୍ର ଏବଂ ବର୍ତ୍ତମାନ କାଳରେ ଅଧିକାଂଶ ସମ୍ବାଦପତ୍ର ବା ପତ୍ରପତ୍ରିକା ମନୁଷ୍ୟର ବ୍ୟକ୍ତିଗତ ବା ସାମାଜିକ ଜୀବନ ପ୍ରତି ଦାୟିତ୍ୱହୀନ। ଏହି ପତ୍ରପତ୍ରିକା ମନୁଷ୍ୟର ବ୍ୟକ୍ତିଗତ ବା ସାମାଜିକ ଜୀବନ ପ୍ରତି ଦାୟିତ୍ୱହୀନ। ଏହି ପତ୍ରପତ୍ରିକାଗୁଡ଼ିକ ମଣିଷ ଜୀବନକୁ କଲ୍ୟାଣମୟ କରିବା ପାଇଁ ପ୍ରକାଶ ପାନ୍ତି ନାହିଁ। ଏମାନେ ହୁଏ ତ ଏକ ଶକ୍ତିଶାଳୀ କ୍ଷମତା ବା ଧନଲୋଲୁପୀ ଗୋଷ୍ଠୀ ହାତରେ ଅସ୍ତ୍ର ଅଥବା ସେଇ ପତ୍ରପତ୍ରିକାର ମାଲିକ, ସମ୍ପାଦକ ଓ ଲେଖକମାନେ ନିଜେ ଗୋଟିଏ ଗୋଷ୍ଠୀ, ଯେଉଁମାନେ କି ଏହାକୁ ଅସ୍ତ୍ର ହିସାବରେ ବ୍ୟବହାର କରି, ନିଜର ସ୍ୱାର୍ଥ ବା ଉଦ୍ଦେଶ୍ୟ ଚରିତାର୍ଥ କରନ୍ତି। ଏଇସବୁ ପତ୍ରପତ୍ରିକା ବା ଦୈନିକ, ସାପ୍ତାହିକ, ପାକ୍ଷିକ ସମ୍ବାଦପତ୍ରମାନେ ଜନଗଣଙ୍କ ଆଗରେ ବହୁ ବିଭ୍ରାନ୍ତିକର ମତାମତ ପରିବେଷଣ କରନ୍ତି—ବହୁ ଅବାନ୍ତର ଅନାବଶ୍ୟକ ଘଟଣା ଦୁର୍ଘଟଣା ପ୍ରକାଶ କରନ୍ତି—ଏବଂ ବହୁ ଅସ୍ୱାଭାବିକ ଚାଞ୍ଚଲ୍ୟ ସୃଷ୍ଟିକାରୀ ଖବରାଖବର ପ୍ରକାଶ କରି ଜନଗଣଙ୍କ ଚଞ୍ଚଳ ଉତ୍‌କ୍ଷିପ୍ତ ଚିତ୍ତବୃତ୍ତିକୁ ନିଜ ଆୟତ୍ତରେ ରଖିବାକୁ ଚେଷ୍ଟାକରନ୍ତି। ଏମାନେ ସମାଜରେ ଘଟୁଥିବା ଶୁଭ ଖବରଟିଏ ପ୍ରକାଶ କରନ୍ତି ନାହିଁ। ଏକଥା ସତ ଯେ, ପ୍ରତିଦିନ ସମାଜରେ ବହୁ ଭଲ ମଣିଷ ବହୁ ଭଲ ଭଲ ଘଟଣାମାନ ଘଟାଉଛନ୍ତି। କିନ୍ତୁ ଏଗୁଡ଼ିକୁ ସଂଗ୍ରହ କରି ପ୍ରକାଶ କରିବା ଲାଗି ଏଇ ସମ୍ବାଦପତ୍ରମାନେ ଉଦ୍ୟମ କରନ୍ତି ନାହିଁ। ସବୁ ଅମଙ୍ଗଳକର ଘଟଣାଗୁଡ଼ିକ ପ୍ରକାଶ କରି ଏମାନେ ଜନଗଣଙ୍କ ମନରେ ସର୍ବଦା ଏକ ଉତ୍‌କ୍ଷିପ୍ତଭାବ, ଅପ୍ରତ୍ୟୟଭାବ ଉଦ୍‌ଭ୍ରାନ୍ତଭାବ ସୃଷ୍ଟି କରି ଜନଗଣଙ୍କ ମନକୁ ନିଜର ଆୟତ୍ତ ଭିତରକୁ ଆଣି ନିଜ ହାତରେ ରଖିଥାନ୍ତି। ଫଳରେ ସମ୍ବାଦପତ୍ରମାନେ ବର୍ତ୍ତମାନ ଇଚ୍ଛାକଲେ ଜନଗଣଙ୍କୁ ବିନା ବାଧାରେ ନଚେଇ ପାରିବେ—ତତେଇ ପାରିବେ, ମତେଇ ପାରିବେ।

ଏଇ ଅଣାୟତ୍ତ ଜନଗଣ ମଧ ରାତିପାହିଲା ମାତ୍ରେ ଖବରକାଗଜଟିଏ ଖୋଜନ୍ତି ପଢ଼ିବା ଲାଗି। ଜୀବନସଂଗ୍ରାମର ତୀବ୍ର କୋଳାହଳ ଭିତରେ ଟିକିଏ ସମୟ ପାଇଲା ମାତ୍ରେ—ସେଇ ସବୁ ଦାୟିତ୍ୱହୀନ ନିମ୍ନଚେତନାର ବାହକ ପତ୍ରପତ୍ରିକା ବା ଗଳ୍ପ ଉପନ୍ୟାସାଦି ପଢ଼ି ବସନ୍ତି। ଶୋଇଲାବେଳେ କି ଟ୍ରେନ୍ ବସ୍‌ରେ ଗଲାବେଳେ—କି କାହାକୁ କୋଉଠି ଅପେକ୍ଷା କଲାବେଳେ।

ଜନଗଣ ଆଜ କିଛି ପଢ଼ନ୍ତି ନାହିଁ। ପୁରାଣ ନୁହଁ କି ଇତିହାସ ନୁହଁ। ଜ୍ଞାନ ନୁହଁ କି ଧର୍ମଶାସ୍ତ୍ର ନୁହଁ। ଖବର କାଗଜ ଓ ଏଇସବୁ ପତ୍ରିପତ୍ରିକା ହିଁ ସେମାନଙ୍କର ପକ୍ଷରେ ବେଦ, ଉପନିଷଦ, ସଂହିତା ଓ ପୁରାଣ। —ଖବରକାଗଜକୁ ବିଶ୍ୱାସକରିବା ଛଡ଼ା ଜନଗଣଙ୍କର ଆଉ ଅନ୍ୟ ଗତି ନାହିଁ। ଏଇ ଖବରକାଗଜ ହିଁ ବର୍ତ୍ତମାନ ଏକ ବିରାଟ କ୍ଷମତାଧାରୀ ଶକ୍ତିଶାଳୀ ଅସ୍ତ୍ର। ଏହାକୁ ଶାସକ ପ୍ରଶାସକମାନେ ଡରୁଛନ୍ତି—ବ୍ୟବସାୟୀମାନେ ଡରୁଛନ୍ତି ଓ ଏପରି କି ବିବେକୀ ଶୁଦ୍ଧଚିତ୍ତ ସାମାଜିକମାନେ ବି ଡରୁଛନ୍ତି। ତେଣୁ ଖବରକାଗଜକୁ କୋନମତେ ସନ୍ତୁଷ୍ଟ କରିବା ପାଇଁ ସମାଜର ପ୍ରଭାବଶାଳୀ କ୍ଷମତାଧାରୀ ଓ ବ୍ୟବସାୟୀମାନେ ଯେ କୌଣସି ପନ୍ଥା ଗ୍ରହଣ କରନ୍ତି। ଏଣେ ଖବରକାଗଜବାଲା ସମସ୍ତଙ୍କ ଡୋର ନିଜ ହାତରେ ଧରି କଣ୍ଢେଇମାନଙ୍କୁ ନିଜ ବାଗରେ ନଚାଉଥାନ୍ତି। ଖବରକାଗଜ ବା ଏଇସବୁ ସାମ୍ବଦିକୀ ପତ୍ରପତ୍ରିକାମାନେ ନିଜର ମତାମତ ସହଜରେ ଦିଅନ୍ତି ନାହିଁ। ସେମାନେ କେଉଁ ଖବରଟିଏ ଛାପି ଦିଅନ୍ତି ଏବଂ ଏହି ଖବରଟିର ପ୍ରକାଶରୀତି ହେଲା—'ଶୁଣିବାକୁ ମିଳେ ଯେ'—'ଜନରବରୁ ପ୍ରକାଶ'—'ଲୋକମାନେ କୁହାକୁହି ହେଉଛନ୍ତି'—'ଏ ଅଞ୍ଚଳରେ ତାହା ନେଇ ଚାଞ୍ଚଲ୍ୟ ଖେଳିଯାଇଛି'—ଇତ୍ୟାଦି ଇତ୍ୟାଦି 'ଉଡ଼ନ୍ତନ୍ତୁ' ବାକ୍ୟାବଳୀର ଆଦ୍ୟ ବା ଶେଷ ପ୍ରୟୋଗରେ। କିନ୍ତୁ ନିଜସ୍ୱ କିଛି ମତାମତ ସ୍ପଷ୍ଟ ଭାବରେ ନ ଥାଇ ଯେଉଁ ଖବର ପ୍ରକାଶ କରାଯାଏ ତାହା ଦାୟିତ୍ୱହୀନ। ଗୋଟିଏ ଦୃଷ୍ଟିରୁ ଦେଖିଲେ ସେଗୁଡ଼ିକ ହେଲା ବେନାମୀ ଖବର। ପାଠକ ଖବରଟିଏ ପାଏ। ଖବରଟି ଦ୍ୱାରା ଆକ୍ରାନ୍ତ ହୁଏ ଏବଂ ସେଇ ଦାୟିତ୍ୱହୀନ ବ୍ୟକ୍ତି ଠାରେ ସ୍ୱାକ୍ଷରହୀନ ଖବରଟି ତା' ନିଜର ନିମ୍ନ ପ୍ରବୃତ୍ତିକୁ ଆଶ୍ରୟ କରି ତାକୁ ବିଭ୍ରାନ୍ତ କ୍ରିୟାକାଣ୍ଡରେ ପ୍ରବର୍ତ୍ତାଏ।

ଏଇସବୁ ଖବରକାଗଜର ଅଧିକାଂଶ ସମ୍ପାଦକ, ସମ୍ବାଦଦାତା ଓ ସମ୍ବାଦ—ସ୍ରଷ୍ଟାମାନେ ବର୍ତ୍ତମାନ ସମାଜରେ ସବୁଠାରୁ ପ୍ରଭାବଶାଳୀ ଓ ଶକ୍ତିଶାଳୀ ଗୋଷ୍ଠୀ ଏବଂ ଶୋଚନୀୟ କଥା ହେଲା—ଏମାନଙ୍କ ଭିତରୁ ଅଧିକାଂଶ ଏଇସବୁ ଅନ୍ଧ-ଉନ୍ମତ୍ତ ଜନଗଣଙ୍କ ଭିତରୁ ବାହାରିଥାନ୍ତି—ଏବଂ ସେଇମାନଙ୍କ ମନକୁ ଆପଣାର ଧୂର୍ତ୍ତ କୌଶଳ ବଳରେ ନିଜ ଆୟତ୍ତକୁ ଟାଣିଆଣି ଅଘଟଣ ଘଟଣ ଘଟାଇ ଥା'ନ୍ତି। ସେମାନେ କହନ୍ତି—ଆମେ ହେଲୁ ଜନଗଣଙ୍କ ମୁଖପାତ୍ର—ଏବଂ ଆମରି ଏଇ ଗଣମାଧ୍ୟମଟି ହେଲା ଜନଗଣଙ୍କ ମୁଖପତ୍ର ଏବଂ ଜନଗଣ ମଧ୍ୟ ଏଇ ଖବରକାଗଜ ଓ ତାର କର୍ତ୍ତାମାନଙ୍କ ପାଲରେ ପଡ଼ି ଭାବନ୍ତି ଯେ ସାମ୍ବାଦିକ ଓ ସମ୍ବାଦପତ୍ର ହିଁ ଆମର ଏକମାତ୍ର ଉପାସ୍ୟ ଓ ହର୍ତ୍ତାକର୍ତ୍ତା ବିଧାତା।



# ଏକ ରାଜକୀୟ ମୋହଭଙ୍ଗ

୧୧।୫।୮୨

ସେଦିନ ହଠାତ୍ ଗୋଟିଏ କୃଷି ଯନ୍ତ୍ରପାତି ଦୋକାନରେ ମୋର ଜଣେ ଘନିଷ୍ଠ ବନ୍ଧୁଙ୍କ ସଙ୍ଗେ ଦେଖା ହୋଇଗଲା। ଭାରତ ସ୍ୱାଧୀନତା ପାଇବାର ଓ ଗଡ଼ଜାତମାନେ ମୋଗଲବନ୍ଦୀରେ ମିଶିବାର ମାତ୍ର ଦୁଇବର୍ଷ ପୂର୍ବରୁ ଆମେ ଦୁହେଁ କଲେଜରେ ପଢୁଥିଲୁ। ସେ ଥିଲେ ଓଡ଼ିଶାର ଏକ ନାତିବୃହତ୍ ଗଡ଼ଜାତର ରାଜପୁତ୍ର। ଖୁବ୍ ସୁନ୍ଦର ବୃହତ୍ ବଳିଷ୍ଠ ଗଢ଼ଣ। ଚାହାଣି ଓ ହସରେ ରାଜକୀୟ ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟ ମିଶି ରହିଥିଲା।

ବାଲ୍ୟକାଳରୁ ରାଜା, ରାଜପୁତ୍ର ଓ ରାଜକନ୍ୟାମାନଙ୍କ ସମ୍ବନ୍ଧେ ନାନାଦି ଗଳ୍ପ ଶୁଣିଥିଲୁ। ମାତ୍ର ଯାତ୍ରା ଥିଏଟରରେ ରାଜାଟିଏ ଦେଖିବା ଛଡ଼ା ଅସଲ ରାଜାଟିଏ ବା ରାଜାପୁଅଟିଏ ଆମର ନୟନପଥଗାମୀ ତଦବଧି ହୋଇ ନଥିଲା।

କଲେଜରେ ନାମ ଲେଖାଇବାର ମାତ୍ର ଦୁଇମାସ ପରେ ତାଙ୍କ ସହିତ ମୋର ବନ୍ଧୁତ୍ୱ ହୋଇଥିଲା ଏବଂ କଲେଜରେ ଥିଲା ପର୍ଯ୍ୟନ୍ତ ଓ କଲେଜ ଛାଡ଼ିବାର ଆଉ କେତେବର୍ଷ ପର୍ଯ୍ୟନ୍ତ ତାଙ୍କ ସଙ୍ଗେ ମୋର ବନ୍ଧୁତ୍ୱ ଅକ୍ଷୁର୍ଣ୍ଣ ରହିଥିଲା। ମାତ୍ର ହଠାତ୍ ଦିନେ ଆମେ ପରସ୍ପର ସହିତ ସଂଯୋଗ ସମ୍ବନ୍ଧ ବନ୍ଦ କରିଦେଲୁ। କାରଣ ଜୀବନସଂଗ୍ରାମ ଆମ ଉଭୟ ରାଜାପୁଅ ଓ ପ୍ରଜାପୁଅଙ୍କୁ ପରସ୍ପରଠାରୁ ଅନେକ ବର୍ଷ ପର୍ଯ୍ୟନ୍ତ ପୃଥକ୍ କରିଦେଲା। ଚିଠିପତ୍ରର ବି ଆଉ ଆଦାନପ୍ରଦାନ ନଥିଲା। ରାଜାପୁଅଙ୍କ ବାହାଘରକୁ ନିମନ୍ତ୍ରଣ ପତ୍ରଟିଏ ପାଇଥିଲି। ମାତ୍ର ଯାଇପାରି ନ ଥିଲି।

ତିରିଶିବର୍ଷ ପରେ କୃଷି ଯନ୍ତ୍ରପାତି ଦୋକାନରେ ଦେଖାହେଲା ମାତ୍ରେ ହଠାତ୍ ଦୁହେଁ ଚମକିପଡ଼ିଲୁ ଓ ଦୁହିଁଙ୍କୁ ନିବିଡ଼ଭାବେ ପ୍ରାୟ ଦୁଇ ମିନିଟକାଳ କୁଣ୍ଢାଇ ଧରିଲୁ। ଖୁବ୍ ଆନନ୍ଦହେଲୁ। ରାଜାପୁଅଙ୍କଠାରୁ ଶୁଣିଲି ଯେ ସେ ତାଙ୍କ ଜୀବନରେ ବହୁ ବହୁ ପ୍ରକାର କାର୍ଯ୍ୟକରି କିଛି ସଫଳତା ଓ ବିଫଳତା ଲାଭକରି ଶେଷକୁ ବର୍ତ୍ତମାନ ଏଇ କୃଷି ଯନ୍ତ୍ରପାତି ବିକ୍ରୟ ବ୍ୟବସାୟ କରୁଛନ୍ତି, ଏବଂ ଓଡ଼ିଶାର ଚାରୋଟି ବଡ଼ ସହରରେ ତାଙ୍କର ଏଇ ସଂସ୍ଥା ରହିଛି। ସେ ଏଇ ସହରକୁ କାଲିଠାରୁ ଆସିଛନ୍ତି। ଏବଂ ଆଉ ଦୁଇଦିନ ପରେ ବ୍ୟବସାୟ ସଂସ୍ଥାଟିକୁ ତନଖି କରି ଏଠାରୁ ଚାଲିଯିବେ।

ଏଇ ସହରରେ ତାଙ୍କର ନିଜର ଗୋଟିଏ ଘର ଅଛି। ସେଥିରେ କିଛି ଅଂଶ ଭଡ଼ା ଲାଗିଛି ଓ ଆଉ ଗୋଟିଏ ଅଂଶ ଖାଲିଥାଏ। ସେ ନିଜେ ଆସିଲେ ରହନ୍ତି।

ସେଦିନ ସ୍ଥିର ହେଲା--ରାତିରେ ମୁଁ ତାଙ୍କ ଘରେ ତାଙ୍କ ସହିତ ରାତ୍ରିଭୋଜନ କରିବି। ରାତି ଆଠଟାବେଳେ ଯାଇ ପହଞ୍ଚିଲି। ବନ୍ଧୁ ଏକୁଟିଆ ମୋତେ ଅପେକ୍ଷା କରିଥାନ୍ତି। ତାଙ୍କ ସହିତ ତାଙ୍କର ପରିବାର ନ ଥାନ୍ତି। ତାଙ୍କର ଜଣେ ସହକାରୀ ଥାନ୍ତି। ସେ ତାଙ୍କୁ ଗୋଟିଏ ହୋଟେଲରୁ ଆମ ପାଇଁ ଖାଦ୍ୟ ଆଣିବାକୁ ବରାଦ ଦେଲେ। ଆମେ ଦୁହେଁ ଉପର ମହଲାର ଗୋଟିଏ ବାଲକୋନୀରେ ବସି ଗପକଲୁ।

ଗପକଲୁ। ଢେର ଗପ କଲୁ। ଗତ ତରିଶିବର୍ଷ ଭିତରେ ଆମ ଦୁହିଁଙ୍କ ଜୀବନରେ ଯେତେ ସବୁ ବିଶିଷ୍ଟ ଘଟଣାମାନ ଘଟିଯାଇଛି—ଦେଶ ଓ ପୃଥିବୀରେ ଯେତେ ସବୁ ସ୍ମରଣୀୟ ଘଟଣା ଘଟିଯାଇଛି—ସବୁ ବିଷୟରେ ଗପକଲୁ। ଇତିମଧ୍ୟରେ ଆମ ଦୁହିଁଙ୍କର ସଂସାର ସମ୍ପର୍କରେ, ଜୀବନ ସମ୍ପର୍କରେ, ଜୀବଜନ୍ତୁଙ୍କ ସମ୍ପର୍କରେ, ଇହଲୋକ ଓ ପରଲୋକ ସମ୍ପର୍କରେ, ଈଶ୍ୱର ଓ ସୟତାନଙ୍କ ସମ୍ପର୍କରେ, ଧର୍ମ ଓ ରାଜନୀତି ସମ୍ପର୍କରେ, ଅତୀତ ଓ ବର୍ତ୍ତମାନ ସର୍ମ୍ପକରେ—ଏବଂ ଭୂତ ପ୍ରେତଙ୍କ ସମ୍ପର୍କରେ—ସବୁ କିଛି ସମ୍ପର୍କରେ ଯାହା ଧାରଣାଥିଲା ସବୁ ଗପି ଚାଲିଲୁ। ସେ କହୁଥାନ୍ତି—ମୁଁ ଶୁଣୁଥାଏ। ମୁଁ କହୁଥାଏ—ସେ ଶୁଣୁଥାନ୍ତି। ଆମେ ଦୁହେଁ ସବୁ କଥା ଉପରେ ଆମ ମତବ୍ୟକ୍ତ କରୁଥାଉ। ପରସ୍ପର ମତକୁ ଖଣ୍ଡନ ମଣ୍ଡନ ମଧ୍ୟ କରୁଥାଉ, ଆମେ କେବଳ ଗପୁଥାଉ ଓ ଶୁଣୁଥାଉ। ରାତି ଆଠଟାରୁ ରାତି ଦୁଇଟା। ଆମର ଖାଇବା ବେଳଟା ବି ଗପସପରୁ ବାଦ୍ ପଡ଼ି ନଥିଲା। ଅନର୍ଗଳ ଗପୁଥାଉ। ସତେ କି, ଏଇ ତିରିଶବର୍ଷ ଭିତରେ ଆମେ ଦୁହେଁ ଗପିବାପାଇଁ ଲୋକ ପାଇନାହୁଁ। କାହାଠୁ ଶୁଣିନାହୁଁ—କି ଶୁଣାଇନାହୁଁ! ସତେ କି ଆମକୁ ଶୁଣିବା ଲାଗି କି ଆମକୁ ଶୁଣାଇବା ଲାଗି ଏକାଥରକେ ଏତେ ସମୟ ଓ ସୁଯୋଗ କେହି ଏ ଯାବତ ଆମକୁ ଦେଇନାହିଁ—କି ଆମେ ବି ଆଉ କାହାକୁ ଦେଇନାହୁଁ।

ଏତେଦିନର ବନ୍ଧୁ! ପୁଣି ରାଜକୀୟ ବନ୍ଧୁ! ଏଡ଼େ ଘନିଷ୍ଠ ବନ୍ଧୁ!! ମୁଁ ତାଙ୍କୁ "ରାଜାସାହେବ" ବୋଲି ସମ୍ବୋଧନ କରୁଥିଲି ଆଗପରି ଓ ସେ ମତେ "କବି ସମ୍ରାଟ୍" ବୋଲି ସମ୍ବୋଧନ କରୁଥିଲେ ଆଗପରି। ଏବଂ ଏ ଦୁଇ ବାଲ୍ୟକାଳର ସମ୍ବୋଧନକୁ ଆଜି ପର୍ଯ୍ୟନ୍ତ ଆମେ ଦୁହେଁ ଉପଭୋଗ କରୁଥିଲୁ ଓ ତହିଁରେ ବିଶ୍ୱାସ ମଧ୍ୟ କରୁଥିଲୁ। ଯଦିଓ ଆମେ ଦୁହେଁ ନିର୍ଘାତ ଜାଣିଥିଲୁ ଯେ, ସେ ଜଣେ ବର୍ତ୍ତମାନ କୃଷି ଯନ୍ତ୍ରପାତିର ସାଧାରଣ ବ୍ୟବସାୟୀ ଓ ମୁଁ ଜଣେ ପେଶାଦାର ସାମ୍ବାଦିକ, ଯେ କି ମଝେ ମଝେ ଏଣୁତେଣୁ ଗପଟିଏ କି କବିତାଟିଏ ଲେଖି ପ୍ରତିଷ୍ଠିତ କବି ଲେଖକମାନଙ୍କ ସହିତ ସମମର୍ଯ୍ୟାଦା ପାଇବାକୁ ଲାଳସା ରଖିଥାଏ। ତଥାପି– ମୁଁ ପୂର୍ବପରି ତାଙ୍କୁ ବାରମ୍ବାର—"ରାଜାସାହେବ" ବୋଲି ଡାକୁଥାଏ ଓ ସେ ମତେ

ବାରମ୍ବାର "କବି ସମ୍ରାଟ" ବୋଲି ଡାକୁଥାନ୍ତି। ସେଇ କେତୋଟି ଘଣ୍ଟା ଆମେ ଦୁହେଁ ଦୁହିଁଙ୍କୁ ଭାରି ପଦମର୍ଯ୍ୟାଦା ଅକୁଣ୍ଠିତ ଭାବେ ଦେଇ ଚାଲିଥିଲୁ ଓ ତାହା ଆମକୁ ଅଭୂତପୂର୍ବ ଆନନ୍ଦ ଦେଉଥିଲା।

ସେହି ବହୁବିଧ ଆଳାପ ଆଲୋଚନା ଭିତରେ ମୋର ରାଜନୀତିକ ବନ୍ଧୁଙ୍କର ଦୁଇଟି ମନ୍ତବ୍ୟ ମୋର ଚିରଦିନ ମନେ ରହିବ ଏବଂ ତାହା ମୁଁ ମୋ ପାଠକମାନଙ୍କ ଆଗରେ ନିବେଦନ କରୁଛି।

ଆଜିକାଲି କିପରି ବଣ ସବୁ ପଦା ହୋଇଗଲାଣି ଓ ବଣ ଜନ୍ତୁମାନେ ପଦା ହୋଇଗଲେଣି—ସେ ସମ୍ବନ୍ଧେ କଥାବାର୍ତ୍ତା ହେଲାବେଳେ ରାଜନୀତିକ ବନ୍ଧୁ କହିଲେ—

ବୁଝିଲ କବି ସମ୍ରାଟ! ଆଗେ ବଣ ସବୁ ରାଜାଙ୍କର ଥିଲା। ରାଜାଙ୍କ ବ୍ୟତୀତ ଓ ରାଜାଙ୍କ ଅନୁମତି ବ୍ୟତୀତ କେହି ଜଙ୍ଗଲରୁ ଗଛ କାଟିପାରୁ ନଥିଲେ। ସେଥିପାଇଁ ରାଜତନ୍ତ୍ର ଥିଲାବେଳେ ଜଙ୍ଗଲ ଥିଲା। ମାତ୍ର ବର୍ତ୍ତମାନ ତ ଗଣତନ୍ତ୍ର। ଜଙ୍ଗଲର ଅଧିକାରୀ ହେଲେ ସର୍ବସାଧାରଣ। ଆଜି ଜନରାଜ୍ୟ ପ୍ରତିଷ୍ଠିତ ହୋଇଛି। ତେଣୁ ଜନତା ଯେତେବେଳେ ଗଛ କାଟି ଚାଲିଛି—ଜଙ୍ଗଲ ରହିବ ଆଉ କେମିତି? ଆଉ ଜଙ୍ଗଲ ରହିବ ନାହିଁ। ବର୍ତ୍ତମାନ ଶାସନ ତ ରହିଛି ଜନତାର ପ୍ରତିନିଧିଙ୍କ ହାତରେ! ଜାଣିଥାଅ—ଆଉ ଜଙ୍ଗଲ ରହିବ ନାହିଁ। ବର୍ତ୍ତମାନ ସବୁରି ହାତରେ କତୁରି ଆଉ କୁରାଢ଼ି।

ସେମିତି ଆମେ ବର୍ତ୍ତମାନର ସାମାଜିକ ଓ ନୈତିକ ଜୀବନ ଉପରେ ଆଲୋଚନା କରୁ କରୁ ବର୍ତ୍ତମାନ ସମାଜରେ ଯେପରି ଭାବେ ଯୌନ ବ୍ୟଭିଚାର ଓ ନାରୀଧର୍ଷଣାଦି ବଢ଼ି ଚାଲିଛି; ତା'ଉପରେ ମନ୍ତବ୍ୟ ଦେଇ ରାଜନୀତିକ ବନ୍ଧୁ କହିଲେ—

ବୁଝିଲ କବିସମ୍ରାଟ! ଆଗେ ଯେତେବେଳେ ରାଜତନ୍ତ୍ର ଥିଲା—ଜଣେ ରାଜା ହାତରେ ସମସ୍ତ ଧନ ଓ କ୍ଷମତା କେନ୍ଦ୍ରୀଭୂତ ଥିଲା। ରାଜା ଯେତେବେଳେ କୋଉ ସ୍ତ୍ରୀଲୋକକୁ ଉପଭୋଗ କରିବାକୁ ଇଚ୍ଛା କରୁଥିଲେ—ତେବେ ସେ ତାକୁ ଉଆସକୁ ନିମନ୍ତ୍ରଣ କରୁଥିଲେ। ତାକୁ ବହୁ ଶାଢ଼ୀ ଅଳଙ୍କାର ଉପହାର ଦେଉଥିଲେ। ବହୁ ଚାଟୁ ଅଭ୍ୟର୍ଥନା କରି ଆଗ ତାର ମନ ନେଉଥିଲେ—ତା'ପରେ ଆଉ ଯାହା। କିନ୍ତୁ ବର୍ତ୍ତମାନ ଧନ ଓ କ୍ଷମତା ପଡ଼ିଛି ଜନଗଣଙ୍କ ହାତରେ। ବର୍ତ୍ତମାନ ଗଣତନ୍ତ୍ର ଯୁଗରେ ଗଣର ଯେତେବେଳେ ଭୋଗ-ଲାଳସା ଜାଗ୍ରତ ହୁଏ—ସେତେବେଳ ସେ ଆଉ କାହାର ମନ ନେବାପାଇଁ ଅପେକ୍ଷା କରିପାରିବ ନାହିଁ। ଚାଟୁ ଅଭ୍ୟର୍ଥନା କରିବ ନାହିଁ। ଦାନ ଉପହାର ଦେବ ନାହିଁ। ବର୍ତ୍ତମାନ ଗଣର ଯୌନ-ଲାଳସା ଗଣ-ଧର୍ଷଣ ଦ୍ୱାରା ହିଁ ଚରିତାର୍ଥ ହେବ। ଏହାର ମଧ୍ୟ ଆଉ ଉପାୟ ନାହିଁ। ରାଜା ଉପଭୋଗ କରେ—ଗଣ ଧର୍ଷଣ କରେ।

ଏହି ପ୍ରସଙ୍ଗରେ ମୁଁ ଅତୀତର କେତେକ ବିକୃତମନା ରାଜାଙ୍କର ବୀଭତ୍ସ ଯୌନଚର୍ଯ୍ୟାର ଉଦାହରଣ ଦିଅନ୍ତେ—ମୋର ରାଜକୀୟ ବନ୍ଧୁ ହସି ହସି ଉତ୍ତର ଦେଲେ—

ବୁଝିଲେ କବିସମ୍ରାଟ ! ସେତେବେଳେ ଜଣେ ଥିଲା ରାଜା । ସେ ଯଦି ଦୁର୍ଭାଗ୍ୟକୁ ବିକୃତମନା ହେଲା—ତେବେ ଜଣେ ବିକୃତମନା ରାଜାର ଅତ୍ୟାଚାର ଭୋଗିବାକୁ ପଡୁଥିଲା ପ୍ରଜାମାନଙ୍କୁ । କିନ୍ତୁ ବର୍ତ୍ତମାନ ଗଣତନ୍ତ୍ରରେ ରାସ୍ତା ଓ ଗଳିମାନଙ୍କରେ କେତେ ବିକୃତମନା 'ଗଣ' ବୁଲୁଛନ୍ତି ଓ କାଣ୍ଡକାରଖାନା କରୁଛନ୍ତି ଦେଖୁଛ ନା ନାହିଁ ?

ମୁଁ କହିଲି—ରାଜା ସାହେବ । ଆପଣଙ୍କ ଅବଚେତନରେ ରାଜତନ୍ତ୍ର ପ୍ରତି ଏବେ ବି ମୋହ ରହିଛି ଓ ଗଣତନ୍ତ୍ର ପ୍ରତି ବିଦ୍ୱେଷ ରହିଛି ।

ବନ୍ଧୁ ଗମ୍ଭୀର ହୋଇ କହିଲେ—କବିସମ୍ରାଟ ! ମୋର ଉଭୟପଟୁ ମୋହଭଙ୍ଗ ହୋଇଛି । ମାତ୍ର ତୁମର ଦେଖୁଛି—ଏ ଯାବତ ମୋହ ଭାଙ୍ଗି ନାହିଁ ।

**

# ଧୂମାଭ ଦିଗନ୍ତ

୫।୧୦।୮୩

କେତେ ଅସରା ଝିପି ଝିପି ବର୍ଷା ପରେ ମେଘ ସେଇ ପ୍ରହରୁ କୁଣ୍ଡା ଝାଡୁଥାଏ। ତା' ସତ୍ତ୍ୱେ ବି ଭାରି ଗିଜିଗିଜି ଗରମ ଲାଗୁଥାଏ। ପୁରୀ ସହରରେ ଶ୍ରାବଣଠାରୁ ଆଶ୍ୱିନ ପର୍ଯ୍ୟନ୍ତ ଦିନଗୁଡ଼ିକ ଏଥିପାଇଁ ବିରକ୍ତିକର। ଅଙ୍ଗକେ ଦେହ ଝୋଲା ମାରିଲା ଭଳି ଲାଗେ। ସର୍ବାଙ୍ଗ ଘୋଳି ହୁଏ। ଏ ପଟେ ସମୁଦ୍ର ଓ ସେ ପଟେ ଶ୍ରୀଜଗନ୍ନାଥଙ୍କ ପାଖରୁ ମନ ଛାଡୁ ନଥିଲେ ବି, ପଞ୍ଚଭୂତରେ ଗଠିତ ବିଚାରା ଏଇ ପାପୀ ଦେହଟି ଛାଟିପିଟି ହୁଏ ପୁରୀ ଛାଡ଼ି ପଳେଇ ଆସିବାକୁ।

ସେଦିନ ସକାଳେ ଜଣେ ପ୍ରୌଢ଼ ଭଦ୍ରବ୍ୟକ୍ତି ତାଙ୍କର ପତ୍ନୀଙ୍କ ସହ ସମୁଦ୍ର, ବଡ଼ଦାଣ୍ଡ, ଶ୍ରୀମନ୍ଦିର ଇତ୍ୟାଦି ଶେଷ କରି ରିକ୍ସାଧରି ପୁରୀ ବସ୍‌ଷ୍ଟାଣ୍ଡରେ ଆସି ପହଞ୍ଚିଗଲେ। ସନ୍ଧ୍ୟା ପୂର୍ବରୁ ଭୁବନେଶ୍ୱର ଫେରିଯିବେ। ପ୍ରାଇଭେଟ୍ ବସ୍‌ଟିଏ ଯାତ୍ରୀରେ ପେଟଭର୍ତ୍ତି କରି ଛାଡ଼ିବ ଛାଡ଼ିବ ବୋଲି ଘୁମୁରୁଥାଏ—ଆହୁରି ଯାତ୍ରୀ ଲୋଭରେ ଷ୍ଟାଣ୍ଡ ଛାଡୁ ନ ଥାଏ। ବେଳେବେଳେ ଆଗକୁ ଟିକିଏ ଉହୁଙ୍କି ଯାଇ ପୁଣି ରହିଯାଉଥାଏ ଓ ଘୁମୁରୁ ଥାଏ—ସଁ ସଁ ହେଉଥାଏ। ଡ୍ରାଇଭର ତାଙ୍କ ସିଟରେ ବସି ଷ୍ଟିଅରିଂ ଉପରେ ହାତଟିଏ ରଖି ଅନ୍ୟ ହାତରେ ସିଗ୍ରେଟ୍‌ଟିଏ ଶୋଷୁ ଥାନ୍ତି। ବସ୍ ପାଖରେ ହରକରା ଦି'ଜଣ ବଡ଼ପାଟିରେ ଚିଲ୍ଲାଉଥାନ୍ତି—କଟକ-କଟକ-କଟକେ—ଭୁବନେଶ୍ୱର, ଭୁବନେଶ୍ୱର, ଭୁବନେଶ୍ୱର।

ସେ ବସ୍‌ଟି ପାଖରେ ଆଉ ଗୋଟିଏ ବସ୍ ମଧ୍ୟ ଭୁବନେଶ୍ୱର ଯିବାକୁ ପ୍ରସ୍ତୁତ ହୋଇ ଘୁମୁରୁଥାଏ ଓ ତା'ର ହରକରାମାନେ ମଧ୍ୟ ସେମିତି ଯାତ୍ରୀମାନଙ୍କୁ ଡାକ ଛାଡ଼ିଥାନ୍ତି। ଆମର ସେହି ପତି-ପତ୍ନୀଙ୍କୁ ରିକ୍‌ସାରେ ଦେଖି ଉଭୟ ପଟୁ ଚିତ୍କାର ଆରମ୍ଭ ହେଲା—ଆସନ୍ତୁ ଆଜ୍ଞା, ଆସନ୍ତୁ—କଟକ-କଟକ-କଟକ-ଭୁବନେଶ୍ୱର, ଭୁବନେଶ୍ୱର, ଭୁବନେଶ୍ୱର।

ପ୍ରଥମ ବସ୍‌ର କଣ୍ଡକ୍ଟର ଓ ହରକରାମାନଙ୍କର ଚିତ୍କାରରେ ପ୍ରାୟ ସମ୍ମୋହିତ ହୋଇ ପ୍ରୌଢ଼ଦମ୍ପତି ସେଇ ବସ୍ ଭିତରକୁ ପଶିଲେ। ବସ୍ ଭିତରେ ଜାମ୍ ହୋଇ ଯାଇଥାଏ। କିନ୍ତୁ ପଚ୍ଛଟକ ଉପରେ ଥିବା ଦି'ଜଣିଆ ସିଟଟିଏ କୌଣସି କାରଣରୁ ଖାଲିଥିବାରୁ ପତି ପତ୍ନୀ ସେଥିରେ ବସିଯାଇ ଶ୍ରୀ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଶେଷଥର ଲାଗି ହାତଯୋଡ଼ି ନମସ୍କାର କରି ମନେ ମନେ ବିଦାୟ ନେଲେ।

ବସ୍‌ର ଇଞ୍ଜିନଟି ତଥାପି ଘୁମୁରୁ ଥାଏ। ବାହାରେ ଆଉରି ଯାତ୍ରୀ ପାଇଁ ଚିତ୍କାର ଚାଲିଥାଏ। ବସ୍ ଭିତରେ ଗରମ ଲାଗୁଥାଏ। କାରଣ ଇତିମଧ୍ୟରେ ଠିଆ

ଯାତ୍ରୀମାନେ ଭର୍ତ୍ତି ହୋଇଗଲେଣି। ପ୍ରୌଢ଼ଦମ୍ପତି ଯେଉଁଠି ବସିଥାନ୍ତି—ତାଙ୍କ ପଛପଟ ସିଟ୍‌ରୁ ଜଣେ ମଧ୍ୟବୟସ୍କ ଶିକ୍ଷିତ ଭଦ୍ରବ୍ୟକ୍ତି ବସି ବେପରୁଆ ସିଗ୍ରେଟ ଶୋଷି ଚାଲିଥାନ୍ତି—ଏବଂ ସେ ଧୂଆଁତକ ସେହି ପ୍ରୌଢ଼ଦମ୍ପତିଙ୍କ ନାକବାଟ ଦେଇ ବାହାରକୁ ଯିବା ଲାଗି ବାଟ ଖୋଜୁଥାଏ। ଭଦ୍ରମହିଳା ଏତେ କଡ଼ାଧୂଆଁରେ କାକୁର୍ତ୍ତି ହୋଇଗଲେ। କିଞ୍ଚିତ ବିବ୍ରତ ହୋଇ ପ୍ରୌଢ଼ ଭଦ୍ରବ୍ୟକ୍ତି ପଛକୁ ମୁହଁ ବୁଲାଇ ଧୂମପାୟୀଙ୍କ ଉଦ୍ଦେଶ୍ୟରେ କହିଲେ—ଆଜ୍ଞା, ଦୟାକରି ଟିକିଏ ବାହାରକୁ ଧୂଆଁ ଛାଡ଼ନ୍ତୁ। ଧୂମପାୟୀ ଏତିକିରେ ଖୁବ୍ ଆହତ ମନେକରି ଇଂରାଜୀରେ ଜବାବ ଦେଲେ—ଆଗରେ ଲେଡ଼ିଜ୍ ସିଟ୍ ଖାଲି ପଡ଼ିଛି—ଦେଖି ପାରୁ ନାହାନ୍ତି? ପ୍ରୌଢ଼ ଭଦ୍ରବ୍ୟକ୍ତି କଥାର ଇଙ୍ଗିତ ବୁଝି ସାମାନ୍ୟ ରସିକତା କରି ସ୍ମିତହାସ୍ୟରେ କହିଲେ—ଲେଡ଼ିଜ୍ ସିଟ୍ ଆଡ଼କୁ ଚାହିଁବା ଓ ତାହା ଖାଲି ପଡ଼ିଥିବା ଦେଖି ନିରାଶ ହେବାର ବୟସ ମୋର ଗଲାଣି। କିନ୍ତୁ ଏକଥା ସତ ଯେ, ମୁଁ ଆଉ ମୋର ସ୍ତ୍ରୀ ଆଜିକୁ ବତିଶିବର୍ଷ ହେଲା କେବେ ବସ୍ ବା ଟ୍ରେନରେ ଅଲଗା ହୋଇ ବସିନାହୁଁ। ବରାବର ପାଖାପାଖି ବସି ଆସିଛୁ।

ଧୂମପାୟୀ ଭଦ୍ରଲୋକ ଖୁବ୍ ରୁକ୍ଷ ଭାବରେ ପାଇଟା ରସିକତାର ସହ ଜବାବ ଦେଲେ—କିନ୍ତୁ ଏ ବୟସରେ ଆପଣଙ୍କର ଦାମ୍ପତ୍ୟପ୍ରଣୟ ପାଇଁ ବସ୍‌ଟା ଆଦୌ ଅନୁକୂଳ ନୁହେଁ।

ପ୍ରୌଢ଼ ଭଦ୍ରବ୍ୟକ୍ତି କହିଲେ—ସେକଥା ଏଠି ଉଠୁନାହିଁ। ଆମେ ମଧ୍ୟ ଆମ ଦାମ୍ପତ୍ୟ ପ୍ରଣୟ ପାଇଁ ଏ ବସ୍‌ଟାକୁ ବ୍ୟବହାର କରିବାକୁ ବସିନୁ। ଅସଲ କଥା ହେଲା ସିଗ୍ରେଟ ଧୂଆଁ ଏ ଭିଡ଼ ଭିତରେ ସ୍ତ୍ରୀ-ପୁରୁଷ ନିର୍ବିଶେଷରେ ସମସ୍ତଙ୍କୁ ଶ୍ୱାସରୁଦ୍ଧ କରୁଛି। ଏହା ସ୍ୱାସ୍ଥ୍ୟ ପକ୍ଷରେ ଅତ୍ୟନ୍ତ କ୍ଷତିକାରକ। ଏବଂ ବସ୍ ଭିତରେ ସିଗ୍ରେଟ ପିଇବା ନିଷିଦ୍ଧ ବୋଲି ସେଠି ଲେଖା ହୋଇଛି, ଦେଖିଛନ୍ତି ତ?

ଧୂମପାୟୀ ବ୍ୟକ୍ତି ଡବଲ ଉତ୍ସାହରେ ଦୁର୍ବିନୀତ ଭଙ୍ଗୀରେ ମୁହୁର୍ମୁହୁଃ ଧୂଆଁ ଛାଡୁ ଛାଡୁ ଅଟ୍ଟାହାସ୍ୟ କରି କହିଲେ—ଲେଖା କଥା କାହିଁକି ଉଠାଉଛନ୍ତି? ଖଣ୍ଡଗିରି, ଧଉଳିଗିରି ପ୍ରସ୍ତରଗାତ୍ରରେ କେତେ ଅନୁଶାସନ ହଜାର ହଜାର ବର୍ଷ ହେଲା ଲେଖା ହୋଇନାହିଁ; କିଏ ମାନୁଛି? ....ତା'ଛଡ଼ା, ଆପଣ ପତ୍ନୀଙ୍କୁ ଧରି ନିଜ କାର୍‌ରେ ଯିବା ଆସିବା କରିବା ଉଚିତ ଥିଲା। ପବ୍ଲିକ୍ ବସ୍‌ରେ ଯିବାକୁ ହେଲେ ଅନ୍ୟର ସ୍ୱାଧୀନତା ଓ ସ୍ୱାଚ୍ଛନ୍ଦ୍ୟକୁ ମାନିବାକୁ ହୁଏ। ଆପଣଙ୍କୁ ଯଦି ତମାଖୁ ଧୂଆଁ ଏତେ ଅସହ୍ୟ ହୁଏ ଆପଣ ଡ୍ରାଇଭରଙ୍କ ପାଖ ସିଟ୍‌ରେ ବସିଲେନି କାହିଁକି? ସେଠି ତ ଜଗନ୍ନାଥଙ୍କ ଫଟୋ ପାଖେ ଅନବରତ କସ୍ତୁରୀ ଧୂପକାଠି ଲାଗି ରହିଛି।

ପ୍ରୌଢ଼ ଭଦ୍ରବ୍ୟକ୍ତି କହିଲେ—କିନ୍ତୁ ସେଠି ମଧ୍ୟ ଡ୍ରାଇଭର ସ୍ୱୟଂ ସିଗ୍ରେଟ ପିଉଛନ୍ତି।

ଧୂମପାୟୀ କହିଲେ—ଏଇଥିରୁ ବୁଝନ୍ତୁ। ଏ ଯୁଗରେ ଏଇ ତମାଖୁ ଧୂଆଁ ହେଲା ଅସଲ ଧୂପ। ଏହାର ସୌରଭକୁ ଉପଭୋଗ କରନ୍ତୁ ନ କରନ୍ତୁ—ସହ୍ୟ କରିବା ପାଇଁ ଶିଖନ୍ତୁ। ତଥାପି ଆପଣଙ୍କର ବହୁତ ବୟସ ବାକୀ ଅଛି ଶିଖିବା ପାଇଁ ଓ ସହ୍ୟ କରିବା ପାଇଁ।

ଇତିମଧ୍ୟରେ ବସ ଭିତରୁ ଭିନ୍ନ ଭିନ୍ନ ସିଟ୍‌ରୁ ବହୁ ସିଗ୍ରେଟଧାରୀ ଧୂଆଁ ପିଇବାର ଉପକ୍ରମ କଲେ ଓ ବସ୍ ଭିତରଟା ତମାଖୁ ଧୂଆଁରେ ଶ୍ୱାସରୁଦ୍ଧ ହୋଇ ଉଠିଲା । କିନ୍ତୁ ଆଶ୍ଚର୍ଯ୍ୟ କଥା—ସେଥିରେ କେହି ଅସ୍ୱସ୍ତି ବୋଧ କରୁ ନଥିଲେ । ଠିକ୍ ଏଇ ସମୟରେ ବସ ଛାତ ଭିତରେ ଖଞ୍ଜାଯାଇଥିବା ମାଇକମାନଙ୍କରୁ ଚିତ୍କାର ସ୍ୱରଟା ଫଟା ଓ ଶସ୍ତା କ୍ୟାସେଟ୍‌ରୁ ସିନେମା ସଙ୍ଗୀତ ବାଜି ଉଠିଲା—ନାଗିନ୍ ଛବିର ସେଇ ଗୀତଟି—''ଦୋଲେ—ମେରା ମନ୍ ଦୋଲେ..ନା' ମାଙ୍ଗୁ ତେରି ସୁନା ଚାହି—ମାଁଗେ ଦରଶନ ଦେବୀ—ତେରୀ ଦ୍ୱାରେ ଖଡ଼ା ଏକ୍ ଯୋଗୀ । (ଆଜିକାଲି ପୁରୁଣା ସିନେମା ସଙ୍ଗୀତର ଆଦର ବଢ଼ୁଛି । ଆଜିର ବଚ୍ଚାବଚ୍ଚୀମାନେ ତାଙ୍କ ବାପ ମାଆମାନେ କେମିତି ତାଙ୍କ ଉମରରେ ରୋମାନ୍ସ କରୁଥିଲେ—ସେ କଥା ଜାଣିବାକୁ ଭାରି କୁତୂହଳୀ ହୋଇ ଉଠିଛନ୍ତି ।) ବସ୍ ଛାଡ଼ିଲା । ଏବଂ ଗୋଟାକ ପରେ ଗୋଟାଏ ପୁରୁଣା ସିନେମା ଗୀତ ଖୁବ୍ ଜୋରରେ ବାଜି ଚାଲିଲା । ଭୟଙ୍କର ଗିଡିଗିଡିଆ ଗରମ—ଜକାଜକି ମଣିଷ—ଦୁଃସହ ସିଗ୍ରେଟ୍ ଧୂଆଁ ଏବଂ ତା ସାଙ୍ଗକୁ ଏଇ ପିଛିଲା ଦିନର ସିନେମା ଗୀତଗୁଡ଼ିକର ନିଦାରୁଣ ଉଚ୍ଚକିତ କୋଳାହଳ । ଏଥିରେ ସୁକୁମାର ମଣିଷଟିଏ ନିଶ୍ଚୟ ମୂର୍ଚ୍ଛା ହୋଇଯିବାର କଥା । ମାତ୍ର ତା'ର ଭିତରେ ଯାହା ଜଣାଗଲା—କେହି ବିଚଳିତ ହେଉ ନଥାନ୍ତି ।

କିନ୍ତୁ ହଠାତ୍ ସମସ୍ତଙ୍କୁ ଚକିତ କରି ଜଣେ ହତଭାଗା ମଫସଲୀ ବୟସ୍କ ଯାତ୍ରୀ ପାଟିକରି ଉଠିଲେ—ହେ କଣ୍ଡକ୍ଟର ବାବୁ ! ଏ ରାଉ ରାଉ ବନ୍ଦକର । କାନ ଅତଡ଼ା ପଡ଼ିଲାଣି । ହୋ କଣ୍ଡକ୍ଟର ବାବୁ !!

କିନ୍ତୁ ଅଭିଯୋଗ ଶୁଣିବା ମାତ୍ରେ ପଛଆଡୁ କେତୋଟି ଯୁବକଣ୍ଠ ପ୍ରତିବାଦ କରି ଉଠିଲେ—ନା—ନା ଚାଲୁ ଚାଲୁ—ଚାଲୁରହୁ ମନୋରଞ୍ଜନ କାର୍ଯ୍ୟକ୍ରମ—ଏ ବୁଢ଼ା । ବସ ବସ—କାନରେ ଠିପି ଦେଇଦିଅ ।

ଲୋକଟି ବସିପଡ଼ିଲା । ଏଇ ସମୟରେ ଜଣେ କହିଲା—ତେଣେ ଆନ୍ଧ୍ରରେ ଦେଖି ଆସିଲି—ଏନ୍.ଟି ରାମାରାଓ ପ୍ରତି ବସରେ ଭିଡ଼ିଓ ଖଞ୍ଜି ଦେଲାଣି । ନିଜେ ସିନେମା ଷ୍ଟାର ଥିଲା ନାଁ । ନ ହେଲେ ଏତେ ପ୍ରୋଗ୍ରେସିଭ ହୁଅନ୍ତା କେମିତି ?

ଏ କଥା ଶୁଣି ପୂର୍ବର ସେଇ ନିରବଚ୍ଛିନ୍ନ ଧୂମପାୟୀ ଭଦ୍ରବ୍ୟକ୍ତି ଇଂରାଜୀରେ ଉତ୍ତର ଦେଲେ—''ଏଠିତ ବସ୍ ଭିତରେ ସିଗ୍ରେଟ ପିଇଲେ ଓଡ଼ିଆଙ୍କ ନାକ ପୋଡୁଛି—ରେକର୍ଡ଼ ବାଜିଲେ କାନ ଫାଟି ଯାଉଛି—ଆଉ ଭିଡ଼ିଓ !! ହାଃ, ହାଃ, ହାଃ । ଓଡ଼ିଆ ଏମିତି ଥିବେ ଚିରଦିନ ଓଡ଼ିଆ ହୋଇ !! ବସ୍ ଭିତରେ ସେତେବେଳେ ଗୀତଟିଏ ବାଜୁଥାଏ—''ପ୍ୟାର କିୟା ତୋ ଡର୍ ନା କ୍ୟା ?'' କେହି କାହା ମୁହଁ ଦେଖି ପାରୁ ନଥାନ୍ତି । କାରଣ—ଧୂଆଁରେ ସବୁ ଆଚ୍ଛନ୍ନ ହୋଇଯାଇଥାଏ । ତେଣେ ବାହାରେ ଦିଗବଳୟ ମଧ୍ୟ ଖୁବ୍ ଧୂମାଳ ଦେଖାଯାଉଥାଏ ।

❋❋

# ଅପରାଧର ଆବର୍ତ୍ତ

୮।୪।୮୨

କେତେକ ମୁସଲମାନ ରାଷ୍ଟ୍ରରେ ଏବେ ଅପରାଧୀକୁ ଦଣ୍ଡଦେବାର ଯେଉଁ ବ୍ୟବସ୍ଥା ହୋଇଛି—ତାକୁ ଅନ୍ୟାନ୍ୟ ଦେଶରେ କେତେକ ସମାଜନୀତିତତ୍ତ୍ୱବାଦୀ ମଧ୍ୟଯୁଗୀୟ ନୃଶଂସ ଦଣ୍ଡବ୍ୟବସ୍ଥା ବୋଲି ସମାଲୋଚନା କରୁଛନ୍ତି। ଚୋରର ଡାହାଣହାତ କାଟି ଦେବା, ଡକାଏତର ଆଖି ଫୁଟାଇ ଦେବା, ସ୍ତ୍ରୀଲୋକକୁ ଧର୍ଷଣ କରୁଥିବା ବ୍ୟକ୍ତିଟିକୁ ସର୍ବସାଧାରଣ ସ୍ଥଳରେ ସମସ୍ତଙ୍କ ସମ୍ମୁଖରେ ବାନ୍ଧି ତା' ଉପରେ ଟେଙ୍କାପଥର ବୃଷ୍ଟିକରି ତାକୁ ଘାଏଲ କରିବା, ପ୍ରଭୃତି ବିଭିନ୍ନ ପ୍ରକାର ଦଣ୍ଡବ୍ୟବସ୍ଥା ଧର୍ମସମ୍ମତ ବା ଧର୍ମଶାସ୍ତ୍ରସମ୍ମତ ବୋଲି କୁହାଯାଉଛି।

ଅବଶ୍ୟ, ଏପରି ଦଣ୍ଡ ବ୍ୟବସ୍ଥା କେବଳ ଯେ ମୁସଲମାନ ଧର୍ମଶାସ୍ତ୍ରସମ୍ମତ, ତା' ନୁହେଁ—ବହୁ ପୂର୍ବେ ଭାରତବର୍ଷରେ ମଧ୍ୟ କେତେକ ସ୍ଥଳରେ ଏଭଳି ଦଣ୍ଡବ୍ୟବସ୍ଥା ପ୍ରଚଳିତ ଥିଲା। ଏହି ଇହଲୋକରେ ହୁଏ ତ ଏହି ପ୍ରକାର ଦଣ୍ଡ ପ୍ରଦାନ ବ୍ୟବସ୍ଥା ପାଇଁ ହିନ୍ଦୁ ଧର୍ମଶାସ୍ତ୍ର ସ୍ପଷ୍ଟ ଭାବେ କିଛି ଅନୁଜ୍ଞା ଦେଇନାହିଁ—କିନ୍ତୁ ଇହଲୋକରେ ଏହି ଜନ୍ମରେ ଯେଉଁ ବ୍ୟକ୍ତି ଯୋଉ ପ୍ରକାର ଦୋଷ କରେ—ତା' ପାଇଁ ପରଲୋକରେ ଯମରାଜା ଚିତ୍ରଗୁପ୍ତଙ୍କ ପାଞ୍ଜିକୁ ଅନୁସରଣ କରି ଯୋଉ ସବୁ ପ୍ରକାର ଦଣ୍ଡପ୍ରଦାନ କରନ୍ତି—ତାହା ଶୁଣିଲେ ଆମର ଛାତି ଥରେ। ସେହିସବୁ ଦଣ୍ଡପାଇଁ ଦୋଷୀ ଲୋକର ପ୍ରେତାତ୍ମାକୁ ଚଉରାଶୀ ପ୍ରକାର ନରକ ଭିତରୁ ଗୋଟିଏକୁ ବା ଏକାଧିକ ସ୍ଥାନକୁ ଯମଦୂତମାନେ ବାନ୍ଧିନେଇଯା'ନ୍ତି ଏବଂ ସେଠାରେ ତାର ଦୋଷାନୁଯାୟୀ ତାକୁ ଅତି କଲବଲ ଛଟପଟ ଦଣ୍ଡ ଦିଆଯାଏ। କାହାକୁ ବାରମ୍ବାର ତତଲା ତେଲ କଡ଼େଇରେ ଭଜାଯାଏ। କାହାକୁ ଗୋଟିଏ କଣ୍ଟା ଗଛରେ ବାନ୍ଧି ଦିଆଯିବା ଅବସ୍ଥାରେ ଛଞ୍ଚାଣ ଓ ଶାଗୁଣାମାନଙ୍କୁ ଅନବରତ ତାକୁ ଖୁଂପିବାକୁ ସୁଯୋଗ ଦିଆଯାଏ। କାହୁକୁ ମୁଣ୍ଡ ଆଡୁ ଯମଦୂତମାନେ ଶହେବର୍ଷ ପର୍ଯ୍ୟନ୍ତ ଗୋଟିଏ ତପ୍ତ କରତରେ ଚିରୁଥା'ନ୍ତି। କାହାର ଦୁଇ ନାକପୁଡ଼ା ଭିତରେ ଯମଦୂତମାନେ ବାରମ୍ବାର ଡାଫଣ ଦ୍ୱାରା ବିଦ୍ଧ କରୁଥାନ୍ତି, ଇତ୍ୟାଦି ଇତ୍ୟାଦି। ଏହା ମଧ୍ୟ ପର୍ଯ୍ୟାପ୍ତ ହୁଏନାହିଁ। ପରଜନ୍ମରେ ଗୁରୁତର ଦୋଷକରିଥିବା ବ୍ୟକ୍ତିକୁ ନରକଯନ୍ତ୍ରଣା ଭୋଗ କରିସାରି ପୁନର୍ବାର ଏହି ପୃଥିବୀରେ ଜନ୍ମିବାକୁ ହୁଏ ଓ ଏହି ଜନ୍ମରେ ବି ସେ ତାର ପୂର୍ବଜନ୍ମର କୃତକର୍ମର ଫଳ ଭୋଗୁ ଥାଏ। ଉଦାହରଣ ସ୍ୱରୂପ—ପୂର୍ବଜନ୍ମରେ ଜଣେ ଅସାଧୁ ମହାଜନ ବା

ଅତ୍ୟାଚାରୀ ରାଜା, ଜମିଦାର, ଶାସକ ଦ୍ୱାରା ଅତ୍ୟାଚାରିତ ବା ପ୍ରପୀଡ଼ିତ ହୋଇଥିବା ଲୋକେ ଏ ଜନ୍ମରେ ସେହି ରାଜା, ଜମିଦାର ବା ଶାସକର ଦୁଷ୍ଟପୁତ୍ର ରୂପରେ ଜନ୍ମହୋଇ ସେମାନଙ୍କୁ ନାନାଦି ମାନସିକ ପୀଡ଼ା ବା ଯାତନା ଦେଇଥାନ୍ତି। ପୂର୍ବଜନ୍ମରେ ନିଜର ବୁଢ଼ା ବାପକୁ ହନ୍ତସନ୍ତ କରିଥିବା ପୁଅଟି ଏ ଜନ୍ମରେ ବାପ ହୋଇ ଜନ୍ମହୁଏ–ଏବଂ ତାର ଗୋଟିଏ ପଙ୍ଗୁପୁତ୍ର ଜନ୍ମ ହୁଏ ଯାହାକୁ କୋଡ଼ିଏ ବର୍ଷକାଳ ପାଳନ କରିବାର କ୍ରୁର ଓ ନିଦାରୁଣ ଦାୟିତ୍ୱ ସେହି ବାପକୁ ନେବାକୁ ପଡ଼ିଥାଏ।

ଏସବୁ କଥା କହିବାର ଉଦ୍ଦେଶ୍ୟ ହେଲା–ସମାଜରେ ଗର୍ହିତ ଦୋଷ କରୁଥିବା ଲୋକମାନଙ୍କ ପ୍ରତି ଆମର ଧର୍ମଶାସ୍ତ୍ରରେ କି ପ୍ରକାର ଦଣ୍ଡବିଧାନର ବ୍ୟବସ୍ଥା ରହିଛି ଜାଣିବା। କିନ୍ତୁ ଏ ସିନା ଧର୍ମଶାସ୍ତ୍ରମାନଙ୍କର ବ୍ୟବସ୍ଥା– ରାଷ୍ଟ୍ର କିନ୍ତୁ ଏହି ଦୋଷୀମାନଙ୍କର ଦଣ୍ଡବିଧାନ ପାଇଁ ସ୍ୱତନ୍ତ୍ର ଆଇନକାନୁନ କରିଛି ଏବଂ ଏଥିପାଇଁ ବିଚାରାଳୟ ସ୍ଥାପନ କରିଛି ଏବଂ ଧର୍ମାବତାର ବିଚାରପତିମାନେ ଦୋଷୀର ଦୋଷ ଦେଖି ଅର୍ଥାତ୍ ଦୋଷର ପ୍ରକୃତି ଓ ପରିମାଣ ଦେଖି–ଲିଖିତ ଆଇନ ନିର୍ଦ୍ଦେଶମତେ ଦଣ୍ଡବିଧାନ କରିଥାନ୍ତି।

ପ୍ରାଚୀନ ଓ ମଧ୍ୟଯୁଗୀୟ ସମାଜରେ ରାଷ୍ଟ୍ର ଓ ଧର୍ମସଂସ୍ଥାମାନେ ମିଳିମିଶି ଏ ଦାୟିତ୍ୱ ପାଳନ କରୁଥିଲେ। ରାଷ୍ଟ୍ରବ୍ୟବସ୍ଥାରେ ଯାହାକୁ ଦୋଷୀ ଓ ଦୋଷ କୁହାଯାଉଥିଲା–ଧର୍ମ ବ୍ୟବସ୍ଥାରେ ତାକୁ ପାପୀ ଓ ପାପ ବୋଲି ଆଖ୍ୟାତ କରାଯାଉଥିଲା। ଜଣେ ଦୋଷୀ କେବଳ ରାଷ୍ଟ୍ରଦ୍ୱାରା ଦଣ୍ଡ ପାଇଲେ ଯଥେଷ୍ଟ ହେଉ ନ ଥିଲା–ତାକୁ ଧର୍ମସଂସ୍ଥା ନିର୍ଦ୍ଦେଶରେ କିଛି ପ୍ରାୟଶ୍ଚିତ୍ତ ମଧ୍ୟ କରିବାକୁ ପଡୁଥିଲା।

ଏ ସବୁ ସତ୍ତ୍ୱେ ଯୁଗେ ଯୁଗେ ଦୋଷୀ ଓ ପାପୀମାନେ ରହି ଆସିଛନ୍ତି–ଏବଂ ସମାଜରେ ଆଜିପର୍ଯ୍ୟନ୍ତ ସମାନ ଧରଣର ଦୋଷ ଓ ପାପ ଚାଲିଛି। ଚୋରି ଡକାଏତି, ନାରୀହରଣ, ଧର୍ଷଣ, ଶିଶୁବଧ, ନାରୀବଧ, ନରହତ୍ୟା ଇତ୍ୟାଦି ଏବଂ ଆହୁରି ବଡ଼ ବଡ଼ ଗଭୀର ଜଟିଳ ଦୋଷ ଓ ପାପ ମଧ୍ୟ ନୂଆ ନୂଆ ରୂପରେ ଚାଲିଛି। ଆମର ଆଇନ୍ ମଧ୍ୟ ସେମିତି ଦିନକୁ ଦିନ ଜଟିଳ ହୋଇ ଉଠିଛି। ମଣିଷର ଜୀବନଯାତ୍ରା ଯେତିକି ଜଟିଳ ହେଉଛି–ତାର ଦୋଷ ଓ ପାପ ମାତ୍ରା ମଧ୍ୟ ସେତିକି ଜଟିଳ ଓ ବ୍ୟାପକ ହୋଇ ଚାଲିଛି।

ଏବଂ ଆହୁରି ବିଚିତ୍ର କଥା ହେଲା–ଦୋଷୀ ଓ ପାପୀକୁ ବିଚାର କରିବାର ଓ ତାକୁ ଦଣ୍ଡବିଧାନ କରିବାର ପଦ୍ଧତି ମଧ୍ୟ ସଭ୍ୟତା ଓ ସଂସ୍କୃତିର ବିକାଶ ଅନୁଯାୟୀ ବଦଳି ବଦଳି ଯାଉଛି। ପୂର୍ବେ ଆମେ ଯୋଉ କାର୍ଯ୍ୟକୁ ପାପ ବା ଦୋଷ କହୁଥିଲେ–ଏବେ ଠିକ୍ ସେହିପରି କାର୍ଯ୍ୟକୁ ଏତେ ସହଜରେ ରାଷ୍ଟ୍ରଦୃଷ୍ଟିରୁ ବା ଧର୍ମଦୃଷ୍ଟିରୁ ପାପ ବା ଦୋଷ ବୋଲି ସାବ୍ୟସ୍ତ କରିଦେଇ ହେବ ନାହିଁ। ଆଜିକାଲି ଅପରାଧ ସମସ୍ୟାକୁ ତାତ୍ତ୍ୱିକ ଦୃଷ୍ଟିରୁ ଓ ବୈଜ୍ଞାନିକ ଦୃଷ୍ଟିରୁ ବିଚାର ବିଶ୍ଳେଷଣ ଓ ସିଦ୍ଧାନ୍ତ କରାଯାଉଛି। ଏବଂ ସେଥିଲାଗି ଜେଲ ଭିତରେ ବନ୍ଦୀ ହୋଇ ରହିଥିବା ଗୁରୁତର ଅପରାଧୀଟି ପ୍ରତି ମଧ୍ୟ ଯଥାସମ୍ଭବ ମାନବୀୟ ବ୍ୟବହାର କରି ତାର ମନସ୍ତାତ୍ତ୍ୱିକ ଓ ଆଧାତ୍ମିକ

ପରିବର୍ତ୍ତନ ଆଣିବା ଲାଗି ବିଭିନ୍ନ ସଭ୍ୟ ସଂସ୍କୃତିସଂପନ୍ନ ରାଷ୍ଟରେ ବହୁ ସାଧସାଧନା କରାଯାଉଛି ।

କିନ୍ତୁ ଏ ସବୁ ହେଲା ବଡ଼ ବଡ଼ କଥା । ଆମ ଦେଶରେ ବା ଆମ ରାଜ୍ୟରେ ଆମେ ଏଇ ଦୃଷ୍ଟିକୋଣ ଅବଶ୍ୟ ନାମକୁ ମାତ୍ର ଗ୍ରହଣ କରିଛୁ । କିନ୍ତୁ କାର୍ଯ୍ୟକ୍ଷେତ୍ରରେ ଆମର ଜେଲଗୁଡ଼ିକ ଓ ତାର ପରିଚାଳକଗୋଷ୍ଠୀ ଓ ତା' ଭିତରେ ରହୁଥିବା ଅପରାଧୀମାନଙ୍କ କଥା ନ କହିଲେ ଭଲ । ସବୁଗୁଡ଼ିକ ହେଲା ଅପରାଧର ପାପାବର୍ତ୍ତ ।

ଏଣେ ପୁଣି ଆମ ସମାଜରେ ଦିନକୁ ଦିନ ନାନା କାରଣରୁ ଅପରାଧ, ଅପରାଧୀ ଓ ଅପରାଧପ୍ରବଣତା ଭୟଙ୍କର ଭାବେ ବଢ଼ିଚାଲିଛି । ଧର୍ମଶାସ୍ତ୍ରର ବିଧାନକୁ ବର୍ତ୍ତମାନ କେହି ଆଉ ଗୁରୁତ୍ୱ ଦେଉନାହାନ୍ତି । ଆମ ଧର୍ମସଂସ୍ଥାମାନଙ୍କର ବି ସେଭଳି ପ୍ରଭାବ ଆଉ ନାହିଁ । ବର୍ତ୍ତମାନ ଏକମାତ୍ର ରାଷ୍ଟ୍ର ବା ସରକାର ହେଲେ ସବୁ କଥାର ମୂଳ । ଆମ ସମାଜରେ ବର୍ତ୍ତମାନ ଅପରାଧପ୍ରବଣତା କାହିଁକି ବଢ଼ୁଛି—ଏବଂ କେତେକ ନିର୍ଦ୍ଦିଷ୍ଟ ଅପରାଧର ସଂଖ୍ୟା କାହିଁକି ବୃଦ୍ଧି ପାଉଛି—ଏବଂ ଏ ସବୁ ନିରାକରଣର କି କି ପନ୍ଥା ରହିଛି ତାହା ଆବିଷ୍କାର କରିବାର ବା କରାଇବାର ଦାୟିତ୍ୱ ନିଶ୍ଚୟ ଆମ ସରକାରଙ୍କର । ତା'ପରେ ଦୋଷୀକୁ ଦୋଷୀ ବୋଲି ସାବ୍ୟସ୍ତ କରି ତା' ପ୍ରତି ସମୁଚିତ ଦଣ୍ଡବିଧାନ କରିବାର ଦାୟିତ୍ୱ ମଧ୍ୟ ସରକାରଙ୍କର । ଏବଂ ଏହି ଦଣ୍ଡବିଧାନ ପାଇଁ ବିଚାରପଦ୍ଧତି ଯେତେ ସରଳ ନିରପେକ୍ଷ ଓ ତୁରନ୍ତ ହୁଏ ତାହା ମଧ୍ୟ ସରକାରଙ୍କର ଦାୟିତ୍ୱ । ଏବଂ ଏହି ଦଣ୍ଡବିଧାନ ବ୍ୟାପରଟି ମଧ୍ୟ ଲୋକଙ୍କ ଭିତରେ ଯଥାରୀତି ପ୍ରଚାରିତ ହୋଇଯିବା ଉଚିତ । ଯେତେ ଯେତେ ସାମାଜିକ ଦୋଷରେ ଅଭିଯୁକ୍ତ ବ୍ୟକ୍ତିମାନଙ୍କର ବିଚାର ହୋଇ ଦଣ୍ଡଦିଆଯାଉଛି ସେଗୁଡ଼ିକର ବିବରଣୀ ସରକାରଙ୍କ ତରଫରୁ ଜନସାଧାରଣଙ୍କ ଗୋଚରାର୍ଥେ ବିଜ୍ଞାପିତ ହେବା ଉଚିତ । ତା'ହେଲେ ଯାଇ ସିନା ସର୍ବସାଧାରଣଙ୍କ ଭିତରେ ସାମାଜିକ ଦୋଷ ନ କରିବା ପାଇଁ ଭୟ ରହନ୍ତା ।

କିନ୍ତୁ ଯାହା ଦେଖାଯାଉଛି—ଯେ କୌଣସି ସାମାଜିକ ଅପରାଧ ପଛରେ ପ୍ରତ୍ୟକ୍ଷ ବା ପରୋକ୍ଷଭାବେ ରାଜନୀତିକ ବ୍ୟକ୍ତିମାନେ ଜଡ଼ିତ ରହିଛନ୍ତି । ଏବଂ ଏହି ରାଜନୀତିକ ବ୍ୟକ୍ତିମାନେ ବିଭିନ୍ନ ଦଳର ଅନ୍ତର୍ଭୁକ୍ତ ହେଲେ ହେ ସାମାଜିକ ଅପରାଧ କ୍ଷେତ୍ରରେ ଏମାନଙ୍କ ଭିତରେ ପ୍ରକୃତିଗତ ସାମ୍ୟ ଓ ମୈତ୍ରୀବନ୍ଧନ ରହିଛି ।

ଏପରି କ୍ଷେତ୍ରରେ ଅପରାଧ ପ୍ରବଣତା ବଢ଼ିବ ନା କମିବ ? ଏପରି କ୍ଷେତ୍ରରେ କିଏ ବା କାହାକୁ ବିଚାର କରିବ ? ଦଣ୍ଡଦେବ ? ବର୍ତ୍ତମାନ ତ ଧର୍ମାବତାରମାନଙ୍କୁ ଲୋକେ ସନ୍ଦେହ କରିବାକୁ ଆରମ୍ଭ କଲେଣି ।



# ଶିକ୍ଷାକ୍ଷେତ୍ରରେ ବିଚ୍ଛିନ୍ନତା

୧୯।୮।୮୦

ମୋର ଜଣେ ବନ୍ଧୁଙ୍କ ପୁଅ ସ୍ଥାନୀୟ ମୁଖ୍ୟ କଲେଜରେ ୪ର୍ଥ ବାର୍ଷିକ ରାଜନୀତିବିଜ୍ଞାନରେ ଅନର୍ସ ନେଇ ପଢ଼େ। ପିଲାଟି ଖୁବ୍ ସ୍ମାର୍ଟ। ବଡ଼ ଅଫିସରଙ୍କ ପୁଅ ହେତୁ ପୋଷାକପତ୍ର ବେଶ ଦାମିକା। କ୍ରିକେଟ ଖେଳେ। ସିନେମା ଦେଖେ। ସାହିର ଗଣେଶ ପୂଜା, ସରସ୍ୱତୀ ପୂଜାରେ ବିଶିଷ୍ଟ ଅଂଶଗ୍ରହଣ କରେ। ଦାଦା ନୁହଁ—କିନ୍ତୁ ଦାଦା ଭଳିଆ। ତା'ର ଠିଆ ହେବା, କଥା କହିବା, ଚାଲିବା, ଚାହିଁବା ପ୍ରଭୃତି ଭଙ୍ଗୀଗୁଡ଼ିକ ସିନେମାରେ ଦେଖିଲା ଭଳିଆ। ବେଶ୍ ଭଦ୍ର ଓ ବ୍ୟାବହାରିକ କ୍ଷେତ୍ରରେ ବାହ୍ୟତଃ ବେଶ ଆଦବ-କାଏଦା ରକ୍ଷା କରେ। ଦେଖିବାକୁ ମଧ୍ୟ ସୁନ୍ଦର। ମୋଟାମୋଟି ପିଲାଟି ମନ୍ଦ ନୁହେଁ।

ମୁଁ ତାଙ୍କ ଡ୍ରଇଁରୁମରେ ବସି ତାଙ୍କ ବାପାଙ୍କ ଅନୁପସ୍ଥିତିରେ ତାଙ୍କ ସଙ୍ଗେ କିଛି ସମୟ ଆଳାପ କଲି। କ୍ରିକେଟ କଥା—ସିନେମା କଥା ଓ ଏଣୁତେଣୁ ପାଞ୍ଚକଥା ପରେ ମୁଁ ତାଙ୍କୁ ପଚାରିଲି—ତୁମେ କେଉଁ କଲେଜରେ ପଢ଼ୁଛ କି ? ସେ କହିଲା—ଏସ.ସି. ଏସ. କଲେଜ। ମୁଁ ପଚାରିଲି—ଏସ.ସି.ଏସ. କଣ ମ ? ସେ କହିଲା—ଏସ.ସି.ଏସ. ତ ଏସ.ସି. ଏସ। ଏସ.ସି.ଏସ. ଆଉ କଣ ? ମୁଁ ପଚାରିଲି—ସେହି ସାଙ୍କେତିକ ସଂକ୍ଷିପ୍ତ ଇଂରାଜୀ ଅକ୍ଷରଗୁଡ଼ିକ ପ୍ରକୃତରେ କାହାର ନାମ ? ସେ କହିଲା—ଆମ କଲେଜର ନାମ। ମୁଁ ତା'ର ଅଜ୍ଞତା ଜାଣିପାରି ତାକୁ କହିଲି—ସାମନ୍ତ ଚନ୍ଦ୍ରଶେଖରଙ୍କ ନାମ ଶୁଣି ନ ? ସେ କହିଲା—ସେ କିଏ ? ମୁଁ କହିଲି ଗତ ଶତାବ୍ଦୀର ଓଡ଼ିଶାର ବିଶିଷ୍ଟ ଜ୍ୟୋତିଷ ବୈଜ୍ଞାନିକ ପଠାଣୀ ସାମନ୍ତ। ସେ କଣ ବୁଝିଲା କେଜାଣି କିଛି ବେଳ ଖାଲି ହସିଲା। ତାର ହସ ସ୍ୱାଭାବିକ ଭାବେ ଶେଷ ହେଲା ପରେ ମୁଁ କହିଲି—ତାଙ୍କରି ନାମରେ ତୁମ କଲେଜଟି ହୋଇଛି। ସେ ସ୍ମିତହାସ୍ୟରେ ମୋ କଥାକୁ ଅର୍ଦ୍ଧ ସମର୍ଥନ କରି କହିଲା—ଭଲ ହୋଇଛି। କିନ୍ତୁ ଓଡ଼ିଶାରେ କଣ ଆଉ କିଏ ମିଳିଲେନି ଯେ, ଏଭଳି ଜଣେ ଅନାମଧେୟ (ତାଙ୍କ ଭାଷାରେ ଅନଇଁପର୍ଟାଣ୍ଟ) ଲୋକଙ୍କ ନାଁରେ କଲେଜଟି କରାଗଲା ? ମୁଁ ଚୁପ ରହିଲି।

ତାପରେ ତାଙ୍କ କଲେଜ ବିଷୟରେ ପଚାରିଲି। କିଛି କଥାବାର୍ତ୍ତା ପରେ ମୁଁ ତାକୁ ପଚାରିଲି—ତୁମର ଇଂରେଜୀ ଅଧ୍ୟାପକ କିଏ ସବୁ ପଢ଼ାନ୍ତି ? ସେ କହିଲା—

ତିନି ଚାରି ଜଣ ତ ପଢ଼ାନ୍ତି। ମୁଁ ସେମାନଙ୍କ ନାମ ପଚାରିଲି। ସେ କହିଲା ମୁଁ ଜାଣିନି। ତା'ପରେ ମୁଁ ତାକୁ ଓଡ଼ିଆ ଅଧ୍ୟାପକଙ୍କ ନାମ ପଚାରିଲି। ତା ମଧ୍ୟ ସେ କହିପାରିଲା ନାହିଁ। ସେଇଠୁ ମୁଁ ତାର ଅନର୍ସ ସବଜେକ୍ଟର ଅଧ୍ୟାପକଙ୍କ ନାମ ପଚାରିଲି। ସେ ତାର ମୁଖ୍ୟ ଅଧ୍ୟାପକ ଓ ଆଉ ଦୁଇ ଜଣଙ୍କ ନାମ କହିଲା। ମାତ୍ର ସମସ୍ତଙ୍କ ନାମ କହି ପାରିଲା ନାହିଁ। ସେଇଠୁ ମୁଁ ତାକୁ କହିଲି–ତୁମେ ତୁମକୁ ପଢ଼ାଉଥିବା ଅଧ୍ୟାପକଙ୍କ ନାମ କିପରି ମନେ ରଖିନ? ସେ ଟିକିଏ ଆହତ ଓ ବିରକ୍ତହୋଇ କହିଲା–କଣ ଜଣେ ନା ଦି'ଜଣ ଅଧ୍ୟାପକ ଅଛନ୍ତି? ସେଥିରୁ ପନ୍ଦ୍ରେ (ତା' ଭାଷାରେ ଏ ହର୍ଡ୍‌ ଅଫ ଲେକ୍‌ଚରେସ୍‌) ଅଛନ୍ତି। କିଏ ତାଙ୍କ ନାଁ ମନେ ରଖିପାରିବ?

ମୁଁ ତା ଉପରେ ବିରକ୍ତ ହୋଇ କହିଲି–ତା'ହେଲେ କି ପାଠ ତୁମେ ପଢୁଛ ବା ପଢ଼ିବ? ତୁମେ ଯଦି ତୁମ ଶିକ୍ଷକଙ୍କ ନାଁ ନ ଜାଣିଛ? ସେ ମଧ୍ୟ କ୍ରୁଦ୍ଧଗଳାରେ କହିଲା–ସେମାନେ କଣ ଆମ ନାଁ ଜାଣିଛନ୍ତି? ମୁଁ ଏତେକ ଶୁଣି ଚୁପ୍ ହୋଇଗଲି। କିନ୍ତୁ ପୁଣି କହିଲି–ଶୁଣବାବୁ! ପାଠ ପଢ଼ିବା ବ୍ୟାପାରଟିକୁ ତୁମେ ପାନ ଦୋକାନରୁ ପାନ ସିଗ୍ରେଟ କିଣିବା ଭଳି ବା ସିନେମା କାଉଣ୍ଟରରୁ ସିନେମା ଟିକେଟ କିଣିଲା ଭଳି ଭାବନାହିଁ। ପଇସା ପକେଇଦେଲେ–ଦୋକାନୀ ବା ଟିକେଟ ବିକ୍ରେତା ତୁମକୁ ସିଗ୍ରେଟ ବା ଟିକେଟ ଧରାଇ ଦେଲା। କେହି କାହାର ନାମ ନଜାଣିଲେ କିଛି ଯାଏ ଆସେନା–କିମ୍ୱା କେହି କାହାର ପରିଚୟ ନ ଜାଣିଲେ ମଧ୍ୟ କିଛି ଯାଏ ଆସେନା। ପାଠପଢ଼ା ହେଲା ଅଲଗା ବ୍ୟାପାର। ଶିକ୍ଷକ ଓ ଛାତ୍ର ଭିତରେ ବ୍ୟକ୍ତିତ୍ୱର ଆଦାନ ପ୍ରଦାନ ହୁଏ। ଭାବ ବିନିମୟ ହୁଏ। ତୁମେ ପାଠପଢ଼ାସାରି ଯେତେବେଳେ ସଂସାର କ୍ଷେତ୍ରରେ ପ୍ରବେଶ କରିବ, ସେତେବେଳେ ବି ତୁମ ଜୀବନ ସଙ୍ଗେ ତୁମର ପାଠପଢ଼ା ବେଳର ଶିକ୍ଷକମାନଙ୍କ ସ୍ମୃତି ଲାଗି ରହିଥିବ। ପ୍ରଫେସର ରାୟ ବା ପ୍ରଫେସର ମହାନ୍ତି, ପ୍ରଫେସର ପତି, ପ୍ରଫେସର ତ୍ରିପାଠୀ ବା ପ୍ରଫେସର ସାହୁ–ଏହି ନାମଗୁଡ଼ିକ ବର୍ତ୍ତମାନ ହୁଏତ ବ୍ୟକ୍ତି–ମାତ୍ର ତୁମର ଜୀବନଯାକ ଏମାନେ ତୁମର ଚେତନା ଭିତରେ ଭାବରୂପରେ ମିଶିମିଶି ରହିବେ। ସେହି ଅନୁଭବ ହେଲେ, ବୁଝାଯିବ ଯେ ତୁମେ ପ୍ରକୃତରେ ବିଦ୍ୟା ପଢ଼ିଛ।

ବନ୍ଧୁଙ୍କ ପୁତ୍ର ମୋ କଥା ଶୁଣି ନୀରବ ହେଲେ ଏବଂ ପିତୃବନ୍ଧୁ ହିସାବରେ ଆଉ ମୋ କଥାରେ ଅଯଥା ବାଦ-ପ୍ରତିବାଦ କରିବାକୁ ଚାହିଁଲେ ନାହିଁ। ମୁଁ ମଧ୍ୟ ଆଉ ତା' ଆଗରେ ବେଶି ବକ୍‌ବାଜି କରିବାକୁ ଇଚ୍ଛା କଲିନାହିଁ। ଇତିମଧ୍ୟରେ ମୋ ଲାଗି ଚାହା ମଧ୍ୟ ଆସିଯାଇଥିଲା। କିଛି ସମୟ ଚୁପ୍‌ଚାପ କଟିଗଲା। ବନ୍ଧୁପୁତ୍ର ହଠାତ୍ ପୁଣି ପାଟି ଖୋଲିଲେ। ଇତିମଧ୍ୟରେ ସେ ବୋଧହୁଏ କଣ କହିବା ଉଚିତ ଚିନ୍ତା କରୁଥିଲେ। ସେ ଆରମ୍ଭ କଲେ–

ଆପଣଙ୍କ କଥା ହୁଏତ ସତ ହୋଇପାରେ। କିନ୍ତୁ ଆପଣ ଯୋଉ ମୂଲ୍ୟବୋଧର କଥା କହୁଛନ୍ତି—ସେ ସବୁ ଆଉ ନାହିଁ। ବର୍ତ୍ତମାନ ହେଲା ବାଣିଜ୍ୟ ଯୁଗ। ଅର୍ଥ ହେଲା ମୂଳ। ଆମ ପ୍ରଫେସରମାନେ ସରକାରୀ ଚାକିରିଆ। ସେମାନେ କୁଟୁମ୍ବ ପୋଷିବାକୁ ଏ ବୃତ୍ତି ନେଇଛନ୍ତି। ସେମାନେ ଆଜି ଆମ କଲେଜରେ ଅଛନ୍ତି—କାଲି ସକାଳେ ତାଙ୍କର ବଦଳି ଅର୍ଡ଼ର ଆସିବ—ଯାଇ ପହଁଞ୍ଚିବେ କଳାହାଣ୍ଡି କଲେଜରେ। ସେଠି ବର୍ଷେ ଦି' ବର୍ଷ ରହିଥିବେ କି ନାହିଁ—ଫେର ବଦଳି ଅର୍ଡ଼ର ଆସିବ—ଯାଇ ପହଁଞ୍ଚିବେ ବାରିପଦାରେ। ଆପଣଙ୍କ ସମୟ ଥିଲା ଅଲଗା। ରେଭେନ୍ସା ବୋଲି କଲେଜଟିଏ ମାତ୍ର ଥିଲା। ସେଠି ଥିଲେ ପ୍ରଫେସର ପରିଜା, ପ୍ରଫେସର ପତି, ପ୍ରଫେରସ ମହାନ୍ତି, ପ୍ରଫେସର ଦାସ, ପ୍ରଫେସର ମିଶ୍ର ବା ପ୍ରଫେସର ବାନାର୍ଜୀ। ସେଇ କଲେଜରେ ସେମାନେ ଅଧ୍ୟାପକଭାବେ ଜଏନ୍ କରିଥିଲେ—ସେଇଠି ତିରିଶି ପଇଁତିରିଶି ବର୍ଷ ଅଧ୍ୟାପନା କଲେ। ତିନି ଚାରି ପୁରୁଷଙ୍କୁ (ସେ କହିଲେ ଜେନେରେସନ) ପାଠପଢ଼ାଇ ସେଇ କଲେଜରେ ଅବସର ନେଲେ। ତେଣୁ ତିନି ଚାରି ପୁରୁଷ ଧରି ଆପଣମାନେ ସେମାନଙ୍କ ନାମ ମନେ ରଖିଲେ। ମାତ୍ର ଆମବେଳକୁ କ'ଣ ସେକଥା ଅଛି ?

ବନ୍ଧୁଙ୍କର ଯୁବକ ପୁତ୍ରଟି ହୁଏତ ଠିକ୍ କହିଲା। ଯୁକ୍ତିଯୁକ୍ତ କଥା କହିଲା। ଏହା ହିଁ ବର୍ତ୍ତମାନ ସ୍ୱାଭାବିକ ଅବସ୍ଥା। କିନ୍ତୁ ସୁଧୀଜନେ ବିଚାର କରନ୍ତୁ—ଶିକ୍ଷାକ୍ଷେତ୍ରରେ ଏହି ସମ୍ପର୍କହୀନତା, ଏହି ଯାନ୍ତ୍ରୀକତା, ଏହି ବାଣିଜ୍ୟିକ ମନୋବୃତ୍ତି ଯଦି ଏମିତି ଭାବେ ବଢ଼ି ବଢ଼ି ଚାଲେ, ତେବେ ସମଗ୍ର ଶିକ୍ଷା ବ୍ୟାପାରଟିର ଶିକ୍ଷାର୍ଥୀର ବ୍ୟକ୍ତିତ୍ୱ ସଙ୍ଗେ କିଛି ଆଉ ସମ୍ପର୍କ ରହିବ ନାହିଁ ଏବଂ ଶିକ୍ଷା, ଶିକ୍ଷକ, ଶିକ୍ଷାର୍ଥୀ ଓ ଶିକ୍ଷାୟତନ ମଧ୍ୟରେ ମାନବୀୟ ଘନିଷ୍ଠତା ନ ରହିଲେ—ଯେତେ ସ୍କୁଲ କଲେଜ ବଢ଼ିଲେ କି ଯେତେ ବି.ଏ ଏମ.ଏ ପାଶ୍ ସଂଖ୍ୟା ବଢ଼ିଲେ—ଏସବୁର କିଛି ଅର୍ଥ ନାହିଁ।

**

# କାର୍ତ୍ତିକ ଅନୁଚିନ୍ତା

୧୨।୧୧।୮୧

ଶ୍ରୀମଦ୍ ଭାଗବତ ଗୀତାରେ ଭଗବାନ ଶ୍ରୀକୃଷ୍ଣ ଆପଣାର ପ୍ରକାଶମାନ ବିଭିନ୍ନ ବିଭୂତି ସମ୍ବନ୍ଧେ କହିବାକୁ ଯାଇ କହିଛନ୍ତି—"ମାସ ମାନଙ୍କ ମଧ୍ୟରେ ମୁଁ ମାର୍ଗଶିର"। ତା'ମାନେ ମାର୍ଗଶିର ମାସରେ ହିଁ ଭଗବାନଙ୍କର ବିଭୂତି ବା ଐଶ୍ୱର୍ଯ୍ୟ ସବୁଠାରୁ ବେଶି ପ୍ରକାଶିତ ହୋଇଥାଏ। ସେହି ମାର୍ଗଶିର ମାସ ଏଇ ବର୍ତ୍ତମାନ ଆରମ୍ଭ ହୋଇଛି।

କିନ୍ତୁ ଯୋଉ ମାସଟି ଏଇ ଦିନେ ଦି'ଦିନ ତଳେ ଚାଲିଗଲା—ସେଇଟି ହେଲା ହିନ୍ଦୁମାନଙ୍କ ପାଇଁ ବାରମାସ ଭିତରେ ପବିତ୍ରତମ ମାସ—ମହାକାର୍ତ୍ତିକ। ଏହି ମହାନ୍ ମାସଟିର ପ୍ରତିଟି ଦିନ ପବିତ୍ର; ପ୍ରତିଟି ରାତି ମଧ୍ୟ ପବିତ୍ର। ପ୍ରତି ଦିବାରାତ୍ରର ପ୍ରତିଟି ମୁହୂର୍ତ୍ତ ପବିତ୍ର। ଏହାର ପବିତ୍ରତାର ଚରମ ପ୍ରକାଶିତ ହୁଏ ଶେଷ ପାଞ୍ଚ ଦିନରେ ତାକୁ କହନ୍ତି "ପଞ୍ଚୁକ" ଏବଂ ଏହାର ଚୂଡ଼ାନ୍ତ ପବିତ୍ର ଦିବସଟି ହେଲା ପୂର୍ଣ୍ଣିମାଦିନ। ତାର ପରଦିନଟିକୁ କହନ୍ତି ଛାଡ଼ଖାଇ। ଅର୍ଥାତ୍ କାର୍ତ୍ତିକ ମାସଟିଯାକ ଯେଉଁ ପୁଣ୍ୟକାମୀମାନେ ମାଛ ମାଂସାଦି ଆମିଷ ପରିତ୍ୟାଗ କରିଥିଲେ, ସେମାନେ ପୂର୍ଣ୍ଣିମାବାସୀ ଦିନ ତିରିଶି ଗୁଣିତକ ଆମିଷ ଲାଳସାରେ ଅତିଷ୍ଠ ହୋଇ ଯେତେ ଚଢ଼ାଦାମ୍ ହେଉ ପଛେ ମାଛ ମାଂସ କିଣି ମନଭରି ଖାଇବେ। ତାହାହିଁ ହେଲା ଛାଡ଼ଖାଇ ଦିନଟିର ମହାତ୍ମ୍ୟ। ମୁଁ ଏପରି ପୁଣ୍ୟକାମୀ ଲୋକଙ୍କୁ ଦେଖିଛି—ଯେଉଁମାନେ କାର୍ତ୍ତିକ ମାସଟିଯାକ ଆମିଷ ଛାଡ଼ି, ଛାଡ଼ଖାଇ ଦିନ ଆମିଷ ଭକ୍ଷଣ ଲାଗି ବାଇବିଛ ହୋଇ ସାଇକେଲ, ସ୍କୁଟର୍ କାର୍ ଯାହା ଯୋଗେ ହେଉ, କଟକରୁ ଭୁବନେଶ୍ୱର ବା ବାଙ୍କୀକାଟି ବା ପିପିଲି ଛୁଟି ଯା'ନ୍ତି—କିଛି ମାଛ-ମାଂସର ସନ୍ଧାନରେ।

କାର୍ତ୍ତିକ ମାସଟି ଯାକ ହିନ୍ଦୁ ଘରର ବିଧବାମାନେ, ବିଶେଷତଃ ବ୍ରାହ୍ମଣୀ ବିଧବାମାନେ ହବିଷ କରିଥାନ୍ତି। ଦିନକୁ ଥରେ ମାତ୍ର ଖାନ୍ତି ସନ୍ଧ୍ୟାବେଳେ। ଅରୁଆଭାତ, ଅଦା, ଲୁଣ ଏବଂ ସାରୁ, ଦେଶୀଆଳୁ, କଦଳୀ ଓଉ ସହଯୋଗରେ ଅଣହଳଦିଆ କଞ୍ଚାମୁଗର ଡାଲମା। ଘିଅରେ ଛୁଙ୍କ ହୋଇଥାଏ। ସେହିଭଳି ରାନ୍ଧଣା ରାନ୍ଧି ଅନେକ କାର୍ତ୍ତିକ ମାସର ଚାରି ସୋମବାର ଦିନ ମଧ୍ୟ ହବିଷାନ୍ନ ଭୋଜନ କରନ୍ତି। ଏହି ଅନ୍ନରୁ ଗୋଟେ ପବିତ୍ର ବାସନା ବାହାରେ; ଭାରି ଭଲ ଲାଗେ ଖାଇବାକୁ। ମୋ ଭଳି ଘୋର ଆମିଷଲୋଲୁପୀ ମଧ୍ୟ ସେହି ହବିଷାନ୍ନ ଖାଇବାଲାଗି ବ୍ୟଗ୍ର ହୋଇପଡ଼େ।

ଏଇ ମାସଟିର ଗୋଟିଏ ସ୍ୱତନ୍ତ୍ର ପବିତ୍ର ବାସ୍ନା ଅଛି। ଜଳନ୍ତା ଘିଅଦୀପର ବାସ୍ନା, ତୁଳସୀ, ଚନ୍ଦନ କର୍ପୂର ଓ ଧୂପକାଠିର ସୌରଭ ସଙ୍ଗେ ମିଶିଯାଏ ଆଉ କେତୋଟି ଫୁଲର ସୌରଭ। ଚମ୍ପା, ଅପରାଜିତା, ଆଉ ଦୁଦୁରା ଫୁଲ ବେଲପତ୍ରି ସହିତ ଏକତ୍ର ଶିବ ମନ୍ଦିରରେ ଲିଙ୍ଗଙ୍କ ଉପରେ ଶୋଭା ପାଉଥାଏ। କାର୍ତ୍ତିକ ମାସର ବଡ଼ି ସକାଳୁ ଆପଣ ଗାଧୋଇ ପାଧୋଇ ଶିବ ମନ୍ଦିରକୁ ଚାଲିଯିବେ। ତାର ଭାବ ଆପଣ ସେତିକିବେଳେ ପାଇବେ। ଏଇସବୁ ପବିତ୍ର ବାସ୍ନାରେ ଥଣ୍ଡା ଥଣ୍ଡା ପ୍ରଭାତୀ ବାୟୁମଣ୍ଡଳ ଆପଣଙ୍କର ଉତପ୍ତ ମଥାକୁ ଶୀତଳ କରିଦିଏ। ସ୍ନାୟୁମଣ୍ଡଳୀ ଶାନ୍ତ ହୋଇଯାନ୍ତି। ଶଙ୍ଖ ବାଜୁଥାଏ–ଆଳତି ହେଉଥାଏ–ଘଣ୍ଟ ଘଣ୍ଟା କାହାଳୀ ପଖାଉଜ ବାଜୁଥାଏ। ଝାଞ୍ଜି ମୃଦଙ୍ଗ ସହ କୀର୍ତ୍ତନ ହେଉଥାଏ। ପୁଣ୍ୟକାମୀ ନରନାରୀ, ବାଳକ ବାଳିକାମାନେ ଗାଧୋଇ ପାଧୋଇ ଆସି ହାତ ଯୋଡ଼ି ଠିଆହୋଇଥାନ୍ତି। ପୁରୋହିତ ଓଁ ନମଃ ଶିବାୟ! ଆହେ ମୃତ୍ୟୁଞ୍ଜୟ! ଆହେ ଭୋଳାନାଥ! ବଂ ବଂ ହର ହର ବୋଲି ଉଚ୍ଚସ୍ୱରରେ ଡାକୁଥିବେ। କେହି କେହି ବୃଷଭର ପଛପଟେ ଠିଆ ହୋଇ ଶିବସ୍ତୁତି ବା ଶିବତାଣ୍ଡବ ମନ୍ତ୍ର ଗାଉଥିବେ। ଆଃ! ଭାରି ଚମତ୍କାର ଲାଗେ! ଭାରି ଶାନ୍ତପୂତ ଲାଗେ ସେ ପରିବେଶ। କୌଣସି କୌଣସି ମନ୍ଦିରରେ ଭୋର ଚାରିଟା ବେଳୁ ମଙ୍ଗଳ ଆରତି ପର୍ବ ଆରମ୍ଭ ହୋଇଯାଇଥାଏ। ଘଣ୍ଟ ଘଣ୍ଟା ମନ୍ତ୍ରଧ୍ୱନିରେ ନିଦ ଭାଙ୍ଗିଯାଏ। ଭାରି ଭଲ ଲାଗେ। କାର୍ତ୍ତିକ ମାସର ସକାଳଠାରୁ ଆଉ ସକାଳ ନାହିଁ।

ଆମ ପିଲାଦିନେ ଗାଁରେ ଏ ପ୍ରକାର ପରିବେଶ ଖୁବ୍ ମଧୁର ଥିଲା। ବର୍ଷେ ବର୍ଷେ ମୁସଲମାନମାନଙ୍କର ମହରମ ପର୍ବ ମଧ ଏଇ ମାସରେ ପଡ଼ିଯାଏ। ଖୁବ୍ ଭୋରରୁ ଆମ ସାଇମାନଙ୍କର ଶିବମନ୍ଦିରରୁ ଘଣ୍ଟ ଘଣ୍ଟା ଧ୍ୱନି ସହିତ "ବଂ ବଂ ଭୋଳାନାଥ", "ଆହେ ମୃତ୍ୟୁଞ୍ଜୟ" "ହର ହର ମହାଦେବ" ଡାକ ସହିତ, ତେଣେ ମୁସଲମାନ ବସ୍ତିରୁ ମସଜିଦ୍ ଉପରୁ ଧର୍ମପ୍ରାଣ ମୌଲବୀ ସାହେବଙ୍କ ଉଚ୍ଚ କଣ୍ଠନିଃସୃତ 'ଆଲ୍ଲା ହୋ ଆକବର' ଆଜାନ୍ ଧ୍ୱନିଟି ଆସି ମିଶିଯାଏ। ଆଃ କେଡ଼େ ମଜା ଲାଗୁଥାଏ ସେତେବେଳେ ଆମ ପିଲାମାନଙ୍କୁ। ମୋର ମନେପଡୁଛି–ଏଇ ମିଶାମିଶି ପବିତ୍ର ଧ୍ୱନି ଶୁଣିଲାବେଳେ ମୋର ମନ ଆନନ୍ଦ ଆଶ୍ୱାସନା, ଆସ୍ଥା ଓ ବିଶ୍ୱାସରେ ପୂରି ଉଠୁଥାଏ। ମୋତେ ଲାଗୁଥାଏ–ବାସ୍–ହୋଇଗଲା। ସବୁ ଧର୍ମ ବର୍ତ୍ତମାନ ମିଶିମାଶି ଏକ ହୋଇଗଲା। ହିନ୍ଦୁ ମୁସଲମାନ ଉଭୟଙ୍କ କଣ୍ଠରୁ ଏଇ ଯେଉଁ ପ୍ରାର୍ଥନା ଡାକ ବାହାରି ଏକାଠି ମିଶିଯାଉଛି; ଜଣାପଡୁଛି ଆଉ ହିନ୍ଦୁ ମୁସଲମାନଙ୍କ ଭିତରେ ବିବାଦ ରହିବ ନାହିଁ। ସମସ୍ତେ ମିଶିଯିବେ।

କିନ୍ତୁ ହାୟ। ମନ୍ଦିର ମସ୍‌ଜିଦର ହିନ୍ଦୁ ମୁସଲ୍‌ମାନ ଅଲଗା–ରାଜନୀତିର ହିନ୍ଦୁ ମୁସଲମାନ ଅଲଗା। ଧର୍ମ ଠଉଁ ରାଜନୀତି ବଳୁଆ। ରାଜନୀତି ସବୁଠାରୁ ବଳୁଆ।

ସେଇ ବଳୁଆ ରାଜନୀତି ଭାରତକୁ ତିନିଭାଗ କରି ଦେଲାଣି। ହିନ୍ଦୁ ମୁସଲମାନଙ୍କୁ ଅଲଗା କରି ଦେଲାଣି।

ସେ ଯାହାହେଉ—କାର୍ତ୍ତିକ ମାସଠାରୁ ବଳି ଆଉ ପୁଣ୍ୟ ମାସ ନାହିଁ। ବହୁ ଲୋକେ ମାସକଯାକ, କେହି କେହି ବା ପଞ୍ଚୁକ ପାଞ୍ଚ ଦିନ ଅଗଣାରେ ଲମ୍ବ ବାଉଁଶଟିଏ ପୋତି, ତା' ଅଗରେ ଦଉଡ଼ା ଶିକାରେ ବହୁ ଛିଦ୍ର ବିଶିଷ୍ଟ ହାଣ୍ଡିଟିଏ ରଖି ତା' ଭିତରେ ଦୀପଟିଏ ରଖନ୍ତି ଓ ସନ୍ଧ୍ୟା ହେଲା ମାତ୍ରେ, ସେଇ ଦୀପକୁ ଜଳାଇ ବାଉଁଶ ଅଗକୁ ଟେକିଦିଅନ୍ତି। ତାକୁ କୁହାଯାଏ ଆକାଶଦୀପ। ଏହି ଆକାଶଦୀପ ବ୍ୟାପାରଟିକୁ କେହି କେହି ଐତିହାସିକ ଦୃଷ୍ଟିରୁ ଓ କେହି କେହି ଧାର୍ମିକ ଦୃଷ୍ଟିରୁ ବ୍ୟାଖ୍ୟା କରନ୍ତି। ଏବେ ଏବେ କ୍ରମେ ଆକାଶଦୀପ ଉଠିଗଲାଣି। କିନ୍ତୁ ତା' ଉପରେ ବ୍ୟାଖ୍ୟା ବଢ଼ିଛି। ଭୁବନେଶ୍ୱରରେ ଠାଏ ଦେଖିଲି—ଜଣେ ତାଙ୍କ ଅଗଣାରେ ଲୁହା ନଳୀ ପାଇପଟିଏ ପୋତି ତା' ଉପରେ ନାଲି ବିଜୁଳି ଆଲୁଅର ବଲବ୍‌ଟିଏ ଖଞ୍ଜି ଜାଳୁଛି। ମୁଁ ପଚାରିଲି—ବାବୁ! ଏ କ'ଣ? ସେ କହିଲେ, ଆଧୁନିକ ଧରଣର ଆକାଶଦୀପ। ଏହା ବୈଜ୍ଞାନିକ ପ୍ରଣାଳୀରେ କରାଯାଇଛି। କଅଣ ଭଲା କହିବ ଏଥିରେ କହିଲ? ଧନ୍ୟରେ ବାବୁ! ତୁମ ଇତିହାସ, ତୁମ ବିଜ୍ଞାନ, ଆଉ ତୁମ ରାଜନୀତି। ଦିଆଲି ଦିନ ସେମିତି ଦେଖାଗଲା, ବହୁ ବଡ଼ ଲୋକଙ୍କ ଘରେ ଦୀପ ପରିବର୍ତ୍ତେ ଜଳୁଛି ମାଳ ମାଳ ନାଲିନେଳୀ ବିଜୁଳିବତୀ। କିରେ ବାବୁ! ଦିଆଲି କରୁଛ ନା ବାହାଘର କରୁଛ ମ? ସେମିତି ଦିଆଲି ଦିନ କେତେ ଜାଗାରେ ଦେଖାଗଲା—କେତେକ ମୃତ୍ତ ପୋଡ଼ା ମୋବିଲଗୁଡ଼ାଏ ଦୀପରେ ଭର୍ତ୍ତିକରି ଜାଳୁଛନ୍ତି। ଇସ୍ ଯୋଉ ଗନ୍ଧ।

ଏଇ କାର୍ତ୍ତିକ ମାସରେ ପୂଜା ହୁଏ କାର୍ତ୍ତିକ ଭଗବାନଙ୍କର। କଟକର କାର୍ତ୍ତିକ ମେଢ଼ ଭାରି ଜାକଜମକ। କାର୍ତ୍ତିକ ପୂର୍ଣ୍ଣିମାଦିନ ବାଲିଯାତ୍ରା ଖୁବ୍ ବିଖ୍ୟାତ। ଏ ମାସରେ ପଡ଼େ ଅଁଳା ନବମୀ। ଖୁବ୍ ଶୁଭ ଦିନ। ସେଦିନ ସାକ୍ଷୀଗୋପାଳରେ ଭାରି ଭିଡ଼। ଶ୍ରୀରାଧାଙ୍କର ପାଦପଦ୍ମର ଦର୍ଶନ ସୌଭାଗ୍ୟ କେବଳ ସେଇ ଦିନ ମିଳେ। ବିଧବାମାନେ କାର୍ତ୍ତିକ ମାସଟାଯାକ ରାଈଦାମୋଦର ପୂଜା କରନ୍ତି। ପଞ୍ଚୁକ ପାଞ୍ଚଦିନ ଲକ୍ଷ୍ମୀନାରାୟଣ ପୂଜା ହୁଏ ଏବଂ ରାସଲୀଳା ଅନୁଷ୍ଠିତ ହୁଏ।

କାର୍ତ୍ତିକ ମାସରେ ଆପଣ କେବେ ଶ୍ରୀକ୍ଷେତ୍ର ପୁରୀ ଯାଇଛନ୍ତି? ବହୁ ପୁଣ୍ୟକାମୀ ନରନାରୀଙ୍କ ଭିଡ଼ ହୁଏ ଶ୍ରୀମନ୍ଦିରରେ। ଓଡ଼ିଶାର ଚାରିଆଡ଼ୁ ବିଧବାମାନେ ଆସି ଜୁଣ୍ଡ ହୁଅନ୍ତି ପୁରୀରେ। ମାସକଯାକ ଓଳିଏ ଅଭଡ଼ା ଖାଇ ହବିଷ କରନ୍ତି। ସାରାଜୀବନର ବୈଧବ୍ୟଜ୍ୱାଳା ସେମାନେ ନିବାରଣ କରନ୍ତି ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କ ପଦ୍ମମୁଖ ଦର୍ଶନ କରି। ଦିନରାତି ଶ୍ରୀମନ୍ଦିର ହରିବୋଲ, ହୁଳହୁଳି, ଘଣ୍ଟ, ଘଣ୍ଟା, ଝାଞ୍ଜ-ମୃଦଙ୍ଗ ନାଦରେ କମ୍ପୁଥାଏ। ଏସବୁ ଦେଖିଲେ ପ୍ରାଣ ପୂରି ଯାଏ। ଆତ୍ମାର ଅନୁଭବ ଘଟେ।

ଗୁପ୍ତକାଶୀ ଶିବକ୍ଷେତ୍ର ଭୁବନେଶ୍ବରରେ ଶ୍ରୀ ଲିଙ୍ଗରାଜଙ୍କ ପାଖେ ଖୁବ୍ ଭିଡ଼ ହୁଏ ମାସଟା ଯାକ; ବିଶେଷତଃ ପୂର୍ଣ୍ଣିମାଦିନ ଭୋର ଚାରିଟାରେ ହଜାର ହଜାର ନରନାରୀ ବିନ୍ଦୁସାଗରରେ ବୁଡ଼ପକାଇ ଡଙ୍ଗା ଭସାଉଥିବା ଦୃଶ୍ୟ ମନରେ ଅଲୌକିକ ଆନନ୍ଦର ଅନୁଭୂତ ସଞ୍ଚାର କରେ।

ସାରା ଓଡ଼ିଶାରେ ଏ ବର୍ଷର କାର୍ତ୍ତିକ ମାସଟି ଏହିଭଳି ପୂଣ୍ୟ ସଞ୍ଚରଣରେ କଟିଗଲା। କିନ୍ତୁ ଏବର୍ଷ କାର୍ତ୍ତିକ ମାସଟି ଯାକ ଶୀତଳ ସ୍ପର୍ଶ ନ ଥିଲା। ଆଶ୍ୱିନ ମାସର ଉଷ୍ଣତା ଅନୁଭୂତ ହେଉଥିଲା। ବର୍ଷାଭାବରୁ ଅନେକ ଯାଗାରେ ମରୁଡ଼ିର ପଦଧ୍ୱନି ଶୁଣାଯାଉଥିଲା। ଏବର୍ଷ କାର୍ତ୍ତିକ ମାସରେ ମାଛର ଦର ଖୁବ୍ ଚଢ଼ା ଥିଲା। କଟକ ଓ ଭୁବନେଶ୍ବରରେ ତିନି ଇଞ୍ଚ ଲମ୍ବ ମାଛର କିଲୋ ହୋଇଥିଲା ଦଶରୁ ବାର ଟଙ୍କାଯାଏ। ମତ୍ସ୍ୟାଶୀମାନଙ୍କୁ ଏ ଦର ଭାରି ବାଧୁଥିଲା।

ଆରେ ଯାଃ! ଛି ଛି ଛି! ମହାପୁଣ୍ୟମୟୀ କାର୍ତ୍ତିକ ମାସ ସମ୍ବନ୍ଧେ ଏତେ କଥା ବର୍ଣ୍ଣନା କଲାପରେ ପୁଣି ସେହି ଆମିଷର ଚିନ୍ତା! ପୁଣି ସେଇ ଆମିଷନୁଶୋଚନା!! କ୍ଷମା କରନ୍ତୁ ମହାଶୟ! ଆମ୍ଭେ ସାରା କାର୍ତ୍ତିକ ମାସଟା ପ୍ରଚୁର ମାଛ ଖାଇଥାଉଁ। ବିଶେଷତଃ କାର୍ତ୍ତିକ ମାସରେ ଛୋଟ ଛୋଟ ବିଲମାଛ ପ୍ରଚୁର ମିଳେ। ବିଲମାଛ ଭାରି ସୁଆଦ। କିନ୍ତୁ ଏ ମାସର ଚାରି ସୋମବାରଯାକ ଓ ପଞ୍ଚୁକ ପାଞ୍ଚଦିନ ଆମିଷ ଭକ୍ଷଣ ନ କରି ଆମ୍ଭେ ହବିଷାନ୍ନ ସେବା କରିଥାଉଁ। ଏବର୍ଷ ବର୍ଷା କମ୍ ହେତୁ ବିଲମାନଙ୍କରେ ପାଣି ନଥିଲା। ତେଣୁ ବିଲମାଛ ଦୁର୍ଲଭ ହେଲା। ଖାଲିମାଛ ନୁହେଁ; ପିଆଜ କେ.ଜି. ମଧ ହୋଇଗଲା ପାଞ୍ଚ ଟଙ୍କା ୬ ଟଙ୍କା।

ତେବେ କାର୍ତ୍ତିକ ମାସଟି ଏବର୍ଷ ଭଲରେ କଟିଗଲା। ମାଛ ବା ପିଆଜ ଦୁର୍ଲଭ ହେବା ଦ୍ୱାରା କାର୍ତ୍ତିକର ମାହାତ୍ମ୍ୟ ସାମାନ୍ୟ ଭାବେ ବି କମିଲା ନାହିଁ।



# ଆନ୍ତର୍ଜାତିକ ଖ୍ୟାତି ଓ ଓଡ଼ିଆ ଜାତି

୨୫।୨।୮୨

ପିଲାଦିନେ ପ୍ରାୟଶଃ ଗୋଟିଏ ଜାତୀୟତା ଉଦ୍‌ବୋଧନମୂଳକ ସଙ୍ଗୀତ, ଆମ୍ଭେମାନେ ଶୁଣୁଥିଲୁ ଓ ନିଜେ ଗାଇ ଖୁବ୍ ଉନ୍ମାଦନା ଅନୁଭବ କରୁଥିଲୁ। ତା' ହେଲା—"ସେ ଜାତି ବୋଇତ ଭସାଇ ସାତ ସମୁଦ୍ରର ତେର ନଈରେ—ସେ ଜାତିକି ହତଭାଗା ବୋଲି ଏତେ ଛାତି କା'ର ଯିବ କହିରେ?" ଏ ଗୀତଟି ଓଡ଼ିଆଙ୍କ ମନରୁ ହୀନମନ୍ୟତା ଦୂର କରି ଓଡ଼ିଆ ଜାତିର ଦୂର ଅତୀତର ଗରିମାମୟ ଐତିହ୍ୟ ସ୍ମରଣ କରାଇ ଦେଇ ଓଡ଼ିଆଙ୍କୁ ଗର୍ବୋନ୍ନତ ମଥା ଟେକି ଚାଲିବାର ପ୍ରେରଣା ଦେବା ଉଦ୍ଦେଶ୍ୟରେ ଲିଖିତ ହୋଇଥିଲା ଓ ବହୁ ଭାବରେ ତାହା ସଫଳ ମଧ୍ୟ ହୋଇଥିଲା। ଖାଲି ଏଇ ଗୀତଟି ନୁହେଁ—ସେତେବେଳେ, ଅର୍ଥାତ୍ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ପର୍ଯ୍ୟନ୍ତ ଓ ତାର କିଛିବର୍ଷ ପରେ ମଧ୍ୟ ଏହିଭଳି ବହୁ ଓଡ଼ିଆ ଜାତୀୟତାଭାବମୂଳକ କବିତା ଓ ସଙ୍ଗୀତାଦି ଲେଖା ହୋଇ ଗାନକରାଯାଉଥିଲା। କବି ଗୋଦାବରୀଶ ମହାପାତ୍ରଙ୍କ 'ଉଠ କଙ୍କାଳ' କବିତାଟି ମଧ୍ୟ ସେ ଦୃଷ୍ଟିରୁ ଥିଲା ଖୁବ୍ ଲୋକପ୍ରିୟ ଓ ଉତ୍ତେଜକ। ସେହି କବିତାଟିରେ କବି କଙ୍କାଳପ୍ରାୟ ବର୍ତ୍ତମାନ ଓଡ଼ିଆ ଜାତିକୁ ଅତୀତ ଗୌରବର କାହାଣୀ ଶୁଣାଇ ଖୁବ୍ ଉଚ୍ଛ୍ୱସିତ ଉନ୍ମାଦନାପୂର୍ଣ୍ଣ ଭାଷା ଓ ଛନ୍ଦରେ ଉଦ୍‌ବୋଧନ ଦେଇ କହିଛନ୍ତି—ହେ ମୃତବତ୍ କଙ୍କାଳପ୍ରାୟ ଓଡ଼ିଆ ଜାତି! ତୁମ୍ଭେମାନେ ଉଠ-ଜାଗ୍ରତ ହୁଅ-ମହାକାଳ ବକ୍ଷରେ ପୁନଶ୍ଚ ତୁମର ଅକ୍ଷୟକୀର୍ତ୍ତି ସଂସ୍ଥାପନ କର। କବି ବାଞ୍ଛାନିଧି, ପଦ୍ମଚରଣ ଏବଂ ବୀରକିଶୋର ମଧ୍ୟ ବହୁ କବିତାରେ ସୁପ୍ତ ଓଡ଼ିଆ ଜାତିକୁ ଜାଗି ଉଠି ବିଶ୍ୱରେ ଆପଣାର ଜାତୀୟ ଗୌରବ ପୁନଃ ପ୍ରତିଷ୍ଠା କରିବା ପାଇଁ ଖୁବ୍ ଉଦ୍‌ବୋଧନ ଦେଇଛନ୍ତି।

ପ୍ରକୃତରେ ଆମ ପିଲାଦିନେ ଏସବୁ କବିତା ଓ ସଙ୍ଗୀତ ଆମକୁ ଖୁବ୍ ପ୍ରଭାବିତ କରିଛି ଓ ଆମ ଭିତରେ ଓଡ଼ିଶାକୁ ସବୁ କ୍ଷେତ୍ରରେ ଅନ୍ୟ ପ୍ରଦେଶ ସହିତ ସମାନ ଉଚ୍ଚତାରେ ପହୁଁଚାଇ ଦେବାପାଇଁ ଆମମାନଙ୍କ ଭିତରେ ଖୁବ୍ କର୍ମପ୍ରେରଣା ସୃଷ୍ଟି କରିଛି। ମୋର ଭଲଭାବେ ମନେଅଛି ଯେ ସେଇ ପିଲାଦିନୁଁ ବହୁ ବର୍ଷ ପର୍ଯ୍ୟନ୍ତ ଆମ୍ଭେମାନେ ସମବୟସ୍କ ଲୋକ ଏକତ୍ର ହେଲେ କେବଳ ଓଡ଼ିଶାର ସର୍ବବିଧ ଉନ୍ନତି କଥା ପକାଉଥିଲୁ। ସାହିତ୍ୟ, ବିଜ୍ଞାନ, ସଙ୍ଗୀତ, ନୃତ୍ୟ ଅଭିନୟ, ଦର୍ଶନ, ରାଜନୀତି, ଅର୍ଥନୀତି ଆଦି ସର୍ବକ୍ଷେତ୍ରରେ ଓଡ଼ିଆମାନେ କିପରି ଅନ୍ୟ ପ୍ରଦେଶର

ଲୋକଙ୍କୁ ଖୁବ୍ ଶୀଘ୍ର ବଳିଯିବେ—ତା'ନ ହେଲେ ଅନ୍ତତଃ ସମାନ ହେବେ—ଏଇ ଚିନ୍ତାହିଁ ଆମ ମୁଣ୍ଡକୁ ଘାରୁଥିଲା। ଏବଂ ଏହି ଚିନ୍ତା କେବଳ ଏକ ମନନବିଳାସ ନଥିଲା—ଯେଝା ଯେଝାର କ୍ଷେତ୍ରରେ ବହୁ ଗୁଣୀବ୍ୟକ୍ତି ଏଥିଲାଗି ଉଦ୍ୟମରତ ମଧ୍ୟ ହୋଇଥିଲେ। ତା'ଫଳରେ —ସତକୁ ସତ ସ୍ୱାଧୀନତା ପରେ ପରେ ବହୁ କ୍ଷେତ୍ରରେ ଆଜି ଓଡ଼ିଆ ଜାତି ବହୁ ଦୂରପଥ ଅଗ୍ରସର ହୋଇଛି। ଧରାଯାଉ ସାହିତ୍ୟ, ସଙ୍ଗୀତ ନୃତ୍ୟାଦି କ୍ଷେତ୍ରଟି। ଏଥିରେ ବହୁ ପ୍ରତିଭାବାନ ଓଡ଼ିଆ ଆଜି ପ୍ରଦେଶ ବାହାରେ କାହିଁକି, ଦେଶ ଦେଶାନ୍ତରରେ ମଧ୍ୟ ସୁନାମ ଅର୍ଜନ କଲେଣି। ଏବେ ଓଡ଼ିଶାର କେତେକ ବୈଜ୍ଞାନିକ ମଧ୍ୟ ପଦାର୍ଥବିଜ୍ଞାନ, ଚିକିତ୍ସାବିଜ୍ଞାନ ଓ ଆଣବିକ ଗବେଷଣା କ୍ଷେତ୍ରରେ ବିଦେଶରେ ବେଶ ପ୍ରତିଷ୍ଠା ଅର୍ଜନ କଲେଣି। ଏହା ନିଶ୍ଚୟ ଖୁବ୍ ଶୁଭ ସୂଚନା ଏବଂ ବେଶ୍ ଆଶାପ୍ରଦ ଘଟଣା। ଅର୍ଥନୈତିକ କ୍ଷେତ୍ରରେ ବି ଆଜି ଓଡ଼ିଶାର ମାଟିତଳେ ପୋତା ହୋଇଥିବା ଖଣିଜ ଦ୍ରବ୍ୟଗୁଡ଼ିକର ସଦୁପଯୋଗ ହେବାର ଯୋଜନା ବହୁତ ଆଗେଇଛି। ଓଡ଼ିଶା ସାରା ବର୍ତ୍ତମାନ ବହୁ ସ୍କୁଲକଲେଜ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେଲାଣି। ଏବେ ପୁଣି ଓଡ଼ିଶାକୁ ସର୍ବତୋଭାବେ ଶିଳ୍ପସମୃଦ୍ଧ କରିବା ପାଇଁ ସରକାର ଦୃଢ଼ସଙ୍କଳ୍ପ ଓ ଉଦ୍ୟମ କରୁଛନ୍ତି ବୋଲି ଶୁଣାଯାଉଛି।

ଏକଥା ନିଃସନ୍ଦେହ ଯେ ଓଡ଼ିଆମାନେ ବର୍ତ୍ତମାନ ଆଉ ସୁପ୍ତନୁହନ୍ତି। ସମସ୍ତେ ବର୍ତ୍ତମାନ ଜାଗି ଉଠିଲେଣି ଓ ଜାଗିଉଠି ବାଇବିଛା ହୋଇ ଦଉଡ଼ି ଲାଗିଛନ୍ତି। ସବୁ କ୍ଷେତ୍ରରେ ବର୍ତ୍ତମାନ ଓଡ଼ିଆମାନେ ଯଶସ୍ୱୀ ହେବାକୁ ଚାହିଁଲେଣି ଏବଂ ଉଦ୍ୟମ କଲେଣି। ଏବଂ ଏହି ଯଶପତାକା ବର୍ତ୍ତମାନ ଆପଣା ରାଜ୍ୟରେ ଉଡୁ ନ ଉଡୁ ପକ୍ଷାନ୍ତରେ ସମସ୍ତଙ୍କର ପ୍ରବଳ ଇଚ୍ଛା ହେଲାଣି କିପରି ତାହା ଆମେରିକା, ରୁଷିଆ, ଇଂଲଣ୍ଡ, ଫ୍ରାନ୍ସ ଆଦି ଦେଶ ମହାଦେଶମାନଙ୍କରେ ଫର୍ ଫର୍ ହୋଇ ଉଡ଼ିବ। ଉଦାହରଣ ସ୍ୱରୂପ—ପ୍ରତିଭାବାନ୍ ଓଡ଼ିଆ କବିଟିଏ ଚାହୁଁଛି ତା'ର ଲେଖା କିପରି ଇଂରାଜୀ ଓ ଅନ୍ୟାନ୍ୟ ବିଦେଶୀ ଭାଷାରେ ଶୀଘ୍ର ଅନୂଦିତ ହୋଇଗଲେ, ସେ ଖୁବ୍ ଶୀଘ୍ର ଆନ୍ତର୍ଜାତିକ ଯଶ ଲାଭ କରିବ। ସେହିପରି ନୃତ୍ୟଶିଳ୍ପୀଟିଏ ମଧ୍ୟ ଚାହୁଁଚି ସେ କେମିତି ଖୁବ୍ ଶୀଘ୍ର ଫ୍ରାନ୍ସ, ଜାପାନ ବା ଆମେରିକାରେ ଓଡ଼ିଶୀ ନୃତ୍ୟ ପ୍ରଦର୍ଶନ କରି ଆନ୍ତର୍ଜାତିକ ସମ୍ମାନର ଅଧିକାରୀ ହେବ। ସେହିପରି ନିଜର ଅର୍ଥନୈତିକ ବା ସାଂସାରିକ ଉନ୍ନତି ଚାହୁଁଥିବା ଦକ୍ଷ ଓ ଗୁଣୀ ଓଡ଼ିଆଟିଏ ମଧ୍ୟ ବିପୁଳ ସୌଭାଗ୍ୟ ଅର୍ଜନ କରିବାଲାଗି ଓଡ଼ିଶାରୁ ଯଥାଶିଘ୍ର ପଳାଇଯିବାକୁ ସର୍ବଦା ବ୍ୟଗ୍ର ଭାବରେ ଗୋଡ଼ଟେକି ବସିଛି ଓ ସୁଯୋଗ ଆସିବା ମାତ୍ରେ ଏ ମାଟିରୁ ଉହୁଁକିଯାଇ ଆକାଶମାର୍ଗେ ଉଡ଼ିଯାଉଛି, ଅନ୍ୟ କୌଣସି ଦେଶ ମହାଦେଶକୁ। ବର୍ତ୍ତମାନ ଓଡ଼ିଆଙ୍କର ଏହି ଆନ୍ତର୍ଜାତିକ ନିଶା ଏତେ ପ୍ରବଳ ହୋଇ ଉଠିଲାଣି ଯେ, ଓଡ଼ିଆଙ୍କର ଯେ ଇଷ୍ଟଦେବତା ଶ୍ରୀଜଗନ୍ନାଥ ମହାପ୍ରଭୁ, ସେ ମଧ୍ୟ ନୀଳାଚଳ ଶ୍ରୀକ୍ଷେତ୍ରରୁ ଡେରା ଉଠାଇ ସେଣେ କୁଆଡ଼େ

ଆମେରିକା ଫାମେରିକାରେ ଆନ୍ତର୍ଜାତିକ ଦେବତାର ଖ୍ୟାତି, ସମ୍ମାନ ଓ ଭୋଗଭାଗ୍ୟ ପାଇବା ଲୋଭରେ ପକେଇଯିବାକୁ ବ୍ୟଗ୍ର ହୋଇ ଉଠିଲେଣି।

ଗୋଟିଏ ଦିଗରୁ ଏହା ନିଶ୍ଚୟ ଶୁଭସୂଚନା—ଶୁଭଲକ୍ଷଣ ବି। ଜାତିର ପ୍ରାଣ ବିସ୍ଫୋରିତ ହେଉଛି—ବିସ୍ତାରିତ ହେଉଛି। ତାର ଦୃଷ୍ଟି ଦିଗଦିଗନ୍ତକୁ କ୍ଷେପି ଯାଉଛି। ସେ ବିପୁଳ ହେବାକୁ ଚାହେଁ—ପ୍ରଳମ୍ବ ହେବାକୁ ଚାହେଁ। ଭଲକଥା ନିଶ୍ଚୟ। ଖୁବ୍ ଭଲ କଥା। ଓଡ଼ିଆମାନେ ଆଉ ତାଙ୍କ ଟୁଆଁ ଟୁଇଁଙ୍କ ଭଳି ବାଘ ମାମୁଁଙ୍କ ଡରରେ ଡାଙ୍କ କାଞ୍ଜିପାଣି ହାଣ୍ଡି ଭିତରେ ଲୁଚି ରହିବେ ନାହିଁ। '—ଯେ ଜାତି ବୋଇତ ଭସାଇ....'। 'ଉଠ କଙ୍କାଳ, ଛିଡ଼ୁ ଶୃଙ୍ଖଳ, ଭେଦି ମହାକାଳ....ଇତ୍ୟାଦି ଇତ୍ୟାଦି।'

କିନ୍ତୁ ଏହାର ଅନ୍ୟ ଦିଗଟି ମଧ୍ୟ ବିଚାର୍ଯ୍ୟ। ଆଚ୍ଛା, ତା'ହେଲେ କ'ଣ ଏଠି ନୀଳାଚଳରେ ଆମ ଜଗନ୍ନାଥଙ୍କ ବଡ଼ଦେଉଳ ଭାଙ୍ଗୁ ବା ରହୁ—ଜଗନ୍ନାଥଙ୍କ ପାଖେ ଦଶଧୂପ ହେଉ ବା ନହେଉ —ନୀତିଗୁଡ଼ିକ ଚାଲୁ ବା ବନ୍ଦ ହେଉ—ପୁରୀ ସହର ଶ୍ରୀକ୍ଷେତ୍ର ହୋଇ ରହୁ କି ନର୍କକ୍ଷେତ୍ର ପାଲଟି ଯାଉ—ସେ କଥା ନ ବିଚାରି, ସେ ଦିଗରେ ଉଦ୍ୟମ ନ କରି—ଆମେ ଚାହିଁବା ତେଣେ ସାନଫ୍ରାନସିସ୍କୋ ବା ନିଉୟର୍କ ବା ଲଣ୍ଡନ, ପାରିସରେ ଜଗନ୍ନାଥ ମନ୍ଦିର ବଡ଼ ହୋଇ ତୋଳାହୋଇ ଓ ଦଶଧୂପ ଜାଗାରେ ଶହେ ଧୂପ ହୋଇ ଆନ୍ତର୍ଜାତିକ କ୍ଷେତ୍ରରେ ଜଗନ୍ନାଥ ଧର୍ମ ଓ ସଂସ୍କୃତିର ପ୍ରଚାର ଓ ପ୍ରସାର ବଢ଼ିଚାଲୁ?

ସେମିତି ଓଡ଼ିଶାରେ ତିନିକୋଟି ଓଡ଼ିଆ ସଙ୍ଗୀତ ବା ଓଡ଼ିଶୀ ନୃତ୍ୟକୁ ବୁଝି ଆଦର କରନ୍ତୁ ବା ନ କରନ୍ତୁ—ଓଡ଼ିଆ ସାହିତ୍ୟ ଓଡ଼ିଆମାନେ ଏଠି ପଢ଼ନ୍ତୁ ବା ନ ପଢ଼ନ୍ତୁ—ଓଡ଼ିଆ ଭାଷା କ୍ରମଶଃ ଉନ୍ନତ ହେଉ ବା ନ ହେଉ—କିନ୍ତୁ ତେଣେ ଇଂଲଣ୍ଡ, ଆମେରିକା, ଫ୍ରାନସ୍ ଓ ସୁଇଜରଲାଣ୍ଡ ଆଦି ଦେଶମାନଙ୍କରେ ଓଡ଼ିଆ ସାହିତ୍ୟ ଅନୁବାଦ ମାଧ୍ୟମରେ ବହୁଳ ପ୍ରଚାରିତ ହେଉ ଓ ଓଡ଼ିଶାର ଲେଖକମାନେ ବିପୁଳ ଆନ୍ତର୍ଜାତିକ ଖ୍ୟାତିର ଅଧିକାରୀ ହୁଅନ୍ତୁ।

ଏଇଆ ତା'ହେଲେ କଥା? ଏହାହିଁ କଣ କାମ୍ୟ? ଏଇ ତା'ହେଲେ କଣ ଆନ୍ତର୍ଜାତିକ ଖ୍ୟାତି? ଯଦି ଏହାହିଁ ହୋଇଥାଏ, ତେବେ ଏଥିରେ ବ୍ୟକ୍ତି ହୁଏତ କିଛି ଲାଭବାନ ହେବ। ମାତ୍ର ଓଡ଼ିଆ ଜାତିର ସେଥିରେ କାଣିଚାଏ ଲାଭ ନାହିଁ। ମୋର ଗୋଟିଏ ଆଶଙ୍କା କ୍ରମଶଃ ଦୃଢ଼ ହୋଇଯାଉଛି ଯେ ଆମର ପ୍ରତିଭାବାନ୍ ଗୁଣବନ୍ତ ଗୁଣବନ୍ତୀ ଓଡ଼ିଆ-ଓଡ଼ିଆଣୀ ମାନ୍ତ୍ରେଇ ବର୍ତ୍ତମାନ ଖୁବ୍ ସ୍ୱାର୍ଥପରଭାବେ ଆନ୍ତର୍ଜାତିକ ସ୍ଥିତି ଓ ଖ୍ୟାତିର ଅଧିକାରୀ ହେବାକୁ ଚାହୁଁଛନ୍ତି। ସବୁଥିରେ ଦରିଦ୍ର ଓ ପଛରେ ପଡ଼ିଥିବା ଓଡ଼ିଶା ପ୍ରତି ଖାଆଲି ନିଜ ସ୍ୱାର୍ଥ ଦୃଷ୍ଟିରୁ ବିରକ୍ତ ହେଲେ କଣ ହେବ, ତା' ପ୍ରତି ବିପୁଳ ପ୍ରେମ, ଶ୍ରଦ୍ଧା, ଭକ୍ତି ଓ କରୁଣା ଥିବା ଚାହିଁ।



# କିଏ ମୂଢ଼ ? କିଏ ମୂଢ଼ତର ?

୧୦।୧୨।୮୧

ମୂଢ଼ ବ୍ୟକ୍ତିମାନେ ସବୁ କାଳେ ଥିଲେ। ଏବେ ମଧ୍ୟ ରହିଛନ୍ତି। ଭବିଷ୍ୟତରେ ମଧ୍ୟ ନ ରହି ଯିବେ କୁଆଡ଼େ ? କାରଣ, ଏ ପୃଥିବୀରେ ମୂଢ଼ ଲୋକମାନେ ଥିବା ପର୍ଯ୍ୟନ୍ତ, ପୁଣି ସେମାନଙ୍କ ସଂଖ୍ୟା ଦିନୁଁଦିନ ବଢୁଥିବା ପର୍ଯ୍ୟନ୍ତ, ଏ ପୃଥିବୀର, ଭବିଷ୍ୟତ ଏମିତି କିଛି ବଦଳିଯିବ ବୋଲି ଆଶା କରିବା ହେବ, ଆମ ପକ୍ଷରେ ଆହୁରି ଏକ ମୂଢ଼ତା।

ତେବେ "ମୂଢ଼ତା" କାହାକୁ କୁହାଯାଏ ଏବଂ "ମୂଢ଼ତା" କେତେ ପ୍ରକାର ଏବଂ ଆମ ଚତୁଃପାର୍ଶ୍ୱରେ ବିଭିନ୍ନ କ୍ଷେତ୍ରରେ ଯେଉଁ ମୂଢ଼ମାନେ ଅଛନ୍ତି, ସେମାନଙ୍କ ମୂଢ଼ତାର ସ୍ୱରୂପ ଓ ବିଶେଷତ୍ୱ କଣ, ସେ ସମ୍ବନ୍ଧେ ବିସ୍ତୃତ ଆଲୋଚନା ପରେ କରିବା; ବର୍ତ୍ତମାନ ମୁଁ କେବଳ ଜଣେ ରାଜନୈତିକ ମୂଢ଼ ଓ ଜଣେ ସରକାରୀ ଚାକିରିଆ ମୂଢ଼ଙ୍କ କଥା କହିବି।

ଅଳ୍ପ କେତେବର୍ଷ ତଳେ ଆମର ଏଇ ଅଙ୍ଗ, ବଙ୍ଗ, କଳିଙ୍ଗ, କାମରୂପ କି କୌଣସି ଏକ ରାଜ୍ୟରେ ଜଣେ ମନ୍ତ୍ରୀବର ଥିଲେ। ସେ ମହୋଦୟ ଦେଖିବାକୁ ଥିଲେ ଅତ୍ୟନ୍ତ ସ୍ଥୂଳକାୟ। କିନ୍ତୁ ଏହି ସ୍ଥୂଳତା କେବଳ ତାଙ୍କର କାୟିକ ବିଭବ ନ ଥିଲା, କି ଚିନ୍ତନ-ମନନ, କି ବଚନ-ବାଚନ, ଏପରି କି ଭୋଜନଭାଜନ ସବୁଥିରେ ତାଙ୍କର ଏହି କାୟିକ ସ୍ଥୂଳତାରେ ଯଥେଷ୍ଟ ଅବଦାନ ରହିଥିଲା। ସେ ଜୀବନରେ ତିନୋଟି କଥା ଉପରେ ବଞ୍ଚୁଥିଲେ ଓ ବଞ୍ଚିବାର ସ୍ୱାଦ ଅନୁଭବ କରୁଥିଲେ। ପାନ, ଭୋଜନ ଓ ରମଣ ଏବଂ ଏହି ତିନୋଟି ଜିନିଷ ସହଜରେ ପାଇବା ଲାଗି ରାଜନୀତିକୁ ପେଶା କରିଥିଲେ ଏବଂ ତାଙ୍କର ଭାଗ୍ୟ ଏପରି ଯେ, ସେ ଯେଉଁ ନିର୍ବାଚନମଣ୍ଡଳିକୁ ପ୍ରତିନିଧିତ୍ୱ କରୁଥିଲେ, ସେଠାରେ ସେ ଥିଲେ—"ନିର୍ଜନ ପାଦପୋଦେଶେ ଏରଣ୍ଡୋଽପିଦ୍ରୁମାୟତେ"। ସୌଭାଗ୍ୟକ୍ରମେ ସେ ଥିଲେ ପୂର୍ତ୍ତ ବିଭାଗ, ବିଦ୍ୟୁତ୍ ବିଭାଗ ଓ ଜଳ ସେଚନ ବିଭାଗର ମନ୍ତ୍ରୀ। ତେଣୁ ତାଙ୍କ ପାଦତଳେ ପ୍ରଭୂତ ଅର୍ଥ, ପ୍ରଚୁର ବ୍ରାଣ୍ଡି, ପ୍ରଚୁର କୁକ୍କୁଟ ଓ ଅନେକ ରମଣୀୟ ବିଷୟ ଜୁଟିବାକୁ ଲାଗିଲା। ବିଭାଗୀୟ

ଓଭରସିଅରଠାରୁ ଆରମ୍ଭ କରି ଚିଫ୍ ଇଂଜିନିୟରଙ୍କ ପର୍ଯ୍ୟନ୍ତ—ସମସ୍ତେ ନିଜର ଚାକିରି ନିରାପତ୍ତା ଦୃଷ୍ଟିରୁ ଓ ପ୍ରଚୁର କଳାଟଙ୍କା ଅର୍ଜନରେ ଅବାଟ ସୁଯୋଗ ପାଇବା ଲାଗି ମନ୍ତ୍ରୀମହୋଦୟଙ୍କୁ ସର୍ବଦା ପ୍ରଚୁର ଟଙ୍କା, ସୁନା, ପ୍ରଚୁର ବ୍ରାଣ୍ଡି, ପ୍ରଚୁର କୁକୁଡ଼ା, ପ୍ରଚୁର ରମଣୀ ଓ ଏସବୁର ସଦ୍‌ବ୍ୟବହାର ଲାଗି ଉପଯୋଗୀ ନିର୍ଜନ ଡାକବଙ୍ଗଳାମାନ ଯୋଗାଇ ଦେଉଥିଲେ। ଏଣୁକରି, ମନ୍ତ୍ରୀ ମହୋଦୟ ତାଙ୍କର ଅଭୀଷ୍ଟ ଭୋଗ କରି ଅତ୍ୟନ୍ତ ଉତ୍ସାହରେ ମନ୍ତ୍ରୀ ଜୀବନଯାପନ କରୁଥିଲେ। ଏଣେ ରାଜଧାନୀରେ ଅବଶ୍ୟ, ପ୍ରତିଦିନ ତାଙ୍କ ନାମରେ କାନ୍ଥବାଡ଼ରେ ବହୁ ଅସ୍ଲୀ କଥା ଲେଖାଯାଉଥିଲା। ମାତ୍ର ମନ୍ତ୍ରୀ ମହୋଦୟ ସେସବୁ ପ୍ରତି ଦୃଷ୍ଟିପାତ ବା କର୍ଣ୍ଣପାତ କରୁ ନଥିଲେ। ଦୈବାତ୍ କିଛି ତାଙ୍କର ଦୃଷ୍ଟି ବା କର୍ଣ୍ଣରେ ପଡ଼ିଗଲେ ସେ ଯାତ୍ରାପାର୍ଟିର ସଇତାନ ଚରିତ୍ର ପରି ତାଙ୍କର ବିଶାଳ ବପୁକୁ ଥରାଇ ଥରାଇ ଉଚ୍ଚସ୍ୱରରେ ଅଟ୍ଟହାସ୍ୟ କରୁଥିଲେ।

ତିନୋଟି ବର୍ଷ ସୁରୁଖୁରୁରେ କଟିଗଲା। ତା'ପରେ ତାଙ୍କ ଦଳ ଭିତରେ ଅନ୍ୟ ମୂଢ଼ ନେତା, ମହାନେତା, ଉପନେତା ଓ କୁଜିନେତାଙ୍କ ଭିତରେ ମହାଜନ୍ଦଳ ଉପୁଜିଲା। ଦଳ ଭାଙ୍ଗିପଡ଼ିଲା। ସରକାର ମଧ୍ୟ ଛିନ୍ନଛତର ହୋଇଗଲା। ମନ୍ତ୍ରୀ ମହୋଦୟ ମଧ୍ୟ ତିନିପାଞ୍ଚିରୁ ଗଲେ। କିନ୍ତୁ ଏହି ତିନିବର୍ଷ ଭିତରେ ସେ ଅନ୍ତତଃ ଏକହଜାର କୁକୁଡ଼ା, ଏକହଜାର ଲିଟର ବ୍ରାଣ୍ଡି ଓ ଏକହଜାର ଥର ବିଭିନ୍ନ ରମଣୀୟ ଉପଭୋଗ କରିସାରିଥିଲେ। ଏହା ବାଦ୍ ଲକ୍ଷ ଲକ୍ଷ ଟଙ୍କା ମଧ୍ୟ ଦେଶବିଦେଶର ବିଭିନ୍ନ ବ୍ୟାଙ୍କରେ ବିଭିନ୍ନ ଉପାୟରେ ଜମାଇ ରଖିଥିଲେ।

ସେହି ମନ୍ତ୍ରୀ ମହୋଦୟ ମନ୍ତ୍ରୀ ହେବା ପୂର୍ବରୁ କୌଣସି ଏକ ଦୁଷ୍କର୍ମ ଲାଗି କିଛି ମାସ ପାଇଁ ପୂର୍ବତନ ସରକାରଙ୍କ ଦ୍ୱାରା ଜେଲଦଣ୍ଡ ପାଇଥିଲେ। ପ୍ରାୟ ଆଠମାସ ଜେଲରେ ରହିବା ଭିତରେ ତାଙ୍କର ପ୍ରାୟ ମୁଣ୍ଡ ଖରାପ ହୋଇଯାଇଥିଲା। ସେହି ଅର୍ଦ୍ଧବାତୁଳ ଅବସ୍ଥାରେ ଦିନେ ଏକ ବିନିଦ୍ର ରଜନୀରେ ତାଙ୍କର ମନେହେଲା ଯେ ତାଙ୍କ ଭିତରେ ଆଦିକବି ବାଲ୍ମୀକିଙ୍କ ପରି ଦୁର୍ଲ୍ଲଭ କବିତ୍ୱର ସ୍ଫୁରଣ ହେଉଅଛି। ସଙ୍ଗେ ସଙ୍ଗେ କାଗଜ କଲମ ଧରି ଗଦ୍ୟ ଛନ୍ଦରେ ସେ ଗୁଡ଼ାଏ କବିତା ଗାଇ ଚାଲିଲେ। ସେଥିରେ ସେ ପୂର୍ବତନ ସରକାରଙ୍କୁ ଫାସିଷ୍ଟ ଓ ନାଜୀ ବୋଲି ଗାଳି ଦେଇ ଓ ନିଜକୁ ଜଣେ ଗଣତନ୍ତ୍ରପ୍ରେମୀ ସ୍ୱାଧୀନତା ସଂଗ୍ରାମୀ ବୋଲି ଜାହିର କରି ଯାହା ମନକୁ ଆସିଲା ଲେଖି ଦେଇଗଲେ।

ଅଳ୍ପଦିନ ପରେ—ଆଉ ଏକ ବିଶେଷ କାରଣରୁ ସେ ସରକାର ମଧ୍ୟ ଭାଙ୍ଗିଗଲା। ଏହି ବନ୍ଦୀମାନେ ମଧ୍ୟ ଜେଲରୁ ମୁକୁଳି ସମସ୍ତେ ମିଶିମାଣି ଗୋଟିଏ ଖେଚୁଡ଼ି ଦଳ ଗଢ଼ିଲେ। ନିର୍ବାଚନ ହେଲା ଏବଂ ଭୋଟଦାତା ମାନେ ବିରକ୍ତରେ ଭୋଟକାଗଜକୁ ବାକ୍ସରେ ନଗଳାଇ ଉପରକୁ ଫିଙ୍ଗି ଦେଲେ। ଅନୁକୂଳ ବାୟୁ ପ୍ରବାହରେ ସେହି

ଭୋଟକାଗଜମାନ ଯାଇ ଏହି ଖେଚୁଡ଼ି ଦଳଙ୍କ ବାକ୍ସରେ ପଡ଼ିଲା ଓ ଏମାନେ ଜିତିଯାଇ କୁହାଟ ଛାଡ଼ି ସରକାର ଗଢ଼ିଲେ। ଏବଂ ଆମର ସେହି ପୂର୍ବୋକ୍ତ ସ୍ଥୂଳକାୟ ଓ ସ୍ଥୂଳଜୀବୀ ବ୍ୟକ୍ତିଟି ମଧ୍ୟ ସେଥିରେ ମନ୍ତ୍ରୀ ହୋଇଗଲେ।

ମନ୍ତ୍ରୀ ହେଲା ପରେ ଦିନେ ତାଙ୍କର ଇଚ୍ଛା ହେଲା ଯେ, ସେ ସେହି ଅମୂଲ୍ୟ କବିତାଗୁଡ଼ିକୁ ଛପାଇବେ। ସଙ୍ଗେ ସଙ୍ଗେ ପ୍ରକାଶକ ଜୁଟିଗଲେ ଏବଂ ଆଠଦିନ ଭିତରେ "ବନ୍ଦୀର ମର୍ମବାଣୀ" ନାମରେ ଅତି ସୁଦୃଶ୍ୟ ପ୍ରଚ୍ଛଦପଟ ଓ ମନ୍ତ୍ରୀଙ୍କ ଫଟୋ ଶୋଭିତ ପୃଷ୍ଠପଟ ସହ ପାଞ୍ଚଟଙ୍କା ମୂଲ୍ୟରେ ବହିଟି ବାହାରେ ଆତ୍ମପ୍ରକାଶ କଲା। ତା'ପରେ ବନ୍ଧୁ ଲେଖକ, ସାମ୍ବାଦିକ ଓ ଚାଟୁକାରଙ୍କ ସମାବେଶରେ ଉତ୍ତମ ପାନ ଭୋଜନ ସହ ବହିଟିର ଉଦ୍‌ଘାଟନ ଉତ୍ସବ ମହାସମାରୋହରେ ସମାହିତ ହେଲା। ପ୍ରକାଶଥାଉକି, ସେହିଦିନ ସେହି ଉଦ୍‌ଘାଟନ ମେଳାରେ ବିଭିନ୍ନ କଣ୍ଟ୍ରାକ୍ଟର ଓ ତାଙ୍କ ଲୋକେ ପ୍ରାୟ ତିନିହଜାର ବହି କିଣି ନେଲେ ଏବଂ ଏକ ମାସ ଭିତରେ ଆଉ ଦୁଇହଜାର ବହି ମଧ୍ୟ ଦୋକାନରେ ବିକ୍ରୀ ହୋଇଗଲା।

ଏହି ସମୟରେ ଦିନେ ଜଣେ ବଦଳି ଅର୍ଡ଼ରପ୍ରାପ୍ତ ଏକ୍‌ଜିକ୍ୟୁଟିଭ ଇଞ୍ଜିନିୟର ମନ୍ତ୍ରୀଙ୍କ ପାଖକୁ ଆସି କୃତ୍ୟ କୃତ୍ୟ ଭଙ୍ଗୀରେ କୃତାଞ୍ଜଳିପୁଟ ହୋଇ ଜଣାଇଲେ—ସାର! ଆପଣଙ୍କର ସେହି ଅମର 'ବନ୍ଦୀର ମର୍ମବାଣୀ' କାବ୍ୟ ଗ୍ରନ୍ଥଟିକୁ ମୁଁ ଚଉଦ ଥର ପଢ଼ିଅଛି। ମୋର କାବ୍ୟରସିକା ପତ୍ନୀ ଷୋଳ ଥର ପଢ଼ିଛନ୍ତି। ମୋର ବଡ଼ ଝିଅ ଆଠ ଥର ପଢ଼ିଛି। ବଡ଼ ପୁଅ ଛଅ ଥର ପଢ଼ିଛି ଏବଂ ଅନ୍ୟ ପିଲାମାନେ ପ୍ରାୟ ପ୍ରତ୍ୟେକ ପାଳିକରି ଚାରି ଚାରି ଥର ପଢ଼ିବା ଫଳରେ ସେହି ଶାଶ୍ୱତ କାବ୍ୟଗ୍ରନ୍ଥଟି ନଶ୍ୱରାବସ୍ଥା ଲାଭକଲା ଏବଂ ଅଚିରେ ପଞ୍ଚମହାଭୂତରେ ମିଶିଗଲା। ଆଉ ଖଣ୍ଡିଏ ବହି କିଣିବାକୁ ପ୍ରକାଶକଙ୍କ ପାଖକୁ ଗଲି। ମାତ୍ର ସେ କହିଲେ—ସେହି ଏକାନ୍ତ ଜନପ୍ରିୟ କାବ୍ୟଗ୍ରନ୍ଥଟି ବଜାରରେ ହଟ୍‌କେକ୍ (ଗରମ ପିଠା) ପରି ବିକ୍ରୀ ହୋଇଗଲା। ଆଉ ଖଣ୍ଡିଏ ବହି ମଧ୍ୟ ଗଣେଶଙ୍କ ପ୍ରିୟ ବାହନ ମୂଷାର ଆହାର୍ଯ୍ୟ ହେବା ଲାଗି ଷ୍ଟକ୍‌ରେ ନାହିଁ। କିନ୍ତୁ ସାର! ମୁଁ ଓ ମୋର କାବ୍ୟରସିକା ପତ୍ନୀ ସେହି ବହିଟିକୁ ବାରମ୍ବାର ପଢ଼ିଲା ପରେ ଯାଇ ଆମକୁ ନିଦ ହୁଏ। ବର୍ତ୍ତମାନ ସେ ବହି ବ୍ୟତିରେକେ ଆମ ଦୁହିଁଙ୍କୁ ଅନିଦ୍ରା ରୋଗ ଧରିଲାଣି। ଯଦି ଆପଣଙ୍କ ପାଖରେ ଖଣ୍ଡିଏ ବହି ଅଛି ଦିଅନ୍ତୁ। ତା' ନହେଲେ ମୋର କାବ୍ୟରସିକା ପତ୍ନୀ ଆଉ ଇହଧାମରେ ରହିବା ଭଳି ଲାଗୁନାହିଁ। ଏବଂ ସାର୍! ସେ ଯଦି ଏମିତି ଅକାଳରେ ଚାଲିଯିବେ—ତେବେ ମୁଁ ଅବା ଆଉ କିପରି ବଞ୍ଚିବି ?

ଏକଥା ଶୁଣି ଅହରହ ପାନ ଭୋଜନ ଓ ରମଣରେ ସମୁତ୍ସୁକ ମନ୍ତ୍ରୀ ମହୋଦୟଙ୍କ ମୁଖମଣ୍ଡଳରେ ମହାକବିସୁଲଭ ଦୀପ୍ତି ଝଲସି ଉଠିଲା। ସେ କୀର୍ତ୍ତିପ୍ରମତ୍ତ କଣ୍ଠରେ ହସି ହସି କହିଲେ—ଅବଶ୍ୟ, ଅବଶ୍ୟ! କିନ୍ତୁ ହଟକେକ୍ ନୁହେଁ ହେ। ଆଇସକ୍ରିମ ଭଳି

ସେ ବହିଟି ବିକ୍ରୀ ହୋଇଯାଇଛି। ହଟ୍‌କେକ୍ ବା ଗରମ ପିଠାର ଉପମା ଶୀତଦେଶରେ ଚଳେ। ଆମ ଗରମ ଦେଶ ପାଇଁ ଆଇସକ୍ରିମ ହେଲା ଯଥାର୍ଥ ଉପମା। ବିଶ୍ୱକବି ରବିନ୍ଦ୍ରନାଥଙ୍କ ପରେ ଆଉ କାହା କବିତା ବହି ଏତେ ବିପୁଳ ସଂଖ୍ୟାରେ ଏତେ ଶିଘ୍ର ବିକ୍ରୀ ହୋଇଛି କି ? ହେ, ହେ, ହେଃ ।

ଇଂଜିନିୟର କହିଲେ—ସାର୍ ! ଆପଣ ହେଲେ ଏ ଦେଶର ଦ୍ୱିତୀୟ ରବିନ୍ଦ୍ରନାଥ ।

ମନ୍ତ୍ରୀ ମହୋଦୟ ତାଙ୍କର ପୃଥୁଳ ମୁଖ, ଉଦର ଓ ବକ୍ଷକୁ ଥରାଇ ଥରାଇ ହସି ହସି କହିଲେ—ରବୀନ୍ଦ୍ରନାଥଙ୍କୁ ଆଜିକାଲି ଆଉ କିଏ ପଚାରୁଛି ହେ ? ତାଙ୍କ ନାଁ ଲୁଚିଗଲାଣି । ହେ, ହେ, ହେ, ହେଃ ।

ଇଂଜିନିୟର ହସି ହସି କହିଲେ—ସାର ! ରବିନ୍ଦ୍ରନାଥ ଆପଣଙ୍କ ତୁଳନାରେ କି କବି ? ସେ ତ ଖାଲି ଜୀବନସାରା କବିତା ଲେଖି ଚାଲିଲେ । ସେ କଣ ମନ୍ତ୍ରୀ ହୋଇ ଏତେ ବଡ଼ ପୂର୍ତ୍ତ, ବିଦ୍ୟୁତ୍ ଓ ସେଚବିଭାଗର ଦାୟିତ୍ୱ ନେଇ ଚଳାଇଛନ୍ତି ? ରାଜନୀତି କରିଛନ୍ତି ? ଆପଣ ଏସବୁ ମହା ଜଞ୍ଜାଳ ଭିତରେ ଯୋଉ ଶାଶ୍ୱତ କାବ୍ୟଗାଥା ସୃଷ୍ଟି କରିଗଲେ ତାହା ବିଶ୍ୱ ସାହିତ୍ୟରେ ଅନବଦ୍ୟ ହୋଇ ରହିବ। କଣ କରିବି ସାର୍ ! ମୋତେ କୋଉଠୁ ହେଲେ ଖଣ୍ଡିଏ ବହି ମଗାଇ ଦିଅନ୍ତୁ ନ ହେଲେ ମୋ କାବ୍ୟରସିକା ପତ୍ନୀ ଆଉ ଦିନେ ମଧ ବଞ୍ଚିଲାଭଳି ମତେ ଲାଗୁନାହିଁ ।

ମନ୍ତ୍ରୀ ଆଲୁରୁ ବାଲୁରୁ ହୋଇ ହସିଲାଗିଲେ । ଏବଂ ଢ଼େର ବେଳଯାଏ ଅଟ୍ଟହାସ୍ୟ କଲାପରେ କହିଲେ—

ହାଃ ହାଃ ହାଃ । କେମନ୍ତ ? କେମନ୍ତ ? କିନ୍ତୁ ଆମ୍ଭେ ତ ଆପଣଙ୍କ କାବ୍ୟ ରସିକା ସ୍ତ୍ରୀକୁ କେବେ ଦେଖିନାହୁଁ ? ହାଃ ହାଃ ହାଃ—ହେଲେ ହେ ହେ ହେଃ ।।

ସେହି ମୃତ୍ମନ୍ତ୍ରୀ ଗାଦିରୁ ଗଲା ପରେ ଉକ୍ତ ଇଂଜିନିୟର ତାଙ୍କ ବନ୍ଧୁମାନଙ୍କ ଆଗରେ କହିବାର ଶୁଣାଗଲା ଯେ ତାଙ୍କର ଅକାଳ ବଦଳିକୁ ରହିତ କରିବା ପାଇଁ ସେ ଅବଶିଷ୍ଟ ଦୁଇହଜାର ବହି ନିଜେ ଦୋକାନରୁ କିଣି ନେଇ ଏହି କୌଶଳ ଖଟାଇଥିଲେ...ପାଠକେ ! ଏବେ କୁହନ୍ତୁ ତ ! ଉକ୍ତ ମନ୍ତ୍ରୀ ଓ ଇଂଜିନିୟର—ଯେ ଦୁହିଁଙ୍କ ମଧ୍ୟରେ କିଏ ମୃତ୍ ? ଓ କିଏ ମୃତ୍ତର ?



# ଗଣେଶ-ନିର୍ଯାତନା

୯।୯।୮୧

ବର୍ତ୍ତମାନର ସମାଜରେ ପ୍ରକୃତରେ କେଉଁମାନେ ଅତ୍ୟାଚାରିତ ଓ କେଉଁମାନେ ପ୍ରକୃତରେ ନିରୂପାୟ ଓ ଅସହାୟ ଭାବରେ ନିର୍ଯ୍ୟାତିତ—ଯଦି କେହି ଏ ପ୍ରଶ୍ନ ପଚାରନ୍ତି—ତେବେ ଅଧିକାଂଶଙ୍କଠାରୁ ଉତ୍ତର ମିଳିବ—ହିନ୍ଦୁ ସମାଜରେ ହରିଜନ ଓ ଆଦିବାସୀ। ଏବଂ ଆଉ କେତେ ଉତ୍ତର ଦେବେ—ନିରୀହ ଓ ସାଧୁ ସରଳ ଜୀବନ ବିତାଉଥିବା କତିପୟ ଗ୍ରାମୀଣ ଓ ନାଗରିକ ପ୍ରଜା।

କିନ୍ତୁ ଆମ ବିଚାରରେ-ଅର୍ଥାତ ସବୁଆଡ଼େ ବୁଲିଚାଲି ଦେଖିଶୁଣି ଓ ଭାବି ଆମେ କହିବୁ—ସେ ହିନ୍ଦୁଧର୍ମର ବିଚରା ମୂକ ଦେବଦେବୀମାନେ ବର୍ତ୍ତମାନ ଯେପରି ଭାବେ ଅତ୍ୟାଚାରିତ, ପ୍ରପୀଡ଼ିତ ଓ ଅପମାନିତ ହେଉଛନ୍ତି—ସେପରି ଦୁର୍ଭାଗ୍ୟ ଆଉ କେହି ଭୋଗୁ ନାହାନ୍ତି। ଉଦାହରଣ ସ୍ୱରୂପ—ଏଇ ଆମର ଗଣେଶ, ସରସ୍ୱତୀ, ଲକ୍ଷ୍ମୀ, ମହାଦେବ, କାଳୀ, ଦୁର୍ଗା, କାର୍ତ୍ତିକ ପ୍ରମୁଖ ଦେବଦେବୀଗଣ ସବୁଠାରୁ ବେଶି ଭାଗ୍ୟହୀନ।

ଏଇତ ନିକଟରେ ଗଣେଶ ଚତୁର୍ଥୀ ପୂଜା ଗଲା। ମୁଁ ଅନ୍ୟୂନ ୪ଟି ସହରରେ ଏଇ ସପ୍ତାହକ ଭିତରେ ଗଣେଶ ପୂଜା ବ୍ୟାପାରଟିକୁ ପ୍ରତ୍ୟକ୍ଷ କରି ଆସିଲି। ଏଡ଼େ ଜାକଜମକରେ ଗଣେଶ ପୂଜା ହେଉଛି ଯେ, ଏବଂ ଏତେ ଗଣେଶ ମୂର୍ତ୍ତି ପ୍ରତିଷ୍ଠିତ ହୋଇଛନ୍ତି ଯେ, ବାହାର ଦେଶର ଯେ କେହି ଦର୍ଶକ ହଠାତ୍ ଦେଖିଲେ ମନେକରିବ ଯେ ଓଡ଼ିଆମାନଙ୍କର ଇଦାନୀଂ ଭକ୍ତିଭାବ ଖୁବ୍ ବଢ଼ି ଗଲାଣି—ଏବଂ ବୋଧହୁଏ, ଅଧିକାଂଶ ଓଡ଼ିଆ ଗାଣପତ୍ୟ ଧର୍ମରେ ଦୀକ୍ଷିତ ହୋଇଗଲେଣି। ଅଧିକାଂଶ ସ୍ଥଳରେ କି ଉଜ୍ଜ୍ୱଳ ଓ ବର୍ଣ୍ଣାଢ୍ୟ ଆଲୋକସଜ୍ଜା। କି ବିରାଟ ଓ ସୁସଜ୍ଜିତ ଦୁର୍ଗୋପମ ଅଥବା ପ୍ରାସାଦୋପମ ମଣ୍ଡପ। କି ଜାଜ୍ଜ୍ୱଲ୍ୟମାନ ମେଢ଼ ସବୁ। ଏବଂ ଏଇ ସବୁ କରିବା ପାଇଁ ଅଧିକାଂଶ ସ୍ଥାନରେ ଯୁବକମାନେ ହିଁ ଦିବାରାତ୍ର ନିୟୋଜିତ। ସପ୍ତାହ ଅବଧି, କି ଦିବା କି ରାତ୍ରି ସେମାନେ ସେଠାରେ ବସିଛନ୍ତି—ଶୋଇଛନ୍ତି—ଗପୁଛନ୍ତି—ଖାଉଛନ୍ତି ଏବଂ ସେମାନଙ୍କର ଯାହା ଇଚ୍ଛା ତାହା ନିର୍ବିଘ୍ନରେ କରୁଛନ୍ତି ସେମାନଙ୍କୁ ଏଥିପାଇଁ ଯଥେଷ୍ଟ ଉତ୍ତେଜନା ଓ ପ୍ରେରଣା ଦେବା ପାଇଁ ଆନୁଷଙ୍ଗିକ ଅନ୍ୟାନ୍ୟ ବ୍ୟବସ୍ଥା ସହିତ ଦିବାରାତ୍ର ଉଚ୍ଚକିତ ସ୍ୱରରେ ମାଇକ୍ ଯୋଗେ ସିନେମା ଗୀତ ବାଜି ଲାଗିଛି। ଏଥର ଗଣେଶପୂଜାରେ ସର୍ବତ୍ର ଗୋଟିଏ ଗୀତ ଅନବରତ ବାଜୁଥିଲା। ତାହାହେଲା "ଯିସ୍ କୀ ବିବି ମୋଟି ହେ, ଉସ୍‌କୀ ଭି ବଡ଼ା କାମ ହୈ—ଯିସ୍ କୀ ବିବି ଲମ୍ବୀ ହେଁ —ଯିସ୍ କା ବିବି ଗୋରୀ ହୈ—ବିବି" ଇତ୍ୟାଦି ଇତ୍ୟାଦି।

ଏହାଛଡ଼ା ପ୍ରତି କଲେଜରେ ମଧ୍ୟ ବିଭିନ୍ନ ପାଠ ବିଭାଗ ତରଫରୁ କଲେଜରେ ଦଶ ପନ୍ଦରଟି ଗଣେଶ ଦଶ ପନ୍ଦରଟି କୋଠରୀ ଅଧିକାର କରି ତିନିଦିନ ପର୍ଯ୍ୟନ୍ତ ମଝିରେ ଗୁରୁବାର ପଡ଼ିଥିବାରୁ ବିସର୍ଜନ ହୋଇପାରିଲା ନାହିଁ। ଅଧ୍ୟୟନ କାର୍ଯ୍ୟରେ ଓ ଅଧ୍ୟାପନା କାର୍ଯ୍ୟରେ କିଛିତ୍ ବିଘ୍ନ ସୃଷ୍ଟି କରିଥିଲେ।

କୌଣସି କୌଣସି ସହରରେ ଗଣେଶଙ୍କ ମୂର୍ତ୍ତିକୁ ଯେ ଯୋଦ୍ଧା ବେଶରେ ଗଢ଼ାଯାଇଥିଲା। ସେ ମୂଷିକାସୁର ନାମକ ଦୁର୍ଦ୍ଧାନ୍ତ ରାକ୍ଷସ ସଙ୍ଗେ ଯୁଦ୍ଧ କରୁଥିଲେ। ଏବଂ ତାଙ୍କ ନିକଟରେ ଜଣେ ସୁନ୍ଦରୀ ସ୍ତ୍ରୀଲୋକର ମୂର୍ତ୍ତି ମଧ୍ୟ ଠିଆ ହୋଇଥିଲା। ସେ କିଏ ବା କାହାର ପତ୍ନୀ ତାହା ବୁଝାପଡୁ ନ ଥିଲା। ଆଉ କେଉଁଠି ଗଣେଶ ଗୋଟିଏ ପଞ୍ଚାୟତଦପ୍ତର ମୂଷିକ ଉପରେ ବସି ବର୍ଚ୍ଛାଟିଏ ଧରି କୁଆଡ଼େ ଧାଉଁଥିବାର ଦେଖାଯାଉଥିଲା। କୌଣସି ଏକ ସ୍ଥାନରେ ଗଣେଶ ତାଙ୍କର ଦୁଇଟି ମନୋରମା ମଦାଳସୀ ଭାର୍ଯ୍ୟାଙ୍କ ସ୍କନ୍ଧରେ ହାତ ପକାଇ ଶୁଣ୍ଢଟିଏ ଉପରକୁ ଟେକି (ତାହା ତାଙ୍କ ପାଟିରେ ଦୂରକୁ ଧଳା ଚୁରୁଟଟିଏ ଭଳି ଦିଶୁଥିଲା) ମହା ଆନନ୍ଦରେ ଚାଲିଥିଲେ। ଆଉ ଠାଏ ଦେଖାଗଲା–ଆଧୁନିକ ସିନେମା ଷ୍ଟାର (ଯେତେଦୂର ସମ୍ଭବ, ହେମାମାଳିନୀ। ରୂପ ଓ ଭଙ୍ଗୀର ସ୍ୱୟଂ ଗଣେଶ ଜନନୀ ପାର୍ବତୀ ହିମାଳୟ ଉପରେ ଏକ ବିରାଟ ପଦ୍ମଫୁଲର ଶଯ୍ୟାରେ ଶୟିତା ଏବଂ ତାଙ୍କ କୋଳରେ ଶିଶୁ ଗଣେଶଟିଏ ବସି ରାଶିଲଡୁ ଖାଉଛନ୍ତି। ଆଉ କେତେକ ସ୍ଥାନରେ ଗଣେଶ ତାଙ୍କ ପିତା ମହାଦେବଙ୍କ ସଙ୍ଗେ ଯୁଦ୍ଧରତ ଥିବାର ଦେଖାଯାଉଥିଲା। ବିଭିନ୍ନ ସ୍ଥାନରେ ଗଣେଶଙ୍କ ଦେହର ରଙ୍ଗ ବିଭିନ୍ନ ଥିଲା। ମାଟିବର୍ଣ୍ଣର ଗଣେଶ ଓ ଧଳା ଗଣେଶଙ୍କ ସଂଖ୍ୟାଥିଲା କିନ୍ତୁ ଅଧିକ। କେତେକ ବ୍ୟବସାୟୀ ପ୍ରତିଷ୍ଠାନ ତରଫରୁ ନାଲି ଗଣେଶମାନ ଲମ୍ବୋଦର ଦେଖାଇ ବଡ଼ ଶାନ୍ତ, ନିରୂପ ଦ୍ରବ ଓ ଆରାମରେ ବସି ଥାଳିଭରା ରାଶିଲଡୁ ଭକ୍ଷଣ କରୁଥିଲେ। କିନ୍ତୁ ସର୍ବତ୍ର ମାଇକ ଯୋଗେ ଅହୋରାତ୍ର ଗଣେଶଙ୍କୁ ଓ ତାଙ୍କର ଦର୍ଶକ, ଭକ୍ତ ଏବଂ ତାଙ୍କର ବିପକ୍ଷମାନଙ୍କୁ (ଯଥା:–ମୁସଲମାନ ଓ ଖ୍ରୀଷ୍ଟିଆନ ସଂପ୍ରଦାୟ) ମଧ୍ୟ ସିନେମା ଗୀତ ଶୁଣାଇ ଖୁସୀ ବା ବିରକ୍ତ କରିବାର ସୁବନ୍ଦୋବସ୍ତ ହୋଇଥିଲା।

ଗୋଟିଏ ଜାଗାରେ କିଛିତ୍ ଦୀର୍ଘ ଓ ବେଶ୍ ହୃଷ୍ଟପୁଷ୍ଟ ଶୁଭ୍ରବର୍ଣ୍ଣର ଗଣେଶ ଛଅଦିନ ଧରି ଅହୋରାତ୍ର ନଟୁପରି ଅଥଚ ଧୀରଭାବେ ଚତୁର୍ଦ୍ଦିଗକୁ ଘୂରି ଘୂରି ସମସ୍ତଙ୍କୁ ଅଭୟହସ୍ତ ପ୍ରଦର୍ଶନ କରି ଜଣାଉଥିଲେ–'ହେ ଭକ୍ତ ଓ ଦର୍ଶକଗଣ! ଯାହା ମନକୁ ଆସୁଛି ତାହା କରିଯାଅ। ଆମ୍ଭେ ତୁମ୍ଭର ସମସ୍ତ ବିଘ୍ନ ବିନାଶ କରିବୁ। ଭୟ କର ନାହିଁ।

ମଫସଲମାନଙ୍କରେ ଠାଏ ଠାଏ ରାତିରେ ଯାତ୍ରା ଓ ଥିଏଟର ହେଉଥିଲା। ଏବଂ ସହରମାନଙ୍କରେ ବି ଠାଏ ଠାଏ ବ୍ୟବସାୟ ପ୍ରତିଷ୍ଠାନମାନେ ପାଲା ବା ଦାସକାଠିଆ ଅନୁଷ୍ଠାନ କରିଥିଲେ। ସହରମାନଙ୍କରେ ଗଣେଶ ମେଢ଼ ଓ ସାଜସଜ୍ଜା ଦେଖିବାଲାଗି ଆବାଳବୃଦ୍ଧବନିତା ରାତି ଦଶଟା ଏଗାରଟା ପର୍ଯ୍ୟନ୍ତ ରାସ୍ତାମାନଙ୍କରେ

ଗହଳି କରୁଥିଲେ। ପ୍ରତି ସାହିରେ ଏକାଧିକ (ତିନି କି ଚାରି) ଗଣେଶ ପୂଜାପାଇଁ ଚାନ୍ଦା ଦେଇ ଦେଇ ଗୃହସ୍ଥମାନେ ଏ ମହର୍ଘକାଳରେ ବଡ଼ ସନ୍ତପ୍ତ ହେଉଥିଲେ। ମାତ୍ର ଗଣେଶ ଭକ୍ତ ଯୁବକମାନଙ୍କୁ ତରିମରି ଚାନ୍ଦା ଦେବାକୁ ବାଧ ହୋଇଗଲେ।

ସେ ଯାହାହେଉ, ଅଧିକାଂଶ ଗଣେଶ ୩-୪ ଦିନ ପରେ ବିସର୍ଜିତ ହୋଇ ଟ୍ରକ୍‌ମାନଙ୍କରେ ବସି ବିସର୍ଜକମାନଙ୍କ ହୁଲ୍ଲା ହୁପ୍‌ପା, ହିପ୍ ହିପ୍ ହୁରରେ ନାଦ ସହ ପ୍ରମତ୍ତ ଟୁଇଷ୍ଟନାଚ ଭିତରେ ନିକଟସ୍ଥ ନଦୀ ବା ପୁଷ୍କରିଣୀ ଜଳରେ ନିମଜ୍ଜିତ ହେଲେ। ମାତ୍ର ଅଦ୍ୟାପି ମଧ୍ୟ ଅନେକ ସ୍ଥଳରେ ଗଣେଶଙ୍କୁ ନିଜ ଆସ୍ଥାନରୁ ବିଚ୍ୟୁତ କରାଯାଉ ନାହିଁ। ତାଙ୍କ ପାଖେ ଏବେ ମଧ୍ୟ ଅହୋରାତ୍ର ମାଇକ୍ ବାଜୁଛି ଓ ଗଣେଷଭକ୍ତ ଯୁବକମାନେ ତାଙ୍କ ପାଖରେ କେହି ବେଞ୍ଚ ଉପରେ, କେହି ବା ଭୂମି ଉପରେ, କେହି ପୁଣି ଅର୍ଦ୍ଧେକ ଦେହ ଚଉକୀ ଉପରେ ରଖି ଓ ଅପରାର୍ଦ୍ଧକୁ ଭୂମିରେ ପାତିତ କରି ସକାଳ ନଅଟା ପର୍ଯ୍ୟନ୍ତ ନିଘୋଡ଼ ନିଦରେ ଲାଳବାହିତ ମୁଖରେ ଭୟଙ୍କର ଘୁଙ୍ଗୁଡ଼ି ନାଦ ପୂର୍ବକ ଅଚେତ ପ୍ରାୟ ଶୟନ କରିବାର ଦେଖାଯାଉଛି।...

ହିନ୍ଦୁଧର୍ମରେ ଗଣେଶଙ୍କ ସ୍ଥାନ ଅତି ଉଚ୍ଚରେ। ସେ ହେଉଛନ୍ତି—ସିଦ୍ଧି, ଋଦ୍ଧି ଓ ଜ୍ଞାନର ଦେବତା। ସେ ମଧ୍ୟ ବିଘ୍ନ-ବିନାଶନ ଓ ଗଣପତି। ସେ ସ୍ୱୟଂ ନାରାୟଣ ବିଷ୍ଣୁଙ୍କର ପ୍ରତିରୂପ। ହିନ୍ଦୁମାନଙ୍କର ନିତ୍ୟଆରାଧ୍ୟ ପଞ୍ଚଦେବତା (ଗଣେ,ନାରୟଣେ, ରୁଦ୍ରେ, ଅମ୍ବିକେ, ଭାସ୍କରେତ୍ତଥା)ଙ୍କ ମଧ୍ୟରେ ସେ ଅଗ୍ରଗଣ୍ୟ। ଏହି ପଞ୍ଚ ଦେବତା ପୁଣି ଏକ ଅଦ୍ୱୟ ତତ୍ତ୍ୱ। ଏମାନଙ୍କ ଭିତରେ 'ଭିନ୍ନାଭିନ୍ନଂ ନ କର୍ତ୍ତବ୍ୟଂ।' ସମସ୍ତ ଶୁଭକାର୍ଯ୍ୟରେ ଶୁଭାନୁକୂଳରେ ଗଣେଶଙ୍କୁ ହିଁ ଆଗ ଆବାହନ ଓ ପୂଜା କରାଯାଏ। ଗଣେଶ ହେଉଛନ୍ତି ବେଦଙ୍କ ବେଦବର। ମହାରାଷ୍ଟ୍ରରେ ଓ ଦକ୍ଷିଣ ଭାରତରେ ଗଣେଶଙ୍କୁ ଅତିମାନ୍ୟରେ ପୂଜା କରାଯାଏ। ଗଣେଶଙ୍କ ଉପାସକମାନଙ୍କୁ 'ଗାଣପତ୍ୟ' ଶାଖା ବୋଲାଯାଏ। ଆମ ଓଡ଼ିଶାରେ ମହାବିନାୟକ ଏକ ଗାଣପତ୍ୟ ତୀର୍ଥକ୍ଷେତ୍ର।ଏବଂ ଆମର ପ୍ରତିଟି ସହରରେ ଓ ଜିଲ୍ଲାରେ ଗଣେଶ ପୂଜା ଖୁବ୍ ନୀତିନିୟମ ପରମ୍ପରାରେ ଓ ବୈଦିକ ରୀତିରେ ଅନୁଷ୍ଠିତ ହୋଇଥାଏ। ଶ୍ରୀ ଜଗନ୍ନାଥ ସ୍ୱୟଂ ବର୍ଷକେ ଥରେ ଗଣେଶବେଶ ହୁଅନ୍ତି।

କିନ୍ତୁ ଏବଂବିଧ ଦେବତାଙ୍କୁ ନେଇ ଆମେ ବର୍ତ୍ତମାନ ଯେଉଁ ପୂଜା ପ୍ରହସନ କରି ଚାଲିଛୁ—ସେଥିରେ ବିଚରା ଗଣେଶଙ୍କ ଅବସ୍ଥା ବଡ଼ ଶୋଚନୀୟ ହୋଇ ଗଲାଣି। ଜ୍ଞାନର ଅଧିପତି ଦେବତାଙ୍କୁ ଆମେ କି ଅଜ୍ଞାନ ତାମସିକ ଭାବରେ ବ୍ୟବହାର କରୁଛୁ? ଏସବୁ ଦେଖିଲେ ମନେହୁଏ—ବର୍ତ୍ତମାନ ହିନ୍ଦୁଧର୍ମର କେହି ଆଉ ମା' ବାପ ନାହାନ୍ତି। କେହି ମଧ୍ୟ କର୍ତ୍ତା ବା ଆପ୍ତା ବା ଅନୁମନ୍ତା ନାହାନ୍ତି। ଏ ଧର୍ମର ବୋଧହୁଏ କିଛି ନୀତିନିୟମ ନାହିଁ। କିଛି ଶୁଦ୍ଧ ଆଚରଣ ବିଧି ନାହିଁ। ଏହା କଣ ହିନ୍ଦୁଧର୍ମର ଶେଷ ଅବକ୍ଷୟର ସୂଚନା କି?



# ଦେଖ ଉଡୁଛିରେ....
# ନୀଳାଚଳପୁରେ ବାନା !

୧୧।୨।୮୨

ଭୁବନେଶ୍ୱର ସନ୍ନିକଟ ଐତିହାସିକ ଖଣ୍ଡଗିରିରେ ଗଲା ମାଘ ଶୁକ୍ଳ ସପ୍ତମୀ ଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ମେଳାଟିଏ ବସେ। ଏହି ମେଳାକୁ ଅନ୍ତତଃ ଶହେ କିଲୋମିଟର ଦିଗବିସ୍ତାରି ଗାଁ ଗଣ୍ଡାରୁ ହଜାର ହଜାର ଯାତ୍ରୀ ଆସନ୍ତି। ଏ ମେଳା ଚାଲି ଆସିଛି କେଜାଣି କେଉଁ କାଳରୁ କିଏ କହିବ? ଏ ମେଳାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଧାର୍ମିକତା। ଖଣ୍ଡଗିରି-ଉଦୟଗିରିର ଗୁମ୍ଫାମାନଙ୍କ ଭିତରେ କାହିଁ କାହିଁ ଅଞ୍ଚଳରୁ ସାଧୁ-ଯୋଗୀସନ୍ଥ ବୈଷ୍ଣବମାନେ ଆସି ଜମା ହୋଇଯା'ନ୍ତି। କିଏ ଶାକ୍ତ, କିଏ ଶୈବ, କିଏ ଜୈନ, କିଏ ବୌଦ୍ଧ, କେହି କୁମ୍ଭୀପଟି, କେହି ରାମାନନ୍ଦୀ ବୈଷ୍ଣବ ତ କେହି କୃଷ୍ଣପ୍ରେମୀ ବୈଷ୍ଣବ। କେହି ନିରାକାରୀ ଶୂନ୍ୟବାଦୀ ତ କେହି ବ୍ରହ୍ମବାଦୀ ବେଦାନ୍ତୀ। ବହୁ ପୂର୍ବେ ଭାରତ ବର୍ଷର ବିଭିନ୍ନ ଅଞ୍ଚଳରୁ ଏବଂବିଧ ସାଧୁମାନେ ଆସି ଏଠାରେ ଗୁଂଫା ଦ୍ୱାରରେ ଧୂନି ଲଗାଉଥିଲେ। ନିଜ ନିଜର ମତବାଦ ପ୍ରଚାର କରୁଥିଲେ।

ଏମାନଙ୍କ ସହିତ ପୁଣି ଆସି ମିଶୁଥିଲେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ବିଭିନ୍ନ ସଂପ୍ରଦାୟର ସାଧୁ-ସନ୍ଥମାନେ। ପ୍ରାଚୀକୂଳର ବିଭିନ୍ନ ମଠମାନଙ୍କରୁ ଶୂନ୍ୟବାଦୀ ପିଣ୍ଡବ୍ରହ୍ମାଣ୍ଡବାଦୀମାନେ ଖଞ୍ଜଣି ଧରି ଆସି ଏଠି ଶୂନ୍ୟଭଜନ କରୁଥିଲେ—"ଆସ କିଏ ଦେଖିବ ହୋ, ଶୂନ୍ୟମଣ୍ଡଳେ ରାହାସ।" ଆଉ ମଧ ଆସୁଥିଲେ ରାଜଯୋଗୀ ଓଡ଼ିଆ ସନ୍ୟାସୀମାନେ—ଖଞ୍ଜଣୀ ବା ଗିନି ଧରି ଉଚ୍ଚକିତ ସ୍ୱରରେ ଗାଉଥିଲେ—"ମନ କହୁଛି ରେ ବସି ହଂସକୁ ଖେଳା—ହଂସ ଉଡ଼ିଗଲେ, ହଂସ ଉଡ଼ିଗଲେ, ହଂସ ଉଡ଼ିଗଲେ ବୁଡ଼ିବ ଭେଳା।" ଆଉ ମଧ ଆସୁଥିଲେ ଜଗନ୍ନାଥଙ୍କ ଉପାସକ ସନ୍ୟାସୀମାନେ ଭଜନ ଗାଉଥିଲେ—"ଜଗନ୍ନାଥ ହୋ ! କିଛି ମାଗୁନାହିଁ ତୋତେ।" ନିକଟସ୍ଥ ଗାଁ-ଗଣ୍ଡାରୁ ଦକ୍ଷିଣୀକୀର୍ତ୍ତନୀୟାମାନେ ବଡ଼ ବଡ଼ ଝାଞ୍ଜ ମୃଦଙ୍ଗ ବଜାଇ ବଙ୍ଗଳା ଓଡ଼ିଆ ମିଶା ରାଧାକୃଷ୍ଣ ରସ-କୀର୍ତ୍ତନ ଗାଉଥିଲେ—"ଏକ ଦିନେ କୃଷ୍ଣଚନ୍ଦ୍ର ବୃନ୍ଦାବନେ ଗେଲ—ବିରହ

ବାଂଶରୀ ଲୟା ବଜାଇ ଲାଗିଲ।'' ଠାଏ ଠାଏ ଦୀପଗୁଛାକୁ ଆଗରେ ରଖି ପୋଥି ଧରି କେହି ସୁଲଳିତ କଣ୍ଠରେ ଭାଗବତ ଗାଉଥିଲେ—''ଆଶ୍ରମ ନାମ ବଦରିକା–ଉଦ୍ଧବ ଚଳ ତହିଁ ଏକା।''

ଖଣ୍ଡଗିରି ବନଭୂମି ଏଇସବୁ ବିଭିନ୍ନ ଭଜନ, କୀର୍ତ୍ତନ ଓ ଖଞ୍ଜଣି ଝାଞ୍ଜ ମୃଦଙ୍ଗ ମାଡ଼ରେ କମ୍ପି ଉଠୁଥିଲା। ଗୁମ୍ଫାମାନଙ୍କୁ ଘେରି ଶହ ଶହ ନରନାରୀ, ବାଳକ-ବାଳିକା ବସି ସାଧୁ ସନ୍ୟାସୀମାନଙ୍କ ପ୍ରବଚନ ଶୁଣୁଥିଲେ। ଭଜନ କୀର୍ତ୍ତନରେ ଭାଗ ନେଉଥିଲେ। ତା' ସହିତ ଗଞ୍ଜେଇ ଧୂଆଁରେ ଚତୁର୍ଦ୍ଦିଗ ପୂରି ଯାଉଥିଲା। ଉଦୟଗିରିର ବାରଭୁଜି ଠାକୁରାଣୀଙ୍କ ପାଖରେ ପୂଜାଧିକାର ଧୂମ୍ ଲାଗୁଥିଲା। ଉଦୟଗିରି ପାହାଡ଼ର ତୃତୀୟ ଶିଖର ବଉଳଗଛ ମୂଳେ ମହାଯଜ୍ଞ ଅନୁଷ୍ଠିତ ହେଉଥିଲା। ମହଣ ମହଣ ଘିଅ ଆହୁତି ଦିଆଯାଉଥିଲା। ଏଣେ ଖଣ୍ଡଗିରିର ନିମ୍ନଦେଶରେ ଅରକ୍ଷିତ ଦାସଙ୍କ ଗାଦି ଚାରିପାଖେ ଅହୋରାତ୍ର ଧୂନି ଜଳୁଥିଲା। ଏବଂ ବହୁ ଦୀର୍ଘ ଜଟାଜୁଟମଣ୍ଡିତ ବିଭୂତିଭୂଷଣ ଧୂନିଆ ବାବାମାନେ ଗଞ୍ଜାଇ-ଧୂମ-ପ୍ରବାହ ଜନିତ ରକ୍ତିମ ଚକ୍ଷୁମାନ ଅର୍ଦ୍ଧବିସ୍ଫୋରିତ କରି ବସି ରହୁଥିଲେ ପଦ୍ମାସନରେ। ସେଠି ମଧ ଖଞ୍ଜଣି ମାଡ଼ରେ ଗିରିଗହ୍ୱରମାନ ପ୍ରକଂପିତ ହେଉଥିଲା।

ମୋ ପିଲାଦିନେ ଓ ମୋ ଯୁବା କାଳରେ ଅନ୍ତତଃ ୧୯୫୦-୫୧ ମସିହା ପର୍ଯ୍ୟନ୍ତ ଏ ଦୃଶ୍ୟ ଅବ୍ୟାହତ ଅଖଣ୍ଡ ଅବସ୍ଥାରେ ଥିଲା। ପିଲାଦିନେ ଗାଁରୁ ଶଗଡ଼ ଗାଡ଼ିରେ ବସି ବାପା-ମାଆ-ଭାଇ ଭଉଣୀଙ୍କ ସହିତ ଏଠାକୁ ଆସି ଦୁଇଦିନ ଦୁଇରାତି କଟାଇଛୁ। ପଥର ଥୋଇ ଗଛମୂଳେ ରୋଷେଇ କରି ଗୁମ୍ଫା ଭିତରେ ଶୋଇଛୁ। ଖଣ୍ଡଗିରିରେ ଖଣ୍ଡକ୍ଷୀରି ରାନ୍ଧି ଭୋଗ ଲଗାଇ ମହାନନ୍ଦରେ ହାପୁଡ଼ିଛୁ। କଥିତ ଅଛି—ଏଠାରେ ସପ୍ତମୀଠାରୁ ପୂର୍ଣ୍ଣିମା ଭିତରେ ଯେ କୌଣସି ଦିନ(ବିଶେଷତଃ ପୂର୍ଣ୍ଣିମା ଦିନ) କ୍ଷୀରି ରାନ୍ଧି ଭୋଗ ଲଗାଇ ସେବନ କଲେ ବର୍ଷଯାକ ଅଖଣ୍ଡ ସ୍ୱାସ୍ଥ୍ୟ ନିଖୁଣ ରହେ। ପରମାୟୁ ବୃଦ୍ଧି ପ୍ରାପ୍ତ ହୁଏ। କ୍ଷୀରି ରାନ୍ଧି ସାରି ପାହାଡ଼ ଉପରେ ମେଲା ରଖିଦେବାକୁ ହୁଏ। କଥିତ ଅଛି—ସେଇ କ୍ଷୀରି ହାଣ୍ଡିରେ ସୁଧାକର ଚନ୍ଦ୍ର କୃପାକରି ବିନ୍ଦୁଏ ଅମୃତ ଛିଞ୍ଚି ଦିଅନ୍ତି।

ଏବେ ବି ସେଠି ଲୋକ କ୍ଷୀରି ଭୋଗ କରନ୍ତି। ଏବେ ବି ଏଠି ସେଠି ବୁଲା ସାଧୁ-ସନ୍ୟାସୀମାନେ ଧୂନି ଜାଳି ବସୁଛନ୍ତି। କିନ୍ତୁ ପୂର୍ବରେ ସେ ପରିବେଶ ଆଉ ନାହିଁ। ସେ ଭଜନ କୀର୍ତ୍ତନ ଆଉ ନାହିଁ। ସେଇ ସବୁ ମହାଭାରତୀୟ ସାଧୁସନ୍ଥମାନେ ମଧ ଆଉ ଆସୁ ନାହାନ୍ତି। ବର୍ତ୍ତମାନ ମେଳାରେ ବହୁ ଦୋକାନ ବଜାର ବସିଛି ଏବଂ ସବୁ ଦୋକାନରେ ମାଇକ୍ ଲାଗିଛି ଓ ସବୁ ମାଇକ୍ ସ୍ନାୟୁଛିନ୍ନକାରୀ ବିକୃତ ସ୍ୱରରେ ସିନେମା ଗୀତ ସବୁ ରଡ଼ି ଛାଡୁଛନ୍ତି। ଖଣ୍ଡଗିରି ମେଳାର ସେହି ପ୍ରାଚୀନତା ସେହି ପୁରାଣ ଯୁଗସୁଲଭ ରହସ୍ୟମୟତା ଆଉନାହିଁ। ଗଛବୃକ୍ଷ ମଧ ଖୁବ୍ କମିଗଲାଣି।

ମେଳାଟି ମନେହେଉଛି ଭାଣ୍ଡ ବିଭାଣ୍ଡଙ୍କ ମେଳା । ମେଳାର ଆରମ୍ଭ ଓ ଶେଷରେ ଦୁଇଟି ନାମଯାଦା ଯାତ୍ରା ପାର୍ଟି ତମ୍ବୁ ପକାଇଛନ୍ତି । ପ୍ରତି ରାତିରେ ଟିକେଟ କିଣି ଶହ ଶହ ଲୋକ ରାତି ସାରା ଯାତ୍ରା ଦେଖୁଛନ୍ତି । ଭିଡ଼ ହେଉଛି ସେଇଥିପାଇଁ । ଏ ଯାତ୍ରାପାର୍ଟିରେ ପୁଣି କୁଆଡ଼େ ଅଭିନେତ୍ରୀମାନେ ଅଛନ୍ତି ଓ ସିନେମାଠାରୁ ଆହୁରି ବାସ୍ତବ ପ୍ରେମ ସ୍ୱାଙ୍ଗ ସେମାନେ ଦେଖାଇ ପାରୁଛନ୍ତି !

ଏ ମେଳାର ଅନ୍ୟତମ ବିଶେଷତ୍ୱ ହେଲା—କୃଷକମାନଙ୍କ ବ୍ୟବହାର ଉପଯୋଗୀ ବହୁ ଜିନିଷ ଏଠି ବିକ୍ରୀ ହୁଏ । କୁଲା, ଟୋକେଇ, ଓଦରଠାରୁ ଆରମ୍ଭ କରି ଶଗଡ଼ ଲଙ୍ଗଳ, ମଇ ପର୍ଯ୍ୟନ୍ତ । କବାଟ ଝରକା ମଧ୍ୟ ବିକ୍ରୀ ହୁଏ । ଶିଳ ଚକି ଓ ଲୁହା ଜିନିଷ ମଧ୍ୟ ବିକ୍ରୀ ହୁଏ ।

ତେବେ ମୋଟାମୋଟି ଖଣ୍ଡଗିରି ମେଳାକୁ ଏଇ ସାତ ଦିନ ଭିତରେ ଥରେ ଅନ୍ତତଃ ରାତିରେ ଆସି ବୁଲିଯିବା ଉଚିତ । ଚନ୍ଦ୍ରକିରଣରେ ଓ ଲୋକ ସମାଗମରେ ଜାଗାଟି ରାତିରେ ବେଶ୍ ଜମି ଉଠେ ।

ଏ ବର୍ଷ ଦ୍ୱାଦଶୀ ଦିନ ମୁଁ ସେ ମେଳାକୁ ଯାଇଥିଲି । ସେତେବେଳକୁ ସନ୍ଧ୍ୟା ହୋଇ ନଥିଲା; କିନ୍ତୁ ବହୁ ଜନଗହଳି ହୋଇଥିଲା । କେତେକ ଟୁରିଷ୍ଟ ବସ ମଧ୍ୟ ବହୁତ ଭିଡ଼ କରିଥିଲେ । ଭାରତର ବିଭିନ୍ନ ପ୍ରାନ୍ତରୁ ନରନାରୀମାନେ ମେଳାରେ ବୁଲି ଓ ପାହାଡ଼ମାନଙ୍କରେ ବୁଲି ମେଳାଟିକୁ ସାମାନ୍ୟ ସର୍ବଭାରତୀୟ ରଙ୍ଗ ଓ ରସରେ ଅନୁରଞ୍ଜିତ କରିଥିଲେ ।

ଚାରିଆଡ଼େ ସହସ୍ରେ ମାଇକ୍ ଘଷରା ରେକର୍ଡ଼ ବଜାଇ ସିନେମା ସଙ୍ଗୀତର ମହାକୋଳାହଳ ସୃଷ୍ଟି କରି ଚାଲିଥିଲେ । ସେଇ କୋଳାହଳ ଏତେ ସ୍ନାୟୁପ୍ରଦାହକ ଓ ହୃଦୟଶୂଳକ ଥିଲା ଯେ ଚା' ଭିତରେ କେହି କିଛି କାହା କଥା ଶୁଣି ତ ପାରୁ ନଥିଲେ—ସେହି କୋଳାହଳ ଫଳରେ କାହାକୁ କିଛି ଦେଖାଯିବା ମଧ୍ୟ ସମ୍ଭବ ନ ଥିଲା । ସମସ୍ତେ କେବଳ ଚଳପ୍ରଚଳ ହେଉଥିଲେ ନିର୍ବାକ ଚଳଚ୍ଚିତ୍ର ପରି ।

ଏହି ଯନ୍ତ୍ରଣାରୁ ମୁକ୍ତି ପାଇବା ପାଇଁ ମୁଁ ଖଣ୍ଡଗିରି ତଳ ଦେଶରେ ଅବସ୍ଥିତ ସନ୍ଥ ଅରକ୍ଷିତ ଦାସଙ୍କ ମଠ ପାଖକୁ ଗଲି । ମଠ ଭିତରେ ଛୋଟ ମାଇକ୍‌ଟିରେ ଭାସି ଆସୁଥାଏ ଗ୍ରାମ୍ୟଲୋକଙ୍କ କଣ୍ଠରୁ ଜଗନ୍ନାଥ ଭଜନଟିଏ । ମାତ୍ର ତାହା ଶୂନ୍ୟବାଦ ଜ୍ଞାନଯୋଗ ଓ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱକୁ ଅବଲମ୍ବନ କରି ରଚିତ ହୋଇଥାଏ । ମଠ ଭିତରୁ ସାଧୁମାନଙ୍କ ମୁଖ ଓ ନାସିକା-ନିଃସୃତ ଗଞ୍ଜେଇ ଧୂଆଁ ମଧ୍ୟ ପଦାକୁ ଭାସି ଆସୁଥାଏ । କିନ୍ତୁ ଭଜନଟି ଥିଲା ଖୁବ୍ ପ୍ରଭାବଶାଳୀ ଓ ଶ୍ରୁତିମଧୁର । ମୁଁ କାନ ଡେରିଲି—ଭଜନଟିର ପ୍ରଥମ ପଦଟି ବାରମ୍ବାର ଘୋଷାରେ ଆସୁଥାଏ ।

—ଦେଖ ଉଡ଼ୁଛି ରେ...
ନୀଳାଚଳ ପୁରେ ବାନା ॥

ଗ୍ରାମ୍ୟ ଅଶିକ୍ଷିତ ଗଞ୍ଜାଇନିଶା ପ୍ରମତ୍ତ ଅଥଚ କୃଷିଜୀବୀ ସରଳ ଓଡ଼ିଆମାନଙ୍କ କଣ୍ଠରେ ଏଇ ଭଜନଟି ହଠାତ୍ ମୋର କାନ ଭିତରେ ଦେଇ ମର୍ମକୁ ପଶିଗଲା। ଭଜନଟିର ଅବଶିଷ୍ଟ କାବ୍ୟଗୁଡ଼ିକ ଭିତରେ ଥିଲା ପିଣ୍ଡବ୍ରହ୍ମାଣ୍ଡ ଦର୍ଶନ ଆଧାରିତ ଆତ୍ମଜ୍ଞାନ। ରୂପକ ଓ ପ୍ରତୀକ ଭାବେ ବାନା ଉଡୁଛି। ନୀଳାଚଳପୁର ହେଲା ସହସ୍ରାର ଭିତରେ ଥିବା ସମୁଚ୍ଚ ଜ୍ୟୋତିର୍ମୟ ଭୂମି। ତାରି ଭିତରେ ରହିଛି ମଣିମୟ ରତ୍ନମଣ୍ଡପ ଓ ଚତୁର୍ଦ୍ଧାମୂର୍ତ୍ତି। ଜ୍ୟୋତିର୍ମୟ ଭୂମିର ଶିଖର ଦେଶରେ ଉଡୁଛି ମୁକ୍ତି ବା ମୋକ୍ଷ ବା ସିଦ୍ଧିର ପତାକା। ତାକୁ ଚମ ଆଖିରେ କେହି ଦେଖି ପାରିବେନି। ଅନ୍ତର୍ଦୃଷ୍ଟି ନ ଖୋଲିଲେ—କୁଣ୍ଡଳିନୀ ଜାଗ୍ରତ ନ ହେଲେ—ଷଡ଼ଚକ୍ର ନ ଭେଦିଲେ—ନିଃଶ୍ୱାସ ଉଜାଣି ନ ବୁହାଇଲେ ସେ ବାନା ଉଡ଼ିବ ନାହିଁ।

ଏସବୁ ଠିକ୍ ଅଛି। ଭାଷା ଓ ଭାବ ଠିକ୍ ଅଛି। ରୂପକ ଓ ପ୍ରତୀକ ମଧ୍ୟ ଠିକ୍ ଅଛି। ମତେ ଲାଗିଲା—ଓଡ଼ିଆ ଜାତିର ଯୁଗ ଯୁଗ ଧରି ଆତ୍ମାର ଅଭିଳାଷ ଏତିକି ଆଉ ଏହା ହିଁ ପିଣ୍ଡ ଭିତରେ ବ୍ରହ୍ମାଣ୍ଡକୁ ଦେଖ। ଯାହା ପିଣ୍ଡ ତାହା ବ୍ରହ୍ମାଣ୍ଡ ବୋଲି ମନେକର। ଜଗନ୍ନାଥ ମନ୍ଦିର ଶ୍ରୀକ୍ଷେତ୍ର—ନୀଳଚକ୍ର—ପତିତପାବନ ବାନା ଓ ସ୍ୱୟଂ ଚତୁର୍ଦ୍ଧାମୂର୍ତ୍ତି କେବଳ ବାହାରେ ସ୍ଥୂଳ ଭାବରେ ନାହାନ୍ତି—ସବୁ ରହିଛି ସୂକ୍ଷ୍ମରୂପେ ଆମ ଅନ୍ତର ଭିତରେ।

ହଠାତ୍ ମନରେ ଗୋଟାଏ ବିଶାଳ ଓ ପ୍ରବଳ ଅନୁଭବ ହେଲା। ସତେ କି ଏଇ ଖଣ୍ଡଗିରି ମେଳା ଭିତରେ ଅରକ୍ଷିତ ଦାସଙ୍କ ମଠ ପାଖେ ଗ୍ରାମ୍ୟ ଓଡ଼ିଆ କୃଷକଙ୍କର ଗଞ୍ଜୋଡ଼ କଣ୍ଠରେ ଖଞ୍ଜଣି ମାଡ଼ ଭିତରେ ଓ ଏଇ ଭଜନଟି ଭିତରେ ହଜାର ହଜାର ବର୍ଷର ଓଡ଼ିଆ ଆତ୍ମାର ବାଣୀ ଯେତେ ଅସଷ୍ଟ ହେଲେ ବି ଅନୁପ୍ରାଣିତ ହୋଇ ଉଠୁଛି, ଉଠୁଥିଲା।

ଏବଂ ତାରି ଭିତରେ ମୋ ଆଖି ଆଗରେ ଭାସିଉଠିଲା—ଜଗନ୍ନାଥ ସଡ଼କ ଉପରୁ ସମାଗରାପାଟ ଆରପଟେ ବିସ୍ତୃତ ଦିଗ୍‌ବଳୟକୁ ମହିମାନ୍ୱିତ କରି ଆକାଶକୁ ଭେଦି ରହିଥିବା ସେହି ଗରିମାମୟ ବଡ଼ ଦେଉଳଟି—ଯାହାର ନୀଳଚକ୍ର ଉପରେ ଅହୋରାତ୍ର ଅନୁବ୍ରତେ ସୈନ୍ଧବ ପବନରେ ଆନ୍ଦୋଳିତ—ହୋଇ ଫରଫର ହୋଇ ଉଡୁଛି ପତିତପାବନ ବାନା "ଦେଖ ଉଡୁଛିରେ...ନୀଳାଚଳପୁରେ ବାନା !"

ଏଇ ବାନା ଯେତେଦିନ ପର୍ଯ୍ୟନ୍ତ ଏହିପରି ମହିମାନ୍ୱିତ ଭାବେ ବଡ଼ ଦେଉଳ ଉପରେ ଉଡୁଥିବ—ଓଡ଼ିଆ ଜାତି ସେ ପର୍ଯ୍ୟନ୍ତ ତାର ଜାତୀୟ ଆତ୍ମାର ଗୌରବ ଓ ପବିତ୍ରତାକୁ ଧରି ବଞ୍ଚି ରହିଥିବ।

ଜଗନ୍ନାଥେ। ତୁମ ବଡ଼ ଦେଉଳର ନୀଳଚକ୍ର ଉପରେ ଫରଫର ହୋଇ ବାନା ଉଡୁଥାଉ ଅନନ୍ତକାଳ ପର୍ଯ୍ୟନ୍ତେ।ଓଡ଼ିଆ ଜାତିର ଜୟ ହେଉ।

# ଗାଁ-ଗହଳର ବିପନ୍ନ ଆତ୍ମା

୧୮।୩।୮୦

ସକାଳ ପ୍ରହର। ଗାଧୋଇ ସାରି ବଗିଚାରୁ ଫୁଲ ତୋଳୁଥିଲି ପୂଜା ପାଇଁ। ଚାରିଆଡ଼େ ଘନ କୁହୁଡ଼ି। ଢାଙ୍କେରିଆ ଗରମ ଗୁମ୍‌ସୁମ୍ ପାଗ। ଗୁଡ଼ାଏ କୁଆ କୋଉ ଉଦ୍ଦେଶ୍ୟରେ କେଜାଣି ସକାଳଟାରୁ ମେଳି ବାନ୍ଧି ଗୋଟାଏ ଗଛରେ ବସି ବିକଟ ସ୍ୱରରେ କା' କା' କରୁଛନ୍ତି। ଗତକାଲି ରାତିରେ ଦୁର୍ଘଟଣାଟିଏ ଘଟିଥିଲା—ସହରତଳି ଛକ ଜାଗାରେ। ଗୋଟିଏ ଟ୍ରକ ସହିତ ବାହା ହୋଇ ଫେରୁଥିବା ବରକନ୍ୟାଙ୍କ କାରର ମାରାତ୍ମକ ସଂଘର୍ଷ। କନ୍ୟାଟିର ବିଶେଷ କିଛି କ୍ଷତି ହୋଇନି—କିନ୍ତୁ ବର ସମେତ ଅନ୍ୟମାନଙ୍କର ଅବସ୍ଥା ସାଙ୍ଘାତିକ। ଅଳ୍ପଦିନ ତଳେ ଜଣେ ପଡ଼ୋଶୀ ପଦସ୍ଥ କର୍ମଚାରୀଙ୍କ ପତ୍ନୀଙ୍କୁ ତାଙ୍କର ପିଅନ ପଗ ପଗ କରି ହତ୍ୟା କରି ଥିବାର ବୀଭତ୍ସ ଘଟଣାର ଆତଙ୍କପ୍ରଦ ବିଷର୍ଣ୍ଣ ପ୍ରଭାବ ଏ ପର୍ଯ୍ୟନ୍ତ ବି ମନକୁ ଆଚ୍ଛନ୍ନ କରି ରଖିଛି। ମନେ ମନେ ଇଷ୍ଟଦେବଙ୍କୁ ସ୍ମରଣ କରି ଫୁଲ ତୋଳୁଛି – ହଠାତ୍ ସେହି କୁହୁଡ଼ି ଭିତରେ ମିନି ବସ୍‌ଟି ଆସି ମୋ ଫାଟକ ପାଖେ ବ୍ରେକ ଦେଲା ଓ ସାଙ୍ଗେ ସାଙ୍ଗେ ୨୪/୨୫ ବର୍ଷର ଝିଅଟିଏ ଫାଟକ ଭିତରକୁ ପଶିଆସି କହିଲା, ଆଜ୍ଞା! ଟିକେ ଚଞ୍ଚଳ ବସ ପାଖକୁ ଆସନ୍ତୁ। ମୁଁ ପଚାରିଲି କାହିଁକି? କ'ଣ ହେଲା? ଝିଅଟିର ଗୋରାମୁହଁ କଳା ପଡ଼ିଯାଇ ଥାଏ। ତାର ଆଖି ଦୁଇଟି ଫୁଲିଲା ପରି ଦିଶୁଥାଏ। ତାର କଣ୍ଠ ଆତଙ୍କରେ କାନ୍ଦ କାନ୍ଦ ଶୁଭୁଥାଏ। ସେ କହିଲା— ମୋ ବାପାଙ୍କ ମୁଣ୍ଡ ଫଟେଇ ଦେଇଛନ୍ତି, ହାତ ଭାଙ୍ଗି ଦେଇଛନ୍ତି। ସାଇ ଯାକର ଲୋକଙ୍କୁ ମାଡ଼ ହୋଇଛି। ସମସ୍ତେ ଅଛନ୍ତି ବସ ଭିତରେ। ଚଞ୍ଚଳ ଆସନ୍ତୁ। ସେମାନେ ଡାକୁଛନ୍ତି।

ମୁଁ ଆଉ କଥାବାର୍ତ୍ତା ନ କରି ଫୁଲଡ଼ାଲାଟି ବାରେଣ୍ଡାରେ ଥୋଇ ଦେଇ ବସ ପାଖକୁ ଗଲି ଓ ବସ ଭିତରକୁ ଉଠିଯା'ନ୍ତେ – ମୋ ଗାଁର ପ୍ରାୟ ୨୪/୨୫ ଜଣ ଲୋକ ଏକାବେଳକେ ହାଉକି ଖାଇ ଉଠିଲେ। ଆମକୁ ମାରି ପକେଇଲେ ଦେବବାବୁ! ଦେଖନ୍ତୁ ଆମ ଅବସ୍ଥା। ଚାହିଁ ଦେଖିଲେ – ଅଧିକାଂଶଙ୍କ ମୁଣ୍ଡ ଓ ହାତରେ ପ୍ରାଇମେରୀ ଏଡ଼ର ବ୍ୟାଣ୍ଡେଜ ବନ୍ଧା ହୋଇଛି ଓ ସମସ୍ତଙ୍କ ଲୁଗାପଟା ଜାମା ରକ୍ତରେ ଜୁଡୁବୁଡୁ। ସେମାନେ ମତେ ବଡ଼ ଡାକ୍ତରଖାନାକୁ ସାଙ୍ଗରେ ଯିବାକୁ

ଅନୁରୋଧ କଲେ ଏବଂ ଏସ.ପି. ଙ୍କ ସହ କଥାବାର୍ତ୍ତା କରିବାକୁ କହିଲେ। ମୁଁ ଅପେକ୍ଷାକୃତ ସୁସ୍ଥ ଲୋକଟିକୁ ଘଟଣାଟି ପଚାରିଲି। ସେ ଯାହା କହିଲେ, ତା' ହେଲା–

ଏ ବର୍ଷ ବଢ଼ିପାଣିରେ ତ ଧାନତକ ଧୋଇଗଲା। ଆମେ ଗହୀରରେ ରବିଫସଲ କଲୁ। ମୁଗ, କୋଳଥ, ବିରି। ମାତ୍ର ଗଉଡ଼ସାହିଆ ସବୁଦିନେ ଗୋରୁ ମହିଷି ଛାଡ଼ିଲେ ଗହୀରକୁ। ଆମେ କେତେ ଯିବୁ? ଗଉଡ଼ମାନଙ୍କୁ ଯେତେ ଅନୁରୋଧ କଲୁ – ଯେତେ ଧମକ ଦେଲୁ– ସେମାନେ କେହି ଆମ କଥା ଶୁଣିଲେ ନାହିଁ, ବରଂ ବେଶି ବେଶି ଗୋରୁ ମହିଷି ଗହୀରକୁ ଛାଡ଼ିଲେ ନିର୍ଭୟରେ। ଗହୀରରୁ ଅଧେ ରବିଫସଲ ତାଙ୍କ ଗୋରୁ ମହିଷିଙ୍କ ମୁହଁରେ ଗଲା। ଆମେ ସାହିବାଲା ମେଳବାନ୍ଧି ଦିନେ ଗହୀର ଜଗି ସେଇ ଗୋରୁମହିଷିମାନଙ୍କୁ କାଂଜିଆହୁଦାକୁ ନେବୁ ବୋଲି ଅଟେଇଲୁ। ଏହି ସମୟରେ ଗଉଡ଼ମାନେ ମେଳିବାନ୍ଧି ଆସି ବାଡ଼ି, କଟୁରୀ, ଖାବଳ ସହକାରେ ଆମକୁ ବାଡ଼େଇ ପକାଇଲେ। ତା'ଫଳରେ ଆମ ଅବସ୍ଥା ଏମିତି ହୋଇଛି।

ଏ କଥା ଶୁଣିସାରି ମୁଁ କହିଲି – ତୁମର ଏମ୍. ଏଲ. ଏ.ଙ୍କୁ କହିଲ ନାହିଁ? ସେମାନେ କହିଲେ – ଏମ.ଏଲ. ଏ. ତ ବିରୋଧୀ ଦଳର ଲୋକ। ତଥାପି ସେ ଆସି ଗଉଡ଼ଙ୍କୁ ଯେମିତି ବୁଝାଇ ବସିଲେ – ସେମାନେ ତାଙ୍କ କଥା ଶୁଣିବେ କଣ – ଓଲଟା ତାଙ୍କ ଉପରେ ଦୁଇପାହାର କଷିଦେଇ ତାଙ୍କୁ ଧମକାଇଲେ ତୁମେ ଏଠୁଁ ପଳାଅ। ନ ହେଲେ ତୁମକୁ ଶେଷ କରିଦେବୁ ଏଇଠି। ଏମ. ଏଲ. ଏ. ସେଠୁ ପୈତୃକ ପ୍ରାଣଟିକୁ ଧରି ପଳାଇଗଲେ ଓ ଥାନାରେ ଏତଲା ଦେଲେ।

ଏ କଥା ଶୁଣି ମୋର ମନ ଖୁବ୍ ତିକ୍ତ, ବିରକ୍ତ ଓ ବିଷାଦଗ୍ରସ୍ତ ହୋଇ ପଡ଼ିଲା। ମୁଁ ସେଇ ଲୋକମାନଙ୍କୁ ମୋ ପୁଅ ସହିତ ବଡ଼ ଡାକ୍ତରଖାନାକୁ ପଠାଇ ଦେଲି ଏବଂ ପରବର୍ତ୍ତୀ କାର୍ଯ୍ୟାନୁଷ୍ଠାନ ଲାଗି ମଧ୍ୟ ଆୟୋଜନ କରିଦେଲି।

ତା' ପରଦିନ ମୁଁ ଗଲି ଗ୍ରାମକୁ। ଗ୍ରାମରେ ପହଞ୍ଚି ମୁଁ ପ୍ରଥମେ ଗଉଡ଼ ସାହିରେ ଜଣେ ଭଦ୍ରବ୍ୟକ୍ତିଙ୍କୁ ଭେଟିଲି। ସେ ଜଣେ ମୋ ବୟସର ମଣିଷ ଓ ମୋର ବାଲ୍ୟବନ୍ଧୁ। ତାଙ୍କର ପୁଅ ଓ ଜୋଇଁ ଉଭୟେ ଭୁବନେଶ୍ୱରରେ ଚାକିରୀ କରନ୍ତି। ମୁଁ ତାଙ୍କୁ ଏ ବିଷୟଟି କହି ଖୁବ୍ ଦୁଃଖପ୍ରକାଶ କଲି ଓ ଏହା ବଡ଼ ଅଭାବିତ ଓ ଅନୁଚିତ କାର୍ଯ୍ୟ ହେଲା ବୋଲି ଦୃଢ଼ ଭାବରେ କହିଲି। କିନ୍ତୁ ମୋ କଥା ଶୁଣିସାରି ଦୀର୍ଘଶ୍ୱାସଟିଏ ପକାଇ କହିଲେ – କାହିଁକି ଆଉ ସେ କଥା କହୁଛ ଦେବବାବୁ? ଆଜିକାଲି କାଳ ଯାହା ହେଲାଣି – ଯେଝା ହାତରେ ଯେତେ ଭେଦ ପା'।

ଆମ ପିଲାଏ ଆଉ ଆମକଥା ଶୁଣୁଛନ୍ତି ନା, ତୁମ ପିଲାଏ ତୁମ କଥା ଶୁଣୁଛନ୍ତି? ସମସ୍ତେ ତ ନିଜକୁ ବଳପୂର୍ବା ଭାବିଲେ। ଧର୍ମାଧର୍ମ, ନ୍ୟାୟଅନ୍ୟାୟ, ବଡ଼ସାନ, ଭଲମନ୍ଦ କିଏ କଣ ବୁଝୁଛି? ସମସ୍ତେ ସବୁକଥା ଖାଲି ନିଜ ଆଡୁ ଭାବୁଛନ୍ତି।

ମୁଁ କହିଲି – କିନ୍ତୁ ଦେଖ? ଲୋକେ କେଡ଼େ କଷ୍ଟରେ ଗହୀରରେ ରବିଫସଲ କରିଛନ୍ତି – ପନିପରିବା କରୁଛନ୍ତି। ତୁମ ସାହିବାଲା ଯଦି ସେଠି ଗୋରୁ ମଇଁଷି ଚରେଇଦେବେ, ତେବେ ଫସଲ ହେବ କେମିତି?

ବେହେରା ବନ୍ଧୁଟି ସାଙ୍ଗେ ସାଙ୍ଗେ ପଚାରିଲେ – ତା'ହେଲେ ଆମ ଗୋରୁ ମଇଁଷି ଆଉ ଚରିବେ କେଉଁଠି? ସବୁ ଜମିତକ ତ ଚାଷଜମି ହେଲା। ଗାଁରେ ତ ଆଉ ଗୋଚର, ପଡ଼ିଆ ଦଣ୍ଡା, ନଟା ବୋଲି କିଛି କେହି ରଖିଲେ ନାହିଁ। ସମସ୍ତେ ତ ବଳପୂର୍ବା ହୋଇ ସବୁ ଚଷିଗଲେ – ଜମି କରିଗଲେ। ଜଙ୍ଗଲ ନଟା ବଣ ସବୁ କାଟିକୁଟି ସଫା କରିଦେଲେଣି। ସବୁ ହୋଇଗଲାଣି ଚାଷଜମି। ଆଉ ଯାହା ଯୋଉଠି କାଁଭାଁ ଜାଗା ଥିଲା – ପଡ଼ିଆମଡ଼ିଆ ହୋଇ – ତାକୁ ତ ସରକାର ଖଣ୍ଡ ଖଣ୍ଡ କରି ହରିଜନ ଓ ଭୂମିହୀନଙ୍କୁ ବାଣ୍ଟି ଦେଲେ। ଏଣେ ଘରେ ଘରେ ଜର୍ସି ଗାଇ ପୋଷା ହେଲାଣି। ବ୍ୟାଙ୍କରୁ ଋଣ କରି ଗାଇଗୋରୁ ନ ରଖିଲାବାଲା ବି ଗାଇଗୋରୁ ରଖିଲେଣି। ଆଉ ଆମେ ତ ସହଜେ ଗୋପାଳ! ଗୋରୁପାଳିବା ଆମ ବେଉସା। ଗୋରୁମଇଁଷି ନ ପାଳିଲେ ଚଳିବୁ କେମିତି? ସେହି ଗୋରୁ ମଇଁଷିଙ୍କ ମେଳରେ ଆମ ଜୀବନ କଟେ। କହନ୍ତି ନାହିଁ – 'ଘରେ ନ ରହନ୍ତି ଗଉଡ଼େ ବଡ଼ ଅଧମ ଜାତି, ଘେନି ବାଳବତ୍ସା ସଙ୍ଗେତ ବନେ ଭ୍ରମନ୍ତି ନିତି।' ଭଲା ଆଉ ବନ କାହିଁ ବା ପଡ଼ିଆ ଗୋଚର କାହିଁ? ଆମ ଗୋରୁମଇଁଷି ଚରିବେ କେଉଁଠି କହିଲ?

ଏ କଥାର ଉତ୍ତର ଦେବା ମୋ ପକ୍ଷରେ ସହଜ ନଥିଲା। କିନ୍ତୁ ମୋ ମୁଣ୍ଡ ଗୋଳମାଳ ଧରିଗଲା। ବର୍ଷକ ତଳେ ଭାଗଚାଷ ନେଇ ଓ ହରିଜନମାନଙ୍କର ଜବରଦସ୍ତି ଜମିଦଖଲ ନେଇ ଆମ ଗାଁର ସବର୍ଣ୍ଣ ଓ ହରିଜନଙ୍କ ଭିତରେ ମହା ଭୟଙ୍କର ଗୋଳମାଳ ହୋଇଥିଲା। ତାହା ଏ ପର୍ଯ୍ୟନ୍ତ ମଧ୍ୟ ତୁଟିନାହିଁ। ଦୁଇପକ୍ଷ ଭିତରେ ନିଆଁ ପୁଣି କୁହୁଳୁଛି। ଏବେ ପୁଣି ଗଉଡ଼ସାହି ସହିତ ଅନ୍ୟମାନଙ୍କର ଏପରି ଦଙ୍ଗାହେଙ୍ଗମା ଚାଲିଲାଣି। ଏହାପରେ କେସ ଚାଲିବ। ପୋଲିସ, ଓକିଲ, ହାକିମ, କଟକ ଦଉଡ଼ା, ଭୁବନେଶ୍ୱର ଦଉଡ଼ା। ସେଥିରେ ପୁଣି ରାଜନୀତିକ ନେତା, ଉପନେତା, ପାତିନେତାମାନେ ଥଣ୍ଡ ଗଳାଇ ଘଟଣାକୁ ଆହୁରି ସାଂଘାତିକ କରିଦେବେ। ମୋଟ ଉପରେ ଆମ ଗାଆଁର ଅବସ୍ଥା ଜାଣ ସରିଗଲା। ସବୁ ସାହିର ଲୋକେ ଏଣିକି ଅଶାନ୍ତି ଓ ହିଂସାଭାବରେ ଚଳପ୍ରଚଳ ହେବେ ଏବଂ ଆମ ଗାଁରୁ ଲକ୍ଷ୍ମୀ ଛାଡ଼ିଯିବେ।

ଖାଲି ଆମ ଗାଁ ନୁହେଁ, ଏମିତି ଏମିତି ରାଜ୍ୟର ଓ ଦେଶର ଗାଁ ଗାଁରେ ହିଂସା ଓ ଈର୍ଷାର ନିଆଁ ଜଳିଲାଣି। ଖବରକାଗଜରେ ପ୍ରତିଦିନ ଗ୍ରାମବାସୀଙ୍କର ବର୍ବର କାଣ୍ଡ—କାରଖାନାର ଖବରମାନ ବାହାରୁଛି ଏବଂ ପ୍ରତି ଗ୍ରାମରେ ବର୍ତ୍ତମାନ ବିଭିନ୍ନ ପ୍ରକାର ଦଳାଦଳି, ସଂଘର୍ଷ, ଅବିଶ୍ୱାସ ଓ ରକ୍ତାକ୍ତ ଫଉଜଦାରୀ ଗୋଟିଏ ନିତି ଦିନିଆ କଥା ହୋଇଗଲାଣି। ଭାରତବର୍ଷର ସଂସ୍କୃତି ଓ ସମ୍ପଦ ହେଲା ଗ୍ରାମ। ଭାରତବର୍ଷର ଆତ୍ମା ତାର ଗ୍ରାମମାନଙ୍କରେ ହିଁ ରହିଛି। ସମସ୍ତେ ବର୍ତ୍ତମାନ ଗ୍ରାମର ଉନ୍ନତି କଥା କହୁଛନ୍ତି। ଗ୍ରାମ ପାଇଁ କୋଟି କୋଟି ଟଙ୍କା ଖରଚହେବାର ଯୋଜନା ହେଉଛି। ମାତ୍ର ଗାଁଗଣ୍ଡାର ଏ ଯେଉଁ ଅବସ୍ଥା ହେଲାଣି, ତାକୁ କେଉଁମାନେ କିପରି ସଜାଡ଼ିବେ ? ସେମାନେ କୋଉଠି ଅଛନ୍ତି ? ସରକାରୀ ଦଳରେ ନା ବିପକ୍ଷ ଦଳରେ ? ସେହି ନେତାମାନେ ଯୋଉ ଦଳରେ ଥା'ନ୍ତୁ ପଛକେ, ସେମାନେ ବର୍ତ୍ତମାନ ଗାଁ ଗହଳର ଏହି ସମସ୍ୟା ଓ ସଙ୍କଟ ମୁକାବିଲା କରନ୍ତୁ। ଯଥାର୍ଥ ନେତୃତ୍ୱ ସରକାର ଗଢ଼ିବାରେ ନାହିଁ କି ସରକାରକୁ ଭାଙ୍ଗିବାରେ ନାହିଁ। ଗାଁଗହଳର ନଷ୍ଟପ୍ରାୟ ଆତ୍ମାକୁ ଯେଉଁମାନେ ରକ୍ଷା କରିବାର ଉଦ୍ୟମ କରିବେ ଏବଂ ଶାନ୍ତି, ଐକ୍ୟ ପ୍ରୀତି ଓ ସମତା ଯେଉଁମାନେ ବର୍ତ୍ତମାନ ଗାଁଗହଳରେ ପୁନଃସ୍ଥାପନ କରିବା ଦିଗରେ ବ୍ରତୀ ହୋଇପାରିବେ, ଯର୍ଥାଥ ନେତୃତ୍ୱ ସେହିମାନଙ୍କ ହାତରେଇ ରହିବ। ଗାଁରେ କେବଳ ବ୍ୟାଙ୍କ ଖୋଲିଦେଲେ ବା ବିଦ୍ୟୁତ ଶକ୍ତି ଯୋଗାଇ ଦେଲେ ବା ସ୍କୁଲ କଲେଜ ଖୋଲିଦେଲେ ବା ରାସ୍ତା ବଜାର ସୃଷ୍ଟି କରିଦେଲେ ଗାଁ ଗହଳର ଯଥାର୍ଥ ଉନ୍ନତି ହୋଇପାରିବ ନାହିଁ। ସବୁ ଉଦ୍ୟମ ଓ ଯୋଜନା ବୃଥା ହୋଇଯିବ। ଯଦି ଆମେ ଗାଁଗହଳର ସେହି ପାରମ୍ପରିକ ପବିତ୍ର ଓ ସରଳ ଆତ୍ମିକ ସମ୍ପଦକୁ ସୁରକ୍ଷା କରି ନ ପାରିବା, ତେଣୁ ବର୍ତ୍ତମାନ ହିଁ ସରକାରୀ ଦଳ ଓ ବିରୋଧୀ ଦଳର ନେତୃବୃନ୍ଦ ଏଥିପ୍ରତି ସଜାଗ ଓ ସଚେଷ୍ଟ ହୋଇ ଉଠନ୍ତୁ। ସାଧୁ ସାବଧାନ। ଗାଁଗହଳର ଆତ୍ମା ଆଜି ଅତି ବିପନ୍ନ।



# ସେ ଦିନ ଥିଲା ସାବିତ୍ରୀ– ବଜାର.....

୧୦/୬/୮୧

ସେଦିନ ରାଜଧାନୀରେ ପ୍ରଧାନ ହାଟ ପାଖ ରାସ୍ତା ଅତ୍ୟନ୍ତ ଲୋକଗହଳି ହୋଇଥିଲା । କାରଣ, ସେଦିନ ଥିଲା ସାବିତ୍ରୀବ୍ରତ ପୂର୍ବର ହାଟ । ସେଥିଲାଗି ରାଜଧାନୀର ସ୍ତ୍ରୀ ପୁରୁଷମାନେ ଦଳ ଦଳ ହୋଇ ସକାଳ ଆଠାଟାରୁ ହାଟରେ ଆସି ଜମା ହେଉଥିଲେ । ହାଟ ଭିତରେ ଓ ବାହାରେ – ରାସ୍ତା ଦୁଇକଡ଼ର ଫୁଟପାଥିରେ ବହୁ ବ୍ୟକ୍ତି ସାବିତ୍ରୀ ବ୍ରତ ପୂଜାର ଉପକରଣମାନ ମଫସଲ ଆଡୁ ସଂଗ୍ରହ କରି ବିକ୍ରୟ ପସରା ମେଲାଇ ବସିଥିଲେ ଏବଂ ତାହା ଏ.ଜି. ଅଫିସ ଛକରୁ ରାଜମହଲ ଛକ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଗଦା ଗଦା କଞ୍ଚା ପାକଲା ଆମ୍ବ, ଗଦା ଗଦା ପାଚିଲା ପଣସ ମୁଖ୍ୟ ସାମଗ୍ରୀ ରୂପେ ବିକ୍ରି ହେଉଥିଲା । ଏହାଛଡ଼ା କଞ୍ଚା ପାକଲା ସପୁରୀ ମଧ୍ୟ ବହୁ ଜାଗାରେ ବିକ୍ରୀ ହେବାର ଦେଖାଯାଉଥିଲା । କେତେକ ବାଳକ ମଫସଲ ଆଡୁ ଖଜୁରୀଗଛମାନଙ୍କରୁ କଞ୍ଚାଖଜୁରୀ ପେଣ୍ଡା ଛିଣ୍ଡାଇ ଆଣି ବିକ୍ରୀ କରୁଥିଲେ । ଦଶ ପନ୍ଦରଟି କଞ୍ଚା ଖଜୁରୀକୋଳି ପେଣ୍ଡା ପନ୍ଦର ପଇସାରୁ ସୁଉକିଏ ପର୍ଯ୍ୟନ୍ତ ଦାମରେ ବିକ୍ରୀ ହେଉଥିଲା । ଏହାଛଡ଼ା ବିଭିନ୍ନ ସ୍ଥାନରେ କାନ୍ଦି କାନ୍ଦି ତାଳ ମଧ୍ୟ ପାହାଡ଼ ପ୍ରମାଣେ ଜମା ହୋଇଥିଲା । ଗୋଟମା ଓ ବୁଢ଼ା ତାଳର ଗଦା ଚାରିପାଖେ ବହୁ ନାରୀ-ପୁରୁଷ ଜମା ହୋଇ କିଣୁଥିଲେ । ଗୋଟିଏ ଗୋଟମା ତାଳ ପନ୍ଦର ପଇସା ଓ ଗୋଟିଏ ବୁଢ଼ା ତାଳ ତିରିଶି ପଇସାରେ ବିକ୍ରୀ ହେଉଥିଲା । ଜଣେ ଅଳ୍ପବୟସର ମହିଳା ଓ ତାଙ୍କ ସ୍ୱାମୀ ଗୋଟିଏ ତାଳଗଦା ପାଖରେ ଠିଆ ହୋଇ ଗୋଟିଏ ବୁଢ଼ା ତାଳ ହାତରେ ଧରି ବିକ୍ରେତା ସଙ୍ଗେ ଦରଦାମ କଷୁଥିଲେ । ବିକ୍ରେତାଟି ପଚିଶି ପଇସାରୁ ଗୋଟିଏ ପଇସା ବି କମାଇବ ନାହିଁ ବୋଲି ଜିଦ୍ ଧରୁଥିଲା । ତାର କିଛି ପରୁଆ ନଥିଲା । ଖାତିର ନଥିଲା । ମାତ୍ର ସାବିତ୍ରୀ ଓ ସତ୍ୟବାନ ନବଦମ୍ପତି ତାଳଟିକୁ କୋଡ଼ିଏ ପଇସାରେ ନେବାଲାଗି ପ୍ରାୟ ଦଶମିନିଟ କାଳ ପାଟିତୁଣ୍ଡ କରି ମୂଲଚାଲ କଲେ । କିନ୍ତୁ ତାଳବିକ୍ରେତା କହିଲା, "ବାବୁ ! ମୋର ଏତେ ବକ୍ ବକ୍ କରିବାକୁ ବେଳ ନାହିଁ । ତାଳ ଥୋଇ ଦେଇ ଯାଅ ।" ତାଳକାମୀ କ୍ରେତା ଦମ୍ପତି ବଡ଼ ଅପମାନିତ ମନେ କରି ଖୁବ ରାଗିଯାଇ ତାଳଟିକୁ ଫୋପାଡ଼ିଦେଲେ ଏବଂ ତାଳଟି ଯାଇ ରାସ୍ତାରେ ଯାହା ପାଦ ପାଖରେ ପଡ଼ିଲା, ସେ ଜଣେ ରାସ୍ତା

ନିୟନ୍ତ୍ରଣକାରୀ କନେଷ୍ଟବଲ। ସେ ଡାଙ୍ଗଟିକୁ ହାତରେ ପେଣ୍ଡୁପରି ଧରି ଓ ତଳ ଉପର କରିକରିକା ଆଗକୁ ଚାଲିଗଲେ ଏବଂ ରାସ୍ତା କଡ଼ରେ ପ୍ରବଳ ଗହଳ କରୁଥିବା ଓ ରାସ୍ତାଅବରୋଧ କରୁଥିବା ଅପେକ୍ଷମାଣ ରେକ୍ସାବାଲାମାନଙ୍କୁ 'ହଟୋ ହଟୋ' ବୋଲି ଅଭିଧାନ ବହିର୍ଭୂତ କନଷ୍ଟେବଲୀୟ ଭାଷାରେ ଗାଳିଗୁଲଜ କଲେ ଏବଂ କେତେ ରେକ୍ସାର ଚକରୁ ହାଉଆ ନିକାଲି ଦେବା କାର୍ଯ୍ୟରେ ଲାଗି ପଡ଼ିଲେ। ଇତିମଧ୍ୟରେ ସେହି ପ୍ରବଳ ଜନଗହଳି ଭିତରେ ଗୋଟିଏ ପ୍ରଚଣ୍ଡ ପରାକ୍ରମୀ ଷଣ୍ଢ ଏକାଦିକ୍ରମେ ତିନି ଚାରୋଟି ଯୁବତୀ ସ୍ୱାସ୍ଥ୍ୟବତୀ ଜର୍ସି ଓ ହରିଆନା ଜାତୀୟା ଗାଈଙ୍କ ପଛରେ ଦୁର୍ବାର ପ୍ରେମାଭିଳାଷ ରଖି ଗୋଡ଼ାଇବା ଫଳରେ ସାବିତ୍ରୀ ଓ ସତ୍ୟବାନମାନେ କିଳିକାଳିଆ ହୋଇ ପ୍ରାଣମୂର୍ଚ୍ଛା ଇତସ୍ତତଃ ପଳାୟନ କରୁ କରୁ ଅନେକ ସାଇକେଲଗୁଡ଼ିକ ଭିତରେ ଛନ୍ଦିହୋଇ ଝୁଣ୍ଟିପଡ଼ିଲେ ଏବଂ ରାସ୍ତାରେ କିୟତ୍କ୍ଷଣ ପର୍ଯ୍ୟନ୍ତ ଯାନବାହନର ଗତି ନିଶ୍ଚଳ ଓ ଅନିଶ୍ଚିତ ହୋଇଉଠିଲା। ଇତିମଧ୍ୟରେ କେତେଜଣ ହାଟ କର୍ତ୍ତୃପକ୍ଷ ବା ତାଙ୍କ ଚାର ବୋଲି ମନେହେଉଥିବା ଏବଂ କେତେକ ରାସ୍ତା ନିୟନ୍ତ୍ରଣକାରୀ ପୋଲିସ ଫୁଟପାଥରେ ପଣସ, ଆମ୍ବ, କେନ୍ଦୁ, ତାଳ ନଡ଼ିଆ, କଦଳୀ, ଖଜୁରୀ, ଜାମୁ, ଢେଉଟ ଆଦି ବିକ୍ରୀ କରୁଥିବା ବିକାଳୀମାନଙ୍କ ଉପରେ କଣ କିଛି କାରଣ ପାଇଁ ଜୁଲମ କରୁଥିବାର ଦେଖାଗଲା ଏବଂ ଶେଷ ପର୍ଯ୍ୟନ୍ତ କେହି ଜଣେ ଗୋଟିଏ ଟୋକେଇରେ କିଛି ପାଚିଲା ରସାଳ ବାଇଗଣପଲେଇ ଆମ୍ବ ଓ ଅନ୍ୟ ଜଣେ ଦୁଇଟା ବିଶାଳ ପାଚିଲା ପଣସ ହୁ–ହା' ଉଠାଇନେଇ ହାଟ ଭିତରକୁ ପଶି ଯାଉଥିବାର ଦେଖି ତା' ପଛେ ପଛେ କିଛି ଲୋକ ହଟଗୋଳ କରି ଦଉଡ଼ୁଥିବାର ଦେଖାଗଲା। ଇତିମଧ୍ୟରେ ଦୁଇଟି ପ୍ରଚଣ୍ଡ ଗାଈ ପରସ୍ପର ଭିତରେ ଲଢ଼ାଲଢ଼ି ହୋଇ ହାଟ ଭିତରକୁ ପଶିଯିବାରୁ ହାଟ ଭିତରେ ତ୍ରାହି ତ୍ରାହି ରବ କରି ବହୁ ନାରୀପୁରୁଷ ପୁନଶ୍ଚ ଇତସ୍ତତଃ ଧାବିତ ହେବାର ଦେଖାଗଲା। ମୁଁ କିଛି ଆମ୍ବ କିଣିସାରି ଗୋଟିଏ ପଣସ କିଣିବାକୁ ବହୁ କଷ୍ଟରେ ସେହି ପ୍ରବଳ ଭିଡ଼ ଅତିକ୍ରମ କରି ପେଟ୍ରୋଲ ପମ୍ପ ପାଖରେ ଥିବା ପଣସ ଗଦା ଆଡ଼କୁ ମୁହାଁଇଲି। କିନ୍ତୁ ରାସ୍ତାରେ ଗୋଟିଏ ରିକ୍ସାବାଲା ସଙ୍ଗେ ଦୁଇ ଜଣ ନାରୀ–ପୁରୁଷ ଆରୋହୀ ଗୋଳ କରୁଥିବାରୁ ଆରୋହୀଙ୍କ ପକ୍ଷନେଇ ଅନ୍ୟମାନେ ସେହି ରିକ୍ସାବାଲାକୁ ଘେରିଯାଇ ଗାଳି କରୁଥିଲେ। ରିକ୍ସାବାଲାଟି ହାଟପାଖରୁ ଛଅନମ୍ବର ଇଉନିଟ୍‌କୁ ଆସିବା ଲାଗି ତିନି ଟଙ୍କା ଦାବୀ କରୁଥିବାରୁ ଏ ଗଣ୍ଡଗୋଳ ହେଉଥିଲା। ଏହି ସମୟରେ ଜଣେ କନେଷ୍ଟବଲ ଆସି ରିକ୍ସା ଉପରେ ଗୋଟେ ପାହାର ଦେଇ ରିକ୍ସାବାଲାର ଦୁଇଟି ଚକରୁ ହାଉଆ ଖୋଲିଦେଲେ। ମୁଁ ଟିକିଏ ମଜା କରିବା ଲାଗି କନେଷ୍ଟବଲଙ୍କୁ କହିଲି – ହଇଓ ପୋଲିସଭାଇ! ରିକ୍ସାବାଲାକୁ ଏମିତି ଜବତ କରୁଛ – ଏ ଗାଈମାନେ ଏତେ ଉତ୍ପାତ କରୁଛନ୍ତି – କାହିଁ, ସେମାନଙ୍କୁ ତ କେହି ତଡ଼ୁନାହିଁ?

କନେଷ୍ଟବଲବାବୁ କହିଲେ – ବାବୁ! ରିକ୍ସାବାଲାଙ୍କରୁ ସିନା ହାଉଆ ଖୋଲିଦେଇ ହେବ – ଗାଈଙ୍କର କଣ କୋଉଠି ହାଉଆ ଅଛି ଯେ ଆମେ ଖୋଲି ଦବୁ? ସେ ଗାଈସବୁ ବଡ଼ବଡ଼ିଆଙ୍କର। ତାଙ୍କୁ କିଏ କଣ କରିବ?

ମୁଁ ଆଉ ଅଯଥା ବାକ୍‌ବିତ୍ ନକରି ପଣସଗଦା ଆଡ଼କୁ ଗହଳି କାଟି କାଟି ଚାଲିଲି। ଏଇ ସମୟରେ ଗୋଟିଏ ଜାଗାରେ ପିଲାଟିଏ କଞ୍ଚା ଖଜୁରୀକୋଳି ପେଛାଗୁଡ଼ିଏ ଧରି ବିକୁଥିବା ଓ ତାକୁ ବହୁ ନାରୀପୁରୁଷ ଘେରିଥିବାର ଦେଖାଗଲା। ମୁଁ ତା' ଭିତରେ ଟିକିଏ ଉଂକି ମାରିଲି। ଆଠଦଶଟି କଞ୍ଚାକୋଳି ଥିବା ଗୋଟିଏ ଛୋଟ ପେଛାକୁ ମହିଳାଟିଏ ହାତରେ ଧରି ପନ୍ଦରପଇସାରେ ପେଛାଟି ବିକିବାକୁ ତାକୁ ଅନୁରୋଧ କରୁଥିଲେ। ମାତ୍ର ସେ ଟୋକା କୋଡ଼ିଏ ପଇସାରୁ ତଳକୁ ଖସୁ ନଥାଏ। ତା' ଚାରିପଟେ ଘେରିଥିବା ସବୁ ନାରୀ ସମସ୍ୱରରେ ଦାବୀ କରୁଥିଲେ ପନ୍ଦର ପଇସାରେ ତୋତେ ନିଶ୍ଚୟ ଦେବାକୁ ହେବ। ମହା ପାଟିତୁଣ୍ଡ ଚାଲିଥାଏ। ମୁଁ ତା' ଭିତରେ ପଶି ଜଣେ ଭଦ୍ରଲୋକଙ୍କୁ କହିଲି, ଆଜ୍ଞା! ଏ କଞ୍ଚା ଖଜୁରୀକୋଳି, ବୁଢ଼ା ତାଳସଜ ଇତ୍ୟାଦି ଆପଣମାନେ କାହିଁକି କିଣୁଛନ୍ତି? ଭଦ୍ରଲୋକ ନିର୍ବିକାର ଭାବେ କହିଲେ– ଏ ସବୁ କ'ଣ କିଏ ସତରେ ଖାଇବ? ଏ ଗୋଟେ ପ୍ରଥା। ଏସବୁ ଭୋଗ ହେବ। ଏ ସବୁ ନହେଲେ କ'ଣ ଏ ଶଃ ମାଇକିନିଆ ଛାଡ଼ୁଛନ୍ତି?

କହିବା ବାହୁଲ୍ୟ ଯେ ଭଦ୍ରଲୋକଙ୍କ ସାବିତ୍ରୀପ୍ରତିମା ମଧ୍ୟବୟସ୍କାପତ୍ନୀ ତାଙ୍କରି ପାଖରେ ଠିଆ ହୋଇ କଞ୍ଚା ଖଜୁରୀ ପେଛାଟିଏ ଧରି ଆମ କଥା ଶୁଣୁ ଶୁଣୁ ହସୁଥିଲେ ଓ ଉପଭୋଗ କରୁଥିଲେ।

ସେଦିନର ସାବିତ୍ରୀ ହାଟ ଏମନ୍ତ ପ୍ରକାରେ ରାତି ଦଶଟା– ଏଗାରଟା ପର୍ଯ୍ୟନ୍ତ ଚାଲିଥିଲା ଏବଂ ରାଜଧାନୀର ସାବିତ୍ରୀ ଓ ସତ୍ୟବାନମାନେ ସାବିତ୍ରୀବ୍ରତର ଯାବତୀୟ ପ୍ରଥାକୁ ରୀତିମତ ମନଦେଇ ପାଳନ କରୁଥିବାର ପ୍ରାଥମିକ ପ୍ରମାଣ ଏହି ବଜାରଟିରୁ ସଂପୂର୍ଣ୍ଣ ଭାବେ ମିଳିଥିଲା ଏବଂ ପ୍ରତିଷ୍ଠିତ ଫଳଦୋକାନୀମାନେ ଓ ସାମୟିକ ଫଳ ଆହରଣକାରୀମାନେ ସେଦିନ ବେଶ୍ ଦୁଇପଇସା ଲାଭ କରିଥିବାର ବି ଜଣାଗଲା।



# ଅପହୃତ ବିବେକ ଲାଗି ଖେଦୋକ୍ତି

୪/୧୨/୮୦

ଖବର ପ୍ରକାଶ ପାଇଛି ଯେ ଭାଗଲପୁର ଜେଲ ଭିତରେ ପୋଲିସ କର୍ତ୍ତୃପକ୍ଷ କେତେଜଣ କଏଦୀଙ୍କର ଆଖିଫୁଟାଇ ଦେଇଛନ୍ତି ଏବଂ ଏହି ନୃଶଂସ ଘଟଣାରେ ମର୍ମାହତ ହୋଇ ବହୁ ବିଶିଷ୍ଟ ଲୋକ ଖେଦ ପ୍ରକାଶ କରିଛନ୍ତି। ସ୍ୱୟଂ ପ୍ରଧାନମନ୍ତ୍ରୀ ମଧ୍ୟ ଏ ଘଟଣା ଶୁଣି ଉଦବିଗ୍ନତା ଦେଖାଇଛନ୍ତି। ଏ ଖବର ଯଦି ସତ ହୋଇଥାଏ, ତେବେ ଏହାଠାରୁ ବଳି ଦୁର୍ଭାଗ୍ୟଜନକ କଥା କିଛି ନାହିଁ। କେବଳ ଏଇ କଥାରେ ନୁହେଁ – ବହୁ ବହୁ ଘଟଣାରେ ସ୍ୱାଧୀନ ଭାରତର ପୋଲିସମାନେ ବେଳେ ବେଳେ ଏଭଳି ଅମାନୁଷିକ କ୍ରିୟାକାଣ୍ଡ କରି ବସୁଛନ୍ତି ଯେ ତାହା ଦେଖି ଓ ଶୁଣି ମନରେ କେବଳ ଘୋର ଦୁଃଖ ଓ ନୈରାଶ୍ୟ ମାଡ଼ି ପଡୁଛି। ପୋଲିସର କାର୍ଯ୍ୟ ହେଲା ଦେଶରେ ଶାନ୍ତି ଓ ଶୃଙ୍ଖଳା ରକ୍ଷା କରିବା – ଏବଂ ସବଳର 'ଅତ୍ୟାଚାରରୁ ଦୁର୍ବଳକୁ ସାହାପକ୍ଷ ହେବା। ସ୍ୱାଧୀନ ଭାରତର ପୋଲିସ ଆଉ ଏକ ବିଦେଶୀ ସରକାରର ଅତ୍ୟାଚାର ଲାଗି ହାତବାରିଶି ନୁହେଁ। ଇଂରେଜ ସରକାର ଏଭଳି ପୋଲିସ ଅଫିସର ନିଯୁକ୍ତ କରୁଥିଲେ – ଯେଉଁମାନଙ୍କର ଦେଶପ୍ରୀତି ନଥିବ ଯେଉଁମାନେ ନିର୍ମମ ହୋଇଥିବେ ଓ ଯେଉଁମାନେ ଜାନ୍ତବ ଶକ୍ତିର ପ୍ରଦର୍ଶନୀ ଦ୍ୱାରା ଲୋକମାନଙ୍କ ମନରେ ସରକାର ପ୍ରତି ସର୍ବଦା ଭୟ ଓ ଆଶଙ୍କା ଜାଗରୂକ ରଖିପାରୁ ଥିବେ। କାରଣ, ସାମ୍ରାଜ୍ୟବାଦୀ ରାଜତନ୍ତ୍ରର ଆଭିମୁଖ୍ୟ ଥିଲା – "ଡ଼ରାଇ ଶାସନ କରିବା"। କିନ୍ତୁ ସ୍ୱାଧୀନ ଭାରତର ପୋଲିସ ସଂସ୍ଥାର ଆଭିମୁଖ୍ୟ ସଂପୂର୍ଣ୍ଣ ଭିନ୍ନ। ଏମାନେ ହେଲେ ଦେଶର ରକ୍ଷକ – ଦୀନଦୁର୍ବଳର ବନ୍ଧୁ। ଦେଶର ପ୍ରତ୍ୟେକ ନାଗରିକ ସ୍ୱଚ୍ଛନ୍ଦରେ ଓ ନିରାପଦରେ ତା' ନିଜ ଘର ଭିତରେ ରହିପାରେ ବା ଦିନ ଓ ରାତି ଯେ କୌଣସି ସମୟରେ ରାସ୍ତା ଉପରେ ଚାଲିପାରେ। କାରଣ ସେ ଜାଣେ ଯେ ତାର ନିରାପତ୍ତା ପାଇଁ ପୋଲିସ ଅଛନ୍ତି।

କିନ୍ତୁ ଅତ୍ୟନ୍ତ ଦୁଃଖର କଥା ଯେ ସ୍ୱାଧୀନତା ପାଇଲା ପରେ ହିଁ ଏବଂ ଦିନୁଦିନ ଆମେ ଆମ ପୋଲିସ ସଂସ୍ଥା ଉପରେ ଆସ୍ଥା ହରାଇ ବସିବାକୁ ବାଧ୍ୟ ହେଉଛୁ। ଗତ ଜରୁରୀ ପରିସ୍ଥିତି ବେଳେ କେତୋଟି ସ୍ଥାନରେ କେତେକ ପୋଲିସ ଅଫିସର ଯେଉଭଳି ଅମାନୁଷିକ କାର୍ଯ୍ୟକରିଥିଲେ ବୋଲି ଶୁଣାଯାଇଥିଲା ତାହା ଯେତିକି ନିର୍ମମ, ସେତିକି ଲଜ୍ଜାଜନକ ଓ ବୀଭତ୍ସ। ଏହା ଭିତରେ ବି ଦେଶର ବିଭିନ୍ନ ସ୍ଥାନରେ ପୋଲିସ କର୍ତ୍ତୃକ ଅତ୍ୟନ୍ତ ଗର୍ହିତ ଘଟଣାମାନ ଘଟୁଥିବାର ସମ୍ବାଦ ପ୍ରାୟ

ପ୍ରତିଦିନ ଆମ କାନରେ ପଡ଼ୁଛି। ଏହା ଦେଖି ସାଧାରଣ ନିରୀହ ନାଗରିକଟି ମନରେ ଭାବୁଛି – ଯଦି ରକ୍ଷକମାନେ ଭକ୍ଷକହୁଅନ୍ତି, ତାହାହେଲେ ସେ କାହା ପାଖକୁ ଯିବ ଆପଦବିପଦରେ ?

ସ୍ୱାଧୀନ ଭାରତରେ ପୋଲିସ କନଷ୍ଟେବଲଙ୍କ ଠାରୁ ଆରମ୍ଭକରି ଆଇ.ଜି.ଙ୍କ ପର୍ଯ୍ୟନ୍ତ କୌଣସି ପେଲିସ ଅଫିସର ଆଉ ଅଶିକ୍ଷିତ ନୁହନ୍ତି। ଅନ୍ତତଃ ମାଟ୍ରିକ୍ ପାସ ନ କଲେ ଆଉ ଆଜିକାଲି କନଷ୍ଟେବଲଟିଏ ହେବା ମଧ୍ୟ ସମ୍ଭବ ନୁହେଁ। ଏବଂ ଗ୍ରାଜୁଏଟ ନ ହେଲେ ପୋଲିସ ସବ୍‌ଇନିସ୍‌ପେକ୍ଟରଟିଏ ହେବା ମଧ୍ୟ ସମ୍ଭବ ନୁହେଁ। ଏବଂ ଉଚ୍ଚପଦସ୍ଥ ପୋଲିସ ଅଫିସରମାନେ ପୁଣି ହେଲେ ରାଜ୍ୟସ୍ତରର ବା ସର୍ବଭାରତୀୟ ସ୍ତରର ପ୍ରତିଦ୍ୱନ୍ଦିତାମୂଳକ ପରୀକ୍ଷାରେ ସର୍ବୋଚ୍ଚ ନମ୍ବର ରଖି ପାସ କରିଥିବାଲୋକ। ଏ କ୍ଷେତ୍ରରେ ଏମାନଙ୍କଠାରୁ ଏତେ ନିର୍ମମ ପାଶବିକ ଓ ବର୍ବରୋଚିତ ବ୍ୟବହାର କିପରି ଆଶା କରିବା, ଯେତେବେଳେ ସରକାର ଏମାନଙ୍କ ହାତରେ ଅଖଣ୍ଡ କ୍ଷମତା ଦେଇଛନ୍ତି ଓ ଦେଶବାସୀ ଏମାନଙ୍କ ଉପରେ ଆସ୍ଥା ଓ ବିଶ୍ୱାସ ରଖି ଆସିଛନ୍ତି ? ଆମେ ବରାବର ଆଶାକରି ଆସୁଛୁ ଯେ, ସ୍ୱାଧୀନତା ପରେ ଆମର ପୋଲିସ ସଂସ୍ଥା ଅଧିକ ଶୃଙ୍ଖଳିତ, ଅଧିକ ସଂଯତ, ଅଧିକ ଭଦ୍ର, ଅଧିକ ବିଶ୍ୱସ୍ତ, ଆସ୍ଥାଭାଜନ ଓ ନିର୍ଭରଯୋଗ୍ୟ ହେବେ। କିନ୍ତୁ ଫଳ ଦେଖାଯାଉଛି ଶୋଚନୀୟ ଭାବେ ବିପରୀତ। ବହୁ କ୍ଷେତ୍ରରେ ଉଚ୍ଚପଦସ୍ଥ ପୋଲିସ ଅଫିସରମାନଙ୍କ ବର୍ବର ଆଚରଣ ଅଧିକ ଜାଜ୍ୱଲ୍ୟମାନ ହୋଇ ଉଠୁଛି। ପ୍ରତ୍ୟେକ ନିରୀହ ନାଗରିକଟି ମନେକରେ ଯେ ପୋଲିସ ତା'ର ଧନଜୀବନର ରକ୍ଷାକର୍ତ୍ତା କେବଳ ନୁହନ୍ତି ତାର ମାନମହତ୍ତ୍ୱ ବା ଇଜ୍ଜତର ରକ୍ଷାକର୍ତ୍ତା ମଧ୍ୟ ପୋଲିସ। କିନ୍ତୁ ସାଧାରଣ ନାଗରିକର ସେ ଆଶା ଆଜି ଧୂଳିସାତ ହେଲାଣି।

ଯେ କୌଣସି ସରକାର ତାଙ୍କର ଶାସନରେ ଶୃଙ୍ଖଳା ଓ ଶାନ୍ତି ରଖିବା ପାଇଁ ଏବଂ ଉଗ୍ରବାଦୀ ହିଂସ୍ର ଜନତାକୁ ଛିନ୍ନଛତ୍ର କରିଦେବା ପାଇଁ ପୋଲିସକୁ ଲାଠିଚାର୍ଜ କରିବାକୁ, ଗୁଳିଚାଳନା କରିବାକୁ ଅଥବା ଯେ କୌଣସି ଉପାୟ ନିୟୋଜିତ କରିବାକୁ ନିର୍ଦ୍ଦେଶ ଦେଇପାରନ୍ତି। କିନ୍ତୁ ଘଟଣାସ୍ଥଳରେ ସେହି କର୍ତ୍ତବ୍ୟ ତୁଲାଇବା ବେଳେ ପୋଲିସ ବନ୍ଧୁମାନେ କିଭଳି ଆଚରଣ କରିବେ ଓ କେତେ ଦୂର ପର୍ଯ୍ୟନ୍ତ ତାହା କାର୍ଯ୍ୟକାରୀ କରିବେ, ସେ ସମ୍ବନ୍ଧେ ଯେତିକି କାଣ୍ଡଜ୍ଞାନ, ମାତ୍ରାଜ୍ଞାନ ଓ ଧର୍ମଜ୍ଞାନ ପୋଲିସଙ୍କର ରହିବା କଥା, ତାହା ଆଦୌ ରହୁ ନଥିବାର ଦେଖାଯାଉଛି। ପୋଲିସଙ୍କର ଅବିମୃଷ୍ୟକାରିତା ଯୋଗୁଁ ବହୁ ସରକାର ବୃଥାଟାରେ ଲୋକଙ୍କର ଅପ୍ରିୟ ଭାଜନ ହୋଇପଡ଼ନ୍ତି।

ବହୁ ସ୍ଥଳରେ ଦେଖାଯାଇଛି ଯେ, ପୋଲିସଙ୍କ ଆଖି ଆଗରେ କେତେକ ଉଦ୍ଧତ ଅସାମାଜିକ ଲୋକ ଗୋଟିଏ ବସ୍ ବା ଜିପରେ ନିଆଁ ଲଗାଉଥିବେ – ସେତେବେଳେ ପୋଲିସ୍ ଚୁପଚାପ୍ ଠିଆ ହୋଇଥିବେ। ଏବଂ ଦୁର୍ଘଟଣାଟି ଘଟିଲା

ପରେ ଯାଇ ସେମାନେ ପ୍ରତିହିଂସାମୂଳକ ପ୍ରତିଶୋଧ ନେବେ। ଏମିତି ମଧ ଦେଖାଯାଇଛି ଯେ କେତେକ ଗୁଣ୍ଡା ଗୋଟିଏ ନିରୀହ ଦୋକାନୀ ଉପରେ ଅତ୍ୟାଚାର କରୁଥିବେ, ଲୁଣ୍ଠନ କରୁଥିବେ– ଅଥଚ ସେଇ ପାଖରେ ତିନି ଚାରି ଜଣ ପୋଲିସ ଠିଆ ହୋଇ ମଜା ଦେଖୁଥିବେ। ଅବସ୍ଥା ଏପରି ହେଲାଣି ଯେ, କୌଣସି ବ୍ୟକ୍ତି କୌଣସି କାରଣରୁ ବିପନ୍ନ ହୋଇ ଥାନାକୁ ଯାଇ ପୋଲିସର ସାହାଯ୍ୟ ନେବାକୁ କୁଣ୍ଠିତ ଓ ସଙ୍କୋଚ ବୋଧକଲାଣି। କାରଣ ସାଧାରଣ ନିରୀହ ଲୋକଟିର ବର୍ତ୍ତମାନ ଧାରଣା ହେଲା – ବରଂ ଚୋର ଡକାୟତଙ୍କ ହାତରେ ପଡ଼ିବା ଭଲ – ପୋଲିସଙ୍କ ଜାଲରେ ପଡ଼ିଲେ ଆଉ ରକ୍ଷା ନାହିଁ। ସାରା ଭାରତରେ ବର୍ତ୍ତମାନ ଦେଶବାସୀଙ୍କ ମନରେ ଆମ ପୋଲିସଙ୍କ ପ୍ରତି ଏଇ ଧାରଣା ବଢ଼ି ଚାଲିଛି।

ଏକଥା ସତ ଯେ ଆମର ବର୍ତ୍ତମାନ ସମାଜ ନୈତିକତାରେ ଏତେଦୂର ଅଧୋଗାମୀ ହୋଇଗଲାଣି ଯେ – ଏବଂ ସମାଜର ସବୁ ସ୍ତରରେ, ଶିକ୍ଷା ବିଭାଗଠାରୁ ବିଚାର ବିଭାଗ ପର୍ଯ୍ୟନ୍ତ ଏତେ ଦୂର ଦୁର୍ନୀତି–ରାକ୍ଷସ ଦ୍ୱାରା କବଳିତ ହୋଇପଡ଼ିଲାଣି ଯେ ଆମେ କେବଳ ପୋଲିସକୁ ସବୁ କଥା ପାଇଁ ଦାୟୀ ଓ ଦୋଷୀ ବୋଲି ସାବ୍ୟସ୍ତ କରିପାରିବା ନାହିଁ। ମୁଁ ଏ ସମ୍ବନ୍ଧେ କନଷ୍ଟେବଲଙ୍କଠାରୁ ଆଇ. ପି. ଏସ. ଅଫିସରଙ୍କ ପର୍ଯ୍ୟନ୍ତ ବହୁବାର ବହୁମତେ ଆଲୋଚନା କରି ଶୁଣିଛି – ସେମାନେ ସମସ୍ତେ ଗୋଟିଏ କଥା କହୁଛନ୍ତି – "ଆଜ୍ଞା ! ଦେଶରୁ ଏଇ ଦୁର୍ନୀତିଗ୍ରସ୍ତ ନୀଚସ୍ତରର ରାଜନୀତିବାଲାଙ୍କର ସମୂଳ ବିଲୋପ ନ ହେଲେ ଆମେ ଆଉ କିଛି କରିପାରିବୁ ନାହିଁ। ଆମ ଉପରେ ଚାରିଆଡ଼ୁ ମାଡ଼ ପଡ଼ୁଛି। ସରକାରଙ୍କର ମାଡ଼, ବିରୋଧୀଦଳଙ୍କ ମାଡ଼, ଜନସାଧାରଣଙ୍କ ମାଡ଼ ଓ ଆମ ନିଜ ବିବେକର ମାଡ଼। ଦେଖୁନାହାନ୍ତି ଆଜି ଯେଉଁମାନେ ପୋଲିସର କାର୍ଯ୍ୟ ଏକ୍‌ସେସ୍ (ସୀମାଲଙ୍ଘନ) ହୋଇଗଲା ବୋଲି ହଲ୍ଲା କରୁଛନ୍ତି – ସେମାନେ ଗତକାଲି ସରକାରରେ ଥିଲାବେଳେ ଏହାଠାରୁ ଅଧିକ ଏକ୍‌ସେସ୍ କରିବାକୁ ଆମକୁ ବାଧ କରୁଥିଲେ। ଏବଂ ଏ ଦେଶର ଜନସାଧାରଣ ଯାହାକୁ ଆପଣ ନିରୀହ ବୋଲି କହୁଛନ୍ତି – ଅଜ୍ଞା ! ସେମାନଙ୍କ ଅବସ୍ଥା ଏପରି ହେଲାଣି ଯେ, ଅନ୍ତତଃ ଆପଣଙ୍କର ଏହି ନିରୀହ ଜନସାଧାରଣଙ୍କୁ ସତକୁ ସତ ନିରୀହ କରି ରଖିବା ପାଇଁ ଅନ୍ତତଃ ପ୍ରତି ପାଞ୍ଚ ଜଣରେ ଜଣେ ପୋଲିସ ନିଯୁକ୍ତ ହେବା ଉଚିତ। କିନ୍ତୁ ଆପଣ ଜାଣନ୍ତି – ଆମ ପୋଲିସଙ୍କ ସଂଖ୍ୟା ଅନୁପାତିକ ଭାବରେ କେତେ ? ଶେଷରେ – ଆମ ପୋଲିସବାଲାଙ୍କ ବିବେକ କଥା ପଚାରୁଛନ୍ତି ? ହେ ଭଗବାନ ? ସେ ବସ୍ତୁଟି ଆମ ଅଜାଣତରେ କେତେବେଳେ କୋଉକାଳୁ କାହାଦ୍ୱାରା ଅପହୃତ ହୋଇଗଲାଣି – ତାକୁ ଆମେ ବହୁ ଖୋଜାଖୋଜି କରି ମଧ ଏ ଯାବତ ପାଉନାହୁଁ। ତଥାପି ମଧ, ଏ ଦେଶରେ ଆମେ ବହୁଁ ଚୋରି ଧନର ଉଦ୍ଧାର କରିପାରୁଛୁ। କିନ୍ତୁ ଆମ ଅପହୃତ ବିବେକଟିର ସନ୍ଧାନ ଏ ଯାବତ ଆମକୁ ମିଳିନାହିଁ। ତାକୁ ଉଦ୍ଧାର କରିବା ଲାଗି ଯୋଉ ପୋଲିସ ଦରକାର– ସେ ପୋଲିସ ଏ ଦେଶରେ କାହାନ୍ତି ? ହେ ଭଗବାନ !

❋❋

# ଆଇଁଷ ସଂକଟ

୨୪/୧୨/୮୧

ଓଡ଼ିଆ, ବଙ୍ଗାଳୀ, ବିହାରୀ ଓ ଆସାମୀମାନଙ୍କୁ ଥଟା କରିବା ଉଦ୍ଦେଶ୍ୟରେ ବହୁ ଉଦ୍ଭଟ ସଂସ୍କୃତ ଶ୍ଳୋକ ରହିଛି। ସେଥିରୁ ଗୋଟିଏ ଶ୍ଳୋକର ଅର୍ଥ ହେଲା ଏହିପରି।

"ଭଗବାନ କାହିଁକି ନରସିଂହ ଅବତାର ଗ୍ରହଣ କଲେ କି? ତାର କାରଣ ହେଲା– ଭଗବାନ ମତ୍ସ୍ୟ ଅବତାର ହୋଇ ଆସିବା ପରେ ଓଡ଼ିଆ ଓ ବଙ୍ଗାଳୀମାନେ ତାଙ୍କୁ ଖାଇବାପାଇଁ ତାଙ୍କ ପଛରେ ଗୋଡ଼ାଇଲେ। ସେଉଠୁ ଭଗବାନ ଯେମିତି କଚ୍ଛପ ରୂପରେ ଆସିଲେ – ବଙ୍ଗାଳୀ ଓ ଆସାମୀମାନେ ତାଙ୍କୁ ଖାଇବା ପାଇଁ ତାଙ୍କ ପଛରେ ଗୋଡ଼ାଇଲେ। ସେଉଠୁ ଭଗବାନ ପ୍ରାଣ ବିକଳରେ ବରାହ ରୂପ ଧରି ଜଙ୍ଗଲରେ ବୁଲୁଛନ୍ତି – ଆସାମୀ ଓ ବିହାରୀମାନେ ତାଙ୍କୁ ଦେଖି ଠେଙ୍ଗା ଓ ଭୁଜାଲି ଧରି ତାଙ୍କୁ ମାରି ଖାଇବାଲାଗି ତାଙ୍କ ପଛରେ ଗୋଡ଼ାଇଲେ। ଅତଃପରେ ଭଗବାନ ଆଉ କଣ କରିବେ! ଅଗତ୍ୟା ଭଗବାନ ନିଜକୁ ଓଡ଼ିଆ, ବଙ୍ଗାଳୀ, ଆସାମୀ ଓ ବିହାରୀଙ୍କ ଆମିଷ–ଲୋଲୁପତାରୁ ରକ୍ଷା କରିବାଲାଗି ବାଧ ହୋଇ ଭୟଙ୍କର ନରସିଂହ ରୂପ ଧାରଣ କରି ପୃଥିବୀରେ ଅବତୀର୍ଣ୍ଣ ହେଲେ।"

ଓଡ଼ିଆଙ୍କ ଆମିଷ ଲାଳସା ଏଥିରୁ ପ୍ରମାଣିତ ହେଉଛି। ବିଶେଷତଃ ଉପକୂଳ ଅଞ୍ଚଳର ଓଡ଼ିଆଙ୍କ ପାଟିରେ ପ୍ରତିଦିନ ମାଛ ଟିକିଏ ନ ବାଜିଲେ ଓ ଅନ୍ୟ ଅଞ୍ଚଳର ଓଡ଼ିଆଙ୍କ ପାଟିରେ ଶୁଖୁଆ ଟିକିଏ ନ ବାଜିଲେ ଓଡ଼ିଆଙ୍କ ପେଟକୁ ଭାତ ନ ଯାଏ।

କିନ୍ତୁ ବର୍ତ୍ତମାନ ଯାହା ଦେଖାଯାଉଛି – ଓଡ଼ିଆ ଆଉ ମାଛ ଖାଇପାରିବେ ନାହିଁ କି ତାଙ୍କ ଉପରେ ମାଛ ସମ୍ବନ୍ଧୀୟ ଏଇ ଯୋଉ ମଧୁର କୁସାବାଦଟି ରହିଛି, ତାର ମର୍ଯ୍ୟାଦାକୁ ମଧ୍ୟ ରଖିପାରିବେ ନାହିଁ।

ଓଡ଼ିଶାର ଅନ୍ୟାନ୍ୟ ସହରମାନଙ୍କରେ 'ମାଛ' କୋଉ ଦରରେ ବିକ୍ରୀ ହେଉଛି – ତାର ସଠିକ ତଥ୍ୟ ଜଣାନାହିଁ; କିନ୍ତୁ ଉପକୂଳ ଅଞ୍ଚଳର ସହରମାନଙ୍କରେ ବିଶେଷତଃ

ଭୁବନେଶ୍ୱର, କଟକ ଓ ପୁରୀରେ ମାଛ ଦର ଯାହା ହେଲାଣି ସେଥିରେ ଆମ ତୁମ ଭଳି ଲୋକର ପାଟିରେ ଆଉ ଆଇଁଷ ପାଣି ଟିକିଏ ବାଜିବା ଭଳି ଆଶା ନାହିଁ। କାର୍ତ୍ତିକ ମାସରେ ବି ବଡ଼ ରୋହୀ ଭାକୁଡ଼ ମାଛର ଦର ଥିଲା ୧୫/୧୬/୧୮ ଟଙ୍କା। ଏବେ ମଧ ରହିଛି ସେଇଆ। ଭୁବନେଶ୍ୱରରେ ତ ମହୁରାଳି ମାଛ କେ.ଜି. ହେଲାଣି ଦଶ ଟଙ୍କା। କଣ ଏ ବ୍ୟାପାର? "ବଜାରରେ ସବୁ ଦ୍ରବ୍ୟର ଦର ବଢୁଛି। ଅତଏବ ମାଛ ଦର ବଢୁଛି" – ଏଭଳି ଯୁକ୍ତି ଶୁଣିଲେ କିଛି ମତ୍ସ୍ୟ ସମସ୍ୟା ମେଣ୍ଟି ଯିବନାହିଁ।

ଆଚ୍ଛା, ମାଛ ଦର କାହିଁକି ଏମିତି ବଢୁଛି? ସରକାର ପରା ମାଛଚାଷ ଉପରେ ଏତେ ଗୁରୁତ୍ୱ ଦେଉଛନ୍ତି? ପଞ୍ଚାୟତ ପୋଖରୀମାନଙ୍କରେ ମାଛ ଚାଷ ହେଉଛି। ବିଭିନ୍ନ ଜିଲା ଓ ସବଡ଼ିଭିଜନ ମହକୁମାରେ ମଧ ସରକାରଙ୍କ ତରଫରୁ ମାଛଚାଷ ହେଉଛି। ଏଣେ ପୁଣି କୌଶଲ୍ୟାଗଙ୍ଗରେ କୋଟି କୋଟି ଟଙ୍କା ବ୍ୟୟରେ ଭାରତ ସରକାରଙ୍କ ତରଫରୁ ବିରାଟ ମତ୍ସ୍ୟଚାଷ ଓ ମତ୍ସ୍ୟଗବେଷଣା କେନ୍ଦ୍ର ଖୋଲିଛି। ଶହଶହ ମତ୍ସ୍ୟବିଜ୍ଞାନୀ ମତ୍ସ୍ୟଅଫିସର ଓ ମତ୍ସ୍ୟକର୍ମଚାରୀ ଏଥିପାଇଁ ମୁତୟନ ହୋଇଛନ୍ତି। ଲକ୍ଷ ଲକ୍ଷ ଟଙ୍କା ଦରମା ନେଉଛନ୍ତି। ବହୁ ସାନ ବଡ଼ ତୁଆ ଖୋଳା ହୋଇ ମାଛଚାଷ ହେଉଛି ବୋଲି ଶୁଣାଯାଉଛି। ମାତ୍ର ମାଛ କାହିଁ? ମାଛ ଦର ଏମିତି ଦିନକୁ ଦିନ ଆକାଶକୁ ଛୁଉଁଛି କିପରି ଓ କାହିଁକି? ଆମର ଚିଲିକା ମାଛ ଗଲା କୁଆଡ଼େ? ଆମର ସମୁଦ୍ର ମାଛ ଗଲା କୁଆଡ଼େ?

ଯାହା ଜଣାପଡୁଛି – ମତ୍ସ୍ୟଚାଷ ଯୋଜନାରେ ଖାଲି ସରକାରୀ କର୍ମଚାରୀମାନେ ପୋଷା ହେଉଛନ୍ତି। କିନ୍ତୁ ମତ୍ସ୍ୟ ଉତ୍ପାଦନ କିଛି ବଢୁନାହିଁ। କେମିତି ବଢ଼ିବ? ଥରେ ଗୋଟିଏ ଗାଁକୁ ଯାଇଥିଲି। ଜଣେ ଗ୍ରାମବାସୀଙ୍କ ଘରେ ଅତିଥି ହୋଇ ଥିଲି। ସେ ମତେ ସେଦିନ ଶେଉଳ ମାଛର ବେଶର ଖୁଆଇଲେ–ମୁଁ ଅନେକ ଦିନଧରି ଶେଉଳ ମାଛ ଖାଇ ନ ଥିଲି। କାରଣ, ଆମର ରାଜଧାନୀ ବଜାରକୁ ଶେଉଳ ମାଛ ଖୁବ୍ କମ୍ ଆସେ। ତାର କାରଣ ହେଲା– ଆମ ରାଜଧାନୀବାଲାଙ୍କ ଧାରଣା ଯେ ମାଛ କହିଲେ କେବଳ ରୋହୀ, ଭାକୁଡ଼କୁ ବୁଝାଏ। ନ ହେଲେ ଚିଙ୍ଗୁଡ଼ି' ଖୁବ୍ ବେଶି ହେଲେ ଇଲିସି – ନ ହେଲେ ଚିଲିକାର ଖଇଙ୍ଗା, ଜାହାଙ୍ଗିର। ତେ ସେଇ ସବୁ ମାଛ ଆସେ ବେଶି ରାଜଧାନୀ ହାଟକୁ।

ଆମେ କିନ୍ତୁ ଯେଉଁମାନେ ପିଲାଦିନୁଁ ମଫସଲରେ ବଢ଼ିଥିଲୁ – ମତ୍ସ୍ୟରୁଚି ଅଲଗା ଏବଂ ଖୁବ୍ ଉଦାର। ଆମେ ସବୁ ପ୍ରକାର ମାଛ ଓ ତାର ସ୍ୱାଦ ପାଇପାରୁ। ସବୁ ମାଛ ମଧ ତା' ବାଗରେ ଦ' ପ୍ରତି ପ୍ରକାର ମାଛକୁ ବିଭିନ୍ନ ପ୍ରକାରେ ରାନ୍ଧିଲେ ତା' ସୁଆଦ ବା' ଗଡ଼ିଶା ମାଛର ଚଟଣି ମଜା ଏ ସହରିଆ କୁଆଡ଼େ ପାଇବେ? '

ସୋରିଷତେଲ ଓ ପୋଡ଼ା ଗଡ଼ିଶା ମାଛକୁ ଏକାଠି ଧନିଆପତ୍ର ଚଟଣି ସଙ୍ଗେ ମିଶାଇ ଖାଆନ୍ତୁ – ତା' ତାର୍ଭମ ପାଇବେ। ସେମିତି, ତୋଡ଼ି ମାଛର ହଳଦୀପାଣି —ଖଇଙ୍ଗା ମାଛବି ଝଡ଼ା ବେସର – ଶେଉଳ ବା ଗଡ଼ିଶା ମାଛର ଦକ୍ଷିଣୀ ଆମ୍ବିଳି ତର୍କାରୀ – ବାଇଁଶପତ୍ରୀ, କଲ୍ଲା, ସିଙ୍ଗି, ପ୍ରଭୃତି ସାନ ମାଛ (ମଫସଲରେ କହନ୍ତି ମାଇ ମାଛ)ର ରାଇତା – ଭୃଷିଚିଙ୍ଗୁଡ଼ି ଓ କଖାରୁ ତର୍କାରୀ ଚିତଳ ମାଛର ପେଟି ଭଜା ବାଳିଆ ମାଛର ଆମ୍ବୁଲ ବେସର, କଉ ଓ ମାଗୁର ମାଛର ବେସର ପାଣି ବା ସୁପ୍ – ବାଳିଆ ମାଛର ବାଲିଆ – କେରାଣ୍ଡି ମାଛର ମହୁର– ଏସବୁ ଚମତ୍କାର ଜିହ୍ୱାତୋଷଣୀ ଖାଣ୍ଟି ଓଡ଼ିଶୀ ଢଙ୍ଗର ଆଇଁଷପାକ ଆଜିକାଲି ଆଉ ଆମ ସହରର ବାବୁ ବାବୁଆଣୀ ବା ସାଇବ ସାଇବାଣୀମାନଙ୍କୁ ଜ୍ଞାତବ୍ୟ ନାହିଁ। ଫଳରେ ସେଇ ରୋହୀ—ଭାକୁଡ଼—ଚିଙ୍ଗୁଡ଼ି ଉପରେ ସମସ୍ତେ ପଡ଼ୁଛନ୍ତି। ଆଉ, ଏ ମତ୍ସ୍ୟ ବିଭାଗ – ଧନ୍ୟ କହିବା – ସେମାନେ ମଧ ସେହି ରୋହୀ ଭାକୁଡ଼ ମାଛ ଚାଷରେ ମାତିଛନ୍ତି। ଫଳରେ ଯାହା ହେବାର କଥା ହେଉଛି। ଆରେ ବାବୁ! ଆମର ଉପକୂଳ ଅଞ୍ଚଳରେ କମ୍ ଖାଲ, ଖମା, ଗଡ଼ିଆ, ନୟନିଜୋରୀ ରହିଛି? କମ୍ ନାଳ ଜୋଡ଼ ରହିଛି? କମ୍ ସାନ ବଡ଼ ଜଳଭୂଇଁ ରହିଛି? ସବୁଠି ଦେଖିବେ ଘୋଡ଼ା, ଦଳ ନ ହେଲେ ବିଲାତି ଦଳ ଭର୍ତ୍ତି। ଏବଂ ଠାଏ ଠାଏ ପୁଣି ଅମରୀ ଗଛର ବଣ ମାଡ଼ିଛି। କିଓ! ସେଇ ସବୁ ଜାଗାରେ କଉ, ମାଗୁର, ରଡା, ଗଡ଼ିଶା, ଶେଉଳ ଚାଷ କରନ୍ତୁ। ସେ ସବୁ ମାଛ କେମିତି ବଢ଼ିବେ, ତାର ଚେଷ୍ଟା କରନ୍ତୁ! ଚିତଳ, ବାଳିଆ, ଆଳି, ସିଙ୍ଗି, କଣ୍ଟିଆ ପ୍ରଭୃତି ମାଛଙ୍କ ବଂଶ କେମିତି କୋଉଠି କୋଉ ବାଗରେ ବଢ଼ିବେ, ତାର ଉପାୟ ବାହାର କରନ୍ତୁ! ଖାଲି ସେଇ ରୋହୀ, ଭାକୁଡ଼କୁ ନେଇ ମାତିଛ କାହିଁକି?

ସେଦିନ ସେ ଗାଁରେ ମାଛ କଥା ପଡ଼ିଥିଲା। ଜଣେ ଦି' ଜଣ ତାଙ୍କ ପୋଖରୀରେ ମାଛ ବିଭାଗରୁ ରୋହୀ ଭାକୁଡ଼ ଜାଆଁଳ ଆଣି ଛାଡ଼ିଥିଲେ। ମାତ୍ର ଦୁଇବର୍ଷ ବିତିଗଲାଣି ମାଛଗୁଡ଼ିକ ମାତ୍ର ଅଧକିଲେ ଓଜନର ହୋଇ ମଧ ବଢ଼ି ନାହାନ୍ତି। କ'ଣ ଏହାର କାରଣ? ମାଛ ବିଭାଗର ଜଣେ କର୍ମଚାରୀଙ୍କୁ ଏହାର କାରଣ ପଚାରନ୍ତେ – ସେ ବଡ଼ ବିଜ୍ଞାନୀସୁଲଭ ଏବଂ ଅଫିସରୀୟ ଢଙ୍ଗରେ କହିଲେ – ଏ ଗାଁବାଲାମାନେ ଆଦୌ ଜାଆଁଳମାନଙ୍କର କେୟାର ନେଇ ପାରୁ ନାହାନ୍ତି। ପ୍ରପର ଫିଡ୍ ମଧ ଦେଇପାରୁ ନାହାନ୍ତି। ତେଣୁ ମାଛ ବଢ଼ିବେ କେମିତି?

ମତ୍ସ୍ୟ ଅଫିସରଙ୍କ କଥା ଶୁଣି ଜଣେ ରାହାବାଳିଆ ଗ୍ରାମବାସୀ ଉତ୍ତ୍ୟକ୍ତ ହୋଇ କହିଲେ–

ଆରେ ଯାଅ ହେ! କେୟାର ଫିଇଡ଼ି। ଆମ ଜଗୁସୋଇଁ ପୁଅ ମାଧୁଆ ଫି ବରଷ ନଈ ଜାଆଁଳ ଆଣି ତା ଗାଡ଼ିଆରେ ଛାଡ଼ୁଛି। ଆଠ ଦଶ ମାସରେ

ସେ ଶଳା ଜାଆଁଳ ହୋଇଯାଉଛନ୍ତି କିଲେ ଦେଢ଼କିଲେ। ତୁମର ତ ଏ ହେଲା ଇଞ୍ଜେକ୍ସନ ଜାଆଁଳ। ଇଞ୍ଜେକ୍ସନ ଢର୍ସି ବାବୁରୀ ଯେମିତି, ଏ ସେମିତି। ତାଙ୍କ ଦେହରେ ପାବାର କୋଉଠୁ ଆସିବ ଯେ ସେ ବଢ଼ିବେ ?

ମତ୍ସ୍ୟ ଅଫିସର ଜଣକ ତାଙ୍କ ନିଜ ଧନ୍ଦାରେ ବ୍ୟସ୍ତ। ସେ ଖଣ୍ଡିଏ କୋଠା ତୋଳୁଛନ୍ତି। ଚୋରା ସିମେଣ୍ଟ କୋଉଠୁ ଯୋଗାଡ଼ ହେବ – ସେଥିଲାଗି ତାଙ୍କ ମନ ଯାଇ କୋଉଠି କୋଉଠି। ମାଛ–ବଂଶ ବୃଦ୍ଧି ହେଲା କି ନାହିଁ – ମାଛଙ୍କ ଓଜନ ବଢ଼ିଲାକି ନାହିଁ – ସେ କଥାରେ କଣ ତାଙ୍କ ମୁଣ୍ଡ କେବେ ଥିଲା ? ନା’ ବର୍ତ୍ତମାନ ଅଛି ? ନା’ ଭବିଷ୍ୟତରେ ରହିବ ? ମାଛ ବିଭାଗରେ ଚାକିରିଟି କରିଛନ୍ତି। ମାଛ ଭାତ ଖାଇବାକୁ ସୁଯୋଗ ମିଳିଛି। ଦରମା ଗଣ୍ଡାକ ବି ମାସକୁ ମାସ ମିଳିଯାଉଛି। ଆଉରି ଦରମାହାର ବୃଦ୍ଧି କରିବାପାଇଁ ନିକଟରେ କୁଆଡ଼େ ଗୋଟିଏ ଧର୍ମଘଟ ହେବ – ଏଥିପାଇଁ ମଧ୍ୟ କୁଆଡ଼େ ଆୟୋଜନ ଚାଲିଛି। ତେଣୁ ମତ୍ସ୍ୟ ବିଭାଗ କର୍ମଚାରୀଙ୍କ ମୁଣ୍ଡରେ କିପରି ଏ ମତ୍ସ୍ୟ ସମସ୍ୟାଟି ଭୁକିବ ?

ଛାଡ଼ନ୍ତୁ ତାଙ୍କ କଥା। ଆମର ବର୍ତ୍ତମାନ ସମସ୍ୟାଟି ହେଲା – ମାଛ ଦର କେମିତି କମିବ। କେମିତି ଆମର ମାଛବଜାରକୁ ବେଶି ମାଛ ଆସିବ। କେମିତି କେବଳ ରୋହୀ ଭାକୁଡ଼ ପରିବର୍ତ୍ତେ ହରେକ୍ ଜାତିର ସାନ ବଡ଼ ମାଛରେ ବଜାରଟି ସତକୁ ସତ ମତ୍ସ୍ୟବନ୍ତ ହୋଇଉଠିବ। ଏବଂ ଶେଷରେ ମାଛର ଦର କେ.ଜି. ୫ ଟଙ୍କାରୁ ୧୦ ଟଙ୍କା ଭିତରେ ରହିଲେ, କେମିତି ଆମର ଏଇ ସାମାନ୍ୟ ନିର୍ଦ୍ଦୋଷ ଆମିଷ ଲାଳସାଟି ସୁରୁଖୁରୁରେ ଚରିତାର୍ଥ ହୋଇ ପାରିବ !!

❋❋

# କେନ୍ଦୁଲୀର କାରୁଣ୍ୟ

୧୬/୭/୮୧

ମହାନ ବୈଷ୍ଣବ କବି ଜୟଦେବଙ୍କ ଜନ୍ମସ୍ଥଳୀ କେନ୍ଦୁଲୀ ଗାଁ। ଭୁବନେଶ୍ୱର ଠାରୁ ମାତ୍ର ପଚିଶି କିଲୋମିଟର। ସେଇ ଗାଁରେ ଜୟଦେବଙ୍କ ସମୟର ସ୍ମୃତିବହନକାରୀ ଗୋଟିଏ କ୍ଷୁଦ୍ର ମିଉଜିୟମ। ଆଠ ଦଶଟି ପ୍ରାଚୀନ ଭଙ୍ଗାମୂର୍ତ୍ତି ରହିଛି। ତା' ପାଖରେ ଇଟାର ଦେଉଳଟିଏ। ପ୍ରାଚୀନ ଭଗ୍ନ ମନ୍ଦିରଟିକୁ ପ୍ରତ୍ନତତ୍ତ୍ୱ ବିଭାଗ ଆଉ ଥରେ ଗଢ଼ିଛନ୍ତି। ତା' ଭିତରେ ଅତି ସୁନ୍ଦର ଦୁଇଟି ଦେବୀମୂର୍ତ୍ତି – ମୁଗୁନି ପଥରରେ ଗଢ଼ା। ଏପରି ନିଖୁଣ ଅବସ୍ଥାରେ ରହିଛି ଯେ ମନେହେବ ଗତକାଲି ବୋଧହୁଏ ତିଆରି ହୋଇଛି। ମାତ୍ର ମନ୍ଦିର ଭିତର ଘୋର ଅନ୍ଧକାର। ମହାନ୍ ବୈଷ୍ଣବକବି ଜୟଦେବଙ୍କ ଗାଁର ଲୋକେ ସେ ଦେବୀମୂର୍ତ୍ତିକୁ ପୂଜା କରନ୍ତି କି ନାହିଁ ଜଣାପଡ଼େନା। କାରଣ, ସେ ମନ୍ଦିର ଭିତରେ ଦୀପଟିଏ ଜଳୁ ନଥିଲା; କିମ୍ବା ଧୂପଟିଏ ଗନ୍ଧ ପ୍ରସରୁ ନଥିଲା।

ମନ୍ଦିର ଓ ମିଉଜିୟମ ଚାରିପଟେ ଅନାବନା ଘାସ, ବେଣା ଓ ଜୁଣର ଜଙ୍ଗଲ। ସେଠି ଉଦ୍ୟାନଟିଏ କେବେ ଆରମ୍ଭ ହୋଇଥିଲା ବୋଲି ଜଣାଯାଏ, ମାତ୍ର ବର୍ତ୍ତମାନ ସବୁକୁ ଆବୋରି ବେଣା ଜୁଣ ଓ ଅନାବନା ଘାସ ମାଡ଼ି ଗଲାଣି। ସେଇ ଆଣ୍ଠିଏ ବହଳର ବେଣାଘାସ ଭିତରେ ପଶି ତେର ଚଉଦ ବର୍ଷର ଝିଅଟିଏ ଦାଆରେ ଘାସ କାଟୁଥିଲା। ତାର ଦେହରେ ମଳିନ ଆଉ ଜୀର୍ଣ୍ଣ ଫ୍ରକ୍‌ଟିଏ। ବେଣାବଣ ଭିତରୁ ଘାସ କାଟୁ କାଟୁ ସେ ବିଷାଦଭରା ମୁହଁଟି ଟେକି ମଧ୍ୟେ ମଧ୍ୟେ ଚାରିଆଡ଼କୁ ଚାହୁଁଥାଏ। ତା' ପ୍ରତି ଅନ୍ୟର ଦୃଷ୍ଟି ଆକର୍ଷଣ କରିବା ଥିଲା ତାର ଉଦ୍ଦେଶ୍ୟ। କାରଣ, ସେଦିନ ଭୁବନେଶ୍ୱରରୁ କେତେକ ମାନ୍ୟଗଣ୍ୟ କବି, ଲେଖକ, ପଣ୍ଡିତ, ଅଧ୍ୟାପକ ଜୟଦେବଙ୍କ ଜନ୍ମପୀଠକୁ ଆସି ମିଉଜିୟମ ଘରେ ସାହିତ୍ୟ ସଭାଟିଏ କରୁଥିଲେ। ସେମାନଙ୍କୁ ଚର୍ଚ୍ଚା କରିବାପାଇଁ ବ୍ଲକ ଓ ତହସିଲର ସରକାରୀ କର୍ମଚାରୀଙ୍କ ସମେତ କେତେକ ଗ୍ରାମବାସୀ ମଧ୍ୟ ସେଠାରେ ସମବେତ ହୋଇଥିଲେ। ଭୁବନେଶ୍ୱରର ଖୋଦ ଏସ.ଡ଼ି. ଓ. ସାହେବ ମଧ୍ୟ ଉପସ୍ଥିତ ଥିଲେ। କବିମାନଙ୍କର ଚର୍ଚ୍ଚାଲାଗି ରୋଷେଇ ବାସ ହେଉଥିଲା। ତେଣୁ ସେହି ନିର୍ଜନ ପରିବେଶରେ ସାମୟିକ ଭାବେ କିଛି

କଳରୋଳ, ଧାଁ ଧପଡ଼ ମଧ୍ୟ ସୃଷ୍ଟି ହୋଇଥିଲା। ରାଜ୍ୟର ଶିଷ୍ଟ ଓ ବିଶିଷ୍ଟ କବି ଲେଖକମାନେ ଚାରିଆଡ଼େ ବୁଲିସାରି ମିଉଜିୟମ ଘରେ ବସି ସଭା ଆରମ୍ଭକଲେ।

ଝିଅଟି କାତର ଭାବରେ ପୁଣି ଚାରିଆଡ଼କୁ ଚାହିଁଲା ଏବଂ ତା' ଆଡ଼କୁ କେହି ଆକର୍ଷିତ ହେଲେ ନାହିଁ ଦେଖି ଉଠି ଠିଆହେଲା।

ମୁଁ ତା' ଉଦ୍ଦେଶ୍ୟ ବୁଝିପାରି ତା' ପାଖକୁ ଗଲି। ତା' ମୁହଁ ଉଜ୍ଜ୍ୱଳ ଦେଖାଗଲା। ମୁଁ ପଚାରିଲି, ଆଲୋ ସୁନା ଝିଅ। ଗାଈ ପାଇଁ ଘାସ କାଟୁଛୁ କି? ସେ ଖୁବ ସ୍ପଷ୍ଟ ଆଉ କରୁଣ ଗଳାରେ କହିଲା – ହଅବାବୁ! ଘାସ ନ କାଟି ଆଉ ମୁଁ କଣ କରନ୍ତି? ମୁଁ ତାର କଅଁଳ ମନରୁ ଗ୍ଲାନି ପୋଛିବା ଲାଗି ତାର ଆହୁରି ପାଖକୁ ଯାଇ ତାକୁ ଘାସକାଟିବା କାମ ସଙ୍ଗେ ପୃଥିବୀର ସବୁପ୍ରକାର କାମ ସମାନ ବୋଲି ପ୍ରତିପାଦିତ କରି ଛୋଟ ବକ୍ତୃତାଟିଏ ଦେଲି। କାରଣ ବକ୍ତୃତା ଦେବାରେ ମୁଁ ନିଜେ ବଡ଼ ଓସ୍ତାଦ ଲୋକ। ଓଡ଼ିଶାର ତିନି ଚାରି ଜଣ ବିଖ୍ୟାତ ବକ୍ତାମାନଙ୍କ ଭିତରେ ମୁଁ ଅନ୍ୟତମ ବୋଲି କିମ୍ବଦନ୍ତୀ ତିଆରି ହୋଇଗଲାଣି। ଝିଅଟି ମୋ ମୁହଁକୁ ତବ ତବ କରି ଚାହିଁଥାଏ। ତାର ଫର୍ଚ୍ଚା ଆଖି ଦୁଇଟି ବାଷ୍ପାଚ୍ଛନ୍ନ ହୋଇଯାଇଥାଏ। ମୋ କ୍ଷୁଦ୍ର ବକ୍ତୃତାଟି ସରିବା ମାତ୍ରେ ସେ କହିଲା – ସାର୍। ଆପଣଙ୍କର ମୋ ଭଳି ଝିଅ ଅଛନ୍ତି? ମୁଁ କହିଲି, ହଁ ଅଛନ୍ତି – ମାତ୍ର ବର୍ତ୍ତମାନ ସେମାନେ ଖୁବ୍ ବଡ଼ ହୋଇଗଲେଣି ଏମ. ଏ. ପାସ କଲେଣି। ଜଣେ ତା ଭିତରୁ ଅଧ୍ୟାପିକା। ଆରଟି ଜଣେ ଇଞ୍ଜିନିୟରକୁ ବିବାହ କରିଛି। ତାର ଦୁଇଟା ପିଲା। ମୋ କଥା ଶୁଣି ସେ ବାର ତେର ବର୍ଷର ଝିଅଟି କହିଲା – କେବେ ଘାସ କାଟିଛନ୍ତି? ଏହା ଶୁଣି ମୁଁ ଚମକି ପଡ଼ିଲି ଏବଂ ମୋ ମନରୁ ବକ୍ତୃତାନିଶା ଛାଡ଼ିଗଲା। ମୋ ଗଳା ଆପଣା ଛାଏଁ ଦବିଗଲା। ମୁଁ କହିଲି – ନା। ସେମାନେ କେବେ ଘାସ କାଟି ନାହାନ୍ତି। ... ଛାଡ଼ ସେ କଥା। ତୁମର କେତୋଟି ଗାଈ? ସେ କହିଲା – ଗୋଟିଏ। ମୁଁ ପଚାରିଲି – କେତେ ଦୁଧ ଦେଉଛି? ସେ କହିଲା – ଆଉ ଦୁଧ ଦଉନି। ଦୁଇମାସ ହେଲା ଛାଡ଼ିଗଲାଣି। ତା' ବାଛୁରୀକୁ କଣ ରୋଗ ହେଲା – ମରିଗଲା। ମୁଁ କହିଲି – ପଶୁ ଡାକ୍ତରଙ୍କୁ ଦେଖାଇଲ ନାହିଁ? ସେ କହିଲା – ଆମ ଗରିବ ଲୋକଙ୍କ ଗାଈ ପେଇଁ କଣ ପଶୁ ଡାକ୍ତର ଅଛନ୍ତି? ମୁଁ ପଚାରିଲି – କି ଗାଈ ତୁମର? ଜର୍ସି? ସେ କହିଲା – ନାଇଁ ବାବୁ, ଦେଶୀ ଗାଈ। ତଥାପି ଦୁଇଲିଟର ଦୁଧ ଦେଉଥିଲା। ସେତେକ ବିକି ଚଳୁଥିଲୁ। ଆମର ଜଉତିଶ ଘର। ଆମେ ତିନି ଭଉଣି; ଭାଇ ନାହିଁ। ମୋ ଉପର ଦୁଇ ଭଉଣୀ ମାଇନର ପାସ୍ କରି ଛ' ସାତ ବର୍ଷ ହେଲାଣି ଘରେ ଅଛନ୍ତି। ବାହା ହୋଇପାରି ନାହାନ୍ତି। ଆମ ବ୍ଲକରେ ଏତେ ଅଫିସ ହେଲା, ଗାର୍ଲସ୍କୁଲ ହେଲା, କୋଉଠି ପିଅନ ଚାକିରିଟିଏ ବି ମିଳିଲା ନାହିଁ। ବାପା ତ ଆମକୁ ଅନାଥ କରି ଚାଲିଗଲେଣି ସାତବର୍ଷ ହେଲା।

ଘରବାଡ଼ି ମିଶି ଛଅ ସାତଗୁଣ୍ଠ ଜମି। ପାଞ୍ଚଛଅଟି ନଡ଼ିଆଗଛ। ନଡ଼ିଆ ବିକି, ଅଦା ବିକି, ଦୁଧ ବିକି, ପର ଘରେ କାମଦାମ କରି ମାଆ ଆମକୁ ଏତେଦିନ ମହାକଷ୍ଟରେ ଚଳେଇଲାଣି। ବାଛୁରୀଟି ମରିଗଲାଦିନୁ ମଳା କରି ଗାଈ ଦୁହୁଁଛୁ। ଅଧଲିଟରେ ଦୁଧ ଦେଉଛି କି ନାହିଁ। ଆମ ଅବସ୍ଥା ଅସମ୍ଭାଳ ହେଲାଣି ସାର୍। ଏ ବର୍ଷ ଆମେ ପାଞ୍ଚପ୍ରାଣୀ କେମିତି ବଞ୍ଚିବୁ? ଏତିକି କହି ଝିଅଟି କାନ୍ଦି ପକାଇଲା। ଆମର କେହି ସାହା ନାହାନ୍ତି।

ଏଭଳି ପରିସ୍ଥିତିର ସମ୍ମୁଖୀନ ହେବି ବୋଲି ଜାଣି ନଥିଲି। ମୁଁ ଜଣେ ପ୍ରତିଷ୍ଠିତ ସାହିତ୍ୟିକ, ସ୍ୱନାମଧନ୍ୟ ପଣ୍ଡିତ ବାଗ୍ମୀପ୍ରବର। ବକ୍ତୃତା ଦେବାକୁ ଆସିଥିଲି। ମହାନ କବି ଜୟଦେବଙ୍କ ଲଳିତ ଲବଙ୍ଗଲତା ପରିଶୀଳନ କୋମଳ ମଳୟ ସମୀରେ ବା ରତି ସୁଖସାରେ ଗତମ ଅଭିସାରେ ଆବୃତ୍ତି କରି କବିଙ୍କ ଜନ୍ମପୀଠରୁ ସେହି ଦିବ୍ୟ ଉଜ୍ଜ୍ୱଳ ଶୃଙ୍ଗାର ରସର ସ୍ୱାଦ ଉପଭୋଗ କରିବାକୁ ଆସିଥିଲି। ସେହି ଦିବ୍ୟଉଲ୍ଲାସ ଓ ସ୍ପନ୍ଦନ ଅନୁଭବ କରିବାକୁ ଆସିଥିଲି। କବି ଜୟଦେବ ନିଶ୍ଚିତ ଭାବେ ଓଡ଼ିଶାର କବି – ସେ ସମ୍ବନ୍ଧେ ବହୁ ତଥ୍ୟପ୍ରମାଣ ମୁଁ ସଂଗ୍ରହ କରିଛି ଓ ସେ ସମ୍ବନ୍ଧେ ମୋର ବହୁ ତଥ୍ୟ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଛି ଏବଂ ଆଜି ଏହି ବିଦଗ୍ଧ କବି ପଣ୍ଡିତଙ୍କ ସମ୍ମୁଖରେ ମୁଁ ମୋର ସେହି ଜ୍ଞାନ ସପ୍ରମାଣ ପ୍ରଦର୍ଶନ କରିବାକୁ ଆସିଥିଲି। ବର୍ତ୍ତମାନ ପାଗଟି ମଧ ଅବିକଳ ଜୟଦେବଙ୍କ କାବ୍ୟବର୍ଣ୍ଣିତ ପାଗଭଳି ହୋଇଛି। ମେଘୈର୍ମେ ଦୁରମମ୍ବରଂ – ବନଭୂମି ଶ୍ୟାମସ୍ତମାଳ ଦ୍ରୁମୈଃ।

ମାତ୍ର ଏ କଣ? ଏ କିଏ? କଣ ଏ କହୁଛି ମତେ! କଣ ସେ ଦେଖାଉଛି ମତେ? କି ସ୍ପନ୍ଦନ ସେ ମତେ ଦେଇଛି। ମୁଁ ଧୀର ଦୁଃଖିତ ସ୍ୱରରେ ପଚାରିଲି–ଆରେ ଝିଅ! ତୁ କିଛି ପାଠ ପଢ଼ିଛୁ? ଝିଅଟି କହିଲା--ହଁ ସାର୍! ମୋର ବର୍ତ୍ତମାନ ଦଶମ ଶ୍ରେଣୀ ହୁଅନ୍ତାଣି। କିନ୍ତୁ ମୁଁ ପଢୁଛି ସପ୍ତମରେ। ବହି ଖଣ୍ଡିଏ, ଖାତା ଖଣ୍ଡିଏ କିଣିବାକୁ ପଇସା ନାହିଁ। କଣ ପାଠ ପଢ଼ିବି? ଗରିବ ଘର ଝିଅ ହେବା ଅପେକ୍ଷା ମରିଯିବା ଭଲ। ଝିଅଟି ପୁଣି କାନ୍ଦିଉଠିଲା। ମୁଁ ତା ପିଠିକୁ ଆଉଁସି ଆଉଁସି କହିଲି–କାନ୍ଦନା ଝିଅ! ଏ ଦେଶରେ ଅଧିକାଂଶ ଗରିବ। ତୁମେ କଣ ଏକା?

ଏହି ସମୟରେ ଦୂରରୁ ପାଟି ଶୁଭିଲା–ହେଲେ ବାବୁ! ଆମ ଭଳିଆ ଗରିବ ଅଛିତ ଏ ଖଣ୍ଡମଣ୍ଡଳରେ ନାହାନ୍ତି। ତିନିତିନିଟା ବଢ଼ିଲା ଝିଅ ଘରେ–ବାପ ନାହିଁ–ଖାଇବାକୁ ନାହିଁ–ପିନ୍ଧିବାକୁ ନାହିଁ–ସାହା ଭରସା କେହି ନାହିଁ–ଗାଁଟା ଯାକ ଯେଝା କଥାରେ ଯେ ଅଛନ୍ତି। ବଢ଼ିଲା ଝିଅ ତିନିଟାକୁ ଧରି ମୁଁ ଏମିତି କେମିତି ବଞ୍ଚିବି? ଆଜିକାଲି ପୁଣି ଯୋଉ କାଳ?

ମୁଁ ଚାହିଁ ଦେଖିଲି–ଗୋଟିଏ ପୋଲାଙ୍ଗଗଛ ମୂଳେ ଠିଆହୋଇଛି ସ୍ତ୍ରୀ ଲୋକଟିଏ। ବିକଟ ଦାରିଦ୍ର୍ୟ, ନୈରାଶ୍ୟ, ଅସହାୟତା ଓ କିଂକର୍ତ୍ତବ୍ୟବିମୂଢ଼ତାର କରୁଣ ମୂର୍ତ୍ତିଟିଏ। ଛୋଟ ଛିଣ୍ଡା ଗାମୁଛାଟିଏ ବେହରଣ। କଙ୍କାଳସାର ଚାମୁଣ୍ଡା ମୂର୍ତ୍ତିଟିଏ। ତା'ର ଦୁଇ ପାଖରେ ଠିଆହୋଇ ରହିଛନ୍ତି–ଦୁଇଟି ଯୁବତୀ ଝିଅ। ବିକଟ ଦାରିଦ୍ର୍ୟର ଘୋର ଅତ୍ୟାଚାର ଓ ପ୍ରତିରୋଧ ସତ୍ତ୍ୱେ ଯୌବନ ତାର ଯତ୍‌ସାମାନ୍ୟ କାରୁକାର୍ଯ୍ୟ ସମ୍ପନ୍ନ କରି ସାରିଛି ଝିଅ ଦୁଇଟିର ଅଙ୍ଗପ୍ରତ୍ୟଙ୍ଗରେ। ପ୍ରାଚୀନ ଉତ୍କଳର ସୁଦକ୍ଷ କାରିଗରଙ୍କ ଅପୂର୍ବ ବିଜ୍ଞାଣୀ ହାତରେ ମୁଗୁନି ପଥରର ସୁନ୍ଦର ସୁଢ଼ଳ ମୂର୍ତ୍ତି ଭଳି ଠିଆ ହୋଇଥାନ୍ତି ଯୁବତୀ ଝିଅ ଦୁଇଟି। କିନ୍ତୁ ମୁହଁ ଦୁଇଟିରେ ବିଷାଦ, ଗ୍ଲାନି, ଭୟ, ଅସହାୟତା, ବିମୂଢ଼ତାର କଳାମେଘ ଘୋଟି ରହିଥାଏ। ନୀରବ, ନିସ୍ପନ୍ଦ।

କଙ୍କାଳସାର ଚାମୁଣ୍ଡା ମୂର୍ତ୍ତି ଭଳି ସେହି ମାଆଟି ରାଉ ରାଉ ହୋଇ ମୋତେ ଅନୁରୋଧ କରୁଥାଏ। ବାବୁ! ଏସ.ଡ଼ି.ଓ. ସାହେବ ଆଇଛନ୍ତି। ତେମେ ଆପଣ ଟିକିଏ ଆମ ଦୁଃଖ ତାଙ୍କୁ କୁହ। ତୁମକୁ ନେହୁରା ହେଉଛୁ।

...ଏସ୍.ଡ଼ି.ଓ.ଙ୍କୁ ଡାକି ସେମାନଙ୍କୁ ମୁକାବିଲା କରାଇଦେଲି। ଏସ୍.ଡ଼ି.ଓ. ମଧ୍ୟ ସେମାନଙ୍କୁ ସାହାଯ୍ୟରେ କିଛି ପ୍ରତିଶ୍ରୁତି ଦେଲେ।

ମାତ୍ର ଆଜି ପର୍ଯ୍ୟନ୍ତ ବି ମୋ ମନରୁ ମହାନ ବୈଷ୍ଣବ କବି ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁଲୀ ଗାଁର ସେହି କରୁଣ ଛବି ଯାଉନାହିଁ। ଚାମୁଣ୍ଡା ମୂର୍ତ୍ତି ଭଳି ସେହି କଙ୍କାଳ ମାତ୍ର ସର୍ବସ୍ୱା ଅସହାୟା ମାଆଟି, ଆଉ ତା' ପାଖରେ ସେହି ନିସ୍ପନ୍ଦ, ନିରୀହ, ନିରିମାଖୀ, ବିଷର୍ଣ୍ଣ ଚାହାଣୀରେ ଡବ ଡବ କରି ଚାହିଁ ରହିଥିବା ଯୁବତୀ ଝିଅ ଦୁଇଟି–ଆଉ ବେଣା ଓ ଜୁଣ ବଣ ଭିତରେ ବମ୍ବାହରା ଦୁଗ୍ଧହୀନା ଏକମାତ୍ର ଗାଈଟି ଲାଗି ଘାସ କାଟୁଥିବା ଓ ଆପଣା ଦାରିଦ୍ର୍ୟ ଓ ଅସହାୟତାକୁ ସଷ୍ପସ୍ୱରରେ ଘୋଷଣା କରୁଥିବା ସେହି ନିର୍ଲଜ୍ଜା କିଶୋରୀଟି।

ମୋର ମନେହୁଏ–ପ୍ରଥମେ ଏହିମାନଙ୍କ ସମସ୍ୟା ଦୂର ନ ହେବା ପର୍ଯ୍ୟନ୍ତ ମହାନ ବୈଷ୍ଣବକବି ଜୟଦେବ ଓଡ଼ିଶାର ନା ବଙ୍ଗଳାର, ସେ ବିଚାର ଏକ ଅବାନ୍ତର ବିତଣ୍ଡା। ସେମିତି ମଧ୍ୟ ଲଳିତ ଲବଙ୍ଗଲତା ପରି ଶୀତଳ ବା ରତିସୁଖସାରେ ଗତମଭିସାରେ ଭଳି କାନ୍ତକୋମଳ ରସାଳ ପଦଗୁଡ଼ିକ ମନେ ହେଉଛି ସତେ କି ଅର୍ଥହୀନ ଧ୍ୱନି ଗୁଡ଼ିଏ।



# ଯେଠାରେ ବୀଷୁଧ ଗବ୍ଯ ଘୃତ ମିଳେ....

୪।୧୧।୮୧

ଆମ୍ଭର ଇତିମଧ୍ୟରେ କିଛି ବିଶୁଦ୍ଧ ଗବ୍ୟଘୃତ ଦରକାର ପଡ଼ିଲା। ଆମ୍ଭେ ତହୁଁ ଏଇ ଜମ୍ବୁଦେଶ ଓଡ଼ରାଷ୍ଟ୍ର ମଣ୍ଡଳର ଖୋଦ ରାଜଧାନୀ ଗୁପ୍ତକାଶୀ ସ୍ୱରୂପ ଲିଙ୍ଗରାଜପୀଠ ଭୁବନେଶ୍ୱରରେ କଳା ଓ ଧଳା ଉଭୟ ବାଣିଜ୍ୟରେ କୁଶଳ ଦୋକାନମାନ ବୁଲି ବୁଲି ସେହି ଦୁର୍ଲ୍ଲଭ ପଦାର୍ଥଟିକୁ ଖୋଜି ବୁଲିଲୁ। ମାତ୍ର ପାଇଲୁ ନାହିଁ। ଆପଣ ପଚାରିପାରନ୍ତି—ଏଭଳି ଅସମୟରେ ଆମ୍ଭ ସଦୃଶ କ୍ଷୀଣବିତ୍ତ ବ୍ୟକ୍ତିର ପୁଣି ଖାଣ୍ଟି ଗୁଆଘିଅର କ'ଣ ବା ଆବଶ୍ୟକତା ଥାଇପାରେ? ଆମେ କ'ଣ ସେମିତି ଲୋକ ହୋଇଛୁ—ଯେ, ଖରମରା ଖାଣ୍ଟି ଗୁଆଘିଅ ଚାରିଛଅ ଚାମୁଚ ବାସୁମତୀ ଚାଉଳର ଗରମ ଗରମ ଭାତ ଉପରେ ନ ପଡ଼ିଲେ, ପୁଣି ସେଥିରେ କାଗେଜୀ ରସ ଦେଇ ତାକୁ ନ ଦଳିଲେ ଆମ ତଣ୍ଟିରେ ଭାତ ଗଳିବ ନାହିଁ? ଭାତରେ ଘିଅ ଖାଇବା ଦିନ ଆମର କୋଉକାଳୁ ଗଲାଣି। ଆମ ବାପା ଖାଉଥିଲେ। ତାଙ୍କ ବାପା ବି ତାଙ୍କଣ ଅଗରେ ଗୁଆଘିଅ ଖାଉଥିଲେ ବୋଲି ପ୍ରବାଦ ରହିଆସିଛି। ଆମ ଭାଗ୍ୟରେ କିନ୍ତୁ ଅବଶ୍ୟ ନାହିଁ। ଆମେ ମଧ୍ୟ ବ୍ୟାଙ୍କ ଜରିଆରେ ଋଣ ଆଣି ଜର୍ସିଗାଈ କିଣି ପାଳିପୋଷି ନାହୁଁ। ଘିଅ ଦୁଧ କାହୁଁ ପାଇବୁ? ଗୋରୁ ପାଳିନାହୁଁ—ଗୋସେବା କରିନାହୁ। ଆମଭଳି ଦୁର୍ଭାଗା ଲୋକ ଡାଲଡ଼ା ଖାଇବାକୁ ବି ଯୋଗ୍ୟନୁହଁ—ଗବ୍ୟଘୃତ ପାଇଁ ଆଶା କରିବା କିମ୍ପାଇଁ? ତେବେ ସେକଥା ଛାଡ଼। ଭାତରେ ଖାଇବାକୁ ବା ପୁରି ଲୁଚି ଛାଣିବାକୁ ଆମେ ଖାଣ୍ଟି ଗୁଆଘିଅ ଦରକାର କରୁ ନଥିଲୁ। ତା'ହେଲେ କ'ଣ ପାଇଁ ଦରକାର କରୁଥିଲ ବୋଲି ପ୍ରଶ୍ନ ଉଠିପାରେ। କେହି ମଧ୍ୟ ପ୍ରଶ୍ନ କରିପାରେ—ଆଚ୍ଛା! ଦେବଦାସ ବାବୁ! ଆପଣ କ'ଣ କିଛି ଗ୍ରହ ଶାନ୍ତି ପାନ୍ତିପାଇଁ କୌଣସି ମାନସିକ ହୋମ ଫୋମ ବା ଯଜ୍ଞ ଫଜ୍ଞ କରୁଛନ୍ତି କି? ତା' ନ ହେଲେ, ଏ ଖରାଟାରେ ବଜାର ଛାକ ବୁଲି ବୁଲି ଖାଣ୍ଟି ଗବ୍ୟଘୃତ ଖୋଜୁଛନ୍ତି କାହିଁକି? ଖାଣ୍ଟି ଗବ୍ୟଘୃତ କେ.ଜି. କେତେ ଜଣାଅଛି ତ? ସତୁରୀ ଟଙ୍କା। ସାତରେ ଶୂନ ସତୁରୀ। କିଛି ଦୁଇରେ ଶୂନ ନୁହେଁ, କି ତିନିରେ ଶୂନ ନୁହେଁ। କାହିଁକି ତା'ହେଲେ ଏମିତି ଅକାଳ ସକାଳରେ ସାଇକେଲ ଧରି ସାରା ବଜାର ଗବ୍ୟଘୃତ ଖୋଜି ବୁଲୁଛନ୍ତି।

ଆରେ ବାବୁ! ସେକଥା ନୁହଁ। ତେବେ ଆପଣ ଏଣିକି ତେଣିକି ମାଡ଼ି ଯାଉଛ କାହିଁକି? ଆମେ କୋଉ ମହଣ ମହଣ ଘିଅ କିଣିବାକୁ ବାହାରିଛୁ ଯେ, ତେମେ ଆପଣ ଆମକୁ ଏତେ ଜିଜ୍ଞାସାବାଦ କରୁଛ? ତା'ଛଡ଼ା, ଆମର କୋଉ ରାଧା ଯାଧା ନାଚିବାକୁ ଅଛନ୍ତି ଯେ ଆମେ ଅଶୀ ମହଣ ବା ଲିଟର ଘିଅ ପୋଡ଼ିବା ଉଦ୍ଦେଶ୍ୟରେ ଘିଅ କିଣିବାକୁ ସାରା ବଜାର ଭଣ୍ଡି ବୁଲୁଛୁ? ତା' ହେଲେ କ'ଣ ଉଦ୍ଦେଶ୍ୟ ମହାଶୟ?

ଉଦ୍ଦେଶ୍ୟ ହେଲା–ପାଏ ଲିଟର ମାତ୍ର ବିଶୁଦ୍ଧ ଗବ୍ୟଘୃତ କିଣିବା। କାରଣ ଆମର ଧର୍ମପତ୍ନୀ ବୋଲାଉଥିବା ଅର୍ଦ୍ଧାଙ୍ଗିନୀଙ୍କର କଟୀବାତ ଯୋଗୁଁ ବଡ଼ କଷ୍ଟ ପାଉଛନ୍ତି। ହୋମିଓପାଥି, ୟୁନାନୀ, ଏଲୋପାଥି ସବୁ ଔଷଧ ଫେଲ ମାରିଲାଣି। ଏବେ ଆଉ କବିରାଜଙ୍କ ଅମୃତହସ୍ତରେ ଆମ ଅର୍ଦ୍ଧାଙ୍ଗିନୀଙ୍କ ବାତଗ୍ରସ୍ତ କଟୀଟି ପଡ଼ିଯାଇଛି। ସେ ଦୁଇଟି ତୈଳ ମାଲିସ କରିବାକୁ ଦେଇଛନ୍ତି। ତୈଳ ଦୁଇଟିର ନାଁ ସଂସ୍କୃତ ହୋଇଥିବାରୁ ମନେ ପଡୁନାହିଁ। ତେବେ, ବୋଧ ହୁଏ–ବୃହତ୍ ଗୁଡୁଚ୍ୟାଦି କି ଫୁଡ଼ୁଚ୍ୟାଦି ତୈଳ ଏବଂ ଆଉଟି ହେଲା ସମ୍ଭବତଃ ମହାମାଷ କି ମହାମେଷାଦି ତୈଳ। ହଁ ହଁ ଛାଡ଼ିଗଲି। ଦୁଇଟି ଯାକ ତୈଳର ନାମ ପଛରେ ବୃହତ୍ ଶବ୍ଦ ରହିଛି। ଏହା ସହିତ ସେ ଗୋଟିଏ ମୋଦକ ମଧ୍ୟ ତିଆରି କରି ଖାଇବାକୁ କହିଛନ୍ତି। କବିରାଜ ମହାଶୟଙ୍କ ନିର୍ଦ୍ଦେଶକ୍ରମେ ମୋତେ ଗତମାସଟି ଧରି ମୋଦକ ଉପଯୋଗୀ ପ୍ରାୟ ତିରିଶି ଗୋଟି କଞ୍ଚାମାଲ ବିଭିନ୍ନ ସ୍ଥାନରୁ ସଂଗ୍ରହ ଓ କ୍ରୟ କରିବାକୁ ପଡ଼ିଲା। ପାଞ୍ଚ ପ୍ରକାର ମୂଳ, ପାଞ୍ଚ ପ୍ରକାର ଫଳ, ତିନି ପ୍ରକାର ଛେଲି, ପାଞ୍ଚ ପ୍ରକାର ପତ୍ର ଚାରି ପ୍ରକାର ଗୁଳ୍ମ ସମେତ ବହୁବିଧ ମସଲାଦି ଏବଂ ସେହିପରି ଆହୁରି ଅନେକ ଗୁଣକାରୀ ଦ୍ରବ୍ୟରାଜି। ସେଥିରେ କୋଚିଲାଖାଇ ନାମକ ଦୁର୍ଲ୍ଲଭ ପକ୍ଷୀରାଜଙ୍କର ଶୁଷ୍କମାଂସ ବି ରହିଛି। ସେ ଯାହାହେଉ ସେତେକ ଯୋଗାଡ଼ ହୋଇଗଲା। ବିଶୁଦ୍ଧ ମହୁ ମଧ୍ୟ ଯୋଗାଡ଼ ହୋଇଗଲା। କାରଣ ସେଥିଲାଗି ମୋତେ ଦୋକାନକୁ ଯିବାକୁ ପଡ଼ିନାହିଁ। ମୋ ବଡ଼ ସଳୁ ନିଜେ ଖଦୀ ଆନ୍ଦୋଳନର ଜଣେ ବଡ଼କର୍ମୀ। ସେ ନିଜେ ମହୁଚାଷ କରନ୍ତି। ତାଙ୍କଠାରୁ ଖାଲି ବିଅର ବୋତଲରେ ବୋତଲେ ମହୁ ମାଗଣା ପାଇଗଲି।

କିନ୍ତୁ ବର୍ତ୍ତମାନ ମୋ ମୁଣ୍ଡକୁ ଘାରିଛି ଏଇ ବିଶୁଦ୍ଧ ଗବ୍ୟଘୃତ ନାମକ ଅଦୃଶ୍ୟ ପଦାର୍ଥଟି। ପାଏ ଲିଟର ମାତ୍ର ହେଲେ ଚଳିଯିବ। ମାତ୍ର କାହିଁ ସେହି ଦୁର୍ଲ୍ଲଭ ମହାର୍ଘ ପବିତ୍ର ବସ୍ତୁ? ଗାଁକୁ ସାନଭାଇ ପାଖକୁ ଖବର ଦେଇଥିଲି। କାରଣ ସେ ବ୍ୟାଙ୍କରୁ ଋଣ କରିଆରେ ଚାରୋଟି ଦୁଧିଆଳୀ ଜର୍ସି ଗାଈ କିଣି ପାଳୁଛି ଓ ଦୁଧ ବ୍ୟବସାୟ କରୁଛି। ମାତ୍ର ସେ ଟାଉଟର ମତେ ନାନା ତଥ୍ୟ କହି ନିଧାର୍ଯ୍ୟ ମନା କରିଦେଲା। କହିଲା ଭାଇନା! ପାଗଳ ହେଲ? ଖାଣ୍ଟି ଗୁଆଘିଅ ଆଉ

ଗାଁରେ ମିଳୁଛି ? ଏସବୁ ଯେଉଁ ଜର୍ସି ଗାଈ ଆମେ ପାଳିଛୁ—ଏମାନେ ଖାଣ୍ଟି ଗାଈ ନୁହନ୍ତି ଭାଇନା। ଶୁଣାଯାଏ—ଷଣ୍ଢ ଓ ମାଈ ମଇଁଷୀଙ୍କୁ କୃତ୍ରିମ ଉପାୟରେ ସହବାସ କରାଇ ବୈଜ୍ଞାନିକମାନେ ଏହି ଜର୍ସିନାମକ ସଙ୍କର ପ୍ରାଣୀଟିକୁ ଜନ୍ମ ଦେଇଛନ୍ତି। ଏ ନା ଗାଈ—ନା ମଇଁଷୀ !! କେବଳ ବେଶି ଦୁଧ ଦେଉଛି ବୋଲି ଆମେ ଏଥିରେ ମାତିଛୁ। ତେବେ ଦୁଧ ଯେମିତି ବେଶୀ ଦେଉଛି—ଖାଉଛି ମଧ୍ୟ ସେମିତି ରାକ୍ଷସୀ ଭଳିଆ। ତା'ଛଡ଼ା, ଏ ଶଳା ଜର୍ସିଙ୍କର ବାରମାସରେ ତେର ରୋଗ—ଚଉଦ ବଇରାଗ। ଔଷଧ, ଇଞ୍ଜେକ୍ସନରେ କମ୍ ପଇସା ଖରଚ? ତା'ଛଡ଼ା, ଦୁଧ ସିନା ବେଶି ଦେଉଛନ୍ତି—କିନ୍ତୁ ସେ ଦୁଧରେ ଚିକ୍କଣ ଅଂଶ ବେଶି ନାହିଁ। ଯେତିକି ଲହୁଣୀ ବାହାରୁଛି, ତାକୁ ନିଆଁରେ ମାରି ଘିଅ କଲେ ଅବିକଳ ମଇଁଷି ଘିଅ ଭଳି ବାସୁଛି—ଆଉ ତା'ର ବର୍ଣ୍ଣ ଧଳାପାଣିପରି ଦିଶୁଛି। ସେଥିପାଇଁ କହୁଛି—ଏ ଜର୍ସି ଗାଈର ଘିଅ ଭାଉଜଙ୍କ କଟୀବାତର ଓଷଦ ପାଇଁ କିଛି କାମଦେବ ନାହିଁ। ଏ କିଛି ଡାକ୍ତରୀ ଓଷଦ ନୁହଁ। କବିରାଜି ଓଷଦ। କବିରାଜୀ ହେଲା ଆମର ଆୟୁର୍ବେଦ। ଆୟୁର୍ବେଦ ଓଷଦରେ ବିଶୁଦ୍ଧ ଦ୍ରବ୍ୟ ନ ରହିଲେ ତାହା ଓଲଟା ଫଳ ଦେବ। ତୁମେ ବରଂ ଭାଇନା, ସେଇ ସହରରେ ଖୋଜ। ରାଜଧାନୀରେ ଆଜିକାଲି ସବୁ ମିଳୁଛି। ଅସଲ ହେଲା ପଇସା। ପଇସା ପକେଇ ଦେଲେ—ତୁମ ରାଜଧାନୀର ବାପା ପାଇଁ ମାଆ ମିଳିଯାଉଛି—ମାଆ ପାଇଁ ବାପା ମିଳିଯାଉଛି।

ସାନଭାଇଟିର ଟାଉଟରି କଥା ହେଲେ ବି ଭ୍ରାତୃସ୍ନେହ—ବଶତ୍ ଆମ୍ଭେ ଆଜକୁ ସାତଦିନ ହେଲା ରାଜଧାନୀରେ ସେହି ଅମୃତୋପମ ମହାଦୁର୍ଲ୍ଲଭ ମହା ଅଦୃଶ୍ୟ ବିଶୁଦ୍ଧ ଗବ୍ୟଘୃତ ନାମକ ପଦାର୍ଥଟିକୁ ଅତ୍ର ତତ୍ର ଯତ୍ର ସତ୍ର ଖୋଜିବୁଲୁଛୁ। ମାତ୍ର ତାହାତ ମିଳୁନାହିଁ—ତାର ନାମ ମାତ୍ର ମଧ୍ୟ ଆମ୍ଭର ଚର୍ମ ଚକ୍ଷୁରେ ଦୃଶ୍ୟମାନ ହେଉନାହିଁ। ଅବଶ୍ୟ ସବୁ ଦୋକାନୀ ତାଙ୍କ ଦୋକାନରେ ବିକ୍ରି ହେଉଥିବା ଘିଅକୁ ବିଶୁଦ୍ଧ ଗବ୍ୟଘୃତ ବୋଲି ଦାବୀ ଓ ପ୍ରଚାର କରୁଛନ୍ତି।

ଏ ପ୍ରକାରେ ଭ୍ରମୁ ଭ୍ରମୁ ଆଖି ପଡ଼ିଲା ଗୋଟିଏ ଦୋକାନ ଉପରେ। ଦୋକାନ ବାରେଣ୍ଡା କାନ୍ଥରେ ବଡ଼ ସାଇନ୍‌ବୋର୍ଡ଼ଟିଏ ଝୁଲୁଛି। ସେଥିରେ ବଡ଼ ବଡ଼ ଓଡ଼ିଆ ଅକ୍ଷରରେ ଏମନ୍ତ ପ୍ରକାରେ ଲେଖା ହୋଇଛି—

''ଯେଠାରେ ବୀଶୁଧ,
ଗବ୍ବ ଘ୍ରୁତ ମୀଲେ...
(ପରିଖା ପାର୍ଥନିଅ)

ବିକ୍ରମାଦିତ୍ୟଙ୍କ ଶବାରୀ ବାହୁଥିବା ଛଦ୍ମବେଶୀ ଗୋପାଳ ମହାକବି କାଳିଦାସ କହିଲେ—''ହେ ରାଜନ! ସ୍କନ୍ଧଂ ନ ବାଧତେ—ତବ ବାଧତି ବାଧତେ।'' ଯାହା ଜଣାଯାଉଛି—ଆମକୁ ତା' ମଧ୍ୟ ଆଉ ବାଧୁନାହିଁ!! ହାୟ ଓଡ଼ିଶା ! ହାୟ ଓଡ଼ିଆ !! ❋❋

# କର୍ମବନ୍ଦ ଆନ୍ଦୋଳନ

୨୭।୫।୮୧

ସ୍ୱାଧୀନତା ପରେ ଏବଂ ବିଶେଷତଃ ଗତ କେତେବର୍ଷ ଭିତରେ ଆମେ ଗୋଟିଏ କଥା ବାରମ୍ବାର ଦେଖି ଆସୁଛୁ। ତାହା ହେଲା—ବିଭିନ୍ନ କ୍ଷେତ୍ରରେ ବିଭିନ୍ନ କାର୍ଯ୍ୟ ଲାଗି ନିଯୁକ୍ତ ହୋଇଥିବା ସରକାରୀ, ବେସରକାରୀ ଓ ଅର୍ଦ୍ଧସରକାରୀ କର୍ମଚାରୀମାନେ ମଧ୍ୟେ ମଧ୍ୟେ ସେମାନଙ୍କର ସ୍ୱାର୍ଥ ଓ ଉଦ୍ଦେଶ୍ୟସାଧନ ପାଇଁ ଧର୍ମଘଟ କରି ଆସୁଛନ୍ତି। ଏହା ସବୁ ସରକାର ଅମଳରେ ଘଟୁଛି। ଏବଂ ଗଣତନ୍ତ୍ର ଶାସନରେ ଏପରି ଆନ୍ଦୋଳନ ମଧ୍ୟ ଅବଶ୍ୟମ୍ଭାବୀ। ବିଶେଷତଃ, ପୁଣି ସରକାରୀ ସଂସ୍ଥାମାନଙ୍କରେ ପ୍ରାୟ ସବୁ ଶ୍ରେଣୀୟ ସରକାରୀ କର୍ମଚାରୀଙ୍କ ମଧ୍ୟରେ ଟ୍ରେଡ଼ ୟୁନିୟନଜିମ ପ୍ରବେଶ କରିବା ଫଳରେ ସଂଗଠିତ ଭାବେ ଓ ସମ୍ମିଳିତ ଭାବେ ଆପଣାର ୫ ଦଫା, ପଚିଶ ଦଫା, ଅଠର ଦଫାଦି ଦାବୀ ପୂରଣ ଲାଗି ଏପରି କର୍ମବନ୍ଦ ଆନ୍ଦୋଳନମାନ ବରାବର ମଧ୍ୟେ ମଧ୍ୟେ ଲାଗି ରହିଛି। ଏବେ ତ ପୁଲିସ ବିଭାଗର କର୍ମଚାରୀମାନେ ମଧ୍ୟ କର୍ମବନ୍ଦ ଆନ୍ଦୋଳନ ଜରିଆରେ ଦାବୀ ପୂରଣ ନହେଲେ ସରକାରକୁ ଅଚଳ କରିଦେବେ ବୋଲ ଧମକ ଦେଲେଣି। ଅବଶ୍ୟ କର୍ମବନ୍ଦ ଆନ୍ଦୋଳନକୁ 'ଧର୍ମଘଟ' କହିବା କେତେଦୂର ଠିକ୍ ତାହା ପୃଥକ ଭାବେ ବିଚାର୍ଯ୍ୟ।

କିନ୍ତୁ ଏ ସ୍ଥଳେ ଶାସକଗୋଷ୍ଠୀ ବିଦ୍ରୋହ ଓ ଆନ୍ଦୋଳନର କାରଣଗୁଡ଼ିକ ଆନ୍ତରିକତାର ସହିତ ବା ସହାନୁଭୂତିର ସହିତ ବିଶ୍ଳେଷଣ କରି, ବୁଝି ବିଚାରି ସେଗୁଡ଼ିକର ସମାଧାନରେ ବ୍ରତୀ ହେବେ—ନତୁବା ଯଦି ସେହିସବୁ କାରଣମାନ ଅନୁଚିତ ବା ଅବାନ୍ତର ବୋଲି ପ୍ରତିପାଦିତ ହୁଏ, ତେବେ ସେ କ୍ଷେତ୍ରରେ ସିଧାସଳଖ ରାଜଶକ୍ତି ଓ ରାଷ୍ଟ୍ରଶକ୍ତି ପ୍ରୟୋଗ କରି ଅତି ଦୃଢ଼ଭାବରେ ସେସବୁ ବିଦ୍ରୋହ ଓ ଆନ୍ଦୋଳନକୁ ଦମନ କରିବା ଉଚିତ ହେବ। କିନ୍ତୁ ଥରେ ଏଭଳି ପଦକ୍ଷେପ ନେଲେ ଆଉ ସେଥିରୁ ଓହରି ଆସିବା ମଧ୍ୟ ଅନୁଚିତ। ଏବଂ ଏ ପରିପ୍ରେକ୍ଷୀରେ କିନ୍ତୁ ଆଉ ଗୋଟିଏ କଥା ମନେରଖିବା ଉଚିତ ଯେ, ଶାସକ ଗୋଷ୍ଠୀର ପ୍ରଜାମାନଙ୍କ ସହିତ ବା କର୍ମଚାରୀମାନଙ୍କ ସହିତ ସମ୍ପର୍କଟି ଖୁବ୍ ସରଳ, ସହଜ, ଶୁଦ୍ଧ, ସ୍ପଷ୍ଟ, ବିଶ୍ୱାସଯୋଗ୍ୟ ଓ ଆନ୍ତରିକ ହେବା ଚାହି। ଦୁହିଙ୍କ ଭିତରେ ଦୁହିଙ୍କ ଆଚୁ ବୁଝାମଣାରେ ଓ ଆଚରଣରେ ସାମାନ୍ୟତମ ଅସ୍ୱଚ୍ଛତା ବା କପଟତା ରହିଲେ କୌଣସି କଥା ଆଉ ସହଜରେ ଛିଡ଼େନାହିଁ।

ରାଜତନ୍ତ୍ର ହେଉ ବା ଗଣତନ୍ତ୍ର ହେଉ—ସର୍ବତ୍ର ସର୍ବୋଚ୍ଚ ଶାସକର ଆସନ ସର୍ବଦା ଟଳମଳ ଅବସ୍ଥାରେ ଥାଏ। ସେଇଥିପାଇଁ ତ 'ମୁକୁଟମଣ୍ଡିତ ରାଜଶିର, ନୁହଇ ଶାନ୍ତି ଆସ୍ପଦ—ଆଶଙ୍କା ଭୟ ବିପଦ—ନିରନ୍ତର ରାଜମନ କରଇ ଅସ୍ଥିର। ଆଜି ଯେ ରାଜେନ୍ଦ୍ରାସନେ କାଲି ସେ ଫକୀର।' ସତକଥା, ରାଜା ବା ମନ୍ତ୍ରୀଙ୍କୁ ଗାଦିଚ୍ୟୁତ କରି ରାଜଗାଦି ବା ସରକାର ଦଖଲ କରିବା ଲାଗି ରାଜା ବା ମନ୍ତ୍ରୀଙ୍କର ସମସ୍କନ୍ଧ ଉଚ୍ଚାଭିଳାସୀମାନେ ସର୍ବଦା ଷଡ଼ଯନ୍ତ୍ର କରୁଥାନ୍ତି ଓ ପ୍ରଜା ଏବଂ କର୍ମଚାରୀମାନଙ୍କୁ ଘୁସଦେଇ, ପ୍ରବର୍ଚ୍ଚାଇ ରାଜ୍ୟରେ ବାରମ୍ବାର ଗଣ୍ଡଗୋଳ ଓ ଅଶାନ୍ତି ସୃଷ୍ଟି କରୁଥାନ୍ତି। ତେଣୁ ରାଜନୀତି କ୍ଷେତ୍ରରେ ପ୍ରତିଦ୍ୱନ୍ଦୀମାନଙ୍କ ସହିତ ନାନାଦି କପଟ, ଛଳ, ଛନ୍ଦ ଓ କୂଟ ନୀତି ପ୍ରୟୋଗ କରି ସେମାନଙ୍କୁ ଦବେଇ ରଖିବାକୁ ଚେଷ୍ଟା କରିବା ଶାସକମାନଙ୍କ ପକ୍ଷରେ କିଛି ଭୁଲ ନୁହେଁ। କିନ୍ତୁ କୌଣସି କଲ୍ୟାଣକାମୀ ଶାସକ ତାର ପ୍ରଜା ଓ କର୍ମଚାରୀଙ୍କ ସହିତ କୌଣସି ପ୍ରକାର ଛଳ, ଛନ୍ଦ, ପ୍ରତାରଣା ଓ କପଟତାର ଖେଳ କେବେ ମଧ ଖେଳେ ନାହିଁ। କାରଣ ଶାସକ, କର୍ମଚାରୀ ଓ ପ୍ରଜାଗଣ—ଏମାନେ କେହି କାହାର ଶତ୍ରୁ ନୁହନ୍ତି। ଏମାନଙ୍କ ସମ୍ପର୍କ ନିବିଡ଼ ଓ ଆପେକ୍ଷିକ।

ରାଜା ବା ଶାସକ ତାଙ୍କର ପ୍ରତିଦ୍ୱନ୍ଦୀ ସହିତ ଏହି କୂଟନୀତିକ ଖେଳ ଖେଳି ପାରନ୍ତି। ବିଦ୍ରୋହୀମାନଙ୍କୁ ଦମନ କରିବା ପାଇଁ ବା ଶତ୍ରୁମାନଙ୍କ ଷଡ଼ ଯନ୍ତ୍ରର ମୁକାବିଲା କରିବା ପାଇଁ କୌଟିଲ୍ୟ ନୀତି ଅନୁଯାୟୀ ସାମ, ଦାନ, ଦଣ୍ଡ ଓ ଭୟ ଏହି ଚାରି କୂଟନୀତିର ପ୍ରୟୋଗ ପ୍ରଚଳନ ସବୁ ଦେଶରେ ସବୁ ଯୁଗରେ ରହି ଆସିଛି। କିନ୍ତୁ ସବୁ କ୍ଷେତ୍ରରେ ଏହି ବିଦ୍ରୋହ ବା ଆନ୍ଦୋଳନ ପଛରେ ରାଜା ବା ଶାସକଙ୍କୁ ଗାଦିଚ୍ୟୁତ କରିବାର ମତଲବ ନ ଥାଏ। ପ୍ରଜାମାନଙ୍କ ଭିତରେ ବା ରାଜକର୍ମଚାରୀମାନଙ୍କ ଭିତରେ ଯେତେବେଳେ କୌଣସି କାରଣରୁ ଅସନ୍ତୋଷର ସୃଷ୍ଟି ହୁଏ ସେତେବେଳେ ସେମାନେ ଆନ୍ଦୋଳନ କରିଥାନ୍ତି। ଏ ସ୍ଥଳେ ଶାସକମାନେ ଏହି ଅସନ୍ତୋଷର ମୌଳିକ କାରଣଗୁଡ଼ିକୁ ସହାନୁଭୂତିର ସହିତ ବିଚାର କରି ସିଦ୍ଧାନ୍ତ ନେବା ଉଚିତ। ସେପରି ସିଦ୍ଧାନ୍ତ ଯେ ସବୁବେଳେ ପ୍ରଜା ଓ କର୍ମଚାରୀମାନଙ୍କ ଦାବୀକୁ ସୁହାଇବ, ତାହା କୁହାଯାଇ ନ ପାରେ। ଅବାଧ, ଅମନୋଯୋଗୀ, ଦାୟିତ୍ୱହୀନ ଓ କେବଳ ଆପଣା ସ୍ୱାର୍ଥ-ସାଧନକାମୀ ରାଜକର୍ମଚାରୀମାନଙ୍କୁ ଦଣ୍ଡ ଦେବାର ବିହିତ ଅଧିକାର ସବୁ ସରକାରର ରହିଛି। ସେହିପରି ରାଜ୍ୟରେ ବୃଥା ଅଶାନ୍ତି, ବିଶୃଙ୍ଖଳା ଓ ଅନୀତି ସୃଷ୍ଟିକାରୀ ଯେ କୌଣସି ପ୍ରଜା ଆନ୍ଦୋଳନକୁ ଦୃଢ଼ହସ୍ତରେ ଦମନ କରିବାର ଅଧିକାର ମଧ ସବୁ ସରକାରର ରହିଛି। ଏସବୁ କ୍ଷେତ୍ରରେ ବିଦ୍ରୋହ ଓ ଆନ୍ଦୋଳନଗୁଡ଼ିକୁ ସତ୍ୟାଗ୍ରହ ବା ଧର୍ମଘଟର ନାମରେ ଦ୍ୱାହି ଦେଇ ସମର୍ଥନକରିବା ଉଚିତ ନୁହେଁ। ଏ ପରିସ୍ଥିତିରେ ଗୋଟିଏ ଗୋଷ୍ଠୀର ଦାବୀ କେତେଦୂର ଯଥାର୍ଥ ଏବଂ ଏପରି ଦାବୀ ଯଦି ସରକାରୀ କର୍ମଚାରୀମାନେ କରୁଥାନ୍ତି—ତେବେ ସେମାନଙ୍କର

ଏହି ଦାବୀ ପ୍ରତି ଜନସାଧାରଣଙ୍କର କେତେଦୂର ସହାନୁଭୂତି ବା ସମର୍ଥନ ରହିଛି—ତାକୁ ମଧ୍ୟ ବିଚାରକୁ ନେବାକୁ ହେବ। ବର୍ତ୍ତମାନ ପରିସ୍ଥିତିରେ ଏକ ନିର୍ଦ୍ଦିଷ୍ଟ ଶ୍ରେଣୀର ସରକାରୀ କର୍ମଚାରୀ ଗୋଷ୍ଠୀ ଯେଉଁ ଦାବୀ ଉପସ୍ଥାପିତ କରି ଗତ ଦେଢ଼ସପ୍ତାହ ଧରି କର୍ମବନ୍ଦ ଆନ୍ଦୋଳନ କରି ଚାଲିଛନ୍ତି—ତାହା ଜନସାଧାରଣ ସମର୍ଥନ କରୁଛନ୍ତି କି ନାହିଁ—ସେ ଖବର ଶାସକମାନଙ୍କ ପାଖରେ ନିଶ୍ଚୟ ପହଞ୍ଚୁଥିବ। ଆମ ସମ୍ବାଦ-ପତ୍ରମାନଙ୍କରେ ଆମେ ସବୁବେଳେ ଦେଖିଆସୁଛୁ ଯେ ଉପସ୍ଥିତ ସରକାରୀ ନୀତି ବିରୋଧରେ ଯେ କୌଣସି କର୍ମବନ୍ଦ ଆନ୍ଦୋଳନକୁ କେବଳ ସରକାରଙ୍କ ରାଜନୀତିକ ବିରୋଧୀଦଳର ନେତାମାନେ ଆଖିବୁଜି ସମର୍ଥନ କରି ବିବୃତିମାନ ଦେଇଥାନ୍ତି। ଏସବୁ ସମର୍ଥନ ବାଦକୁ ଆମେ ଜନସାଧାରଣଙ୍କ ମତବୋଲି କହିପାରିବା ନାହିଁ। କାରଣ, ଏ ମତଗୁଡ଼ିକ କେବଳ ରାଜନୈତିକ ଉଦ୍ଦେଶ୍ୟ ପ୍ରଣୋଦିତ। ଏପରି କ୍ଷେତ୍ରରେ ଶାସକ ଗୋଷ୍ଠୀ ସେମାନଙ୍କ ଶୁଭବୁଦ୍ଧି ଦ୍ୱାରା ପରିଚାଳିତ ହୋଇ ଯାହାକିଛି ସିଦ୍ଧାନ୍ତ ନେବା ହିଁ ଶ୍ରେୟସ୍କର। ଏହି ଶୁଭବୁଦ୍ଧିର ବିଚାର ହିଁ ଶାସକ ପକ୍ଷରେ ଏକମାତ୍ର ସତ୍ୟସମର୍ଥିତ ଅବଲମ୍ବନ। ଏହି ଶୁଭବୁଦ୍ଧିର ବିଚାରରେ ଯଦି କର୍ମଚାରୀମାନଙ୍କ ଏହି ଆନ୍ଦୋଳନକୁ ଦମନ କରିବା ଉଚିତ ବୋଲି ସିଦ୍ଧାନ୍ତ ହୁଏ, ତେବେ ତାହା ନିଶ୍ଚିତଭାବେ କରଣୀୟ। ନାହିଁ ଯଦି, କର୍ମଚାରୀମାନଙ୍କ ଦାବୀ ଯଥାର୍ଥ ବୋଲି ପ୍ରମାଣିତ ହୁଏ, ତେବେ ସେଗୁଡ଼ିକୁ ପୂର୍ଣ୍ଣତଃ ବା ଆଂଶିକତଃ ଗ୍ରହଣ କରିନେବା ଉଚିତ। ଶୁଭବୁଦ୍ଧି ଦ୍ୱାରା ଅନୁପ୍ରାଣିତ ବିଚାର ପରେ ଯେ କୌଣସି ସିଦ୍ଧାନ୍ତ ନେବାର ଅଧିକାର ଶାସକ ଗୋଷ୍ଠୀର ରହିଛି ଏବଂ ଏହି ସିଦ୍ଧାନ୍ତର ପ୍ରୟୋଗ ମଧ୍ୟ ଖୁବ୍ ସ୍ପଷ୍ଟ ଓ ପ୍ରତ୍ୟକ୍ଷ ହେବା ଉଚିତ୍।

ଅନ୍ୟ ପକ୍ଷରେ ବିଦ୍ରୋହୀ ପ୍ରଜା ଓ ଆନ୍ଦୋଳନକାରୀ କର୍ମଚାରୀମାନଙ୍କ ମନରେ ଯଦି କୌଣସି କାରଣରୁ ସନ୍ଦେହ ବା ଆଶଙ୍କା ସୃଷ୍ଟି ହୁଏ ଯେ ଶାସକଗୋଷ୍ଠୀ ସେମାନଙ୍କ ସହିତ ମଧ୍ୟ କପଟତାର ଖେଳ ଖେଳୁଛନ୍ତି—ଏବଂ ସେମାନଙ୍କୁ ବୃଥାଟାରେ ରାଜନୈତିକ ଅଭିସନ୍ଧିରେ ଅଭିଯୁକ୍ତ କରାଯାଉଛି—ସେମାନଙ୍କ ଆନ୍ଦୋଳନ ଓ ବିକ୍ଷୋଭାଦିକୁ କୂଟନୀତି ଦ୍ୱାରା ଦମନ ବା ବିଫଳ କରିଦେବାକୁ ଚେଷ୍ଟା ଚାଲିଛି—ତେବେ ସେପରି କ୍ଷେତ୍ରରେ ସେମାନଙ୍କ ମନ ଶାସକଙ୍କ ପ୍ରତି ତିକ୍ତ, ବିରକ୍ତ ଓ ଭରସାହୀନ ହୋଇଯିବ ଏବଂ ଶାସକଙ୍କ ପ୍ରତି ଯଦି ଏପରି ମନୋଭାବ ବା ପ୍ରତିକ୍ରିୟା ଥରେ ସୃଷ୍ଟି ହୋଇଯାଏ ତେବେ ତାହା ବ୍ୟାପକ କ୍ଷେତ୍ରକୁ ମଧ୍ୟ ଅତି ଦାରୁଣ ଭାବରେ ଆକ୍ରାନ୍ତ କରେ ଏବଂ ସାଧାରଣ ଜୀବନ କ୍ଷେତ୍ରରେ ମଧ୍ୟ ପରସ୍ପର ପ୍ରତି ସ୍ୱାଭାବିକ ବିଶ୍ୱାସ, ପ୍ରତ୍ୟୟ ଓ ଭରସା ମୁହୂର୍ତ୍ତକରେ ତୁଟିଯାଏ ଏବଂ ଏହି ବିଶ୍ୱାସ ଥରେ ଭାଙ୍ଗିଗଲେ, ଆଉ ତାକୁ ଯୋଡ଼ିବା ସହଜ ହୁଏ ନାହିଁ।

ଏବଂ ଆନ୍ଦୋଳନକାରୀ କର୍ମଚାରୀମାନଙ୍କ ଉଦ୍ଦେଶ୍ୟ ଓ ଆଚରଣ ମଧ୍ୟ ସେହିପରି ଶାସକଗୋଷ୍ଠୀ ପାଖରେ ସୁସ୍ପଷ୍ଟ ଓ ନିର୍ମଳ ହୋଇ ଉପସ୍ଥାପିତ ହେବା ଉଚିତ। ବିରୋଧୀ ଗୋଷ୍ଠୀଙ୍କ ଚକ୍ରାନ୍ତ ଦ୍ୱାରା ଭିତରେ ଭିତରେ ଅନୁପ୍ରାଣିତ ହୋଇ, ଏକ ବିଶେଷ ପରିସ୍ଥିତିରେ ସରକାରଙ୍କୁ ଯେ କୌଣସି ଉପାୟରେ ଖାପଚରେ ବା ଅଖାଡୁଆ ପରିସ୍ଥିତିରେ ପକାଇ ଦେଇ ନିଜର ସ୍ୱାର୍ଥସାଧନ କରିନେବା, ଯଦି କର୍ମଚାରୀଙ୍କର ଉଦ୍ଦେଶ୍ୟ ହୋଇଥାଏ, ତେବେ ସେହି ଧରଣର କର୍ମଚାରୀମାନଙ୍କୁ ନେଇ କୌଣସି ଜନମଙ୍ଗଳ ରାଷ୍ଟ୍ରର କଲ୍ୟାଣକର୍ମ ସାଧିତ ହୋଇପାରିବ ନାହିଁ। ସେପରି କ୍ଷେତ୍ରରେ ଜନସାଧାରଣଙ୍କର ନୈତିକ ସମର୍ଥନ ମଧ୍ୟ ସେମାନଙ୍କ ପଛରେ ରହିବ ନାହିଁ।

ଏବଂ ସରକାର ହୁଅନ୍ତୁ ବା କର୍ମ ବନ୍ଦ ଆନ୍ଦୋଳନକାରୀମାନେ ହୁଅନ୍ତୁ—ସମସ୍ତଙ୍କ କାର୍ଯ୍ୟକଳାପ ଓ ଉଦ୍ଦେଶ୍ୟର ବିଚାରକ ହେଲେ ନିରପେକ୍ଷ ଜନସାଧାରଣ, ଜନସାଧାରଣ କହିଲେ ସାଧାରଣତଃ ବୁଝାଯାଏ—କାୟିକ ବା ମାନସିକ ଶ୍ରମ କରି ନିରୀହ ଜୀବନ ଯାପନ କରୁଥିବା ପ୍ରଜାଗଣ। ସେହି ପ୍ରଜାମାନଙ୍କର କଲ୍ୟାଣ ଲାଗି ରାଷ୍ଟ୍ର ରହିଛି—ସରକାର ରହିଛି—ଓ ସରକାରୀ କର୍ମଚାରୀମାନେ ମଧ୍ୟ ରହିଛନ୍ତି। ବହୁଦିନ ଧରି ଯଦି କର୍ମବନ୍ଦ ଫଳରେ ସରକାରୀ କଳ ଅଚଳ ହେବା ଅବସ୍ଥାକୁ ଅଣାଯାଏ ଏବଂ ତଦ୍ୱାରା ଜନସାଧାରଣ ହଇରାଣ ହୁଅନ୍ତି ତେବେ ତାହା କାହାରି ପକ୍ଷରେ ମଙ୍ଗଳ ହେବ ନାହିଁ। ଏବଂ ଏହି ଆନ୍ଦୋଳନକୁ ଯଦି ପରୋକ୍ଷରେ ବିରୋଧୀ ଦଳର ନେତାମାନେ ତେଜାଉଥାନ୍ତି—ତେବେ ଜନସାଧାରଣ ସେମାନଙ୍କୁ ମଧ୍ୟ କେବେ କ୍ଷମା ଦେବେ ନାହିଁ।



# ବିଶ୍ୱକର୍ମା ପୂଜା ପ୍ରସଙ୍ଗ

୧୭।୯।୮୧

ଗଣେଶ ପୂଜା ପରେ ପରେ ବର୍ତ୍ତମାନ ସାରା ଓଡ଼ିଶାର ସହରବଜାରରେ ବିଶ୍ୱକର୍ମା ପୂଜା ଆରମ୍ଭ ହୋଇଗଲା। ଗତ ପନ୍ଦରବର୍ଷ ତଳେ ବିଶ୍ୱକର୍ମା ଏତେ ଜାକଜମକରେ ପୂଜା ପାଉ ନ ଥିଲେ। ରାଜ୍ୟରେ ଆଧୁନିକ କଳ କାରଖାନାର ପ୍ରସାର ହେବା ସଙ୍ଗେ ସଙ୍ଗେ ଓ ଯାନବାହନର ସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ, ଆମ ଜନସାଧାରଣଙ୍କ ଭିତରେ କମାର, କୁମ୍ଭାର, ବଢ଼େଇ, କାରିଗର, ରାଜମିସ୍ତ୍ରୀ ଇତ୍ୟାଦିଙ୍କର ନୂତନ ସଂସ୍କରଣ ସୃଷ୍ଟି ହୋଇଗଲା ଏବଂ ବିଭିନ୍ନ ପ୍ରକାର ଗଠନମୂଳକ, ସ୍ଥାପତ୍ୟମୂଳକ, ଯନ୍ତ୍ରମୂଳକ, ନିର୍ମାଣମୂଳକ ଓ ମରାମତିମୂଳକ କାର୍ଯ୍ୟ ଲାଗି ବିଭିନ୍ନ ପ୍ରକାର ଧନ୍ଦାଭିତ୍ତିକ' ଶ୍ରେଣୀ ବା ବିଭାଗ ସୃଷ୍ଟି ହୋଇଗଲା। ତେଣୁ ଇଞ୍ଜିନଚାଳକଠାରୁ ପ୍ରେସ ଚାଳକ ପର୍ଯ୍ୟନ୍ତ ଏବଂ ପୂର୍ତ୍ତ ବିଭାଗୀୟ କର୍ମୀଙ୍କଠାରୁ ବିଦ୍ୟୁତ ବିଭାଗ କର୍ମୀଙ୍କ ପର୍ଯ୍ୟନ୍ତ ସମସ୍ତେ ବିଶ୍ୱକର୍ମାଙ୍କ ଗୋତ୍ରଭୁକ୍ତ ବୋଲି ନିଜକୁ ମନେକଲେ। ଏବଂ ତା' ଫଳରେ ବର୍ତ୍ତମାନ ଶିଳ୍ପାଞ୍ଚଳଗୁଡ଼ିକରେ ବିଶ୍ୱକର୍ମା ହିଁ ସ୍ଥପତି ମିସ୍ତ୍ରୀ ଓ ଯନ୍ତ୍ରୀମାନଙ୍କର ଇଷ୍ଟଦେବତା ରୂପେ ସ୍ୱତଃ ପ୍ରତିଷ୍ଠିତ ହୋଇଗଲେ। ବିଶ୍ୱକର୍ମାଙ୍କର ମୃଣ୍ମୟମୂର୍ତ୍ତି ନିର୍ମାଣ କରାଯାଇ ବୈଦିକ ରୀତିରେ ତାଙ୍କୁ ଦୁର୍ଗା, ଲକ୍ଷ୍ମୀ, ଗଣେଶ, ସରସ୍ୱତୀ, ମହାଦେବ ଆଦିଙ୍କ ପରି ପ୍ରତିଷ୍ଠା କରି ବିଭିନ୍ନ ଶିଳ୍ପ କେନ୍ଦ୍ରରେ ମହାସମାରୋହରେ ପୂଜା କରାଗଲା। ତେବେ ଏହି ପୂଜାରେ ଇଂଜିନିୟରଙ୍କ ଅପେକ୍ଷା ମିସ୍ତ୍ରୀ ଓ କାରିଗରମାନେ ହିଁ ଅଧିକ ଭାବେ ନିୟୋଜିତ ହେଉଥିବାର ଲକ୍ଷ୍ୟ କରାଯାଏ ଏବଂ ସେ ଦିନ ବିଶ୍ୱକର୍ମା ମୂର୍ତ୍ତି ପାଖେ ଖୁବ୍ ଭୋଗରାଗ କରାଯାଇ ରାତିରେ ମତ୍ସ୍ୟ ମାଂସାଦି ସହ ବିବିଧ ପାନୀୟ ସହଯୋଗରେ ନିର୍ଧୂମ ଭୋଜି ମଧ୍ୟ ଉପଭୋଗ କରାଯାଏ। ତେବେ ବହୁସ୍ଥଳରେ ଏହି ଉପଲକ୍ଷେ ନାଟତାମସା ବା ପାଲା ଇତ୍ୟାଦି ମଧ୍ୟ ସାଂସ୍କୃତିକ କାର୍ଯ୍ୟକ୍ରମ ଚାଲିଥାଏ। ସହରମାନଙ୍କରେ ବିଦ୍ୟୁତ୍ ବିଭାଗ, ପୂର୍ତ୍ତବିଭାଗ, ଜଳସେଚନ ବିଭାଗ ପ୍ରଭୃତିର କର୍ମୀମାନେ ସେଥିଲାଗି ଅନ୍ୟ ସରକାରୀ ଅଫିସରମାନଙ୍କଠାରୁ ଚାନ୍ଦା ମଧ୍ୟ ମାଗୁଣି କରିଥାନ୍ତି।

ଶିଳ୍ପ ବା କଳକାରଖାନା ଇତ୍ୟାଦି ହେଲା ବିଜ୍ଞାନର ଅବଦାନ। ପାଶ୍ଚାତ୍ୟ ଦେଶରେ ଏହି କଳକାରଖାନା ବା ନିର୍ମାଣ ବ୍ୟାପାର ସଙ୍ଗେ କୌଣସି ଦେବଦେବୀଙ୍କୁ ସଂଯୁକ୍ତ କରି ପୂଜା କରାଯାଏ ନାହିଁ। ମାତ୍ର ଭାରତବର୍ଷ ହେଲା ଧାର୍ମିକତାର ଦେଶ।

ଏହାର ଅଧିବାସୀବୃନ୍ଦ ସୃଷ୍ଟିର ଯାବତୀୟ ଗଠନ ପଛରେ ଏକ ଦୈବଶକ୍ତି ଥିବାର ବିଶ୍ୱାସ କରନ୍ତି। ଭାରତୀୟମାନଙ୍କ ଧାରଣା—ଘରଟିଏ ହେଉ ବା ମନ୍ଦିରଟିଏ ହେଉ—ରାସ୍ତାଟିଏ ହେଉ ବା ପୋଇଟିଏ ହେଉ—ଇଞ୍ଜିନଟିଏ ହେଉ ବା ମେସିନଟିଏ ହେଉ, ଯାହା କିଛି ମନୁଷ୍ୟର ବୈଜ୍ଞାନିକ ବୁଦ୍ଧି ବା ପ୍ରତିଭାପ୍ରସୂତ—ତାହା ଜଣେ ଦେବପୁରୁଷଙ୍କ ଶକ୍ତିର ଆଶୀର୍ବାଦ। ଏହି ଦୃଷ୍ଟିରୁ ବିଶ୍ୱକର୍ମା ହେଉଛନ୍ତି ବିଶ୍ୱ ବ୍ରହ୍ମାଣ୍ଡର ଯାବତୀୟ ନିର୍ମିତ ବସ୍ତୁର ଅଧିଦେବତା।

ଏହି ବିଶ୍ୱକର୍ମା ହେଉଛନ୍ତି ଦେବଶିଳ୍ପୀ। ବେଦରେ ବିଶ୍ୱକର୍ମାଙ୍କୁ ପୃଥିବୀର ସୃଷ୍ଟିକର୍ତ୍ତା ବୋଲି କୁହାଯାଇଛି। ବିଷ୍ଣୁଙ୍କ ପରିକଳ୍ପନାକୁ ବିଶ୍ୱକର୍ମା ହିଁ ରୂପାୟିତ କରନ୍ତି। ଋକ୍‌ବେଦରେ କଥିତ ଅଛି—ବିଶ୍ୱକର୍ମା ହେଲେ ସର୍ବଦର୍ଶୀ ଭଗବାନ। ତାଙ୍କର ଚକ୍ଷୁ ମୁଖମଣ୍ଡଳ, ବାହୁ ଓ ପଦଦ୍ୱୟ ସାରା ବ୍ରହ୍ମାଣ୍ଡକୁ ବ୍ୟାପିଛି। ବାହୁ ଓ ପଦଯୁଗଳ ଦ୍ୱାରା ସେ ସ୍ୱର୍ଗ ଓ ମର୍ତ୍ତକୁ ନିର୍ମାଣ କରିଛନ୍ତି। ସେ ମଧ ସୃଷ୍ଟି ଶକ୍ତିର ଧାରକ। ସେ ମଧ ପ୍ରଜାପତି। ସେ ସମସ୍ତ ଦେବତାଙ୍କର ନାମକରଣ କରିଛନ୍ତି। ସେ ଏଭଳି ଯାଜ୍ଞିକ ଯେ 'ସର୍ବମେଧ ଯଜ୍ଞ'ରେ ନିଜକୁ ନିଜେ ବଳୀସ୍ୱରୂପ ପ୍ରଦାନ କରିଥିଲେ। ସେ ପୁଣି ବାଚସ୍ପତି ମନୋଜବ, ବଦାନ୍ୟ, କଲ୍ୟାଣକର୍ମା ଓ ବିଧାତା ବୈଦିକ ତ୍ୱଷ୍ଟା ଦେବତାଙ୍କର କର୍ମଶକ୍ତିକୁ ଆତ୍ମସାତ୍ କରି ସେ ନିଜକୁ 'ତ୍ୱଷ୍ଟା' ନାମରେ ମଧ ଅଭିହିତ କରିଛନ୍ତି।

ସେ ଦେବତାମାନଙ୍କର ଅସ୍ତ୍ରନିର୍ମାତା ମଧ। ସେ ହିଁ ଆଗ୍ନେୟଅସ୍ତ୍ର ନିର୍ମାଣ କରିଛନ୍ତି। ସେ ପୁଣି ଅନନ୍ତ ଶିଳ୍ପ ପରମ୍ପରା ଓ ଶିଳ୍ପ— ସମ୍ଭାବନାର ଆବିଷ୍କାରକ। ସର୍ବପ୍ରକାର କାରୁକଳାର ସେ ନିର୍ମାତା। ଚଉଷଠୀ ପ୍ରକାର କଳାର ସେ ଅଧିଷ୍ଠାତା। ସ୍ଥାପତ୍ୟ ନାମକ ଉପବେଦର ସେ ପ୍ରକାଶକ। କାଷ୍ଠ, ପାଷାଣ ଓ ଧାତୁଗୁଡ଼ିକୁ ମନୋମତ ଆକୃତି ପ୍ରଦାନ କରିବାକୁ ହେଲେ ବିଶ୍ୱକର୍ମାଙ୍କ କୃପା ଆବଶ୍ୟକ। ବିଶ୍ୱ ପ୍ରପଞ୍ଚର ସମସ୍ତ ପ୍ରକାଶିତ ଓ ଅପ୍ରକାଶିତ ନକ୍‌ସା ତାଙ୍କ ବୁଦ୍ଧି ମଧରେ ସୂକ୍ଷ୍ମ ରୂପରେ ରହିଅଛି। ସେ ଭଗବାନ ବିଷ୍ଣୁଙ୍କ ମନୋଭାବ ସହିତ ନିତ୍ୟ ସଂଯୁକ୍ତ।

ବିଶ୍ୱକର୍ମାଙ୍କ ଜନନୀଙ୍କ ନାମ ଯୋଗସିଦ୍ଧା। ସେ ସ୍ୱୟଂ ଦେବଗୁରୁ। ବୃହସ୍ପତିଙ୍କର ଭଗିନୀ ଏବଂ ଅଷ୍ଟମ ବସୁ ପ୍ରଭାସ ହେଉଛି ତାଙ୍କର ଜନକ।

ସୂର୍ଯ୍ୟ ବିଶ୍ୱକର୍ମାଙ୍କ କନ୍ୟା ସଂଜ୍ଞାଙ୍କୁ ବିବାହ କରିଥିଲେ। ମାତ୍ର ସୂର୍ଯ୍ୟଙ୍କର ପ୍ରଖର ତେଜ ସହ୍ୟ କରି ନ ପାରି ସଂଜ୍ଞା ବାରମ୍ବାର ପିତୃଗୃହକୁ ପଳାୟନ କରିବାରୁ ବିଶ୍ୱକର୍ମା ସୂର୍ଯ୍ୟଙ୍କୁ ଆଠ ଭାଗରେ କର୍ତ୍ତନ କଲେ ଏବଂ ବାରମାସରେ ତାଙ୍କର ତେଜକୁ ବିଭକ୍ତ କଲେ। ସେହି ହେତୁ ସୂର୍ଯ୍ୟଙ୍କର ନାମ ହେଲା 'ବିକର୍ତ୍ତନ'। ସୂର୍ଯ୍ୟଙ୍କର ଅବଶିଷ୍ଟ ତେଜ ସଂଗ୍ରହ କରି ଏହି ଦେବଶିଳ୍ପୀ ବିଷ୍ଣୁଙ୍କର ସୁଦର୍ଶନଚକ୍ର, ଶିବଙ୍କର ତ୍ରିଶୂଳ, କାର୍ତ୍ତିକଙ୍କର ବଲ୍ଲମ ଓ ଅନ୍ୟାନ୍ୟ ଦେବଦେବୀଙ୍କ ପାଇଁ ଅନୁରୂପ ଅସ୍ତ୍ରଶସ୍ତ୍ର ନିର୍ମାଣ କରି ପ୍ରଦାନ କରିଥିଲେ।

ଦେବତାମାନଙ୍କ ଶତ୍ରୁ ଅସୁରମାନଙ୍କର ଶିଳ୍ପାଚାର୍ଯ୍ୟ ହେଲେ ମୟଦୈତ୍ୟ। ମାତ୍ର ବିଶ୍ୱକର୍ମା ହେଲେ ଦେବକୁଳର ଶିଳ୍ପାଚାର୍ଯ୍ୟ। ସେ ସ୍ୱର୍ଗର ଅଧିଦେବତା ହେଲେ ହେଁ ବାରମ୍ବାର ମର୍ତ୍ତ୍ୟକୁ ଛଦ୍ମରୂପରେ ଆଗମନ କରନ୍ତି ଓ ଅବତାରମାନଙ୍କ ଉଦ୍ଦେଶ୍ୟ ସାଧନ କରନ୍ତି। ତ୍ରେତାଯୁଗରେ ଭଗବାନ ରାମଚନ୍ଦ୍ର, ଯେଉଁ ସେତୁବନ୍ଧ ନିର୍ମାଣ କରାଇଥିଲେ, ସେଥିରେ ବିଶ୍ୱକର୍ମା ନିଜର ଶିଷ୍ୟ; ନଳ-କୁବେରଙ୍କୁ ନିୟୋଜିତ କରାଇ ଥିଲେ। ସେହିପରି ଆମର ପୁରୁଷୋତ୍ତମ କ୍ଷେତ୍ରରେ ମଧ୍ୟ ବିଶ୍ୱକର୍ମା ବୁଢ଼ା ବଢ଼େଇ ରୂପ ଧରି ଏକୋଇଶ ଦିନ କାଳ ଡାଟିଘରେ ଲୁଚି ରହି ଶ୍ରୀ ଜଗନ୍ନାଥ, ଶ୍ରୀ ବଳଭଦ୍ର ଓ ମାତା ସୁଭଦ୍ରାଙ୍କ ମୂର୍ତ୍ତି ନିର୍ମାଣ କରିଥିଲେ ବୋଲି ପୌରାଣିକ କିମ୍ବଦନ୍ତୀ ରହିଛି।

ସଂପ୍ରତି ଆମ ଦେଶରେ ଶିଳ୍ପ ପ୍ରତିଷ୍ଠାନଗୁଡ଼ିକ ବଢ଼ିବା ସଙ୍ଗେ ସଙ୍ଗେ ବିଶ୍ୱକର୍ମାଙ୍କ ପୂଜା ମଧ୍ୟ ବଢ଼ିଚାଲିଛି ଏବଂ ଏହା ଆହୁରି ମଧ୍ୟ ବଢ଼ି ଚାଲିବ। କିନ୍ତୁ ବର୍ତ୍ତମାନ ସମାଜରେ ଏଇସବୁ ପୂଜାମାନ ଯେପରି ରୀତିରେ ଚାଲିଛି—ସେଗୁଡ଼ିକୁ ପର୍ଯ୍ୟାଲୋଚନା କଲେ ମନେ ହେବ ଏସବୁ ପୂଜା ପଛରେ କୌଣସି ଗଭୀର ଆଧ୍ୟାତ୍ମିକ ଚେତନା ରହିବା ଦୂରେଥାଉ, ସାମାନ୍ୟତମ ଧାର୍ମିକ ଚେତନା ଏପରି କି ଯଥାବଶ୍ୟକ ନୈତିକ ଚେତନା ରହିଥିବା ଭଳି ମଧ୍ୟ ମନେହୁଏ ନାହିଁ। ବିଭିନ୍ନ ସମୟରେ ବିଭିନ୍ନ ପ୍ରକାର ମାଟିମୂର୍ତ୍ତି ନିର୍ମାଣ କରି ଓ ସେଗୁଡ଼ିକୁ ଖୁବ୍ ଜାକଜମକରେ ସଜାସଜି କରି ଖାଦ୍ୟ ପାନୀୟରେ ପ୍ରମତ୍ତ ହୋଇ ହୁଇହୁଲ୍ଲା କରିବାରେ କୌଣସି ପ୍ରକାର ଧାର୍ମିକତା କଦାପି ପ୍ରତିଷ୍ଠିତ ହୁଏନାହିଁ। ଗଣେଶ ପୂଜା ବା ସରସ୍ୱତୀ ପୂଜାର ଏତେ ପ୍ରସାର ଦେଖି ଯେମିତି ଦେଶରେ ବିଦ୍ୟା, ଜ୍ଞାନ, ବୁଦ୍ଧି, ସିଦ୍ଧି ଇତ୍ୟାଦି ବଢ଼ି ଯାଉଥିବାର ସାମାନ୍ୟତମ ସୂଚନା ମିଳୁନାହିଁ—ସେମିତି ବିଶ୍ୱକର୍ମା ପୂଜାର ବାହୁଲ୍ୟ ଦେଖି କେହି ଭାବିବା ଉଚିତ ନୁହେଁ ଯେ ଆମ ଦେଶରେ ଘର, ରାସ୍ତା, ପୋଲ ଇତ୍ୟାଦିଠାରୁ ଇଂଜିନ, ମେସିନ ପର୍ଯ୍ୟନ୍ତ ସବୁକିଛିର ନିର୍ମାଣ କାର୍ଯ୍ୟ ଓ ମରାମତି କାର୍ଯ୍ୟ ବଡ଼ ସୁନ୍ଦର ଭାବେ, ନିର୍ଭୁଲଭାବେ ଓ ସଂଗତ ଭାବେ ଚାଲିଅଛି। ବରଂ ଏହିସବୁ ପ୍ରତିମାପୂଜାର ମହାରାଜସିକ ଓ ତାମସିକ ଆଡ଼ମ୍ବର ତଳେ ଆମର ସାତ୍ତ୍ୱିକ ନିଷ୍ଠା, ସାଧନା ମନୋବୃତ୍ତି ଓ ଅଭୀପ୍ସା କ୍ରମଶଃ ଅଧଃପାତ ହେବାକୁ ବସିଲାଣି।

ପ୍ରତିମାପୂଜା ଯେତେବେଳେ ଏହିପରି ଚେତନା ବିବର୍ଜିତ ଅବସ୍ଥାକୁ ଆସିଯାଏ, ସେତେବେଳେ ପ୍ରତିମା ବିରୋଧୀ ପ୍ରତିମାଭଙ୍ଗାଳିମାନେ ଜନ୍ମ ହୁଅନ୍ତି ଓ ନିର୍ବିଚାର ଭାବରେ ମୂର୍ତ୍ତିମାନ ଭାଙ୍ଗିବାରେ ଲାଗିପଡ଼ନ୍ତି।



# ଜେଲ୍ ଓ ଜେଲ୍ ବାହାରେ ଜେଲ୍

୧୩।୪।୮୩

କେତେକ ସମ୍ବାଦପତ୍ରରେ ପ୍ରକାଶ ପାଇଛି ଯେ କୌଣସି ଏକ ଜେଲ୍‌ରେ ଜଣେ ଜେଲ୍ କର୍ମଚାରୀ ସେହି ଜେଲ୍‌ର ଜଣେ ମହିଳା ବନ୍ଦିନୀଙ୍କ ସହିତ ଅସଦ୍ ବ୍ୟବହାର କରିବା ଫଳରେ ବନ୍ଦିନୀଟି ଅତ୍ୟନ୍ତ ଅପମାନିତା ଓ ଉତ୍ୟକ୍ତା ହୋଇପଡ଼ିଲା ଏବଂ କର୍ତ୍ତୃପକ୍ଷଙ୍କ ନିକଟରେ ସେହି କର୍ମଚାରୀଙ୍କର ଦୁଷ୍କର୍ମ ସମ୍ବନ୍ଧେ ଆବେଦନ କରି କିଛି ସୁବିଚାର ନ ପାଇବା ହେତୁ—ଏହାର ପ୍ରତିବାଦ କରି ସେହି ଜେଲ୍‌ର ଅନ୍ୟାନ୍ୟ ବନ୍ଦୀମାନେ ଅନଶନ କରି ଏହି ଅନ୍ୟାୟର ପ୍ରତିବାଦ କରିଛନ୍ତି।

ମହିଳା ବନ୍ଦିନୀଟି ପ୍ରତି ଉକ୍ତ ଜେଲ୍ କର୍ମଚାରୀ କି ପ୍ରକାର ଅସଦ୍ ବ୍ୟବହାର କଲେ ତାହା ବିସ୍ତୃତ ଭାବେ ପ୍ରକାଶ ପାଇନାହିଁ। କିନ୍ତୁ ଘଟଣାଟିର ଉପକ୍ରମଟି ହେଲା—ଏହିପରି। ସେଦିନ ଜେଲ୍ କର୍ମଚାରୀ ଜଣକ ଗଞ୍ଜାଇ ଚିଲମ ଧରି ବନ୍ଦିନୀଟି ପାଖକୁ ଗଲେ ଏବଂ ତାକୁ ଡାକି କହିଲେ ଯେ, ସେ ଯେପରି ତାଙ୍କ ନିକଟକୁ ଆସି ତାଙ୍କ ଗଞ୍ଜାଇ ଚିଲମରେ ଅଗ୍ନି ସଂଯୋଗ କରନ୍ତୁ। ସେହି କର୍ମଚାରୀ ଜଣକ ପୂର୍ବରୁ ଏଇସବୁ ମହିଳା କର୍ମଚାରୀମାନଙ୍କ ପ୍ରତି ନାନା ଅଶୋଭନୀୟ ବ୍ୟବହାର ପ୍ରଦର୍ଶନ କରିଥିବାରୁ ସେହି ବନ୍ଦିନୀଟି କର୍ମଚାରୀଟିର ଅନୁରୋଧକୁ ପ୍ରତ୍ୟାଖ୍ୟାନ କଲା। ଏଥିରେ କ୍ରୁଦ୍ଧ ହୋଇ କର୍ମଚାରୀଜଣକ ତା' ପ୍ରତି ବିଶେଷ କିଛି ଅଶ୍ଳୀଳ ବ୍ୟବହାର ପ୍ରଦର୍ଶନ କରନ୍ତେ ସେହି ଜେଲ୍‌ରେ ଅନ୍ୟ ପୁରୁଷ ବନ୍ଦୀମାନେ ମଧ୍ୟ ବାହାରି ଆସି ଖୁବ୍ ଉତ୍ୟକ୍ତ ହୋଇ ଏହାର ପ୍ରତିବାଦ କଲେ ଏବଂ ସେହି ଦିନଠାରୁ ଉକ୍ତ ଜେଲ୍‌ରେ ଘଟିଥିବା ଏହି ଅପକର୍ମଟିର କୌଣସି ପ୍ରତିକାର ଏ ଯାବତ ହୋଇନାହିଁ ବୋଲି ମଧ୍ୟ ସମ୍ବାଦରୁ ପ୍ରକାଶ।

ପ୍ରକାଶ ଥାଉ କି, ଏହିଭଳି ଜେଲ୍‌ମାନଙ୍କରୁ ପ୍ରାୟଶଃ ଅତି ଜଘନ୍ୟ ଅପରାଧରେ ସଂପୃକ୍ତ ବନ୍ଦୀମାନେ ମଧ୍ୟ ବାରମ୍ବାର ଖସି ପଳାଉଛନ୍ତି ଏବଂ ଜେଲ୍ ଭିତରୁ ବନ୍ଦୀମାନେ ଖସି ପଳାଇବା ପଛରେ ସେହି ଜେଲ୍‌ର କର୍ମଚାରୀମାନଙ୍କର ଅନୁକୂଳ ହାତ ପ୍ରଚ୍ଛନ୍ନ ରହିଛି ବୋଲି ମଧ୍ୟ ଲୋକମାନଙ୍କ ମନରେ ସନ୍ଦେହ ଜାତ ହେଉଛି। କିନ୍ତୁ ଏଥିପାଇଁ ମଧ୍ୟ କର୍ତ୍ତୃପକ୍ଷଙ୍କ ଆଡୁ କୌଣସି ସ୍ଥାୟୀ ବିହିତ ପ୍ରତିକାର କରାଯାଉଥିବା ଭଳି ମନେ ହେଉ ନାହିଁ। ଫଳରେ ଆମର ଜେଲଗୁଡ଼ିକର ଦୂରାବସ୍ଥା ବର୍ତ୍ତମାନ ଅତୀବ ଶୋଚନୀୟ ବୋଲି ବୁଝିବାକୁ ହେବ।

ଅନ୍ୟାନ୍ୟ ପାଶ୍ଚାତ୍ୟ ଦେଶମାନଙ୍କରେ ଏବଂ ଆମ ଦେଶରେ ବି ଅପରାଧ ଓ ଅପରାଧୀମାନଙ୍କ ସମ୍ବନ୍ଧେ ନୂତନ ଜ୍ଞାନବିଜ୍ଞାନର ଅଭ୍ୟୁଦୟ ଘଟିବା ଫଳରେ ଅପରାଧୀମାନଙ୍କ ସହିତ କିପରି ବ୍ୟବହାର କରିବାକୁ ହେବ– ସେ ସମ୍ବନ୍ଧେ ନାନାଦି ପ୍ରଗତିଶୀଳ ଆଚରଣବିଧି ପ୍ରଣୟନ ହୋଇ ସାରିଛି। ବର୍ତ୍ତମାନ 'ଅପରାଧ' କଣ–ଓ ମଣିଷ କାହିଁକି ଅପରାଧ କରେ– ଏବଂ ତାର ନିରାକରଣ, କୋଉବାଟେ ହେବ–ସେଥିପାଇଁ ସବୁ ପ୍ରଗତିଶୀଳ ଦେଶମାନଙ୍କରେ ନାନା ପ୍ରକାର ତାତ୍ତ୍ୱିକ ଓ ପ୍ରୟୋଗାତ୍ମକ ପରୀକ୍ଷାନିରୀକ୍ଷା ଚାଲିଛି। ବିଶ୍ୱବିଦ୍ୟାଳୟମାନଙ୍କରେ 'ଅପରାଧ ବିଜ୍ଞାନ' ଏକ ସ୍ୱତନ୍ତ୍ର ପାଠ୍ୟକ୍ରମ ରୂପେ ମଧ୍ୟ ପଠିତ ଓ ଗବେଷିତ ହେଲାଣି। ନୃତତ୍ତ୍ୱ, ମନସ୍ତତ୍ତ୍ୱ ଓ ସମାଜତତ୍ତ୍ୱ ସହଯୋଗରେ ମଣିଷର ଅପରାଧ ପ୍ରବୃତ୍ତି ଉପରେ ନାନାଦି ତାତ୍ତ୍ୱିକ ଓ ବିଶ୍ଳେଷଣାତ୍ମକ ଗ୍ରନ୍ଥାଦି ପ୍ରକାଶ ପାଇଲାଣି। ତେଣୁ ପୂର୍ବେ ଯେପରି ଅପରାଧୀମାନଙ୍କୁ କେବଳ ନୈତିକତା ଦୃଷ୍ଟିରୁ ବିଚାର କରି ଘୃଣ୍ୟ ଓ ପରିତ୍ୟଜ୍ୟ ବୋଲି ମନେ କରି ପେନାଲ କୋଡ୍ ଅନୁଯାୟୀ କେବଳ ଦଣ୍ଡ ଦେବାର ବ୍ୟବସ୍ଥା କରାଯାଉଥିଲା–ଆଜି ସେ ଦୃଷ୍ଟିକୋଣ ପୂରାପୂରୀ ସେହିଭାବେ ନାହିଁ–ଅଥଚ ଅପରାଧୀକୁ କେବଳ ଦଣ୍ଡଦେଇ ସମାଜ ବା ସରକାରର କର୍ତ୍ତବ୍ୟ ସେତିକିରେ ଶେଷ ହୋଇଯାଉ ନାହିଁ। ଜଣେ ଅପରାଧୀ ତାର ଅପରାଧ ପାଇଁ ନିଶ୍ଚୟ ଦଣ୍ଡପାଇବ–ମାତ୍ର ସମାଜର କର୍ତ୍ତବ୍ୟ ହେଲା–ସେ ଯେପରି ଭବିଷ୍ୟତରେ ଆଉ ଅପରାଧ ନକରେ। ସେହି ଦିଗରେ ଅପରାଧୀଟିର ସମସ୍ତ ମନସ୍ତତ୍ତ୍ୱଟିକୁ ପରିବର୍ତ୍ତିତ କରିବା ବା ପରିଚାଳିତ କରିବା। ଜଣେ ଦସ୍ୟୁ ଡକାଏତ ରତ୍ନାକରକୁ ଭବିଷ୍ୟତ ଜୀବନରେ କବି ମହର୍ଷି ବାଲ୍ମୀକି ହେବା ଦିଗରେ ଯେପରି ନାରଦ ମୁନି ଓ ବ୍ରହ୍ମା ପ୍ରରୋଚନା ଦେଇଥିଲେ–ସେହିପରି ସମାଜ ଓ ସରକାର ମଧ୍ୟ ଶୁଭେଚ୍ଛାର ବଶବର୍ତ୍ତୀ ହେଲେ ବହୁ ଦସ୍ୟୁରତ୍ନାକରଙ୍କୁ ଋଷି ବାଲ୍ମୀକିରେ ରୂପାନ୍ତରିତ କରିବାରେ ନିଶ୍ଚୟ ସଫଳ ହେବେ।

ଇସଲାମୀୟ ରାଷ୍ଟ୍ରମାନଙ୍କ କଥା ଛାଡ଼ିଦିଅନ୍ତୁ। ବର୍ତ୍ତମାନ ବିଶ୍ୱର ବହୁ ସମୁନ୍ନତ ରାଷ୍ଟ୍ର ଏ ଦିଗରେ ଖୁବ୍ ବିଚକ୍ଷଣ ସଫଳତା ଦର୍ଶାଇଲେଣି। ଆମ ଭାରତବର୍ଷରେ ବି ମହତ ବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସି ବହୁ ଡକାଏତ ଉନ୍ନତ ସାମାଜିକ ମଣିଷରେ ପରିଣତ ହେବାର ଉଦାହରଣ ବିରଳ ହୋଇନାହିଁ। ଅବଶ୍ୟ ଆମ ସମାଜରେ ବର୍ତ୍ତମାନ ସେଭଳି ମହତ ଲୋକଙ୍କ ସଂଖ୍ୟା ମଧ୍ୟ କ୍ରମେ କମିଯାଉଛି–ଯେଉଁମାନେ କି ସେମାନଙ୍କର ସ୍ପର୍ଶ ମଣି ବ୍ୟକ୍ତିତ୍ୱର ସଂସ୍ପର୍ଶରେ ଯେ କୌଣସି ଲୌହ କଠିନ ନିର୍ମମ ହୃଦୟକୁ ସୁନା କରିଦେବେ।

ତା'ହେଲେ ବି, ଆମ ଦେଶରେ ମଧ୍ୟ ଅପରାଧୀମାନଙ୍କର ଉତ୍ତର ଜୀବନକୁ ସମୁନ୍ନତ କରିବା ପାଇଁ ଏବଂ ସେମାନଙ୍କର ପ୍ରକୃତିର ପରିବର୍ତ୍ତନ ପାଇଁ–ଆମର ଜେଲଗୁଡ଼ିକର ବହୁ ସଂସ୍କାର କରାଯିବା ଦିଗରେ ଉଦ୍ୟମ ଆରମ୍ଭ ହୋଇଯାଇଛି।

ଆମର ଜେଲ ନିୟମଗୁଡ଼ିକରେ ବହୁ କଲ୍ୟାଣକର ପରିବର୍ତ୍ତନ କରାଯାଇଛି। କିନ୍ତୁ ଯଥାର୍ଥରେ ସେଗୁଡ଼ିକ ପାଳିତ ହୋଇ ପାରୁଛି କି? ସେ ଦିଗରେ କାହାର ସାମାନ୍ୟ ଦୃଷ୍ଟି ଅଛି କି? ଗୋଟିଏ ଜେଲ ଭିତରେ ନାନା ଅପରାଧରେ ଜଡ଼ିତ ବନ୍ଦୀମାନେ ରହିବେ ଏବଂ ସେମାନଙ୍କୁ ଯେଉଁମାନେ ଜଗିବେ ଓ ସେମାନଙ୍କର କଲ୍ୟାଣ ପାଇଁ ଯେଉଁମାନଙ୍କୁ କର୍ମଚାରୀ ରୂପେ ସେଠାରେ ନିଯୁକ୍ତ ରଖାଯିବ ସେମାନଙ୍କର ସର୍ବନିମ୍ନ ଯୋଗ୍ୟତା କଣ ଓ କେତେ ରହିବା ଉଚିତ? ସେମାନଙ୍କର ନୈତିକ ଓ ମନସ୍ତାତ୍ତ୍ୱିକ ସ୍ୱାସ୍ଥ୍ୟ କିପରି ହେବା ଉଚିତ? ସେ ଦିଗରେ ପ୍ରକୃତରେ କେହି ଚିନ୍ତା କରୁଛି କି?

ଗୋଟିଏ ଜେଲର କର୍ମଚାରୀବୃନ୍ଦ ଯଦି ଗଞ୍ଜେଇଖୋର, ମଦ୍ୟପ, ଅଫିମିଆ ଏବଂ ଯୌନବିକୃତିଗ୍ରସ୍ତ ହୋଇଥାନ୍ତି–ତେବେ ସେ ଜେଲ ଓ ତାର ବନ୍ଦୀମାନଙ୍କର କି ଅବସ୍ଥା ହେବ?

ଆଉ ଗୋଟିଏ କଥା ହେଲା–ବର୍ତ୍ତମାନ ଆମେ ଯେଉଁମାନଙ୍କୁ ଅପରାଧୀ ବୋଲି ଚିହ୍ନଟ କରି ଜେଲ ଭିତରେ ବନ୍ଦୀ କରି ରଖୁଛୁ–ସେମାନଙ୍କ ଅପେକ୍ଷା ଆହୁରି ବିଭତ୍ସ ଓ ଭୟଙ୍କର ଅପରାଧୀମାନେ ଯେ ବର୍ତ୍ତମାନ ଆମ ସମାଜର ପ୍ରତିଟି ସ୍ତରରେ –ଅର୍ଥାତ୍ ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ନିର୍ମାଣ, ବିଚାର ଓ ପ୍ରଶାସନିକ ବିଭାଗାଦିରେ ଆଶାତୀତ ଭାବେ ବଢ଼ିଗଲେଣି–ସେକଥା ଆଉ ପ୍ରମାଣ କରିବାର ଦରକାର ପଡୁନାହିଁ। କିନ୍ତୁ ସେମାନଙ୍କୁ କିଏ କିପରି ଜେଲ୍‌ରେ ଠୁଳି ପାରିବ?

ବରଂ ଏ ପ୍ରସଙ୍ଗରେ ଏତିକି କରୁଣ ରସିକତା କରି କୁହାଯାଇ ପାରେ ଯେ–

"ଆମର ଏଇସବୁ ଛୋଟ ଛୋଟ ଜେଲ୍‌ଗୁଡ଼ିକ ବାହାରେ ରହିଛି–ଅସଲରେ ସେହି ବିରାଟ ଜେଲ। ତା' ଭିତରେ ଅସଂଖ୍ୟ ଅପରାଧୀ ଆତଯାତ ହେଉଛନ୍ତି। କିନ୍ତୁ ହାୟ ଦୁର୍ଦ୍ଦୈବ। ସେହି ହତଭାଗ୍ୟ ଅଜ୍ଞାନ ଅପରାଧୀମାନେ ନିଜକୁ ତା' ଭିତରେ ବନ୍ଦୀ ବୋଲି ଏଯାବତ ମଧ ଭାବିପାରୁନାହାନ୍ତି। ମୂଷାଟା ଜନ୍ତା ଭିତରେ ପଶି ଯନ୍ତା ଭିତରେ ଥୁଆ ହୋଇଥିବା ଲୋଭନୀୟ ଖାଦ୍ୟଟିକୁ ଅତି ଆନନ୍ଦରେ ମୁକ୍ତ ମୂଷିକଟିଏ ଭଳି ଖାଇ ଲାଗିଛି। ମାତ୍ର ତାକୁ ଜଣା ନାହିଁ ଯେ ସେ ଯନ୍ତା ଭିତରେ ଖାଦ୍ୟ ଲୋଭରେ ପ୍ରବେଶ କରିବା ମୁହୂର୍ତ୍ତରେ ଯନ୍ତାଟିର ଦ୍ୱାର ଆପଣା ମନକୁ ବନ୍ଦ ହୋଇଯାଇଛି। ସେ ଆଉ ସେଥିରୁ ମୁକୁଳି ପାରିବନି। ମରିବ। ଜେଲ ବାହାରେ ଥିବା ବିରାଟ ଜେଲର ଉନ୍ମତ୍ତ ଲୋଭୀ ଅପରାଧୀମାନେ ସେ କଥାଟି ଏବେ ମଧ ବୁଝୁ ନାହାନ୍ତି!!!"



# ନାରୀ ନିର୍ଯାତନାର ଦୁଇପକ୍ଷ

୯।୩।୮୩

ପ୍ରାୟ ପ୍ରତିଦିନ ଭାରତବର୍ଷର ସମସ୍ତ ସମ୍ବାଦପତ୍ରରେ ନାରୀ-ନିର୍ଯ୍ୟାତନା ଶିରୋନାମାରେ ଅତ୍ୟନ୍ତ ବୀଭତ୍ସ ଓ ବେଳେବେଳେ ଲୋମହର୍ଷଣ ଦୁଃସମ୍ବାଦମାନ ପ୍ରକାଶ ପାଇଚାଲିଛି ଏବଂ ଏହିସବୁ ନିର୍ଯ୍ୟାତନାର ହେତୁ ମୁଖ୍ୟତଃ ଦୁଇବିଧ। ପ୍ରଥମଟି ହେଲା– ଦୁର୍ବୃତ୍ତମାନଙ୍କ ଦ୍ୱାରା ଅସହାୟା ସ୍ତ୍ରୀ ଲୋକଟିଏ ଧର୍ଷିତା ହେଉଛି। ଦ୍ୱିତୀୟଟି ହେଲା– ଦାବୀ ସମ୍ମତ ଯୌତୁକ ଆଣିପାରି ନ ଥିବା ହେତୁ ସ୍ତ୍ରୀ ଲୋକଟିଏ ତା' ଶାଶୁଘରେ ନିର୍ଯ୍ୟାତିତା ହେଉଛି ବା ବଡ଼ ନିଷ୍ଠୁରଭାବେ ନିହତ ହେଉଛି। ଏ ଦୁଇଟି ବ୍ୟତୀତ ଅନ୍ୟ ବହୁବିଧ କାରଣମାନ ମଧ୍ୟ ରହିଛି—ଯାହାର ବିଚାର ସ୍ୱତନ୍ତ୍ର ପରିସରରେ କରିବା।

କିନ୍ତୁ ପ୍ରଥମ କାରଣଟିକୁ ବହୁ ଅଂଶରେ ନିରାକୃତ କରାଯାଇପାରିବ—ଯଦି ଦେଶର ଶାସନଦଣ୍ଡ ଏହିସବୁ ଦୁର୍ବୃତ୍ତ ଧର୍ଷଣକାରୀମାନଙ୍କ ପ୍ରତି କଠୋର ଭାବେ ଉଦ୍ୟତ ଓ ସକ୍ରିୟ ରହନ୍ତା। କିନ୍ତୁ ତା'ହେବା ସହଜ ନୁହଁ। କାରଣ, ଧର୍ଷଣ ସମ୍ପର୍କୀୟ ଆଇନଗୁଡ଼ିକ ଏତେ ଉଦାର ଓ ଜଟିଳ ଯେ ମକଦ୍ଦମାଟିଏ କରି ଧର୍ଷଣକାରୀମାନଙ୍କୁ ଦୋଷୀ ସାବ୍ୟସ୍ତ କରି ଦଣ୍ଡଦେବା ଏତେ ସହଜ ନୁହଁ। ଏଥିଲାଗି ତୁରନ୍ତ ଆଇନକୁ ବଦଳାଇ ଦେବା ଉଚିତ—ଏବଂ ଏ ସମ୍ପର୍କୀୟ ଆଇନଗୁଡ଼ିକ ଖୁବ୍ ସ୍ପଷ୍ଟ, ସରଳ ଓ ଆଶୁସିଦ୍ଧାନ୍ତକ୍ଷମ ହେବା ଉଚିତ। କିନ୍ତୁ ସମସ୍ତେ ଏକଥା ବୁଝିଥିଲେ ବି ଏହି ସମ୍ପର୍କୀୟ ଆଇନ ତୁରନ୍ତ ବଦଳୁ ନାହିଁ କାହିଁକି ? ତାର ଏକମାତ୍ର କାରଣ ହେଲା—ଯେଉଁମାନେ ଏହା କରନ୍ତେ ସେମାନଙ୍କ ମଧ୍ୟରୁ ଅଧିକାଂଶ ହେଲେ ଯୌନବ୍ୟାପାରରେ ପଶୁ ଓ ଜନ୍ତୁମାନଙ୍କଠାରୁ ଆହୁରି ଜଘନ୍ୟ। ବହୁ କ୍ଷେତ୍ରରେ ପୁଣି ଏହି ଯୌନଲାଳସା ଶାରୀରିକ ଅପାରଗତାକୁ ଅସ୍ୱୀକାର କରି ଏକ ମାନସିକ ଯୌନ ବିକୃତିରେ ପରିଣତ ହୋଇଛି। ଅସାଧାରଣ ଭାବେ ଯୌନ–ବିକୃତିଗ୍ରସ୍ତ ଏଇସବୁ ରାଜନୀତିକ ନେତୃବୃନ୍ଦ ଓ ପ୍ରଶାସକ ଗୋଷ୍ଠୀଙ୍କ କର୍ତ୍ତୃତ୍ୱ ସମାଜ ଓ ରାଷ୍ଟ୍ରରେ ବଳବତ୍ତର ଥିବା ପର୍ଯ୍ୟନ୍ତ ସମାଜରେ ଧର୍ଷଣଜନିତ ନାରୀ ନିର୍ଯ୍ୟାତନା ବଢ଼ିବ ସିନା, କମିବ ନାହିଁ। ଏମାନଙ୍କର ଏକମାତ୍ର ଲକ୍ଷ୍ୟ କ୍ଷମତା, ଧନ, ମଦ୍ୟ ଓ ନାରୀ ସମ୍ଭୋଗ।

ଅନ୍ୟଟି ହେଲା–ଯୌତୁକଜନିତ ନାରୀନିର୍ଯ୍ୟାତନା। ଏକଥା ଖୁବ୍ ଜଣାଶୁଣା ଯେ ଆଜି ଯେଉଁମାନେ ଯୌତୁକ ପ୍ରଥା ବିରୋଧରେ ବଡ଼ ବଡ଼ କଥା ବଡ଼ ବଡ଼ ପାଟିରେ ଶୁଣାଉଛନ୍ତି–ସେମାନେ ସମସ୍ତେ ଧର୍ମକୁ ଆଖିଠାର ମାରୁଛନ୍ତି। କିଏ ନ ଜାଣେ ଯେ, ସମାଜର ବଡ଼ପଣ୍ଡାମାନେ ଓ ଧନୀବ୍ୟକ୍ତିମାନେ ଯୌତୁକ ଆଣିବାରେ ଯେମିତି ମୁକ୍ତହସ୍ତ—ଯୌତୁକ ଦେବାରେ ମଧ୍ୟ ସେମିତି ମୁକ୍ତହସ୍ତ। ବର୍ତ୍ତମାନ ନାରୀଶିକ୍ଷାର ଖୁବ୍ ପ୍ରସାର ହେଲାଣି। ଦରିଦ୍ର ଓ ନିମ୍ନମଧ୍ୟବିତ୍ତ ବ୍ୟକ୍ତିଙ୍କର ଝିଅମାନେ ମଧ୍ୟ କଲେଜରେ ପଢ଼ିଲେଣି। ସେମାନଙ୍କର ରୁଚି ଓ ମନୋଭାବ ବଦଳିଗଲାଣି। ଆତ୍ମମର୍ଯ୍ୟାଦାବୋଧ ଓ ଆତ୍ମସଚେତନତା ଜାଗ୍ରତ ହେଲାଣି। ସେମାନେ ଯେ କୌଣସି ଲୋକକୁ ବିବାହ

କରିବାକୁ ମଙ୍ଗୁନାହାନ୍ତି। ଜଣେ ଚତୁର୍ଥ ଶ୍ରେଣୀ କର୍ମଚାରୀର ଝିଅ ଯଦି ମାଟ୍ରିକ୍‌ଟିଏ ପାସ୍‌କରିଛି—ତା'ହେଲେ ସେ ଚାହୁଁଚି ଅଫିସରଟିଏ ନ ହେଲେ ବାହାହେବ ନାହିଁ। ଏବଂ ଏଣେ ଛଅଶହ ଟଙ୍କା ରୋଜଗାର କରୁଥିବା ବରଟିଏ କିଣିବାପାଇଁ ହେଲେ—ଆଜିକାଲି ବରବଜାରର ଦରଦାମ ପରସ୍ଥିତିରେ ଅନ୍ତତଃ ଚାଳିଶିହଜାର ଟଙ୍କା ଦରକାର। ତେଣୁ ବାସ୍ତବ କଥାଟି ହେଲା—କନ୍ୟାପିତା ଓ ବରପିତାଙ୍କ ମଧ୍ୟରେ ପ୍ରସ୍ତାବ-ନିର୍ଭର-ବିବାହ-ପ୍ରଥା ଚାଲିଥିବାଯାଏ ଯୌତୁକ ଦାବୀ ରହିବ ହିଁ ରହିବ। ଏ କ୍ଷେତ୍ରରେ ପୁଅ ଝିଅ ପ୍ରେମରେ ପଡ଼ି ବିବାହ କଲେ ହିଁ ଯୌତୁକ କଥା ଆଉ ଉଠିବ ନାହିଁ। ମାତ୍ର ପ୍ରେମରେ ପଡ଼ିବା ସେମିତି ସହଜ କଥା ନୁହେଁ—କି ପ୍ରେମରେ ପଡ଼ିଲେ ବି ତାକୁ ବିବାହରେ ପରିଣତ କରିବା ପାଇଁ ସିଦ୍ଧାନ୍ତ ନେଇଯିବା—ପୁଅ ପକ୍ଷରେ ଯେମିତି କଷ୍ଟକର—ଝିଅ ପକ୍ଷରେ ବି ତଦ୍ରୂପ କଷ୍ଟକର। ତା'ଛଡ଼ା—ଯୁବକ ଯୁବତୀଙ୍କୁ ମୁକ୍ତ ଭାବେ ପ୍ରେମ କରି ବିବାହ କରିବାକୁ ଛାଡ଼ିଦେଲେ—ଆହୁରି ବହୁ ଦୁଃସାଧ ସମସ୍ୟା ମଧ୍ୟ ଆସି ଦେଖାଦେବ। ପାଶ୍ଚାତ୍ୟ ଦେଶମାନଙ୍କରେ ଏଇପରି ସମସ୍ୟାମାନ ଦେଖାଯାଉଛି।

କିନ୍ତୁ ବର୍ତ୍ତମାନ ଯେଉଁ ଯୁଗ ଆସିଛି—ସେଥିରେ ପ୍ରଣୟ ଲାଗି ଓ ସେହି ସୂତ୍ରରେ ଜୀବନସାଥୀ ବାଛିନେବା ଲାଗି, ପୁଅଝିଅମାନଙ୍କୁ ଅଖଣ୍ଡ ସ୍ୱାଧୀନତା ଦେବା ଉଚିତ। ଏଥିରେ ସାରା ଜୀବନ ଝିଅଟିଏ ବିଫଳ ହୋଇ ଗଲେ ବି, ତାର ଆତ୍ମମର୍ଯ୍ୟାଦା ନଷ୍ଟ ହେବ ନାହିଁ। କିନ୍ତୁ ଯେ କୌଣସି ସଫଳତା ଯେତେ ମୂଲ୍ୟବାନ ହେଲେ ବି, ଆତ୍ମମର୍ଯ୍ୟାଦା ତୁଳନାରେ ତାହା ଅତି ନଗଣ୍ୟ ଓ ମୂଲ୍ୟହୀନ। ଜୀବନରେ ବହୁ ପୁରୁଷଙ୍କ ସହିତ କିଛିଦିନ ସତକୁସତ ପ୍ରଣୟରସରେ ଜର୍ଜରିତ ହୋଇ ଜୀବନକୁ ସେଇ ସୂତ୍ରରେ ଅନ୍ତତଃ କିଛିଦିନ ଉପଭୋଗ କରି—ପରେ ବିବାହଲାଗି ପ୍ରତ୍ୟାଖ୍ୟାତା ସ୍ତ୍ରୀ ଲୋକଟିର ଆତ୍ମମର୍ଯ୍ୟାଦା, ନିଶ୍ଚିତଭାବେ ପିତୃଧନରେ କିଣାଯାଇଥିବା ଅପ୍ରେମିକ ସ୍ୱାମୀଟି ପାଖେ ସାରାଜୀବନ ପ୍ରେମହୀନ ଦାମ୍ପତ୍ୟ ଜୀବନ ଅତିବାହିତ କରି କେବଳ ଦୁଇ ତିନୋଟି ସନ୍ତାନର ଜନନୀ ହୋଇ ନିଜର ଜୀବନକୁ ସେଇ ଦୃଷ୍ଟିରୁ କେବଳ ସାର୍ଥକ ମନେ କରୁଥିବା ସ୍ତ୍ରୀଲୋକଟିର ଆତ୍ମମର୍ଯ୍ୟାଦା ଠାରୁ ନିଶ୍ଚିତଭାବେ ଅଧିକ।

''ସ୍ତ୍ରୀଲୋକମାନେ ହେଲେ ଆତ୍ମାହୀନ ପ୍ରାଣୀ''—ଏହି ନୀତି ବାକ୍ୟଟିକୁ ପ୍ରଚାର କରୁଥିବା ସେହି ପାଶ୍ଚାତ୍ୟ ଧର୍ମ ଶାସ୍ତ୍ରଟିକୁ, ଆମେ ଭାରତବାସୀମାନେ ପ୍ରତିଦିନ ଆମ ଜୀବନରେ ସମ୍ମାନ ଦେଉଛୁ—ଯେତେବେଳେ ଆମେ ଯୌତୁକ ବିନିମୟରେ ପ୍ରେମହୀନ ପୁରୁଷଟିଏ କ୍ରୟ କରି ତା' ହାତରେ, ଆମ କନ୍ୟାଟିକୁ ବିନା ଦ୍ୱିଧାରେ ସମର୍ପି ଦେଇ ''ହେଲା ନାରୀ, ହେଲା ପାରି'' ନ୍ୟାୟରେ ସନ୍ତୁଷ୍ଟ ହୋଇ ବସିଛୁ। ଆମ ଦେଶରେ—କେଡ଼େ ସୂକ୍ଷ୍ମ ଭାବରେ ନାରୀ ନିର୍ଯ୍ୟାତନା ଚାଲିଛି—ସେକଥା ଦେଖିବାରେ ସୂକ୍ଷ୍ମ ଦୃଷ୍ଟି ଆମର ଏ ଯାବତ୍ ଖୋଲି ନାହିଁ। କିମ୍ବା ଖୋଲିବାକୁ ମଧ୍ୟ ଇଚ୍ଛା ନାହିଁ। ବାରାନ୍ତରେ ଆମେ ଏ ସମ୍ବନ୍ଧେ ବିସ୍ତୃତ ଆଲୋଚନା କରିବୁ।



# ନାରୀର ମର୍ଯ୍ୟାଦା ନାରୀ ହାତରେ...

୧୬।୩।୮୩

ନାରୀ ନିର୍ଯ୍ୟାତନା ଏଇ ଯୁଗରେ ଖୁବ୍ ବେଶି ବଢ଼ିଯାଇଛି ବୋଲି ଯେଉଁମାନେ କହୁଛନ୍ତି—ସେମାନେ ଭୁଲ କହୁଛନ୍ତି। ହଜାର ହଜାର ବର୍ଷ ଧରି—ସମାଜ ଯୋଉଦିନ ଠାରୁ ପୁରୁଷ-ପ୍ରଧାନ ହେଲାଣି—ସେହି ଦିନୁ ନାରୀର ସ୍ୱତନ୍ତ୍ର ମର୍ଯ୍ୟାଦା ଲୋପ ପାଇଲାଣି। ସମାଜ କୋଉଦିନୁଁ, କିପରି ଏବଂ କାହିଁକି ପୁରୁଷ-ପ୍ରଧାନ ହେଲା ସେକଥା ସମାଜତତ୍ତ୍ୱବିଦ୍‌ମାନେ କହିବେ। ମାତ୍ର ଘଟିଛି ଏଇଆ। ନାରୀ ସେ ଯେତେ ବୁଦ୍ଧିମତୀ ବା ପ୍ରତିଭାମୟୀ ହେଉ—ସେ ଗୋଟାଏ ମୂର୍ଖ ଓ ଆଡ଼ବାଇଆ ଦାୟିତ୍ୱହୀନ ପୁରୁଷଠାରୁ ମଧ୍ୟ ହୀନ—ନାରୀର ଜନ୍ମ ପୁରୁଷର ଦାସୀ ହେବାକୁ—ପୁରୁଷର ମନ ମୋହିବାକୁ—ପୁରୁଷକୁ ଘରମୁହାଁ କରିବାକୁ—ପୁରୁଷକୁ ବାନ୍ଧି ରଖିବାକୁ—ପୁରୁଷର ସେବା କରିବାକୁ—ପୁରୁଷର ପୌରୁଷ ବା କାପୌରୁଷବାଦକୁ ସ୍ୱୀକାର ବା ସହ୍ୟ କରିବାକୁ—ଏକଥା ସବୁ ପୁରୁଷଙ୍କ ମନରେ ତା' ଜନ୍ମଠାରୁ ଦୃଢ଼ ଭାବେ ପୋତି ଦିଆଯାଇଛି। ନାରୀର ସମସ୍ତ କ୍ରିୟାକଳାପ ଘର ଭିତରେ—ଓ ପୁରୁଷର ଘର ବାହାରେ—ଏ ଜୀବନଦର୍ଶନ ମଧ୍ୟ ସମାଜରେ ଖୁବ୍ ପ୍ରତିଷ୍ଠା ପାଇଛି।

ଏକଥା ପ୍ରତିଷ୍ଠିତ ହେବା ସଙ୍ଗେ ସଙ୍ଗେ ଏକଥା ମଧ୍ୟ ସମାଜ ମନରେ ପ୍ରତିଷ୍ଠିତ ହୋଇଯାଇଛି ଯେ ନାରୀ ହେଉଛି—ପୁରୁଷଠାରୁ ସବୁ କ୍ଷେତ୍ରରେ ଦୁର୍ବଳ। ସେ ଅବଳା—କେବଳ ଦେହରେ ନୁହେଁ—ମନରେ। ନାରୀର ବୁଦ୍ଧି ହେଲା ମାଈକିନିଆ ବୁଦ୍ଧି—ନାରୀର ମନ ହେଲା ଚଞ୍ଚଳ—ନାରୀର ଯୌନକ୍ଷୁଧା ପୁରୁଷଠାରୁ ଅଧିକ—ନାରୀହିଁ ତାର ମୋହିନୀ ଯୌନ-ମାୟାରେ ଚରିତ୍ରବାନ୍ ଓ ସ୍ଥିତଧୀ ପୁରୁଷମାନଙ୍କୁ ମୋହିତ କରି ସେମାନଙ୍କୁ ଶୃଙ୍ଖଳିତ କରେ ଓ ପାପ ଆଡ଼କୁ ଟାଣିନେଇ ନରକରେ ପକାଏ। ଏ ଧାରଣା ମଧ୍ୟ ଆମର କାବ୍ୟ-କବିତା-ପୁରାଣ-ସଂହିତାଦି ସବୁ ପ୍ରକାରେ ପୁରୁଷଲିଖିତ ଶାସ୍ତ୍ରରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇଛି। କେତେକ ପାଶ୍ଚାତ୍ୟ ସେଣ୍ଟ୍ ଓ ପ୍ରାଜ୍ଞବ୍ୟକ୍ତି ନାରୀକୁ ଏତେ ହେୟ ଦୃଷ୍ଟିରେ ଦେଖିଛନ୍ତି ଯେ, ସେମାନଙ୍କ ମତରେ ସ୍ତ୍ରୀଲୋକମାନଙ୍କର ଆତ୍ମା ନାମକ ବିଷୟଟି ନାହିଁ। ସ୍ତ୍ରୀ ଲୋକମାନେ କେବଳ ଦେହ ଓ ପ୍ରାଣ ଓ ଏବଂ ତା' ସହିତ କିଛି କିଛି ପୁରୁଷଠାରେ କାମଭାବ ସଂଚାର କରି ତାକୁ ଯୌନକ୍ରୀଡ଼ାରେ ପ୍ରମତ୍ତ କରାଇବା ଦିଗରେ ପାପବୁଦ୍ଧି।

ଏସବୁ ସହିତ ନାରୀମାନଙ୍କ ସମ୍ବନ୍ଧେ ବହୁ ଗରିଷ୍ଠ ସାଧାରଣ ଧାରଣା ମଧ୍ୟ ଆମ ପୁରୁଷପୁଙ୍ଗବମାନଙ୍କ ମନରେ ବଦ୍ଧମୂଳ କରି ଦିଆଯାଇଛି। ଯଥା—ମାଈକିନିଆମାନେ ସ୍ୱାର୍ଥପର। ଭାଇ ଭାଇଙ୍କ ମଧ୍ୟରେ ସ୍ୱାଭାବିକ ପ୍ରେମକୁ କୁଆଡ଼େ ମାଈପମାନେ ଆସିଲେ ଭାଙ୍ଗି ଦିଅନ୍ତି। ବହୁ ପୁରୁଷ କଥାକାର ସେମାନଙ୍କ ଗଳ୍ପ ଉପନ୍ୟାସରେ ନାୟକ-ନାୟିକାଙ୍କ ଭିତରେ ପ୍ରେମ ବ୍ୟାପାରରେ ନାୟକକୁ ହିଁ ନାୟିକାଠାରୁ ଅଧିକ ପ୍ରେମଶୀଳ ବୋଲି ଦେଖାଇଥାନ୍ତି। କେତେକଙ୍କ ମତରେ ନାରୀ ହେଲା ବାସ୍ତବବାଦୀ ଓ ପୁରୁଷ ଅଧିକ ରୋମାଣ୍ଟିକ୍। ନାରୀ ସହସ୍ରଶଯ୍ୟାର ନାୟିକା ଭୂମିକାରେ ଅଭିନୟ କରିପାରେ। ନାରୀ ଛଳନାମୟୀ ଓ ରୂପ-ସର୍ବସ୍ୱା।

ଆମେ ପିଲାଦିନୁଁ ଆମ ଭଉଣୀମାନଙ୍କ ବିଷୟରେ ଶୁଣି ଆସିଛୁ—ଝିଅ ହେଲା ଘିଅ। ଝିଅ ପ୍ରାପ୍ତବୟସ୍କା ହୋଇ ବାପଘରେ ବେଶି ଦିନ ରହିଲେ—ତାର ସପ୍ତମପୁରୁଷ କୁଆଡ଼େ ସେହି ଝିଅର ଋତୁକାଳୀନ ଶୋଣିତସ୍ରୋତକୁ ପାନକରିବାକୁ ବାଧ୍ୟ ହୁଅନ୍ତି। ଆମେ ଏମିତି ସବୁ ଭକ୍ତକବିମାନଙ୍କ ଲିଖିତ ଶାସ୍ତ୍ରବାଦମାନ ଶୁଣିଛୁ—ଯାହାର ଅର୍ଥ ହେଲା—ଜୋରୁ (ସ୍ତ୍ରୀ ଲୋକ) ଓ ଗୋରୁ ସମାନ। ସେମାନଙ୍କୁ ଘରେ ବାନ୍ଧିରଖ। ବାନ୍ଧି କରି ଖାଇବାକୁ ଦିଅ। ସେମାନଙ୍କ ଦ୍ୱାରା କାର୍ଯ୍ୟ କରାଅ। ଅବାଧ୍ୟ ହେଲେ ପାଞ୍ଚଣରେ ପିଟ। ଆଉ ଗୋଟିଏ ଶ୍ଳୋକ ଅଛି—ବାଇଦ ଓ ସ୍ତ୍ରୀଲୋକ ସମାନ। ସେମାନଙ୍କୁ ଦୁଇପଟରୁ ପିଟିବ। ତା'ହେଲେ ସେ ବାଜିବ ଠିକ। ନାରୀ କୁଆଡ଼େ ଦିନରେ ମୋହିନୀ ଓ ରାତିରେ ବାଘୁଣୀ—ପୁରୁଷର ରକ୍ତ ପିଇଯାଏ।

ନାରୀମାନଙ୍କ ବିରୋଧରେ ମୁସଲମାନୀ ମନୋଭାବ ପୁଣି ଆହୁରି ମାରାତ୍ମକ। ଆରବିଆନ ନାଇଟସ୍ ବା ଆରବୀ ସହସ୍ର ରଜନୀର କାହାଣୀମାଳାରେ ସ୍ତ୍ରୀଲୋକମାନଙ୍କୁ ଏପରି ଚିତ୍ରଣ କରାଯାଇଛି—ମୁସଲମାନୀ ପୁରୁଷ ସମାଜ ସେମାନଙ୍କୁ ଠିକ୍ ସେହିପରି ଦେଖିଆସିଛି। ସେ ଦୃଷ୍ଟିରୁ ସ୍ତ୍ରୀଲୋକମାନେ ହେଲେ ଚବିଶ ଘଣ୍ଟା କାମ ଜର୍ଜରିତା ପ୍ରାଣୀ। ଯୌନଲାଳସା ଚରିତାର୍ଥ କରିବା ପାଇଁ ସେମାନେ ଯେପରି ବିଚିତ୍ର କୂଟବୁଦ୍ଧି ପ୍ରଦର୍ଶନ କରିପାରନ୍ତି—ତାହା ପୁରୁଷ ପକ୍ଷରେ ଅଚିନ୍ତନୀୟ। ସ୍ତ୍ରୀଲୋକମାତ୍ରେ ହିଁ ସତୀତ୍ୱ ପରିପନ୍ଥୀ। ତେଣୁ ଯେକୌଣସି ପ୍ରକାରେ ସ୍ତ୍ରୀଲୋକଙ୍କୁ ଘରେ ବାନ୍ଧିରଖିବା ଉଚିତ ଓ ସେହି ସୂତ୍ରରେ ତାର ସତୀତ୍ୱକୁ ମଧ୍ୟ ଚାବି ପକାଇ ରଖିବା ଉଚିତ। ପରଦା ଓ ବୁର୍ଖା ପ୍ରଚଳନ ସେଇଥିପାଇଁ।

ସ୍ତ୍ରୀଲୋକ ମାତ୍ରେ ହିଁ ଅବିଶ୍ୱାସ୍ୟ—ଅନ୍ତତଃ ଯୌନସଂବନ୍ଧୀ ସତୀତ୍ୱରକ୍ଷଣ ବ୍ୟାପାରରେ ଘୋର ମୂର୍ଖା। ତେଣୁ ସେହି ମାୟାବିନୀ କୈତବିନୀ ରମଣୀକୁ ସର୍ବଦା ଜଂଜିରରେ ବାନ୍ଧି ରଖ। ପିଲାଦିନେ ତାକୁ ବାପା ବାନ୍ଧି ରଖୁ, ଯୌବନରେ ସ୍ୱାମୀ ବାନ୍ଧି ରଖୁ ଏବଂ ବୃଦ୍ଧକାଳରେ ତାର ପୁଅମାନେ ବାନ୍ଧି ରଖନ୍ତୁ। ସେ ଆବାଲ୍ୟ ମୃତ୍ୟୁ-ପୁରୁଷ ପାଖରେ ବନ୍ଧା ପଡ଼ିଥାଉ—ଦାସୀ ହୋଇ ରହିଥାଉ। ତାକୁ ସମାଜ, ସଂସାର ବା ଜୀବନବୃତ୍ତର ଆଉ କୋଉ ସମସ୍ୟା ସହିତ ଜଡ଼ିତ କରାଅ ନାହିଁ। ତାକୁ ଜୀବନର

ଅନ୍ୟ କୋଉ ଦିଗ ଦେଖାଅ ନାହିଁ—ଜୀବନରହସ୍ୟ ତା'ଆଗରେ ଖୋଲ ନାହିଁ। ଜ୍ଞାନ ବିଜ୍ଞାନର କୁଞ୍ଚି ତା'ହାତକୁ ବଢ଼ାଅ ନାହିଁ। ତା'ମୁଣ୍ଡରେ ଜନ୍ମ ହେଲାବେଳେ ଯେତିକି ବୁଦ୍ଧିଥିଲା ସେତିକି ଥାଉ। ସେ କେବଳ ଦେହରେ ବଢ଼ୁ। ତାକୁ ଶାଢ଼ି ଦିଅ—ଅଳଙ୍କାର ଦିଅ। ଯୌବନକାଳରେ ତା'ର ରୂପକୁ ପ୍ରଶଂସା କରି ଚାଟୁବାଣୀ କହି ତା'କୁ ଶୃଙ୍ଗାରକାର୍ଯ୍ୟ ପାଇଁ ମତାଅ ବା ଉତ୍ତେଜିତ କର। ତାକୁ ଶଯ୍ୟାସଙ୍ଗିନୀ କର ତାର ଯୌବନ ଥିବାଯାଏ। ଏବଂ ଯୌବନ ଗଲା ପରେ ସେ ତୁମ ଘରେ କେବଳ ପାଇଟି କରି ବଞ୍ଚୁ। ଦଶ ପାଇଟି ଜାଗାରେ କୋଡ଼ିଏ ପାଇଟି କରୁ। ଘର ଭିତରେ ଆବଦ୍ଧ ରହି—ପୁରୁଷକୁ ଡରି ଡରି କୋଡ଼ିଏ ପାଇଟି କରି କରି—ପୁରୁଷମାନଙ୍କର ସେବା କରି କରି ତା' ଜୀବନ ଯାଉ। ସେ ବିଚାରୀ ନାରୀଜନ୍ମରୁ ତ୍ରାହି ପାଉ।

ଏଇ ହେଲା ପୁରୁଷ ପ୍ରଧାନ ସମାଜର ନାରୀଜାତି ପ୍ରତି ବିଧାନ। ଯୁଗ ଯୁଗ ଧରି ପୁରୁଷ ଏହାକୁ ଜାହିର କରି ଆସିଛି ଏବଂ ସ୍ତ୍ରୀଲୋକ ମଧ୍ୟ ଏହାକୁ ମାନି ମାନି ଆସିଛି। ବର୍ତ୍ତମାନ ନାରୀଶିକ୍ଷାର ପ୍ରସାର ଓ ନାରୀ ସ୍ୱାଧୀନତା ଯୁଗରେ ବି —ଏବଂ ପୃଥିବୀର ବହୁ ଦେଶରେ ନାରୀ ପ୍ରଧାନମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ପୋଲିସ ଅଫିସର, କଲେକ୍ଟର, ଜଜ୍ ହେବା ପରେ ବି ଓ ପୁରୁଷଠାରୁ ଅଧିକ ବିକ୍ରମ, ସାହସ, ତେଜ, ବୁଦ୍ଧିମତା, ହୃଦୟବତ୍ତା ଓ ମନୀଷା ଓ ପ୍ରତିଭାପ୍ରଦର୍ଶନ କରୁଥିବା ଯୁଗରେ ବି, ଆମର ଅଶିକ୍ଷିତା ସ୍ତ୍ରୀଲୋକମାନଙ୍କ କଥା କଣ କହିବା—ଆମର ବି.ଏ ଏମ୍.ଏ ପାସ୍ କରିଥିବା ନାରୀମାନେ ବି ପୁରୁଷ-ପ୍ରାଧାନ୍ୟକୁ ସ୍ୱୀକାର କରି ଚାଲିଛନ୍ତି। ଏହା ତାଙ୍କର ଅବଚେତନ ମନରେ ଏକ ଦୃଢ଼ସଂସ୍କାର ଓ ଦୁରାଭ୍ୟାସ ବ୍ୟାଧିରୂପେ ବସାବାନ୍ଧି ରହିଛି। ତଥାପି ମଧ୍ୟ ଆଧୁନିକା ଉଚ୍ଚଶିକ୍ଷିତା ମହିଳାଟିଏ ନିଜକୁ ପୁରୁଷ ପାଖରେ ତୁଚ୍ଛା ସ୍ତ୍ରୀଲୋକଟିଏ ବା ମାଇକିନିଆଟିଏ ବୋଲି ଓ ତା'ର ଅଧୀନସ୍ଥ ଜୀବନଟିଏ ବୋଲି ଓ ତା'ରି ମନକୁ ନେଇ, ମିଜାଜକୁ ନେଇ ଖିଆଲକୁ ନେଇ, ଓ ଉଚ୍ଚମନ୍ୟତାକୁ ନେଇ ଚଳିବାକୁ ବାଧ୍ୟ ବୋଲି—ଆପଣାକୁ ଆପଣା ପାଖେ ବାଧ୍ୟକରି ଚାଲିଛି। ଏହାଠାରୁ ବଳି ଶୋଚନୀୟ ବିଷୟ ଆଉ କଣ ଥାଇପାରେ ? ଏହାଠାରୁ ବଳି ଅମର୍ଯ୍ୟାଦାକର ଆଉ କଣ ଥାଇପାରେ ? ବର୍ତ୍ତମାନ ନାରୀ ହିଁ ଆପଣା ମର୍ଯ୍ୟାଦା ରକ୍ଷା ପାଇଁ ବେଶି ଦାୟୀ।

❋❋

# ଧୂମାବତୀ ପ୍ରସଙ୍ଗ

୯ । ୨ । ୮୩

ସ୍ତ୍ରୀ ଲୋକମାନଙ୍କର ମୁଖାବଲୋକନ ନ କରିବା, ସ୍ତ୍ରୀ ଲୋକଙ୍କ ସମ୍ବନ୍ଧେ କଥା ପ୍ରସଙ୍ଗ ନ କରିବା ଓ ସେମାନେ ସବୁ ଅନର୍ଥର ମୂଳ—"ନରକସ୍ୟ ଦ୍ୱାର" ସ୍ୱରୂପ ଏବଂ ସେମାନେ "ଯାଃପ ମୂର୍ଖ ମାଇକିନା ଜାତି" ଏବଂ "ସର୍ବତ୍ର ବିବର୍ଜିତା" ବୋଲି ନୀତିବାକ୍ୟଗୁଡ଼ିକୁ ବେଦବାକ୍ୟରେ ମାନ୍ୟତା ଦେଉଥିବା ଏବଂ ସେମାନଙ୍କୁ ନଖୀ, ଶୃଙ୍ଗୀ ଓ ଲମ୍ବଜନ୍ତୁମାନଙ୍କଠାରୁ ଭୟଙ୍କର ଭାବି ସେମାନଙ୍କଠାରୁ ସର୍ବଦା ସହସ୍ର ଯୋଜନ ଦୂରତାରେ ରହି ନିଜକୁ ନିରାପଦ ରଖୁଥିବା ବିଶୁଦ୍ଧ ଭଦ୍ର ପୁରୁଷଙ୍କ ଗୋଷ୍ଠୀରେ ଯେ ମୁଁ ଅନ୍ତର୍ଭୁକ୍ତ ନୁହେଁ, ଏ କଥା ମୋର ମିତ୍ରମାନଙ୍କ ଅପେକ୍ଷା ମୋର ଶତ୍ରୁମାନେ ବେଶି ବିଶ୍ୱାସ କରନ୍ତି। "ତିର୍ଲୋଲୋକର ଛାଇ ପଡୁନଥିବ"—ଏମନ୍ତ ଗୋଟିଏ ବିଶୁଦ୍ଧ ସ୍ଥାନ ଖୋଜି ତା' ଭିତରେ ଆଖିବୁଜି ବସି ଧ୍ୟାନ-ଧାରଣା କରୁଥିବା ବା ମାଳାଦି ଜପ କରୁଥିବା ଭଦ୍ର ବ୍ରହ୍ମଚାରୀ ପୁରୁଷମାନଙ୍କ ଆଧ୍ୟାତ୍ମିକ ଗୋଷ୍ଠୀରେ ମଧ୍ୟ ମୁଁ କେବେ ନ ଥିଲି କି ନାହିଁ।

ସେହିପରି, ସ୍ତ୍ରୀଲୋକଟିଏ ଦେଖିଲା ମାତ୍ରେ, ସେ ଯେ କେବଳ ଗୋଟିଏ 'ମାଇ ମଣିଷ' ଏବଂ ପୁରୁଷର ଯୌନକ୍ରୀଡ଼ାର ସାଥୀ ଏବଂ ପ୍ରଜନନର ଏକ ଜୈବୀକ ଯନ୍ତ୍ରବିଶେଷ—ଏଭଳି ମନେ କରୁଥିବା ଓ ତଦନୁଯାୟୀ ବ୍ୟବହାର ଦେଖାଉଥିବା ପୁରୁଷ-ଷଣ୍ଢମାନଙ୍କ ଗୋଠରେ ମଧ୍ୟ ମୁଁ କେବେ ନାହିଁ। ଆମର ଏହି ପ୍ରାଚୀନ ଓ ସଭ୍ୟ ଧାର୍ମିକ ସମୃଦ୍ଧ ପରମ୍ପରାକୁ ନେଇ ଗର୍ବ କରୁଥିବା ପୁରୁଷ ମାତଙ୍ଗମାନେ ପୁରୁଷାନୁକ୍ରମେ ସ୍ତ୍ରୀଲୋକଙ୍କ ସମ୍ବନ୍ଧେ ଯାହା କିଛି ଭାବି ଆସିଛନ୍ତି—ତାହା ଏତେ ଅସଭ୍ୟ, ଅଶ୍ଳୀଳ, ଅମାର୍ଜିତ ଓ ଅସଂସ୍କୃତ ଯେ, ମୁଁ ସେ କଥା ଭାବିଲାମାତ୍ରେ ମୋର ରକ୍ତ ଗ୍ଳାନି, ଘୃଣା, ବିରକ୍ତି ଓ କ୍ରୋଧରେ ନିଆଁ ହୋଇଯାଏ।

ସତକଥା—ମୁଁ ମୋର ପିଲାଦିନୁଁ ଆଜିପର୍ଯ୍ୟନ୍ତ ସେଇ ଗୋଟିଏ କଥା ଶୁଣି ଆସୁଛି—'ସ୍ତ୍ରୀଲୋକଗୁଡ଼ାକ ହେଲେ ମାଇକିନା—ତୁଚ୍ଛା ମାଇକିନା'। 'ମାଇପେ' 'ମାଇକିନା' ଆଦି ରୁକ୍ଷ, ଅସଭ୍ୟ, ଅସୁନ୍ଦର ଶବ୍ଦଗୁଡ଼ିକ ଆମ ଅଭିଧାନରୁ ବାହାରି ଆସି ଯୁଗ ଯୁଗ ଧରି ଆମର ଶିକ୍ଷିତ ଅଶିକ୍ଷିତ ପୁରୁଷମାନଙ୍କ ତୁଣ୍ଡରେ ଯତ୍ରତତ୍ର ଯେବେସେବେ ବିନା ଦ୍ୱିଧାରେ ଉଚ୍ଚାରିତ ହେଉଥାନ୍ତି। ସ୍ତ୍ରୀଲୋକଟିଏ ଯେତେ ବଡ଼

ଜ୍ଞାନୀ ମାନୀ ଅଧ୍ୟାପିକା ହୁଅନ୍ତୁ—ଯେତେ ବିଖ୍ୟାତା ଭାବବତୀ କବି ହୁଅନ୍ତୁ—ଶିଳ୍ପୀ ହେଉନ୍ତୁ ନେତ୍ରୀ ହୁଅନ୍ତୁ କି ଅଭିନେତ୍ରୀ ହୁଅନ୍ତୁ—ମୁଖ୍ୟମନ୍ତ୍ରୀ ହୁଅନ୍ତୁ କି ପ୍ରଧାନମନ୍ତ୍ରୀ ହୁଅନ୍ତୁ—ଖେଳାଳୀ ହୁଅନ୍ତୁ ବା ସୁଗୃହିଣୀ ହୁଅନ୍ତୁ—ଆମ ଅଣ୍ଡିରୀପୁଅ ଉଦ୍ଧବମାନଙ୍କ ଦୃଷ୍ଟିରେ ଓ ତୁଣ୍ଡରେ ସେ ଗୋଟାଏ ମାଈକିନା—ତୁଚ୍ଛା ମା ଈ କି ନା !!! ଜାତି ଯେତେବେଳେ ଅସଭ୍ୟ ଥିଲା—ମୂର୍ଖ—ଅମାର୍ଜିତ ଓ ସ୍ଥୂଳବୁଦ୍ଧି ଥିଲା—ସେତେବେଳେ ପୁରୁଷଟିଏ ନିଜକୁ ଅଣ୍ଡିରା ମଣିଷ ଓ ସ୍ତ୍ରୀଲୋକଟିକୁ କେବଳ ମାଈ ମଣିଷଟିଏ ବୋଲି ଜାଣିଥିଲା । ମାତ୍ର ଜାତି ଯେତେବେଳେ ଖୁବ୍ ସଭ୍ୟ, ମାର୍ଜିତ, ସୂକ୍ଷ୍ମବୁଦ୍ଧି ସମ୍ପନ୍ନ ହେଲା ସେତେବେଳେ ସେ ବସ୍ତୁ ଓ ବ୍ୟକ୍ତିର ଅନ୍ୟସବୁ ସୂକ୍ଷ୍ମ, ଭଦ୍ର ଓ ଉନ୍ନତ ଗୁଣଯୋଗ ଆବିଷ୍କାର କଲା ଓ ସେଗୁଡ଼ିକର ସଦ୍‌ବ୍ୟବହାର କଲା । ଆମର ସାଧୁଶବ୍ଦଗୁଡ଼ିକର ସୃଷ୍ଟି ହେଲା ସେତିକିବେଳେ । ''ମାଈକିନା'' ଜାଗାରେ ସ୍ତ୍ରୀଲୋକ, ଅବଳା, ଯୋଷା, ମହିଳା, ରମଣୀ, ବାମା, ବନିତା, ଅଙ୍ଗନା ଏବଂ ଲଳନା, ପ୍ରମଦା, ଭାବିନୀ, ଭାମିନୀ, କାମିନୀ ପ୍ରଭୃତି ରୂପ ଓ ଗୁଣବାଚକ ସାଧୁ ଶବ୍ଦମାନ ବିଭିନ୍ନ ସ୍ଥାନରେ ବିଭିନ୍ନ ଅର୍ଥରେ ବ୍ୟବହୃତ ହେଲା । ତାହା ପୁଣି, ସ୍ଥାନକାଳପାତ୍ର ବିଚାରରେ ଶବ୍ଦଗୁଡ଼ିକ ବ୍ୟବହୃତ ନ ହେଲେ, ସାଧୁଶବ୍ଦ ସତ୍ତ୍ୱେ ବି, ତାହା ଅଶ୍ଳୀଳ ଓ ଅସଭ୍ୟ ହୋଇଯାଏ । ଉଦାହରଣ ସ୍ୱରୂପ—ସ୍ତ୍ରୀଲୋକଙ୍କ ପାଇଁ ଉଦ୍ଦିଷ୍ଟ ସଂରକ୍ଷିତ ସ୍ଥାନରେ ଯଦି କେହି ବିଜ୍ଞାପନଟିଏ ଦେଇ ଲେଖିଥାଏ—''ଏହା ମାଈକିନାମାନଙ୍କ ପାଇଁ ସଂରକ୍ଷିତ''—ଏ ବାକ୍ୟର ବ୍ୟବହାର ଯେପରି ଅଶ୍ଳୀଳ ହୋଇଗଲା—ସେହିପରି ଯଦି ଲେଖା ହୋଇଥାଏ ''ଏହା କାମିନୀ ବା ପ୍ରମଦାମାନଙ୍କ ପାଇଁ ଉଦ୍ଦିଷ୍ଟ''—ଏ ସାଧୁବାକ୍ୟଟି ମଧ୍ୟ ଅର୍ଥ ଅସଙ୍ଗତି ଯୋଗୁଁ ଆହୁରି ବେଶି ଅଶ୍ଳୀଳ ହୋଇଗଲା । ଏ ସ୍ଥଳେ ''ମହିଳା'' ଶବ୍ଦଟିର ବ୍ୟବହାର ସବୁ ଦିଗରୁ ସଙ୍ଗତ ଓ ଶିଷ୍ଟ ଶବ୍ଦ ।

ସେଦିନ ଗୋଟିଏ ଷ୍ଟେସନରୁ ଟ୍ରେନ୍‌ରେ ଚଢ଼ି ଦେଖିଲି ଯେ କାମେରାରେ ବସିବା ଲାଗି ସ୍ଥାନ ନାହିଁ । ଏପଟୁ ସେପଟଯାଏ ବୁଲି ବୁଲି ସ୍ଥାନ ଖୋଜୁ ଖୋଜୁ କାମେରା ଭିତରେ ସ୍ୱତନ୍ତ୍ର ଭାବେ ମହିଳାମାନଙ୍କ ପାଇଁ ସଂରକ୍ଷିତ ଛୋଟ କୁପେଟି ଭିତରକୁ ଦୃଷ୍ଟି ଚାଲିଗଲା । ତା' ଭିତରେ କେତେକ ଅତ୍ୟାଧୁନିକା ମହିଳା ବସି ଖୁବ୍ ହଇହଲ୍ଲା କରୁଥିଲେ । ମୋତେ ଦେଖି ମୋର ପ୍ରାୟ ସମବୟସ୍କା ଜଣେ ଉଚ୍ଚଶିକ୍ଷିତା ପରିଚିତା ମହିଳା ହସି ହସି ଚିତ୍କାର କରି ଡାକିଲେ—ଆରେ; ଆରେ ଦେବବାବୁ! ଆସନ୍ତୁ-ଆସନ୍ତୁ-ନମସ୍କାର-ଭିତରକୁ ଆସନ୍ତୁ—ବହୁତ ଜାଗା ଅଛି । ଲଳନା-କଣ୍ଠର ଲଳିତ ଆହ୍ୱାନକୁ ଏଡ଼ିଦେବା ଭଳି ଏତେ ବଡ଼ ବ୍ରହ୍ମଚାରୀ ପୌରୁଷ ମୋର କେବେ ନଥିଲା ବା ନାହିଁ । ତଥାପି ପ୍ରତିନମସ୍କାର ଜଣାଇ ମୁଁ ଦ୍ୱାରବନ୍ଧରେ ଠିଆହୋଇ କିଛିନ୍ତ ନ ଯଯୌ ନ ତସ୍ଥୌ ହେଲି । ଏଥର ପ୍ରବୀଣା ଭଦ୍ରମହିଳା ନିଜେ ଉଠି ଠିଆ ହୋଇ ପଡ଼ିଲେ ଓ ଖୁବ୍ ସହଜ ପୁଲକିତ କଣ୍ଠରେ ନିର୍ବିକାର ଭାବରେ କହିଲେ—

ଆସନ୍ତୁ ଭିତରକୁ। ଏତେ କୁଣ୍ଠା କାହିଁକି? ଏଠାରେ ସାଧୁପୁରୁଷମାନଙ୍କ ଚରିତ୍ରକୁ ଅକ୍ଷୁର୍ଣ୍ଣ ରଖିବାର ଗ୍ୟାରେଣ୍ଟି ଦିଆଯାଇଥାଏ। ଆସନ୍ତୁ ନିର୍ଭୟରେ ଭିତରକୁ।

ପ୍ରକାଶ ଥାଉ କି, ସେହି ବିଦୂଷୀ ଓ ଅପୂର୍ବ ବିଦଗ୍ଧ ବାକ୍‌ବିଳାସିନୀ ମଧ୍ୟବୟସ୍କା ରମଣୀ ଜଣକ ଥିଲେ ମୋର ଏକଦା ସହକର୍ମୀ ଘନିଷ୍ଠ ବାନ୍ଧବୀ। ବେଶ୍ ବିନୀତ ଓ କୃତ୍ୟ କୃତ୍ୟ ମନନେଇ ଚୁପେ ଭିତରକୁ ଯାଇ ତାଙ୍କ ପାଖରେ ଝରକାପଟକୁ ବସିଲି। ମୋର ସମ୍ମୁଖ ସିଟ୍‌ରେ ତିନିଜଣ ଉଚ୍ଚଶିକ୍ଷିତା ଯୁବତୀ ବସିଥିଲେ। ସେମାନେ ଥିଲେ ଖୁବ ହସ୍‌ଖୁସ୍ ଆଉ ତାରୁଣ୍ୟମଭା ସ୍ମାର୍ଟ ପ୍ରକୃତିର ଅତ୍ୟାଧୁନିକା। ସେମାନଙ୍କ ହାତରେ ଓ କୋଳରେ କେତୋଟି ସିନେମା ପତ୍ରିକା ଓ ନାରୀ-ସମ୍ବନ୍ଧୀୟ ଛବିଳପତ୍ରିକା ରହିଥିଲା। ଜଣେ ମଧ୍ୟ ଗୋଟିଏ ରହସ୍ୟରୋମାଞ୍ଚ ଇଂରାଜୀ ଉପନ୍ୟାସ ଧରିଥିଲେ। ସେମାନଙ୍କର ପୋଷାକ ପରିଚ୍ଛଦ ପ୍ରସାଧନ ଓ କେଶସଜ୍ଜା ଦେଖିଲେ ସେମାନଙ୍କୁ ଚିତ୍ରତାରକା ବୋଲି ଭାବିବା କିଛି ବିଚିତ୍ର ନଥିଲା। କିନ୍ତୁ ଅଳ୍ପ ସମୟରେ ବୁଝିଲି ଯେ ସେମାନଙ୍କ ଭିତରୁ ଦୁଇଜଣ ଅଧ୍ୟାପିକା ଓ ଅନ୍ୟଜଣେ ଗୋଟିଏ ବ୍ୟାଙ୍କରେ ବଡ଼ ଚାକିରୀଟିଏ କରନ୍ତି। ମଧ୍ୟବୟସ୍କା ବାନ୍ଧବୀ ଜଣକ ମୋତେ ସେମାନଙ୍କ ସହ ପରିଚୟ କରାଇଦେଲେ ଓ ମୋର ଗୁଣାଗୁଣ ମଧ୍ୟ ମୁଗ୍ଧାନାରୀସୁଲଭ ବାକ୍ୟଶୈଳୀରେ ବଖାଣି ଗଲେ।

ଅଳ୍ପ ସମୟ ରଙ୍ଗରସର ହାସ୍ୟପୂର୍ଣ୍ଣ ଆଳାପ ପରେ ଆଉ ଆମ ଭିତରେ ଲିଙ୍ଗଭେଦ, ବୟସ ଭେଦ ବା ଆଉ କିଛି ଭେଦଭାବ ରହିଲା ନାହିଁ। ମୋ ବାନ୍ଧବୀ ମୋ ଆଡ଼କୁ ଚିନାବାଦାମ ପୁଡ଼ିଆଟି ବଢ଼ାଇ ଦେଲେ। ମୁଁ ସେଥିରୁ ମଟ୍ ମଟ୍ କରି କେତୋଟି ଖାଇ ଚାଲିଲି। ହଠାତ୍ ମୋତେ ଚକିତ କରି ଜଣେ ଯୁବତୀ ମୋ ଆଡ଼କୁ ଚପଳ ଚଞ୍ଚଳ କଟାକ୍ଷ ନିକ୍ଷେପ ସହ ତାଙ୍କର ମନୋରମ କରକମଳ ପ୍ରସାରିତ କରି ଗୋଟିଏ ଦାମିକା ସିଗ୍ରେଟ କେସ୍ ଖୋଲି ଧରି ହସି ହସି କହିଲେ—ଚଳିବ? ନିଅନ୍ତୁ !!

ସିଗ୍ରେଟ୍? ହେ ଭଗବାନ୍! ସୁନ୍ଦରୀ ଲଳନା ବା ପ୍ରଗଳ୍‌ଭା ପ୍ରମଦାଟିର କରପଲ୍ଲବରୁ ଯେ କୌଣସି ଚର୍ବ୍ୟ, ଚୋଷ୍ୟ, ଲେହ୍ୟ ବା ପାନୀୟ ଗ୍ରହଣ କରି କୃତାର୍ଥ ହେବାର ଅଯାଚିତ ସୌଭାଗ୍ୟକୁ ହଠାତ୍ ଅନ୍ଧ ଭଳି ଅତିକ୍ରମ କରି ଆଗକୁ ଚାଲିଯିବାର ସେହି ହତଭାଗ୍ୟ ପୁରୁଷ ମୁଁ ଆଦୌ ନୁହେଁ। ନୁହେଁ—ନୁହେଁ—ନୁହେଁ। କୌଣସି ସ୍ୱର୍ଗ ବା ମର୍ତ୍ତ୍ୟର ସିଂହାସନ ବିନିମୟରେ ବି ନୁହେଁ। କିନ୍ତୁ ସିଗ୍ରେଟ?? ହେ ଭଗବାନ!

ସିଗ୍ରେଟ ପ୍ରତି ମୋର ବିରାଗ ନାହିଁ। କିନ୍ତୁ ତାହା ମୋ ଗଳାରେ ଯାଏନା। ହାତଯୋଡ଼ି କହିଲି—କ୍ଷମା କରିବେ। ମୋର କାଶ ହୁଏ। ମୋ କଥା ଶୁଣି ସଙ୍ଗେ ସଙ୍ଗେ ସେ ତାଙ୍କର ସୁକୁମାର ସୁନ୍ଦର ପେଲବ କରମୃଣାଳଟିକୁ ନିଜଆଡ଼କୁ ସଂକୁଚିତ କରିନେଲେ ଏବଂ ସଙ୍ଗେ ସଙ୍ଗେ ସିଗ୍ରେଟଟିଏ ନିଜର ସେଇ ଲିପ୍‌ଷ୍ଟିକ୍ ରଂଜିତ କୋମଳ କୋକନଦ ସୁଲଭ ଓଷ୍ଠାଧର ଫାଙ୍କରେ ପୁରୁଷ ସୁଲଭ ଠାଣିରେ ଗୁଂଜିଦେଇ

ଫାଇଁକିନା ଡିଆସିଲିମାରି ଜଳାଇ ଦେଲେ ଓ କଳେ ଧୂଆଁ ଛାଡ଼ି କାଠିଟିକୁ ଝରକା ବାଟେ ଫୋପାଡ଼ି ଦେଲେ। ତା'ପରେ ଲାଗେ ଲାଗେ ତିନିଚାରିଥର ମୁଖଭର୍ତ୍ତି ଧୂଆଁ ଶୋଷି ସେ କୁପେ ଭିତରେ ଅପୂର୍ବ ଢଙ୍ଗରେ ଧୂମକୁଣ୍ଡଳୀମାନ ସୃଷ୍ଟିକରି ଚାଲିଲେ। ତା'ପରେ ମୋ ଉଦ୍ଦେଶ୍ୟରେ କିଞ୍ଚିତ ବିହ୍ୱଳ ଦୃଷ୍ଟି ଢାଳି ସ୍ମିତହାସ୍ୟରେ ଇଂରାଜୀରେ କହିଲେ—କ୍ଷମା କରିବେ। କାଶ ମାଡ଼ିଲେ କ୍ଷମାକରିବେ। ଦେଖନ୍ତୁ ମହାଶୟ। ଆପଣ ତ ଜାଣିଥିବେ—ଯଦି ଧୂଆଁ ଦେଖାଯାଏ—ତେବେ ତା' ପଛରେ ନିଶ୍ଚୟ ନିଆଁର ଅସ୍ତିତ୍ୱ ରହିଛି।

ଏତିକି କହି ସେ ଖିଲି ଖିଲି କରି ହସି ଉଠିଲେ ଏବଂ ତାଙ୍କର ସଙ୍ଗିନୀମାନେ ମଧ୍ୟ ସେହି ଉଚ୍ଚକିତ ହାସ୍ୟରୋଳରେ ଯୋଗଦେଲେ। ଧୂମପାୟିନୀ ତରୁଣୀ ଜଣକ ତା'ପରେ ବାରମ୍ବାର ଧୂଆଁ ଶୋଷିଲେ—ଧୂଆଁ ଛାଡ଼ିଲେ—ଏବଂ ଲହରେଇ ଲହରେଇ ହସି ଲାଗିଲେ—ହସୁ ହସୁ କାଶି ଲାଗିଲେ ଏବଂ ସେଇ ଧୂଆଁରେ ଓ ହସରେ କୁପେଟି ପୂରି ଉଠିଲା।

ମୁଁ ସେଇ ଧୂଆଁ ଭିତରେ ସେଇ ସୁନ୍ଦରୀ ଅତ୍ୟାଧୁନିକା ଯୁବତୀଟିର ଅପୂର୍ବ ଧୂମାବତୀ ରୂପର ଶୋଭା ନିରୀକ୍ଷଣ କରୁଥାଏ।

ସେହି ଅବସରରେ ମୋର ମନେ ପଡ଼ିଗଲା—ପ୍ରତ୍ୟେକ ସୁପୁରୁଷର ଅବଶ୍ୟ ପାଳନୀୟ ସେହି ପ୍ରାଚୀନ ଶୃଙ୍ଗାରୀଚେତ୍-ପ୍ରଜ୍ଞା-ପ୍ରସୂତ ନୀତିବାକ୍ୟ ଗୁଡ଼ିକ—

"ଅବଳା ମାତ୍ରେ ଇ ରକ୍ଷଣୀୟା—ପ୍ରମଦା ମାତ୍ରେ ଇ କ୍ଷମଣୀୟା—ପ୍ରଗଲ୍‌ଭା ମାତ୍ରେ ଇ ଶ୍ରବଣୀୟା—ଭାମିନୀ ମାତ୍ରେ ଇ ଅର୍ଚ୍ଚନୀୟା—କାମିନୀ ମାତ୍ରେ ଇ ଚର୍ଚ୍ଚନୀୟା—ଭାବିନୀ ମାତ୍ରେ ଇ ସ୍ମରଣୀୟା—ଏବଂ ମାନିନୀ ମାତ୍ରେ ଇ ସ୍ତବନୀୟା।"

ମାତ୍ର ଏହି ଅତ୍ୟାଧୁନିକା ଧୂମପାୟିନୀ ଧୂମାବତୀ? ଏହାଙ୍କ ସହିତ ମୋର ବା ମୋ ଭଳି ପୁରୁଷର କଣ ଭଲା କରଣୀୟ? ସହଣୀୟ? ଅବଶ୍ୟ ସହଣୀୟା।

ଉଚ୍ଚଶିକ୍ଷିତା ସୁନ୍ଦରୀ ଯୁବତୀଟିଏ ଧୂଆଁ ପିଇବା ମୁଁ ଇତିପୂର୍ବେ କୋଉଠି ଦେଖି ନଥିଲି। ସେଦିନର ସେ ଦୃଶ୍ୟଟି ମୋର ମନେ ରହିଛି ଏବଂ ମୁଁ ଅପେକ୍ଷା କରୁଛି—ଆଉ ଥରେ ସେହି ଅପରୂପ ଦୃଶ୍ୟଟିକୁ ପ୍ରତ୍ୟକ୍ଷ କରିବାର ସୌଭାଗ୍ୟ କେବେ ପୁଣି ପାଇବି?

❊❊

# ଜାତି ଯାଇଛି ନା' ଅଛି ?

୨।୩।୮୧

ସମାଜର ଯୋଉ ବିଷୟଗୁଡ଼ିକୁ କୁସଂସ୍କାର ଓ ଅହିତକର ବୋଲି ଆଜିକୁ ତିରିଶି ଚାଳିଶି ବର୍ଷ ତଳେ ବିଚାର କରାଯାଉଥିଲା–ଏବଂ ସେଗୁଡ଼ିକ ବିରୋଧରେ ସମାଜ ସଂସ୍କାରକମାନେ ଓ ନେତାମାନେ ଆନ୍ଦୋଳନ କରୁଥିଲେ–ଆଶ୍ଚର୍ଯ୍ୟ କଥା ଯେ, ସେହିସବୁ ବିଷୟମାନ ସମାଜରେ ବର୍ତ୍ତମାନ ଖୁବ୍ ତୀବ୍ର ଭାବରେ ମୁଣ୍ଡ ଟେକିଛନ୍ତି। ତା'ମାନେ, ଆମର ସମାଜ ବର୍ତ୍ତମାନ ଆଉ ଆଗକୁ ନ ଯାଇ ପୁଣି ଦ୍ରୁତ ଗତିରେ ପଛକୁ ଫେରିଲାଣି।

ଉଦାହରଣ ସ୍ୱରୂପ–ଏଇ ଜାତିଭେଦ କଥାଟିକୁ ଧରାଯାଉ। ସ୍ୱାଧୀନତା ଆନ୍ଦୋଳନବେଳେ ଆମର ସମାଜ ନିର୍ମାତାମାନେ ଏହି ଜାତିଭେଦ ବିରୋଧରେ ପ୍ରବଳ ଯୁଦ୍ଧଂଦେହି ଡାକରା ଦେଇଥିଲେ। ସମାଜରେ ବ୍ରାହ୍ମଣ, କ୍ଷତ୍ରିୟ, କରଣ, ବୈଶ୍ୟ, ଶୁଦ୍ର ଆଦି ଜାତିବିଭାଗ ନାମତଃ ଥିଲେ କିଛି କ୍ଷତି ନାହିଁ। ଏପରି କି କେତେକ ସାମାଜିକ ଚଳଣିରେ ଏହି ଜାତିବିଭାଗର ପ୍ରଭାବକୁ ମଧ୍ୟ ବିଶେଷ କ୍ଷତିକର ବୋଲି ମନେ କରାଯାଇ ନ ପାରେ। କିନ୍ତୁ–ଏଇସବୁ ଜାତିକୁ ନେଇ ସାମାଜିକ ବିକାଶର ବୃହତ୍ତର କ୍ଷେତ୍ରରେ ଲଢ଼ାଇ କଲେ ତାର ଫଳ ଅତ୍ୟନ୍ତ ବିଷମୟ ହୋଇଉଠେ। ବର୍ତ୍ତମାନ ଅବିକଳ ସେଇ କଥା ଦେଖାଗଲାଣି। ନିଖିଳ ଉତ୍କଳ ଖଣ୍ଡାଏତ ସମ୍ମିଳନୀ–ନିଖିଳ ଉତ୍କଳ ମଧୁବୈଶ୍ୟ ସମ୍ମିଳନୀ ବା ତୈଳିକ ବୈଶ୍ୟସଂଘ ବା ଅଖିଳ ଉତ୍କଳ ମହାସଙ୍ଘ ଆଦି ଅନୁଷ୍ଠାନ ପ୍ରତି ବର୍ତ୍ତମାନ ସେହି ଜାତିର ଲୋକେ ଖୁବ୍ ଆକୃଷ୍ଟ ହେଉଛନ୍ତି। ଏପରିକି ଶିକ୍ଷିତ, ଉଚ୍ଚଶିକ୍ଷିତ ଓ ପଦସ୍ଥ ବ୍ୟକ୍ତିମାନଙ୍କ ମନରେ ବି ଏହି ଜନ୍ମସୂତ୍ରଗତ ଜାତି ପ୍ରୀତି ଅତି ପ୍ରବଳ ଦେଖା ଯାଉଛି। ସେକ୍ରେଟାରୀଏଟଠାରୁ ଆରମ୍ଭ କରି ଶିକ୍ଷାକ୍ଷେତ୍ର ପର୍ଯ୍ୟନ୍ତ ବି ଏହି ସ୍ୱଜାତିପ୍ରୀତି ଓ ପରଜାତି ବିଦ୍ୱେଷ ଅତି ମାରାତ୍ମକ ଭାବେ ବୃଦ୍ଧି ପାଇଲାଣି। ସବୁ ଆଡ଼େ ଲୋକେ ସବୁ କଥାକୁ ଏଇ ଦୃଷ୍ଟିରୁ ହିଁ ବିଚାର କରୁଛନ୍ତି। ସେଇଟା କରଣଟାଏ–ଏଇଟା ବ୍ରାହ୍ମଣଟାଏ–ସେଇଟା ଚଷାଟାଏ–ସେଇଟା କଣ୍ଡରାଟାଏ–ଏପରି ବାକ୍ୟମାନ ଅତି ଉଚ୍ଚପଦସ୍ଥ ଉଚ୍ଚଶିକ୍ଷିତ ବ୍ୟକ୍ତିଙ୍କ ତୁଣ୍ଡରୁ ହିଁ ବେଶି ଶୁଣାଯାଉଛି।

ସବୁଠାରୁ ହାସ୍ୟାସ୍ପଦ କଥା ହେଲା—ଏହା ସାହିତ୍ୟ କ୍ଷେତ୍ରରେ ବି ଦେଖା ଦେଲାଣି। କାରଣ କବି, ବ୍ରାହ୍ମଣ ଗାଳ୍ପିକ—ଖଣ୍ଡାଏତ ନାଟ୍ୟକାର ଓ ହରିଜନ ଶିଶୁ ସାହିତ୍ୟିକ— ଏଇ ଦୃଷ୍ଟିରୁ ବି ସାହିତ୍ୟିକ ଗୋଷ୍ଠୀସବୁ ତିଆରି ହେଉଛି ଓ ଆପଣା ଆପଣା ଜାତିର କବି ଲେଖକମାନଙ୍କ ଯଶ ଓ ସ୍ୱାର୍ଥରକ୍ଷା କରିବା ଲାଗି ଜାତି ଭାଇମାନେ ଲାଗି ପଡ଼ୁଛନ୍ତି। ଗୋଟିଏ ସାହିତ୍ୟ ପତ୍ରିକାର ଖୁବ୍ ଉଚ୍ଚଶିକ୍ଷିତ ପ୍ରବୀଣ ସମ୍ପାଦକଙ୍କ ତୁଣ୍ଡରୁ ସେଦିନ ଶୁଣିଲି—'ମୁଁ ପ୍ରତିଜ୍ଞା କରିଛି ଯେ କରଣମାନଙ୍କ ଲେଖା ଦ୍ୱାରା ମୋର ଏହି ଉଚ୍ଚାଙ୍ଗ ପତ୍ରିକାଟିକୁ କଳଙ୍କିତ କରିବି ନାହିଁ।' ଆଉ ଥରେ ଜଣେ ଖୁବ୍ ନାମଜାଦା ପ୍ରଫେସର ଆଉ ଜଣେ ସଂସ୍କୃତ ପ୍ରଫେସରଙ୍କ ବିରୋଧର ଅନ୍ୟାନ୍ୟ କଥା କହୁ କହୁ ଖୁବ୍ ସ୍ପଷ୍ଟ ଓ ଉଚ୍ଚ ସ୍ୱରରେ ବହୁ ଲୋକଙ୍କ ଆଗରେ କହିବାର ଶୁଣାଗଲା—''ଆରେ ଯାଃ! ସେଇଟା ଚଷାଟେ। ସେଇଟା ପାଟିରେ କୋଉଠୁ ସଂସ୍କୃତ ପଶିବ? କଲେଜରେ ପଢୁଥିବା ବେଳେ ଥରେ କଲେଜ ନାଟକରେ ତା'ପାଟିରେ ''ସାଧ୍ୱୀ'' ଶବ୍ଦ ଉଚ୍ଚାରିତ ହୋଇ ପାରିଲା ନାହିଁ। ମାସେକାଳ ରିହରସାଲ ପରେ ବି ନାଟକ ଦିନ ତା' ପାଟିରୁ ବାହାରି ପଡ଼ିଲା ''ସ୍ୱାଧୀ''।

ସେଦିନ ଜଣେ ମନ୍ତ୍ରୀଙ୍କ ଦୁର୍ନୀତି ସମ୍ବନ୍ଧେ ଆଲୋଚନା ହେଲାବେଳେ ଜଣେ ବିଶିଷ୍ଟ ବ୍ୟକ୍ତି କହିପକାଇଲେ—''ସେଇଟା ବାହ୍ମଣଟାଏ। ବାହ୍ମଣ ଏମନ୍ତ ଜାତି—ଦିଅଁକୁ ତ ଖାଇବେ ତା' ସାଙ୍ଗରେ ଖଟୁଲିକି ମଧ ଗିଳିଦେବେ।'' ସେହିପରି ଆଉ ଗୋଟିଏ ଜାଗାରେ ଜଣେ ଅପାରଗ ପ୍ରଶାସନିକ ଅଫିସରଙ୍କ ସମ୍ବନ୍ଧେ କଥା ପଡ଼ିଥିଲା। ଜଣେ କହିଲେ—ଆହେ! ବାଉରୀ କଣ୍ଡରାଙ୍କୁ ତେମେ ଆଣି କଲେକ୍ଟର କମିଶନର କରିବ। ସେମାନଙ୍କର ବୁଦ୍ଧି କେତେ ଯେ ସେମାନେ ଶାସନ କରିବେ? ଏମିତି ଏମିତି ବହୁ ଜାଗାରେ ବହୁ ଲୋକଙ୍କ ସମ୍ବନ୍ଧେ ଆଳାପ ଆଲୋଚନା ହେଲାବେଳେ ଲୋକେ ସଂପୃକ୍ତ ବ୍ୟକ୍ତିଟିର ବ୍ୟକ୍ତିଗତ ଗୁଣ ଦୁର୍ଗୁଣ ସମ୍ବନ୍ଧେ ନ କହି ସେଇଟା ତେଲୀଟାଏ, ସେଇଟା ଗୁଡ଼ିଆଟାଏ, ସେଇଟା ଗଉଡ଼ଟାଏ—ଏହିପରି କଥା ଆରମ୍ଭ କରନ୍ତି।

ଥରେ ଜଣେ ବିଶିଷ୍ଟ ଅଧ୍ୟାପକ ବାହାଦୂରି ଦେଖାଇ ମତେ ଖଣ୍ଡିଏ ଲେଖାଖାତା ଆଣି ଦେଖାଇଲେ ଓ ସେଥିରେ ଲେଖିଥିବା ପଚାଶଟି ସଂସ୍କୃତ ଶ୍ଳୋକ ପଢ଼ିଶୁଣାଇଲେ। ସେଥିରୁ ପଚିଶିଟି ଶ୍ଳୋକ ବ୍ରାହ୍ମଣମାନଙ୍କ କୁତ୍ସାବାଦରେ ଓ ଅନ୍ୟ ପଚିଶିଟି ଶ୍ଳୋକ କରଣଙ୍କ କୁତ୍ସାବାଦରେ ଲିଖିତ ହୋଇଥିଲା ଏବଂ ଶ୍ଳୋକଗୁଡ଼ିକ ଥିଲା ଅତି ଅମାର୍ଜିତ ଓ ସ୍ଥୂଳ ଅଶ୍ଳୀଳତାରେ ପରିପୂର୍ଣ୍ଣ।

ଏସବୁ ଶୁଣିଲେ ଓ ଦେଖିଲେ ଯେ କୌଣସି ଶୁଭବିଶ୍ୱାସୀ ସମାଜ କଲ୍ୟାଣକାମୀର ମନ ବିଷର୍ଣ୍ଣତାରେ ଭରିଯିବ। ମୁଁ ଏକଥା ଦୃଢ଼ଭାବରେ କହିପାରେ ଯେ ତିରିଶି ବର୍ଷ ତଳେ ଲୋକେ ଏମିତି ଜାତିକୁ ଉଲ୍ଲେଖ କରି କଥାବାର୍ତ୍ତା ତ ହେଉ ନଥିଲେ—ବିଚାର

ମଧ୍ୟ କରୁ ନଥିଲେ। ଜାତି ଥିଲା–। ପ୍ରତି ବ୍ୟକ୍ତିର ତା' ଜାତି ପ୍ରତି ଅନୁରକ୍ତି ଥିଲା ଓ ଜାତିଗତ ଦ୍ରମ ବା ଅହଂକାର ମଧ୍ୟ ଥିଲା। ଏବଂ ଏସବୁ ସହିତ ମଧ୍ୟ ଅନ୍ୟ ଜାତି ପ୍ରତି ସହିଷ୍ଣୁତା ଓ ସମ୍ମାନବୋଧ ମଧ୍ୟ ଥିଲା।

ଏ କଥା ସତ ଯେ–ଆଜି କୌଣ ଜାତିର କୌଣସି ଜାତୀୟ ବୈଶିଷ୍ଟ୍ୟ ନାହିଁ। ବ୍ରାହ୍ମଣଟିଏ ଦରଜି ଦୋକାନ ଖୋଲିଛି। କରଣଟିଏ କରିଛି ଡାଲି ଚାଉଳ ତେଲଲୁଣର ଦୋକାନ। ଖଣ୍ଡାଏତ କ୍ଷତ୍ରିୟଟିଏ କଣ୍ଟ୍ରାକ୍ଟର ହୋଇଛି ବା ହୋଟେଲଟିଏ ଖୋଲିଛି। ଏବଂ ସବୁ ଜାତିର ଲୋକେ ବିଭିନ୍ନ କ୍ଷେତ୍ରରେ ସରକାରୀ ବେସରକାରୀ ଚାକିରି କରି ପେଟ ପୋଷୁଛନ୍ତି। ଏ ସ୍ଥଳେ ସ୍ୱଜାତି ପ୍ରତି ଏତେ ଅନୁଚିତ ଅସଙ୍ଗତ ଓ ଅସମ ଅନୁରକ୍ତି ଓ ପର ଜାତି ପ୍ରତି ମଧ୍ୟ ଏତେ ଅନୁଚିତ ଅସଙ୍ଗତ ଓ ଅସମ ଅସହିଷ୍ଣୁତା ମଧ୍ୟ ଆସୁଛି କେମିତି? ଦେଶ ତା' ହେଲେ କୁଆଡ଼େ ଗତି କରିଛି?

ଯେତେବେଳେ ଗୋଟିଏ ଦେଶର ଲୋକେ ଏକ ମହାନ୍ ଜାତୀୟତା ଭାବରେ ଉଦ୍‌ବୁଦ୍ଧ ନ ହୁଅନ୍ତି–ଏବଂ ମହାନ୍ ମହାନ୍ ଭାବାଦର୍ଶ ଗୁଡ଼ିକ ଦ୍ୱାରା ଅନୁପ୍ରାଣିତ ନ ହୁଅନ୍ତି–ଯେତେବେଳେ କି ଅଶିକ୍ଷିତ କି ସ୍ୱଳ୍ପଶିକ୍ଷିତ ବା କି ଉଚ୍ଚଶିକ୍ଷିତ କାହାରି ଚିତ୍ତବୃତ୍ତି ମାର୍ଜିତ ତା ସଂସ୍କୃତିସମ୍ପନ୍ନ ନ ହୋଇଥାଏ–ଯେତେବେଳେ ନୀରାଶୟତା, ଲଘୁମନ୍ୟତା, ଅକର୍ମଣ୍ୟତା ଓ କ୍ଷୁଦ୍ର ବୁଦ୍ଧିବୃତ୍ତି ଦ୍ୱାରା ଗୋଟାଏ ମହାନ୍ ଜାତି କବଳିତ ହୋଇଯାଏ–ସେତିକିବେଳେ ହିଁ ଏହି ବୁଦ୍ଧିଭ୍ରଂଶତା ଦେଖାଦିଏ। ସେତିକିବେଳେ ହିଁ ଏହି ସଂକୀର୍ଣ୍ଣତାକୁ ଆଶ୍ରୟ କରି ହତଭାଗ୍ୟ ଲୋକମାନେ ବଞ୍ଚନ୍ତି–ରାଜନୀତି କରନ୍ତି–ସାହିତ୍ୟ ସଂସ୍କୃତି କରନ୍ତି ଅଥବା ସଂଘ ସମ୍ମିଳନୀ କରନ୍ତି। ସେହି ଅଧମଜାତିର ଆଉ କୌଣ ଦିଗରେ ବିକାଶ ହେବାର ଆଶା ସୁଦୂର-ପରାହତ ହୋଇଯାଏ।

ଓଡ଼ିଶାରେ ଆଜି ଓଡ଼ିଆମାନଙ୍କ ଭିତରେ ଏହି କୁତ୍ସିତ ଘୃଣ୍ୟ ସଂକୀର୍ଣ୍ଣ ଜାତିଭେଦ ବୁଦ୍ଧି ଖୁବ୍ ପ୍ରବଳ ହୋଇ ଦେଖାଦେଇଛି। ଏବଂ ଏହି ଛଳନାପ୍ରିୟ ଜାତି ପୁଣି ଆଜି ତାର ଆରାଧ୍ୟ ଦେବତା ଜଗନ୍ନାଥଙ୍କୁ ନେଇ ମାତିଛି। ଯୋଉ ଜଗନ୍ନାଥଙ୍କ ପାଖରେ ଜାତିଭେଦ ନଥିବାଟା ଇ ପ୍ରଧାନ ବୈଶିଷ୍ଟ୍ୟ। ସାମ୍ୟ, ମୈତ୍ରୀ, ଦୟା, ପ୍ରେମ ଆଦି ସଦ୍‌ଗୁଣଗୁଡ଼ିକୁ ଆୟତ୍ତ ନ କରି ଜଗନ୍ନାଥ ଜଗନ୍ନାଥ ହେବା ଅସଲରେ ଗୋଟାଏ ଭଣ୍ଡାମି ନୁହେଁ କି?

**

# ଅଜବ ଗୁଜବ "ଡିସ୍କୋରୋଗ"

୧୯।୧।୮୨

ପ୍ରଥମେ ଖବର ପ୍ରକାଶ ପାଇଲା ଯେ, ପାରାଦୀପ ଅଞ୍ଚଳରେ ଗୋଟିଏ ବିଚିତ୍ର ରୋଗ ଯୁବକ–ଯୁବତୀମାନଙ୍କୁ ହଠାତ୍ ଆକ୍ରାନ୍ତ କରୁଛି। ଗୋଡ଼ହାତ ଝିମ୍‌ଝିମ୍ ହୋଇଯାଉଛି। ସାମାନ୍ୟ ଜର ହେଉଛି। ତା'ପଳରେ ରୋଗୀର ମୁଣ୍ଡ ବାତଚକ୍ର ଖାଇଲା ଭଳି ଲାଗୁଛି। ରୋଗୀ ପଡ଼ିଯାଉଛି। ଏଣୁ ତେଣୁ ବିଳିବିଳଉଛି ଏବଂ ଶେଷରେ ରୋଗୀ ମୂର୍ଚ୍ଛିତ ହୋଇ ପଡୁଛି। ରୋଗୀ ଉପରେ ଏ ଶୀତଦିନରେ ପ୍ରଚୁର ଥଣ୍ଡାପାଣି ଢ଼ାଳିଲେ ଏବଂ ମୁଣ୍ଡରେ ବରଫ ଲଦିଦେଲେ ରୋଗ ସଲକ୍ଷଣ ଛାଡ଼ିଯାଉଛି।

ଏ ରୋଗ କିପରି ରୋଗ—ଏହାର ଉତ୍ପତ୍ତି କିପରି ଓ କୋଉଠୁ—ଏହା ଜୀବାଣୁଜନିତ, ବା ଭୂତାଣୁଜନିତ ଏହା ଆମ ଦେଶୀ ରୋଗୀ ନା ବିଦେଶୀ ରୋଗ ଏପରି ରୋଗ ଓ ତାର ପ୍ରତିକାର ବିଷୟ ଆମ ଆୟୁର୍ବେଦରେ ଅଛି କି ଏଲୋପାଥିରେ ଅଛି କି ହୋମିଓପାଥିରେ ଅଛି, ଅଥବା ୟୁନାନୀ ବା ତିବେନ ଚିକିତ୍ସା ପଦ୍ଧତିରେ ଅଛି—ସେ କଥା ଅବଶ୍ୟ କେହି କହିପାରୁ ନାହାନ୍ତି। ଏହା ମାନସିକ ରୋଗ ନା ଶାରୀରିକ, ତାହା ମଧ୍ୟ ଜଣା ପଡ଼ିନାହିଁ। ହଠାତ୍ କେହି ଜଣେ ଗୋଟିଏ ଖବରକାଗଜରେ ଛପାଇଦେଲା ଯେ, ଡାକ୍ତରମାନେ ଏହାକୁ "ଡିସ୍କୋ-ରୋଗ" ବୋଲି କହୁଛନ୍ତି।

"ଡିସ୍କୋ" ଶବ୍ଦଟି ଆଧୁନିକ ପାଶ୍ଚାତ୍ୟ ଗୀତ ଓ ନାଚର ଏକ ପ୍ରଣାଳୀ ଏବଂ ଆମ ଯୁବକ-ଯୁବତୀମାନେ ଏହି ପ୍ରଣାଳୀର ଗୀତନାଚରେ ବର୍ତ୍ତମାନ ଖୁବ୍ ମାତିଛନ୍ତି। ଅଧିକାଂଶ ଯୁବକ-ଯୁବତୀ ଏହି ଡିସ୍କୋ ନାଚ-ଗୀତରେ ପାଗଳ ହୋଇ ଉଠିଛନ୍ତି—ଏକଥା ଠିକ୍। କିନ୍ତୁ ଡିସ୍କୋ ନାମରେ ଗୋଟିଏ ରୋଗ ଯେ ଥାଇପାରେ ସେ କଥା ଆମ କାହାକୁ ଜଣା ନଥିଲା।

ଅବଶ୍ୟ, ପୁନଶ୍ଚ ଗୋଟିଏ ଖବରକାଗଜରେ ଜଣେ ଡାକ୍ତରଙ୍କ ନାମ ସହିତ ଛୋଟ ବିବୃତିଟିଏ ମଧ୍ୟ ବାହାରିଲା ଯେ ଡିସ୍କୋ ରୋଗ ବୋଲି କିଛି ନାହିଁ। ଏହା ଗୋଟାଏ ଗୁଜବ। ଏପରି ରୋଗ କାହାକୁ କୋଉଠି ହୋଇଛି ବୋଲି ମଧ୍ୟ ପ୍ରମାଣ ନାହିଁ।

ପୁନଶ୍ଚ ତା'ପରଦିନ କେତୋଟି ଖବରକାଗଜରେ ପୁଣି ସେଇ ଡିସ୍କୋ ରୋଗ କଥା ବାହାରିଲା। ଏଥର କଟକରେ ଏ ରୋଗ ଦେଖାଦେଇଛି ବୋଲି ନିଜସ୍ୱ ସମ୍ବାଦଦାତାମାନେ ପ୍ରକାଶ କଲେ ଏବଂ ଏ ରୋଗର ମୂଳ ଲକ୍ଷଣ ସହିତ ଆଉ ତିନୋଟି ଗୁରୁତର ଲକ୍ଷଣ ମଧ୍ୟ ଅଧିକା ବାହାରିଛି ବୋଲି ପ୍ରକାଶ ପାଇଲା, ଯଥା—

ଏ ରୋଗ ହେବାର ତିନିଚାରି ଘଣ୍ଟା ପରେ ଦେଖାଯାଉଛି ଯେ ଯୁବକମାନଙ୍କର ଲିଙ୍ଗ ଓ ଅଣ୍ଡକୋଷଗୁଡ଼ିକ କ୍ରମଶଃ ସାନ ହୋଇଯାଉଛି ଏବଂ ଯୁବତୀମାନଙ୍କର ସ୍ତନଯୁଗଳ ମଧ୍ୟ କ୍ରମଶଃ ସାନ ହୋଇ ଯାଉଛି। ଫଳରେ ଉଭୟ ଯୁବକଯୁବତୀ ସଂପ୍ରଦାୟଙ୍କ ମନରେ ଘୋର ଆତଙ୍କ ଖେଳିଯାଉଛି ଏବଂ ବହୁ ଯୁବକଯୁବତୀ ଘରେ କବାଟ କିଳି ରହୁଛନ୍ତି।

ତତ୍ପରଦିନ ପୁନଶ୍ଚ ଖବର ପ୍ରକାଶ ପାଇଲା ଯେ ଏହି ଡିସ୍କୋରୋଗ ବର୍ତ୍ତମାନ ନିମାପଡ଼ା, ଗୋପ, କାକଟପୁର, ନିଆଳି, ପିପିଲି ଓ ବନମାଳିପୁର ଆଦି ଗ୍ରାମମାନଙ୍କରେ, ବିଶେଷତଃ କଲେଜ ଥିବା ଗ୍ରାମମାନଙ୍କରେ ହଠାତ୍ ଦେଖାଦେଲାଣି ଏବଂ ଏସବୁ ଗ୍ରାମମାନଙ୍କରେ ଯୁବକଯୁବତୀମାନେ ଏଥିରେ ଆକ୍ରାନ୍ତ ହୋଇ ପଡୁଛନ୍ତି। ତେବେ ଗୋଟିଏ କ୍ଷୁଦ୍ର ବା ମଧ୍ୟମ ଧରଣର ସମ୍ବାଦପତ୍ରରେ ବାହାରିଲା ଯେ ଏହି ଡିସ୍କୋ ରୋଗରେ ଆକ୍ରାନ୍ତ ଯୁବକଯୁବତୀମାନେ ରୋଗାକ୍ରାନ୍ତ ହେବାର ତିନି ଚାରିଘଣ୍ଟା ପରେ ହଠାତ୍ ଅଚେତନ ଅବସ୍ଥାରେ ବି ତାଳ-ଜମକ ସହିତ ହାତଗୋଡ଼ ହଲାଇ ଓ ଅଣ୍ଟା ହଲାଇ ସେଇ ଶୋଇବାଅବସ୍ଥାରେ ବି ନାଚିଲା ଭଳି ହେଉଛନ୍ତି ଏବଂ ଆଉ କେତେକ କୁଁ କୁଁ ଶବ୍ଦ କରୁଛନ୍ତି ଓ କେତେକ ମେଃ ମେଃ ଶବ୍ଦ ମଧ୍ୟ କରୁଛନ୍ତି। କିଛି ସମୟ ପରେ ସେମାନଙ୍କ ପାଟି ପଡ଼ିଯାଉଛି ଓ ପ୍ରଚୁର ଲାଳସ୍ରାବ ହେଉଛି। ଏହି ରୋଗରେ କୁଆଡ଼େ ନିମାପଡ଼ା ଅଞ୍ଚଳରେ ଗୋଟିଏ ଯୁବତୀ ଆକ୍ରାନ୍ତ ହୋଇପଡ଼ିବା ପରେ ପରେ ହିଁ ଜଣେ ଯୁବକ ତାକୁ ଟେକିନେଇ ପୋଖରୀ ଭିତରେ ବୁଡ଼ାଇ ଧରିଲା ଓ ସେହି ଅବସ୍ଥାରେ ତା' ପ୍ରତି ଖରାପ ବ୍ୟବହାର କରିବାରୁ ଡିସ୍କୋ ରୋଗାକ୍ରାନ୍ତ ଯୁବତୀଟି ଚିତ୍କାର କରି ଉଠିଲା। ଫଳରେ ଗ୍ରାମବାସୀମାନେ ଉତ୍ତ୍ୟକ୍ତ ହୋଇ ଯୁବକଟିକୁ ମାଡ଼ ଚଢ଼ାଇଲେ। ମାତ୍ର ପରେ କୁଆଡ଼େ ଜଣାଗଲା ଯେ ଏହି ରୋଗରେ ଯୁବତୀଟିଏ ଆକ୍ରାନ୍ତ ହେଲେ, ତାକୁ ଏପରିକି ଢଙ୍ଗରେ ଚିକିତ୍ସା କରିବାକୁ ହୁଏ—ଏବଂ ତଦ୍ଦ୍ୱାରା ଡିସ୍କୋ ରୋଗାକ୍ରାନ୍ତ ଯୁବତୀଟି ଆଶୁ ଆରୋଗ୍ୟଲାଭ କରେ।

ଏହି ରୋଗ ସମ୍ବନ୍ଧୀୟ ଖବର ପ୍ରକାଶ ପାଇବାର ଦୁଇଦିନ ଭିତରେ ଜଣେ କିଏ କଟକରେ ପ୍ରଚାର କରିଦେଲା ଯେ ଏହି ରୋଗ ହେଲା ମାତ୍ରେ କଣ୍ଟାଲେଉଟିଆ ଶାଗର ରସ ବାଟି ପିଆଇଦେବ ଓ କଣ୍ଟାଲେଉଟିଆ ଶାଗକୁ ରୋଗୀ ବା ରୋଗିଣୀର ବାହୁରେ ଭଲକରି ବାନ୍ଧିଦେବ। ଆସ୍ତେ ଆସ୍ତେ ତା'ପରେ ଏହି ନବାଗତ ବ୍ୟାଧିଟି ଛାଡ଼ିଯିବ। ରୋଗ ଧରିବା ପୂର୍ବରୁ ଯଦି କେହି ଏଇ ଶାଗକୁ ପାଣିରେ ବାଟି ସର୍ବତ କରି ପିଇଦିଏ, ତେବେ ଏ ରୋଗ ଆଉ ହେବନାହିଁ। ଆଉ କେତେକ ଘି-କୁଆଁରୀ ପତ୍ରର ରସକୁ ସାମାନ୍ୟ ଉଷୁମ କରି ରୋଗୀକୁ ପିଆଇଦେଲେ ଏହି ଦୁଷ୍ଟ ଡିସ୍କୋବ୍ୟାଧିଟି ଆଉ ହେବ ନାହିଁ ବୋଲି ପ୍ରଚାର ମଧ୍ୟ କରିଦେଲେ। ଫଳରେ କୁଆଡ଼େ, କଟକ ଓ ଅନ୍ୟାନ୍ୟ ଅଞ୍ଚଳରେ ଏଇ କଣ୍ଟା ଲେଉଟିଆ ଶାଗ ଓ ଘିକୁଆଁରୀ ପତ୍ର

ଆଉ କାହା ବାଡ଼ିବଗିଚାରେ କେହି ରଖେଇ ଦେଲେନାହିଁ ଓ ବଜାରରେ ତାକୁ ବିକ୍ରୀକରି ଗରିବ ଲୋକେ ମଧ୍ୟ ଦୁଇପଇସା କମାଇଲେଣି ବୋଲି ଖବରରୁ ପ୍ରକାଶ।

ଏହି ବିଚିତ୍ର କୌତୁକୀୟା ରୋଗଟିଏ ଏ ପର୍ଯ୍ୟନ୍ତ ପୁରୀ ସହରକୁ କାହିଁକି ପ୍ରବେଶ କରିନାହିଁ ବୋଲି ପଚାରନ୍ତେ, ଜଣେ ଡିସ୍କୋରୋଗ ବିଶେଷଜ୍ଞ କହିଲେ ଯେ ପୁରୀରେ ଭାଙ୍ଗସର୍ବତ ପିଉଥିବାରୁ ସେଠାରେ ଯୁବକମାନଙ୍କୁ ଏ ରୋଗ ହେବା ସହଜ ନୁହେଁ। ସମ୍ବଲପୁର, ବାରିପଦା, ବଲାଙ୍ଗୀର ଇତ୍ୟାଦି ଜିଲାର ଯୁବକଯୁବତୀମାନଙ୍କୁ ଏ ପର୍ଯ୍ୟନ୍ତ ଏ ରୋଗ ଧରିନାହିଁ। ତେବେ କେହି କେହି କହୁଛନ୍ତି—ଏ ରୋଗ ଯେମିତି ଦ୍ରୁତଗତିରେ ବ୍ୟାପୁଛି, କେବେ ଯେ ସେ ଅଞ୍ଚଳକୁ ଲାଇନ ବସ୍‌ରେ ଚାଲିଯିବ, ସେ କଥା କିଏ କହିବ।

ଖୋଦ ରାଜଧାନୀରେ ଏ ପର୍ଯ୍ୟନ୍ତ ଏ ରୋଗରେ କେହି ଆକ୍ରାନ୍ତ ହୋଇନଥିଲେ। କିନ୍ତୁ ଆଜି ସକାଳେ ଶୁଣିଲି ଯେ, ବରଗଡ଼ ପୁରୁଣା ଭୁବନେଶ୍ୱର ଏକ ନମ୍ବର ୟୁନିଟ ଓ ଦୁଇ ନମ୍ବର ୟୁନିଟରେ ଗତକାଲି ସନ୍ଧ୍ୟାବେଳେ ଚାରିଜଣ ଯୁବକଙ୍କୁ ଏଇ ରୋଗ ଆକ୍ରାନ୍ତ କରୁ କରୁ ସେମାନଙ୍କୁ ସଙ୍ଗେ ସଙ୍ଗେ ଡାକ୍ତରଖାନା ନିଆଯାଉଥିଲା। ମାତ୍ର ଅଧାବାଟରେ କୁଆଡ଼େ ପୋଲିସ ସେମାନଙ୍କୁ ଧରିନେଇ ଥାନାକୁ ନେଇଗଲେ ଏବଂ ଥାନାରେ ପହଞ୍ଚିବା ପୂର୍ବରୁ ସେମାନଙ୍କୁ ଏହି ମାରାତ୍ମକ ରୋଗ ଛାଏଁ ଛାଏଁ ଛାଡ଼ିଯାଇଥିଲା।

ପ୍ରତିଦିନ ଏଇ ବିଚିତ୍ର ଡିସ୍କୋରୋଗ ସମ୍ବନ୍ଧେ ଖବରକାଗଜମାନଙ୍କରେ ଆକ୍ରାନ୍ତ ଖବରସବୁ ବାହାରୁଛି ଏବଂ ପ୍ରତିଦିନ ମଧ୍ୟ ଏହା ମିଥ୍ୟା ଗୁଜବ ବୋଲି ପ୍ରକାଶ ପାଉଛି। ଏ ଦେଶରେ କଣ ସରକାରଙ୍କ ପକ୍ଷରୁ ଏ ସମ୍ବନ୍ଧେ ବିଶେଷଜ୍ଞ ମତ ଦେବା ପାଇଁ ଡାକ୍ତର ନାହାନ୍ତି? ଲୋକସମ୍ପର୍କ ବିଭାଗଙ୍କର କିଛି ବକ୍ତବ୍ୟ ନାହିଁ? ତେବେ ପୋଲିସ ଅଛନ୍ତି ନା ନାହାନ୍ତି?

ଖବରକାଗଜମାନଙ୍କର ନିଜସ୍ୱ ସମ୍ବାଦଦାତାମାନଙ୍କୁ ଆଉ କିଛି ଖବର ମିଳୁ ନାହିଁକି? ରାଜଧାନୀର ଜଣେ ସମ୍ବାଦଦାତାଙ୍କୁ ପଚାରିଲି—ଆଚ୍ଛା! ଏ ରୋଗ ପୁଣି ଆମ ଭଳି ବୁଢ଼ା, ଅଧାବୁଢ଼ାମାନଙ୍କୁ ଧରିବ ନାହିଁ ତ?

ସମ୍ବାଦଦାତା କହିଲେ—ନା,ନା। ଯାହା ଶୁଣାଯାଉଛି—ଏ ରୋଗର ଶିକାର କେବଳ ଯୁବକଯୁବତୀମାନେ; ତେବେ ଯେଉଁ ବୁଢ଼ା, ଅଧାବୁଢ଼ାମାନେ ନକଲି ଦାନ୍ତ ଲଗାଇଛନ୍ତି ଓ ଧଳାବାଳକୁ କଳାରଙ୍ଗ କରି ଚିପାପ୍ୟାଣ୍ଟ ଓ ଚିପାସାର୍ଟ ପିନ୍ଧୁଛନ୍ତି, ସେମାନଙ୍କୁ ଏ ରୋଗ ଯେ କେତେବେଳେ ବାଉଳାରେ ଧରି ନ ପକେଇବ, ସେ କଥା କିଏ କହିପାରେ?

ଧନ୍ୟ ଏ ରାଜ୍ୟ! ଧନ୍ୟ ଡିସ୍କୋ ରୋଗ! ଅଜବ ରାଜ୍ୟକୁ ଅଜବ ରୋଗ। ଅଜବ ଗୁଜବ ମଧ୍ୟ।

❋❋

# ଶୁଭବାର୍ତ୍ତାର ବଣିକ ଚାଲୁ....

୨।୧।୮୩

ତା ୨୬।୧୨।୮୨। ସନ୍ଧ୍ୟା ସାତଟା—ରାଜଧାନୀର ମାର୍କେଟ ବିଲ୍‌ଡ଼ିଙ୍ଗ ପାଖରେ କନା ତମ୍ବୁ ଭିତରେ ଧାଡ଼ି ଧାଡ଼ି ହୋଇ ସଜା ହୋଇଥିବା ନବବର୍ଷ ପାଇଁ ନାନା ଚିତ୍ର-ବିଚିତ୍ର ଶୁଭେଚ୍ଛା କାର୍ଡ଼ଗୁଡ଼ିକର ଦୋକାନଟି ପାଖରେ ଠିଆ ହୋଇ ଦେଖୁଥିଲି। କେବଳ ସେଦିନ ସେଇଠାରେ ନୁହେଁ—ରାଜଧାନୀ ସାରା ଜନଗହଳି ବିପଣି ବଜାର ଜାଗାମାନଙ୍କରେ ଗତ ଡିସେମ୍ବର ବାର ତାରିଖଠାରୁ ଅନ୍ୟୂନ ଶହେଟି ଏହିପରି ଅସ୍ଥାୟୀ ବିପଣି ଖୋଲିଛି। କେବେ କଦବା ମୋର ସେଗୁଡ଼ିକ ଉପରେ ଆଖି ପଡ଼ିଲା ମାତ୍ରେ ମୁଁ କିଛି ସମୟ ସେଇ ଦୋକାନ ଗୁଡ଼ିକ ପାଖରେ ଠିଆ ହୋଇ ସେଇ କାର୍ଡ଼ଗୁଡ଼ିକ ଉପରେ ଛବିଗୁଡ଼ିକୁ ମନ ଦେଇ ଦେଖିଛି। କାର୍ଡ଼ଗୁଡ଼ିକ ଉପରେ ନାନା ଧରଣର ମନୋହରିଣୀ ଛବି ସାଙ୍ଗକୁ ଭିତରେ ଇଂରାଜୀ, ହିନ୍ଦୀ ଏବଂ ଓଡ଼ିଆ ଭାଷାରେ ଶୁଭେଚ୍ଛାସୂଚକ ବାକ୍ୟମାନ ଛପା ଯାଇଛି। ସେଗୁଡ଼ିକର ଦାମ ମଧ୍ୟ ଏକ ଟଙ୍କାରୁ ପାଞ୍ଚଟଙ୍କା ପର୍ଯ୍ୟନ୍ତ। ବିଭିନ୍ନ କାର୍ଡ଼ରେ ସୁନ୍ଦରୀ ଚିତ୍ରତାରକାଙ୍କଠାରୁ ଆରମ୍ଭ କରି ଗଛଲତା, ପାହାଡ଼, ନଈ, ସମୁଦ୍ର, ବୋଇତ, ମନ୍ଦିର, ମସ୍‌ଜିଦ୍, ଗୀର୍ଜା ଓ ଶ୍ରୀଜଗନ୍ନାଥଙ୍କର ଛବି ଛପା ହୋଇଛି। ଛୋଟ ପିଲାଙ୍କ ଉଦ୍ଦେଶ୍ୟରେ ନିର୍ମିତ କାର୍ଡ଼ଗୁଡ଼ିକ ଉପରେ ବିରାଡ଼ି, କୁକୁର, ଚଢ଼େଇ ପ୍ରଭୃତିଙ୍କର କୌତୁକ ଛବି। ଏସବୁ ହଜାର ହଜାର ସଂଖ୍ୟାରେ ବିକ୍ରୀ ହେଉଛି। ୧୯୮୩ ମସିହା ଆସିବା ପୂର୍ବରୁ ପ୍ରିୟ ଜନମାନଙ୍କୁ ଶୁଭେଚ୍ଛା ଜଣାଇବା ପାଇଁ ଆବାଳବୃଦ୍ଧବନିତା ସେଇ ବାର ତାରିଖଠାରୁ ଆଜିପର୍ଯ୍ୟନ୍ତ ସେସବୁ ଦୋକାନରେ ଭିଡ଼ କରି ଆସୁଛନ୍ତି।

ଗତ ଦୁଇ ତିନିବର୍ଷ ଭିତରେ ଓଡ଼ିଶାରେ ଏହି ଅଭିନବ ସାମୟିକ ସୌଖୀନ ବ୍ୟାପାରଟି ବର୍ଷକୁ ବର୍ଷ ବେଶ୍ ବଢ଼ି ଚାଲିଛି। ଓଡ଼ିଆ ଓଡ଼ିଆଣୀମାନେ ବହୁ ସଂଖ୍ୟାରେ ପ୍ରିୟଜନମାନଙ୍କ ସହିତ ଶୁଭେଚ୍ଛା ବିନିମୟ କରିବାକୁ ଏତେ ଆଗ୍ରହୀ ହୋଇଉଠିଲେଣି—ଏହା ନିଶ୍ଚୟ ଆମ ଓଡ଼ିଆଙ୍କ ଜାତୀୟ ଚାହାଣି ଓ ଚଳଣିର ଗୋଟାଏ ଶୁଭ ଲକ୍ଷଣ। ଏହି ଶୁଭେଚ୍ଛା କାର୍ଡ଼ ବିକୁଥିବା ବଣିକମାନେ ସମସ୍ତେ ଯୁବକ। ଏହିମାନେ ହିଁ ବର୍ତ୍ତମାନ ଆମ ବଜାରରେ ଶୁଭେଚ୍ଛାର ବେହିସାବୀ ବଣିଜରେ ମାତିଛନ୍ତି।

ଏଇ ଯୁବ ବଣିକମାନେ ହିଁ ରାକ୍ଷିପୂର୍ଣ୍ଣିମା ପୂର୍ବରୁ ସେହି ସବୁ ସ୍ଥାନରେ ବିଭିନ୍ନ କିସମର ବିଭିନ୍ନ ମନୋହର ରାକ୍ଷୀ ବିପଣିମାନ ଖୋଲିଥିଲେ ଏବଂ ଦିଆଲି ପୂର୍ବରୁ ସେଇମାନେ ହିଁ ବିଚିତ୍ର ବାଣ ଦୋକାନମାନ ଖୋଲିଥିଲେ।

କହିବା ବାହୁଲ୍ୟ ଯେ ରାଜଧାନୀର ବଜାରମାନଙ୍କରେ ଦିନିଦିନିଆ ବ୍ୟବହାର୍ଯ୍ୟ ଦ୍ରବ୍ୟର କିଣାବିକା ଲାଗି ଅତି ପରିଚିତ ବୈଚିତ୍ର୍ୟହୀନ ବିରକ୍ତିକର ଗତାନୁଗତିକତାକୁ ଏଇ ଖିଆଲୀ ଆମୋଦ ସାମଗ୍ରୀଗୁଡ଼ିକର ଅସ୍ଥାୟୀ ଅଥଚ ରମଣୀୟ ଚିତ୍ତଚମତ୍କାରୀ ବିପଣିଗୁଡ଼ିକ ପରିହାସ କଲାପରି ଜଣା ପଡୁଥିଲେ। ଜାଗଜମକରେ ଦର୍ପିଷ୍ଟ ଦିଶୁଥିଲେ।

କିନ୍ତୁ ଏସବୁକୁ ଦେଖି ଆମର ସେଇସବୁ ଖୁନ୍ତୁଖୁନ୍ତିଆ ବିଜ୍ଞମନ୍ୟ ଲୋକେ ବିରକ୍ତି ପ୍ରକାଶ କରି କହୁଥିଲେ—ଛି-ଛି-ଛି ଜାତୀୟ ଅର୍ଥଶକ୍ତି ଓ ବାଣିଜ୍ୟ ଶକ୍ତିର କି ଅପବ୍ୟବହାର ଓ ବୃଥା ଅପଚୟ!

କିନ୍ତୁ ମୋର ମନେ ହୁଏ— ମଣିଷ କଣ ରୋଜଗାର କରୁଛି—କେବଳ କୋଠାଗୁଡ଼ିକ ତୋଳିବ? ଛୁଆପିଲାଙ୍କୁ ପାଠପଢ଼େଇବେ? ଡାଲି ଚାଉଳ ମାଛ ଅଣ୍ଡା ଖାଇବ? ଲୁଗାପଟା କିଣି ପିନ୍ଧିବ? ସାବୁନ୍, ପେଷ୍ଟ, ତେଲ, ବ୍ରସ୍ କିଣି ବ୍ୟବହାର କରିବ? ପାଠ୍ୟପୁସ୍ତକ ଓ ତା'ପରେ ଧର୍ମପୁସ୍ତକ ପଢ଼ିବ? ସବୁ କଥା କେବଳ ମାତ୍ର ବଞ୍ଚିବା ପାଇଁ। ଜୀବନ ସାରା ଖାଲି ହିସାବ କରି କରି ବଞ୍ଚିବ? ମଣିଷ ଆପଣାର ନିତ୍ୟାବଶ୍ୟକୀୟ ଦ୍ରବ୍ୟଗୁଡ଼ିକୁ ହିସାବ କରି କିଣିବା ପରେ ଆପଣା ଖିଆଲ ଖୁସିରେ ଟିକିଏ ବେହିସାବୀ ହେଇପାରିବ ନାହିଁ? କ୍ଷଣକ ଲାଗି ହେଉ ପଛେ ଭାବଭୋଳୀ ସ୍ତ୍ରୀଲୋକଟିଏ ତାର ହିସାବୀ ପ୍ରେମପ୍ରଣୟର ସଂସାର ଭିତରୁ ବାହାରି ଯାଇ ଚକମକିଆର ରାକ୍ଷିଟିଏ କିଣି ତାର କୋଉ ପ୍ରିୟପୁରୁଷର ମଣିବନ୍ଧରେ ବାନ୍ଧି ଦେଇ ହସି ହସି ରସ ଗଦ୍ ଗଦ୍ ସ୍ୱରରେ କହିବ ନାହିଁ ଯେ, ତୁମେ ମୋର—ତୁମେ ମୋର ଭାଇ ବା ଭାଇଟିଏ ପରି ମଣିଷଟିଏ। ଆମ ଦୁହିଁଙ୍କ ଜୀବନର ଏଇ ମୁହୂର୍ତ୍ତକର ପ୍ରୀତି ଉଚ୍ଛ୍ୱାସର ସାକ୍ଷୀ ହୋଇ ରହୁ ତେବେ ଆଜିର ଏଇ ରାକ୍ଷିଟି!

ସେହିପରି ଦିଆଲି ରାତିରେ ନୀରବ ନିସ୍ତବ୍ଧ ନିରନ୍ଧ୍ର ଅନ୍ଧକାରକୁ ଚନ୍ଦ୍ରଉଦିଆ ବାଣଟିଏ ମାରି ହାଲୋଳମୟେ କରିଦେବାକୁ—ଅଥବା ବମ୍‌ଟିଏ ଫୁଟା ଚତୁର୍ଦ୍ଦିଗକୁ ଚମକାଇ ଦେବାକୁ ମଣିଷ କଣ ତା' ଉପାର୍ଜ୍ଜନରୁ କିଛି ଅର୍ଥ ବରବାଦ୍ କରି ଦେବ ନାହିଁ?

ସେହିଭଳି ଗୋଟିଏ ସୁଖଦୁଃଖର ବର୍ଷ ଶେଷ ହେଉ ହେଉ, କେତେ ଆଶା ଆଉ କେତେ ଆଶଙ୍କାର ସମ୍ଭାବନାକୁ ଗର୍ଭରେ ପୂରାଇ ମାଡ଼ି ଆସୁଥିବା ନୂତନ ବର୍ଷଟିକୁ ସ୍ୱାଗତ ଜଣାଇ ମଣିଷ କଣ ତାର ପ୍ରିୟ ଲୋକଟି ପାଖକୁ ରଙ୍ଗୀନ ଚିତ୍ର ସୁଶୋଭିତ ଶୁଭେଚ୍ଛା ବାକ୍ୟସମ୍ବଳିତ କାର୍ଡ଼ଟିଏ ପଠାଇବାକୁ ନିଜ ପକେଟରୁ ସ୍ୱପାର୍ଜିତ ଅର୍ଥରୁ କିଛି ଅପଚୟ କରିବ ନାହିଁ?

କାହିଁକି କରିବ ନାହିଁ? ଅବଶ୍ୟ କରିବ। ଉପାର୍ଜନଶୀଳ ମଣିଷ କଣ ତାର ଉପାର୍ଜିତ ଅର୍ଥର ହିସାବୀ ଦାସଟିଏ କି? ହିସାବୀ ମଣିଷ ଜୀବନକୁ ନେଇ ବଞ୍ଚେ। ମାତ୍ର ଜୀବନକୁ ଆପଣା ଖିଆଲରେ ଉପଭୋଗ କରିବା ପାଇଁ–ଟିକିଏ ସରସ କରିବା ପାଇଁ–ଜୀବନକୁ ଆଉ ଟିକିଏ ପ୍ରସାରିତ ଓ ସହଜ କରିବା ପାଇଁ, ଟିକିଏ ଏପଟ ସେପଟ ହୋଇ ବେହିସାବୀ ହେବା ଦରକାର ପଡ଼େ। ଜୀବନକୁ ରଖିବା ପାଇଁ ସଞ୍ଚୟର ଓ ସଂଯମର ଆବଶ୍ୟକତାକୁ କେହି ମନା କରୁନାହିଁ। ମାତ୍ର ଜୀବନର ଅର୍ଥ ଖୋଜିବା ପାଇଁ ବା ଜୀବନକୁ ଶିରା ଆଉ ସ୍ନାୟୁ ଭିତରେ ପ୍ରବାହିତ କରି ଉପଭୋଗ୍ୟ କରିବା ପାଇଁ କିଛି କିଛି ଅପଚୟ ମଧ୍ୟ ଆବଶ୍ୟକ। ସଭ୍ୟତା ସଂଚୟ ଭିତରୁ ଜନ୍ମନିଏ। ମାତ୍ର ସଂସ୍କୃତି ଜନ୍ମ ନିଏ ଅପଚୟ ଭିତରୁ। ତା' ନ ହେଲେ କେବଳ ବଞ୍ଚିବା ପାଇଁ କଣ ଦରକାର ଏତେ ନାଚଗୀତର? ଏତେ ରେଖା ଆଉ ରଙ୍ଗର?

ଏତେ ଶବ୍ଦ ଆଉ ବାକ୍ୟର? ଅପଚୟ କେବଳ ମଣିଷ କରେ ନାହିଁ। ପ୍ରକୃତି ମଧ୍ୟ ଏତେ ହିସାବୀ ହୋଇ ସୁଦ୍ଧା କମ ବାଜେ ଖରଚ କରେ ନାହିଁ!! ଅପଚୟ ଭିତରେ ହିଁ ମଣିଷର ମୁକ୍ତି ଫିଟି ପଡ଼େ। ତାର ଦେହର ବନ୍ଧନ ଢୁଗୁଳି ଯାଏ। ପ୍ରାଣର ବନ୍ଧନ ଶିଥିଳ ହୋଇଯାଏ – ମନର ବନ୍ଧନ ଖସିଯାଏ। ଆଉ ଏକଥା ବି ସମାନ ସତ ଯେ, ଯିଏ ନିଜକୁ ଢୁଗୁଳି ପାରେ ନାହିଁ – ସେ ମଧ୍ୟ ନିଜକୁ ଦୃଢ଼ଭାବେ ବାନ୍ଧିପାରେ ନାହିଁ। ବାଣ ମାରିବା, ରାଖି ବାନ୍ଧିବା ଓ ଶୁଭେଚ୍ଛା କାର୍ଡ଼ ପଠାପଠି ହେବା ଏହିପରି ଏକ ଢୁଗୁଳା ପଣ।....

ସେଦିନ ରାଜଧାନୀର ମାର୍କେଟ ପାଖର ସେଇ ଶୁଭେଚ୍ଛା କାର୍ଡ଼ ଦୋକାନଟି ପାଖେ ଠିଆ ହେଲାମାତ୍ରେ ଦୋକାନର ଯୁବ ମାଲିକ ଶ୍ରୀମାନ ରଞ୍ଜନକୁମାର ପଳାଇ ମତେ ଖୁବ ଭଦ୍ରଭାବେ ମୃଦୁହାସ୍ୟରେ ପଚାରିଲେ – କୋଉ କାର୍ଡ଼ କିଣିବେ ସାର? ମୁଁ କହିଲି – କିଣିବି ନାହିଁ। ଦେଖିବି। ରଞ୍ଜନକୁମାର ଖୁବ ଉଦାର ପଣରେ କହିଲେ– ଆସନ୍ତୁ ଆଜ୍ଞା ଭିତରକୁ। ଦେଖନ୍ତୁ ମନଭରି।

ବାଇଶି ତେଇଶି ବର୍ଷର ଯୁବକ ଶ୍ରୀମାନ ରଞ୍ଜନକୁମାରଙ୍କ ଚେହେରା ଖୁବ ମିଠା ଆଉ ସୁକୁମାର। ପତଳା ଶ୍ୟାମଳ ଆଉ ବେଶ ଚଟାପଟ। ଆଇ.ଏ. ପାସ କରିସାରି କୋଉଠି କିଛି ସ୍ଥାୟୀ ଧନ୍ଦାଧରି ନାହାନ୍ତି। ଗତବର୍ଷଠାରୁ ତାଙ୍କର ଜଣେ ସମବୟସ୍କ ବନ୍ଧୁଙ୍କ ସହିତ ମିଶି ରାଖି ବାଣ ଓ ଶୁଭେଚ୍ଛା କାର୍ଡ଼ର ସାମୟିକ ବ୍ୟବସାୟ କରୁଛନ୍ତି। ଏଥର ଏଥିରେ ସେ ବନ୍ଧୁଙ୍କ ସହ ମିଶି ପ୍ରାୟ ଚାରିହଜାର ଟଙ୍କା ଖଟାଇଛନ୍ତି। ତାଙ୍କ କହିବାନୁସାରେ ଏ ବର୍ଷ ଏ ବଜାର ଖୁବ ମାନ୍ଦା। ଏ ବର୍ଷ ବନ୍ୟା, ବାତ୍ୟା, ମରୁଡ଼ି ଲୋକଙ୍କ ସରାଗ ଓ ସଉକକୁ ମାରିଦେଇଛି। ତେବେ ଏଥିରୁ ଯଦି ସେ ପାଞ୍ଚ ଛଅ ଟଙ୍କା ଲାଭପା'ନ୍ତି – ତେବେ ଭାଗ୍ୟ ଭଲ ବୋଲି ବୁଝିବାକୁ ହେବ।

କେଉଁ ଧରଣର କାର୍ଡ଼ କେଉଁ କେଉଁ ବୟସର ଲୋକେ ବେଶି କିଣୁଛନ୍ତି ବୋଲି ପଚାରନ୍ତେ ରଞ୍ଜନ କୁମାର କହିଲେ – ପିଲାଠାରୁ ବୁଢ଼ାଯାଏ ସମସ୍ତେ ଜଗନ୍ନାଥ ଛବି ଥିବା କାର୍ଡ଼ ବେଶି କିଣୁଛନ୍ତି। ଯୁବକ ଓ ଛାତ୍ରଛାତ୍ରୀମାନେ ପ୍ରାକୃତିକ ଦୃଶ୍ୟ ଓ ଭଲ ଆର୍ଟ ଥିବା କାର୍ଡ଼ ବେଶୀ କିଣୁଛନ୍ତି ଓ ଆପଣଙ୍କ ବୟସର ଲୋକେ ଅର୍ଥାତ୍ ପଚାଶରୁ ଷାଠିଏ ବର୍ଷ ବୟସର ଲୋକେ ବେଶି କିଣୁଛନ୍ତି ଏଇସବୁ ସିନେମା ଅଭିନେତ୍ରୀ ଓ ବିଭିନ୍ନ ଭଙ୍ଗୀର ସ୍ତ୍ରୀଲୋକଙ୍କ ଛବିଥିବା କାର୍ଡ଼।...

ହଉ ଭଲହେଲା। ସେଥିରେ କିଛି ଯାଏଆସେ ନାହିଁ। ଜଗନ୍ନାଥଙ୍କ ଛବି ଥିବା କାର୍ଡ଼ଦ୍ୱାରା ହେଉ – ଅଥବା ବିଭିନ୍ନ ଭଙ୍ଗୀରେ ସ୍ତ୍ରୀଲୋକଙ୍କ ଛବିଥିବା କାର୍ଡ଼ ଦ୍ୱାରା ହେଉ– ଭାରତୀୟ ଡାକତାର ବିଭାଗ ମାଧ୍ୟମରେ କିଛିଦିନ ଯାଏ ଅନ୍ତତଃ ମଣିଷ ମଣିଷ ଭିତରେ ଶୁଭେଚ୍ଛାର ବାକ୍ୟମାନ ଯାତାୟାତ କରନ୍ତୁ। ଶୁଭଂ ଶୃଣ୍ୱନ୍ତୁ। ଶୁଭଂ ପଶ୍ୟନ୍ତୁ। ଶୁଭଂ ଭବନ୍ତୁ।

୧୯୮୩ ପାଇଁ ବିନୀତ ଦେବଦାସ ତାର ପ୍ରିୟ ପାଠକ ପାଠିକାମାନଙ୍କୁ ଏଇ 'ଧରିତ୍ରୀ' ମାଧ୍ୟମରେ ହିଁ ତାର ଶୁଭେଚ୍ଛା ଜଣାଉଛି ଏବଂ ରଞ୍ଜନ କୁମାରଙ୍କ ଦୋକାନରୁ ଗୋଟିଏ କାର୍ଡ଼ର ଶୁଭେଚ୍ଛା ବାକ୍ୟଗୁଡ଼ିକୁ ଆପଣମାନଙ୍କ ଉଦ୍ଦେଶ୍ୟରେ ଏଠାରେ ପୁନଃ ପ୍ରକାଶ କରୁଛି–

''ପୁରୁଣା ବର୍ଷର ସ୍ମୃତି ଲିଭି ଯାଏ ନୂଆ ବର୍ଷ ନୂତନ ସକାଳେ/ ନୂଆମନ, ନୂଆ ସ୍ୱପ୍ନ, ନୂଆ ଆଶା ରଙ୍ଗୀନୀ ଉଜ୍ଜ୍ୱଳ/ନୂଆ ବର୍ଷ ଆଣି ଦେଉ ନୂତନ ଆନନ୍ଦ/ ସ୍ନେହ ଆଉ ଶୁଭେଚ୍ଛାରେ ଭରା/ନୂଆ ବର୍ଷ ହେଉ ପ୍ରୀତିପଦ/ ଏବର୍ଷର ଦିନସବୁ ହୋଇଯାଉ ସୂର୍ଯ୍ୟ ଝଲମଲ/ ରାତିସବୁ ହୋଇଉଠୁ ଜୁଳୁ ଜୁଳୁ ଅସଂଖ୍ୟ ତାରାର/ ଅଥବା ଜ୍ୟୋତ୍ସାପ୍ଳାବିତ ଶାରଦୀୟ। ପୂର୍ଣ୍ଣିମା ତିଥିର।।''



# ବିଲୁଆ ଗଧିଆଙ୍କ ପାଇଁ ଶୋକ....

୭।୧୦।୮୨

କିଛି ବର୍ଷ ତଳେ ଦିନେ ଓଡ଼ିଶାର ପ୍ରବୀଣ ସାହିତ୍ୟିକ ଲୋକରତ୍ନ ଡକ୍ଟର କୁଞ୍ଜବିହାରୀ ଦାଶଙ୍କୁ ଦେଖାକରିବାକୁ ତାଙ୍କ କଟକ ବାସଭବନକୁ ଯାଇଥିଲି। ପହଁଚି ଶୁଣିଲି– ଡକ୍ଟର ଦାଶ ତାଙ୍କ ଗ୍ରାମକୁ ଯାଇଛନ୍ତି ଏବଂ ଅଳ୍ପ ସମୟ ଭିତରେ ପହଁଚିବେ। ତାଙ୍କୁ ଅପେକ୍ଷା କରି ବସିଲି। ସତକୁ ସତ ଘଣ୍ଟାକ ଭିତରେ ସେ ଆସି ଗ୍ରାମରୁ ପହଁଚିଲେ। ମୋତେ ଦେଖି ଖୁବ୍ ଖୁସୀ ହୋଇ ଆଲିଙ୍ଗନ କଲେ। ମୁଁ ପଚାରିଲି– ସାର୍! ଗାଁରୁ ତ ଫେରିଲେ। ଗାଁରେ ସବୁ ଭଲ ତ?

ଡକ୍ଟର ଦାଶ ତାଙ୍କର ବିଶାଳ ମନୋରମ ବପୁକୁ ଚଉକୀରେ ଉପସ୍ଥାପନ କରି ଗୋଟିଏ ଦୀର୍ଘଶ୍ୱାସ ଛାଡ଼ିଲେ ଏବଂ ମୋ ପ୍ରଶ୍ନର ଉତ୍ତରରେ କହିଲେ – ନାଃ! ଆଉ ଭଲ କଣ? ଗାଁ ଗଣ୍ଡା ଗଲା। ଆଉ ସେ ସବୁ ଜାଗାରେ ରହିବାକୁ ଭଲ ଲାଗୁନାହିଁ।

ମୁଁ ଭାବିଲି – ଆଜିକାଲି ଗାଁ ଗଣ୍ଡାରେ ଯୋଉସବୁ ସରପଞ୍ଚ ଚେୟାରମ୍ୟାନ ଟାଉଟରୀ ପଲିଟିକ୍ସ ପଶି ଗ୍ରାମର ସରଳ ଜୀବନକୁ ଛାରଖାର କରିଦେଲେଣି – ଡକ୍ଟର ଦାଶ ବୋଧେ ସେଇ କଥାରେ ବିମର୍ଷ ଓ ନିରାଶ ହୋଇ ଏମିତି ଦୀର୍ଘଶ୍ୱାସ ଛାଡୁଛନ୍ତି ଓ ହତାଶ ବାଣୀ କହୁଛନ୍ତି। ମୁଁ କିନ୍ତୁ ତଥାପି ପଚାରିଲି– କାହିଁକି ସାର୍! କଣ ହୋଇଛି ଆପଣଙ୍କ ଗାଁରେ?

ଡକ୍ଟର ଦାଶ ଖୁବ୍ ଗମ୍ଭୀର ବିଷାଦ୍‌ପୂର୍ଣ୍ଣ କଣ୍ଠରେ କହିଲେ –

କଣ ଆଉ ହେବ? ଗୋଟାଏ ସୁଦ୍ଧା ଗଧିଆ ଆଉ ନାହାନ୍ତି ଆମ ଗାଁରେ। ବିଲୁଆଙ୍କ ବଂଶ ବି ନିପାତ। ଆଉ ସେ ଗାଁରେ ରହିବ କଣ?

ତାଙ୍କ ତୁଣ୍ଡରୁ ଏକଥା ଶୁଣିବା ମାତ୍ରେ ପ୍ରଥମେ ମୁଁ କିଛି ବୁଝିପାରିଲି ନାହିଁ। ତା'ପରେ ଭାବିଲି – କଣ ମୁଣ୍ଡ ଖରାପ ହୋଇ ଆସିଲାଣି କି? ତା' ପରେ ପରେ କିନ୍ତୁ ମୋତେ ସ୍ୱାଭାବିକ ଭାବେ ହସ ଲାଗିଲା। ମୁଁ ହସି ହସି କହିଲି– ସାର୍! ଆପଣ କଣ ଗଧିଆ, ବିଲୁଆଙ୍କ ପାଇ ଶୋକ କରୁଛନ୍ତି?

ଡକ୍ଟର ଦାଶ କହିଲେ – ତୁମକୁ ହସ ଲାଗୁଛି ସିନା! ପ୍ରକୃତରେ ମୋ ମନ ବିଗଡ଼ି ଗଲାଣି। ଏମାନେ କଣ ସବୁ କରୁଛନ୍ତି? ଚାରିଆଡ଼େ କୀଟନାଶକ

ବିଷ ପକାଇଲେ। ବିଲରେ ଆଉ ସାପ ନାହାନ୍ତି। ମୂଷା ପ୍ରବଳ ହେଲେଣି। ଧାନଗଛ ମୂଳରେ ଜମିଥିବା ପାଣିରେ ଆଉ ଗେଣ୍ଡା ନାହାନ୍ତି କି ମୀନ ନାହାନ୍ତି। ବିଲମାଛର ବେସରମିଶା ପତରପୋଡ଼ା ଆଉ ଗାଁରେ ତୁମେ ଖାଇପାରିବ ନାହିଁ। ଗରିବ ଗୁରୁବା ଗେଣ୍ଡାଟିଏ ବି ଖାଇବାକୁ ପାଉନାହାନ୍ତି। ବର୍ଷା ଚାରିମାସ ଗେଣ୍ଡା ତୁଣ୍ଡଣରେ ସେମାନଙ୍କର ଆମିଷ ରୁଚି ମେଣ୍ଟି ଯାଉଥିଲା। ପ୍ରଚୁର ପ୍ରୋଟିନ ବି ପାଉ ଥିଲେ। ଆଉ ଗୋଟିଏ ବୀଭତ୍ସ କଥା ଶୁଣିବ? ବର୍ଷକ ତଳେ କେତେକ ଅଜଣାଲୋକ ଆମ ଗାଁକୁ ଆସିଲେ। ସେମାନେ ଗହୀର ଯାକ ବୁଲିଲେ। ଯୋଉଠି ହୁଡ଼ା, ହୁଙ୍କା, ଜୋଡ଼ବନ୍ଧ, ପଦାର ଗୋଚର ଅଛି – ସେଠି ବିଷମିଶା ମାଉଁସ ଥୋଇ ରାତିଯାକ ଲୁଚି ବସିଲେ। ସକାଳୁ ଦେଖିଲାବେଳକୁ ଗଧିଆ ମରିପଡ଼ିଛନ୍ତି। ସେମାନେ ସକାଳୁ ସେଗୁଡ଼ିକୁ ଗୋଟାଇ ତାଙ୍କ ଚମଡ଼ା ଛାଲି ନେଇ ଚାଲିଗଲେ। ବିଲୁଆ, କୋକି ଓ ଗଧିଆ ଚମଡ଼ା କୁଆଡ଼େ କଲିକତାରେ ଖୁବ୍ ଚଢ଼ାଦାମରେ ବିକ୍ରୀ ହେଉଛି। ସେଥିରେ କୁଆଡ଼େ ବହୁ ଫେସନ ଜିନିଷ ତିଆରି ହେଉଛି। ସେମାନେ ଯିବାର ଦୁଇ ଦିନ ପରେ ଦେଖିଲାବେଳକୁ ପନ୍ଦେ ଶାଗୁଣା ମରି ପଡ଼ିଛନ୍ତି। କୁଆଡ଼େ ଶାଗୁଣାମାନେ ସେଇ ବିଷାକ୍ତ ବିଲୁଆ–ଗଧିଆଙ୍କ ମାଉଁସ ଖାଇ ମଲେ। ଏସବୁ କଣ ହେଉଛି କହିଲ?

ମୋ ମୁହଁରୁ ହସ ଉଭେଇ ଗଲା। ଡକ୍ଟର ଦାଶ ଟିକିଏ ଚୁପ ରହି ପୁଣି ଆରମ୍ଭ କଲେ – ଏଥର ତାଙ୍କ କଣ୍ଠରୁ ବିଷାଦ ଯାଇ କ୍ରୋଧ ଓ ବିରକ୍ତ ତା' ସ୍ଥାନ ଅଧିକାର କଲା। ସେ କହିଲେ–

ତୁମେ ସବୁ ମନଇଚ୍ଛା ଜନ୍ମ କରି ବଂଶ ବଢ଼େଇ ଚାଲିଛ। ତୁମକୁ ଜାଗା ଅଣ୍ଟୁ ନାହିଁ, ଖାଦ୍ୟ ଅଣ୍ଟୁ ନାହିଁ। ଯା ବୋଲି ତୁମେ ଅନ୍ୟସବୁ ଜନ୍ତୁଜନ୍ତାଙ୍କ ବଂଶ ଲୋପ କରିବ? ଏକା ତୁମେଇ ରହିବ ଏ ପୃଥିବୀରେ? ତୁମେ ଜଳ, ସ୍ଥଳ ଆକାଶ ସବୁ ମାଡ଼ି ବସିବ? ଆଉ କାହାକୁ ରଖେଇ ଦେବନାହିଁ? କାହିଁକି ତୁମେ କିଏ କି? ପ୍ରକୃତିର ସମସ୍ତେ ସନ୍ତାନ। ସମସ୍ତେ ଏଠି ବାଣ୍ଟି କୁଣ୍ଟି ରହିବେ। ମିଶାମିଶି ରହିବେ। କିନ୍ତୁ କି ଦୁଃଖର କଥା ଏ?

ଆମ ପିଲାଦିନେ ଆମ ଗାଁର ସେଇସବୁ ଗଛଲଟାଙ୍କର ନାଁ ମଧ ଲୁଚିଗଲାଣି। ଗିଲ, କାଇଁଚ, ଉଦୁମ୍ବର, ପଳାଶ, ଚାଉଳଧୂଆ, ଇତ୍ୟାଦି କେତେ ଗଛଙ୍କର ବଂଶ ଲୋପ ହୋଇଗଲାଣି। ଆମ୍ବ ତୋଟା, ପଣସ ତୋଟା, ପୋଲାଙ୍ଗ ବଣ ଆଉ ନାହିଁ। ଗୋରୁଙ୍କ ଚରିବାଲାଗି ମଧ ଆଉ ନାହିଁ। ଯେତେସବୁ ବଡ଼ ବଡ଼ ବର, ଅଶ୍ୱତ୍ଥ, କଦମ୍ବ ଚାକୁଣ୍ଡା ଗଛ ଥିଲା, ସବୁ ହାଣି ଜାଳି ଦେଲେଣି। ଗାଁ ଆକାଶରେ ଶଙ୍ଖଚିଲଟିଏ ନାହିଁ। ଗାଁବାଡ଼ରେ ତୁମେ ଗୁଣ୍ଡୁଚି ମୂଷାଟିଏ ବି ଦେଖିବା ସହଜ ନୁହେଁ। ଗାଁ ଲାଗୁଚି ଖାଁ ଖାଁ, ରୁକ୍ଷ ଆଉ ନିର୍ମମ। ଗଛବୃକ୍ଷ ଆଉ ବିଭିନ୍ନ ଜୀବଜନ୍ତୁଙ୍କ

ସହିତ ଏକାଠି ମିଳିମିଶି ରହିଲେ ସିନା ମଣିଷ ଆନନ୍ଦ ପାଇବ। ତା'ଭିତର ପ୍ରକୃତିଟି ସହିତ ବାହ୍ୟ ପ୍ରକୃତିର ସାମଞ୍ଜସ୍ୟ ଆଉ ସଙ୍ଗତି ରହିବ। ତେବେ ସିନା ଯାଇ ମଣିଷର ଚେତନା ହେବ ସୁନ୍ଦର ଆଉ ଉଦାର ?...

ସେ ଦିନ ଡକ୍ଟର ଦାଶଙ୍କ ବିଷାଦ, କ୍ରୋଧ ଓ ବିରକ୍ତିର କାରଣ ବୁଝିପାରିଥିଲି ଓ ସେହିଦିନୁଁ ମୁଁ ଆଜି ପର୍ଯ୍ୟନ୍ତ ସେହି ସମସ୍ୟାରେ ସତକୁ ସତ ଘାରି ହେଉଛି। ହେଉ ତ ସେ ଦିନ ଭୁବନେଶ୍ୱର ସୂଚନା ଭବନରେ ''ପ୍ରକୃତି ଓ ବନ୍ୟ ସଂରକ୍ଷଣ'' ସମାଜ, ତରଫରୁ ଅରଣ୍ୟ ଓ ଆରଣ୍ୟକ ଜୀବଜନ୍ତୁମାନଙ୍କ ସଂରକ୍ଷଣ ଉପଲକ୍ଷେ ଗୋଟିଏ ସଭା ହୋଇଥିଲା। ଉଦ୍‌ଘାଟନ କରିଥିଲେ ଖୋଦ ମୁଖ୍ୟମନ୍ତ୍ରୀ। ଡଃ ବସନ୍ତକୁମାର ବେହୁରା ପ୍ରମୁଖ ପ୍ରାଣୀ ଓ ଅରଣ୍ୟବିଜ୍ଞାନୀମାନେ ବନ ଓ ବନ୍ୟଜନ୍ତୁମାନଙ୍କର ମଣିଷ ଜୀବନରେ ସ୍ଥାନ ଓ ସେମାନଙ୍କର ସଂରକ୍ଷଣ ସମ୍ବନ୍ଧେ ଖୁବ ଜ୍ଞାନଗର୍ଭକ ଆଲୋଚନାମାନ ମଧ୍ୟ କରିଥିଲେ। ବନ ଓ ପ୍ରାଣୀ ବନ୍ୟଜନ୍ତୁ ଓ ଅରଣ୍ୟ ସମ୍ବନ୍ଧୀୟ ଚଳଚ୍ଚିତ୍ର ମଧ୍ୟ ଦେଖା ଯାଇଥିଲା। ବନ ଓ ପ୍ରାଣୀ ସମ୍ବନ୍ଧୀୟ ବହୁ ଚିତ୍ର ଓ ତଥ୍ୟସମ୍ବଳିତ ଅନେକ ମୂଲ୍ୟବାନ ପୁସ୍ତକ ପ୍ରଦର୍ଶନୀ ମଧ୍ୟ ହୋଇଥିଲା। ସରକାର ଓଡ଼ିଶାରେ ନୂତନ ଅରଣ୍ୟ ସୃଷ୍ଟି କରିବା ଦିଗରେ ଓ ଜନ୍ତୁ ସଂରକ୍ଷଣ ଦିଗରେ କି ଯୋଜନାମାନ କରିଛନ୍ତି ତାର ମଧ୍ୟ ବିବରଣୀ ସେଠି ଶୁଣିବାକୁ ମିଳିଲା।

ଏ ସବୁ ଠିକ୍ ଅଛି। ମାତ୍ର ଏତିକିରେ କଣ ହେବ ? କେବଳ ବିଧିରକ୍ଷା ଲାଗି ବନ୍ୟଜନ୍ତୁ ସଂରକ୍ଷଣ ସପ୍ତାହ ପାଳନ କରି ସୂଚନାଭବନରେ ଏକ ଭବ୍ୟସଭା କରି ବକ୍ତୃତା ଦେଇଦେଲେ ହେବ ନାହିଁ। ଅସଲ କଥା ହେଲା— ବିଭିନ୍ନ ଉପାୟରେ ସାରା ରାଜ୍ୟରେ ବନ ଓ ଜୀବଜନ୍ତୁଙ୍କ ପ୍ରତି ମଣିଷର ମନୋଭାବରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣିବା ଦିଗରେ ସରକାର ଓ ପ୍ରକୃତିପ୍ରେମୀମାନଙ୍କ ତରଫରୁ ରୀତମତ ଆନ୍ଦୋଳନ ହେବା ଦରକାର। ବୃକ୍ଷଲତା ଓ ଜୀବଜନ୍ତୁଙ୍କ ସହିତ ଆମର ସମ୍ପର୍କ ଓ ସେମାନଙ୍କ ପ୍ରତି ଆମର କର୍ତ୍ତବ୍ୟ କଣ, ସେ ସମ୍ବନ୍ଧେ ଯଦି ଏକ ସାମୂହିକ ଜନଜାଗରଣ ସୃଷ୍ଟି କରା ନଯାଏ , ତେବେ ପାରିବେଶିକ ଭାରସାମ୍ୟ ଅଭାବରେ ମନୁଷ୍ୟ ସମାଜ ଖୁବ୍ ନିକଟରେ ଘୋର ବିପର୍ଯ୍ୟୟର ସମ୍ମୁଖୀନ ହେବ, ଏଥିରେ ସନ୍ଦେହ ନାହିଁ।

**

# ପୁଅ ହେଲେ ଥାଉ–
# ଝିଅ ହେଲେ ଯାଉ..

୨୩।୯।୮୨

ଶୁଣାଯାଉଛି ଯେ, ଦିଲ୍ଲୀ, ଅମୃତସର, ବମ୍ବେ, କାନପୁର ଓ ମିରଟ ଆଦି ବିଖ୍ୟାତ ନଗରମାନଙ୍କରେ ବହୁ ଉଚ୍ଚଶିକ୍ଷିତ ଓ ମଧ୍ୟବିତ୍ତ ସମାଜରେ ଦମ୍ପତି ମାନଙ୍କର ଗୋଟିଏ ଝୁଙ୍କ ଉଠିଛି ଯେ, ସେମାନେ କେବଳ ପୁତ୍ରସନ୍ତାନ ଜନ୍ମ କରିବେ। ଗର୍ଭ ଭିତରେ କନ୍ୟାସନ୍ତାନ ବଢୁଥିବାର ଜାଣିଲେ ସେମାନେ ଡାକ୍ତରଙ୍କ ସାହାଯ୍ୟରେ ସେହି ଗର୍ଭକୁ ନଷ୍ଟକରି ଦେଉଛନ୍ତି। ଗର୍ଭ ଭିତରେ ପୁତ୍ର କି କନ୍ୟା ସନ୍ତାନ ବଢୁଛି ତାହା ଜାଣିବା ଲାଗି ମଧ୍ୟ ବୈଜ୍ଞାନିକ ପଦ୍ଧତି ବାହାରିଲାଣି – ଓ କେତେକ ଡାକ୍ତର ଏହି ବ୍ୟବସାୟ କରି ବେଶ୍ ଟଙ୍କା ଉପାର୍ଜନ କରୁଛନ୍ତି।

ଦିଲ୍ଲୀ ପ୍ରତିଷ୍ଠାନରେ ପ୍ରଥମେ ଏହାର ପରୀକ୍ଷା ହେଲା। ଭ୍ରୁଣ ଯେଉଁ ତରଳ ପଦାର୍ଥ ଭିତରେ ଥାଏ, ସେହି ତରଳ ପଦାର୍ଥକୁ ବାହାର କରି ଡାକ୍ତରମାନେ ସେଥିରୁ ଭ୍ରୁଣଟିର ଦୋଷଗୁଡ଼ିକ ପରୀକ୍ଷା କଲେ। ଏଥିରୁ ଅନ୍ତତଃ ପଚାଶଟି ଗୁରୁତର ରୋଗର ସନ୍ଧାନ ମିଳିପାରେ – ଯାହା କି ପିଲା ଜନ୍ମ ହେବା ପରେ ଭୋଗିବାକୁ ବାଧ୍ୟ। ଏହି ପରୀକ୍ଷା ଭ୍ରୁଣଟିର ଲିଙ୍ଗ ମଧ୍ୟ ଜଣାପଡ଼ିଗଲା।

ଅମୃତସରର ନବଭଣ୍ଡାରୀ ହାସପାତାଲର ଡକ୍ଟର ପୃଥପାଲ ସିଂହ ଭଣ୍ଡାରୀ ଏବଂ ତାଙ୍କର ଗାଇନା କେଲୋଜିଷ୍ଟ ଡାକ୍ତର ପତ୍ନୀ କାନନ ଭଣ୍ଡାରୀ ପ୍ରଥମେ ବିଜ୍ଞାପନ ଦେଲେ ଯେ ଯେଉଁ ଦମ୍ପତିମାନେ କନ୍ୟା ସନ୍ତାନ ଚାହାନ୍ତି ନାହିଁ – ସେମାନେ ଆମ ହାସପାତାଲକୁ ଆସନ୍ତୁ। ଆମେ ଗର୍ଭ ପରୀକ୍ଷା କରି ତାର ବ୍ୟବସ୍ଥା କରିଦେବୁ। ତା'ପରେ ବହୁ ସଂଖ୍ୟକ କନ୍ୟା-ଜନ୍ମ-ଭୟଗ୍ରସ୍ତ ଦମ୍ପତି ତାଙ୍କ ହାସପାତାଲକୁ ଯାଇ ଗର୍ଭ ନଷ୍ଟକଲେ ଓ ତଦ୍ୱାରା ଡାକ୍ତର ଦ ପ୍ରଚୁର ଅର୍ଥ ଉପାର୍ଜନ କଲେ। ତା'ପରେ ଏହି ବ୍ୟବସାୟର ପ୍ରସାର ଅନ୍ୟ ସବୁ ବଡ଼ ସହରକୁ ବ୍ୟାପିଗଲା। ଏବଂ "ପରିବାର ନିୟନ୍ତ୍ରଣ ଉଦ୍ଦେଶ୍ୟରେ ଗର୍ଭପାତ" ବ୍ୟପଦେଶରେ କନ୍ୟାଭ୍ରୁଣ ନିଧନ ଯଜ୍ଞ ବ୍ୟାପିବାକୁ ଆରମ୍ଭ କଲା।

କନ୍ୟାସନ୍ତାନ ଜନ୍ମ ପ୍ରତି ଏହି ଉତ୍କଟ ବିରାଗର ମୁଖ୍ୟ କାରଣ ହେଲା– ସେ ବଡ଼ ହେଲେ ତାର ବିବାହ ସମସ୍ୟା। ଆଜିକାଲି ମୋଟା ଯୌତୁକ ନ ଦେଇପାରିଲେ

ଝିଅଟିର ବିବାହ ଅସମ୍ଭବ। ଯଦି କୌଣସି ପ୍ରକାରେ ଝିଅଟି ବିବାହ କରେ ଏପରିକି ପ୍ରେମବିବାହ ମଧ୍ୟ କରେ; ତା'ହେଲେ ବି ତାକୁ ତାର ସ୍ୱାମୀ ବା ଶ୍ୱଶୁର ଘରେ ଆଜୀବନ ଏହି ମନୋମତ ଯୌତୁକ ନ ଆଣି ପାରିବାର ଗ୍ଲାନି ଓ ଅତ୍ୟାଚାର ଭିତରେ କଟିବାକୁ ପଡ଼ିବ। ତେଣୁ ଦମ୍ପତିମାନେ ଭାବୁଛନ୍ତି – ଡାକ୍ତରଙ୍କୁ ବର୍ତ୍ତମାନ ପାଞ୍ଚଶ' ଟଙ୍କା ସଲାମୀ ଦେଇ ସେଇ ଗର୍ଭାଶୟ ଭିତରେ ତାକୁ ଖତମ ନ କଲେ, ଭବିଷ୍ୟତରେ ପୁଣି ତା' ପାଇଁ କାହା ଗୋଡ଼ତଳେ ପଡ଼ି ଲକ୍ଷେ ଟଙ୍କା ସଲାମୀ ଦେବାକୁ ପଡ଼ିବ। ଏହାଛଡ଼ା ବି ଝିଅଟି ବଡ଼ ହେଲା ମାତ୍ରେ ତାର ଇଜ୍ଜତ ବା ମର୍ଯ୍ୟାଦାକୁ ରକ୍ଷାକରିବା ଆଜିକାଲି ଯୁଗରେ ପିତାମାତାଙ୍କ ପକ୍ଷରେ ଆଉ ସମ୍ଭବ ହେଉନାହିଁ। ଅନ୍ୟ ପକ୍ଷରେ ପୁଣି ଝିଅଟିକୁ ପାଠ ନ ପଢ଼ାଇ ଯଦି ମୂର୍ଖ ରଖାଯାଉଛି ତା' ହେଲେ ତାର ଭବିଷ୍ୟତ ଭରଣପୋଷଣ ସମସ୍ୟା କିଏ ସମାଧାନ କରିବ? ପୁଣି ତାକୁ ଯଦି ପୁଅ ସାଙ୍ଗରେ ସମାନ ଭାବେ ଉଚ୍ଚଶିକ୍ଷା ଦିଆଯାଉଛି, ତା'ହେଲେ ପିତା–ମାତା ସେ ଦିଗରେ ମୂଳରୁ ଖର୍ଚ୍ଚ କରିବେ ଅଥଚ ଝିଅଟି ଉପାର୍ଜନକ୍ଷମ ହେଲା ବେଳକୁ ତାର ଉପାର୍ଜନରୁ ପିତାମାତା ଅଂଶ ପାଇବେ ନାହିଁ। ତଦ୍ୱାରା ତାର ଶ୍ୱଶୁର ଘର ଉପକୃତ ହେବେ – ଅବଶ୍ୟ ସେ ଯଦି ବିବାହ କରେ। ମୋଟ ଉପରେ ଏହି ଦମ୍ପତିମାନଙ୍କର ଧାରଣା ହେଲା – ଯେତେ ସଂଖ୍ୟାରେ ପୁଅ ଜନ୍ମ ହେଲେ ହୁଅନ୍ତୁ– କିନ୍ତୁ ଝିଅଟିଏ ଜନ୍ମା ନ ହେଲେ ଭଲ। ସେଥିପାଇଁ ବୈଜ୍ଞାନିକ ପଦ୍ଧତିର ସାହାଯ୍ୟ ନେଇ ସେଇ ଗର୍ଭ ଭିତରୁ ତାର ଭ୍ରୂଣକୁ ନଷ୍ଟକରି ଦିଆଯିବାର ପ୍ରବଣତା ବର୍ତ୍ତମାନ ଅଧିକରୁ ଅଧିକ ହେଲାଣି। ଉଦ୍ଦେଶ୍ୟ ହେଲା –

ମୂଳୁଁ ମାଇଲେ ଯିବ ସରି
ଦେବଙ୍କ ସଙ୍ଗେ କିମ୍ବା କଳି?

ଝିଅଟିଏ ପ୍ରତି ଏ ପ୍ରକାର ମନୋଭାବ, ଏ ପ୍ରକାର ସିଦ୍ଧାନ୍ତ ଓ ଏପ୍ରକାର କାର୍ଯ୍ୟକ୍ରମ ବ୍ୟାପାର ଶୁଣି ଯେ କେହି ଜୀବନସଚେତନ ମାନବବାଦୀ ହୃଦୟ ନିଶ୍ଚୟ ନିରାଶ ଓ ଅବସନ୍ନ ବୋଧ କରିବ। ଅବଶ୍ୟ ଏଇ ମନୋଭାବ ଓ କାର୍ଯ୍ୟ ପ୍ରଣାଳୀ ବିରୋଧରେ ସେହି ସେହି ସ୍ଥାନରେ ନାରୀମାନଙ୍କ ତରଫରୁ ଆନ୍ଦୋଳନ ଆରମ୍ଭ ହୋଇଗଲାଣି ଏବଂ ଦେଶର ନାରୀସମାଜ ଏବଂ ନାରୀମାନଙ୍କ ପ୍ରତି ଚରମ ଅବିଚାର ଓ ଅପମାନ ବୋଲି ମନେକଲେଣି। ଏହା ନିଶ୍ଚୟ ଆଶା ଓ ଆଶ୍ୱାସନାର କଥା। କିନ୍ତୁ ଅସଲ କଥା ହେଲା – ଗର୍ଭ ଭିତରୁ କନ୍ୟାଭ୍ରୂଣଟିକୁ ନଷ୍ଟ କରିଦେବା ସିଦ୍ଧାନ୍ତ ତ କେବଳ ତାର ପିତା ନେଉନାହିଁ, ତାର ମାତା ମଧ୍ୟ ସେ ସିଦ୍ଧାନ୍ତରେ ଦସ୍ତଖତ କରୁଚି। ସବୁଠାରୁ ଦୁଃଖର କଥା ହେଲା – ମାଆଟିଏ ମଧ୍ୟ କିପରି ତାର ଗର୍ଭସ୍ଥ ଶିଶୁ ଭିତରେ ପୁଅ ଝିଅ ନେଇ ପାତର ଅନ୍ତର କରୁଛି? ଓ କନ୍ୟାଭ୍ରୂଣଟିକୁ ନଷ୍ଟ କରିଦେବା ପାଇଁ ସମ୍ମତି ଜଣାଉଛି?

କିନ୍ତୁ ଏଣେ ପୁଣି ଆଉ ଗୋଟିଏ କଥା ମଧ୍ୟ ଦେଖିବାକୁ ଅଛି ଆମ ସମାଜରେ। ଏପରିକି ବହୁ ଉଚ୍ଚ ଶିକ୍ଷିତ ଓ ପ୍ରତିଷ୍ଠିତ ପରିବାରରେ ମଧ୍ୟ ବାପାମାଆ ଉଭୟ ସନ୍ତାନମାନଙ୍କ ଭିତରେ ପୁଅ ଝିଅ ନେଇ ପାତରଅନ୍ତର ବ୍ୟବହାର ବଡ଼ ନିର୍ଲଜ ଓ ନିର୍ମମ ଭାବେ ଦେଖାଇଥାନ୍ତି। ସବୁ ଭଲ ଜିନିଷ ଆଗ ପୁଅମାନଙ୍କୁ ଖାଇବାକୁ ଦିଆଯିବ। ରୋଗ ବଇରାଗରେ ପୁଅର ଚିକିତ୍ସାରେ ଯେତେ ଅର୍ଥ ବ୍ୟୟ ହୋଇପାରେ କିନ୍ତୁ ଝିଅଟିଏ ରୋଗରେ ପଡ଼ିଲେ ସମାନ୍ୟ ଚେରମୂଳିକାରେ ଯଦି ଭଲ ହୋଇଗଲା ତେବେ ଭଲ। ପୁଅ–ଝିଅ ଉଭୟେ ସମାନ ଭାବେ ପାଠ ପଢୁଥିଲେ ବି ପରିବାରର ରୋଷେଇ ଠାରୁ ଆରମ୍ଭ କରି ଲୁଗା ସଫା ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ଝିଅକୁ ହିଁ କରିବା ପାଇଁ ପଡ଼ିବ। ଆମର ଅଧିକାଂଶ ପରିବାରରେ ପୁଅଙ୍କର ହିଁ ପ୍ରାଧାନ୍ୟ ବେଶି। ସମ୍ମାନ ବେଶି। ପରିବାରର ଭିତରେ ଝିଅର ସ୍ୱତନ୍ତ୍ର ରୁଚି ନାହିଁ–ସ୍ୱତନ୍ତ୍ର ମତ ନାହିଁ – ସ୍ୱତନ୍ତ୍ର ଅଧିକାର କଥା ବା କିଆଁ ଉଠୁଛି? ସମସ୍ତଙ୍କ ମନରେ ଓ ତୁଣ୍ଡରେ ସେଇ ଗୋଟିଏ କଥା – ଝିଅଟା ଆମର ନୁହଁ ସେ ପର ଘରକୁ ଯିବ।

ଏହାଛଡ଼ା ମଧ୍ୟ ଆମର ବହୁ ଉଚ୍ଚଶିକ୍ଷାପ୍ରାପ୍ତ ପଦସ୍ଥ ବ୍ୟକ୍ତିମାନେ ସମାଜରେ ଝିଅମାନଙ୍କର ସମସ୍ତ ପ୍ରକାରର କୃତିତ୍ୱ ଆଖିରେ ଦେଖି ମଧ୍ୟ ଅନ୍ଧ ଭଳି କିମ୍ବା ମୂଢ଼ ଅମାନିଆ ପଣରେ କହିବାର ଶୁଣାଯାଏ ଯେ ସ୍ତ୍ରୀଲୋକଗୁଡ଼ାଙ୍କର ବୁଦ୍ଧି କେତେ? ଆମ ଅଧିକାଂଶ ପୁରୁଷଙ୍କ ଧାରଣା ହେଲା – ସ୍ତ୍ରୀଲୋକ କେବଳ ପୁରୁଷର ଯୌନ–କାମନା ଚରିତାର୍ଥ କରିବାକୁ, ଛୁଆ ଜନ୍ମ କରିବାକୁ ଓ ଘରେ ରନ୍ଧାରନ୍ଧି ସଫାସଫି କରିବାକୁ ଜନ୍ମ ହୋଇଛି। ତାର ଆଉ ସ୍ୱତନ୍ତ୍ର ମୂଲ୍ୟ ନାହିଁ। ସ୍ତ୍ରୀଲୋକର ମାନସିକ ବୁଦ୍ଧି ତ ନାହିଁ – ସେ ମଧ୍ୟ ଶାରୀରିକ ଦୃଷ୍ଟିରୁ ଅବଳା– ଏ ଧାରଣା ମଧ୍ୟ ବହୁ ପୁରୁଷଙ୍କର ରହିଛି।

ଶୋଚନୀୟ କଥା ହେଉଛି ଯେ ଆମେ ଆଜିପର୍ଯ୍ୟନ୍ତ ଏ ସମାଜକୁ ପୁରୁଷ ପ୍ରଧାନ କରି ରଖିଆସିଛୁ। ଏବଂ ନାରୀକୁ କେବଳ ପୁରୁଷର ଉପଯୋଗିତା ଦୃଷ୍ଟିରେ ବିଚାର କରି ବସିଛୁ। ସେଥିପାଇଁ ଆଜି ଗର୍ଭ ଭିତରୁ କନ୍ୟାର ଭ୍ରୁଣଟିକୁ ନଷ୍ଟ କରିଦେବା ଭଳି ଜଘନ୍ୟ ପାପାଚାର କରିବାରେ ପ୍ରବୃତ୍ତ ହୋଇଛୁ।

ନାରୀକୁ ପୁରୁଷର ଉପଯୋଗିତା ଦୃଷ୍ଟିରୁ ବିଚାର ନ କରି ମନୁଷ୍ୟ ଜୀବନର ସର୍ବାଙ୍ଗୀନ ଦୃଷ୍ଟିରୁ ବିଚାର କରିବା ଉଚିତ। ଜୀବନଧର୍ମ ଦୃଷ୍ଟିରୁ ବିଚାର କରିବା ଉଚିତ। ମଣିଷ ଜୀବନର ସୃଷ୍ଟି, ସଂରକ୍ଷା, ବିକାଶ, ଓ ଧର୍ମସାଧନ, ଦିଗରେ ନାରୀର ଭୂମିକା କେତେ ଉଚ୍ଚରେ ତାହା ଏହି ପାପାଚାରୀ ନରାଧମ ନରକାଭିଳାଷୀ କିଂପୁରୁଷମାନେ ଯଦି ଖୁବ୍‌ଶୀଘ୍ର ନ ବୁଝନ୍ତି, ତେବେ ସମଗ୍ର ମାନବ ଜାତି ବ୍ରହ୍ମ ଅଭିଶାପରେ ଆକସ୍ମିକ ଭାବେ ଲୋପ ପାଇ ଯିବ। ତାହା ପାରମାଣିବିକ ଯୁଦ୍ଧ

ଦ୍ୱାରା ହେଉ – ଅଥବା ପ୍ରାକୃତିକ ବିପର୍ଯ୍ୟୟର ପ୍ରଳୟ ଦ୍ୱାରା ହେଉ ଅଥବା ଭୟଙ୍କର ମହାମାରୀ ଦ୍ୱାରା ହେଉ।

ନାରୀନିର୍ଯାତନା ବର୍ତ୍ତମାନ ତାର ଚରମ ପର୍ଯ୍ୟାୟକୁ ଆସିଗଲା। ଅପମାନିତା, ନିର୍ଯ୍ୟାତିତା ମା' ମାନଙ୍କର, କନ୍ୟାମାନଙ୍କର ବଧୂମାନଙ୍କର ଉଷ୍ମ ଲୋତକର ମହାପ୍ଲାବନରେ ସାରା ପୃଥିବୀ ଭବୁଟବୁ ହୋଇ ମିଳାଇଯିବ। ବିଶ୍ୱମାତା ପ୍ରକୃତିଦେବୀ ଗର୍ଭ ସମ୍ଭୂତ ଗୋଟାଏ ଗୋଟାଏ ପୃଥିବୀକୁ ସେ ନିମିଷକ ଭିତରେ ଅବଲୀଳାରେ ପୁନଶ୍ଚ ପାଟିଭିତରକୁ ଶୋଷାଡ଼ି ନେଇ ଆପଣାର ବିଶ୍ୱଗର୍ଭ ଭିତରକୁ ଠେଲି ଦେଇପାରନ୍ତି।

ପୁରୁଷ–ସମାଜ ଏହି ପାଷାଣ୍ଡ ପଣିଆ ଆଉ ବେଶିଦିନ ପ୍ରକୃତି ମାତା ସହିପାରିବେ ନାହିଁ। ପୃଥିବୀରେ ଯଦି କାପୁରୁଷଙ୍କ ସଂଖ୍ୟା ଓ କୁପୁରୁଷ ପ୍ରବୃତ୍ତି ଏହିପରି ଦିନକୁ ଦିନ ବଢ଼ିଚାଲେ– ତେବେ ଏହାର ଧ୍ୱଂସସାଧନ ନିମନ୍ତେ ନିଶ୍ଚୟ ଦିନେ –

''ଭୂମିକମ୍ପ ହେବ ଧରଣୀ ଫାଟିବ
ଉଠିବେ ସହସ୍ରଭୁଜା।''

**

# "ବ୍ଲାସ୍‌ଫେମି"ର ଯୁଗ (?)

୨୬।୮।୮୨

'ବ୍ଲାସଫେମି' – ଏହି ଇଂରାଜୀ ଶବ୍ଦଟିର ମୂଳ ଅର୍ଥ ହେଲା – ସଂପୂର୍ଣ୍ଣ ଇଚ୍ଛାକୃତ ଭାବେ କୁତ୍ସିତ ଅଶ୍ଳୀଳ ଓ ମର୍ଯ୍ୟାଦାହୀନ ଭାଷାରେ ଈଶ୍ୱରଙ୍କର ନିନ୍ଦା କରିବା। କିନ୍ତୁ କାଳକ୍ରମେ ଏହି ଶବ୍ଦଟିର ଅର୍ଥବ୍ୟାପ୍ତି ଘଟିଲା ଏବଂ ଏହା ଯେ କୌଣସି ପ୍ରକାର ଅମର୍ଯ୍ୟାଦାଜନକ ବାକ୍ୟ ପ୍ରତି ପ୍ରଯୁକ୍ତ ହେଲା। କୌଣସି ବିଶିଷ୍ଟ ବା ମହତବ୍ୟକ୍ତି ଅଥବା ଏକ ବିଶିଷ୍ଟ ମତାଦର୍ଶ ବିରୋଧରେ ଯଦି ଇଚ୍ଛାକରି ଅଶାଳୀନ ଭାବେ ମର୍ଯ୍ୟାଦା ଲଙ୍ଘନ ପୂର୍ବକ କିଛି ନିନ୍ଦା ବାକ୍ୟ କୁହାଯାଏ, ତେବେ ତାକୁ ମଧ୍ୟ ବ୍ଲାସ୍‌ଫେମି କୁହାଗଲା ଏବଂ ସବୁ କ୍ଷେତ୍ରରେ ଯେ କୌଣସି ପ୍ରକାର ବ୍ଲାସ୍‌ଫେମିକୁ ଏକ ନୀଚଶ୍ରେଣୀୟ ହୀନକାର୍ଯ୍ୟ ବୋଲି ମଧ୍ୟ ନିନ୍ଦା କରାଗଲା। ବ୍ଲାସପେମି କରୁଥିବା ଲୋକମାନଙ୍କୁ ଇତର ଶ୍ରେଣୀର ଲୋକ ବୋଲି ମଧ୍ୟ ଗଣ୍ୟ କରାଗଲା। ଶାଳଗ୍ରାମ ବା ଶିବଲିଙ୍ଗ ପୂଜା କରୁଥିବା ଲୋକଙ୍କ ଆଗରେ ଏହା କେବଳ ପଥର ମାତ୍ର ବୋଲି କହିବା ଯେମିତି ବ୍ଲାସଫେମି, ମହାତ୍ମାଗାନ୍ଧୀଙ୍କ ସମ୍ବନ୍ଧେ ସତ୍ୟକଥା ପ୍ରକାଶ କରିବା ବାହାନାରେ ଇତର ଭାଷାରେ ତାଙ୍କ ଯୌନ–ଜୀବନ ବଖାଣିବା ସେମିତି ମଧ୍ୟ ବ୍ଲାସ୍‌ଫେମି। ସତ୍ୟ ସମ୍ବାଦ ପରିବେଷଣର ବ୍ୟପଦେଶରେ କୌଣସି ବିଶିଷ୍ଟ ବ୍ୟକ୍ତିଙ୍କର ଘରୋଇ ଜୀବନର କଥାକୁ ଆଣି ଇତର ଭାଷାରେ ସମ୍ବାଦଟିଏ ବନାଇ ପ୍ରକାଶ କରି ତାଙ୍କର କୁସାବାଦ କରିବା ମଧ୍ୟ ତଦ୍ରୂପ ବ୍ଲାସ୍‌ଫେମି।

ଆମ ଭାରତୀୟ ଭାଷାରେ 'ମର୍ଯ୍ୟାଦା' ଶବ୍ଦଟି ସଭ୍ୟ ଓ ମାର୍ଜିତ ବ୍ୟକ୍ତିମାନଙ୍କର ଲାଗି ଅତି ଶ୍ରେୟ ଓ ଆଦରଣୀୟ ଶବ୍ଦ। ଶିଷ୍ଟ, ଭଦ୍ର, ଶାଳୀନ ଓ ସଂସ୍କୃତିବନ୍ତ ବ୍ୟକ୍ତିମାନେ ନିଜର ମର୍ଯ୍ୟାଦା ପ୍ରତି ଯେପରି ସଚେତନ ଅନ୍ୟର ମର୍ଯ୍ୟାଦାରକ୍ଷା କରିବା ପ୍ରତି ମଧ୍ୟ ତଦ୍ରୂପ ସଚେତନ। ଆମେ ଅବତାର ପୁରୁଷ ଶ୍ରୀରାମଚନ୍ଦ୍ରଙ୍କୁ 'ମର୍ଯ୍ୟାଦା ପୁରୁଷୋତ୍ତମ' ବୋଲି ଆଖ୍ୟାତ କରିଥାଉ। କାରଣ ତାଙ୍କ ଜୀବନରେ ଏହି ମର୍ଯ୍ୟାଦାବୋଧ ଓ ମର୍ଯ୍ୟାଦା ପ୍ରଦର୍ଶନ ଖୁବ ସ୍ପଷ୍ଟ ଓ ଚୂଡ଼ାନ୍ତ ଭାବେ ପ୍ରକାଶ ପାଇଥିଲା। ସମାଜରେ ମର୍ଯ୍ୟାଦାହୀନ ବାକ୍ୟ ଓ କ୍ରିୟାକଳାପକୁ ଖୁବ୍ ନିନ୍ଦା କରାଯାଉଥିଲା ଏବଂ ଯେତେ ଗୁଣବାନ୍ ବ୍ୟକ୍ତି ହେଲେ ବି ସେ ଯଦି ବାକ୍ୟପ୍ରୟୋଗ ଓ ବ୍ୟବହାର ପ୍ରଦର୍ଶନରେ ମର୍ଯ୍ୟାଦାହୀନ ହୁଅନ୍ତି, ତେବେ ସମାଜରେ ତାଙ୍କୁ ପ୍ରତିଷ୍ଠା ମିଳେନାହିଁ।

କହିବା ବାହୁଲ୍ୟ ଯେ, ଆମର ବର୍ତ୍ତମାନ ସମାଜରେ ଗୁଣବାନ ଓ ପ୍ରତିଭାବାନ ବ୍ୟକ୍ତିଙ୍କର ଅଭାବ ନାହିଁ। କିନ୍ତୁ ମର୍ଯ୍ୟାଦାବନ୍ତ ଲୋକଙ୍କର ଘୋର ଅଭାବ ଏବଂ

ଏ ଅଭାବ ବଢ଼ିବଢ଼ି ଯାଉଛି। କେହି କାହାର ମର୍ଯ୍ୟାଦା ରକ୍ଷା କରିବାରେ ସଚେତନ ବା ସଚେଷ୍ଟ ନୁହନ୍ତି। କାହାର କାହା ମର୍ଯ୍ୟାଦା ପ୍ରତି ଖାତିର ହିଁ ନାହିଁ। ଫଳରେ ଅନ୍ୟର ମର୍ଯ୍ୟାଦା ନଷ୍ଟ କରୁ କରୁ ଆମେ ଆମ ନିଜ ମର୍ଯ୍ୟାଦାକୁ ବି ନଷ୍ଟ କରିବସୁ। କିନ୍ତୁ ଏଇ ସାମାନ୍ୟ କଥାଟିକୁ ଆମେ ଜାଣିପାରୁ ନାହିଁ।

ଆମେ ସମାଜରେ ବିଭିନ୍ନ ସମ୍ପର୍କ ଭିତରେ ରହିଛେ। ଆମର ପ୍ରତ୍ୟେକର ରୁଚି, ନୀତି, ଆଦର୍ଶ ଓ କର୍ମପନ୍ଥାରେ ବିଭେଦ ରହିବ, ପାର୍ଥକ୍ୟ ବି ରହିବ। ଆମେ ମଧ ଆବଶ୍ୟକ ପଡ଼ିଲେ ଅନ୍ୟ ବ୍ୟକ୍ତି ସହିତ ସଂଗ୍ରାମ କରିବା। ଗୋଟିଏ ମତବାଦ ବା ଆଦର୍ଶ ବିରୁଦ୍ଧରେ ଆମର ମତବ୍ୟକ୍ତ କରିବା। ଏହା ମଧ ହୋଇପାରେ ଯେ ସମାଜର ଜଣେ ବିଶିଷ୍ଟ ବ୍ୟକ୍ତିଙ୍କ ନୀତି, କାର୍ଯ୍ୟ ବା ମତବାଦ ବିରୋଧରେ ଆମକୁ ଠିଆହେବାକୁ ପଡ଼ିବ—ଏପରି କି ବିଦ୍ରୋହ ବା ବିପ୍ଳବ ମଧ କରିବାକୁ ପଡ଼ିବ। ରାଜନୀତି, ସାହିତ୍ୟ, ସଂସ୍କୃତି ଶାସନ ବା ପ୍ରଶାସନ କ୍ଷେତ୍ରରେ ଉଚ୍ଚାସନରେ ଅଧିରୂଢ଼ କୌଣସି ବ୍ୟକ୍ତିବିଶେଷଙ୍କ କାର୍ଯ୍ୟାକାର୍ଯ୍ୟ ସମ୍ବନ୍ଧେ ଆମକୁ ସ୍ପଷ୍ଟ ସମାଲୋଚନା କରିବାକୁ ପଡ଼ିପାରେ – ଏପରି କି ତାଙ୍କର ନିନ୍ଦା ମଧ କରିବାକୁ ପଡ଼ିପାରେ। କିନ୍ତୁ ଯାହାକଲେ ବି, ବ୍ଲାସଫେମି ବା ମର୍ଯ୍ୟାଦା ଲଙ୍ଘନ କରି କିଛି କହିବା ବା କରିବା ଆମ ଶିଷ୍ଟତା ଓ ଶାଳୀନତାର ନିଶ୍ଚୟ ବାଧକ ହେବ। ଆମେ ଆମ ବାପା ମାଆ ଓ ବନ୍ଧୁ-ସ୍ୱଜନଙ୍କର ମଧ ବହୁ କଥାରେ ବିରୋଧ କରିପାରୁ। କିନ୍ତୁ ସୌଜନ୍ୟ ହରାଇ କିମ୍ବା ମର୍ଯ୍ୟାଦା ଲଘନ କରି ନୁହେଁ। ମର୍ଯ୍ୟାଦା ଲଘନକାରୀ ଜାଣିପାରେ ନାହିଁ ଯେ ସେ ଅନ୍ୟର ମର୍ଯ୍ୟାଦା ଲଘନ କରିବା ମାତ୍ରେ ଇ ନିଜର ଆତ୍ମମର୍ଯ୍ୟାଦାଟି ତା'ରି ଦ୍ୱାରା ଛାଏଁ ଛାଏଁ ଲଘିତ ହୋଇଯାଉଛି।

ବ୍ଲାସଫେମି ବା ମର୍ଯ୍ୟାଦା ଲଘନର ବହୁ ଉଦାହରଣ ଆମେ ଆମର ବର୍ତ୍ତମାନର ସାମାଜିକ ଜୀବନରେ ପ୍ରତିମୂହୂର୍ତ୍ତରେ ଦେଖିବାକୁ ପାଇବା – ଯଦି ବ୍ଲାସଫେମି କାହାକୁ କୁହାଯାଏ, ସେ ସମ୍ବନ୍ଧେ ଆମର ପରିଷ୍କାର ଧାରଣାଟି ଥିବ। ବେଳେ ବେଳେ ମର୍ଯ୍ୟାଦାହୀନ ରାଜନୈତିକ ଦଳ ଦ୍ୱାରା କୌଣସି ଦେଶର ବିଗତ ପ୍ରଧାନମନ୍ତ୍ରୀ ବା ମୁଖ୍ୟମନ୍ତ୍ରୀ ଏହି ବ୍ଲାସଫେମିର ଶିକାର ହୋଇଥାନ୍ତି। ବେଳେ ବେଳେ ନିଜକୁ ଖୁବ୍ ପ୍ରତିଭାବାନ ମନେ କରୁଥିବା ଲେଖକ ଓ ଶିଳ୍ପୀମାନେ ଅନ୍ୟ ପ୍ରତିଷ୍ଠିତ ଲେଖକ, ଶିଳ୍ପୀମାନଙ୍କ ବିରୋଧରେ ଏହି ବ୍ଲାସଫେମି କରିଥାନ୍ତି। ବେଳେ ବେଳେ ଗୋଟିଏ ଧର୍ମ ସଂପ୍ରଦାୟର ଖଳ ଓ ଉଗ୍ର ପ୍ରଚାରକଗଣ ଅନ୍ୟ ଧର୍ମ ସଂପ୍ରଦାୟର ଆରାଧ୍ୟ ବା ତାଙ୍କ ଧର୍ମମତ ପ୍ରତି ଏହିଭଳି ବ୍ଲାସଫେମି କରିଥାନ୍ତି। ଛୋଟ ଉଦାହରଣଟିଏ ଦେଉଛି ଏବଂ ସେତିକିରେ ବକ୍ତବ୍ୟ ମଧ ସାଙ୍ଗ କରୁଛି।

ଗୋଟିଏ ମନ୍ଦିର ପ୍ରାଙ୍ଗଣରେ ରାମଚରିତ ମାନସ ପାରାୟଣ ହେଉଥାଏ। ତୁଳସୀ ଦାସଜୀଙ୍କ ରାମଚରିତ ମାନସ ମହାକାବ୍ୟରେ ଖୁବ୍ ଧୁରୀଣ ଓ ସୁଲଳିତକଣ୍ଠ

ଜଣେ ସୁବକ୍ତା ଶ୍ରୀରାମଚନ୍ଦ୍ରଙ୍କ ମହାନ ଚରିତ ଉପରେ ଭାଷଣ ଦେଉ ଦେଉ ହଠାତ ଶ୍ରୀକୃଷ୍ଣଙ୍କ ସଙ୍ଗେ ତାଙ୍କୁ ତୁଳନା କରି ବସିଲେ ନାନା ଉଦାହରଣ ଦେଇ। ସେଥିରୁ ଗୋଟିଏ ବଡ଼ ପ୍ରମାଣ ହେଲା ଶ୍ରୀରାମଚନ୍ଦ୍ର ତାଙ୍କ ଜୀବନରେ ଏକପତ୍ନୀବ୍ରତ ପାଳନ କରି ମନୁଷ୍ୟ ସମାଜକୁ ମହାନ ଆଦର୍ଶ ଦେଖାଇଛନ୍ତି। ମାତ୍ର ଶ୍ରୀକୃଷ୍ଣ ଷୋଳସହସ୍ରାଧିକ ନାରୀଙ୍କ ସହିତ ଲିପ୍ତଥିବାରୁ ସମାଜରେ ତାର କୁଫଳ ଫଳିଛି। ତେଣୁ ଶ୍ରୀକୃଷ୍ଣଙ୍କ ଅପେକ୍ଷା ଶ୍ରୀରାମଚନ୍ଦ୍ର ଅଧିକତର ଭଗବାନ ବା 'ଦିବ୍ୟସ୍ୱଭାବ'। (ସେ ଅବଶ୍ୟ ଇଂରାଜୀରେ କହିଥିଲେ ବେଟର ଗଡ୍ ବା ସୁପରିୟର ଗଡ୍।)

କିନ୍ତୁ ତୁଳନା ଏତିକିରେ ସରିଲା ନାହିଁ। ସେ ଅଯୋଧ୍ୟା ସହିତ ମଥୁରାର ତୁଳନା କଲେ ଏବଂ କହିଲେ "ମଥୁରା" ନଗରୀ ତୀର୍ଥ ଆଖ୍ୟା ପାଇଛି – କେବଳ ରାମଙ୍କ ଯୋଗୁଁ– କୃଷ୍ଣଙ୍କ ଯୋଗୁଁ ନୁହଁ। ଆପଣମାନେ ଦେଖନ୍ତୁ – "ମଥୁରା" ଶବ୍ଦରେ 'ରା' ଓ 'ମ' ଅକ୍ଷର ଦୁଇଟି ଅଛି କି ନାହିଁ? ଯଦି ସେହି ଦୁଇ ଅକ୍ଷର ସେଠୁ କାଢ଼ି ନିଆଯାଏ – ତେବେ ମଝିରେ କ'ଣ ରହିଲା? "ଥୁ" !!

ସୁଧୀବୃନ୍ଦ! ବ୍ଲାସ୍‌ଫେମି ବା ମର୍ଯ୍ୟାଦା ଉଲ୍ଲଘନର ଏହାଠାରୁ ବଳି ବେଟର ବା ସୁପରିୟର ଉଦାହରଣ ଆଉ ମୋ ପାଖରେ ନାହିଁ। ବକ୍ତା ମହାଶୟଙ୍କର ଏହି ଉକ୍ତିରୁ ବ୍ଲାସ୍‌ଫେମି କଣ ତା'ତ ବୁଝିହେବ – ତା' ସହିତ ଏହିଭଳି ବ୍ଲାସ୍‌ଫେମି କରୁଥିବା ବକ୍ତା ମହାଶୟଙ୍କର ପାଣ୍ଡିତ୍ୟ, ଜ୍ଞାନ, ଭକ୍ତିମତ୍ତା ଓ ଶାଳୀନତା ଓ ମର୍ଯ୍ୟାଦାବୋଧର ମଧ୍ୟ ସୁପରିଚୟ ମିଳିଯିବ ଏବଂ ଶେଷ କଥା ହେଲା – କୋଉ ଶ୍ରେଣୀରେ ଲୋକେ, ସେ ରାଜନୀତି କରୁଥାନ୍ତି ବା ସାହିତ୍ୟ ସଂସ୍କୃତ କରୁଥାନ୍ତି ବା ଧର୍ମାଚାର କରୁଥାନ୍ତି – ଏହି ବ୍ଲାସଫେମି କରନ୍ତି – ସେହି ଶ୍ରେଣୀଟିର ନୈତିକ ଓ ମନସ୍ତାତ୍ତ୍ୱିକ ପରିଚୟ ମଧ୍ୟ ଏଇ ଉଦାହରଣଟିରୁ ବେଶ୍ ମିଳିପାରିବ।



# ଶ୍ରୀଜଗନ୍ନାଥ ଓ ମାର୍ଜାର ଲୀଳା

୬।୮।୮୨

ସେଦିନ ସକାଳୁ ସମ୍ବାଦଟି ପଢ଼ିଲା ମାତ୍ରେ ମନ ଅସ୍ୱସ୍ତିରେ ବିଗିଡ଼ିଗଲା। ଘର ବଉଁଶଯାକ ଡକାଡ଼କି ହୋଇ ଆସି ଖବରଟି ପଢ଼ିଲେ ଏବଂ ସମସ୍ତେ ମୁହଁ ଶୁଖାଇ ଚୁପ୍‌ଚାପ ଠିଆ ହୋଇଗଲେ। କାହା ମୁହଁରୁ ପଦେ କଥା ବି ବାହାରିଲା ନାହିଁ। ହଠାତ୍ କେହି ଜଣେ "ଓଃ! କି ବୀଭତ୍ସ ବ୍ୟାପାର" କହି ଚଉକୀରେ ବସିପଡ଼ି ପୁଣି ଚୁପ୍ ହୋଇଗଲା। ଠିକ୍ ସେହି ସମୟରେ କୁଆଟିଏ କୁଆଡୁ ଅତର୍କରେ କା' କା' ଡାକି ଡାକିକା ଉଡ଼ି ଉଡ଼ି ଆସି ଆମ ଆଗରେ କୁଆଡ଼େ ଉଭାନ୍ ହୋଇଗଲା ଏବଂ ସେତିକି ବେଳକୁ ରାସ୍ତା ଉପରେ ଗୋଟାଏ ବୁଲା କୁକୁରକୁ କିଏ କଷି କରି ପାହାରେ ପିଟିଦେଲା କି କଣ, ସେ ପ୍ରାଣ ବିକଳରେ ମର୍ମାନ୍ତିକ ରଡ଼ି ଛାଡ଼ି ଛାଡ଼ିକା ରାସ୍ତା ଉପରେ ପଡ଼ିଯାଇ ଛଟପଟ ହେଲା।

ଶ୍ରାବଣ ମାସର ମେଘୁଆ ସକାଳଟି ମାଟି ହୋଇଗଲା। ଘର ବଉଁଶଯାକ ସମସ୍ତେ ଚାହା କପ୍‌ଟି ମାନ ଧରି ଦାଣ୍ଡ ବାରଣ୍ଡାରେ ଚୁପ୍ ଚାପ୍ ତଳକୁ ମୁହଁ ପୋତି ଯେଝା ଯେଝାର ଅସ୍ୱସ୍ତି ପ୍ରକାଶ କଲେ। ଇଃ! କି ବିରକ୍ତିକର ସମ୍ବାଦ!

କଣ କଥା? ବିରାଡ଼ିଟାଏ କୁଆଡ଼େ ଶ୍ରୀଜଗନ୍ନାଥଙ୍କ ରତ୍ନ ସିଂହାସନକୁ ଯାଇ ସେଠୁ ଶ୍ରୀଜଗନ୍ନାଥଙ୍କ ମୁଣ୍ଡ ଉପରେ ଚଢ଼ିଲା – ସେଠୁ ଡେଇଁଲା ମା' ସୁଭଦ୍ରାଙ୍କ ମୁଣ୍ଡ ଉପରକୁ – ଏବଂ ସେଠୁ ଡିଆଁ ମାରି ଯାଇ ବସିଲା ବଡ଼ଠାକୁର ଶ୍ରୀବଳଭଦ୍ରଙ୍କ ଉପରେ।

କି ଅଘଟଣ କଥା ଏ ଆମକୁ ଶୁଣାଇଲ ଅବଧାନେ! ବିରାଡ଼ିଟାଏ ଏତେ ବଡ଼ କୃତ୍ୟ କଲା – ପ୍ରଭୁଙ୍କ ଶ୍ରୀଅଙ୍ଗକୁ ନଖେଇ ନଖେଇ ଚଢ଼ିଲା। ପୁଣି ଶିର ଉପରେ ଯାଇ ବସିଲା। ସେଠି କଣ ପ୍ରଭୁଙ୍କ ପାଖେ କେହି ନ ଥିଲେ? ପୂଜକ ନଥିଲେ? ପଣ୍ଡା–ପଢ଼ିଆରୀ ନଥିଲେ? ଛତିଶା ନିଯୋଗରୁ ମାର୍ଜାର ଖୁଣ୍ଟିଆ ଆପଣେ ନଥିଲେ? ନା' ସମସ୍ତେ ଭାଙ୍ଗ ଭକ୍ତିରେ ବିଭୋଳ ହୋଇ ଏହି ମାର୍ଜାର କୃତିତ୍ୱ ଦେଖୁଥିଲେ? ଆମ ପିଲାଦିନୁଁ ଶ୍ରୀଜଗନ୍ନାଥଙ୍କ ସମ୍ପର୍କରେ ଏମିତି ଅଶ୍ଳୀଳ ଅସୁନ୍ଦର ଖବର ଆମେ କେବେ ଶୁଣିନାହୁଁ।

ଖବରଟି ସହିତ ପୁଣି ବାହାରିଲା ଯେ, ଏହା ବଡ଼ ଅଶୁଭ ସୂଚନା ବୋଲି ଆଗତ ଭବିଷ୍ୟଜ୍ଞାତାମାନେ କୁଆଡ଼େ କହୁଛନ୍ତି। ଆରେ ଯାଃ ଅବଧାନେ। ଆଉ ଆଜିକାଲି ଏ କଳିଯୁଗରେ ଶୁଭାଶୁଭ ବିଚାର କଥା କାହିଁକି ପଡ଼ିଛି? ଆଉ ଅଶୁଭ କଥା ବା କଣ ବାକି ଅଛି କି? କଣ ଦେଶରେ ଏ ବର୍ଷକ ଭିତରେ ଆଉ ଦୁଇକୋଟି ଲୋକ ଜନ୍ମ ହୋଇ ପଡ଼ିଲେ ଶୁଭ? ନା ଦୁଇକୋଟି ଏଥିରୁ ରୋଗ, ଦୁର୍ଘଟଣା ଓ ପ୍ରାକୃତିକ ବିପର୍ଯ୍ୟୟରେ ନାଶ ହୋଇଗଲେ ଅଶୁଭ? କେତେ ପୌଟି ଶସ୍ୟ ବନ୍ୟା—ବାତ୍ୟା—ମରୁଡ଼ିରେ ନଷ୍ଟ ହୋଇଗଲେ ଅଶୁଭ କହିବା? ଏକାକଥା ହେ ଭାଇନା! ଏକା କଥା।

ଶୁଭାଶୁଭ କଥା ଛାଡ଼ ହେ ଅବଧାନେ! ନୀଳଚକ୍ର ଉପରେ ଗ୍ରିଧିନୀଟାଏ ବସିଗଲେ, କି ବଡ଼ ଦେଉଳରୁ ପଥରଟାଏ ଖସିଲେ, କି ମନ୍ଦିର ବେଢ଼ା ଭିତର କୂଅ ଭିତରୁ ମୂର୍ଦ୍ଧାରଟିଏ ବାହାରି ପଡ଼ିଲେ, କି ନୀଳଚକ୍ରରୁ ପତାକାଟି ଉଡ଼ିଗଲେ ଦେଶ ଉପରେ ଅଶୁଭ କଥାଟାଏ କଣ ଘଟିଯିବ ବୋଲି ଭାବି ଛାନିଆ ହେବା ବେଳ ଆଉ ନାହିଁ। ସୋମୋଦ୍ର ମାଡ଼ି ଆସିବ ତ ଆସୁ—ମୋଗଲ ଗୋଳ ହେବ ତ ହେଉ—ବରଗୀ ହାଣିବେ ତ ହାଣନ୍ତୁ—ଆମେ ବାଡ଼ି ମୁହଁରେ ଯାଉ କି ଯୋଗ୍ନୀଙ୍କ ମୁହଁରେ ଯାଉ, କଥା ସେଠି ପଡ଼ି ନି ଅବଧାନେ!

କଥା ହେଉଛି—ଗୋଟାଏ ମହାନ ପରମ୍ପରାରେ ସମୃଦ୍ଧ ଓ ଶ୍ରୀସଂପନ୍ନ ଜାତି ଶହ ଶହ ବର୍ଷ ଧରି ତାର ସମସ୍ତ ସ୍ୱପ୍ନ, ଆଦର୍ଶ, ପ୍ରୀତି, ମୈତ୍ରୀ, ଭକ୍ତି, ପବିତ୍ରତା, ନୈତିକତା, ସୌନ୍ଦର୍ଯ୍ୟବୋଧ, ସଙ୍ଗତିଜ୍ଞାନ, ଔଚିତ୍ୟବୋଧ, ଶୃଙ୍ଖଳାବୋଧ, ଶାଳୀନତାବୋଧ, ଆଧାତ୍ମିକ ଅଭୀପ୍ସା, ସାଧନାସିଦ୍ଧି ଓ ଜୀବନାଦର୍ଶ ଉପରେ ଯେଉଁ ବିଶାଳ ମନ୍ଦିର ଗଢ଼ି ତୋଳିଛି ଓ ତା' ଭିତରେ ଯୋଉ ଦେବତାର ପ୍ରତିଷ୍ଠା କରିଛି ଏବଂ ସେଥିପାଇଁ ଯୋଉ ସବୁ ଆୟୋଜନ ଓ ବିଧିବ୍ୟବସ୍ଥା ଖଞ୍ଜି ରଖିଛି, ସେହି ସବୁକୁ ବିଚାରକୁ ନେଇ ଆଜି ଆମେ ଆମର ସର୍ବମାନ୍ୟ ସର୍ବୋଚ୍ଚ ସ୍ଥାପିତ ଜାତୀୟ ଠାକୁରଙ୍କ ସହିତ କିପରି ବ୍ୟବହାର କରୁଛୁ ଏବଂ ତାହା ଯଥାର୍ଥରେ ଆମ ଜାତୀୟ ଚେତନାର ଆରୋହ ପଥରେ କ୍ରମୋତ୍କର୍ଷ ପ୍ରମାଣ କରୁଛି ନା ଅବରୋହ ପଥରେ କ୍ରମଅପକର୍ଷ ପ୍ରମାଣ କରୁଛି—ତାହାହିଁ ଦେଖି ମନ ବେଶି ପୀଡ଼ା ପାଉଛି। କ୍ରମଅପକର୍ଷ ନିଶ୍ଚୟ। ଏ ବିଲେଇ ବ୍ୟାପାରଟି କେବଳ ସେଇ ଦୃଷ୍ଟିରୁହିଁ ବିଚାର୍ଯ୍ୟ।

ଅନ୍ୟ କଥାରେ କହିଲେ—ଏହା ଶୁଭ ଅଶୁଭ ଦୃଷ୍ଟିରୁ ଯେତେ ବିଚାର୍ଯ୍ୟ ନୁହେଁ—ସୁନ୍ଦର ଅସୁନ୍ଦର ବା ଶାଳୀନ ଅଶାଳୀନ ଦୃଷ୍ଟିରୁ ସେତିକି ଅନୁଶୋଚନାର ବିଷୟ। ଶ୍ରୀଜଗନ୍ନାଥଙ୍କ ଦାରୁବିଗ୍ରହଙ୍କୁ ଆମେ ଯୋଉ ମାନ୍ୟତା, ଭକ୍ତି, ଶ୍ରଦ୍ଧା ଓ ମହିମ୍ନ ଦୃଷ୍ଟିରୁ ଦେଖୁ, ସେଥିରେ ବିଲେଇଟିଏ ତାଙ୍କ ଶ୍ରୀବିଗ୍ରହ ଉପରେ ଆରୋହଣ କରି ନିର୍ବିରୋଧରେ

ମାର୍ଜାରୀୟ କାଣ୍ଡକାରଖାନା କରିବା ଅପଦୃଶ୍ୟଟି କଳ୍ପନା କରି ହେଉନାହିଁ। କଲେ ପୁଣି ଆମ ଦେହରେ ଯାଉନାହିଁ। ଆମ ପ୍ରାଣକୁ ବାଧୁଛି। ଆମକୁ ଲାଗୁଛି–ଜାତୀୟ ମର୍ଯ୍ୟାଦାବୋଧର ଚରମରେ ଆମେ ଯୋଉ ଶ୍ରୀବିଗ୍ରହକୁ ସ୍ଥାପନ କରି ଏତେ ସେବାପୂଜା ନୀତିରେ ଏତେ ସାବଧାନତା ସହକାରେ ରକ୍ଷାକରି ଆସୁଛୁ–ସେଠାରେ ପୁଣି ଏତେ ଅବହେଳା ! ଏତେ ଅମର୍ଯ୍ୟାଦା !!

କିନ୍ତୁ ଆମେ ସିନା ଏକଥା ଏମିତି ଭାବୁଛୁ–ଏ ତ ହେଲା ଆମର ଆଧ୍ୟାତ୍ମିକ ରାଜ୍ୟ ଓଡ଼ିଶା। ଏଠି ବହୁ ଭକ୍ତ ଏକଥା ଶୁଣି ନାନାପ୍ରକାର ମତ ଦେଉଛନ୍ତି। ଜଣେ କହିଲେ–ସେ ସାମାନ୍ୟ ବିଲେଇ ବୋଲି ତୁମେ ଯାହା ଭାବୁଛ–ତା' ନୁହଁ, ସେ ସୋୟଂ ହନୁମାନ। ମାର୍ଜାର ବେଶ ଧରି ପ୍ରଭୁଙ୍କର ସେବାଲୀଳା କରିବାକୁ ସେ ପ୍ରତିଦିନ ଗୁପ୍ତରେ ଯାନ୍ତି। ତାଙ୍କୁ କେହି ଦେଖି ପାରନ୍ତି ନାହିଁ। ଦେଖିଲେ ବି ଚିହ୍ନି ପାରନ୍ତି ନାହିଁ। ସେଦିନ ଦୈବାତ୍ ଧରାପଡ଼ିଗଲେ। ସେଦିନ ସେ ପ୍ରଭୁଙ୍କ ମୁଣ୍ଡ ଚିପି ସେବା କରୁଥିଲେ। ଆଉ ଜଣେ ରହସ୍ୟବାଦୀ ଭକ୍ତ କହିଲେ–ଆରେ ବାବୁ ! ଜଗନ୍ନାଥେ ହେଲେ ସୋୟଂ ପୁରୋତ୍ତମ ଜଗତର ନାଥ। ତା' ଦେହରେ ବ୍ରହ୍ମାଣ୍ଡ ମାଳମାଳ ହୋଇ ପ୍ରତିକ୍ଷଣ ପାଇଁ ଚକର ଖାଉଛି। ଗୋଟିଏ ବିରାଡ଼ି କଣ ? କୋଟି କୋଟି ଚନ୍ଦ୍ର ସୂର୍ଯ୍ୟ ଗ୍ରହ ତାରା କୋଟି କୋଟି ବିରାଡ଼ି ମୂଷା ଅସରପା ଚୂଚୁନ୍ଦ୍ରା, ସର୍ପ, ପକ୍ଷୀ ଆଦି ଛପନକୋଟି ଜୀବଜନ୍ତୁ ରୂପରେ ସେ ବ୍ରହ୍ମବିଗ୍ରହରେ ନିତ୍ୟ ଦୃଶ୍ୟ ଅଦୃଶ୍ୟରେ ଆତଯାତ ହେଉଛନ୍ତି। ଯେ ଭକ୍ତ, ସେ ତା' ଜ୍ଞାନଚକ୍ଷୁରେ ଦେଖୁଛି। ଯେ ତୁମ ଭଳି ନାସ୍ତିକ ପାଷାଣ୍ଡ ତା' ଚମ ଆଖିକୁ ବିରାଡ଼ିଟିଏ ଭଳି ଦିଶୁଛି। ମୂଷା କି ଅସରପାଟିଏ ବୋଲି ଦିଶୁଛି।

ଏସବୁ ଗହନ ତତ୍ତ୍ୱ-ହୃଦୟ-ସମ୍ଭୂତ-ଜ୍ଞାନଭକ୍ତି ମାର୍ଗର କଥା ଶୁଣିଲେ କିଏ ବା ଚୁପ୍ ନ ହେବ ? କିନ୍ତୁ ଆଜିକାଲି ଜଗନ୍ନାଥଙ୍କ ସମ୍ବନ୍ଧୀୟ ଯାବତୀୟ କଥାରେ ନାନା ବିପର୍ଯ୍ୟୟ ଘଟୁଛି–ବିଶୃଙ୍ଖଳା ଘଟୁଛି–ଅସୁନ୍ଦର ଅଶାଳୀନ କଥାମାନ ଘଟୁଛି। ତାଙ୍କ ମନ୍ଦିର ବେଢ଼ା ଅପରିଚ୍ଛନ୍ନ ହେଉଛି। ତାଙ୍କ ନୀତିମାନ ଠିକ ମତେ ହେଉନାହିଁ–ତାଙ୍କ ଭୋଗରାଗରେ ବିଶୁଦ୍ଧତା ରହୁ ନାହିଁ। ତାଙ୍କୁ ନେଇ କୁତ୍ସିତ ଭାବେ ବେପାର-ବଣିଜ ଚାଲିଛି। କିନ୍ତୁ ଭକ୍ତ ଓଡ଼ିଆଙ୍କର ସେ ଦିଗରେ ପରୁଆ ନାହିଁ। ଓଡ଼ିଆମାନେ ଜାଣନ୍ତି–ସ୍କନ୍ଦପୁରାଣରେ କୁଆଡ଼େ ଜଗନ୍ନାଥେ ସ୍ପଷ୍ଟଭାବେ ପ୍ରତିଜ୍ଞା କରି କହିଛନ୍ତି ଯେ–ମୋତେ ତେମେ ଯାହା କର ବା ମୋ ପ୍ରତି ଯିଏ ଯାହା କରୁ–ଏକଥା ନିଶ୍ଚିତ ଯେ ମୁଁ ନୀଳାଚଳ ଛାଡ଼ି କୁଆଡ଼େ ଯାଉନାହିଁ। ମୁଁ ହେଲି ସ୍ୱୟଂ ଦୀନବନ୍ଧୁ। ଏବଂ ମୋର ପ୍ରିୟ ଓଡ଼ିଆଙ୍କଠାରୁ ଏ ବିଶ୍ୱରେ ଆଉ କୋଉ ଜାତି ଭଲା ଏତେ ଦୀନମନ ନେଇ ରହିଛି ?

ଆମେ ବି ତେଣୁ ଏସବୁ ଶୁଣି ଭାବୁଛୁ—ହଉ ଚାଲୁ। ଜଗନ୍ନାଥଙ୍କୁ ଯଦି ଏସବୁ ଭଲ ଲାଗୁଛି—ତା'ହେଲେ ଚାଲୁ ଯେମିତି ଚାଲୁଛି। ଆମେ କିଏ ହୋ ଅବଧାନେ? କୀଟାନୁକୀଟ।

ପରେ ପରେ ଆଉ ଗୋଟିଏ ଖବର ବାହାରିଲା ଯେ ଖୋଦ ଇନ୍ଦ୍ରଦ୍ୟୁମ୍ନ ମାହାର୍ଜାଙ୍କ ଅମଳରୁ ପରମ୍ପରାକ୍ରମେ ଶ୍ରୀମନ୍ଦିରରେ ବିରାଡ଼ିମାନେ ବାସକରି ଆସୁଛନ୍ତି। ସେମାନେ ହେଲେ ଖୋଦ ମନ୍ଦିର ବିରାଡ଼ି। ବୈଷ୍ଣବ ବୋଲ। ସେମାନେ ଶ୍ରୀମନ୍ଦିର ଛଡ଼ା କୋଉଠି ରହିବେନି। ବଡ଼ଦାଣ୍ଡ ଛଡ଼ା କୋଉଠି ଚାଲିବେନି। ମହାପ୍ରସାଦ ଛଡ଼ା ଆଉ କିଛି ଆଜେବାଜେ ଖାଇବେନି। ରତ୍ନସିଂହାସନ ଛଡ଼ା ଆଉ କୋଉଠି ବସିବେନି। ସେମାନଙ୍କର ଭୟରେ ଶ୍ରୀମନ୍ଦିରରେ ଥିବା ମୂଷାମାନେ ଠାକୁରମାନଙ୍କର ମୂଲ୍ୟବାନ ଲୁଗାପଟା କାଟନ୍ତି ନି। କିନ୍ତୁ ଆଶ୍ଚର୍ଯ୍ୟ କଥା ଯେ ସେହି ଇନ୍ଦ୍ରଦ୍ୟୁମ୍ନ-ଗାଲ-ମାଧବଙ୍କ ଅମଳରୁ କୌଣସି ବିରାଡ଼ି ଗୋଟିଏ ସୁଦ୍ଧା ମୂଷା ମାରି ତା' ପାଟିକି ଆଇଁଷିଆ କରି ନାହିଁ।

ବାଃ ବାଃ। ଧନ୍ୟ ଠାକୁର। ଧନ୍ୟ ଭଗତେ। ଆଉ ଧନ୍ୟ ଧନ୍ୟ ସେହି ବୈଷ୍ଣବ ବିରାଡ଼ିକୁଳ।

ଏବେପୁଣି ମନ୍ଦିର ପ୍ରଶାସକ ମହୋଦୟ ବିବୃତି ଦେଇଛନ୍ତି—ମନ୍ଦିରରେ ବିରାଡ଼ି ଆତଯାତ ହେବା ସତ—ରତ୍ନ ସିଂହାସନରେ ବସିବା ମଧ୍ୟ ସତ—ମାତ୍ର ସେ ସମ୍ବନ୍ଧେ ଯୋଉ ଖବରଟା ବାହାରିଗଲା ତାହା ଡାହା ମିଛ। ବିରୋଧୀ ଶକ୍ତିମାନେ ଏମିତିକା ଅଲକ୍ଷଣା ଖବରଟାଏ ଛପାଇଦେଲେ। ହରି। ହରି। ଜଗନ୍ନାଥେ। ତେମେ ଆପଣ ଏସବୁ କଥା ଶୁଣୁଛଟି? ନ ଶୁଣି ପାରୁଥିଲେ ଦେଖୁଛଟି?

❋❋

# ମହାପୁରୁଷ ଓ କୁତ୍ସାବାଦ

୨୯।୭।୮୨

ବିଗତ ଶତାବ୍ଦୀ ବଙ୍ଗଦେଶର ଜଣେ ମହାନ୍ ପୁରୁଷ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ବିଷୟରେ ସବୁ ବଡ଼ମଣିଷଙ୍କ ଭଳି ବହୁ କିମ୍ବଦନ୍ତୀ ଶୁଣାଯାଏ । ବିଦ୍ୟାସାଗର ଥିଲେ ସତକୁ ସତ ଜ୍ଞାନର ସମୁଦ୍ର । କିନ୍ତୁ ଜ୍ଞାନ ପାଇଁ ନୁହେଁ—ଏହି ମହାନ୍ ମର୍ଯ୍ୟାଦାବନ୍ତ ସୁପୁରୁଷ ତାଙ୍କ ଜୀବନରେ ବହୁ ସାମାଜିକ ମହତକାର୍ଯ୍ୟ ପାଇଁ ସ୍ମରଣୀୟ ହୋଇ ରହିଛନ୍ତି । ବହୁ କୁସଂସ୍କାର ବିରୋଧରେ ସେ ସଂଗ୍ରାମ କରି ବିଜୟୀ ହୋଇଛନ୍ତି । ବିଧବା ବିବାହ ପଦ୍ଧତି ପ୍ରଚଳନରେ ସେ ଥିଲେ ପ୍ରବର୍ତ୍ତକ ଓ ଅନୁମନ୍ତା । କିନ୍ତୁ ଯୋଉ ସଦ୍‌ଗୁଣ ଦ୍ୱାରା ସେ ଦେଶବାସୀଙ୍କ ହୃଦୟରେ ପୂଜନୀୟ ଆସ୍ଥାନ ଅଧିକାର କରିଥିଲେ, ତାହା ହେଲା ତାଙ୍କର ଦୁଃଖୀଲୋକଙ୍କ ପ୍ରତି ଅଫୁରନ୍ତ ଦୟା ବଦାନ୍ୟତା ଓ ଅକୁଣ୍ଠ ଦାନଶୀଳତା । ପ୍ରଭୂତ ଅର୍ଥ ସେ ଜୀବନରେ ଅଭାବଗ୍ରସ୍ତ ଲୋକଙ୍କୁ ନିର୍ବିଚାରରେ ଦାନ କରିଛନ୍ତି ଓ ବହୁଲୋକଙ୍କୁ ବହୁ ଆପଦ ବିପଦରୁ ରକ୍ଷା କରିଛନ୍ତି ଓ ସଙ୍କଟରୁ ତ୍ରାହି କରିଛନ୍ତି । ସେଥିପାଇଁ ତାଙ୍କର ମୁଗ୍ଧସ୍ତାବକମାନେ ତାଙ୍କୁ ଦାତା ହରିଶ୍ଚନ୍ଦ୍ର ବା ଦାତାକର୍ଣ୍ଣଙ୍କ ସଙ୍ଗେ ସମାନ ଆସନରେ ବସାଇ ତାଙ୍କୁ ପୌରାଣିକ ମର୍ଯ୍ୟାଦାରେ ଭୂଷିତ କରାଉଥିଲେ ଏବଂ ବହୁବର୍ଷ ଯାବତ ସାରା ବଙ୍ଗଦେଶ ତାଙ୍କର ପ୍ରଶଂସାବାଦରେ ମୁଖରିତ ହେଉଥିଲା । ଏପରିକି ତାଙ୍କର ଯଶ ବଙ୍ଗଦେଶର ସୀମା ଅତିକ୍ରମ କରି ସାରା ଭାରତବର୍ଷରେ ମଧ୍ୟ ବିସ୍ତାରିତ ହୋଇଯାଇଥିଲା ।

ମାତ୍ର ଏହି ଅଭୂତପୂର୍ବ ପ୍ରଶଂସାବାଦ ଓ ଲୋକପ୍ରିୟତାର ନିଦାରୁଣ ପ୍ରତିକ୍ରିୟାଟି ହେଲା—ତାଙ୍କର ସମକାଳୀନ ବିଶିଷ୍ଟ ଲୋକମାନେ ନିଜର ଇଚ୍ଛା ଓ ରୁଚି ବିରୁଦ୍ଧରେ ବି ତାଙ୍କ ପ୍ରତି ଆପଣା ଅଜାଣତରେ ଈର୍ଷାନ୍ୱିତ ହୋଇ ଉଠିଲେ ଏବଂ ତାଙ୍କର କେତେକ ସଦଗୁଣକୁ ନେଇ ପ୍ରଥମେ ପ୍ରଥମେ ଗେଲରେ ଗେଲରେ ଥଟ୍ଟା ପରିହାସ ଆରମ୍ଭ କରିଦେଲେ । ଉଦାହରଣ ସ୍ୱରୂପ, ତାଙ୍କର ବିଧବାବିବାହ ପ୍ରଚଳନ ବ୍ୟାପାରରେ ଅତ୍ୟଧିକ ପ୍ରବଣତାକୁ ନେଇ କେତେକ ଗୁଲିଖଟି କିମ୍ବଦନ୍ତୀ ସୃଷ୍ଟିକରି ତାକୁ ପ୍ରଚଳନ କରି ଦିଆଗଲା । ସେଥିରୁ ଗୋଟିଏ ଗୁଲିଖଟି ଶୁଣନ୍ତୁ । ଥରେ କୁଆଡ଼େ ତାଙ୍କର ଝିଅ ବିବାହ ପରେ ନୂତନ ବଧୂବେଶରେ ବାପାଙ୍କଠାରୁ ଆଶୀର୍ବାଦ ପାଇବା ପାଇଁ ତାଙ୍କର ପାଦରେ ମୁଣ୍ଡରଖି ପ୍ରଣାମ କଲେ ଏବଂ ବିଦ୍ୟାସାଗର ସଙ୍ଗେ ସଙ୍ଗେ ତାକୁ ଆବେଗ କମ୍ପିତ ସ୍ୱରରେ କଲ୍ୟାଣ କରି କହିଲେ—'ମା ଲୋ ! ଶୀଘ୍ର ବିଧବା ହୋଇ ପୁନର୍ବିବାହ କରିବାର ସୌଭାଗ୍ୟ ଲାଭକର ।''

ଏବଂ ଏହିପ୍ରକାର ସହସ୍ର ଗୁଲିଖଟି ପ୍ରସ୍ତୁତ କିମ୍ବଦନ୍ତୀ ତାଙ୍କ ବିଷୟରେ ଅଚିରେ ଖୁବ୍ ଶୀଘ୍ର ଶୀଘ୍ର ଚତୁର୍ଦ୍ଦିଗରେ ପ୍ରଚାରିତ ହୋଇଗଲା। କୀର୍ତ୍ତିମାନ ବ୍ୟକ୍ତିମାନଙ୍କର ଦୁର୍ଭାଗ୍ୟ ହେଲା–ସେମାନଙ୍କର ବିପୁଳ କୀର୍ତ୍ତି ପ୍ରବାହର ପ୍ରଚଣ୍ଡ ସ୍ରୋତ ଭିତରେ କେହି ଯଦି ଅକୀର୍ତ୍ତିକର ଗୁଜବଟିଏ ମନରୁ ଗଢ଼ି ପକାଇଦିଏ ତାହା ମଧ୍ୟ ସେହି ପ୍ରବଳ ପ୍ରଚଣ୍ଡ ସ୍ରୋତ ମାଧ୍ୟମରେ ସବେଗରେ ଭାସିଚାଲେ।

ବିଦ୍ୟାସାଗରଙ୍କୁ ଈର୍ଷା କରୁଥିବା ସମସାମୟିକ ବିଶିଷ୍ଟ ଲୋକମାନେ ଏଥିରେ ଉତ୍ସାହିତ ହୋଇ କ୍ରମଶଃ ବହୁ ଅକୀର୍ତ୍ତିକର କଥା ମନରୁ ଗଢ଼ି ବିଦ୍ୟାସାଗରଙ୍କ ବିରୋଧରେ ପଚାର ଆରମ୍ଭ କରିଦେଲେ। ଏବଂ ଏହା ଫଳରେ ମାତ୍ର ଅଳ୍ପଦିନ ଭିତରେ ବିଦ୍ୟାସାଗରଙ୍କ ସମ୍ବନ୍ଧେ ବହୁ କୁତ୍ସାବାଦ ଆରମ୍ଭ ହୋଇଗଲା। ସାନ ବଡ଼ ପତ୍ରପତ୍ରିକାମାନେ ଏହାର ସୁଯୋଗ ନେଇ ତାଙ୍କ ବିରୋଧରେ ବହୁ ମିଥ୍ୟା କଥା ପ୍ରକାଶ କଲେ ଓ ସେଥିଯୋଗୁଁ ସେଇ ପତ୍ରପତ୍ରିକାଗୁଡ଼ିକର ବିକ୍ରୀ ସଂଖ୍ୟା ମଧ୍ୟ ଆଶାତୀତ ଭାବେ ବଢ଼ିଗଲା। ବିଦ୍ୟାସାଗରଙ୍କର ଅପରିମିତ କୀର୍ତ୍ତି ଗାଥା ଶୁଣି ଆସିଥିବା ଲୋକେ ମଧ୍ୟ ତାଙ୍କ ସମ୍ବନ୍ଧେ ପ୍ରଚାରିତ ହେଉଥିବା ମିଥ୍ୟାବାଦ ପ୍ରସୂତ କୁତ୍ସା ଶୁଣିବାକୁ ଆଗ୍ରହୀ ହୋଇ ଉଠିଲେ। ତେଣୁ କ୍ରମେ କ୍ରମେ ତାଙ୍କ ବିରୋଧରେ କୁତ୍ସାବାଦ କରିବା କାର୍ଯ୍ୟରେ ଅତି ନଗଣ୍ୟ ଲୋକେ ମଧ୍ୟ ଅଂଶଗ୍ରହଣ କଲେ।

ପ୍ରଥମେ ପ୍ରଥମେ ବିଦ୍ୟାସାଗର ସବୁ କଥାରେ କାନ ଦେଉ ନଥିଲେ। ମାତ୍ର ଚତୁର୍ଦ୍ଦିଗରେ ପ୍ରବଳ କୁତ୍ସା ଧ୍ୱନି ଶୁଣି ସେ ଦିନେ ସତକୁ ସତ ବ୍ୟଥିତ ହୋଇପଡ଼ିଲେ ଓ ସେତେବେଳେ କ୍ରୁଦ୍ଧ ମଧ୍ୟ ହୋଇ ଉଠିଲେ। ବେଳେବେଳେ ତାଙ୍କ ପାଟିରୁ ଶୁଣାଗଲା–ଇସ୍! ଏ ମଣିଷ ଗୁଡ଼ାକ କି ନୀଚ! ତୁମେ ଯାହାର ଉପକାର କରିଛ, ସେ ତୁମର ପ୍ରତ୍ୟୁପକାର କରିବା ଦୂରେ ଥାଉ, ସାମାନ୍ୟ କୃତଜ୍ଞତା ପ୍ରକାଶ କରିବା ଦୂରେ ଥାଉ, ଓଲଟି ତୁମର କୁତ୍ସାରଟନା କରି ଚାଲିଛି!

ଏବଂ ସତକୁ ସତ ବିଦ୍ୟାସାଗରଙ୍କ ନିନ୍ଦୁକ ଓ କୁତ୍ସାକାରୀଙ୍କ ଭିତରୁ ଶତକଡ଼ା ଅନେଶୋତ ଜଣ ଥିଲେ ତାଙ୍କ ଦ୍ୱାରା ଅତୀତରେ ବହୁ ଭାବରେ ଉପକୃତ ବା ସାହାଯ୍ୟପ୍ରାପ୍ତ।

ଦିନକର କଥା! ସେଦିନ ବିଦ୍ୟାସାଗର ଏକୁଟିଆ ବଡ଼ବଜାର ରାସ୍ତାର ଫୁଟପାଥ୍ ଉପରେ ପାଦରେ ଚାଲି ଚାଲି ଆସୁଥିଲେ। ହଠାତ୍ ଗୋଟିଏ ଜନ ଗହଳି ସ୍ଥାନରେ ସେ ଦେଖିଲେ ଯେ ଶୀର୍ଣ୍ଣକାୟ ଦୀନହୀନ ଯୁବକଟିଏ ଗୋଛାଏ ଖବରକାଗଜ ଧରି ଉଚ୍ଚସ୍ୱରରେ ତାଙ୍କ ବିରୋଧରେ ମିଥ୍ୟା କୁତ୍ସା ଖବରଟିଏ ପ୍ରଚାର କରୁଛି ଏବଂ ବହୁ ଲୋକ ତାକୁ ଘେରିଯାଇ ସେ କାଗଜଟି କିଣି ନେଉଛନ୍ତି। ବିଦ୍ୟାସାଗର ସେଠାରେ କିଛି ସମୟ ଠିଆହେଲେ। ଅଳ୍ପକ୍ଷଣ ଭିତରେ ସେହି ଶୀର୍ଣ୍ଣକାୟ ଦୀନହୀନ ବ୍ୟକ୍ତିଟିର ସବୁ କାଗଜ ବିକ୍ରୀ ହୋଇଗଲା। ତା'ପରେ ସେ ଅନ୍ୟସ୍ଥାନକୁ ଆସି ତାର ବିକ୍ରୀ ପଇସାତକ ଗଣିଲା। ବିଦ୍ୟାସାଗର ତା ପାଖକୁ ଗଲେ ଓ ତାକୁ

ଧୀର ଭାବେ ପଚାରିଲେ–ଆରେ ବାବୁ ! ତମେ ବିଦ୍ୟାସାଗରଙ୍କୁ ଜାଣ ? ଟୋକାଟି ହସି ହସି କହିଲା–ତାଙ୍କୁ କିଏ ନ ଜାଣେ ? ବଙ୍ଗଦେଶ ସେଭଳି ମହାପୁରୁଷଙ୍କୁ ଜନ୍ମ ଦେଇ ଧନ୍ୟ ହୋଇଛି ।

ତା'ପରେ ବିଦ୍ୟାସାଗର ପଚାରିଲେ–ତା'ହେଲେ ଏତେବଡ଼ ମହାପୁରୁଷଙ୍କ ନାମରେ ଏମିତି ମିଥ୍ୟା କୁତ୍ସା ଖବର ଛପାଇ ବିକ୍ରୀ କରୁଛ କିପରି ?

ଶୀର୍ଣ୍ଣକାୟ ଦୀନହୀନ ଯୁବକଟି କହିଲା–ଆଜ୍ଞା ! କୋଉଠି ଚାକିରି ବାକିରି ପାଇଲି ନାହିଁ । ଘରେ ବିଧବା ମାଆ, ଦୁଇଟି ଅବିବାହିତା ଭଉଣୀ । ଚଳିବୁ କେମିତି ? ମାଟ୍ରିକ ପାସ୍ କରିଛି । ଜଣଙ୍କ ପ୍ରେସରୁ ନିଜେ ଏ କାଗଜଟି ବାହାର କରୁଛି । ଏଥିରେ କେବଳ ବିଦ୍ୟାସାଗରଙ୍କ ବିରୋଧରେ କୁତ୍ସା କଥା ଏଠୁ ସେଠୁ ଶୁଣି ଛପାଇଥାଏ । ଆଜିକାଲି ଲୋକେ ତାଙ୍କ ବିରୋଧରେ କୁତ୍ସା ଶୁଣିବାକୁ ଖୁବ୍ ଆଗ୍ରହୀ । ତେଣୁ ଦିନକୁ ହଜାରେ କାଗଜ ବିକ୍ରୀ ହୋଇ ଯାଉଛି । ମୋର ଭଲ ଦି'ପଇସା ଲାଭ ହେଉଛି । ଏଣୁତେଣୁ ଲୋକଙ୍କ ନାମରେ କୁତ୍ସା ବାହାର କଲେ କଣ ଲୋକେ ପଢ଼ିବେ ? ବିଦ୍ୟାସାଗରଙ୍କ କୁତ୍ସା ଶୁଣିବାକୁ ସମସ୍ତେ ବ୍ୟାକୁଳ । କଣ କରିବି ବାବୁ ? ମୋ ଭାଗ୍ୟ ସେମିତି । ନ ହେଲେ ଏ କୁତ୍ସାବୃତ୍ତି କରି ଜୀବନ ବଞ୍ଚୁଥାନ୍ତି ? କୁଟୁମ୍ବ ପୋଷୁଥାନ୍ତି ?

ଏତେକ ଶୁଣୁଶୁଣୁ ବିଦ୍ୟାସାଗରଙ୍କ ଦୟାର୍ଦ୍ରଚିତ୍ତ ବିଗଳିତ ହୋଇଗଲା । ତାଙ୍କ ଆଖି ଛଳଛଳ ହୋଇଗଲା । ସେ ନିଜକୁ ସଂଯତ କରି ଟୋକାଟିକୁ ଆହୁରି ପାଖକୁ ଡାକି କହିଲେ–

ଶୁଣ ! ବିଦ୍ୟାସାଗରଙ୍କ ବିଷୟରେ ଆଜି ଗୋଟିଏ କଥା ଶୁଣିଲି । ଯେଉଁଟା ସେ ଲୋକ ମୁହଁରୁ ନୁହଁ । ଖୁବ୍ ବିଶିଷ୍ଟ ଲୋକଙ୍କ ତୁଣ୍ଡରୁ । ଶୁଣ ? ଖୁଲନା ଜିଲ୍ଲାର ଚାରିଜଣ ବିଧବା ଯୁବତୀ ସହରର ଜଣେ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ନିକଟକୁ ଆପଣା ଆପଣା ହସ୍ତାକ୍ଷରରେ ଦସ୍ତଖତ ସହ ଚିଠି ଦେଇ ଜଣାଉଛନ୍ତି ଯେ ବିଦ୍ୟାସାଗର ସେମାନଙ୍କୁ ପୁନର୍ବିବାହ ବ୍ୟବସ୍ଥା କରିଦେବାର ଲୋଭ ଦେଖାଇ ନିଜର ବାସଭବନକୁ ଡକାଇ ଆଣି ସେମାନଙ୍କ ସହ ପାପାଚାର କରିଛନ୍ତି ଓ ତା' ଫଳରେ ଦୁଇଟି ବିଧବା ଯୁବତୀ ବର୍ତ୍ତମାନ ଗର୍ଭବତୀ ହୋଇ ଅକୂଳରେ ଭାସୁଛନ୍ତି । ଦେଖ ! ଏ ଖବରଟି ବଡ଼ ବଡ଼ କାଗଜରେ ବାହାରିବା ପୂର୍ବରୁ ତମେ ଆଜି ରାତିରେ ଖବରଟି ଛାପିଦିଅ ।

କହିବା ବାହୁଲ୍ୟ ଯେ ଏହି ତାଜା ଏବଂ କର୍ଣ୍ଣମୁଖ-ରୋଚକ-ରସାୟନ-ବିଦ୍ୟାସାଗରସମ୍ବନ୍ଧୀ-ଅପୂର୍ବ-କୁତ୍ସାଟି ଶ୍ରବଣ କରିବା ମାତ୍ରେ ସେହି ଶୀର୍ଣ୍ଣକାୟ ଦୀନହୀନ ଯୁବକଟିର ମୁଖ ଖୁବ୍ ଉଜ୍ଜ୍ୱଳ ହୋଇ ଉଠିଲା ।



# ଲଗ୍ନ ଗଡ଼ିଗଲା..

୧୫।୭।୮୨

ବାହାଘର ପ୍ରୋସେସନ୍‌ଟି ବାହାରିବ ବାହାରିବ ବୋଲି ରାତି ବାରଟାରୁ ବଳିପଡ଼ିଲା। ପ୍ରାୟ ଶହେ ବରଯାତ୍ରୀ ଯିବେ। ବରର ବନ୍ଧୁ ତା'ମଧ୍ୟରେ ପ୍ରାୟ ୭୫ ଜଣ। ସେମାନେ ସମସ୍ତେ ଏକଜୁଟ ହେଉ ହେଉ ସନ୍ଧ୍ୟା ଛଅରୁ ରାତି ୧୨ ବାଜିଗଲା। ତା'ପରେ ସେମାନେ କହିଲେ, ବୁଢ଼ା ଅଧାବୁଢ଼ାମାନେ ବରକୁ ଘେନି ଆସୁଥାନ୍ତୁ। ଆମେ ସବୁ ଅମୁକ ଜାଗାରେ ବସିଥିବୁ। ସେଇଠୁ ଯିବୁ। ଉଦ୍ଦେଶ୍ୟ ହେଲା—ସେଠାରେ ବିଅର, ହୁଇସ୍କି, ରମ୍ ଆଦି ଗଚ୍ଛିତ ଅଛି। ସେଠି ପିଆପେଇ କରି ବରବନ୍ଧୁ ଯୁବଯାତ୍ରୀମାନେ ତୟାର ହୋଇ ରହିଥିବେ। ସେ ସ୍ଥାନରୁ କନ୍ୟାଘର ଦେଢ଼ କିଲୋମିଟର। ସେତକ ବାଟ ନାଚି ନାଚି ଯିବେ। କନ୍ୟାଘରେ ପହୁଁଚି ତା'ପରେ ସେଠି ହାମ୍‌ଲା ହେବ।

ବାକୀ କୋଡ଼ିଏ ପଚିଶ ଜଣ ବୁଢ଼ା, ଦରବୁଢ଼ା ବରଙ୍କର ବାପା, କକା, ମାମୁଁ, ପିଇସା, ମଉସାଦି ବରକୁ ଧରି ଆସନ୍ତୁ। ସେଇଆ ହେଲା। ଦୁଇ କଡ଼େ ଗ୍ୟାସ ଆଲୁଅ ମୁଣ୍ଡେଇ ଚାଲିଲେ ପ୍ରାୟ କୋଡ଼ିଏ ଜଣ ସ୍ତ୍ରୀଲୋକ। ବ୍ୟାଣ୍ଡ ପାର୍ଟି "ରଙ୍ଗବତୀ" ସୁର୍‌ଟିକୁ ବଜାଇ ବଜାଇ ଚାଲିଲେ। ଫୁଲ ଫାନୁସ୍ ଧରି ଆଉ କେତେକ ସ୍ତ୍ରୀଲୋକ ଚାଲିଥାନ୍ତି। ମଝିରେ ବରର ରଜନୀଗନ୍ଧାର ମାଳାରେ ସୁଶୋଭିତ କାର୍‌ଟି ଚାଲିଥାଏ। ତା' ଭିତରେ ବର, ମାର୍କୁଣ୍ଡି, ବରପିତା ଓ ପୁରୋହିତ।

ପୁରୋହିତ ବ୍ୟସ୍ତ ହେଉଥାନ୍ତି ଲଗ୍ନ ଗଡ଼ିଗଲାଣି। ଏଣିକି ମଧ ବାର ବେଳ ପଡ଼ିଯିବ। ରାତି ନଅଟା ସୁଦ୍ଧା କନ୍ୟାଘରେ ବରର ପ୍ରଥମ ବରଣଟା ହୋଇ ଯାଇଥିଲେ ଆଉ ଚିନ୍ତା ନଥିଲା।

ପୁରୋହିତଙ୍କର ବ୍ୟସ୍ତ ହେବାର ମଧ ଅନ୍ୟ ଉଦ୍ଦେଶ୍ୟ ଥିଲା। ସେ ଦିନବେଳା ଗୋଟିଏ ବିବାହ କାର୍ଯ୍ୟ ଏବଂ ଗୋଟିଏ ଘରୋଇ ହୋମ କାର୍ଯ୍ୟ ସାରି ରାତିକି ଦୁଇଟି ବିବାହ ରଖିଥିଲେ। କିନ୍ତୁ ଯାହା ଦେଖାଯାଉଛି—ଏଇ ଗୋଟିଏ ବିବାହରେ ଆଜି ରାତି ପାହିଯିବ।

ପୁରୋହିତଙ୍କ ବ୍ୟସ୍ତତା ଦେଖି ସ୍ୱୟଂ ବର ମହାରାଜ କହିଲେ—ମିଶ୍ରେ! କାହିଁକି ସେମିତି ହଉଚ କିଓ? ତମ ମଜୁରି ଦି'ଗୁଣ କରି ଦେଲେ ହବନି? ପୁରୋହିତ ଟିକିଏ ଅସମ୍ମାନିତ ବୋଧ କରି କହିଲେ—ବାବୁ! ଆମେ କଣ ମୂଲିଆ ଯେ ମଜୁରି ଦେବ?

ଆମେ ବ୍ରାହ୍ମଣ–ଆମକୁ ଦକ୍ଷିଣା ଦିଆଯାଏ। ବର ପାଖରେ ବସିଥିବା ଚଉଦ ବର୍ଷର ମହା ପାଜିଲ ଟୋକା ମାର୍କଣ୍ଡି କହିଲା–ଦକ୍ଷିଣା ନା ଭଉରୀ ଦିଆ ଯାଏ ମ ?

ଏମିତି କଥୋପକଥନ ଚାଲିଛି। ବରଙ୍କର ଜଣେ ସାଙ୍ଗ ଆସି କହିଲେ–ହେ ଶୁଣ। ହେଇ ସେଠି ଯାତ୍ରା ହେଉଛି। ଆମେ ଏଇଠି ବାଣ ମାରିବା। ବର କହିଲା– ମାର ମାର। ଯାତ୍ରା ଭାଙ୍ଗିଦିଅ।

ତା'ପରେ ଚାଲିଲା ବାଣମରା। ଗଛବାଣ ଚାରିଟା ପୋତି ଏକାବେଳକେ ନିଆଁ ଲଗାଇ ଦିଆଗଲା ଏବଂ ସାଙ୍ଗେ ସାଙ୍ଗେ ଚାଲିଲା ବିବିଧ ବାଣ–ଚକ୍ରୀ, ଚମ୍ପା, ଆଉ ଅଭୂତପୂର୍ବ କାରୁକାର୍ଯ୍ୟପୂର୍ଣ୍ଣ ହାବେଳିବାଣ ଉପରକୁ ଉଠିଯାଇ ଫାଟିଗଲା ଓ ତା'ଭିତରୁ ଲାଲରଙ୍ଗରେ ଗୋଟିଏ ଫୁଲମାଳ ଭିତରେ "ରାଜେନ୍ଦ୍ର ସହ ଚପଳା" ଏହି ବାକ୍ୟାଂଶଟି ଦୋହଲି ଦୋହଲି ଢେର ବାଟଯାଏ ଆକାଶ ବକ୍ଷରେ ଭାସି ଚାଲିଲା। ଏଣେ ଖୁବ୍ ଜୋରରେ ଡ୍ରମ ବିଗୁଲ ବାଜୁଥାଏ। ଏବଂ ବାଣ ମଧ୍ୟ ସେମିତି ଚାଲିଥାଏ ଢୋକ୍କା, ସୁରସାର, ସାଇଁ ସାଇଁ, ଚିକ୍ ଚିକ୍, ଫୁସ୍ ଫାସ୍ ହୋଇ ଏସବୁ ଶୁଣିବା ମାତ୍ରେ ସାମାନ୍ୟ ଦୂରରେ ଥିବା ବରଙ୍କର ମାତାଲ ବନ୍ଧୁମାନେ କ୍ରମଶଃ ଆସି ଜୁଟିଗଲେ ଓ ନାଚିବାକୁ ଆରମ୍ଭ କରିଦେଲେ। ବାଜା ମଧ୍ୟ ଖୁବ୍ ଜୋରରେ ତାଳ ଦେଇ ବାଜୁଥାଏ। ଏଣେ ନିକଟରେ ସାଇବାଲା ଯୋଉ ଯାତ୍ରାଟି କରୁଥିଲେ ତାହା ଏଇ ହଟଗୋଳ ଭିତରେ ଆପାତତଃ ବନ୍ଦ ହୋଇଗଲା। ଅବଶ୍ୟ ଏଇ ହଟଚମଟ ଦୃଶ୍ୟ ଦେଖିବାକୁ ମଧ୍ୟ ଯାତ୍ରା ଦେଖେଣାହାରୀମାନେ କିଛି ସମୟ ଠିଆ ହେଲେ। ମାତ୍ର କେତେ ସମୟ ଦେଖିବେ ? ଏଣେ ଯାତ୍ରାରେ ନାୟିକାକୁ ଖଳନାୟକ ଅପହରଣ କରିନେଲାଣି ଏବଂ ପୋଲିସ ଓ ଡିଟେକ୍‌ଟିଭମାନେ ତା' ପିଛା ଧରିଛନ୍ତି। ଯାତ୍ରା ଦେଖାଳିଙ୍କର ଏଇଟା ଗୋଟେ ଘୋର ଉତ୍କଣ୍ଠାର ବେଳ। ତାକୁ ଛାଡ଼ି ଏଇ ବାଣମରା, ଡ୍ରମ ବିଗୁଲବାଜା ଓ ମାତାଲ ଟୋକାଙ୍କ ଦୁଇଷ୍ଟ ନାଚ କେତେ ସମୟ ବା ଦେଖିବେ ? ତେଣେ କିନ୍ତୁ ମାତାଲ ଟୋକାମାନଙ୍କର ନାଚ ଆଉ ବନ୍ଦ ନହୁଏ। ଗୋଟିଏ ବ୍ୟାଚ ପ୍ରାୟ ପନ୍ଦର କୋଡ଼ିଏ ମିନିଟ ନାଚ କରି ଥକି ଗଲେ ଆଉ ପଞ୍ଚାଏ ମାତାଲ ଟୋକା ତାଙ୍କ ସ୍ଥାନରେ ଆସି ନାଚୁଥାନ୍ତି।

ବାଣ ମଧ୍ୟ ପୂର୍ବପରି ଚାଲିଥାଏ। ପ୍ରାୟ ଦୁଇ ହଜାର ଟଙ୍କାର ବାଣ କିଣାଯାଇଛି। ନାଚ, ବାଜା, ବାଣ ଅବିରାମ ଚାଲିଲା। ଆସି ଦୁଇଟା ବାଜିଗଲା। କନ୍ୟାଘର ଆଉ ଅବଶ୍ୟ ଦୁଇକିଲୋମିଟରେ ବାଟ। ବର ପକ୍ଷର କେତେକ ବୁଢ଼ା ଅଧବୁଢ଼ା ଆସି ମାତାଲ ଟୋକାଙ୍କୁ ବହୁ ଅନୁନୟ କଲେ। ବାବୁ ଚାଲ। ଲଗ୍ନ ଗଡ଼ି ଗଲାଣି। ତେଣେ କନ୍ୟାପକ୍ଷ ଉଦ୍‌ବିଗ୍ନ ହେଉଥିବେ। ମାତ୍ର କିଏ କାହା କଥା ଶୁଣେ ହେ ? ହ୍ୱିସ୍କି, ରମର ନିଶା ସାଙ୍ଗକୁ ନାଚନିଶା ଲାଗିଛି। କେତେକ ଟୋକା କାର ଭିତରୁ ବରକୁ ମଧ୍ୟ ଭିଡ଼ି ଆଣିଲେ। କେତୋଟି ଅଶ୍ଳୀଳ ବାକ୍ୟର ଉଦାହରଣ ଦେଇ କହିଲେ–ଶଳା ନାଚ୍‌ବେ।

ଏଣେ ବହୁ ସମୟ ଧରି ଯାତ୍ରା ବନ୍ଦ ହୋଇଯିବାରୁ ସ୍ଥାନୀୟ କେତେ ଭଦ୍ରଲୋକ ଆସି ବରଯାତ୍ରୀମାନଙ୍କୁ ବୁଝାଇଲେ। ଆଜ୍ଞାମାନେ! ଏଠି ଏତିକି ହେଉ ଆପଣମାନେ ଅଗ୍ରସର ହେଉନ୍ତୁ। କନ୍ୟା ଘରେ ଯାଇଁ ପେର କଣ କରିବେ ?

ମାତ୍ର କିଏ କାହା କଥା ଶୁଣେ ହେ? ଯୌବନ ନିଶାକୁ ମଦ ନିଶା ଧରିଛି। ମଦ ନିଶାକୁ ଅପସଂସ୍କୃତିର ନିଶା ଧରିଛି। ଅପସଂସ୍କୃତିର ନିଶାକୁ ଧରିଛି ପୁଣି ନାଚ ନିଶା। ବର୍ତ୍ତମାନ ବର ପାଟି ପାଖେ ଜଣେ ଆଣି ବିଅର ବୋତଲଟିଏ ଠିପିଖୋଲି ଧରିଲା। ଦେ ପିଇଦେ। ନାଚ୍। ନାଚ୍। ସେଇଠୁ ବର ଦେହରେ ନାଚ ନିଶା ଲାଗିଗଲା। ସେ ନାଚିଲା। ଖୁବ୍ ତାଳି ମାଡ଼ ହେଲା। ବାଜା ଆହୁରି ଜୋରରେ ଚାଲିଲା। ବାଣ ଆହୁରି ବେଶି ଫୁଟିଲା। ବରପିତା କାର୍ ଭିତରେ ଚୁପ୍‌ଚାପ୍ ବସିଥିଲେ। କେହି ଜଣେ ବିଅର ବୋତଲଟିଏ ନେଇ କାର ଭିତରେ ତାଙ୍କ ହାତକୁ ବଢ଼େଇ ଦେଲା। ନିଅ—ନିଅ। ପେଟ ଥଣ୍ଡା କର।

ବରପିତା ବୋତଲଟି ନେଲେ। କିନ୍ତୁ ଠିକ୍ ଏଇ ସମୟରେ ଅଭାବିତ କାଣ୍ଡଟିଏ ଘଟିଗଲା। ରାସ୍ତାକଡ଼ ପଡ଼ିଆରେ ଯାତ୍ରାଟି ଏତେ ସମୟ ଧରି ବନ୍ଦ ହୋଇଯିବାରୁ ଓ ଯେତେ ଅନୁନୟ କଲେ ବି ବରଯାତ୍ରୀ ଦଳ ସେଠାରୁ ନ ଘୁଞ୍ଚିବାରୁ ସ୍ଥାନୀୟ କେତୋଟି ଛୁରୀଧାରୀ ଟୋକା ଆସି ସେଠି ପହଞ୍ଚିଗଲେ ଏବଂ କାରଟିକୁ ଘେରିଯାଇ ବରପିତାଙ୍କୁ ସ୍ପଷ୍ଟ ଭାବେ କହିଲେ—"ଦୁଇହଜାର ଟଙ୍କା ଆମ କ୍ଳବକୁ ଦିଅ ନ ହେଲେ ଆମେ ଛାଡ଼ିବୁ ନାହିଁ।"

କହିବା ବାହୁଲ୍ୟ—ସେମାନେ ବି ମଦ୍ୟ ନିଶାରେ ଚୂର୍ ଥିଲେ। ତାଙ୍କର ଯୁକ୍ତି ହେଲା—ଦୁଇ ହଜାର ଟଙ୍କାର ବାଣ ମାରୁଛ। ହଜାର ହଜାର ଟଙ୍କାର ସଇଟଣ କରୁଛ ଆମ ଯାତ୍ରା ଭାଙ୍ଗି ଦେଲ। ଏବେ ଦିଅ ଆମ କ୍ଲବକୁ ଦୁଇହଜାର ଟଙ୍କା।

ବାସ୍—ତା'ପରେ ଯାହା ଘଟିଲା—ତାହା ଆଉ ବର୍ଣ୍ଣନା କରିବା ଦରକାର ନାହିଁ। ଲାଇଟ୍‌ସବୁ ଭାଙ୍ଗିଭୁଙ୍ଗି ଚତୁର୍ଦ୍ଦିଗ ଅନ୍ଧକାର ହୋଇଗଲା। ଯେ ଯୁଆଡ଼େ ଅତର୍କରେ ପଳାଇଲେ। ଏବଂ ସମଗ୍ର ରାତିଟି କଟିଗଲା ଛୁରୀ ମରାମରିରେ। ଜଣେ ନିହତ ଓ ଅନେକ ଆହତ ହେଲେ। ପୁରୋହିତ ବିଚାରା ଗୋଟିଏ ପୋଲ ଭିତରେ ଆତ୍ମଗୋପନ କରି ରହିଥିଲେ ଓ ଲଗ୍ନଟି ଗଡ଼ିଯିବା ଫଳରେ କିପରି ବାରବେଳାର ଅପଘାତ ପହୁଞ୍ଚିଲା ସେଇ କଥା ଚିନ୍ତା କରୁଥିଲେ। ଏବଂ ଜଗନ୍ନାଥଙ୍କ କୃପାରୁ ପୈତୃକ ପ୍ରାଣ ସମେତ ଦେହଟି ଅକ୍ଷତ ଅବସ୍ଥାରେ ତଥାପି ଅଛି ବୋଲି ଭାବି ପୁଲକିତ ହେଉଥିଲେ।

ସକାଳ ହେଲାରୁ ପୋଲିସ୍ ଓ ଖବରକାଗଜବାଲାମାନେ ଆସି ଉପସ୍ଥିତ ହେଲେ ଓ ଯେଝାର କର୍ତ୍ତବ୍ୟ କଲେ।



# କୋଳିରୁଚି

୨୦।୫।୮୨

ପୁରୀ ବଡ଼ଦାଣ୍ଡରେ ଦିନେ ବୁଲୁ ବୁଲୁ ଆଖି ପଡ଼ିଲା ଗୋଟିଏ ବୁଢ଼ୀ ଉପରେ। ସେ ରାସ୍ତା କଡ଼ରେ ଖଣ୍ଡିଏ ମଇଳାକନା ପାରି ତା'ଉପରେ କଦଳୀପତ୍ରଟିଏ ବିଛାଇ ପତ୍ର ଉପରେ ଚାରି ପାଞ୍ଚଥାକ କୋଳି ଜମାକରି ବିକୁଥିଲା। ସେଇ କୋଳିଗୁଡ଼ିକ ଦେଖି ମୋର ବାଲ୍ୟକାଳର ସ୍ମୃତି ମନେ ପଡ଼ିଗଲା। ମୁଁ ସେଠି ବସିପଡ଼ି ବୁଢ଼ୀକୁ ପଚାରିଲି—ଭଉଣୀ! ଏ କି କୋଳି ବିକୁଛ? ବୁଢ଼ୀଟି ତାର ପାକୁଆ ପାଟିରେ ହସିଦେଲା ଏବଂ ତା' ସରଳ ପାଟିରୁ ସାମାନ୍ୟ ନାଲି ପାନଛେପ ଟିକେ ବୋହିପଡ଼ିଲା। ସେତକ ସେ ଲୁଗାକାନିରେ ପୋଛିଦେଇ କହିଲା—ତୁ କୋଉ ଜିଲାର ମଣିଷ ବାବୁ? ଏ ପରା ଭଇଁଚି କୋଳି। ନଉନୁ ଥାକେ। ପନ୍ଦର ପଇସା ଦେ। ଭାରି ମିଠାକୋଳି ବା ଏ! ଆଉ କଣ ଏ ଦରବ ମିଳିବ କି? ସବୁ ତ ନଟା-ଝଟା ବଣବୁଦା କାଟିହାଣି ସଫାକରି ଦେଲେଣି, ଏ ନିଆଁଲଗା ହାଡ଼ଗିଳାଏ। ଯାହା ଖାଇବୁ ଏ ବର୍ଷ ଖାଇଥା। ଆଇଲା ସାଲକୁ ଆଉ ଏ ଦରବ ସପନ ହୋଇଯିବ ବା।

ବୁଢ଼ୀ କଥାରେ ଭଳିଯାଇ ଓ ପିଲାଦିନର ସ୍ମୃତି-ପାଲରେ ପଡ଼ି ମୁଁ ଦୁଇଥାକ ଭଇଁଚିକୋଳି କିଣି ପାଟିକି ପକାଇଲି। ମୁଡ଼୍ ମୁଡ଼୍ ହୋଇ ସୋରିଷ ଆକାରର ପାଞ୍ଚ ଛଅଟି ଟାଣୁଆ ମଞ୍ଜି ବାହାରି ପଡ଼ିଲେ ଛାଏଁ ଛାଏଁ ଏବଂ ସାଙ୍ଗେ ସାଙ୍ଗେ ପାଟି ଭିତରେ ସୁଆଦିଆ ମିଠାରସ ଟିକେ ଜିଭଯାକ ସଞ୍ଚରିଗଲା। ତା'ସହିତ ମଧ ପାଟି ଭିତରେ ବଣବୁଦା ଲଟାଝଟାର ସ୍ନିଗ୍ଧଶୀତଳ ପରିଚିତ ବାସ୍ନାଟିଏ ଚହଟିଗଲା। ପିଲାଦିନେ କେତେକୋଳି ଏ ପାଟିରେ ନ ବାଜିଛି! ବଣବୁଦା ନଟାଝଟା ବୁଲି ବୁଲି ସାଙ୍ଗମାନଙ୍କ ସହିତ ଖୋଜି ଖୋଜି କେତେ ଫଳମୂଳ କୋଳିକନ୍ଦା ଆମେ ନ ଖାଇଛୁ? ବାଲ୍ୟକାଳର ଜୀବନକୁ ମଧୁମୟ କରି ରଖିଥିଲା ଏଇସବୁ କୋଳି ଆଉ ଫଳ-ମୂଳ। ସେଥିରୁ କେତୋଟି କୋଳି ମୋର ପାଞ୍ଚବରଷର ନାତୁଣୀ ପାଇଁ ନେଇ ଆସିଥିଲି। ଭାବିଥିଲି—ସେତକ ପାଇ ସେ ଖୁବ୍ ଖୁସି ହେବ। ମାତ୍ର ସେଇ କଳା କଳା କୋଳିଗୁଡ଼ିକୁ ଦେଖିବା ମାତ୍ରେ ତାର ନାକପୁଡ଼ା ଘୃଣା ଓ ସନ୍ଦେହରେ ଥରି ଉଠିଲା। ସେ ନାକରେ କହିଲା ପରି କହିଲା —ଇଃ ହି—ଛି-ଛି-ଛି ପୋକ ଗୁଡ଼ାଏ—ପୋକ ଇହି। ଛି-ଛି।

ନିରାଶ ହୋଇଗଲି ସତକୁ ସତ। ଭାବିଥିଲି ନାତୁଣୀଟି ମୋର ସେଗୁଡ଼ିକୁ ଖୁବ୍ ଆଗ୍ରହରେ ପାଟିକୁ ପକାଇବ ଓ ଗୋଟାଏ ଖୁବ୍ ନୂଆ ସ୍ୱାଦ ଅନୁଭବ କରି ଖୁବ୍ ଖୁସି ହେବ—ଏବଂ ମୁଁ ମୋର ବିଗତ ବାଲ୍ୟକାଳର ଆନନ୍ଦକୁ ପୁନଶ୍ଚ ଫେରି ପାଇବି। ମାତ୍ର ହାୟ। ତାର ଅଙ୍ଗୁର, କମଳା, ଆପେଲ୍ ଖିଆ ପାଟିକି ଏଇ ବଣବୁଦା ଝାଡ଼ବାଡ଼ର ଜିନିଷ ଭଲଲାଗିଲା ନାହିଁ। ବହୁ କଷ୍ଟରେ ବୁଝାବୁଝି କରି ତା'ପାଟିରେ ଗୋଟିଏ କୋଳି ଦେଲା ମାତ୍ରେ ସେ ତାକୁ ସାଙ୍ଗେ ସାଙ୍ଗେ ଥୁ ଥୁ କରି କାଢ଼ି ପକାଇଲା। ମୁଁ ରାଗ ଓ ଅଭିମାନରେ ତା'ରି ଆଗରେ ଅବଶିଷ୍ଟ କୋଳିତକ ନିଜ ପାଟି ଭିତରକୁ ଏକା ଥରକେ ପକାଇଦେଇ ଚାପି ଲାଗିଲି ଓ ସ୍ୱାଦ ଉପଭୋଗ କରିବାର ଆନନ୍ଦକୁ ନାଟକୀୟ ଭାବେ ପ୍ରଦର୍ଶନ କରିଲାଗିଲି।

କିନ୍ତୁ ମୋର ମନେ ହେଲା ମୋର ଏମିତି ମନ ଖରାପ କରିବାର ବା ବିରକ୍ତ ହେବାର ଆଉ ଲାଭ ବା କଣ? ଯୋଉ ଯୁଗ ଓଡ଼ିଶାକୁ ଆସିଲାଣି—ସେଥିରେ ତ ଆଉ ଜଙ୍ଗଲ ରହିବ ନାହିଁ—ବଣବୁଦା ଝାଡ଼ଡ଼ିଙ୍ଗର ମଧ୍ୟ ସବୁ ପଦା ହୋଇଗଲାଣି ଓ ଯିବ। ତେଣୁ ମୋ ପିଲାଦିନେ ଆମେ ପିଲାମାନେ ବଣବୁଦା ବୁଲି ବୁଲି ଯୋଉସବୁ ଅପୂର୍ବ ବିଚିତ୍ର ସ୍ୱାଦଯୁକ୍ତ କୋଳି ଓ ଫଳମୂଳ ଇତ୍ୟାଦି ଖାଉଥିଲୁ—ସେ ସବୁ ପ୍ରକୃତରେ କ୍ରମଶଃ ଚିର ଦିନ ଲାଗି ଲୋପହୋଇଯିବ।

ଆଜି କୋଳି କହିଲେ ଆମର ପିଲାମାନେ ଖୁବ୍ ବେଶି ହେଲେ ବୁଝନ୍ତି ବରକୋଳି, ଜାମୁକୋଳି। ଖୁବ୍ ବେଶି ଖଜୁରିକୋଳି। କିନ୍ତୁ ସହରରେ ଗନ୍ଧା ହୋଇ ପାକେଟରେ ଭର୍ତ୍ତି ହୋଇ ବିକ୍ରୀ ହେଉଥିବା ଖଜୁରିକୋଳିକୁ କେହି କୋଳି କହନ୍ତି ନାହିଁ—କହନ୍ତି ଖଜୁର। ଯେମିତି ନଡ଼ିଆ କିମ୍ବା ସପୁରୀ। ଆମର ସହର କଥା ଛାଡ଼ ଗାଁ ଗହଳରେ ମଧ୍ୟ ଆଉ ସେସବୁ କୋଳିଗଛ ନାହିଁ। ଗାଁ ପିଲାମାନେ ବି ଆଉ କୋଳିମୁଖୀ ନୁହନ୍ତି।

ଏହି ଖରାଦିନେ ଯେଉଁସବୁ କୋଳି ଆଗେ ମିଳୁଥିଲା ସେଥିଭିତରୁ ବେତକୋଳି ପ୍ରଧାନ। କଷା ଖଟା ଓ ମିଠାର ମିଶାମିଶି ସ୍ୱାଦ। ପେଣ୍ଡା ପେଣ୍ଡା ଫଳେ। ନାଳ କୂଳେ କୂଳେ ବା ସଡ଼କ କଡ଼ରେ ଯେଉଁସବୁ ଖଜୁରିଗଛମାନ ଠିଆ ହୋଇଥାଆନ୍ତି ସେଥିରେ ପେଣ୍ଡା ପେଣ୍ଡା ଖଜୁରି କୋଳି ଫଳନ୍ତି। ଖୁବ୍ ମିଠା। ଗାଁ ବାଡ଼ମାନଙ୍କରେ ଶାହାଡ଼ା ଗଛମାନ ଥାଏ। ସେଥିରେ ହଳଦିଆ ରଙ୍ଗର ଚକ୍ ଚକ୍ ରସ ଭରପୂର ଶାହାଡ଼ା କୋଳି ଲଦି ହୋଇଯାଏ। ହଳଦୀବସନ୍ତ ଚଢ଼େଇମାନେ ଏ ଗଛ ଛାଡ଼ି କୁଆଡ଼େ ଯା'ନ୍ତି ନାହିଁ। ଏହା ସାମାନ୍ୟ ପିତୁଳିଆ ମିଶା ମଧୁର। ଏହା ବାଦ ବୁଦାମାନଙ୍କରେ ଫଳିଥାଏ ହଳଦିଆ ରଙ୍ଗର ମିଠା ମିଠା ଶଗଡ଼ବାଟୁଆ କୋଳି, ଦୁଧକୋଳି, କ୍ଷିରକୋଳି, ନଅରକୋଳି, କଷା ମିଠା। ମିହିଙ୍ଗା କୋଳି, ଫାର୍ସା କୋଳି ଖୁବ୍ ମିଠା। ଆଂଖୁକୋଳି ଆହୁରି ମିଠା। ଲିଖନ କୋଳି ତ ତହୁଁ ବଳି ମିଠା।

ଏହାପରେ ପୁଣି ରହିଛି ଗୁଲାବଜାମୁ ଆଉ ଜାମୁରୋଳ ଏବଂ ଲିଚୁ। ଏମାନେ କିନ୍ତୁ ଅଭିଜାତ ଶ୍ରେଣୀର କୋଳି। ଉଦ୍ୟାନବର୍ଦ୍ଧିନି। ଏଗୁଡ଼ିକୁ ଫଳ ଓ କୋଳି ଉଭୟ ଶ୍ରେଣୀରେ ନିଆଯାଇ ପାରିବ।

ଏସବୁ କୋଳି ବ୍ୟତୀତ ପୁଣି ଏଇ ଖରାଦିନେ ମିଳେ ପାଣି ସିଙ୍ଘଡ଼ା, ଆତ ବା ରାମ୍ ଫଳ, ଆମ୍ବଡ଼ା, ଜେଉଟ, ସତ୍ୟାମ୍ବ, କରମଙ୍ଗା ଇତ୍ୟାଦି ଫଳମାନ ଆଜି କାଲି କାଁ ଭାଁ କ୍ୱଚିତ୍ କେଉଁଠି ଦେଖାଯାଉଛି ସିନା—ଏହା କିନ୍ତୁ ସର୍ବସାଧାରଣଙ୍କ ବ୍ୟବହାର ପାଇଁ ସୁଲଭ ନୁହେଁ।

ମୋର ଆଉ ଗୋଟିଏ ବୁଦାମୂଳ କଥା ମନେପଡୁଛି। ଆଷାଢ଼ ମାସ ଆରମ୍ଭ ହେଲା ମାତ୍ରେ ପୋଖରୀ ହୁଡ଼ାମାନଙ୍କରେ ବୁଦାଟିଏ କଅଁଳ ଛନଛନ ପତ୍ର ପକାଇ ଚଳେ ଉଠେଇଯାଏ। ତାକୁ ଆମେ କେସୁର ବୁଦା କହୁ। ତା' ମୂଳ ଖୋଳିଲେ ମୁଥା ମୂଳ ଭଳିଆ ପଦାର୍ଥଟିଏ ବାହାରେ। ତା' ଚୋପା ଛଡ଼ାଇ ଆମେ ତାକୁ ପାଟିକି ପକାଇ ଚୋବାଇ ଲାଗୁ। ଇସ୍! କି ସୁନ୍ଦର ଥଣ୍ଡାଳିଆ ମିଠା ଆଉ ବାସ୍ନା। "ମେଘ ପକାଇଲା ଟପର ଟପର କେସୁର ମାଇଲା ଗଜା।" କଥାଟି ଅଛି—ମାତ୍ର ଅସଲ କେସୁର ବୁଦା ଗଲା କୁଆଡ଼େ ?

ପଦ୍ମକେଶର ଓ କଇଁବେଣ୍ଟ ମଧ୍ୟ ଅମେ ପ୍ରଚୁରହିଁ ଖାଇଥିଲୁ ଆଗେ। ମାତ୍ର ପଦ୍ମ ବା କଇଁଫୁଲ ଫୁଟା ପୋଖରୀ ଆଉ ଆଜିକାଲି କେଉଁଠି ଦୃଷ୍ଟିଗୋଚର ହେଉଛି। ସବୁଠି ପରା ମାଛଚାଷ ହେଉଛି। ମାଛ କେଜି ବର୍ତ୍ତମାନ ଷୋହଳ ଅଠର ଟଙ୍କା। ଖୁବ୍ ଲାଭଜନକ ବ୍ୟବସାୟ। ପଦ୍ମ ବା କଇଁପୋଖରୀ କଥା ବହିରୁ ପଢ଼ି ପିଲାଏ ଜାଣନ୍ତି।

ସେମିତି ଅଷାଢୁଆ ବୋଲି ଫଳଟିଏ ଆଗେ ମିଳୁଥିଲା। ଦେଶୀଆଳୁ, ବାଇଗଣ ସାରୁ ଓ ଅଷାଢୁଆ ମିଶାଇ କେବଳ ସିଦ୍ଧ କରି ଫୁଟଣ ଦି'ଟା ପକାଇ ଭୃସୁଙ୍ଗା ପତ୍ରରେ ଘିଅ ବୁନ୍ଦାଟାଏ କରିଦେଲେ ଦେବଭୋଗ୍ୟ ବ୍ୟଞ୍ଜନ ପରି ସ୍ୱାଦିଷ୍ଟ ଲାଗେ। କାହିଁ ସେ ଅଷାଢୁଆ ଫଳ ? ପାଣ୍ଡଆଙ୍ଗୁଳି ଫୁଲ, କାଞ୍ଚନଫୁଲ ଆଦି ଫୁଲଗୁଡ଼ିକ ଆଳୁ ପୋସ୍ତ-ନଡ଼ିଆରସ ଦେଇ ତର୍କାରି କଲେ ଅପୂର୍ବ ଲାଗେ। ଝୁମୁରି ଶାଗ କାହିଁ? ଅବଶ୍ୟ ଏବେ ଥରେ ରାଜଧାନୀ ହାଟକୁ ଆସିଥିଲା। ଶହେ ଗ୍ରାମକୁ ଅଶୀ ପଇସା। ଝୁମୁରି ହେଲା ଏକ ବଣୁଆ ଲଟାର ଫୁଲ ଓ ପତ୍ର। ଭାରି ଚମତ୍କାର ସ୍ୱାଦ। ଶୀତଦିନେ କଣ୍ଟେଇକୋଳି ଓ ବରକୋଳି ଫଳେ ପ୍ରଚୁର। ଆଚାର କରି ଖାଇବାକୁ ଭାରି ସ୍ୱାଦିଷ୍ଟ। କାହିଁ ସେସବୁ କୋଳି ? ସେମିତି ମଧ୍ୟ ବର୍ଷାଦିନେ ନେହୁଆ ବା ସୀତାଫଳ। ପାଚିଲା ତାଳ। ପାଚିଲା ନେହୁଆ ଏତେ ମଧୁର ରସୁଆଳ ଯେ ତାର ତୁଳନା ନାହିଁ। ନେହୁଆ ଗଛରେ ବାଡ଼ ହୁଏ। ସେ ଗଛ ପାଇଁ କେହି ପରିଶ୍ରମ କରେ ନାହିଁ। ବର୍ଷାଦିନେ ଫଳ ଲଦି ହୋଇଯାଏ। ପାଚିଲା ତାଳରସରେ

ଅରୁଆ ଚାଉଳ ମିଶାଇ ଝାଉ କରନ୍ତୁ—ନା ଚାଉଳଚୁନା ପୋଡ଼ପିଠା କାକରା କରନ୍ତୁ। ବା ସୁଜି ମିଶାଇ ହାଲୁଆ କରନ୍ତୁ—ଅପୂର୍ବ ମାଧୁର୍ଯ୍ୟ ଭାବରେ ଏହା ଜିହ୍ୱା ଇନ୍ଦ୍ରିୟଟିକୁ ସ୍ନିଗ୍ଧ ଓ ଆର୍ଦ୍ର କରିରଖେ।

ପଶ୍ଚିମ ଓଡ଼ିଶାରେ ବର୍ଷାଦିନେ ପ୍ରାୟ ସାତଆଠ ପ୍ରକାରର ଛତୁ ମିଳେ। ଖୁବ ସୁଆଦିଆ। ବାଉଁଶ କରଡ଼ିର ଆଚାର, ରାଇ ଓ ହେଣ୍ଡୁଆ ପଶ୍ଚିମ ଓଡ଼ିଶାରେ ଅତିଚଟକଦାର ଭୋଜ୍ୟପଦାର୍ଥ। ମାତ୍ର ଉପକୂଳିଆ ଓଡ଼ିଆମାନେ ତା' ଭାବ ଏ ଯାବତ ପାଇନାହାନ୍ତି। ଖାଦ୍ୟରୁଚିରେ ଯେ ଉଦାରତା ଦେଖାଇ ପାରେ ନାହିଁ—ତାକୁ ଭୋଜନରସିକ କହିହେବ ନାହିଁ।

ମୋର ମନରେ ବଡ଼ ଦୁଃଖ ଯେ ଆମର ଏଇସବୁ କୋଳି ଓ ଫଳମୂଳ ଗୁଡ଼ିକ କ୍ରମଶଃ ଲୋପ ପାଇଯାଉଛି। ଆମର କୃଷି ବିଭାଗ, କୃଷି ବିଶ୍ୱବିଦ୍ୟାଳୟ ଓ ଅରଣ୍ୟ ବିଭାଗ ଏହି ସବୁ ବଣବୁଦା ଲଟା ସମ୍ଭୁତ ଅପୂର୍ବ ଫଳମୂଳଗୁଡ଼ିକୁ ସଂରକ୍ଷଣ କରିବା ଦିଗରେ ଦୃଷ୍ଟି ଦିଅନ୍ତେ ନାହିଁ? ଆମର ସହରଗୁଡ଼ିକର ପାର୍କମାନଙ୍କରେ ଓ ଉଦ୍ୟାନ ବାଡ଼ମାନଙ୍କରେ ଏସବୁ କୋଳିଗଛ ଲଗାଯାଇ ପାରନ୍ତା ନାହିଁ। ଆମର ପୋଖରୀ ହୁଡ଼ାମାନଙ୍କରେ ଏସବୁ ଲଗାଯାଇ ପାରନ୍ତା ନାହିଁ? କେବଳ ଧରାବନ୍ଧା ଖାଦ୍ୟ ଖାଇ ବଞ୍ଚିରହିବା ହେଲା ଗୋଟାଏ ନିରସ ଯାନ୍ତ୍ରିକ ଜୀବନ।

କୋଳିଗଛର ପ୍ରସାର ବା ଅଭିବୃଦ୍ଧି ଲାଗି ଆମର ଅରଣ୍ୟ ଓ କୃଷି ବିଭାଗ ଦୃଷ୍ଟି ଦିଅନ୍ତୁ। ଆମର ବି କୋଳିରୁଚି ଫେରିଆସୁ।



# "ଭଲ୍ଲୁକ ବିକଟ କାକଟପୁର ମହାମଙ୍ଗଳା"(?)

୨୨।୪।୮୨

ଏ ବର୍ଷର ଚୈତ୍ର ମାସଟି ଏଇ ଅଳ୍ପଦିନ ତଳେ ସରିଗଲା। ଏଇ ମାସରେ ଓଡ଼ିଶାର ବିଭିନ୍ନ ସ୍ଥାନରେ ନାନାଦି ପୂଜାପାର୍ବଣ ହୁଏ। ଗିରିଜନମାନେ ଚଇତପର୍ବ ପାଳନ କରନ୍ତି। ଏ ମାସଟି ବହୁ ଦୃଷ୍ଟିରୁ ଉପଭୋଗ୍ୟ। ବସନ୍ତଋତୁ ସରି ସରି ଆସୁଥାଏ। ନିଦାରୁଣ ନିଦାଘକାଳ ମାଡ଼ି ମାଡ଼ି ଆସୁଥାଏ। ଦିନଯାକ ଖରା–ମାତ୍ର ରାତିଟି ଭାରି ଚମତ୍କାର। ବିଶେଷତଃ ଉପକୂଳ ଅଞ୍ଚଳରେ ଦିନରାତି ଚଇତାଳି ପବନ ଉନ୍ମାଦ ବୋହି ବହୁଥାଏ। ତେବେ ଆଜିକାଲି ସମ୍ବଲପୁର ମଧ୍ୟ ଏ ମାସରେ ବେଶ୍ ଉପଭୋଗ୍ୟ। ଚାରିଆଡ଼େ କେନାଲ ପାଣି ମାଡ଼ିଯିବା ଫଳରେ ପାଗ ଖୁବ୍ ଥଣ୍ଡା ଓ ଉପଭୋଗ୍ୟ ମନେହୁଏ। ଓଡ଼ିଶାରେ ସବୁ ଦେବୀପୀଠରେ ଏ ମାସରେ ଝାମୁଯାତ୍ରା ଅନୁଷ୍ଠିତ ହୁଏ। କାଳେସୀମାନେ ନିଆଁରେ ଚାଲନ୍ତି।

ଏ ମାସର ପ୍ରତି ମଙ୍ଗଳବାର ଦିନ କାକଟପୁରର ଶ୍ରୀମଙ୍ଗଳାଙ୍କ ପାଖରେ ଯେଉଁ ଝାମୁଜାତ ହୁଏ– ତାହା ବୋଧହୁଏ ସବୁଠାରୁ ବଡ଼ ଆକର୍ଷଣୀୟ। ମଙ୍ଗଳାଙ୍କ ସନ୍ନିକଟସ୍ଥ ଦେବୀ କାକଟେଇଙ୍କ ପାଖେ ବଳି ପକାଇବା ପାଇଁ ମାନସିକ କରିଥିବା ବହୁ ଦୂରଦୂରାନ୍ତର ନରନାରୀ ଅସଂଖ୍ୟ କୁକୁଡ଼ା ଓ ଛେଳି, ମେଣ୍ଢା ବୋଦା ଧରି ସମାବେଶ ହୁଅନ୍ତି।

ମଙ୍ଗଳାଙ୍କ ପାଖେ କିନ୍ତୁ କାକେରା ଓ ଚୁଡ଼ାଘଷା ଭୋଗ ପ୍ରସିଦ୍ଧ। ବେତପେଡ଼ିରେ ଚୂଡ଼ାଘଷା ପ୍ରସାଦ ଧରି ଅସଂଖ୍ୟ ଲୋକ ଘରକୁ ଫେରୁଥାନ୍ତି। ମଙ୍ଗଳାଙ୍କ ପାଖେ ନାଲି ନାଲି ସୂତା ବିକ୍ରୀ ହୁଏ। ତାକୁ ତାରେଣୀ ସୂତା କୁହାଯାଏ। ଏହି ତାରେଣୀ ସୂତା ପିଲାମାନଙ୍କୁ ହଇଜା, ବସନ୍ତ, ହାଡ଼ଫୁଟି, ମିଳିମିଳା, ପିଳ୍ହୁଳା, ପାଳିଜ୍ୱର, ରକ୍ତଝାଡ଼ା ଓ ଡାହାଣୀ ପିତାଶୁଣୀଙ୍କ ଦୁଷ୍ଟ ଦୃଷ୍ଟିରୁ ରକ୍ଷାକରେ।

ଫୁଲନଖରା ନିଆଳିମାଧବ ରାସ୍ତାରେ କିମ୍ବା ପିପିଲି-ନିମାପଡ଼ା-କାକଟପୁର ରାସ୍ତାରେ–କିମ୍ବା ପୁରୀ ଗୋପ–ଚାରିଛକ ରାସ୍ତାରେ ଏଇ ଚୈତ୍ର ମଙ୍ଗଳବାର ଦିନ ମଙ୍ଗଳାଯାତ୍ରୀଙ୍କ ଧାଡ଼ି ଲମ୍ବିଥାଏ। ଟାଟାଭିଡ଼ା ଶଗଡ଼ଗାଡ଼ି ଦିନରାତି ଧାଡ଼ି ବାନ୍ଧି ଚାଲିଥାନ୍ତି। ବଳଦଙ୍କ ବେକରେ ଘଣ୍ଟିମାନ ରୁଣୁଝୁଣୁ ବାଜୁଥାଏ। ବର୍ଷ ବର୍ଷ ଧରି ମୁଁ ଦେଖିଆସିଛି ଏଇ ମନୋରମ ଶୋଭାଯାତ୍ରା ଚାଲିଥାଏ କାକଟପୁରର

ସର୍ବମଙ୍ଗଳ ମାଙ୍ଗଲ୍ୟେ ଶିବେସର୍ବାର୍ଥ ସାଧିକେ ମା'ମଙ୍ଗଳାଙ୍କର ଦର୍ଶନ ଓ ଅଭୟବର ପ୍ରାପ୍ତି ଆଶାରେ। କାକଟପୁରର ମଙ୍ଗଳାଦେବୀଙ୍କୁ କବିବର ରାଧାନାଥେ ତାଙ୍କ ଚନ୍ଦ୍ରଭାଗା କାବ୍ୟରେ ବର୍ଣ୍ଣନା କରିଛନ୍ତି—"ଭଲୁକ ବିକଟ କାକଟପୁର ମହାମଙ୍ଗଳା।" କିନ୍ତୁ ପ୍ରକୃତରେ ମଙ୍ଗଳା ଦେବୀ ଏପରି ବିକଟ ଦର୍ଶନ ନୁହନ୍ତି—ପକ୍ଷାନ୍ତରେ ସେ ପରମାସୁନ୍ଦରୀ। ବର୍ତ୍ତମାନର ମୂର୍ତ୍ତିତତ୍ତ୍ୱବିତ୍‌ମାନେ ମଙ୍ଗଳାଦେବୀଙ୍କୁ ଶାକ୍ତ ଉପାସକମାନଙ୍କ ଆରାଧ୍ୟା ଦୁର୍ଗାଦେବୀ ବୋଲି କୁଆଡ଼େ ମାନୁନାହାନ୍ତି। ସେମାନଙ୍କ ମତରେ ମଙ୍ଗଳା କୁଆଡ଼େ ବୌଦ୍ଧଧର୍ମର କୌଣସି ଏକ ତାରା ମୂର୍ତ୍ତି। ଏ କୁଆଡ଼େ ଆଗେ ଥିଲେ ବୌଦ୍ଧମାନଙ୍କ ପ୍ରଜ୍ଞା ପାରମିତା।

କେଜାଣି କୋଉ ଉପାସକମାନଙ୍କର ଧ୍ୟାନମୂର୍ତ୍ତି ଥିଲେ ମୂଳରୁ ଏଇ ମଙ୍ଗଳା ଦେବୀ। ଏବେ କିନ୍ତୁ ସେ ଦୁର୍ଗାଙ୍କ ମୂର୍ତ୍ତି—ମଙ୍ଗଳମୟୀ ମାତୃମୂର୍ତ୍ତି—ଅଭୟଦାୟିନୀ ସଙ୍କଟ ତାରିଣୀ ସର୍ବମଙ୍ଗଳ ବିଧାୟିନୀ ମା' ମଙ୍ଗଳା। ଉପକୂଳ ଅଞ୍ଚଳରେ ବିଶେଷତଃ କଟକ, ପୁରୀ ଜିଲାରେ ଦାଣ୍ଡରେ ପନ୍ଥେଇ ଖୋଳି ସେଥିରେ ପଣାପାଣି ଭୋଗ ଦେଇ ଗ୍ରାମ୍ୟ ନାରୀମାନେ ଏଇ ମଙ୍ଗଳା ମାଆଙ୍କୁ ପୂଜାକରନ୍ତି। ନବକଳେବରବେଳେ ଓଡ଼ିଶାର ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ପାଇଁ ଦାରୁ ଖୋଜିବାକୁ ଯିବା ପୂର୍ବରୁ ଦାରୁ ସଂଗ୍ରାହକ ସମ୍ମାନନୀୟ ଦଇତାପତିମାନେ ଏଇ ମଙ୍ଗଳାଙ୍କ ପାଖେ ଆସି ଧରା ପଡ଼ିଥାନ୍ତି। ମଙ୍ଗଳାଦେବୀ ସେମାନଙ୍କ ଭିତରୁ ଜଣକୁ ସ୍ୱପ୍ନରେ ଦେଖାଦେଇ କହିଦିଅନ୍ତି—"ଏଇ ଦିଗରେ ଏଇ ରାସ୍ତାରେ ଯାଅ—ଅମୁକ ଗାଁରେ ଅମୁକ ସ୍ଥାନରେ ସେଇ ଯୋଉ କଲ୍ୟାଣପ୍ରଦ ନିମ୍ବବୃକ୍ଷ ବିରାଜମାନ କରିଛନ୍ତି—ସେଇ ମହାବୃକ୍ଷଙ୍କୁ ଭଜନା କର। ମହାପ୍ରଭୁଙ୍କ ବିଗ୍ରହ ପାଇଁ ସର୍ବଶକ୍ତିକୁ ସ୍ୱଅଙ୍ଗନରେ ଧାରଣକରି ସେ ସେଠାରେ ଆତ୍ମାହୁତି ଦେବା ଲାଗି ଅପେକ୍ଷାକରି ରହିଛନ୍ତି ଧ୍ୟାନସ୍ଥ ହୋଇ ଆଜିକୁ ପଚିଶିବର୍ଷ ହୋଇଗଲା।"

ଦଇତାପତିମାନେ ନିଦ୍ରା ତେଜି ମା' ମଙ୍ଗଳାଙ୍କ ନିର୍ଦ୍ଦେଶ ପାଳନ କରି ସେହି ଦିଗକୁ ଦାରୁସନ୍ଧାନରେ ଅନୁକୂଳ କରନ୍ତି।

ଓଡ଼ିଶାର ବିଖ୍ୟାତ ଦେବୀମାନଙ୍କ ମଧ୍ୟରେ ମଙ୍ଗଳା ପରମ ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟମୟୀ ଦେବୀ। ତାଙ୍କର ଆଭିଜାତ୍ୟ ଆଉ କାହାର ନାହିଁ। କାରଣ ସେ ଶ୍ରୀ ଜଗନ୍ନାଥଙ୍କ ସହିତ ପ୍ରତ୍ୟକ୍ଷ ଭାବେ ସମ୍ପର୍କିତା। ସମ୍ବଲପୁରର ସମଲାଈ, ବାଣପୁରର ଭଗବତୀ, ଯାଜପୁରର ବିରଜା, କେନ୍ଦୁଝରର ତାରେଣୀ, ଭୁବନେଶ୍ୱରର ଗୌରୀ, ଚିଲିକାର କାଳିଜାୟୀ, ବାଙ୍କିରେ ଚର୍ଚ୍ଚିକା, କଟକର ଚଣ୍ଡୀ, ରଣପୁରର ମଣିନାଗେଶ୍ୱରୀ, ଗଞ୍ଜାମର ତାରାତାରିଣୀ, ଭୂଷଣ୍ଡପୁରର ଉଗ୍ରତାରା, ବାରିପଦାର ଅମ୍ବିକା ପ୍ରଭୃତି ଆଭିଜାତ ମହିମାମୟୀ ଦେବୀମାନଙ୍କ ମଧ୍ୟରେ କାକଟପୁରର ମଙ୍ଗଳାଙ୍କ ସ୍ଥାନ ସ୍ୱତନ୍ତ୍ର। ସେ ପରମ ବୈଷ୍ଣବୀ। ସେ ପରମା ରମଣୀୟା। ନିରାମିଷାଶୀ ତାଙ୍କ ପାଖରେ ଠିଆହୋଇ ତାଙ୍କର ମୁଖମଣ୍ଡଳକୁ ଚାହିଁଲେ ଆଖିର ପଲକ ପକାଇବାକୁ ଇଚ୍ଛାହୁଏ ନାହିଁ।

ଶିଳ୍ପୀମାନେ ଏକ ବିଶାଳ ମୁଗୁନୀ ପଥରରେ ବହୁ ଧୈର୍ଯ୍ୟ, ଧ୍ୟାନ, ସୌନ୍ଦର୍ଯ୍ୟବୋଧ ଓ ପବିତ୍ରତା ରକ୍ଷାକରି ଅତ୍ୟନ୍ତ ସୂକ୍ଷ୍ମ କମକୃଟକରା ବିନ୍ଧାଣୀପଣରେ ତାଙ୍କର ମେଢ଼ ଓ ମୂର୍ତ୍ତି ଖୋଦନ କରିଛନ୍ତି। ସମଗ୍ର ମେଢ଼ ସମେତ ମୂର୍ତ୍ତିଟି ମନ ଭିତରେ ଅପୂର୍ବ କଲ୍ୟାଣ ଭାବନାଯୁକ୍ତ ଅନୁଭବ ସୃଷ୍ଟି କରେ।

ଆହୁରି ସୁନ୍ଦର କଥା ହେଉଛି ମା' ମଙ୍ଗଳାଙ୍କର ଶ୍ରୀଜଗନ୍ନାଥଙ୍କ ଦେହଲଗା ଛଡ଼ା ଫୁଲମାଳ ନିଜ ଖୋଷାରେ ଗୁଡ଼ାଇ ହେବାକୁ ବା ଗଳାରେ ପିନ୍ଧିବାକୁ ଭାରି ଆଶା। ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦ ସେବନ କରିବାକୁ ଭାରି ଆଶା। ସେ ସବୁ ଦିନେ ସେତକ ପାଇବା ପାଇଁ ଅପେକ୍ଷା କରିଥାନ୍ତି। ଆପଣ ପୁରୀ ଯାଇ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ତାଙ୍କ ଛଡ଼ା ଧଣ୍ଡା ମାଳଟିଏ ଆଣିବେ ଏବଂ ଅନ୍ନ, ଡାଲି, ମହୁର, ବେସର ମହାପ୍ରସାଦ କିଛି ସାଙ୍ଗରେ ଆଣିବେ। ପୁରୀରୁ କାକଟପୁର ବସରେ ବସି ମଙ୍ଗଳାଙ୍କ ଦର୍ଶନରେ ଆସିବେ। ମଙ୍ଗଳାଦେବୀ ସେତେକ ଆପଣଙ୍କ ହାତରେ ଦେଖିବାକ୍ଷଣି ତାଙ୍କର ଶ୍ରୀମୁଖମଣ୍ଡଳ ପ୍ରସନ୍ନ ହୋଇ ଉଠିବ। ତାଙ୍କର ପ୍ରବାଳନିନ୍ଦି ଅଧରରେ ହସ ଫୁଟିଉଠିବ। ତାଙ୍କର ସାରା ଶରୀରରେ ପୁଲକ ଖେଳିଯିବ। ଅତ୍ୟନ୍ତ ଆଗ୍ରହରେ ସେ ଆପଣଙ୍କ ହାତରୁ ଶ୍ରୀଜଗନ୍ନାଥଙ୍କ ଧଣ୍ଡାଟି ନେଇ ଆପଣାର ବିପୁଳ ସୁନ୍ଦରତମ ଗଭାରେ ଗୁଡ଼ାଇ ଦେବେ। ଏବଂ ମହାପ୍ରସାଦତକ କୋଟିନିଧି ପାଇଲା ପରି ସ୍ୱୟଂ ହାତରେ ଧରି ସେବା କରିବେ। ଏତେକ ଦେଖିଲା ପରେ ଆପଣଙ୍କ ପଞ୍ଚପ୍ରାଣ ମଧ୍ୟ ଶାନ୍ତ ଓ ଆନନ୍ଦ ହୋଇଯିବ। ଆପଣଙ୍କର ସର୍ବ ଓ ସର୍ବତ୍ର ମଙ୍ଗଳମୟ ହୋଇଯିବ। ମଙ୍ଗଳାଙ୍କ ଶୁଭଦୃଷ୍ଟି ସର୍ବତ୍ର ପ୍ରସାରିତ ହୋଇଯିବ।

ପୁଣ୍ୟତୋୟା ପବିତ୍ରତମା ଉତ୍କଳର ମୁନିଋଷି ସିଦ୍ଧ ସାଧକ ସେବିତା ପରମ ମାନନୀୟା ଗୁପ୍ତ ଗଙ୍ଗା ରୂପିଣୀ ତୀର୍ଥମାଳିନୀ ପ୍ରାଚୀନଦୀ କୂଳରେ ମା' ମଙ୍ଗଳାଙ୍କର ଅଧିଷ୍ଠାନ। ତାଙ୍କ ପାଖରେ ନିତ୍ୟ କର୍ପୂର ଚନ୍ଦନ ଆଉ ଚଉସମର ବାସ୍ନା ମହାପ୍ରସାଦର ବାସ୍ନା। ମଲ୍ଲି, ମାଧବୀ, ଚମ୍ପା, ବଉଳ ଆଉ ଦୟଣା ଫୁଲର ବାସ୍ନା। ସେଠି ଅହରହ ହରିନାମ ଶୁଭୁଛି। ହରି ହରଙ୍କ ଭଜନ ଚାଲିଛି। ମା' ମଙ୍ଗଳା ଏକା ଦେହରେ ଲକ୍ଷ୍ମୀ ଆଉ ପାର୍ବତୀ।

ଏକାଧାରରେ ସେ ଜଗନ୍ନାଥ ବଲ୍ଲଭା ଓ ଲୋକନାଥ-ଗୃହିଣୀ। ସେଠାରେ ବେଲପତ୍ର ଓ ତୁଳସୀ ଗୋଟିଏ ସୂତ୍ରରେ ମାଳାୟିତ ହୁଅନ୍ତି। ସେଠି କ୍ଷୀରୀ, ଖେଚେଡ଼ି, କାକେରା ଚୂଡ଼ାଘଷାର ଶୁଚିମନ୍ତ ପ୍ରସାଦ। ମଙ୍ଗଳାଦେବୀ ପୁଣି ପ୍ରତି ଦିନ ଗୀତା, ଭାଗବତ ଶୁଣନ୍ତି।

କିନ୍ତୁ–କିନ୍ତୁ–ତାଙ୍କ ମନ୍ଦିରର ସାମାନ୍ୟ ଦୂରରେ ମା' ମଙ୍ଗଳାଙ୍କ ଆଶ୍ରିତା ହୋଇ ବିରାଜିତା ଆଉ ଜଣେ ଉପଦେବୀ। ମା' ଦୁର୍ଗାଙ୍କ ଅନନ୍ତ ପ୍ରାଣ–ପ୍ରକୃତିରୁ ସମ୍ଭୂତା ଏହି ଚଣ୍ଡୀ ବା ଚାମୁଣ୍ଡାଙ୍କର ଲହଲହ ଶୋଣିତଲିପ୍ତ ଜିହ୍ୱା–ଘୋର ଆମିଷଲୋଳ

ଓଷ୍ଠାଧାର–କୋଟରାଗ୍ନି ସଦୃଶ ଦାଉ ଦାଉ ଆଖି ଅଶାନ୍ତ ଶୋଣିତ –ଲୋଲୁପତାର ଆଉ ଅହରହ ଯୌନ ବୁଭୁକ୍ଷାର ବିକଟ ପ୍ରକଟ ପ୍ରତିମୂର୍ତ୍ତି। ଏ ଚଣ୍ଡୀ ଏକ କାଳରେ ଆପଣାର ଯୌନାଙ୍ଗରେ ଅସୁରର ବୀର୍ଯ୍ୟ ଶୋଷଣ କରନ୍ତି ଓ ମୁଖ ଦ୍ୱାରରେ ସେହି ଅସୁରର ଶୋଣିତ ପାନ କରୁଥାନ୍ତି। ଏହି ପ୍ରଚଣ୍ଡା, ଦୁର୍ଦ୍ଧର୍ଷୀ, ଅଶାନ୍ତ ଘୋର ଦର୍ଶନା ଉନ୍ମାଦିନୀ ଚଣ୍ଡୀଙ୍କର ନାମ ହେଲା କାକଟେଈ। ପ୍ରତି ମୁହୂର୍ତ୍ତରେ ସେ ଅସଂଖ୍ୟ କୁକୁଡ଼ା, ଛେଳୀ, ମେଣ୍ଢା, ମଇଁଷି ଓ ମଦ୍ୟ ଗ୍ରାସକରି ଚାଲିଛନ୍ତି। ଅସୁର ଓ ପଶୁରକ୍ତ ପାନରେ ନିତ୍ୟ ବିଭୋଳିତା ଏଇ କାକଟେଈଙ୍କ ଉଗ୍ର ରୂପ ବର୍ଣ୍ଣନା କରିଛନ୍ତି ରାଧାନାଥ–"ଭଲ୍ଲୁକ ବିକଟ କାକଟପୁର ମହାମଙ୍ଗଳା।"

ଶାକ୍ତଭକ୍ତମାନେ କହନ୍ତି–ଏହି ଭୟଙ୍କର ଦେବୀ ନ ଥିଲେ–ଦୁଷ୍ଟ ପଶୁ ଓ ଅସୁରମାନେ ମା' ମଙ୍ଗଳାଙ୍କୁ ରଖିଦିଅନ୍ତେ ନାହିଁ–ରଖେଇ ମଧ ଦିଅନ୍ତେ ନାହିଁ।

ବନ୍ଧୁ! ଏ ବର୍ଷର ଚଇତମାସ ତ ଗଲାଚାଲି। ଆସନ୍ତା ବର୍ଷ ଅନ୍ତତଃ ବନ୍ଧୁ ବାନ୍ଧବୀଙ୍କୁ ଧରି ନିଶ୍ଚେ କାକଟପୁର ଯାଇ ମଙ୍ଗଳା ଦର୍ଶନ କରି ଆସନ୍ତୁ। ତା' ନହେଲେ ଏବେ ବି କୋଉ ଛୁଟି ଫୁଟି ଦିନ ଦେଖି ଯା'ନ୍ତୁ ନା। ଭଲ ଲାଗିବ–ଖୁବ୍ ଭଲ ଲାଗିବ।

❋❋

# ଜଣେ ଅଧ୍ୟକ୍ଷଙ୍କ ମୁହଁରୁ...

୩।୬।୮୨

ଆଜିକାଲି କଲେଜମାନଙ୍କରେ ଛାତ୍ର ବିଶୃଙ୍ଖଳା ଓ ଉଚ୍ଛୃଙ୍ଖଳତା ଏତେ ଚରମସ୍ତରକୁ ଚାଲିଗଲାଣି ଯେ, ସେ ଦିଗରେ ଆଉ କିଛି କରି ହେଲାଭଳି ଲାଗୁନାହିଁ। ଅଭିଜ୍ଞ କୃତବିଦ୍ୟ ଓ ଖ୍ୟାତନାମା ଅଧ୍ୟାପକ ଓ ଅଧ୍ୟକ୍ଷମାନେ ମଧ୍ୟ ନିରାଶବାଣୀ ଶୁଣାଇଲେଣି। ଅଧ୍ୟାପକମାନେ ଆଉ ଅଧ୍ୟକ୍ଷପଦ ଗ୍ରହଣ କରିବାକୁ ମଧ୍ୟ ରାଜି ହେଉ ନାହାନ୍ତି। ଅଧିକାଂଶ ଅଧ୍ୟାପକଙ୍କ ମତ ହେଲା—ଆଜିକାଲି ଯେତେବେଳେ ଅଧିକାଂଶ ଗାର୍ଡ଼ିଆନମାନେ ନିଜେ କୌଣସି ଉଚ୍ଚ ମୂଲ୍ୟବୋଧରେ ବିଶ୍ୱାସ କରନ୍ତି ନାହିଁ, ସେତେବେଳେ ସେସବୁଙ୍କ ଘରୁ ଯୋଉ ପିଲା ଆସୁଛନ୍ତି ସେମାନଙ୍କ ଚରିତ୍ର ବା ଆଚରଣକୁ ଉନ୍ନତ କରିବାରଚେଷ୍ଟା ବୃଥା। ତା'ଛଡ଼ା ବର୍ତ୍ତମାନର ରାଜନୈତିକ ନେତା ଓ ଧନ କୁବେରମାନେ ଯୋଉ ଜୀବନଦର୍ଶନ ପ୍ରଦର୍ଶନ କରୁଛନ୍ତି—ତାହାହିଁ ଛାତ୍ରଛାତ୍ରୀଙ୍କ ପକ୍ଷେ ଆଦର୍ଶ ହୋଇଛି। ଆମେ ଆଉ କଣ କରିପାରିବୁ ?

କିନ୍ତୁ ସେଦିନ ଏକ ବିଖ୍ୟାତ କଲେଜର ଜଣେ ବିଶିଷ୍ଟ ଅଧ୍ୟକ୍ଷ ତାଙ୍କ ଜୀବନକୁ ଉଦାହରଣଟିଏ ଦେଇ ଅଲଗା କଥାଟିଏ କହିଲେ। ସେ କହିଲେ—ବର୍ତ୍ତମାନର ଛାତ୍ର ବିଶୃଙ୍ଖଳା ଓ ଉଚ୍ଛୃଙ୍ଖଳତା ପ୍ରଭୃତିର କାରଣ ବହୁ ଜଟିଳ ଓ ସୁଦୂରପ୍ରସାରୀ—ଏଥିରେ ସନ୍ଦେହ ନାହିଁ ଏବଂ ବର୍ତ୍ତମାନ ଆମର ସମାଜପତିମାନେ ଯଦି ସମାଜ ଢାଞ୍ଚାକୁ ନ ବଦଳାନ୍ତି ଓ ଏକ ବ୍ୟାପକ ଉଚ୍ଚମାନର ମୂଲ୍ୟବୋଧ ନିଜ ଜୀବନରେ ଓ ସମାଜ ପରିଚାଳନାରେ ପ୍ରତିଷ୍ଠା ନ କରନ୍ତି, ତେବେ ଏ ସବୁର ସ୍ଥାୟୀ ସମାଧାନ ହୋଇପାରିବ ନାହିଁ। ଶେଷରେ ବର୍ତ୍ତମାନର ଶିକ୍ଷା ପଦ୍ଧତିକୁ ମଧ୍ୟ ସଂପୂର୍ଣ୍ଣ ବଦଳାଇ ଦେବାକୁ ପଡ଼ିବ। କିନ୍ତୁ—ସେ ତ ଠିକ କଥା। ମାତ୍ର ବର୍ତ୍ତମାନର ଅଧ୍ୟକ୍ଷ ଓ ଅଧ୍ୟାପକମାନେ ଯେ ଏ ଦିଗରେ କିଛି କରି ପାରିବେ ନାହିଁ, ତା ଆଦୌ ନୁହେଁ। ବର୍ତ୍ତମାନର ଅଧ୍ୟକ୍ଷ ଓ ଅଧ୍ୟାପକମାନେ କଲେଜ ଓ ଛାତ୍ର ଛାତ୍ରୀଙ୍କ ସମସ୍ୟା ସହିତ ଯେତିକି ସଂପୃକ୍ତ ହେବା କଥା ସେତିକି ହେଉ ନାହାନ୍ତି ଏବଂ ଜଣେ ଛାତ୍ର ବା ଛାତ୍ରୀର ନୈତିକ ଓ ମନସ୍ତାତ୍ତ୍ୱିକ ଜୀବନ ସହିତ ଯେପରି ଭାବେ ପରିଚିତ ହେବା ଉଚିତ ତାହା ହେଉନାହାନ୍ତି। ପିଲାମାନଙ୍କୁ ଯେତିକି ସମ୍ମୁଖୀନ ହେବା ଉଚିତ, ତାହା ହେଉ ନାହାନ୍ତି। ସର୍ବୋପରି ଯଦି ଶିକ୍ଷକ, ଅଧ୍ୟାପକମାନେ ଏ ଦିଗରେ କିଛି ପରିମାଣରେ

ଭାବିତ ହୁଅନ୍ତେ, ତା' ହେଲେ ଅନ୍ତତଃ କିଛି ସମାଧାନର ପନ୍ଥା ଦୃଶ୍ୟମାନ ହୁଅନ୍ତା। ମାତ୍ର ଆମର ଶିକ୍ଷକ ଶିକ୍ଷୟିତ୍ରୀଙ୍କ ଭିତରୁ ଥୋକେ ପିଲାମାନଙ୍କ ବିଷୟରେ ଉଦାସୀନ ଓ ଆଉ କେତେକ ଭୟ ଆଶଙ୍କାରେ ପଳାୟନପନ୍ଥୀ। ଆଜିକାଲିର ଯୁବକମାନଙ୍କ ସହିତ ଯେ କୌଣସି ବିଷୟରେ ଡିଲ୍ କରିବାକୁ ହେଲେ ସେହି ପୁରାତନ ଧରବନ୍ଧା ପଦ୍ଧତି ଆଉ ଚଳିବ ନାହିଁ। ପ୍ରତ୍ୟେକ ଅଧ୍ୟାପକଙ୍କୁ ଏଥିପାଇଁ ସ୍ୱତନ୍ତ୍ର ପଦ୍ଧତି ଆବିଷ୍କାର କରିବାକୁ ପଡ଼ିବ। ଏବଂ ସବୁଠାରୁ ବଡ଼ କଥା ହେଲା—ଅଧ୍ୟାପକଙ୍କର ଆନ୍ତରିକ ସଦିଚ୍ଛା ଓ ସଂପୃକ୍ତି।

ଏଥର ଅଧ୍ୟକ୍ଷ ମହୋଦୟ ତାଙ୍କ ନିଜ ଜୀବନରୁ ଉଦାହରଣଟିଏ ଦେଲେ। ଦିନେ ତାଙ୍କ କଲେଜରେ ରାତିରେ ଗୋଟିଏ ନାଟ୍ୟ ଉତ୍ସବ ହେଉଥିଲା। ସେଦିନ କଲେଜ ପ୍ରାଙ୍ଗଣରେ ଛାତ୍ରଛାତ୍ରୀଙ୍କ ସମେତ ବହୁ ନିମନ୍ତ୍ରିତ ଅତିଥି ଯୋଗ ଦେଇଥିଲେ। ନାଟ୍ୟାରମ୍ଭ ହେବାର କିଛିଡ଼ ପୂର୍ବରୁ ହଠାତ୍ ଚତୁର୍ଦ୍ଦିଗରେ ବିଦ୍ୟୁତ୍ ଆଲୁଅ ଲିଭିଗଲା। କେବଳ ଚାରି ପାଞ୍ଚଟି ପେଟ୍ରୋମାକସ ଆଲୁଅ ରଙ୍ଗମଞ୍ଚ ପାଖରେ ଜଳୁଥାଏ। ରାସ୍ତାଘାଟ କିନ୍ତୁ ପ୍ରାୟ କୋଡ଼ିଏ ପଚିଶ ମିନିଟ୍ କାଳ ଅନ୍ଧାର ରହିଲା। ସେଇ ଅନ୍ଧାର ଭିତରେ କେତେକ ଛାତ୍ରଙ୍କ ଭିତରେ, ରାତ୍ରିଚର ଅନ୍ଧାରୀପ୍ରାଣୀମାନେ ଜାଗି ଉଠିଲେ। କେତେକ ଯୁବକ କୁକୁର, ବିଲୁଆଙ୍କ ପରି ରଡ଼ି ଛାଡ଼ିଲେ। ଆଉ କେତେକ ନାନାଦି ଅଶ୍ଳୀଳ ଅଶ୍ରାବ୍ୟ ଭାଷାରେ ଚିତ୍କାର ଆରମ୍ଭ କରିଦେଲେ। ପରିବେଶ ଅତ୍ୟନ୍ତ ଦୁଃସହ ହୋଇ ଉଠିଲା।

ରଙ୍ଗମଞ୍ଚଠାରୁ କିଯଦ୍ ଦୂରରେ ଛାତ୍ରୀ ଓ ମହିଳାମାନେ ବସିଥିଲେ। ହଠାତ୍ ସେହି ସାମାନ୍ୟ ଆଲୋକିତ ଅନ୍ଧାର ଭିତରେ କେତୋଟି ଛାତ୍ର ନାନା ଅଶ୍ଳୀଳ ଶବ୍ଦ କହି କହି ସେଇଆଡ଼କୁ ମାଡ଼ି ଚାଲିଥିଲେ। ସେମାନଙ୍କୁ ଜଣା ନାହିଁ ଯେ ସ୍ୱୟଂ ଅଧ୍ୟକ୍ଷ ସେମାନଙ୍କ ପଛେ ପଛେ ଆସୁଛନ୍ତି। ହଠାତ୍ ଅଧ୍ୟକ୍ଷ ମହୋଦୟ ଜଣେ ଅଶ୍ଳୀଳ ବାକ୍ୟ ବିଳାସୀ ଯୁବକର ପଛପଟୁ ତାର ବେକଟି ଧରି ପକାଇଲେ। ଛାତ୍ରଟି ହଠାତ୍ 'କିଏ ବେ ଶଳା' କହି ବୁଲିପଡ଼ି ହଠାତ୍ ଅଧ୍ୟକ୍ଷଙ୍କୁ ଦେଖି ଜିଭ କାମୁଡ଼ି ଆକୁତି କାକୁତି ହୋଇ କହିଲା—ସାର୍। ମୋର ଭୁଲ୍ ହୋଇଛି, କ୍ଷମା କରନ୍ତୁ।

ମାତ୍ର ଅଧ୍ୟକ୍ଷ ମହାଶୟ ତାକୁ ଗୋଟିଏ ଅପେକ୍ଷାକୃତ ନିର୍ଜନ ସ୍ଥାନକୁ ଭିଡ଼ି ନେଇଗଲେ। ଏବଂ ତାର ନାମ ପଚାରିଲେ। ବହୁବାର ପଚାରିବା ପରେ ସେ ତା' ନାଁ କହିଲା—ନୀଳାମ୍ବର। ସେଉଠୁ ଅଧ୍ୟକ୍ଷ ତାକୁ ତାର ସାଙ୍ଗିଆ ପଚାରିଲେ। ମାତ୍ର ସେ ସେଇଟି ଆଦୌ କହିଲା ନାହିଁ। ଅଧ୍ୟକ୍ଷ ବାରମ୍ବାର ପଚାରି ଚାଲିଥାନ୍ତି—କଣ ତୁମ ସାଙ୍ଗିଆ କୁହ ନୀଳାମ୍ବର ସାହୁ, ନା ପ୍ରଧାନ, ନା ମିଶ୍ର ନା ନାଏକ, ନା ମହାନ୍ତି? ମାତ୍ର ଛାତ୍ରଟି କିଛି କହୁ ନଥାଏ। ବହୁ ସମୟ ପରେ ସେ ଖୁବ୍

ଧୀରଭାବେ ଡରି ଡରି କହିଲା–ସାର 'ସେଠୀ'। ନୀଳାମ୍ବର ସେଠୀ। ସେଇଠୁ ଅଧକ୍ଷ ପଚାରିଲେ, ତୁମ ବାପାଙ୍କ ନାମ କଣ? ନୀଳାମ୍ବର ସେଠୀ ଉତ୍ତର ଦେଲେ–ମଦନ ସେଠୀ। ତା'ପରେ ନିମ୍ନ ପ୍ରକାରେ ଅଧକ୍ଷ-ଛାତ୍ରଙ୍କ ବଚନିକା ଚାଲିଲା–

–ତୁମ ବାପା ରଜକ ବୃତ୍ତି କରନ୍ତି?

–ଆଜ୍ଞା!

–ଗାଁଟି ଯାକର ମଇଳା ଲୁଗାକୁ ସଫାକରନ୍ତି ତୁମ ବାପା। ଏବଂ ତୁମର ପୂର୍ବପୁରୁଷମାନେ ମଧ୍ୟ ଏହି ମହାନ ବୃତ୍ତି କରି ଆସିଛନ୍ତି। ସାରା ଗାଁର ମଇଳା ସଫା କରିବା ଠାରୁ ପୁଣ୍ୟକାର୍ଯ୍ୟ ଆଉ ଅଛି କି? କ'ଣ କହୁଛ?

–ଆଜ୍ଞା!

–ତୁମ ବାପାଙ୍କ ପିଲାବେଳେ ଏଠି କଲେଜ ଥିଲା କି?

–ନା' ସାର।

–ତେଣୁ ସେ ନିଜେ କଲେଜରେ ପଢ଼ି ପାରିଲେ ନାହିଁ। ସେ ତୁମକୁ କଲେଜରେ ପଢ଼ାଇ ଭାବିଥିଲେ –ତୁମ ପାଟିରୁ କେବଳ ସଫା କଥା ବାହାରିବ। ବାହାରିବ ବେଦ ବେଦାନ୍ତର ଭାଷା–ବିଜ୍ଞାନର ଭାଷା ମାତ୍ର ତୁମ ପାଟିରୁ ବାହାରୁଛି ଏଇ ମଇଳା ଆଉ ଅସ୍ପୃ କଥା। ତୁମର ବାପା ଯଦି ଏକଥା ଜାଣିବେ, ତେବେ କଣ ଭାବିବେ? ନିର୍ଲ୍ଲଜ ପିଲା! କିଏ ତାର ବଂଶକୁ ଦିନକୁ ଦିନ ସଭ୍ୟକରି ଚାଲେ–ମାତ୍ର ତୁମେ ତୁମ ବଂଶକୁ ଦିନକୁ ଦିନ ଅସଭ୍ୟ କରି ଚାଲିଛ? କୁଳାଙ୍ଗାର, ଅପଦାର୍ଥ! ଛି ଛି!

ଏହାପର କଥା ମୁଁ ବର୍ଣ୍ଣନା କରିପାରିବିନି। କାରଣ ଏହା ଜଣେ ଉଚ୍ଚକୋଟିର ଶିକ୍ଷକଙ୍କର ଆନ୍ତରିକ ଅଭିଜ୍ଞତାର କଥା। ତାଙ୍କ ତୁଣ୍ଡରୁ ନ ଶୁଣିଲେ ବିଶ୍ୱାସ ହେବ ନାହିଁ। ତାଙ୍କର କଥାରେ କି ମନ୍ତ୍ରଶକ୍ତି ଥିଲା କେଜାଣି, ପିଲାଟି କାନ୍ଦିଉଠିଲା କଇଁ କଇଁ ହୋଇ। ଅଧକ୍ଷ ମହାଶୟ ତାର ମସ୍ତକରେ ହାତ ବୁଲାଇ ତାକୁ କହିଲେ–ମୋର ପାଦ ଛୁଇଁ ପ୍ରତିଜ୍ଞାକର–ଆଜିଠାରୁ ଏପରି କଦର୍ଯ୍ୟ ଅସଭ୍ୟ ଆଚରଣ କେବେ ବି କରିବ ନାହିଁ। ପିଲାଟି ପାଦଛୁଇଁବ କ'ଣ ଅଧକ୍ଷଙ୍କ ପାଦତଳେ ପଡ଼ିଗଲା, ପୂର୍ବପରି କାନ୍ଦି ଉଠିଲା। ଅଧକ୍ଷ ତାକୁ ତଳୁ ଉଠାଇ ଆଲିଙ୍ଗନ କରି କହିଲେ–ଯା, ଯା, ଭ୍ରାମା ଦେଖ।

ମୁଁ ଶୁଣିଲି ଯେ–ସେହି ପିଲାଟି ସେ କଲେଜରେ ଅବଶିଷ୍ଟ ପ୍ରାୟ ଦୁଇ ବର୍ଷ ପଢ଼ିଥିଲା ଏବଂ ସେ ସମୟତକ ସେ ଅତ୍ୟନ୍ତ ଭଦ୍ରଭାବେ ଚଳପ୍ରଚଳ ହେଉଥିଲା।

ଏହା ସାମାନ୍ୟ ଘଟଣାଟିଏ। କିନ୍ତୁ ସାରା ରାଜ୍ୟରେ ଏପରି ଘଟଣା କେତୋଟି ଘଟୁଥିବ? ଘଟୁଥିଲେ ଅବସ୍ଥା ଅନ୍ୟ ପ୍ରକାର ହେବା ଦିଗରେ ଗତି କରନ୍ତାଣି।



# ହାୟରେ ବସନ୍ତ ଋତୁ !

୧୮।୩।୮୨

ଇଂରାଜୀ ଭାଷାରେ ପ୍ରବଚନଟିଏ ଅଛି–'ଯଦି ଶୀତଋତୁ ଆସିଯାଇଛି ତା' ହେଲେ ବସନ୍ତଋତୁ ନ ଆସିବ ବା କେମିତି ?' ତା' ଅର୍ଥ, ନିଶ୍ଚୟ ଆସିବ। କିନ୍ତୁ ଯାହା ଦେଖାଗଲା, ଏ ବର୍ଷ ଶୀତଋତୁ ଯାହି ତାହି କରି ଆସିଲା, ମାତ୍ର ବସନ୍ତ ଋତୁଟି ଗଲା କୁଆଡ଼େ ?

ମଧ୍ୟଯୁଗୀୟ ରୋମାଣ୍ଟିକ୍ କବିମାନେ ବସନ୍ତଋତୁକୁ ଋତୁମାନଙ୍କ ସମ୍ରାଟ ବୋଲି ଅଭିହିତ କରିଛନ୍ତି। ଆମ ପ୍ରେମକାବ୍ୟମାନଙ୍କରେ ବସନ୍ତଋତୁର ଯେଉଁସବୁ ବର୍ଣ୍ଣନା ହୋଇଛି ତାହା ବର୍ଣ୍ଣନାତୀତ। ଏ ଋତୁରେ ଗଛେ ଗଛେ ଫୁଲ, ଫୁଲେ ଫୁଲେ ମହୁ ଆଉ ମହୁମାଛି। ଏ ଋତୁରେ ଅଶୋକ, ପଳାଶ, ପାଟଳୀ, କୃଷ୍ଣଚୂଡ଼ାଦି ଗଛମାନଙ୍କରେ ନାଲି ନାଲି ପେଣ୍ଡା ପେଣ୍ଡା ଫୁଲଫୁଟି ଚତୁର୍ଦ୍ଦିଗରେ ଯୌବନର ହୋରିଖେଳ ଲାଗିଯାଏ। ଏ ଋତୁରେ ମଧ୍ୟଭାଗରେ ଫୁଟନ୍ତି ମଲ୍ଲି, ମାଧବୀ, ଛୁରୀଅନା ଆଉ କାଠଚମ୍ପା ଫୁଲ। ଶେଷଆଡ଼କୁ ଫୁଟନ୍ତି ନାଗକେଶ୍ୱର ଆଉ କର୍ଣ୍ଣିକାର ଫୁଲମାନେ। ଏ ଋତୁରେ ଦକ୍ଷିଣ ଦିଗରୁ ମଳୟପର୍ବତର ଚନ୍ଦନବୃକ୍ଷଗୁଡ଼ିକୁ ସ୍ପର୍ଶ କରି କରି ସୁଲୁସୁଲୁ ପବନ ବହେ। ସେଇ ପବନରେ ଫୁଟନ୍ତା ଫୁଲମାନଙ୍କର ବାସ୍ନା ଭରି ରହିଥାଏ। ଏ ଋତୁରେ ପୁଣି ଦେଖାଯାଆନ୍ତି ହରେକ ରକମର ଚଢ଼େଇ। ଚୂଳିଆ, ଗୋବରା, ଶୁଆ, ଶାରୀ, କଜଳପାତି, ହଳଦୀବସନ୍ତ, ପ୍ରଭୃତି ଚଢ଼େଇମାନଙ୍କ କାକଳିରେ ଚତୁର୍ଦ୍ଦିଗ, ସଙ୍ଗୀତମୟ ହୋଇଯାଏ। କୋଇଲିମାନଙ୍କର କୁହୁସ୍ୱନ ଓ ବାସନ୍ତୀ ଜ୍ୟୋତ୍ସ୍ନା। କାମୀଜନମାନଙ୍କୁ ରତିସୁଖ ଲାଗି ଉଚ୍ଚାଟିତ କରେ ବୋଲି କବିମାନେ ଲେଖିଛନ୍ତି। ଏ ଋତୁରେ ପୁଣି ପ୍ରବାସୀ ପ୍ରେମିକ-ପ୍ରେମିକାମାନେ ମର୍ମନ୍ତୁଦ ବିରହ ପୀଡ଼ା ଅନୁଭବ କରନ୍ତି। ମୋଟ ଉପରେ ବସନ୍ତ ଋତୁ ହେଲା କାମଦେବଙ୍କ ଋତୁ। ଏ ଋତୁ ପ୍ରେମପ୍ରଣୟ ଲାଗି ପ୍ରଶସ୍ତ। କାମକେଳୀଜନିତ ଆମୋଦପ୍ରମୋଦ ପାଇଁ ଅନୁକୂଳ। ଏ ଋତୁରେ ସାମାନ୍ୟ ମାତ୍ର ଉଦ୍ଦୀପନାରେ ଯୁବାଯୁବତୀମାନେ କାମୋନ୍ମତ୍ତ ହୋଇ ପଡ଼ନ୍ତି। କବିମାନେ ଏପରି ମଧ୍ୟ କହିଛନ୍ତି ଯେ, ଏଇ ବସନ୍ତଋତୁରେ କାମଦେବଙ୍କ ଫୁଲବାଣ ଆବାଳ ବୃଦ୍ଧବନିତାଙ୍କ ହୃଦୟକୁ ବିଦ୍ଧକରି ସେମାନଙ୍କ ମନରେ ମନ୍ମଥ-ପ୍ରତିକ୍ରିୟାର ଜ୍ୱାଳା ସୃଷ୍ଟିକରେ।

ଭବ୍ୟ ଭାବରେ କହିଲେ, ଏ ଋତୁ ହେଲା ମିଳନର ଋତୁ। ରଙ୍ଗ ରସର ଋତୁ। ଭାବବିହ୍ୱଳତାର ଋତୁ।

ମାତ୍ର ହା' ଦୈବ! ଏବର୍ଷ ବସନ୍ତ ଋତୁ ଗଲେ କୁଆଡ଼େ? କୁଆଡ଼େ ଗଲା ମଳୟ? କୁଆଡ଼େ ଗଲେ କୋଇଲିମାନେ? କଜଳପାତି, ବୁଲବୁଲ୍। ଆଉ ହଳଦୀବସନ୍ତ ଚଢ଼େଇମାନେ କୁଆଡ଼େ ଗଲେ? ଏ ଯେ ଗତ ମାସେ ହେଲା–"ଆସି ଆଷାଢ଼ ହୋଇଲା ପ୍ରବେଶ" ଭଳି ପରସ୍ଥିତି ହୋଇଗଲା। ଦିନରାତି ଆକାଶ ମେଘାଚ୍ଛନ୍ନ। ସବୁଦିନେ ବର୍ଷା, ବିଜୁଳି, ପବନ, ଘଡ଼ଘଡ଼ି ଚଡ଼ଚଡ଼ି ଆଉ କୁଆପଥର।

ଇତି ମଧ୍ୟରେ ଥରେ କୋଇଲିଟିଏ ଅତି ବ୍ୟାକୁଳ ହୋଇ ଆମ ବଗିଚାରେ ଆସି ଦୁଇ ଚାରିଥର କୁହୁ କୁହୁ ହେଲା। ମାତ୍ର ତାର ଭାଗ୍ୟ ଖରାପ। ଦଳେ କୁଆ କୁଆଡୁ ଆସି କା' କା' ରବ କରି ତା' ଉପରେ ଆକ୍ରମଣ ଆରମ୍ଭ କରି ଦେଲେ। ସେ ବିଚାରା ପ୍ରାଣବିକଳରେ କୁଆଡ଼େ ଯାଇ ଲୁଚିଲା ଯେ ଆଜିଯାଏ ତାର ଆଉ ଦେଖାନାହିଁ। ଆଉ ଅନ୍ୟ ଚଢ଼େଇମାନଙ୍କୁ ମୁଁ ଏ ଯାବତ ଆମ ବଗିଚାରେ ବା ଆଉ କାହା ବଗିଚାରେ ଦେଖିନାହିଁ ବରଂ ସେଇ କେତେଦିନ ତାହୁକ ଆଉ କୁମ୍ଭାଟୁଆମାନେ ମହା ଉତ୍ସାହରେ ବୋବେଇ ଲାଗିଲେ। ସବୁଠୁଁ ମଜା କଥା ହେଲା–ଗାଁ ଗଣ୍ଡାରେ ଦିନରାତି ବେଙ୍ଗମାନେ ସମ୍ମିଳିତ ଭାବେ ରଡ଼ି ଛାଡ଼ିବା ଆରମ୍ଭ କରିଦେଲେ। ବଗମାନେ ଧାଡ଼ିବାନ୍ଧି ଆକାଶରେ ଉଡ଼ି ଚାଲିଲେ। ସତେ କି ମଝିରେ ବସନ୍ତ ଆଉ ଗ୍ରୀଷ୍ମ ଦୁଇ ଦୁଇଟା ଋତୁଙ୍କୁ କାଳଚକ୍ରଗତିରୁ ଦୂରକୁ ଠେଲି ଦେଇ ବର୍ଷାକାଳ ଆସି ହଠାତ୍ ପହଞ୍ଚିଗଲା।

କ'ଣ ବ୍ୟାପାର? ତେଣେ ଉତ୍ତରଭାରତରେ ପ୍ରବଳ ତୁଷାରପାତ ଆଉ ଭୟଙ୍କର ଶୀତ ହେଉଛି ବୋଲି ଖବର ମିଳୁଛି ଏବଂ ଆମର ଏଂ ରଜସଂକ୍ରାନ୍ତି ବା ରଥଯାତ୍ରା ବେଳର ଋତୁ ଚାଲିଲା ସେଇ କେତେ ଦିନ। ଓଦା ଓଦା ଝାଳୁଆ ଗରମ। ତା'ପରେ ବର୍ଷା ବା ଘୋର ପବନ ସହ ବର୍ଷା। ଆକାଶବାଣୀ ମଧ୍ୟ ପ୍ରତିଦିନ ବର୍ଷାଋତୁ ଭଳି ପାଣିପାଗର ଖବର ଦେଲେ–"ଗତ ଚବିଶ ଘଣ୍ଟା ଭିତରେ କଟକ, ପୁରୀ, ବାଲେଶ୍ୱର, ଢେଙ୍କାନାଳ ଓ ମୟୂରଭଞ୍ଜ ଜିଲ୍ଲାରେ ସାମାନ୍ୟରୁ ମଧ୍ୟମ ଧରଣର ଘଡ଼ଘଡ଼ି ସହ ବୃଷ୍ଟି ହୋଇଥିଲା ଓ ଆସନ୍ତା ଚବିଶ ଘଣ୍ଟା ଭିତରେ ସମ୍ବଲପୁର, ବଲାଙ୍ଗୀର, କୋରାପୁଟ, କଳାହାଣ୍ଡି ପ୍ରଭୃତି ଜିଲାମାନଙ୍କରେ ପ୍ରବଳ ବୃଷ୍ଟିପାତ ହେବାର ଆଶଙ୍କା ରହିଛି। ସମୁଦ୍ର ବିହାରୀ ଧୀବରମାନଙ୍କୁ ସାବଧାନ କରି ଦିଆଯାଇଛି..."।

କଣ ଏ ବ୍ୟାପାର? ଲୋକେ କହୁଛନ୍ତି–କାଳ ଓଲଟି ଯାଉଛି। କଳିଯୁଗ ଶେଷ ହେବାକୁ ଯାଉଛି। ଏଣିକି କେତେ ଅଘଟଣ ଘଟିବ–ଦେଖିବ ରହିଥା'। ବୈଜ୍ଞାନିକମାନେ କହୁଛନ୍ତି–ପାରିବେଶିକ ସଂହତି ନଷ୍ଟ ହେବାର ଫଳ ଭୋଗିବାକୁ ପଡ଼ିବ ଏଥର। ଗଛ ବୃକ୍ଷ କାଟି ଜଙ୍ଗଲ ସଫା କରିଦେଲେ। ପାହାଡ଼ ପର୍ବତ

ଭାଙ୍ଗିଭୁଙ୍ଗି ଚୂନା କରିଦେଲ। ଚାରିଆଡ଼େ ଖାଲି କଳକାରଖାନା ବସାଇ ଚାଲିଲ। ବାୟୁମଣ୍ଡଳ ଦୂଷିତ ହୋଇଗଲାଣି। ପ୍ରକୃତିର ବିକୃତି ଘଟିଲାଣି। ଫଳରେ ବିପରୀତ ଘଟିବଇ ଘଟିବ। ସମ୍ଭାଳ ଏଥର।...

ସତକୁ ସତ ଏ ବର୍ଷ ବସନ୍ତଋତୁର ଅକାଳମୃତ୍ୟୁରେ ଓ ଏକ ଅକାଳ ବର୍ଷା ହେବା ଫଳରେ ରାଜ୍ୟରେ ବହୁ କ୍ଷୟକ୍ଷତି ଘଟିଗଲା। ଏ ବର୍ଷ ରବିଫସଲ ଭଲ ଉତୁରି ଥିଲା। ମାତ୍ର ଏ ବର୍ଷାରେ ସେଇ ବିଲରେ ବିଲରେ ସବୁ ଗଲା। ଏ ବର୍ଷ କୋଳଥ, ବିରି, ମୁଗ ଓ ଚଣାର ଘୋର ଅଭାବ ପଡ଼ିବ। କୋଳଥ ନ ମିଳିଲେ ଚାଷୀମାନେ ଗୋରୁଙ୍କୁ କଣ ଖୁଆଇବେ? ସେମିତି ମଧ୍ୟ ବନ୍ଧାକୋବି, ଆଳୁ, ବିଲାତିବାଇଗଣ ଫସଲ ନଷ୍ଟ ହୋଇଗଲା। ଆମେ ଏ ବର୍ଷ ଏପ୍ରିଲ ମାସ ଶେଷ ପର୍ଯ୍ୟନ୍ତ ଏସବୁ ପରିବା ଖାଇ ପାରିଥାନ୍ତେ! ଆମ୍ବ ଫସଲ ବି ଏ ବର୍ଷ ଭଲ ହେବ ନାହିଁ। କାରଣ ବହୁ ଗଛରେ ବଉଳ ଧରିଲା ନାହିଁ ଓ କେତେକ ଗଛରେ ବର୍ଷା ମାଡ଼ରେ ବଉଳତକ ଗଲା।

ଏ ବର୍ଷ ଦୋଳଯାତ୍ରା ବି ଭଲ ଜମିଲା ନାହିଁ। ଏ ବର୍ଷା ଯୋଗୁଁ ରାଧାକୃଷ୍ଣ ମୂର୍ତ୍ତି ବିମାନରେ ବସି ଘର ଘର ବୁଲି ଚାଚୋରୀ ଭୋଗ ଖାଇପାରିଲେ ନାହିଁ। ଅବିର ଖେଳ ମଧ୍ୟ ଭଲ ଲାଗିଲା ନାହିଁ। ଦୋଳମେଳନ ମାଡ଼ଖାଇଗଲା। ହୋଲି ଦିନ ରଙ୍ଗଖେଳ ଭଲ ଜମିଲା ନାହିଁ। ସେଥିପାଇଁ ବିଶେଷ କାହାର ଉତ୍ସାହ ଥିବାଭଳି ମନେହେଲା ନାହିଁ। କିନ୍ତୁ ଠାଏ ଠାଏ ହୋଲିଖେଳରେ ମାଡ଼ଫଉଜଦାରି ହୋଇଗଲା। ଲୋକେ ମଲେ। କେତେ ଜାଗାରେ ଉତ୍କଟ ହୋରି ଖେଳ ହୋଇଗଲା।

ହୋଲି ଦିନ ରାଜଧାନୀର କୌଣସି ଏକ ରାସ୍ତାରେ ଦେଖାଗଲା, କେତେକ ଲୋକ ଗୋଟିଏ ଟ୍ରକରେ ରଙ୍ଗବୋଳା ମୁହଁ ଓ ଦେହରେ ନାଚୁଥିଲେ ଓ ଯାହା ଘର ଦେଇ ଯାଉଥିଲେ, ସେଣିକି ହାତଦେଖାଇ ଘୋର ଅସ୍ଲା ଅଶ୍ଳୀଳ କଥାସବୁ କହୁଥିଲେ। ଲୋକେ ଡରିମରି ଘର ଭିତରେ କବାଟ କିଳି ଲୁଚି ରହିଥିଲେ।

କଣ ଆଉ କରାଯିବ? ଯାହା ଅବସ୍ଥା ହେଲାଣି, କେହି ଆଉ କିଛି କାହାକୁ କହିପାରିବେ ନାହିଁ। ସହର ବଜାରରେ ଲୋକଙ୍କୁ ପ୍ରକୃତି ଛାଡ଼ିଲାଣି। ଅଯଥା ଲୋକସଂଖ୍ୟା ବଢ଼ିଚାଲିଛି। ଅକର୍ମା, ଅଶିକ୍ଷିତ, ଅଜ୍ଞାନ, ଅମାର୍ଜିତ, ଅନିୟନ୍ତ୍ରିତ ବେକାର ତୁଚ୍ଛ ଲୋକସଂଖ୍ୟା! ସେମାନେ ଅହରହ ଖାଇବା ପାଇଁ, ରମିବା ପାଇଁ, ଭୋଗିବା ପାଇଁ ଲାଳାୟିତ, ବ୍ୟାକୁଳ ଆଉ ଚଞ୍ଚଳ। କିନ୍ତୁ ସେମାନଙ୍କୁ ଏତେ ସୁଯୋଗ କିଏ ଦେବ? କୋଉଠୁ ମିଳିବ? ତେଣୁ ଦୁର୍ଯୋଗ ସୃଷ୍ଟି କରି ଚାଲିଛନ୍ତି ସେମାନେ। ସେମାନଙ୍କ ଆଗରେ କୌଣସି ଆଦର୍ଶ ନାହିଁ। ଲକ୍ଷ୍ୟ ନାହିଁ—କର୍ମ ଯୋଜନା ନାହିଁ—ସ୍ଥିତିବାନ ଆଶ୍ୱାସନା ନାହିଁ—ନିର୍ଭରତା ମଧ୍ୟ ନାହିଁ। ତେଣୁ ଯାହା କରିବାର ସେମାନେ କରୁଛନ୍ତି।

ଯାହା ହେବାର ତାହା ହେଉଛି। ଚୋରି, ଡକାଏତ, ଦଙ୍ଗାହାଙ୍ଗାମା, ଛୁରୀମରା, ଧର୍ଷଣ, ଲୁଣ୍ଠନରେ ମାତିଛନ୍ତି ସେମାନେ।

ଏ ସମାଜରେ ଆନନ୍ଦ କାହିଁ? ଆନନ୍ଦ ପାଇଁ ଅଭିଳାଷ ମଧ୍ୟ କାହିଁ? ପରିବେଶ ବି କାହିଁ? କିଏ ବର୍ତ୍ତମାନ ମଳୟର ସ୍ପର୍ଶ ପାଇଁ ଆତୁର ହୋଇ ବସିଛି? କିଏ ବର୍ତ୍ତମାନ କୋଇଲିର କୁହୁ ଶୁଣିବା ପାଇଁ କାନପାତି ବସିଛି ?

ଫଗୁଣ ଆକାଶରେ ଫଗୁଣର ସୁଧାବୋଳା ଜହ୍ନକୁ ଦେଖିବାକୁ କିଏ ଭଲା ଆକାଶକୁ ମୁହଁଟେକି ବସି ରହିଛି ? କିଏ ଭଲା ବର୍ତ୍ତମାନ ମଲ୍ଲୀ, ଛୁରୀଅନା, ମଧୁମାଳତୀ, ନାଗକେଶ୍ୱର ଫୁଲର ବାସ୍ନା ଶୁଙ୍ଘିବାକୁ ଉଲ୍ଲାସିତ ହୋଇ ରହିଛି ?

କେହି ନୁହଁ। ଖାଲି ସିନେମା ଆଉ ଇଣ୍ଡିମେଟ୍ ସେଣ୍ଟ। ଛୁରୀ ଆଉ ଧର୍ଷଣ। କଳାଟଙ୍କା ଆଉ ରକ୍ତର ହୋରିଖେଳ। ହାୟ ବସନ୍ତ! ହାୟ ବସନ୍ତ! ହାୟରେ ବସନ୍ତ ଋତୁ—!

❋❋

# ଓଡ଼ିଆଙ୍କ ଫଳଂ ଫଳେ ଫଳାନି

୨୯।୪।୮୨

ପଣାସଂକ୍ରାନ୍ତି ପରଠାରୁ ଆମ ବଜାରଗୁଡ଼ିକ ସକାଳ ସନ୍ଧ୍ୟା ବଡ଼ ରସମୟ ଦେଖାଯାଉଛି। ଫଳବନ୍ତ ମଧ ଦେଖାଯାଉଛି। ବଜାରଭିତରେ ଓ ବାହାରେ ରାସ୍ତାକଡ଼େ ବିଭିନ୍ନ ଆକାର ରଙ୍ଗ ଓ ସ୍ୱାଦର ଆମ୍ବଫଳ ଗଦା ହୋଇ ବିକ୍ରୀହେଉଛି। ଏଗୁଡ଼ିକ ପ୍ରାୟଶଃ ଆମର ଦେଶୀ ଆମ୍ବ। ତାହା ମଧ କେ.ଜି. ଦୁଇଟଙ୍କାରୁ ଚାରିଟଙ୍କା ପର୍ଯ୍ୟନ୍ତ ଦର। ଦେଶୀ ଆମ୍ବର ଗୋଟିଏ ବିଶେଷତ୍ୱ ହେଲା—ଏହାର ଆକାର ଯେମିତି ବହୁବିଧ—ସ୍ୱାଦ ଓ ଗନ୍ଧ ମଧ ତଦ୍ରୂପ ବିଭିନ୍ନ ପ୍ରକାର। ଗୁଡ଼ପାଣିଆ ଆମ୍ବ ହେଲା ଶାଗୁଆରଙ୍ଗର ଛୋଟ ଆମ୍ବ। ପାଟିରେ ଚାପିଦେଲେ ଦୁଇକଳ ଦୋରୁଅ ରସ ଗର୍ଭକୁ ଚାଲିଯାଏ ସିଧା। ଗୁରୁଡ଼ି ଆମ୍ବ ହେଲା ଛୋଟ କେନ୍ଦୁପରି ସାଇଜ। ଟକୁଆମୟ। ଦୁଇଚାମୁଚ ମିଠାରସ ଯଥେଷ୍ଟ। ନାକୁଆ ଆମ୍ବର ସ୍ୱାଦ କମ୍ ଖଟା ବେଶି ମିଠା। ଦେଶୀ ଆମ୍ବ ଭିତରେ ଅମୃତମଣୋହି ହେଲା ରାଜା ଆମ୍ବ। ଆକରରେ ବେଶ୍ ବଡ଼। ରଙ୍ଗ ସୁନାଭଳି। ତେମ ପାଖେ ସାମାନ୍ୟ ନାଲିଚିଆ। ଭିତରେ ମାଂସଳରସ ଅତି ମଧୁର, ବାଇଗଣପଲେଇପରି। ବାସ୍ନାବି ଅନୁପମ। କାଟିକରି ଖାନ୍ତୁ ବା ଚୁଚୁମି କରି ଖାନ୍ତୁ। ତେବେ ଆମ୍ବ ହେଲା ଚୁଚୁମା ଫଳ। ଚୁଚୁମି ନ ଖାଇଲେ ଆମ୍ବରସର ଭାବ ମିଳେନାହିଁ।' କଦଳିଆ ଆମ୍ବ ବେଶ୍ ଲମ୍ବ—ପାଚେଲା କଦଳୀ ପରି ବାସ୍ନା, ମିଠାରସ। ଭିତର 'ମାଂସଳ ଓ ଚୋପାଟି ପାତଳ। ବର୍ଣ୍ଣ ହଳିଦିଆ ମିଶା ଶାଗୁଆ। ଚୁଚୁମି ଖାଇବାକୁ · ଖୁବ୍ ସୁବିଧା। ଗାଇଚିରା ଆମ୍ବ ହେଲା ଲମ୍ବା ଓ ପୃଥୁଳ। ପାଚିଗଲେ ଉପର ଦେଖାଯାଏ ହଳଦିଆ ଓ ଚୋପା ସାମାନ୍ୟ କୁଂଚ୍‌କୁଂଚ୍ ହୋଇଯାଇଥାଏ। ଭିତରଟା ଚେରୁଆ କିନ୍ତୁ ଖୁବ୍ ମିଠା ରସ। ଚେରକୁ ଚୁଚୁମୁଥିବେ ଆଖିବୁଜି। ସବୁ ରସ ସରିଗଲେ ପରେ ବି କେବଳ ଚେରଗୁଡ଼ିକୁ ଅନ୍ତତଃ ତିନି ମିନିଟ୍ ଚୁଚୁମିବାକୁ ପଡ଼େ। ଏ ଆମ୍ବର ରସ ଟାକୁଆ ଦେହର ଚେରକୁ ଜମା ଛାଡ଼େ ନାହିଁ। ଏମିତି ଏମିତି ଶହଶହ ପ୍ରକାର ଦେଶୀଆମ୍ବ ରହିଛି। ଗୁଡ଼ାଏ ସେଥିରୁ ବଡ଼ ବରିକ୍ତିକର। ଭୟଙ୍କର ଖଟା। ଆଉ ଗୁଡ଼ାଏ ଅଛି ସୁଙ୍ଘି ଦେଲେ ବାସ୍ନାଟା ଅମୃତପରି ଥଣ୍ଡାମିଠା ହୋଇ ସାରା ଦେହକୁ ଟିକିଟେଇ ଦେବ। ମାତ୍ର ସେଇ ଲୋଭରେ ନାସିପାଖ ଟିକିଏ ଚିପିଦେଇ ସାମାନ୍ୟ ରସ ତଳେ ଢ଼ାଳି ଦେଇ ପାଟିକୁ ନେଇ ଗୋଟେ ଚୁଚୁମା ଦେଇଥିବେ କି ନାହିଁ ଈଃ ଏତେ ଖଟା ଯେ ଖାଇବା ପାଖେ ଓଲଟି ପଡ଼ିବେ। ଏ ଆମ୍ବ ବଡ଼ ଛଳନାମୟୀ। ଆପଣ ବିରକ୍ତ ହୋଇ ସଂକଳ୍ପ କରିବେ—ଶଃ। ଓଡ଼ିଶାସାରା

ବୁଲି ବୁଲି ଏଇ ଛଦ୍ମିକ ଆମ୍ବଗଛ ଯୋଉଠି ଥିବ ତାକୁ ହାଣି ଛେଦି ଦେଇ ଯିବ। କିନ୍ତୁ ଆପଣ ତାହା କରିପାରିବେ ନାହିଁ। ଚୁତିଆ (ଚୂତ+ ବୃଦ୍ଧ୍ୟାର୍ଥେ ''ଆ' ପ୍ରତ୍ୟେୟ) ବେପାରୀମାନେ ଏଇ ଆମ୍ବ ଦ୍ୱାରା ଗରାଖମାନଙ୍କୁ ପ୍ରତାରିତ କରି ବେଶ୍ ଲାଭ କରିଛି। ପଦ୍ମଫୁଲର ଅତର ମାରି ହସ୍ତିନୀ ନାୟିକା ପଦ୍ମିନୀ ନାୟିକାର ଭ୍ରମ ସୃଷ୍ଟିକଲା ଭଳି ଜାଣ ଏ ବ୍ୟାପାର।

ଆଉ ଗୁଡ଼ାଏ ଦେଶୀଆମ୍ବ ଅଛି–ସେଗୁଡ଼ାକ ଝିମା। ପାଟିରେ ଚାପୁ ଚାପୁ ପାଟି କଣ୍ଠ ତାଳୁ ଓ ଦେହସାରା ଝିମା ମାରିଯାଏ। ରସୁଣୀଆ ଆମ୍ବ ରସୁଣ ଗନ୍ଧାଏ। ବେଲପତ୍ରିଆ ଆମ୍ବ ବେଲପତ୍ର ପରି ବାସ୍ନା ଓ ରାଗୁଆ। ପଣସୁଆ ଆମ୍ବ ଆକାରରେ ବଡ଼ ବେଶ ବର୍ଣ୍ଣାଢ୍ୟ। ରସ ମଧ ମିଠା ଆଉ ବହଳିଆ। କିନ୍ତୁ ଏ ଆମ୍ବ ସୁଲଭ ନୁହଁ। ଏ ଆମ୍ବ ପାଇଲେ ଏହା ରସରେ ଦୁଧ ଗୋଳାଇ ଫ୍ରିଜରେ ବସାଇ ଦେବେ। ତତ୍ପର ଦିନ ଅପରାହ୍ନରେ ବନ୍ଧୁବାନ୍ଧବଙ୍କୁ ଡାକି ଖାଆନ୍ତୁ–ନିଜେ ବି ଖାଆନ୍ତୁ। ବରଫି ଭଳି ଲାଗିବ। ଅପୂର୍ବ ସ୍ୱାଦିଷ୍ଟ ସେମିତି କଂଚାସୁଆଦି ଆମ୍ବ କିନ୍ତୁ ତାକୁ ପାଚିବା ଯାଏ କେହି ଗଛରେ ରଖେଇ ଦିଅନ୍ତି ନାହିଁ।

ଆପଣ ଦେଖି ଆମ୍ବ କିଣଲାବେଳେ ସାବଧାନରେ କିଣିବେ। କେବଳ ମିଠା ବାସ୍ନା ଯଥେଷ୍ଟ ନୁହେଁ। ଆମ୍ବର ଭୁଣ୍ଡି ପଟ ଚାଖିଲେ ଆମ୍ବ ଖଟା ମିଠା ଜାଣି ହୁଏ ନାହିଁ। ଆମ୍ବର ନାକ ତଳକୁ ସାମାନ୍ୟ ଖଣ୍ଡିଆ କରି ଟିକିଏ ଚିପି ସାମାନ୍ୟ ରସ ଜିଭରେ ଚାଖି ଖାଇବେ ନାହିଁ। ଅନ୍ତତଃ ଚବିଶି ଘଣ୍ଟାରୁ ତିରିଶି ଘଣ୍ଟା ତାକୁ ବାଲିରେ ବସାଇ ଦେବେ। ତା'ପରେ ବାଲିରୁ ଉଠାଇ ଭୁଣ୍ଡି ପାଖରୁ ସାମାନ୍ୟ କାଟି ଥଣ୍ଡାପାଣିରେ ବୁଡ଼ାଇ ରଖିବେ ଦୁଇତିନି ଘଣ୍ଟା। ତା'ପରେ ଯାଇ ଆମ୍ବଟିକୁ ଖାଇବେ। ଖାଲି ପେଟରେ ଆମ୍ବ ଖାଇବେ ନାହିଁ। ପେଟ ଖରାପ ହେବ। ଭାତ ଖାଇସାରି ଖାଇବେ।

ଖରାଦିନେ ଆମ୍ବରସର ସର୍ବତ ଦେହ ପକ୍ଷରେ ହିତକର। ଦୁଧରେ ମିଶାଇ ଖାଇଲେ ଏହା ଟନିକ ଭଳି କାର୍ଯ୍ୟ କରେ। ଆମ୍ବ ଖୁବ୍ ପୁଷ୍ଟିକାରକ ଫଳ ବୋଲି ଆୟୁର୍ବେଦ କହୁଛନ୍ତି।

ସାବିତ୍ରୀ ଅମାବାସ୍ୟା ବେଳକୁ ପାଚିଲା ଆମ୍ବ ସାଙ୍ଗକୁ ପାଚିଲା ପଣସ ଆସିଯିବ ବଜାରକୁ। ପାଚିଲା ସପୁରୀ ମଧ। ତା' ସଙ୍ଗକୁ ତାଳସଜ। ଏଣେ ତରଭୁଜ ଆଉ ଫୁଟି କାକୁଡ଼ି ମଧ ଆସିଯିବ। ଏଇ ଖରା କେତେଦିନ ଆପଣ ଯାହା ଫଳ ଖାଇବେ ସିନା! ଅନେକ ପଣସ ଫଳଟିକୁ ସହ୍ୟ କରି ପାରନ୍ତି ନାହିଁ। ସେମାନେ ମୋ ମତରେ ଅଲକ୍ଷଣା। ପଣସ ଅତି ଚମତ୍କାର ଫଳ। ଆମ୍ବ ଓ ପଣସ ଜାଣ ଭାଇ ଭାଇ। ଆପଣଙ୍କ ଭଣ୍ଡାର ଘରେ ପାଚିଲା ଆମ୍ବ, ପାଚିଲା ପଣସ ଓ ପାଚିଲା ସପୁରୀ ସହିତ ପାଚିଲା କଦଳୀ ଓ ଫୁଟି କାକୁଡ଼ି ରଖିଦିଅନ୍ତୁ। ଦେଖନ୍ତୁ ସାରା

ଘର ଆପଣଙ୍କର ଏକ ମଧୁର ସଫଳ ଓ ପରିପୂର୍ଣ୍ଣ ବାସ୍ନାରେ ଭରିଉଠିବ। ମନେହେବ—ଏ ପୃଥୀ ଫଳବତୀ, ରସବତୀ ଓ ଗନ୍ଧବତୀ ହୋଇ ରହିଛି। ଏବଂ ଏ ପୃଥୀଠାରୁ ବଳି ସ୍ୱାଦପୂର୍ଣ୍ଣ ଗ୍ରହ ଆଉ କେଉଁଠି ନାହିଁ। ସ୍ୱର୍ଗରେ ଆମ୍ବ, ପଣସ, ସପୁରୀ ପ୍ରଭୃତି ଫଳ ନଥିଲେ ଆମେ ସେଠିକି ଯିବା କାହିଁକି? ଅପ୍‌ସରାମାନଙ୍କ ନାଚ ଦେଖି କଣ ମନ ପୂରିବ? ଆମ ଏ ପୃଥ୍ୱୀରେ କଣ ଅପ୍‌ସରାନାଚ ଅଭାବ ଅଛି? ଆଉ କଣ? ଅମୃତ? ମୋ ମତରେ ଅମୃତ ନାମକ ପଦାର୍ଥଟି ବାଇଗଣପଲେଇ ଆମ୍ବ ଅପେକ୍ଷା ବେଶି ସ୍ୱାଦିଷ୍ଟ ହୋଇ ନ ଥିବ।

ତେବେ ଆମ ଓଡ଼ିଶା ଗୋଟାଏ ହତଭାଗ୍ୟ ନିଷ୍ଫଳା ରାଜ୍ୟ। ଆମର ସେ ଆମ୍ବତୋଟାମାନ ଆଉ ନାହିଁ। ସବୁ କଟା ହୋଇଗଲାଣି। ନୂଆ ଆମ୍ବଗଛ ଆଉ କେହି କେଉଁଠି ଲଗାଉ ନାହାନ୍ତି। ଆମର ଆନ୍ଧ୍ରଆଡୁ ସବୁତକ ଆମ୍ବ ଆସୁଛି। ଶ୍ରୀଜଗନ୍ନାଥଙ୍କ ବାହୁଡ଼ାଯାତ୍ରା ପର୍ଯ୍ୟନ୍ତ ଆମ ବଜାରକୁ ବାଇଗଣପଲେଇ, ଚିତ୍ରକୁଟୀ, ନୀଲମ, ତୋଟାପଲ୍ଲୀ ପ୍ରଭୃତି ଆନ୍ଧ୍ର ଆମ୍ବମାନ ଆସିବ। ଓଡ଼ିଆଙ୍କର ଆଉ ନିଜସ୍ୱ ଆମ୍ବ ନାହିଁ। ଉତ୍ତର–ଭାରତର କେତୋଟି ବିଶିଷ୍ଟ ଆମ୍ବ ଯଥା—ଦଶେରୀ, ଲେଙ୍ଗଡ଼ା, ଚଉସା, ସଫେଦା, ଆଲଫାନ୍‌ସୋ ପ୍ରଭୃତି ଆମ୍ବ ଖୁବ୍ ସୁସ୍ୱାଦୁ ଓ ବିଖ୍ୟାତ। ତେବେ ଓଡ଼ିଶା ବଜାରରୁ ସେ ଆମ୍ବ ବେଶି ଆସେ ନାହିଁ। ଶୁଣାଯାଏ—ଭାରତବର୍ଷରୁ ବର୍ଷକୁ ବର୍ଷ ବହୁ ଆମ୍ବ ଦେଶ ବିଦେଶକୁ ରପ୍ତାନୀ ହେଉଛି ଏବଂ ସେ ଦେଶମାନଙ୍କରେ ଆମ୍ବ ପ୍ରତି ଖୁବ୍ ଆଦର। ସେ ବାବଦକୁ ଆମେ ଖୁବ୍ ବିଦେଶୀ ମୁଦ୍ରା ଅର୍ଜନ କରୁଛୁ।

କିନ୍ତୁ ଓଡ଼ିଆମାନଙ୍କଠାରୁ ଭକୁଆ ଜାତି ଆଉ କେହି ନାହାନ୍ତି। ଆମ ରାଜ୍ୟ କ୍ରମଶଃ ନିଷ୍ଫଳା ହୋଇଗଲାଣି। ଆଧୁନିକ ଓଡ଼ିଆମାନଙ୍କର ମଧ ଭୋଜନ ସମ୍ବନ୍ଧୀୟ ରୁଚି ବୈଚିତ୍ର୍ୟ କୁଆଡ଼େ ଗଲାଣି। ମୁଁ ମଧ କି ସହର କି ମଫସଲ ଆଜିକାଲି କୋଉଠି ଦେଖିବାକୁ ପାଉନି ଯେ ଓଡ଼ିଆ ଟୋକାମାନେ କୋଉଠି ଠିଆଠିଆ ତଜନେ କଦଳୀ ଖାଇ ଦେଉଛନ୍ତି ବା ଗୋଟାଏ ପଣସ ଖୁବ ଆଗ୍ରହରେ ଖାଇ ଶେଷ କରି ଦେଉଛନ୍ତି। ଅଥବା ତଜନେ ଫୁଟି କାକୁଡ଼ି ଚିନି ଗୋଳାଇ ପଣାକରି ହାପୁଡ଼ି ଚାଲିଛନ୍ତି। ଅଥବା ଅଧ ଟୋକୋଇଏ ଆମ୍ବ ଚୂଚୁମି ଦେଇ ଟାକୁଆମାନ ଗଦା କରି ଦେଉଛନ୍ତି! ନା! ଓଡ଼ିଆ ଯୁବାଯୁବତୀଙ୍କ ଖାଦ୍ୟରୁଚି ବର୍ତ୍ତମାନ ହୋଟେଲରେ ପଶିଚି। ଚାର୍ଟ, ଚିକେନ୍ ଆଉ ସୁରା।

ଆରେ ଯାଃ! ଯାକୁ କହନ୍ତି ଖାଇବା—ନା—ଯାକୁ କହନ୍ତି ଜୀଇଁବା? ଯେମିତି ଖାଉଛନ୍ତି—ସେମିତି ପାଉଛନ୍ତି! ଯେମିତି ଖାଦ୍ୟ ସେମିତି ଭାବ, ଆଉ ସେମିତି ବୁଦ୍ଧି। ରୁଚି ବି ସେହି ଅନୁଯାୟୀ ହେବାକୁ ବାଧ। ଖାଦ୍ୟରୁଚି ଫଳବତୀ ନହେଲେ ସେ କି ରୁଚି?

❋❋

# ସିନେମା ଓ ଦୁଇପୁରୁଷର ବୁଝାମଣା

ତା ୧୪।୮।୨

ସେ ଦିନ ମୋ ସାନପୁଅ ଆଉ ତାର ତିନିସାଙ୍ଗ ଗୋଟିଏ ସିନେମା ଦେଖି ସନ୍ଧ୍ୟା ଛଅଟା ବେଳକୁ ଘରକୁ ଫେରିଲେ। ସେମାନେ ଖୁବ୍ ସିନେମାଖୋର୍ ନ ହେଲେ ବି ମାସକୁ ଅନ୍ତତଃ ଦୁଇଥର ସିନେମା ଦେଖନ୍ତି ଏବଂ ଖାଲି ଦେଖନ୍ତି ନାହିଁ—ଦେଖିସାରି ଆସି ବଗିଚାରେ ଚୌକି ପକାଇ କିଛି ଚା' ଆଉ ଜଳଖିଆ ସହିତ ସେଇ ସିନେମା ଉପରେ ଘଣ୍ଟାଏ ଦେଢ଼ଘଣ୍ଟା ଘମାଘୋଟ ଆଲୋଚନା ମଧ୍ୟ ଚଳାନ୍ତି। ଅଧିକାଂଶ ସମୟରେ ସେମାନଙ୍କ ଆଲୋଚନା ଖୁବ୍ ଚିତ୍ତାକର୍ଷକ ହୁଏ ଏବଂ ମୁଁ ଯଦି ଘରେ ଥାଏ; ତେବେ ମୁଁ ନିଜେ ସିନେମା ଦେଖି ନଥିଲେ ବି ସେମାନଙ୍କ ପାଖରେ ବସି କିଛି ସମୟ ଆଲୋଚନା ଶୁଣେ ଓ ଭାଗ ନିଏ ମଧ୍ୟ।

ସେଦିନ ଦୈବାତ୍ ମୁଁ ଘରେ ଥିଲି ଓ ଏହି ଯୁବବନ୍ଧୁମାନେ ଯେତେବେଳେ ମାଆଙ୍କୁ ତାଙ୍କର କିଛି ପକୋଡ଼ି କରିବାକୁ ଅର୍ଡ଼ର ଦେଇସାରି ଲନ୍ ଉପରେ ଚଉକି ପକାଇ ଖୁବ୍ ବେପରୁଆ ଭାବେ ଦେଖି ଆସିଥିବା ସିନେମା ଉପରେ ଆଲୋଚନା ଆରମ୍ଭ କରିଦେଲେ, ସେତେବେଳେ ମୁଁ ସେମାନଙ୍କ ସାଙ୍ଗରେ ଯାଇ ବସି ସେଥିରେ ଅଂଶଗ୍ରହଣ କରିବାର ଆଗ୍ରହ ଦମନ କରିପାରିଲି ନାହିଁ। ଏଠି କହିରଖେ—ଯୁବକ—ଯୁବତୀମାନେ ଯଦି ଭାଗ୍ୟବଶତଃ ଅଧାବୁଢ଼ା ଲୋକଟି ପ୍ରତି ତଥାପି କିଛି ଆଗ୍ରହ ରଖିଥାନ୍ତି—ତେବେ ସେମାନଙ୍କ ସହିତ ସାଙ୍ଗ ହେବାଠାରୁ ବଳି ସୁଖ ଆମ ଭଳି ଅଧାବୁଢ଼ା ଲୋକଙ୍କ ପକ୍ଷରେ ଆଉ କିଛି ନାହିଁ। ଅବଶ୍ୟ ଏ ସୌଭାଗ୍ୟ ସମସ୍ତଙ୍କ ପକ୍ଷରେ ଘଟେ ନାହିଁ। ଆମେ ଅଧାବୁଢ଼ାମାନେ ଅଧିକାଂଶ କ୍ଷେତ୍ରରେ ଏଇସବୁ ଆଧୁନିକ ଯୁବାଯୁବତୀଙ୍କ ପକ୍ଷରେ ମହା ବୋରଡ଼ମ୍।

ବୋରଡ଼ମ୍!! ହେ ଭଗବାନ୍! କାହା ପକ୍ଷରେ ବୋରଡ଼ମ୍ ହେବାଠାରୁ ବଳି ପୀଡ଼ାଦାୟକ ଅନୁଭୂତି ଆଉ କଣ ଥାଇପାରେ? ସେଥିପାଇଁ ମୋର ଏଇ ଯୁବା ଯୁବତୀମାନଙ୍କ ପ୍ରତି ମହା ଭୟ, ମହା ଆଶଙ୍କା! ଏପରି କି ମୋର ନିଜର ପୁଅ, ବୋହୂ ଝିଅମାନଙ୍କ ପ୍ରତି। ସେମାନଙ୍କ ସହିତ ଗୋଟିଏ ମିନିଟ୍ ସାନ୍ନିଧ୍ୟ ଆଳାପ ପରେ ମୁଁ ବରାବର ଉଠ୍ ଉଠ୍ ହେଉଥାଏ। ଯୁବାଯୁବତୀମାନଙ୍କ ପକ୍ଷରେ ବୋରଡ଼ମ୍। ହେ ଭଗବାନ! ଆମଭଳି ବୁଢ଼ା ଅଧାବୁଢ଼ାମାନଙ୍କୁ ସେମାନଙ୍କ ଦାଉରୁ ରକ୍ଷାକର।

କିନ୍ତୁ ମୋର ସାନପୁଅ ଓ ତାର ବନ୍ଧୁବାନ୍ଧବୀମାନେ ମୋତେ କିଛି ସମୟ ଲାଗି ଅନ୍ତତଃ ଉପଭୋଗ କରନ୍ତି ଏବଂ ସେମାନଙ୍କର ବୋରଡ଼ମ୍ ଜାଗ୍ରତ ହେବା ପୂର୍ବରୁ ମୁଁ ସେମାନଙ୍କୁ ଛାଡ଼ି ଚାଲିଆସେ। ବିଶ୍ୱାସ କରନ୍ତୁ ମହାଶୟ! ଫକୀରମୋହନଙ୍କର

ଚନ୍ଦ୍ରମଣିବାବୁଙ୍କ ଭାଷାରେ–"ମୁଁ ଖୁବ୍ ହୁସିଆର ମଣିଷ। ମୁଁ କଣ ତୋ ସାଙ୍ଗାଣୀ ପରି ହେଣ୍ଟା ?" ଛାଡ଼ନ୍ତୁ।

କଥାବାର୍ତ୍ତା ସେମାନଙ୍କ ସହିତ ବେଶ୍ ଜମିଲା। ଜଣେ ଯୁବକ ପଚାରିଲେ–ମଉସା ! ଆପଣ ଆଉ ମାଉସୀ ଆଦୌ ସିନେମା ଦେଖନ୍ତି ନାହିଁ କାହିଁକି ? ସିନେମା କଣ ଖରାପ ?

ମୁଁ କହିଲି–ଦେଖବାବୁ ! ସିନେମା ପ୍ରତି ମୋର ତିଳାର୍ଦ୍ଧ ବିଦ୍ୱେଷ ନାହିଁ। କିନ୍ତୁ ତୁମ ମାଉସୀ କହନ୍ତି ଯେ ସେ ତାଙ୍କ ବାପଘରେ ପିଲାଦିନେ ବହୁତ ସିନେମା ଦେଖୁଥିଲେ। ମାତ୍ର ମୋ ହାତ ଧରିବା ଦିନୁଁ ତାଙ୍କର ସେ ସଉକ ଚାଲିଗଲା। ଏ ଘରର ଜଞ୍ଜାଳ ଭିତରୁ ସେ ମୁକ୍ତ ପାଇପାରିବେ ନାହିଁ। ମାଉସୀ ନ ଯାଇ ପାରିଲେ ମୁଁ ଆଉ କାହା ସାଙ୍ଗେ ସିନେମା ଯିବି ?

ଆଉ ଜଣେ ଯୁବବନ୍ଧୁ ପଚାରିଲେ–ଆପଣ କ'ଣ ଆଜିକାଲିର ସିନେମା ଆଦୌ ଦେଖୁନାହାନ୍ତି ? ଆଜିକାଲି ସିନେମା ବହୁତ ଉନ୍ନତି କଲାଣି।

ମୁଁ କହିଲି–ବାବୁ ଦେଖ ! ମଝେ ମଝେ ପୌରାଣିକ ବା ବଙ୍ଗଳା ସିନେମା ଆସିଲେ ତୁମ ମାଉସୀଙ୍କର ସିନେମା ଯିବାକୁ ଇଚ୍ଛା ହୁଏ। ସେତେବେଳେ ମୁଁ ଯାଏ। କିନ୍ତୁ ମୁଁ ନିଜେ କେତେକ ବନ୍ଧୁଙ୍କ ସହିତ ମଝେ ମଝେ ଆଜିକାଲିର ସିନେମା ଦେଖିଛି। ସତ କହୁଛି– ମତେ ଭଲଲାଗେ ନାହିଁ। ମୁଁ ଗୋଟିଏ ଦୁଇଟି ନାମଜାଦା ଛବିର ଉଲ୍ଲେଖ କଲି।

ସବୁ ଯୁବକମାନେ ଏକାଥରକେ ଆକାଶରୁ ପଡ଼ିଲାଭଳି କହିଲେ–କି ଆଶ୍ଚର୍ଯ୍ୟ ! ସେସବୁ ଛବି ଆପଣଙ୍କୁ ଭଲ ଲାଗିଲା ନାହିଁ ? ତା'ହେଲେ ମଉସା ଜେନେରେସନ ଗ୍ୟାପ୍ ଆସିଗଲାଣି ଆପଣଙ୍କର।

ମୁଁ ହସ ହସ ମୁହଁରେ କହିଲି–ହଁ ରେ ବାବୁମାନେ ! ସତ କଥା। ଠିକ୍ କହୁଛ। ତୁମ ଯୁଗର ଏସବୁ ସିନେମା ମତେ ଆଉ ଭଲ ଲାଗୁନାହିଁ। ପ୍ରଥମତଃ ତୁମମାନଙ୍କ ଜୀବନକୁ ଯେପରି ସୁକୁମାର ରୋମାଣ୍ଟିସିଜିମ୍ ଚାଲିଗଲାଣି, ତୁମର ଗଳ୍ପ ନାଟକ ସିନେମାରୁ ବି ସେମିତି ଗଲାଣି। ତୁମେମାନେ ଆଉ ଏ ଯୁଗରେ ହୃଦୟକୁ ନେଇ ବଞ୍ଚୁ ନାହଁ। ତୁମର ହେଲା କେବଳ ଦେହ ଆଉ ବୁଦ୍ଧିର ଖେଳ। ଏଥିରେ ଆଉ ଭାବପ୍ରବଣତା ନାହିଁ। କବିତା କି ସଙ୍ଗୀତ ନାହିଁ–ପ୍ରକୃତି ବି ନାହିଁ–କଳ୍ପନା ବା ସ୍ୱପ୍ନ ନାହିଁ। ଅଛି କେବଳ ସ୍ଥୂଳ ରୂକ୍ଷ ବାସ୍ତବତା, ହିଂସା ଆଉ ଯୌନବିକାର।

ମୋ ସାନପୁଅଟା ଯେତିକି ଭଲ ସେତିକି ବଙ୍କାରୀ। ସେ ମତେ ସବୁଦିନ ପରି ଥଟ୍ଟା କରି କହିଲା–

–ବାପା ! ତୁମ ଯୁଗର ରୋମାଣ୍ଟିସିଜିମ୍ ହେଲା ଗୋଟାଏ ଅଙ୍କାବଙ୍କା ନଈ–କିଛି ଗଛ–ଦୂରରେ ପାହାଡ଼–ଦୁଇଟି ଚଢ଼େଇ ସାଙ୍ଗହୋଇ ଆକାଶରେ ଉଡ଼ି ଯାଉଥିବେ–ଦୂରରୁ ଗାଈଆଳ ଟୋକାଟିଏ ବଂଶୀ ବଜାଉଥିବ। ଚନ୍ଦ୍ର ଉଇଁ ଆସୁଥିବ ପାହାଡ଼ତଳି ଗଛ ପାଙ୍ଗରୁ। ହିରୋ ହିରୋଇନ ସେଇ ନଈବନ୍ଧ ଉପରେ ସିଆଡ଼େ ଚାହିଁ ବସିଥିବେ ତ ବସିଥିବେ। କେତେବେଳେଯାଏ ସେମିତି କାହିଁକି ବସିଥିବେ କେଜାଣି ?....ତା'ପରେ ଦିନେ ହୁଏ ତ

ପୁଣି ଦେଖାଯିବ–ହିରୋଇନ୍ ଆଉ କାହାକୁ ବାହା ହେଇଗଲା ଓ ହିରୋଟି ମଦଖାଇ ମଇଳା ଛିଣ୍ଡା ଧୋତି-ପଞ୍ଜାବୀ ପିନ୍ଧି ବିରହବାତୁଳ ହୋଇ ରାସ୍ତାରେ ଘୂରୁଛି ଓ ସମସ୍ତଙ୍କର ସିମ୍ପାଥି ଏକ୍ସପେକ୍ଟ କରୁଛି (ସହାନୁଭୂତି ଆଶା କରୁଛି।) ଯେମିତି ଶରତ ଚନ୍ଦ୍ରଙ୍କର ଦେବଦାସ। ଏବଂ ସେ ଦୃଶ୍ୟ ପର୍ଦ୍ଦାରେ ଦେଖି ତୁମେ ଓ ବୋଉ ସୁଁ ସୁଁ ହୋଇ କାନ୍ଦୁଛ। ହାଃ ହାଃ ହାଃ! ଏଇନା ତୁମର ରୋମାଣ୍ଟିସିଜିମ? ବୋଗସ ପଚା ସେଣ୍ଟିମେଣ୍ଟାଲିଜିମ। ଏ ପ୍ରକାର ପଚା କାରବାର ଆମ ଦେହାତି ହୋଇପାରିବନି।

ସେ ବଜାରୀ ଚାଲାଖ ଆଉ ମୁହଁଖୋର ଟୋକାଟାର କଥାଶୁଣି ମୋ ମୁଣ୍ଡକୁ ରାଗ ଖୁନ୍ ଉଠିଗଲା। ମୁଁ ପାଟିକରି ଉଠିଲି–ଚୋପ୍। ରାସ୍କେଲ୍। ତୁ ଆମର ଶରତ ଚନ୍ଦ୍ର, କାହ୍ନୁଚରଣ ଭଳିଆ ଲେଖକଙ୍କୁ ଥଟ୍ଟାକରିବୁ–ତୁମ ଯୁଗର ଯେତେ ସବୁ ବାଇଆ, ଆଡ଼ବାଇଆ ଲେଖକମାନେ। ଷଷ୍ଠିବ୍ରତ, ଗୁଲସନ ନନ୍ଦା, ଖୁସବନ୍ତ ସିଂ–ତା'ନହେଲେ କାମ୍ୟୁ, ସାର୍ତ୍ରେ, କାଫ୍‌କା। ଆରେ ଚଲ୍। ଏଥିରୁ ଗୁଡ଼ାଏ ପଢ଼ିବ–ଆଉ ସିନେମାରେ ଦେଖିବ କାହାକୁ ? ନା–ଏଇସବୁ ହୁଣ୍ଡା–ହୁଣ୍ଡୀ ସିନେମା ଷ୍ଟାରଙ୍କ ଲଂପଝଂପ ତାମସା। ଆରେ ହେ। ତୁମେ ସବୁ ଆମ ଅମଳର ବଡ଼ୁଆ, କାନନ ଦେବୀ, ନଳିନୀ ଜୟନ୍ତୀ, ନର୍ଗିସ, ସୁରୟା, ମୀନାକୁମାରୀ, ଦେବାନନ୍ଦ, ଦିଲ୍ଲୀପକୁମାରମାନଙ୍କ ଆକଟିଂ ଦେଖିନାହଁ। ସେମାନେ ଯେ କରୁଥିଲେ ଅଭିନୟ। ସେମାନଙ୍କ ମୁହଁରେ କେତେ ପ୍ରକାର ରହସ୍ୟମୟ ଭାବଭଙ୍ଗୀ ଗଭୀର ହୋଇ ଫୁଟୁଥିଲା। ବଡ଼ କଥା ହେଲା–ଆମ ଅମଳରେ ଅଭିନେତା–ଅଭିନେତ୍ରୀଙ୍କର ମୁହଁଟା ଥିଲା ଅସଲ। ଆମେ ସେଇ ମୁହଁଗୁଡ଼ିକୁ ଇ ବିଭୋର ହୋଇ ଦେଖୁଥିଲୁ। କେତେ ଗଭୀର ଏବଂ ଜଟିଳ ଭାବାବେଗ ସବୁ ସେମାନଙ୍କ ଅନ୍ତରରେ ସୃଷ୍ଟି ହେଉଥିଲା ଓ ସେଗୁଡ଼ିକୁ ସେ ଆଖି ଓଠ, କପାଳ ଓ ମୁହଁର ଅନ୍ୟାନ୍ୟ ଅଂଶରେ କି ଅଦ୍ଭୁତ ଭାବେ ଫୁଟାଇ ପାରୁଥିଲେ। ଆଉ, ତୁମ ଅମଳରେ ଗୁଡ଼ାଏ ହୁଣ୍ଡା ହୁଣ୍ଡା ପୁଅ, ଆଉ ହୁଣ୍ଡୀ ହୁଣ୍ଡୀ ଝିଅ–ସେମାନଙ୍କର ମୁହଁରେ ଫୁଟି ଉଠିବା ପାଇଁ କିଛି ନାହିଁ। ସେମାନେ କେବଳ ଦେହ ଏବଂ ଏଇ ଦେହର ଢଙ୍ଗ ହେଲା ତୁମମାନଙ୍କ ପାଇଁ ସବୁ। ତୁମର ହେଲା ଦେହ ସର୍ବସ୍ୱ ଯୁଗ। ଆମକୁ ଏ ସବୁ ବଡ଼ ଅରୁଚିକର, ଅଶ୍ଳୀଳ ଆଉ ବଣ୍ୟ ବୋଧହୁଏ।

ମୋ କଥା ଶୁଣି ପିଲାମାନେ ଚୁପ୍ ହୋଇଗଲେ। କାରଣ ସେମାନେ ବୁଝିଲେ ମୁଁ ରାଗିଗଲିଣି। କିନ୍ତୁ ସେମାନେ ମୁରୁକି ମୁରୁକି ହସୁଥିଲେ। ମୁଁ ଏତିକି କହି ସେଠୁ ଉଠି ଆସିବାକୁ ଠିଆହେଲି।

ମୋର ସ୍ତ୍ରୀ ଥାଳିଏ ପକୋଡ଼ି ଧରି ଆସି ସେଠି ପହୁଞ୍ଚିଲେ ଓ ମୋ ଉଦ୍ଦେଶ୍ୟରେ ଅଭିଭାବକୋଚିତ ସ୍ୱରରେ କହିଲେ–

କାହିଁକି ତୁମେ ଆସି ସେମାନଙ୍କୁ ବିରକ୍ତ କରୁଛ ? ତାଙ୍କର ସେ ବସିଛନ୍ତି–କଥା ହେଉଛନ୍ତି। ତୁମେ ପରା ଆଜି ଯଜ୍ଞେଶ୍ୱର ମନ୍ଦିରକୁ ଯିବ ବୋଲି କହୁଥିଲ ?

ମୁଁ କହିଲି, ଆରେ ଠିକ୍ ଠିକ୍ ମୋର ମନେ ନଥିଲା।



# ଏ କି ଭୟଙ୍କରୀ କାନ୍ତି !!

୨।୭।୮୧

ବିଭିନ୍ନ ଉପାୟରେ କଳାଟଙ୍କା ଅର୍ଜନ କରି, ସେଇ ବଳରେ ଘରବାଡ଼ି ଆୟ ଅଳଙ୍କାର, ଯାନବାହାନ, ଇତ୍ୟାଦିର ଜୌଲସ ଦେଖାଇ କି ନିର୍ଭୟ ଭାବରେ, କି ଆଡ଼ମ୍ବରରେ, କି ନିର୍ଲଜ ଗର୍ବିତାପଣରେ, ମୋଟ ଉପରେ କି ଅଜ୍ଞାନ ଭାବରେ ଲୋକେ ଆମ ଦେଶରେ ଚଳୁଛନ୍ତି ତାର ଗୋଟିଏ ଦୃଷ୍ଟାନ୍ତ ଦେଉଛି—ଶୁଣନ୍ତୁ। କିନ୍ତୁ ଏଇ ଉଦାହରଣଟି ସମାଜରେ ଗୋଟିଏ ଶ୍ରେଣୀରୁ ସଂଗୃହୀତ ହୋଇଥିଲେ ବି ଆପଣ ତାଦୃଶ ଉଦାହରଣ ସମାଜର ସବୁ ସ୍ତରରେ ବର୍ତ୍ତମାନ ବହୁଳଭାବରେ ଦେଖିବାକୁ ପାଇବେ।

ଏକଦା ମୋର ଜଣେ ଖ୍ୟାତନାମା ଅଧ୍ୟାପକ ବନ୍ଧୁ ତାଙ୍କ ଝିଅର ବିବାହ ପ୍ରସଙ୍ଗରେ ମୋତେ ନେଇ ଜଣେ ପୋଲିସ ଇନ୍‌ସପେକ୍ଟରଙ୍କ ଘରକୁ ଯାଇଥିଲେ। ସେହି ଦାରୋଗା ଗୋଟିଏ ପୁରୁଣା କାଳିଆ ଭଡ଼ାଘରେ ରହୁଥିଲେ। ଆମେ ତାଙ୍କ ଦାଣ୍ଡଘରେ ଯାଇ ବସିଲୁ। ସେହି ଘରେ ମୂଲ୍ୟବାନ ସୋଫା ପଡ଼ିଥିଲା। ମାତ୍ର କାନ୍ଥ ଚାରିପଟଯାକ ତିରିଶିବର୍ଷ ତଳର ସୁରେୟା, ନର୍ଗିସ, ବୈଜୟନ୍ତୀମାଳାଦି ସିନେମା ଷ୍ଟାରଙ୍କ ଫଟୋଠାରୁ ଆରମ୍ଭ କରି ବର୍ତ୍ତମାନର ଟିନାମୁନିମ୍ ଓ ହେମାମାଳିନୀ ପ୍ରଭୃତିଙ୍କ କାଲେଣ୍ଡର ଛବିରେ ପୂରି ଯାଇଥିଲା ଏବଂ ତା' ମଝିରେ ମଝିରେ ବି ଜଗନ୍ନାଥ ଓ ରାମାଭିଷେକାଦି ଧାର୍ମିକ ଛବିଥିବା କାଲେଣ୍ଡରମାନ ଟଙ୍ଗା ହୋଇଥିଲା।

ଯଥା ସମୟରେ ଥାନା ପୋଷାକରେ ଥାଇ ଦାରୋଗାବାବୁ ଆସି ଆମ ପାଖେ ବସିଲେ। ଖୁବ୍ ବିଶାଳ ଆଉ ଦର୍ପିଷ୍ଠ ସ୍ୱାସ୍ଥ୍ୟବନ୍ତ ବପୁ। ଠୋ ଠୋ କଥା—ହୋ ହୋ ହସ। ବେପରୁଆ ଚାହାଣି ଓ ଭାବଭଙ୍ଗୀ। ତାଙ୍କର ଅବସର ନେବାକୁ ଆଉ ମାତ୍ର ସାତମାସ ଥିଲେ ବି ତାଙ୍କ ମନ ବା ଚେହେରାରେ ପ୍ରାକ୍ ଅବସରସୁଲଭ କୌଣସି ଲକ୍ଷଣ ପ୍ରକାଶ ପାଉ ନ ଥିଲା।

ଚାହା ଓ ସାମାନ୍ୟ ଜଳଯୋଗ ପୂର୍ବରୁ ଓ ପରେ ଆମ ମଧ୍ୟରେ ଯୋଉସବୁ କଥାବାର୍ତ୍ତା ହେଲା—ସେଥିରୁ ସେହି ଦାରୋଗା ପୁଙ୍ଗବଙ୍କର ପୋଲିସ୍ ଜୀବନର ବହୁ ଦୁଃସାହାସିକ, ବୀରତ୍ୱପୂର୍ଣ୍ଣ ଓ ରହସ୍ୟଜନକ ଇତିହାସ ଆମ କାନରେ ପଡ଼ିଲା। ମାତ୍ର ତହିଁରୁ କୌଣସିଟି ଅବଶ୍ୟ ଦୁର୍ଦ୍ଧାନ୍ତ ଚୋର ଡକାୟତଙ୍କ ସମ୍ବନ୍ଧେ ନ ଥିଲା। କେଉଁ କେଉଁ ଅବସରପ୍ରାପ୍ତ ଏସ.ପି. ବା ବର୍ତ୍ତମାନର ଟୋକା ଟାକଳିଆ ଚୁଙ୍ଗୁଚୁଙ୍ଗିଆ ଆଇ.ପି.ଏସ ମାନଙ୍କୁ ସେ ନିଜର ବିଚିତ୍ର ବୁଦ୍ଧି ବଳରେ ଭୂଆଁ ବୁଲାଇଛନ୍ତି—କେଉଁ କେଉଁ ଖ୍ୟାତ ବିଖ୍ୟାତ ସାମ୍ବାଦିକମାନଙ୍କୁ ସେ ଚକ୍ରତୀର୍ଥ ବୁଲାଇ ଦେଉଛନ୍ତି—

ଦଳ ନିର୍ବିଶେଷରେ କେଉଁ କେଉଁ ରାଜନୀତିକ ନେତାମାନଙ୍କୁ ସେ କାବୁ କରି ଦେଇଛନ୍ତି ଭିଜିଲାନ୍ସ ବିଭାଗର କେଉଁ ଉଚ୍ଚକର୍ତ୍ତାଙ୍କୁ ମଧ୍ୟ ସେ କେମିତି ପାନେ ଦେଇଛନ୍ତି—ଏବଂ ପାଞ୍ଚଜଣ ଭୂତପୂର୍ବମନ୍ତ୍ରୀ ବା ଉପମନ୍ତ୍ରୀଙ୍କ ସମ୍ବନ୍ଧେ ବହୁ ରହସ୍ୟ ଜନକ ବିବରଣୀ ସେ ତାଙ୍କର ଦାରୋଗାସୁଲଭ ଭାଷାଶୈଳିରେ ଢ଼େରବେଳ ବୟାନ କଲେ। ତା' ପରେ ସେ ସବ୍‌ଇନସପେକ୍ଟର ଥିଲାବେଳେ କୋଉ କୋଉ ସ୍ଥାନରେ କୋଉ କୋଉ ବିଶିଷ୍ଟଲୋକଙ୍କୁ ବାନ୍ଧିଆଣି ଥାନା ଖୁଆଡ଼ରେ ଡର୍ଭିକରି ଦେଇଥିଲେ, ତାହା ମଧ୍ୟ ଆମେ ତାଙ୍କ ଶ୍ରୀମୁଖରୁ ଶୁଣିଲୁ। ତାଙ୍କର ଶେଷ କଥାଟି ଥିଲା—ଜଣେ ବିଖ୍ୟାତ ଅଧ୍ୟାପକଙ୍କ ସମ୍ବନ୍ଧରେ—ଯେକି ତାଙ୍କ ସାନ ପୁଅର ପରୀକ୍ଷାଖାତା ପାଇଥିଲେ—ମାତ୍ର ନାନା ଅନୁରୋଧ ଉପ୍ରୋଧ ଓ ଉତ୍କୋଚ ଯାଚିବା ସତ୍ତ୍ୱେ ବି ସେ ସେଥିରେ ଫେଲମାର୍କ ଦେଇଥିଲେ। ଏବଂ ତା'ପରେ ସେହି ହତଭାଗ୍ୟ ଅଧ୍ୟାପକ କିପରି ସେଇ ଦାରୋଗା ପୁଙ୍ଗବଙ୍କ ଦ୍ୱାରା ନିଗୃହୀତ ହୋଇ ପ୍ରାୟ ମାମୁଁଘର ଦାଣ୍ଡ ପର୍ଯ୍ୟନ୍ତ ଘୋଷରା ହୋଇଯାଇଥିଲେ—ସେହି ସକରୁଣ କାହାଣୀଟି ସେ ହସି ହସି ଆମକୁ ଶୁଣାଇଲେ।

ଏତେ କଥା ମୋର ବର୍ଣ୍ଣନା କରିବା ଉଦ୍ଦେଶ୍ୟ ନୁହେଁ। କିମ୍ବା ତାଙ୍କର ପାଣ୍ଡୁପାଣ୍ଡବଙ୍କ ସଦୃଶ୍ୟ ପଞ୍ଚଧନୁର୍ଦ୍ଧର ପୁତ୍ରଙ୍କ କୀର୍ତ୍ତି କାହାଣୀ ବର୍ଣ୍ଣନା ମଧ୍ୟ ମୋର ଉଦ୍ଦେଶ୍ୟ ନୁହେଁ। ସେହିପରି ମଧ୍ୟ ମୁଁ ତାଙ୍କର ଉତ୍ତମ ସ୍ଥାନରେ ବହୁ ଯାନୀଯୌତୁକ ନେଇ ବିବାହିତା ଚାରୋଟିଯାକ ସୁନାନାକୀ ଝିଅଙ୍କ ସମ୍ବନ୍ଧେ ଯାହା ତାଙ୍କ ଶ୍ରୀମୁଖରୁ ଶୁଣିଲି—କିଛି କହୁ ନାହିଁ। କିନ୍ତୁ ଏହି କରିତ୍‌କର୍ମା ଓ ମହା ଅଘଟନ ଘଟନ ସଂଘଟନ ମହିମାବନ୍ତ ଦାରୋଗା ପୁଙ୍ଗବଙ୍କର ଯଥାର୍ଥ ଧର୍ମପତ୍ନୀ ଓ ତାଙ୍କଆତ୍ମ ପଞ୍ଚବୀରପୁତ୍ର ଓ ଚାରି ବୀରାଙ୍ଗନା କନ୍ୟାଙ୍କର ଗର୍ଭଧାରିଣୀ ସେହି ଭଦ୍ର ମହିଳାଙ୍କ ସମ୍ବନ୍ଧେ ସାମାନ୍ୟ କିଛି କହୁଛି।

ଦାରୋଗା ପତ୍ନୀ ବୈଠକ ଘରକୁ ଆସିବା ମାତ୍ରେ ତାଙ୍କୁ ଦେଖି ଆମ ଆଖି ଝଲସି ଗଲା। ସତେ କି ସହସ୍ରେ ସୂର୍ଯ୍ୟ ଉଦୟ ହେଇଗଲେ। ପ୍ରାୟ ପଚାଶ ବର୍ଷ ପାଖାପାଖି ଏହି ସ୍ଥୂଳକାୟା ମହାଗର୍ବିଣୀ ମହିଳା ଖଣ୍ଡିଏ ଘୋର ଲାଲରଙ୍ଗର ପାଟଶାଢ଼ୀ ପିନ୍ଧି ଥିଲେ। ତାଙ୍କ ମଥାରେ କୃଷ୍ଣରଙ୍ଗ ରଞ୍ଜିତ କେଶ ସହିତ ପୃଥୁଳ ଏକ କୃତ୍ରିମ ଜୁଡ଼ା ଧିଲା। କପାଳରେ ମସ୍ତ ଏକ ସୌଭାଗ୍ୟସୂଚକ ସିନ୍ଦୂର ଟୋପା ଦାଉ ଦାଉ ଜଳୁଥିଲା। ଏବଂ ତାଙ୍କର ସମଗ୍ର ଶରୀର ଶତାଧିକ ଭରି ସ୍ୱର୍ଣ୍ଣାଳଙ୍କାରରେ ବିଭୂଷିତ ହୋଇ ଆମକୁ ଚକଚକା କରି ଦେଉଥିଲା। ତାଙ୍କର ସ୍ଥୂଳଗ୍ରୀବାଟି ସାତପ୍ରସ୍ଥ ସୁନା ଚାପସରିରେ ଆବୃତ ହୋଇଥିଲା। ତାଙ୍କର ଉତ୍ତୁଙ୍ଗ ବକ୍ଷଦେଶରେ ଆହୁରି ଏକ ପ୍ରଜ୍ୱଳନ୍ତ ସ୍ୱର୍ଣ୍ଣହାର ଲମ୍ବାୟମାନ ହୋଇଥିଲା। ତା' ଦେହରେ ଗୋଟିଏ ସ୍ୱର୍ଣ୍ଣପଦକ ଶୋଭୁଥିଲା। ସେଥିରେ କୌଣସି ଗୁରୁଦେବଙ୍କ ଛବି ଅସ୍ପଷ୍ଟ ଦିଶୁଥିଲା। ସେ ତାଙ୍କର କୃତ୍ରିମ ବିପୁଳ ଗଭାରେ ସ୍ୱର୍ଣ୍ଣକେତକୀର ଏକ ବିସ୍ତୃତ ଟାହିଆ ଧାରଣ କରିଥିଲେ। ତାଙ୍କର ମଥା ଉପରେ ସୁନାର ଚନ୍ଦ୍ର ଝୁମ୍ପା ଝଲସୁଥିଲା। ଏବଂ ସେ ଦୁଇକାନରେ ସୁନାର କାପ, ପେଣ୍ଡି ଓ ଝୁମ୍ପୁକାଦି ଲଗାଇ ଥିଲେ। ତାଙ୍କର ଦୁଇ ବାହୁରେ ସେ ଦୁଇଟି ମୋଟା ସ୍ୱର୍ଣ୍ଣ କଙ୍କଣ ଧାରଣ କରିଥିଲେ। ଏବଂ ତାଙ୍କ ଦୁଇହାତର ମଣିବନ୍ଧରୁ

ପ୍ରାୟ କହୁଣିଯାଏ ସେ ସୁନାର ଚୁଡ଼ୀ, ବାଲା, ଖଡୁ ଓ ପଇଁଚେ ନାମକ ଅଳଙ୍କାରାଦି ପିନ୍ଧିଥିଲେ। ତାଙ୍କର ୪ଟି ଆଙ୍ଗୁଳିରେ ୪ଟି ସୁନାମୁଦି ଥିଲା।

ତାଙ୍କ ସୁନାର ମଥାମଣିରେ ଲାଗିଥିବା ମୂଲ୍ୟବାନ ପ୍ରସ୍ତରମାନ ଛାୟାଲୋକରେ ଆନ୍ଦୋଳିତ ହୋଇ ଇନ୍ଦ୍ରଧନୁର ଭ୍ରମ ସୃଷ୍ଟି କରୁଥିଲେ। ସର୍ବୋପରି ତାଙ୍କର ତାମ୍ବୁଳରଞ୍ଜିତ ମୁଖବିବର ଭିତରୁ ତାଙ୍କର ଅନୁପମ ଦନ୍ତପଙ୍କ୍ତି ମଧ୍ୟ ସ୍ୱର୍ଣ୍ଣମଣ୍ଡିତ ହୋଇଥିବାର ଜଣାଗଲା। କଥାବାର୍ତ୍ତାର ସ୍ୱର ଓ ଭଙ୍ଗୀ ମଧ୍ୟ ଦାରୋଗାପତ୍ନୀସୁଲଭ ଦୃପ୍ତ ଥିଲା। ସେ ତାଙ୍କ ଚାରି ସୁନାନାକୀ ଝିଅଙ୍କ ବିବାହ କାହାଣୀ ଶୁଣାଇଲେ ଓ ପ୍ରତ୍ୟେକଙ୍କୁ କେତେ ଭରି ସୁନା ସହ କଣ ସବୁ ଯୌତୁକ ଦେଇଛନ୍ତି—ତାହା ମଧ୍ୟ କହିଲେ। ତାଙ୍କର ତିନିବୋହୂ କଣ ସବୁ ଯୌତୁକ ଓ କେତେ ସୁନା ଆଣିଛନ୍ତି ତାହା ମଧ୍ୟ କହିଲେ। ଏବଂ ତାଙ୍କର ପ୍ରବଳ ଅନିଚ୍ଛା ସତ୍ତ୍ୱେ ତାଙ୍କର ସବା ସାନ ଝିଅଟି ସମସ୍ତ ସ୍ୱର୍ଣ୍ଣ ଓ ଯୌତୁକ ନେବା ସତ୍ତ୍ୱେ ସାମାନ୍ୟ ଗୋଟିଏ ଅଧ୍ୟାପକଙ୍କୁ ବିବାହ କରି କିପରି ଅତି କଷ୍ଟରେ ଚଳୁଛି ତାର କରୁଣ ବିବରଣୀ ପ୍ରଦାନ କଲେ। ଶେଷରେ ମୋର ଅଧ୍ୟାପକ ବନ୍ଧୁଙ୍କ କନ୍ୟାର ବିବାହ ପ୍ରସଙ୍ଗ ନେଇ ସେ ସଫା ସଫା କହିଦେଲେ ଯେ, ତିରିଶି ଭରି ସୁନାରୁ ସେ ରତିଏ ମଧ୍ୟ ଛାଡ଼ିବେ ନାହିଁ। ତା'ଛଡ଼ା ମଟର ସାଇକେଲ, ଫ୍ରିଜ୍, ଷ୍ଟେରିଓ ଓ ରାସ୍ତା ଖର୍ଚ୍ଚ ତ ରହିଛି।

କହିବା ବାହୁଲ୍ୟ ଯେ, ଅଧ୍ୟାପକ ବନ୍ଧୁ ଏ ପ୍ରସ୍ତାବରୁ ଓହରି ଆସିଥିଲେ। ମାତ୍ର ସେଦିନର ସେହି ଶତଭରି ସ୍ୱର୍ଣ୍ଣାଳଙ୍କାର ଭୂଷିତା, ଦାଉ ଦାଉ ପ୍ରଜ୍ୱଳମାନା ଦୃପ୍ତା, ସ୍ଥୂଳକାୟା, ସ୍ଥୂଳହୃଦୟା, ପାପଜୀବିତା, ଦାରୋଗା ପତ୍ନୀଙ୍କୁ ଦେଖି, ଏହି ଭଳି କଳା ଧନର ଅଧିକାରୀ ଅଫିସର ଓ ବ୍ୟବସାୟୀମାନଙ୍କ ଦୃପ୍ତା ଗୃହିଣୀମାନଙ୍କ ଉଦ୍ଦେଶ୍ୟରେ ମୋର ରବୀନ୍ଦ୍ରନାଥଙ୍କର ଦି'ଧାଡ଼ି କବିତା ମନେ ପଡ଼ୁଛି—

ଓରେ ମୂଢ଼ା !
ଏ କି ଭୟଙ୍କରୀ କାନ୍ତି,
ପ୍ରଳୟେର୍ ସାଜ୍
ଯୁଗାନ୍ତେର- ଉଲ୍‌କା ସମ
ଦହିଛେ ନା ଆଜଏ ମଣି ମଞ୍ଜରୀ ତୋରେ ?
ରତ୍ନ ଲଲାଟିକା
ଏ ଯେ ତୋର ସୌଭାଗ୍ୟର
ବଜ୍ରାନଳ ଶିଖା !

ଯୁଗାନ୍ତରର ସନ୍ଧିକ୍ଷଣ ସମୁପସ୍ଥିତ। କିନ୍ତୁ ଏହି ମୂଢ଼ମନା ଦୃପ୍ତଦୃପ୍ତାଗଣ ଏ ପର୍ଯ୍ୟନ୍ତ ତାଙ୍କର ପାପାର୍ଜ୍ଜିତ ସୌଭାଗ୍ୟର ବଜ୍ରାନଳ ଶିଖାର ଆଭାସ ଦେଖି ପାରି ନାହାନ୍ତି।

❋❋

# ଭି.ଆଇ.ପି. ହାଓ୍ବା...

୩।୧୧।୨।୮୨

ଏବେ ପ୍ରଧାନ ମନ୍ତ୍ରୀ ଶ୍ରୀମତୀ ଗାନ୍ଧୀ ଜନୈକ ପାଶ୍ଚାତ୍ୟ ସାମ୍ବାଦିକଙ୍କୁ କହିବାର ଶୁଣାଗଲା ଯେ, ସେ ଆମ ସମାଜର ଏଇସବୁ କଥାକଥିତ ଉପରସ୍ତରର ଲୋକଙ୍କ ସହିତ ମିଶି ପାରନ୍ତି ନାହିଁ। କାରଣ, ସେମାନେ ଏକ ଉପରଠାଉରିଆ ଜୀବନକୁ ନେଇ ବଞ୍ଚିଥାନ୍ତି। ସେ ବରଂ ଏ ଦେଶର ଆଦିବାସୀ ଅଥବା ଖଟିଖିଆ ଶ୍ରମିକ କୃଷକଙ୍କ ସହିତ ହୃଦୟ ଦେଇ ମିଶିପାରନ୍ତି ଓ ସେମାନଙ୍କ ସହିତ ମିଶିବାକୁ ତାଙ୍କୁ ଖୁବ୍ ଭଲ ଲାଗେ ଏବଂ ସେମାନେ ହିଁ ପ୍ରକୃତରେ ଭାରତ ବର୍ଷର ଅଧିବାସୀ।

ପ୍ରଧାନମନ୍ତ୍ରୀଙ୍କ ଏହି ଉକ୍ତିଟି ଆମ ସମସ୍ତଙ୍କ ପକ୍ଷରେ ପ୍ରଣିଧାନ୍ୟଯୋଗ୍ୟ। ସତ କଥା, ଭାରତବର୍ଷ କହିଲେ କ'ଣ ବୁଝାଏ ଓ ଭାରତବାସୀ କହିଲେ କାହାକୁ ବୁଝାଏ, ସେକଥା ପ୍ରଧାନମନ୍ତ୍ରୀଙ୍କର ଏହି ସଦ୍ୟ ଉକ୍ତିରୁହିଁ ଖୁବ୍ ସୂକ୍ଷ୍ମ ଭାବରେ ପ୍ରକାଶ ପାଏ। ବ୍ରିଟିଶ ରାଜତ୍ୱ ଶେଷ ହୋଇଗଲା। ମାତ୍ର ବିଟ୍ରିଶ ରାଜତ୍ୱ ବେଳର କେତେକ ମାରାତ୍ମକ ଭୁଲ ସଂସ୍କାର ଏବେ ସୁଦ୍ଧା ଆମ ମନରେ ବସାବାନ୍ଧି ରହିଛି ଏବଂ ତାହା କ୍ରମଶଃ ବଢ଼ିବାରେ ଲାଗିଛି—ବିଶେଷତଃ ଶିକ୍ଷିତ, ଉଚ୍ଚଶିକ୍ଷିତ ଗୋଷ୍ଠୀ ଭିତରେ—ସରକାରୀ, ବେସରକାରୀ କର୍ମଚାରୀ ଗୋଷ୍ଠୀ ଭିତରେ—ଆମ ସମାଜରେ ଗୋଟିଏ ତଥାକଥିତ ସଭ୍ୟଗୋଷ୍ଠୀର ଆବିର୍ଭାବ ହୋଇଛି—ଯେଉଁମାନଙ୍କୁ ସଭା ସମିତିରେ, ସାମାଜିକ ଉତ୍ସବମାନଙ୍କରେ—ଅଥବା ମେଳା ପାର୍ବଣରେ ଆମେ ଭି.ଆଇ.ପି. ବୋଲି ନାମିତ କରିଥାଉ। ଭି. ଆଇ.ପି.ର ଅର୍ଥ ହେଲା—ଭେରି ଇଁପଟାଣ୍ଟ ପର୍ସନ୍। ଅର୍ଥାତ୍ "ଅତି ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତି"। ଏବେ ବସ୍, ଟ୍ରେନ୍‌ରେ ମଧ୍ୟ ଏଇ ଭି.ଆଇ.ପି.ଙ୍କ ଲାଗି ସ୍ୱତନ୍ତ୍ର ସ୍ଥାନ ରିଜର୍ଭ କରିବାର ରୀତି ସୃଷ୍ଟି ହେଲାଣି। ଏହି ଭି.ଆଇ.ପି. ଶ୍ରେଣୀଭୁକ୍ତ ହେବାଲାଗି ପୁଣି ସମସ୍ତଙ୍କ ଭିତରେ ଗୋଟାଏ ଉଦଗ୍ର ଲାଳସା ସୃଷ୍ଟି ହୋଇଛି। ଏବଂ ଭି.ଆଇ.ପି. ବ୍ୟାଗ, ଟ୍ରଙ୍କ. ସୁଟ୍‌କେସ ଓ ଛତା ଆଦି ମଧ୍ୟ ତିଆରି ହୋଇ ବଜାରରେ ବହୁ ମୂଲ୍ୟରେ ବହୁ ସଂଖ୍ୟାରେ ବିକ୍ରି ହେଲାଣି। ପ୍ରତ୍ୟେକ ପାଠୁଆ ଦରପାଠୁଆ ବ୍ୟକ୍ତି ସେହି ଭି. ଆଇ.ପି. ବ୍ୟାଗ ବା ସୁଟ୍‌କେସଟିଏ ଧରି

ଯାତାୟତ କଲେ ନିଜକୁ ମନେ ମନେ ଜଣେ, ଭି.ଆଇ.ପି. ବୋଲି କଳ୍ପନା କରି ଆତ୍ମପ୍ରସାଦ ଅନୁଭବ କରୁଛି। ତା'ଅର୍ଥ–ଦେଶରେ ବର୍ତ୍ତମାନ ଭି.ଆଇ.ପି. ହାଓ୍ବା ବହୁଛି।

ମାତ୍ର ଏହି ଭି.ଆଇ.ପି ର ଯଥାର୍ଥ ସଂଜ୍ଞାଟି କଣ ତାହା ଏ ପର୍ଯ୍ୟନ୍ତ ସ୍ପଷ୍ଟଭାବେ ବୁଝା ପଡ଼ିନାହିଁ। ପ୍ରଥମେ ଏହା ମନ୍ତ୍ରୀମାନଙ୍କୁ ବୁଝାଉଥିଲା ଏବଂ ଉଚ୍ଚପଦସ୍ଥ ବିଶେଷତଃ ଆଇ ଏ.ଏସ୍. ଆଇ.ପି.ଏସ୍. ଅଫିସରମାନଙ୍କୁ ବୁଝାଉଥିଲା। ମଧ୍ୟେ ମଧ୍ୟେ ଏହା ଖୁବ୍ ପାଟିତୁଣ୍ଡ କରୁଥିବା ହୁରୁମା ଏମ.ଏଲ.ଏ ବା ଏମ.ପି.ମାନଙ୍କୁ ମଧ୍ୟ ବୁଝାଉଥାଏ। କେବେ କେବେ ଅତ୍ୟନ୍ତ ଧନାଢ୍ୟ ବ୍ୟକ୍ତିମାନଙ୍କୁ ମଧ୍ୟ ଭି.ଆଇ.ପି. ଆସନରେ ବସା ଯାଇଥାଏ।

ମୋଟା ମୋଟି ଏଇ ଶ୍ରେଣୀର ଭି.ଆଇ.ପି ମାନଙ୍କର ଗୋଟିଏ ସାଧାରଣ ପ୍ରକୃତି ଓ ଆଚରଣ ରହିଛି। ଏମାନେ ସଦାସଦ ଉପାୟରେ ବେଶ୍ କିଛି ଅର୍ଥ ଉପାର୍ଜନ କରନ୍ତି। ଭଲ ପୋଷାକପତ୍ର ପିନ୍ଧନ୍ତି। ଭ୍ରୂରୁ ଟେକି ଓ ଦାନ୍ତଚିପି କଥାବାର୍ତ୍ତା କରନ୍ତି। ସେମାନଙ୍କ ଚାହାଣୀ ଯେପରି ନୈର୍ବ୍ୟକ୍ତିକ, ସ୍ମିତହାସ୍ୟ ମଧ୍ୟ ତଦ୍ରୂପ କୃତ୍ରିମ। ସେମାନଙ୍କ ଭିତରେ ଗୋଟିଏ ଅତ୍ୟନ୍ତ ମିଥ୍ୟାଧାରଣା ଥାଏ ଯେ, ଲୋକେ ସେମାନଙ୍କୁ ଖୁବ୍ ଖାତିର କରୁଛନ୍ତି ଓ ସେମାନେ ଏସବୁ ଚଷାଭୂଷା, ହାଟୁଆ, ବାଟୁଆ , ମୋଚି, ମେହେନ୍ତର, ମାଷ୍ଟ୍ର, କିରାଣି, ସାନ ଅଫିସର ଇତ୍ୟାଦି ଗୋଷ୍ଠୀଙ୍କଠାରୁ ଯଥେଷ୍ଟ ଉଚ୍ଚରେ ଏବଂ ସେମାନେ ଏମାନଙ୍କ ଉପରେ ସବୁ କ୍ଷେତ୍ରରେ ପ୍ରଭୁତ୍ୱ ଦେଖାଇବା ପାଇଁ ଜନ୍ମ ହୋଇଛନ୍ତି।

ଏହି ଶ୍ରେଣୀର ଭି. ଆଇ. ପି. ମାନେ ଭାରତବର୍ଷ ବା ଓଡ଼ିଶାରେ ବାସ କରୁଥିଲେ ବି ଏ ଦେଶ ବା ଏ ରାଜ୍ୟର ସାହିତ୍ୟ, ସଂସ୍କୃତି, ଧର୍ମ ଓ ରୀତିନୀତି ପରମ୍ପରା ସଙ୍ଗେ ଏମାନଙ୍କର କୌଣସି ସମ୍ପର୍କ ନଥାଏ। ଏମାନେ ସେମାନଙ୍କ ପିଲାପିଲିଙ୍କୁ ମୂଳରୁ ଇଂରାଜୀ ସ୍କୁଲରେ ପଢ଼ାଇଥାନ୍ତି। ଡାଡ଼ି, ମାମି, ଶିଖାଇଥାନ୍ତି। ବାଇ ବାଇ, ଟାଟା, ଡିନର୍, ଲଞ୍ଚ୍ ଶିଖାଇଥାନ୍ତି। ଏମାନଙ୍କ ଘରେ ଇଂରାଜୀ ବହି ଓ (ପ୍ରଧାନତଃ କ୍ରାଇମଥ୍ରିଲର) ଇଂରେଜୀ ପତ୍ରପତ୍ରିକା ଶୋଭାପାଏ। ଏମାନେ କ୍ଲବକୁ ଯା'ନ୍ତି। ମଦ ପିଅନ୍ତି। ଇତ୍ୟାଦି ଇତ୍ୟାଦି।

ଏମାନେ ରାମାୟଣ, ମହାଭାରତ, ଭାଗବତ ଜାଣନ୍ତି ନାହିଁ। ରାମଲୀଳା, ଭାରତଲୀଳା ଦେଖନ୍ତି ନାହିଁ। ପାଲା, ଦାସକାଠିଆ, ନାଟଯାତ୍ରା, ଚଇତି ଘୋଡ଼ା, ପାଟୁଆ ନାଚ ଦେଖନ୍ତି ନାହିଁ। ଛାନ୍ଦ ଚୌପଦୀ ଗା'ନ୍ତି ନାହିଁ। ଅବଶ୍ୟ ଓଡ଼ିଶୀନୃତ୍ୟ ଓ ଓଡ଼ିଶୀ ସଙ୍ଗୀତ ଇତ୍ୟାଦିକୁ ପାରମ୍ପରିକ ସଂସ୍କୃତି ରୂପେ ଗ୍ରହଣ ନକରି ଆନ୍ତର୍ଜାତିକ ଖ୍ୟାତି ପାଇବା ଲାଳସାରେ ନିଜର ଝିଅମାନଙ୍କୁ ଶିଖାଇବାରେ ଆଗ୍ରହ ଦେଖାନ୍ତି।

ଏମାନେ ସର୍ବସାଧାରଣ ଟ୍ରେନ୍, ବସ, ଟ୍ୟାକ୍ସିରେ ଯିବାକୁ ପସନ୍ଦ କରନ୍ତି ନାହିଁ। ନିଜର କାର୍‌ରେ ଯିବାଆସିବା କରନ୍ତି। କିନ୍ତୁ ଏମାନଙ୍କ ମନ ସବୁବେଳେ ଆକାଶରେ ଉଡ଼ି ଉଡ଼ି ଯିବାଲାଗି ବ୍ୟାକୁଳ।

ଏମାନଙ୍କ ଘରେ ଖୁଦୁରୁକୁଣୀ ଓଷା ହୁଏନା। ଜନ୍ମାଷ୍ଟମୀ, ରାମନବମୀ, କୁମାର ପୂର୍ଣ୍ଣିମା, ଅନନ୍ତବ୍ରତ, ରଜ, ଭାଇଜୀଉଁତିଆ, ନାଗଲ ଚତୁର୍ଥୀ, କାର୍ତ୍ତିକ ପଞ୍ଚୁକ, ହବିଶ, ଏକାଦଶୀ, ବ୍ରତ-ଓଷା-ପୂଣ୍ୟପର୍ବାଦି ହୁଏ ନାହିଁ। କେବଳ ପାର୍ଟି, ଯାର୍ଟହୋମ, ପିକ୍‌ନିକ୍ ଚାଲିଥାଏ। ଏମାନେ ଆପଣାର ସୁସଜ୍ଜିତ ଡ୍ରଇଁରୁମ୍, ଡାଇନିଂ ଟେବୁଲ ଚିକେନ, ବିଅର, ଫ୍ରିଜ, ଲିପ୍‌ଷ୍ଟିକ, ନେଲପଲିସ, ଡ୍ରେସିଂଟେବୁଲ ଇତ୍ୟାଦିକୁ ନେଇଥାନ୍ତି। ଏମାନେ ଭାରତବର୍ଷରେ ଓଡ଼ିଶାରେ ବାସ କରନ୍ତି—ମାତ୍ର ଏ ଦେଶ ବା ରାଜ୍ୟର ଅଧିବାସୀ ନୁହନ୍ତି, ହୋଇପାରିବେ ନାହିଁ ମଧ୍ୟ। ଏମାନେ ଆମର ଯାନିଯାତ୍ରା ମେଳାମଉଛବରେ ଯୋଗ ଦିଅନ୍ତି ନାହିଁ। ସାଧାରଣ ଲୋକଙ୍କ ସହିତ ଦେହଘଷା ହୁଅନ୍ତି ନାହିଁ। ଏମାନଙ୍କ ଜୀବନର ଏକମାତ୍ର ଅଭିଳାଷ ହେଲା—ନିଜେ ସରକାରୀ ଅବା କମ୍ପାନୀରେ ବଡ଼ ବଡ଼ ହୋମରାଚୋମରା ଚାକିରୀ କରିବା, ବଡ଼ ବଡ଼ ବଙ୍ଗଳାରେ ରହିବା ଓ ନିଜ ପିଲାଙ୍କୁ ମଧ୍ୟ ସେଇସବୁ ଚାକିରୀ କରିବା ଲାଗି ପ୍ରବର୍ତ୍ତାଇବା...ଗଢ଼ିବା। ଯଦି ଆମର ଏଇ ଭି.ଆଇ.ପି. ଟି ପ୍ରକାଣ୍ଡ ବ୍ୟବସାୟୀ ହୋଇଥାନ୍ତି—ତେବେ ତାଙ୍କର ଅଭିଳାଷ ହେଲା—ତାଙ୍କ ପିଲାମାନଙ୍କୁ ଆନ୍ତର୍ଜାତିକ ସ୍ମଗଲିଂ ବିଦ୍ୟାରେ କୁଶଳୀ କରାଇ ତାଙ୍କର ବ୍ୟବସାୟକୁ ଅନ୍ତର୍ଜାତିକ ବିସ୍ତାର ଦେବା। ଭି. ଆଇ.ପିଟି ମନ୍ତ୍ରୀ ଇତ୍ୟାଦି ହୋଇଥିଲେ, ତାଙ୍କର ଅଭିଳାସ ହେଲା—କିପରି ତାଙ୍କର ମୂର୍ଖ ବାଳୁଙ୍ଗା ଅଥଚ ଭି. ଆଇ.ପି. ହେବାର ଅଭିଳାଷୀ ପିଲାଙ୍କୁ ତାଙ୍କର ଭଳି କରାଇବା ନତୁବା ଶିଳ୍ପପତି ବା ସିନେମା ପ୍ରଡ୍ୟୁସର କରାଇବା।

ମୋଟାମୋଟି ଆମ ଭି. ଆଇ.ପି. ଗୋଷ୍ଠୀର ପ୍ରକୃତ ଲକ୍ଷ୍ୟ, ଅଭିଳାଷ, ଅଭିସନ୍ଧି ଓ ଆଚରଣ ହେଲା ଏଇପ୍ରକାର। ଏମାନଙ୍କୁ ବାମପନ୍ଥୀ ସାମ୍ୟବାଦୀମାନେ ଗୁର୍ଜୋଆ ପେଟି ବୁର୍ଜୋଆ, ଫାସିଷ୍ଟ ବୋଲି ଭର୍ତ୍ସନା କରନ୍ତି। କେହି କେହି ଏମାନଙ୍କୁ 'ହାଇବ୍ରୋ' ବୋଲି ଥଟ୍ଟା କରନ୍ତି। ଆଉ କେହି କେହି କହନ୍ତି—ଏମାନେ 'ଧଳାହାତୀ'।

କିନ୍ତୁ ଏଇ ଗୋଷ୍ଠୀଟି ଅତି ଅନ୍ତଃସାରଶୂନ୍ୟ। ବେଳେବେଳେ ଉଦ୍‌ଭ୍ରାନ୍ତ—କେତେ କେତେବେଳେ ପାଷାଣ୍ଡ—ଏବଂ ବହୁ ସମୟରେ ସଂସ୍କୃତିବିହୀନ, ପରମ୍ପରାବିହୀନ। ଏ ଗୋଷ୍ଠୀର ରମଣୀମାନେ ପୁଣି ଆହୁରି ଦୟନୀୟ। ସେମାନଙ୍କର ଫେସନ ପ୍ରଦର୍ଶନୀ, ସୌନ୍ଦର୍ଯ୍ୟ ଅହମିକା, ଦୃପ୍ତ ମନୋଭାବ ଏବଂ ଲଘୁ ହାବଭାବ ଏତେ ବିରକ୍ତିକର ଯେ, ସେମାନଙ୍କ ଦେହ ବା ଲୁଗାପଟାକୁ ଯେତେ ଇଣ୍ଡିମେଣ୍ଟ ସେଣ୍ଟର ମହକ ବାହାରି ଆସୁଥିଲେ ବି ମନେହୁଏ, ଏମାନେ ଜୀବନରେ କାହାକୁ ନିଜର କରି ପାରି ନାହାନ୍ତି—ବା ନିଜେ ଆଉ କାହାର ହୋଇପାରି ନାହାନ୍ତି। ଏଇ ଗୋଷ୍ଠୀର

ନାରୀ ପୁରୁଷମାନେ ଦେଶର ବା ପୃଥିବୀର ଗୁରୁତ୍ୱପୂର୍ଣ୍ଣ ଚିନ୍ତାଧାରା, କ୍ରାନ୍ତି ବା ବିପ୍ଲବ ସହିତ ପରିଚିତ ନୁହନ୍ତି—ଏବଂ ସେ ସବୁଠାରୁ ସର୍ବଦା ଦୂରେଇ ଥାନ୍ତି।

ବଡ଼ ଦୁଃଖର କଥା ଯେ ଆଜି ଦେଶସାରା ଶିକ୍ଷିତ, ଅର୍ଦ୍ଧଶିକ୍ଷିତ ଓ ଉଚ୍ଚଶିକ୍ଷିତ ଅଧିକାଂଶ ଲୋକଙ୍କ ଅବଚେତନାରେ ଏହିଭଳି ଭି. ଆଇ.ପି.ଟିଏ ହେବା ଲାଗି ଅଭିଳାଷ ବଢ଼ି ଉଠୁଛି। ଏବଂ ଆଉ କେତେକ ଲୋକ ଭି.ଆଇ.ପି ହୁଅନ୍ତୁ ବା ନ ହୁଅନ୍ତୁ—ସେମାନଙ୍କ ଭିତରେ ଭି. ଆଇ.ପି. ମନ୍ୟତା ଅତି ଶୋଚନୀୟ ଭାବେ ଯତ୍ରତତ୍ର ପ୍ରକାଶ ପାଉଛି।

ଏହି ତଥାକଥିତ ଅନ୍ତଃସାରଶୂନ୍ୟ ଉପରସ୍ତବାଲା ବା ଭି.ଆଇ.ପି.ମାନଙ୍କ ସଙ୍ଗେ ଅନ୍ତର ଦେଇ ସହଜରେ ମିଶିପାରନ୍ତି ନାହିଁ ବୋଲି ପ୍ରଧାନମନ୍ତ୍ରୀ ଯାହା କହିଛନ୍ତି ତାହା ଯଥାର୍ଥ। ଆମ ଲୋକେ ମଧ୍ୟ ଏଣିକି ଆମ ସମାଜର ଯଥାର୍ଥ ଭି. ଆଇ.ପି.ମାନଙ୍କୁ ଖୋଜି ବାହାର କରନ୍ତୁ। ଯଥାର୍ଥ ସାଧୁସନ୍ଥ. ଦେଶସେବୀ, କବି, ବୈଜ୍ଞାନିକ, ଶିଳ୍ପୀ, କାରିଗର, ସାମାଜିକ କର୍ମୀ, ପଣ୍ଡିତ, ସଙ୍ଗୀତଜ୍ଞ, ନୃତ୍ୟବିଦ, ଅଭିନେତା, ଅଭିନେତ୍ରୀ ସରଳ ଓ ପବିତ୍ର ଜୀବନଯାପନ କରୁଥିବା ଗ୍ରାମବାସୀ କୃଷକ ମାମଲତକାର—ଏଇମାନେହିଁ ଯଥାର୍ଥ ଭି.ଆଇ.ପି। ସାରା ଦେଶବାସୀ ଓ ତାଙ୍କର ସରକାର ଯୋଉଦିନ ଏଇମାନଙ୍କୁ ଭି.ଆଇ.ପି. ବୋଲି ଯଥାମାନ୍ୟ ଦେବେ, ଯଥା –ଆସନ ଦେବେ, ସେଇଦିନ ଜାଣିବା ଯେ ଆମ ଲୋକଙ୍କର ପ୍ରକୃତ ବିଚାରଶୀଳତା ଆସିଛି। ଭାରତବର୍ଷ ତା' ବାଗରେ ଗଢ଼ି ଉଠୁଛି। "ଭି.ଆଇ.ପି" ଜାଗାରେ ଆମେ ପୂଜ୍ୟ ବା ବରେଣ୍ୟ ବ୍ୟକ୍ତି ବୋଲି ଶବ୍ଦ ବ୍ୟବହାର କଲେ କେମିତି ହୁଅନ୍ତା।



# ଓଡ଼ିଆଣୀଙ୍କ ଶାଢ଼ି ପ୍ରୀତି

୩୦।୮।୮୦

ଗତ ଦୁର୍ଗାପୂଜା ଉପଲକ୍ଷେ ଓଡ଼ିଆ ଭାଷାରେ ବହୁ ପୂଜା ବିଶେଷାଙ୍କ ପତ୍ରପତ୍ରିକା ପ୍ରକାଶ ପାଇଥିଲା ଏବଂ ବହୁ ପତ୍ରିକାରେ ବହୁ ପ୍ରତିଷ୍ଠିତ ଲେଖକ ବିଭିନ୍ନ ଲେଖା ଲେଖିଥିଲେ। ପତ୍ରିକାଗୁଡ଼ିକର ପ୍ରଚ୍ଛଦପଟ ଓ ଅଙ୍ଗସଜ୍ଜା ମଧ୍ୟ ବେଶ୍ ସୁରୁଚିପୂର୍ଣ୍ଣ ହୋଇଥିଲା। ଝଙ୍କାର, ସମାବେଶ, ଇସ୍ତାହାର, ପାଞ୍ଚଜନ୍ୟ ପୌରୁଷ, ନବଲିପି, ନବରାଗ, ଆସନ୍ତାକାଲି, ପ୍ରଭୃତି ପତ୍ରିକାଗୁଡ଼ିକରେ ବହୁ ଉପାଦେୟ ପ୍ରବନ୍ଧ, ରମ୍ୟରଚନା ଓ ଅତି ଉଚ୍ଚକୋଟୀର ଗଳ୍ପ ପ୍ରକାଶ ପାଇଥିଲା। ଏହା ସାଙ୍ଗକୁ ସୁନ୍ଦରୀ କଳାକୁଶଳୀ ଚିତ୍ରତାରକାମାନଙ୍କ ବିଶେଷ ବିଶେଷ ମନୋରମ ଭଙ୍ଗୀର ଫଟୋରେ ସୁଶୋଭିତ ବହୁ ଓଡ଼ିଆ ସିନେମା ପତ୍ରିକା ମଧ୍ୟ ପ୍ରକାଶିତ ହୋଇ କଟକ, ଭୁବନେଶ୍ୱର, ବ୍ରହ୍ମପୁର ଓ ସମ୍ବଲପୁର ଆଦି ବଡ଼ ବଡ଼ ସହରମାନଙ୍କର ବସଷ୍ଟାଣ୍ଡ ଓ ବଜାରମାନଙ୍କରେ ବିକ୍ରୟ ହେବା ଲାଗି ସଜ୍ଜିତ ହୋଇଥିଲା ଏବଂ ସେହି ବିଚିତ୍ରବର୍ଣ୍ଣ ଓ ରେଖା ବିମଣ୍ଡିତ ପତ୍ରପତ୍ରିକାଗୁଡ଼ିକ ଶାରଦୀୟ ଛୁଟି ପରିବେଶକୁ ଚିତ୍ତାକର୍ଷକ କରିବାରେ ବେଶ୍ ସାହାଯ୍ୟ କରୁଥିଲେ।

ତା' ସାଙ୍ଗକୁ ବଜାରମାନଙ୍କରେ ନାନାଦି ବିଚିତ୍ର ଡିଜାଇନର ଶାଢ଼ି ଓ ଅଙ୍ଗାଭରଣମାନ ବିକ୍ରୀ ଉଦ୍ଦେଶ୍ୟରେ ସଜ୍ଜା ହୋଇ ରଖାଯାଇଥିଲା ଏବଂ ତନ୍ତଶିଳ୍ପଜାତ ଶାଢ଼ି କପଡ଼ାଦି ଉପରେ ରିହାତି ମୂଲ୍ୟ ଥିବାରୁ ବହୁ ଲୋକ ସେହିସବୁ ଦୋକାନମାନଙ୍କରେ ଦିନରାତି ଭିଡ଼ କରୁଥିଲେ ଏବଂ ସହରମାନଙ୍କରେ ପ୍ରାୟ ଚତୁର୍ଦ୍ଦିଗରେ ଏଇ ଶାଢ଼ିବିପଣୀମାନ ଥିଲେ ସଂଖ୍ୟାଧିକ। ଏତେ ବିଚିତ୍ର ଡିଜାଇନ ଆଉ ରଙ୍ଗର ଶାଢ଼ି ଦେଖିଲେ ମନେ ହେବ, ଏ ଦେଶ ବୋଧହୁଏ ବର୍ତ୍ତମାନ ସବୁ ଛାଡ଼ିଛୁଡ଼ି ଦେଇ କେବଳ ଶାଢ଼ି ତିଆରି କରି ଚାଲିଛି ଏବଂ ଏଇ ସବୁ ଶାଢ଼ି ଦୋକାନମାନଙ୍କରେ ବାଳିକା କିଶୋରୀ, ଯୁବତୀ ଓ ବୃଦ୍ଧା ଓଡ଼ିଆଣୀମାନଙ୍କୁ ଏତେ ବିପୁଳ ସଂଖ୍ୟାରେ ଜମା ହୋଇ ଏତେ ପରିମାଣରେ ଶାଢ଼ି କିଣୁଥିବାର ଦେଖିଲେ ମନରେ ଧାରଣା ହୁଏ–ଓଡ଼ିଶାର ରମଣୀଗଣ ବୋଧହୁଏ ସବୁ ଛାଡ଼ି ଛୁଡ଼ି ଦେଇ ବର୍ତ୍ତମାନ କେବଳ ଏଇ ଶାଢ଼ି କିଣିବାରେ ମାତିଛନ୍ତି। ମୁଁ ଖୁବ୍ ମନଦେଇ ଦେଖିଛି ଯେ ଯେତେ ଅଧମ ଛୋଟିଆ ଶାଢ଼ି ଦୋକାନଟିଏ ହେଲେ ବି ତା ଭିତରେ କେତେକ ସ୍ତ୍ରୀଲୋକ ନିଶ୍ଚୟ ପଶିଥିବେ।

ଏ ବର୍ଷ ଦଶହରା ପର୍ବରେ ଖୁବ୍ ବର୍ଷା ହେଲା। ତେଣୁ ଅନେକ ମଉଜ ବ୍ୟର୍ଥ ହୋଇଗଲା। ଏବଂ ଅନେକ ଦ୍ରବ୍ୟର କାରବାର ମଧ୍ୟ ମାନ୍ଦା ପଡ଼ିଗଲା। ଏପରି କି ବିଭିନ୍ନ ସ୍ଥାନର ଦୁର୍ଗାମେଢ଼ମାନଙ୍କରେ ଅଷ୍ଟଭୁଜା ଅଷ୍ଟପ୍ରହରଣ ଧାରିଣୀ ଦେବୀ ଭକ୍ତମାନଙ୍କୁ ଦର୍ଶନ ଦେବା ଲାଗି ଚାରିଦିନ ଚାରିରାତି ଆଖି ମେଲା କରି ଗୋଟିଏ ଭଙ୍ଗୀରେ ଅପେକ୍ଷାମାଣ ହୋଇ ରହିଥିଲେ ବି, ବର୍ଷା ଯୋଗୁଁ ସେ ସବୁ ସ୍ଥଳରେ ଲୋକଭିଡ଼ ଆଶାନୁରୂପ ହୋଇ ନଥିଲା। କିନ୍ତୁ ଶାଢ଼ି ବଜାରରେ ଭିଡ଼ ଆଦୌ କମ୍ ନଥିଲା। ଝଡ଼ ବର୍ଷା, ତୋଫାନ, ଭୂମିକମ୍ପ, ଦୁର୍ଭିକ୍ଷ ଯାହା ପଡୁ ପଛକେ—ଶାଢ଼ୀ ଦୋକାନ ଜନାରଣ୍ୟ ହୋଇ ରହିବ ଇ ରହିବ।

କିନ୍ତୁ ବହି ଦୋକାନ ଓ ପୂଜାସଂଖ୍ୟା ପତ୍ରିକା ବିକାଳିମାନେ ଶୂନ୍ୟ ମନରେ ହାତ ଟେକି ବସିଥିଲେ ଏବଂ ଶାଢ଼ୀ ଦୋକାନର ଭିଡ଼ ଆଡ଼କୁ ଈର୍ଷା ରୋଷ ଓ ବିଷାଦଲୋଚନରେ ଚାହିଁ ରହିଥିଲେ। ପୂଜା ବିଶେଷାଙ୍କ ପତ୍ରିକା ବିକ୍ରେତାମାନେ ସମସ୍ୱରରେ ମତେ କହିଲେ ଯେ—ଆଜ୍ଞା ! ପୂଜା ପରେ ଏଇ ସବୁ ସୁନ୍ଦର ପତ୍ରିକାଗୁଡ଼ିକୁ ସେର ଦଣ୍ଡୀରେ ବିକ୍ରି କରିବାକୁ ବାଧ୍ୟ ହେବୁ। ଏବଂ ଏଗୁଡ଼ିକ କାଗଜଠୋଲା ହୋଇ ବ୍ୟବହୃତ ହେବ। କେହି ପତ୍ରିକା କିଣୁ ନାହାନ୍ତି, କି ଏଣିକି ଚାହୁଁ ନାହାନ୍ତି ମଧ୍ୟ। ସବୁ ଓଡ଼ିଆଣୀ ଶାଢ଼ି ନିଶାରେ ପାଗଳିନୀ, ଉନ୍ମାଦିନୀ। କେହି ଘରକୁ ପୂଜାସଂଖ୍ୟା ପତ୍ରିକାଟିଏ ଚାରି ପାଞ୍ଚଟଙ୍କା ଦେଇ କିଣି ନେଉ ନାହିଁ। ଏପରି କି କଲେଜ ପଢ଼ୁଆ ଝିଅମାନେ ବି ପତ୍ରିକା ଦୋକାନ ଆଡ଼କୁ ଦୈବାତ୍ ବି ଚାହୁଁ ନାହାନ୍ତି। ସମସ୍ତେ ସମ୍ମୋହିତା ହେଲା ପରି ଆଉ କୁଆଡ଼କୁ ନ ଚାହିଁ ସେହି ଶାଢ଼ି ଦୋକାନ ଆଡ଼କୁ ମୁହାଁଇଛନ୍ତି।

ସତକଥା। ଗତ କେତେ ବର୍ଷ ହେଲା—ଲକ୍ଷ୍ୟ କରାଯାଉଛି ଯେ, ଆମର ଉତ୍କଳିନୀ ରମଣୀଗଣ ଖୁବ୍ ଶାଢ଼ି-ସଚେତନ ହୋଇ ଉଠିଛନ୍ତି। ଏବଂ ପ୍ରାୟ ସମସ୍ତଙ୍କର ମନରେ ଗୋଟିଏ ଧାରଣା ସୃଷ୍ଟି ହୋଇଛି ଯେ ଏହିଭଳି ବିଚିତ୍ର ଓ ମୂଲ୍ୟବାନ ଶାଢ଼ିମାନ ନ ପିନ୍ଧିଲେ ସେମାନେ କାହାର ଦୃଷ୍ଟି ଆକର୍ଷଣ କରି ପାରିବେ ନାହିଁ। ଆଧୁନିକା ଓଡ଼ିଆଣୀମାନଙ୍କ ଧାରଣ ହେଲା—ଏଇ ରଙ୍ଗବେରଙ୍ଗର ବିଚିତ୍ର ଶାଢ଼ିମାନ ପିନ୍ଧିଲେ ଓ କନ୍ୟାମାନଙ୍କୁ ପିନ୍ଧାଇଲେ ତାଙ୍କର ଜାତି-ମର୍ଯ୍ୟାଦା ବଜାୟ ରହିବ। ମୁଁ ବହୁ ପଦସ୍ଥ ଉଚ୍ଚପଦସ୍ଥ ଓ ସାଧାରଣ ଗୃହସ୍ଥମାନଙ୍କ ଘରକୁ ଯାଇ ଓ ପରିସଂଖ୍ୟାନ କରି ଦେଖିଛି ଯେ, ସମସ୍ତଙ୍କ ଘରେ କନ୍ୟା ଓ ମାତାମାନେ ଏବେ ଭାରି ଶାଢ଼ି-ସଚେତନ ହୋଇ ଉଠିଛନ୍ତି। ଏବଂ ଶିକ୍ଷିତା ଓ ଉଚ୍ଚଶିକ୍ଷିତା ସମସ୍ତେ ଦେଖା ହେଲେ ଏଇ ଶାଢ଼ି ଉପରେ ଇ ବହୁ ସମୟ ଆଲୋଚନା କରନ୍ତି। ସେମାନଙ୍କୁ ଆଉ କିଛି ଜଣା ନଥାଏ। ସାହିତ୍ୟ, ସଙ୍ଗୀତ, କଳା, ସଂସ୍କୃତ ସମ୍ବନ୍ଧେ ଶତକଡ଼ା ଅନେଶୋତ ଶିକ୍ଷିତା ଓଡ଼ିଆଣୀ ଅତ୍ୟନ୍ତ ଅଜ୍ଞ। ସେମାନଙ୍କ କଥାବାର୍ତ୍ତା ସ୍ତରେ, ସ୍ୱର ମର୍ମ ଓ ବିଷୟବସ୍ତୁ ପ୍ରଭୃତି ଏଡ଼େ ତୁଚ୍ଛାତିତୁଚ୍ଛ ଯେ, ଜଣେ ତନ୍ଦ୍ରୂପା ଓଡ଼ିଆଣୀ ଯେଡ଼େ

ରୂପ ଲାବଣ୍ୟବତୀ ହୋଇଥାନ୍ତୁ ପଛକେ ଏବଂ ଯେତେ ଛଇଛଟକରେ କେଶସଜ୍ଜା କରିଥାନ୍ତୁ ପଛକେ, ଏବଂ ସର୍ବୋପରି ଯେତେ ବିଚିତ୍ର ରଙ୍ଗ ଓ ଡିଜାଇନର ଯେତେ ଦାମିକା ଶାଢ଼ି ପିନ୍ଧିଥାନ୍ତୁ ପଛକେ, ରୂପଲାବଣ୍ୟର ସମସ୍ତ ଲୋଭ ବା ଆସକ୍ତି ସତ୍ତ୍ୱେ, ଜଣେ ସଂସ୍କୃତିବନ୍ତ ରସଗ୍ରାହୀ ପୁରୁଷ ତାଙ୍କ ସଙ୍ଗେ ମାତ୍ର ପାଞ୍ଚଟି ମିନିଟି ବସି କଥା କହିଲେ, କ୍ଳାନ୍ତ (ବୋର୍) ହୋଇ ପଡ଼ିବ।

ପୂଜା ଛୁଟି ପରେ ମୋର ଛଅ ସାତ ଜଣ ସାଧାରଣ ଓ ଅସାଧାରଣ ଭାବେ ରୂପଲାବଣ୍ୟବତୀ, ଶିକ୍ଷିତା ଓ ଉଚ୍ଚଶିକ୍ଷିତା ଯୁବତୀ ଓ ମଧ୍ୟବୟସ୍କା ସଂଭ୍ରାନ୍ତ ଓ ମଧ୍ୟବିତ୍ତ ଘରର ରମଣୀମାନଙ୍କ ସଙ୍ଗେ ଦେଖା ହୋଇଛି ଓ ଆଳାପ ହୋଇଛି। ସେମାନଙ୍କର ମୁହଁରୁ ଢେରଢେର ଏଣୁ ତେଣୁ କଥା ଶୁଣିଛି। ମାତ୍ର କୌଣସି ପୂଜାସଂଖ୍ୟା ପତ୍ରିକା ସମ୍ବନ୍ଧେ ବା କୌଣସି ପ୍ରିୟ ନାମଜାଦା ଲେଖକର ଗଳ୍ପଟିଏ କବିତାଟିଏ କି ରମ୍ୟରଚନାଟିଏ ବିଷୟରେ ପଦୁଟିଏ ହେଲେ ମଧ୍ୟ ଶୁଣିବାକୁ ପାଇ ନାହିଁ। ତେଣୁ ସେମାନଙ୍କ ସଙ୍ଗେ ଅଧିକ ସମୟ କାଟିବାର ବହୁ ଆଗ୍ରହ ସତ୍ତ୍ୱେ, ଅତ୍ୟନ୍ତ ବିରକ୍ତିରେ ମୁଁ ସେମାନଙ୍କ ନୀରସ ସଙ୍ଗ ଅଚିରେ ପରିତ୍ୟାଗ କରି କିଛି ସମୟ ଶିବ ମନ୍ଦିରରେ ଓ ଅନ୍ୟ ବଳକା ସମୟତକ ଏକୁଟିଆ ନଈକୂଳରେ ଯାଇ ବସି ସୂର୍ଯ୍ୟାସ୍ତ ଦେଖିଛି ଏବଂ ତିନିଥର ମଶାଣୀରେ ଯାଇ ମଧ୍ୟ ବସିଛି।

ଆମର ଏଇ ଆଧୁନିକା ଓଡ଼ିଆଣୀମାନଙ୍କୁ କିଏ କିପରି ବୁଝାଇ ଦେବ ଯେ, ସେମାନଙ୍କୁ ଅନ୍ୟମାନେ ଅର୍ଥାତ ପୁରୁଷମାନେ କେବଳ ଆଖିରେ ଦେଖନ୍ତି ନାହିଁ—କାନରେ ଶୁଣନ୍ତି ଓ ମନରେ ବି ଘେନନ୍ତି ବୋଲି? ଶାଢ଼ି ଗହଣା ଓ କେଶସଜ୍ଜାଦି ବ୍ୟାପାର ମଧ୍ୟ ଏତେ ବାହ୍ୟ ଯେ ଦଶଟି ସେକେଣ୍ଡରୁ ବି ଆଖି ବେଶିବେଳ ତା'ଉପରେ ଲାଖେ ନାହିଁ। କିନ୍ତୁ ଏହା ବୋଲି ଆମେ କହୁ ନାହୁଁ ଯେ ଆମର ଏଇ ବୃକ୍ଷଲତାହୀନ ମରୁଜନପଥ ଓ ରାଜପଥମାନଙ୍କ ଉପରେ ବିଚିତ୍ର ବେଶମଂଜୁଳା ରୂପଲାବଣ୍ୟଦୃପ୍ତା ହଂସ ଗମନା ଲଳନାଗଣ ସେମାନଙ୍କର ପଦକମଳ ସଂଚାରିତ କରି ଆମର ସହର ବଜାରର ରାଜନୀତିକ ଓ ବାଣିଜ୍ୟିକ ପରିବେଶକୁ ସାମାନ୍ୟ ମାତ୍ରାରେ ହେଲେ ବି ରମଣୀୟ କରିବେ ନାହିଁ ବୋଲି। ଆମର ସାମାନ୍ୟ ଆଶା କରିବା କଥା ହେଲା—ଆମେ ଆମର ବିଚିତ୍ର ବେଶମଂଜୁଳା ଉତ୍କଳବାଳାମାନଙ୍କ ହାତରେ ଖଣ୍ଡିଏ ହେଲେ ବି ପୂଜାସଂଖ୍ୟା ଓଡ଼ିଆ ପତ୍ରିକା ଦେଖିବାକୁ ଚାହିଁଥିଲୁ।
ଏପରି ଆଶା କରିବା କଣ ଉଚିତ ନୁହେଁ?



# ଦୁର୍ଗାପୂଜା ପରେ....

୨୪।୮।୮୦

ମା', ଜଗଜ୍ଜନନୀ, ଦୁର୍ଗତିନାଶିନୀ, ଅସୁରବିନାଶିନୀ ଦେବୀ ଦୁର୍ଗା ଏ ଧରାପୃଷ୍ଠରେ ମୃଣ୍ମୟ ମୂର୍ତ୍ତିରେ ଆବିର୍ଭାବ ହେବା ପୂର୍ବରୁ ସାରାଓଡ଼ିଶା ଭୀଷଣ ଖରାତାପରେ ଜଳୁଥିଲା । ବନ୍ୟାବିପ୍ଲାତଜନିତ କ୍ଷୟକ୍ଷତିରୁ ଲୋକଙ୍କୁ ଉଠାଇବାର ଚେଷ୍ଟା ଚାଲି ଥିବାବେଳେ, ଏଣେ ପୁଣି ମରୁଡ଼ିର କରାଳ ବିଭୀଷିକା ଲୋକଙ୍କୁ ଆତଙ୍କ ଗ୍ରସ୍ତ କରି ଦେଇଥିଲା । ତା'ଭିତରେ ପୁଣି ସରକାର ଓ ରାଜ୍ୟବାସୀ ଦୁର୍ଗାପୂଜା ବେଳେ କୌଣସି ପ୍ରକାର ସାଂପ୍ରଦାୟିକ ଦଙ୍ଗାହଙ୍ଗାମାର ଆଶଙ୍କା ମଧ୍ୟ କରୁଥିଲେ ଏବଂ ପଶ୍ଚିମ ଓଡ଼ିଶାରେ ମଧ୍ୟ ନାନାଦି କାରଣରୁ ଦୁଇଗୋଷ୍ଠୀର ଲୋକଙ୍କ ଭିତରେ କିଛିଦିନ ଧରି ଘୋର ଅଶାନ୍ତି ଓ ଉଦ୍‌ବେଗ ଲାଗି ରହିଥିଲା ଏବଂ ସବୁଠାରୁ ଶୋଚନୀୟ ଏବଂ ମର୍ମନ୍ତୁଦ ଘଟଣାଟି ଥିଲା ବିରିଡ଼ି ଗ୍ରାମରେ ଘଟିଥିବା ସେହି ଅମାନୁଷିକ ଓ ନୃଶଂସ ବୀଭତ୍ସ ଛବିରାଣୀ ହତ୍ୟାକାଣ୍ଡ ବ୍ୟାପାରଟି । ମୋଟ ଉପରେ ଦଶହରା ପୂର୍ବ ସମୟଟି ଓଡ଼ିଶା ପକ୍ଷରେ ଥିଲା ଅତ୍ୟନ୍ତ ଦୁର୍ଘଟଣାମୟ ଏବଂ ଅଶ୍ୱସ୍ତିକର । କିନ୍ତୁ କରୁଣାମୟୀ ମା' ଦୁର୍ଗାଙ୍କର ଆଗମନୀର ଅବ୍ୟବହିତ ପୂର୍ବରୁ ଆକାଶ ଘୋର ମେଘାଚ୍ଛନ୍ନ ହୋଇ ସାରା ରାଜ୍ୟରେ ବେଶ୍ ବର୍ଷା ଆରମ୍ଭ ହୋଇଗଲା ଏବଂ ଏ ପର୍ଯ୍ୟନ୍ତ ମଧ୍ୟ ବର୍ଷାର ବିରାମ ନାହିଁ । ଫଳରେ ଚାଷୀକୁଳ ଆଶ୍ୱସ୍ତ ହୋଇଛନ୍ତି । ଅବଶ୍ୟ ସହର ବଜାରମାନଙ୍କରେ ଦେବୀପୂଜା ସମୟରେ ବର୍ଷା ଯୋଗୁଁ ଜନସମାଗମ ନହେବା ଫଳରେ ବିକାକିଣା ହୋଇ ପାରିନଥିଲା ଏବଂ ତଦ୍ୱାରା ବ୍ୟବସାୟୀମାନେ ବିଶେଷ ଲାଭବାନ ହୋଇ ପାରିଲେ ନାହିଁ । ତେଣେ ପୁଣି ପଶ୍ଚିମ ଓଡ଼ିଶାରେ ମଧ୍ୟ ସାଧାରଣ ଭାବେ ଶାନ୍ତି ଶୃଙ୍ଖଳା ଫେରିଆସିଛି ଏବଂ ସବୁଠାରୁ ଆନନ୍ଦ ଓ ଆଶ୍ୱାସନାର କଥା ହେଲା, ଦେବୀପୂଜାବେଳେ ବିଶେଷ ବିଶେଷ ସ୍ଥାନମାନଙ୍କରେ ଯେଉଁ ପ୍ରକାର ସାଂପ୍ରଦାୟିକ ଗଣ୍ଡଗୋଳର ଆଶଙ୍କା କରାଯାଉଥିଲା–ତା' ପରିବର୍ତ୍ତେ ସବୁ ସଂପ୍ରଦାୟ ଭିତରେ ଗୋଟିଏ ସାମାଜିକ ବୁଝାମଣା ଓ ମୈତ୍ରୀ ଭାବରେ ସୃଷ୍ଟିହେବା ଫଳରେ ଦେବୀପୂଜା ସର୍ବତ୍ର ନିର୍ବିଘ୍ନରେ ସଦ୍‌ଭାବର ସହିତ ସମାପନ ହୋଇଯାଇଛି ଏବଂ ଶେଷୋକ୍ତ ନୃଶଂସ ଘଟଣାଟିରେ ସରକାର ଦୋଷୀମାନଙ୍କୁ ଧରି ସେମାନଙ୍କ ପ୍ରତି ଆଇନ ଅନୁସାରେ

ବିଚାର ଓ ଦଣ୍ଡବିଧାନ ଲାଗି ବିହିତ ବ୍ୟବସ୍ଥା ଗ୍ରହଣ କରିଛନ୍ତି—ଏବଂ ତାହା ଏବେ ମଧ୍ୟ ଚାଲୁ ରହିଛି।

ଜରୁରୀ ପରିସ୍ଥିତିର ଅବସାନ ପରେ ଏବଂ ଜନତା ଲୋକଦଳ ଶାସନକାଳରେ ସାରା ଦେଶରେ ଯେଉଁ ତଥାକଥିତ ଗଣତାନ୍ତ୍ରିକ ସ୍ୱାଧୀନତା ଅଧିକାର ଲୋକଙ୍କୁ ମିଳିଗଲା ବୋଲି ଧାରଣା ଦିଆଗଲା—ସେତିକିବେଳୁ ସାରା ଦେଶରେ ଅସାମାଜିକ ଲୋକଙ୍କ କ୍ରିୟାକାଣ୍ଡ ଆଶାତୀତ ଭାବରେ ବଢ଼ିଯାଇଛି। ଲୋକମାନଙ୍କ ଭିତରେ ତଥାକଥିତ ସ୍ୱାଧୀନତା ଭାବକୁ ଖେଳାଇଦେଇ ଜନତା-ଲୋକଦଳର ବୃହତ୍ ନେତାଙ୍କଠାରୁ ଆରମ୍ଭ କରି କୁଜୀ ନେତା ଓ ଯୁବ ବା କିଶୋର ନେତାଙ୍କ ସମେତ ପ୍ରାୟ ସମସ୍ତେ ଅତି ଅଶୋଭନୀୟ ଭାବେ ପରସ୍ପର ସହିତ ଝଗଡ଼ା ଝାଟିରେ ମାତି ରହିଲେ ଏବଂ ଧନ ଓ କ୍ଷମତା ଅର୍ଜନ ଲାଗି ଅତି ବୀଭତ୍ସ ଓ କୁଟିଳ ପନ୍ଥାମାନ ଅନୁସରଣ କରିବାକୁ ଲାଗିଲେ। ତା'ସଙ୍ଗେ ସଙ୍ଗେ ମଧ୍ୟ ରାଜନୈତିକ ପ୍ରତିହିଂସାରେ ଅନ୍ୟ ଦଳଭୁକ୍ତ ନେତାମାନଙ୍କ ବିରୋଧରେ ଅତି ଅଶୋଭନୀୟ କର୍ମପନ୍ଥାମାନ ଗ୍ରହଣ କଲେ। ସରକାରୀ ଓ ବେସରକାରୀ କ୍ଷେତ୍ରରେ ଏଇ ତଥାକଥିତ ଗଣତାନ୍ତ୍ରିକ ସ୍ୱାଧୀନତାର ହାୱା ଏତେଦୂର ପ୍ରବାହିତ ହେଲା ଯେ, ଦେଶରେ ଆଉ ବିଶେଷ ଉନ୍ନତ ମୂଲ୍ୟବୋଧ ପ୍ରତି କାହାର ଆସ୍ଥା ରହିଲା ନାହିଁ କିମ୍ବା ଶାସନଠାରୁ ସାଧାରଣ କ୍ଷେତ୍ର ପର୍ଯ୍ୟନ୍ତ କୌଣସି ସ୍ଥାନରେ ଶୃଙ୍ଖଳା ବୋଲି କିଛି ରହିଲା ନାହିଁ। ଫଳରେ ଅସାମାଜିକ ଲୋକମାନଙ୍କର ସଂଖ୍ୟା ଓ କ୍ରିୟାକାଣ୍ଡ ବଢ଼ି ଚାଲିଲା ଏବଂ ଏ ପର୍ଯ୍ୟନ୍ତ ତାହା ବଢ଼ି ବଢ଼ି ଚାଲିଛି। ଟ୍ରେନ୍, ବସ୍, ହାସପାତାଳଠାରୁ ଆରମ୍ଭ କରି ସର୍ବତ୍ର ଅସାମାଜିକ ଲୋକଙ୍କ ସଂଖ୍ୟା ଏବଂ କାର୍ଯ୍ୟକଳାପ ବୃଦ୍ଧିପାଇ ଚାଲିଛି। ଶ୍ରୀମତୀ ଗାନ୍ଧୀଙ୍କ ଦଳ କେନ୍ଦ୍ର ଓ ଅନ୍ୟାନ୍ୟ ବହୁ ରାଜ୍ୟରେ ଶାସନ କ୍ଷମତାକୁ ଆସିଥିଲେ ମଧ୍ୟ ଏ ପର୍ଯ୍ୟନ୍ତ ସାମୂହିକ ଭାବେ ଏହି ପରିସ୍ଥିତିର ସମାଧାନ କରିବାକୁ ସକ୍ଷମ ହୋଇ ନାହାନ୍ତି।

ଦେଶରେ ଏହି ବୀଭତ୍ସ କ୍ରିୟାକାଣ୍ଡ ଦେଖି ମନେ ହେଉଛି ମତ୍ସରୀଭାବ ଓ ଜନ୍ତୁପଣିଆ ଆମ ଲୋକଙ୍କ ଭିତରେ ମାତ୍ରାତିରିକ୍ତ ଭାବେ ବଢ଼ିଗଲାଣି ଏବଂ ଏହି ପୈଶାଚିକ ମାତ୍ସର୍ଯ୍ୟ ଭାବ ସହରମାନଙ୍କୁ ଟପି ଗାଁ ଗଣ୍ଡାକୁ ମଧ୍ୟ ପ୍ରବଳ ବେଗରେ ବ୍ୟାପିଗଲାଣି। ଯେଉଁସବୁ ଲୋକେ ଏଭଳି ନୃଶଂସ କାଣ୍ଡମାନ କରୁଛନ୍ତି, ସେମାନଙ୍କର ମନ-ହୃଦୟ ପଶୁପକ୍ଷୀଙ୍କଠାରୁ, ଏପରିକି ବାଘ, ଭାଲୁ, ଗଧିଆଙ୍କଠାରୁ ଆହୁରି ହିଂସ୍ର ଓ ଭୟଙ୍କର। ବଣର ପଶୁମାନେ ଖାଦ୍ୟ ଲାଗି କେତେକାଂଶରେ ହିଂସ୍ର ହୋଇ ପାରନ୍ତି, ମାତ୍ର ସେମାନଙ୍କର ଏଭଳି ମତ୍ସରୀଭାବ ନାହିଁ। ସେମାନେ ସମ୍ମିଳିତ ଭାବେ, ଷଡ଼ଯନ୍ତ୍ର କରି, ବୁଦ୍ଧି ଖଟାଇ, ଏତେ ମାତ୍ସର୍ଯ୍ୟପୂର୍ଣ୍ଣ ଇଚ୍ଛାଶକ୍ତି ପ୍ରୟୋଗ କରି ଏଭଳି ବୀଭତ୍ସକ୍ରିୟା କେବେ କରି ପାରିବେ ନାହିଁ। ନୃଶଂସ ମତ୍ସରୀଭାବ ବୃଦ୍ଧି ପାଇଲେ

ପ୍ରାଣୀ କେତେଦୂର ନିଷ୍ଠୁର, ନିର୍ମମ ଓ ପାଷାଣ୍ଡ ହୋଇପାରେ, ତାର ଏକମାତ୍ର ଦୃଷ୍ଟାନ୍ତ ସେହି ମଣିଷଜାତି ହିଁ ଦେଇଥାଏ ।

ଆମ ଦେଶରେ ଏଇ ନୃଶଂସ ଅଜ୍ଞାନ ଗୁଣ୍ଡାଶ୍ରେଣୀର ଲୋକଙ୍କ ସଂଖ୍ୟା ଆଶାତୀତ ଭାବେ ବଢ଼ି ଚାଲିଥିବାର କାରଣ ହେଲା—ଦେଶରେ ଅନିୟନ୍ତ୍ରିତ ଲୋକସଂଖ୍ୟା ବୃଦ୍ଧି । ପ୍ରେମସମ୍ପର୍କହୀନ ଏବଂ କେବଳ ଅଚେତନ ଯୌନକ୍ରିୟାରୁ ଉଦ୍‌ଭୂତ ହୋଇ ଓ ପ୍ରାକୃତିକ ନିୟମରେ ଛାଏଁ ଛାଏଁ ଦୈହିକଭାବେ ବୃଦ୍ଧିପ୍ରାପ୍ତ ହୋଇ, କୌଣସି ପ୍ରକାର ମାନସିକ ଶିକ୍ଷାଦୀକ୍ଷା ନ ପାଇ, ଏଣେତେଣେ ଘୂରି ବୁଲୁଥିବା ଲୋକଙ୍କ ସଂଖ୍ୟା ଆଶାତୀତ ଭାବେ ବଢ଼ିଚାଲିଛି । ଏହି ଲୋକମାନେ କଣ କରିବେ, କିପରି ବଞ୍ଚିବେ, ସେ ଦିଗରେ କୌଣସି ସାମାଜିକ ବା ରାଷ୍ଟ୍ରୀୟ ବ୍ୟବସ୍ଥା ବିଧବଦ୍ଧ ଭାବେ ଅଦ୍ୟାବଧି ହେଲାନାହିଁ । ଅନ୍ୟପକ୍ଷରେ ଆମର ରାଜନୀତିକ ନେତାମାନେ ସେମାନଙ୍କୁ କିଛି ଟଙ୍କାପଇସା ଦେଇ ନିଜ ହାତରେ ରଖିଛନ୍ତି ଓ ନିଜ କାମରେ ଖଟାଉଛନ୍ତି । ଏବଂ ଏହି ହୁଣ୍ଡାଗୁଣ୍ଡା ଉଦବାର୍ଯ୍ୟ ଲୋକଙ୍କ ଦ୍ୱାରା ଆମ ରାଜନୈତିକ ନେତାମାନେ ନିଜ ନିଜ ଅଞ୍ଚଳକୁ ଅକ୍ତିଆରରେ ରଖିଛନ୍ତି ଏବଂ ଆମର ଅଧିକାଂଶ ରାଜନୀତିକ ନେତାମାନଙ୍କର ଯୋଉ ପ୍ରକୃତି, ଯୋଉ ଆଦର୍ଶ, ରୀତିନୀତି ଓ ଯୋଉ ଗତିବୃତ୍ତି ତାହାହିଁ ଏଇସବୁ ହୁଣ୍ଡାଗୁଣ୍ଡା ମନୁଷ୍ୟତ୍ୱହୀନ ନୃଶଂସ ଲୋକଙ୍କୁ ସେମାନଙ୍କୁ ଅମାର୍ଜିତ ପ୍ରକୃତି ଅନୁରୂପ କ୍ରିୟାକାଣ୍ଡ ସୃଷ୍ଟି କରିବାକୁ ଯଥେଷ୍ଟ ପ୍ରରୋଚନା ଓ ସୁଯୋଗ ଦେଇଛି ଏବଂ ସବୁଠାରୁ ଅନୁଶୋଚନାର କଥା ହେଲା—ଦେଶର ସାଧୁ, ସଚ୍ଚୋଟ, ନିରୀହ ଲୋକେ ଏହି ଗୁଣ୍ଡାଶ୍ରେଣୀର ଲୋକଙ୍କ ଉତ୍ପାତରେ ଅସ୍ଥିର ହୋଇ ଗଲେଣି ।

ନାରୀଧର୍ଷଣ ଓ ହତ୍ୟାଦି ଘଟଣାରେ ଯେଉଁମାନେ ସଂପୃକ୍ତ ସେମାନଙ୍କୁ କୌଣସି ନିର୍ଦ୍ଦିଷ୍ଟ ରାଜନୀତିକ ଦଳର ଲୋକ ବୋଲି କହିବା ଭୁଲ ହେବ । ସେମାନଙ୍କର କୌଣସ ରାଜନୀତିକ ମତାଦର୍ଶ ନ ଥାଏ, ଅଥବା ସେମାନେ ବିଶେଷ ରାଜନୀତିକ ନେତାଙ୍କର ମଧ ଭକ୍ତ ବା ଅନୁରକ୍ତ ବା ଏପରି କି ସାଇକୋଫାଣ୍ଟ ମଧ ନୁହନ୍ତି । ସେମାନେ ସବୁ ଦଳର ନେତାଙ୍କ ଛତ୍ରଛାୟା ତଳେ ଥା'ନ୍ତି । ଦଶବାର ବର୍ଷ ତଳେ ଭୁବନେଶ୍ୱର ଖଣ୍ଡଗିରିଠାରେ ପୀଲୁବେନ ନାମ୍ନୀ ଜଣେ ମହାରାଷ୍ଟ୍ରୀୟା ସ୍ୱେଚ୍ଛାସେବୀଙ୍କ ଉପରେ ଯେପରି ପାଶବିକ ଅତ୍ୟାଚାର କରାଯାଇ ତାଙ୍କୁ ହତ୍ୟାକରି କେଉଁଆଡ଼େ ଲୁଚାଇ ଦିଆଗଲା ଏବଂ ସେତେବେଳେ ଏ ଘଟଣା ସହ ଯେଉଁମାନେ ପରୋକ୍ଷ ବା ପ୍ରତ୍ୟକ୍ଷ ଭାବେ ସଂପୃକ୍ତ ଥିଲେ ଏବଂ ସେତେବେଳେ ସରକାରୀ କ୍ଷମତାରେ ଥିଲେ—ସେମାନେ ବର୍ତ୍ତମାନ ଛବିରାଣୀ ହତ୍ୟାବେଳକୁ ହୁଏ ତ ବିରୋଧୀ ଦଳରେ ଅଛନ୍ତି ଏବଂ ଏ ଘଟଣାଟିରୁ ରାଜନୈତିକ ସୁଯୋଗ ନେବାଲାଗି ଉପସ୍ଥିତ ସରକା[illegible] ବିରୋଧରେ ହଇହଲ୍ଲା ଆରମ୍ଭ କରିଦେଇଛନ୍ତି । ହା'ରେ ବିଧାତା !!

ଏସବୁ ଦେଖିଲେ ମନେହେଉଛି, ଏଇ ରାଜନୀତିକ ଲୋକେ ଯଦି ଆପଣାର ଚିତ୍ତବୃତ୍ତି ଓ ଗତିବୃତ୍ତି ପରିବର୍ତ୍ତନ ନ କରନ୍ତି—ତେବେ ଏ ଦେଶର ଭବିଷ୍ୟତ ପାଇଁ ଲୋକେ ଆଉ ସେମାନଙ୍କୁ କ୍ଷମାଦେବେ ନାହିଁ। ଏଇ କ୍ଷମତାଲୋଭୀ ଅସୁରଭାବାପନ୍ନ ଅହଂ ସର୍ବସ୍ୱ ରାଜନୀତିକ ଲୋକମାନଙ୍କୁ କିଏ ବୁଝାଇ ପାରିବ ଯେ, ଏସବୁ ମିଥ୍ୟାଚାର ଆଉ ଚଳିବ ନାହିଁ? ଦେଶରେ ବା ରାଜ୍ୟରେ ଯେଉଁସବୁ ଅନାଚାର, ଦୁର୍ଘଟଣା ଓ ବୀଭତ୍ସ ବ୍ୟଭିଚାରାଦି କାଣ୍ଡକାରଖାନା ଘଟି ଯାଉଛି – ସେଗୁଡ଼ିକ ପ୍ରତି ଯଦି ସତକୁ ସତ ଏଇସବୁ ରାଜନୀତିକ ଲୋକମାନଙ୍କ ମନରେ ବ୍ୟାକୁଳତା ଓ ଉଦ୍‌ବିଗ୍ନତା ସୃଷ୍ଟି ହୁଅନ୍ତା– ତେବେ ସମ୍ପୂର୍ଣ୍ଣଭାବେ ନ ହେଲେ ବି ସମାଜରେ ଏଗୁଡ଼ିକର ପରିମାଣ ନିଶ୍ଚୟ କମିଯାଆନ୍ତା। କିନ୍ତୁ ପ୍ରକୃତ କଥାଟି ହେଲା ଏହି ନୃଶଂସତା, ଏହି ବୀଭତ୍ସ ମତ୍ସରୀ ଭାବଟିର ମୂଳ ରହିଛି ଆମର ନେତାମାନଙ୍କ ମନ ଭିତରେ ଏବଂ କେହି ତା' କବଳରୁ ରକ୍ଷା ପାଇବାକୁ ଚାହାନ୍ତି ନାହିଁ। ଅବଶ୍ୟ ଏଠି କେବଳ ରାଜନୀତିକନେତାମାନଙ୍କୁ ଦାୟୀ କରି ସମସ୍ୟାଟିକୁ ସେଇମାନଙ୍କ ମୁଣ୍ଡ ଉପରେ ଲଦିଦେଇ ଆମେ ସମସ୍ତେ ଖସି ଯାଇପାରିବା ନାହିଁ। ସମାଜକୁ ଯେଉଁମାନେ ନାନାପ୍ରକାରରେ ନାନାଦିଗରୁ ପରିଚାଳନା କରିବାର ଦାୟିତ୍ୱ ନେଇଛନ୍ତି ଯଥା ଶିକ୍ଷକ, ଅଧ୍ୟାପକ, ପ୍ରଶାସନିକ ଅଫିସର, ସମ୍ବାଦିକ ଓ ଅନ୍ୟାନ୍ୟ ବୁଦ୍ଧିଜୀବୀ ସଂପ୍ରଦାୟ – ଏମାନେ ସମସ୍ତେ ଯଦି ଆନ୍ତରିକ ଭାବେ ନିଷ୍ଠାପର ଭାବେ ନିଜର ଅବଚେତନା ଭିତରୁ ଓ ଦେଶର ଅବଚେତନା ଭିତରୁ ଏହି ଅମାନୁଷିକ ପୈଶାଚିକ ମତ୍ସରୀ ଭାବଟିକୁ ଦୂର କରିବା ଲାଗି ସଚେତନ ଭାବେ ପ୍ରଚେଷ୍ଟା ଶୀଳ ନୁହନ୍ତି, ତେବେ କେହି ଏହାର କବଳରୁ ରକ୍ଷାପାଇପାରିବେ ନାହିଁ।

ମହିଷମର୍ଦ୍ଦିନୀ ଦୁର୍ଗାପୂଜା ପରେ ଆସୁଛି – ଖଣ୍ଡାଖର୍ପରଧାରିଣୀ, ଲହଲହ ଜିହ୍ୱାଦୁର୍ମଦା, ସର୍ବଧ୍ୱଂସକାରିଣୀ କରାଳିନୀ ମହାକାଳୀଙ୍କର ପୂଜା। ଆମ୍ଭମାନଙ୍କ ଅବଚେତନାରେ ଅବାଧ ଓ ଦୁଃସାଧ, ଅନମନୀୟ ଓ ଅଦିବ୍ୟ ଯେତେ ଯାହା କିଛି ଦୁଷ୍ଟ ଶକ୍ତିର ଭାବମାନ ରହିଛି, ମହାକାଳୀଙ୍କର ଖଡ୍‌ଗ ଖର୍ପର ନିର୍ମମ ଆଘାତ ତା' ଉପରେ ପଡ଼ିବଇ ପଡ଼ିବ। ମହାକାଳୀଙ୍କର ରୋଷ ପଛରେ ରହିଛି ମହାକାଳି ରୁଦ୍ରଙ୍କର ସମ୍ପୂର୍ଣ୍ଣ ସମର୍ଥନ। ଯୁଗ ପରିବର୍ତ୍ତନ ଲାଗି ଏହା ହିଁ ଅନୁକୂଳ ସମୟ।



# ସାବଧାନ ! ପୁଣି ସତୀଦାହର ସ୍ଲୋଗାନ୍ ??

୧୧/୧୨/୮୨

ବେଳେବେଳେ ଶୁଣାଯାଏ ଯେ ମଲାମଣିଷକୁ କୁଢ଼ରେ ଲଦିବା ବେଳେ ସେ ହଠାତ୍ ବଞ୍ଚି ଉଠେ। ମଲାମଣିଷ ସମାଧି ଭିତରୁ ଉଠି ଆସିବା ଘଟଣା ବି କ୍ୱଚିତ୍ କେବେ ଶୁଣାଯାଇଥାଏ ଏବଂ ତାହା ଗୋଟିଏ ପ୍ରବଚନ ହୋଇଯାଇଛି। ସେମିତି ସବୁ ଧର୍ମ ଓ ସମାଜରେ ଏମିତି କେତେକ ବର୍ବରୋଚିତ ପ୍ରଥା ଥାଏ, ଯାହାକୁ କି ଯଥା ସମୟରେ ଅର୍ଥାତ୍ ସଂସ୍କାର ଯୁଗରେ ରଦ୍ଦ କରାଯାଇ ସମାଧି ଦେଇ ଦିଆଯାଏ ମାତ୍ର ବହୁକାଳ ପରେ ହଠାତ୍ କେତେକ ରହସ୍ୟମୟ କାରଣରୁ ତାହା ପୁଣି ସମାଧି ଭିତରୁ ଜୀଇଁ ଉଠି ପଦାକୁ ବାହାରି ଆସି ସମାଜ ଆଗରେ ଠିଆ ହୋଇଯାଏ ଏବଂ ତାକୁ ଏକ ଚିରନ୍ତନ ସତ୍ୟର ପ୍ରଥା ବୋଲି ଗ୍ରହଣ କରିବାକୁ ମଧ୍ୟ ଦୁର୍ଭାଗ୍ୟବଶତଃ ସେତେବେଳେ କେତେକ ଲୋକ ସମାଜରେ ପ୍ରସ୍ତୁତ ହୋଇ ରହିଥାନ୍ତି। ମୁସଲମାନ ଧର୍ମ ପରିଚାଳିତ ଦେଶମାନଙ୍କର ବର୍ତ୍ତମାନ ସେହିପରି କେତେକ ବହୁ ପୂର୍ବରୁ ସମାଧିସ୍ଥ ପ୍ରଥାମାନଙ୍କୁ କବର ତଳୁ ଉଠାଇ ଆଣି ଜୀବନ୍ୟାସ କରି ତାଙ୍କ ସମାଜରେ ପ୍ରଚଳନ କରିବାକୁ ପ୍ରୟାସ ଚାଲିଛି – ଧର୍ମ ନାମରେ ଦ୍ୱାହି ଦେଇ।

ତାହା ଦେଖାଦେଖି ଆମ ଭାରତବର୍ଷରେ କେତେକ ଧର୍ମାନ୍ଧ ହିନ୍ଦୁ ଅନୁଷ୍ଠାନ ବହୁ କାଳରୁ ଏକ ବର୍ବର ଓ ବୀଭତ୍ସ ପ୍ରଥା, ରୂପେ ପରିତ୍ୟକ୍ତ "ସତୀ ଦାହ" ପ୍ରଥାକୁ ପୁନର୍ବାର ହିନ୍ଦୁ ସମାଜରେ ପ୍ରଚଳିତ କରିବା ପାଇଁ ଏକ ଆନ୍ଦୋଳନ ଆରମ୍ଭ କରି ଦେଲେଣି ଏବଂ ବିଚିତ୍ର କଥା ହେଲା – ସେମାନେ ଏଥିଲାଗି ସରକାରଙ୍କୁ ଏହାର ଆଇନ ମଞ୍ଜୁରୀ ଦେବା ପାଇଁ ବାଧ୍ୟ କରିବାକୁ ବସିଛନ୍ତି।

ଭାରତବର୍ଷ ଏକେ ତ ମାରାତ୍ମକ ଭାବେ ସମସ୍ୟା ବହୁଳ ଦେଶ ଏବଂ ଦିନକୁ ଦିନ ଏ ଦେଶରେ ସମସ୍ୟାର ସମାଧାନ ହେବ କଣ ଏ ଦେଶର ଅନିୟନ୍ତ୍ରିତ ଓ ଅଯତ୍ନବର୍ଦ୍ଧିତ ଜନସଂଖ୍ୟା ଭଳି ନିତ୍ୟନୂତନ ସମସ୍ୟାର ସଂଖ୍ୟା ବଢ଼ି ଚାଲିଛି। ସେଥିରେ ପୁଣି ବହୁ ପୂର୍ବରୁ ସମାଧିସ୍ଥ ହୋଇଥିବା ଓ ପାଶୋର ଯାଇଥିବା ମୃତ ସମସ୍ୟାର କଙ୍କାଳଗୁଡ଼ିକୁ ସମାଧି ଭିତରୁ ଉଠାଇ ଆଣି ତାକୁ ଜୀବନ୍ୟାସ ଦେଇ

ଯେଉଁମାନେ ତାକୁ ଚିରନ୍ତନ ସତ୍ୟ ରୂପେ ପ୍ରତିଷ୍ଠା ଦେବାକୁ ଚାହାନ୍ତି – ସେମାନେ କେବଳ ମୂଢ଼ ନୁହଁନ୍ତି – ଦେଶ ଓ ଜାତି ଲାଗି ମାରାତ୍ମକ। ଏହି ବିମୂଢ଼ ବ୍ୟକ୍ତିମାନଙ୍କୁ ଉନ୍ମାଦ ଓ ପ୍ରମତ୍ତବୋଲି ସ୍ପଷ୍ଟଭାବେ ଘୋଷଣା କରିବା ଉଚିତ। ଏମାନେ ପ୍ରଥମରୁ ମନୁଷ୍ୟର ସର୍ବନିମ୍ନ ଧର୍ମଭାବଟିକୁ ବୁଝନ୍ତି ନାହିଁ। କିନ୍ତୁ ହିନ୍ଦୁ ଧର୍ମ ଭଳି ସୂକ୍ଷ୍ମାତିସୂକ୍ଷ୍ମ ଗୂଢ଼ାତ୍ ଗୂଢ଼ତର ଆଧ୍ୟାତ୍ମତତ୍ତ୍ୱଭିତ୍ତିକ ସନାତନ ଧର୍ମାଦର୍ଶକୁ ବା କିପରି ବୁଝିବେ ?

ଏହି ନିଷ୍ଠୁର ଓ ମୂଢ଼ଚିତ୍ତ ବ୍ୟକ୍ତିମାନଙ୍କର ସତୀଦାହ ସପକ୍ଷରେ ଦୃଢ଼ଯୁକ୍ତି ହେଲା – ସତୀଦାହ ପ୍ରଥା ହିନ୍ଦୁଧର୍ମର ପରମ୍ପରାସମ୍ମତ ବେଦ ଓ ପୁରାଣ ଓ ସଂହିତା ସମ୍ମତ – ତେଣୁ ଏହି ପ୍ରଥାର ପୁନଃପ୍ରଚଳନ ହିନ୍ଦୁଧର୍ମକୁ ଅଧିକ ସତ୍ୟପ୍ରତିଷ୍ଠା ଦେବ। ଏମାନଙ୍କର ଅନ୍ୟ ଯୁକ୍ତିଟି ହେଲା – ହିନ୍ଦୁନାରୀ ପକ୍ଷରେ ତାର ସ୍ୱାମୀ ହେଲା ମୂଳଧର୍ମ ଓ ଇଷ୍ଟଦେବତା ଏବଂ ସ୍ୱାମୀହିଁ ତାର ବଞ୍ଚିବାର ମୂଳ ଉଦ୍ଦେଶ୍ୟ ଓ ଯଥାର୍ଥତା। ସ୍ୱାମୀ ମଲା ପରେ ସତୀ ସ୍ତ୍ରୀର ଆଉ ବଞ୍ଚିବାର କିଛି ଲାଭ ନାହିଁ। କି ଯଥାର୍ଥତା ନାହିଁ। ସତୀତ୍ୱର ପରାକାଷ୍ଠା ବଜାୟ ରହିବ କେବଳ ମୃତସ୍ୱାମୀର ଚିତାଗ୍ନିରେ ଝାସଦେଇ ସ୍ୱାମୀ ସହ ମୃତ୍ୟୁବରଣ କରିବାରେ।

ବେଦ, ପୁରାଣ, ସଂହିତାଦିରେ ସ୍ୱାମୀର ଚିତାଗ୍ନିରେ ସ୍ୱେଚ୍ଛାରେ ଝାସ ଦେଇ ମୃତ୍ୟୁବରଣ କରିବାର ଉଲ୍ଲେଖ ଓ ବହୁ ଉଦାହରଣ ରହିଛି – ଏଥିରେ ସନ୍ଦେହ ନାହିଁ। କିନ୍ତୁ ସେହି ବେଦ, ପୁରାଣ, ସଂହିତାଦିରେ 'ସ୍ତ୍ରୀ'ର ଧର୍ମ ଓ ଭୂମିକା ମର୍ଯ୍ୟାଦା ଓ ଅଧିକାରାଦି ସମ୍ପର୍କରେ କ'ଣ ସବୁ କୁହାଯାଇଛି ସେଗୁଡ଼ିକୁ ଏହି ଧର୍ମାନ୍ଧ ଉନ୍ମାଦ ବ୍ୟକ୍ତିମାନେ ଜାଣିଛନ୍ତି ତ ? ଆଉ ମଧ ସ୍ତ୍ରୀର 'ସତୀତ୍ୱ' ବୋଲି ଯୋଉ ବିଶେଷ ଗୁଣଧର୍ମଟି ହିନ୍ଦୁଧର୍ମ ସମାଜରେ ବିଶେଷ ସମ୍ମାନ ଓ ସମାଜର ଲାଭ କରିଛି—ସେହି 'ସତୀତ୍ୱ' ଶବ୍ଦଟିର ଅର୍ଥ କେତେ ସୂକ୍ଷ୍ମ, କେତେ ଗୂଢ଼ ବ୍ୟାପକ ଓ ଗଭୀର – ତାହା ମଧ ଏହି ଅନ୍ଧ—ଧର୍ମୋନ୍ମାଦମାନେ ବୁଝିଛନ୍ତି କି ? 'ସତୀତ୍ୱ' ଶବ୍ଦଟିର ଏହି ବୃହତ୍ତର ଓ ଗଭୀରତର ଅର୍ଥରେ ଏକପତିଗତପ୍ରାଣା ସୀତା ଯେପରି ସତୀ, ଏକାଧିକ ପତିଙ୍କର ଅନୁରକ୍ତା ଓ ଅନୁଗତା ଅହଲ୍ୟା, ଦ୍ରୌପଦୀ, ତାରା, କୁନ୍ତୀ, ମନ୍ଦୋଦରୀ ଆଦି ପୁରାଣଯୁଗର ବିଶିଷ୍ଟ ମହିଳାମାନେ ତଦ୍ରୂପ ପ୍ରାତଃସ୍ମରଣୀୟା ସତୀ। ସତୀତ୍ୱର ମର୍ମ ତେଣୁ ଏକପତି ବା ଏକାଧିକ ପତି ଗ୍ରହଣରେ ନାହିଁ। ସବୁ ସୂକ୍ଷ୍ମ ଓ ଗଭୀର ମାନବୀୟ ଧର୍ମ ଭଳି ସତୀତ୍ୱଧର୍ମଟି ମଧ ମନୁଷ୍ୟର ଏକ ମହତ୍ତର ଆତ୍ମାଗତ ବୃତ୍ତି ଓ ଆଚରଣ। ସତୀତ୍ୱ ଏ ବାହ୍ୟ ବିଷୟ ମାତ୍ର ନୁହେଁ କିମ୍ବା ସାମାଜିକ ନୀତି ଓ ପ୍ରଥାଗତ ବିଷୟ ନୁହେଁ। 'ସତୀତ୍ୱ' ହେଲା ବ୍ୟକ୍ତି—ଆତ୍ମାର ନିଜସ୍ୱ ବିଷୟ, ନିଜସ୍ୱ ଅନୁଭୂତ ବିଷୟ ଓ ନିଜ ଧାରାରେ ନିଜସ୍ୱ ଆଚରିତ ବିଷୟ। ଏହାର ଏକ ନିର୍ଦ୍ଦିଷ୍ଟ ଓ ଅବଶ୍ୟ ସର୍ବଜନଗ୍ରାହ୍ୟ ନିର୍ଦ୍ଦିଷ୍ଟ ସଂଜ୍ଞା ନାହିଁ— କି ନୀତି ନାହିଁ। ଏହା ସଂପୂର୍ଣ୍ଣଭାବେ ବ୍ୟକ୍ତିମଣିଷର ମୁକ୍ତ ଆତ୍ମାର ସିଦ୍ଧାନ୍ତ ଓ ଉପଲବ୍ଧି।

ଏତଦ୍‌ବ୍ୟତୀତ, କେବଳ ସ୍ତ୍ରୀ ଉପରେ ଏହି ସତୀତ୍ୱର ଦାୟିତ୍ୱକୁ ଏକପାଖିଆ ଲଦିଦେବା ହେଲା ପୁରୁଷଶାସିତ ସମାଜର ନାରୀଜାତି ଉପରେ ବଳପୂର୍ବା ଅତ୍ୟାଚାର।

ଦାମ୍ପତ୍ୟ ଜୀବନରେ 'ସତୀତ୍ୱ' (ଯେ କୌଣସି ଧାରାରେ ହେଉ) ଯଦି ଏକ ବିଶେଷ ଚର୍ଯ୍ୟାନୀତି ହୁଏ, ତେବେ ତାହା ପୁରୁଷ ପ୍ରତି ମଧ୍ୟ ଲଗ୍ନ ହେବା ଉଚିତ ନୁହେଁ କି ? ସେପରି କ୍ଷେତ୍ରରେ ସତୀ ସ୍ତ୍ରୀର ଚିତାଗ୍ନୀରେ ସତ୍‌ପୁରୁଷ ମଧ୍ୟ ଆତ୍ମବିସର୍ଜନ କରିବା ଉଚିତ।

ତେଣୁ କହିବାର କଥା ହେଲା – ସତୀ ସ୍ତ୍ରୀ ନିଜର ସତୀତ୍ୱକୁ ଉପଲବ୍ଧି କରିବା ପାଇଁ ବା ପ୍ରତିଷ୍ଠିତ କରିବା ପାଇଁ ସ୍ୱାମୀର ଚିତାରେ ସହମରଣ ବରଣ କରିବ କି ସ୍ୱାମୀର ମୃତ୍ୟୁପରେ ନିଜେ ବଞ୍ଚି ରହି ସ୍ୱାମୀର ବାକି ରହିଥିବା କର୍ମ, କର୍ତ୍ତବ୍ୟ ଓ ଆଦର୍ଶକୁ ସମ୍ପନ୍ନ ଓ ସଫଳ କରିବା ଦିଗରେ ସର୍ବତୋଭାବେ 'ଆତ୍ମୋତ୍ସର୍ଗ କରିବ – ତାହା ସ୍ଥିର କରି ଗ୍ରହଣ କରିବାର ଆତ୍ମିକ ସ୍ୱାଧୀନତା ସେ ସ୍ତ୍ରୀର ନିଶ୍ଚୟ ରହିଛି। ସମାଜ ବା ରାଷ୍ଟ୍ର ତାକୁ କୌଣସି ପାଇଁ ବାଧ୍ୟ କରି ପାରିବ ନାହିଁ କି ସମର୍ଥନ ମଧ୍ୟ କରିପାରିବ ନାହିଁ। ସହମରଣ ପାଇଁ ନୁହେଁ କି ସ୍ୱାମୀର ମୃତ୍ୟୁପରେ ଏକୁଟିଆ ବଞ୍ଚିବା ପାଇଁ ନୁହେଁ। ତାର ମୂଳ କାରଣଟି ହେଲା ମୁଁ ଏ ପୃଥିବୀରେ କାହା ପାଇଁ ବିଞ୍ଚିବି ବା କାହାପାଇଁ ମରିବି – ସେ ସ୍ୱାଧୀନତା ମୋର ନିଶ୍ଚୟ ରହିଛି। ସେଥିରେ ସମାଜ ବା ରାଷ୍ଟ୍ରର କେହି ହସ୍ତକ୍ଷେପ କରିବା ଅନୁଚିତ।

କିନ୍ତୁ କେତେକ ଶୁଭ କାରଣରୁ ସମାଜ ବା ରାଷ୍ଟ୍ର ପ୍ରତ୍ୟକ୍ଷଭାବେ ସ୍ତ୍ରୀର ସ୍ୱାମୀ ସଙ୍ଗେ ସ୍ୱେଚ୍ଛାମରଣ ସିଦ୍ଧାନ୍ତକୁ ଅନୁମତି ଦିଏ ନାହିଁ। ଦେବା ମଧ୍ୟ ଅନୁଚିତ। ଏଭଳି ଆତ୍ମୋତ୍ସର୍ଗ ଭଳି ମନେ ହଉଥିବା ବ୍ୟାପାରକୁ ଯେ କୌଣସି କଲ୍ୟାଣକାମୀ ସମାଜ ବା ରାଷ୍ଟ୍ର ଆତ୍ମହତ୍ୟା ବୋଲି ସନ୍ଦେହ କରିବାକୁ ବାଧ୍ୟ। ତାର ମୂଳ ଓ ନୈତିକ କାରଣଟି ହେଲା – କୌଣସି ସ୍ତ୍ରୀକୁ ତାର ଇଚ୍ଛା ବିରୁଦ୍ଧରେ 'ସତୀ' ହେବାର ଦୁହାଇଦେଇ କୌଣସି ବର୍ବର ସମାଜ ତାକୁ ସ୍ୱାମୀର ଚିତାରେ ଝାସ ଦେବାକୁ ବାଧ୍ୟ କଲେ ଶୁଭକାମୀ ରାଷ୍ଟ୍ର ଯେମିତି ସେଥିରେ ବାଧାଦିଏ– ସେହି କାରଣରୁ ମଧ୍ୟ କୌଣସି ସ୍ତ୍ରୀ ସତୀ ହେବାର ଉନ୍ମାଦନାରେ ତଥାକଥିତ ସ୍ୱେଚ୍ଛାରେ ସ୍ୱାମୀର ଚିତାରେ ଝାସଦେବାକୁ ରାଷ୍ଟ୍ର ମନା କରିବା ଉଚିତ। କାରଣ ବହୁ ସ୍ଥଳରେ ଦେଖା ଯାଇଛି ଯେ ସ୍ୱାମୀସହ ଏକତ୍ର ମରୁଥିବା ଓ ମରିବାକୁ ଯାଉଥିବା ସ୍ତ୍ରୀଟି ଏକପ୍ରକାର ଉନ୍ମାଦଗ୍ରସ୍ତ ସ୍ତ୍ରୀଲୋକ। 'ସତୀତ୍ୱ'ର ପ୍ରକୃତ ମର୍ମ ତାକୁ ଜଣା ନଥାଏ ଏବଂ ତା'ମୁଣ୍ଡରେ ପରୋକ୍ଷରେ ଭୁଲ ଶାସ୍ତ୍ରକଥିତ ସତୀତ୍ୱ–ସମ୍ବନ୍ଧେ ବହୁ ଭ୍ରମାତ୍ମକ ଧାରଣା ଆଗରୁ ଭର୍ତ୍ତି କରାଯାଇଥାଏ। ସେ ମଧ୍ୟ ସ୍ୱାମୀକୁ ହରାଇ ଏକାନ୍ତଭାବେ ଏକୁଟିଆ ବ୍ୟର୍ଥ ମନୋରଥ, ନିରାଶା ଅସହାୟା ଓ ଅରକ୍ଷଣୀୟା ମନେକରୁ ଥାଇପାରେ ଏବଂ ସ୍ୱାମୀର ମୃତ୍ୟୁପରେ ସେ କିଂକର୍ତ୍ତବ୍ୟବିମୂଢ଼ା ହୋଇ ଅସହାୟତାର ଉନ୍ମାଦନାରେ ଆତ୍ମହତ୍ୟା କରିବାକୁ ସ୍ୱାମୀର

ଚିତା ଆଡ଼କୁ ଦୌଡ଼ି ଯାଇପାରେ । ଏ କ୍ଷେତ୍ରରେ ଆମେ ସେ ସ୍ତ୍ରୀଲୋକର ସହମରଣକୁ ଯଥାର୍ଥରେ ସ୍ୱେଚ୍ଛାଧୀନ ସିଦ୍ଧାନ୍ତ କହି ପାରିବା ନାହିଁ । କାରଣ ପ୍ରକୃତ ସ୍ୱେଚ୍ଛାମୂଳକ ସିଦ୍ଧାନ୍ତଟିଏ ନିଏ ଆତ୍ମା । ମନ କି ପ୍ରାଣ ନୁହଁ । ମନ ଓ ପ୍ରାଣର ସିଦ୍ଧାନ୍ତ ପଛରେ ଥାଏ ଭୟ, ଆଶଙ୍କା, ବ୍ୟର୍ଥତା, ଅସହାୟତା ଓ ଉନ୍ମତ୍ତତା । ତା'ଛଡ଼ା – ତାର ଗୋଟିଏ ଭୁଲ ଧାରଣା ହୋଇଥାଏ ଯେ, ସତୀତ୍ୱର ପରାକାଷ୍ଠା କେବଳ ଏଇଥିରେ ଅଛି – ଅନ୍ୟ ବାଟରେ ସତୀତ୍ୱ ରଖାଯାଇ ପାରିବ ନାହିଁ ।

ଏହିସବୁ କାରଣରୁ ପ୍ରଥାଗତ ଭାବେ ଓ ପ୍ରଣୋଦିତ ସ୍ୱେଚ୍ଛାକୃତ ଭାବେ ସତୀଦାହ ବା ପତିସହ ମରଣକୁ ଆମ ରାଷ୍ଟ୍ର ଏକ ବର୍ବର ଓ ବୀଭତ୍ସ ନୃଶଂସ ବ୍ୟାପାର ମନେକରି ତା'କୁ ଏକଶତାବ୍ଦୀ ଆଗରୁ ବର୍ଜନ କରି ଆସିଛି । ରାଜା ରାମମୋହନ ରାୟ ଏହି ନାରକୀୟ ପ୍ରଥାକୁ ପୁନଶ୍ଚ ସମାଧି ଭିତରୁ ବାହାର କି ଜୀବନ୍ୟାସ ଦେବାକୁ ବସିଛନ୍ତି– ସମଗ୍ର ଦେଶ ତାର ପ୍ରବଳ ବିରୋଧ କରିବା ଉଚିତ ଓ ଏହି ମୂର୍ଖମାନଙ୍କୁ ଭର୍ତ୍ସନା କରିବା ଉଚିତ ।

**

# ଶହେ ଚୁମ୍ବନ–ଶହେ ସଲାମ

୮/୨/୮୨

ହିନ୍ଦୁସ୍ଥାନ ଟାଇମସ୍ କୃପାରୁ ଚମତ୍କାର ଖବରଟିଏ ଶୁଣିବାକୁ ମିଳିଲା। ତା'ହେଲା ଶ୍ରୀଅନସାର ଅହମ୍ମଦ ନାମକ ଜଣେ ଭାରତୀୟ ମୁସଲମାନ ଭଦ୍ରବ୍ୟକ୍ତି ବମ୍ବେର ଜଣେ ସୁନ୍ଦରୀ ଚିତ୍ରତାରକା ଶ୍ରୀମତୀ ପଦ୍ମିନୀ କୋହ୍ଲାପୁରୀଙ୍କ ନାମରେ ଭାରତୀୟ ଦଣ୍ଡବିଧି ଆଇନର ୨୯୨ ଓ ୨୯୪ ଦଫାରେ ବିଚାର ବିଭାଗ ମାଜିଷ୍ଟ୍ରେଟଙ୍କ କୋର୍ଟରେ ଏକ ମକଦ୍ଦମା ଦାଏର କରିଛନ୍ତି। ଅନସାରଙ୍କ ମତରେ ଇଂଲଣ୍ଡର ଯୁବରାଜ ଚାର୍ଲସ ଭାରତ ପରିଭ୍ରମଣରେ ଆସିଥିଲାବେଳେ ବମ୍ବେର ଏକ ଷ୍ଟୁଡ଼ିଓରେ ପଦ୍ମିନୀ ଦେବୀ ଭାବବିହ୍ୱଳା ହୋଇ ଚାର୍ଲସଙ୍କୁ ଚୁମ୍ବନ କଲେ ଏବଂ ଏତଦ୍ୱାରା କୁଆଡ଼େ ପଦ୍ମିନୀ ଦେବୀ ଭାରତୀୟ ସଂସ୍କୃତି ଓ ନାରୀ ସମାଜର ସମ୍ମାନକୁ ତଳେ ପକାଇ ଦେଲେ। ଏଭଳି ଜାତୀୟ ଅପରାଧ ଅକ୍ଷମଣୀୟ।

ଆମ ଖବରକାଗଜରେ ନିତିପ୍ରତି କେତେ ଧର୍ଷଣ, ମର୍ଷଣ, ଚୋରି, ଡକାୟତି, ନରହତ୍ୟା, ଦୁର୍ଘଟଣା ଓ ରାଜନୈତିକ ନେତାମାନଙ୍କର ହଟଚେମଟ ଲୀଳା ଓ ବିବୃତିମାନ ପ୍ରକାଶ ପାଉଛି ଏବଂ ସେସବୁ ପଢ଼ିଶୁଣି ଆଖି କାନ–ମନ ନିର୍ଯ୍ୟାତିତ ହୋଇଗଲାଣି। କିନ୍ତୁ ଉପରୋକ୍ତ ଖବରଟି ଭାଗ୍ୟରେ ଥିଲେ ଶୁଣିବାକୁ ମିଳେ। ପ୍ରତିଦିନ କେତେ କେତେ ମକଦ୍ଦମା ବା ଆମ କୋର୍ଟ କଚେରୀରେ ନ ହେଉଛି! କିନ୍ତୁ ଏମିତି ମକଦ୍ଦମାଟିର କଥା ଭାଗ୍ୟରେ ଥିଲେ ଶୁଣିବାକୁ ମିଳେ। ଜଣେ ଜଣକୁ ଭାବବିହ୍ୱଳ ହୋଇ ଚୁମ୍ବନଟିଏ ଦେଲା। ତା' ପରେ ଏତେ ଅପରାଧ ଏବଂ ତଦ୍ୱାରା ପୁଣି ଭାରତର ଜାତୀୟ ସଂସ୍କୃତି ବିପନ୍ନ ହୋଇଗଲା। ଭଦ୍ରଲୋକ ଏତେ ଉଦ୍‌ବ୍ୟକ୍ତ ଯେ ନିଜ ହାତରୁ ପଇସା ଖର୍ଚ୍ଚ କରି ଜୀବନ ସଂଗ୍ରାମ ପାଇଁ ନିର୍ଦ୍ଦିଷ୍ଟ ସମୟରୁ କିଛି ସମୟକାଟି ଓକିଲ ପରାମର୍ଶ କରି କଚେରୀ ଭଳି ମହା ହାଙ୍ଗାମା ସ୍ଥାନକୁ ଯାଇ ମକଦ୍ଦମା ରୁଜୁ କରୁଛନ୍ତି। ବିଶ୍ୱାସ ହେଉନାହିଁ – ଏମିତି ହୋଇଥିବ ବୋଲି ଖବରଟି ଶୁଣି କିନ୍ତୁ ହୃଦୟ ଉଲୁସି ଉଠିଲା। ହୃଦୟ ଭିତରେ ଆଶା, ବିଶ୍ୱାସ ପରିପୂର୍ଣ୍ଣ ହୋଇଗଲା।

କିଛିଦିନ ତଳେ ଇଂଲଣ୍ଡର ଯୁବରାଜ ଶ୍ରୀମାନ ଚାର୍ଲସ ଭାରତ ପରିଭ୍ରମଣରେ ଆସିଥିଲାବେଳେ, ସମଗ୍ର ଭାରତବର୍ଷରେ ଯେ ଏକ ମଧ୍ୟଯୁଗୀୟ ପ୍ରଜାସୁଲଭ ଉଲ୍ଲାସ ଉନ୍ମାଦନା ଖେଳି ଯାଇଥିଲା – ସେଥିରେ ସନ୍ଦେହ ନାହିଁ। ତାର କାରଣ ସ୍ୱରୂପ– ଆମର ରାଜଭକ୍ତଦେଶ ଅନେକ ବର୍ଷ ଧରି କେବଳ କଥା କାହାଣୀରୁ ବା କାବ୍ୟ

ପୁରାଣରୁ ଯାହା ସୁନ୍ଦର ବଳିଷ୍ଠ ସୁପୁରୁଷ ରାଜପୁତ୍ରମାନଙ୍କ କଥା ଶୁଣି ଆସିଥିଲା। କିନ୍ତୁ ସେପରି ସ୍ୱପ୍ନର ରାଜକୁମାରଟିଏ ସ୍ୱଚକ୍ଷୁରେ ଦେଖି ନଥିଲେ ଭାରତବାସୀ। ରାଜତନ୍ତ୍ର ବିଲୋପ ପରେ ଓ ଆମ ଦେଶ ସ୍ୱାଧୀନତା ପାଇବା ପରେ ଆମ ଦେଶର ରାଜୁଡ଼ାଗୁଡ଼ିକ ଭାଙ୍ଗି ଆମ ରାଷ୍ଟ୍ର ସଙ୍ଗେ ମିଶାଇ ଦେଲାପରେ, ଆମ ଦେଶର ରାଜପୁତ୍ରମାନେ କ୍ରମେ ''ରାଜଟୋକା'' ପାଲଟି ଗଲେ। ଯେମିତି ବାହ୍ମଣ ଟୋକା, ପଠାଣ ଟୋକା, ପାଣ ଟୋକା ବା ସାନ୍ତାଳ ଟୋକା। ତା' ପରେ ସେଇ ''ରଜାଟୋକା'' ମାନେ ମଧ୍ୟ ଆମ ପ୍ରଜାଟୋକଙ୍କ ସଙ୍ଗେ ମିଶି ଚାଷ କଲେ। ବ୍ୟବସାୟ କଲେ। ଚାକିରି କଲେ ଓ ନିର୍ବାଚନାଦି ଲଢ଼ିଲେ। ତିରିଶି ବର୍ଷ ପରେ ପୁଣି ଆଉ କେହି ସେମାନଙ୍କୁ 'ରାଜାଟୋକା' ବୋଲି ମଧ୍ୟ କହୁ ନାହାନ୍ତି। ସେମାନେ ଆମର ଅଗଣି ମଳିକ, ଟେମ୍ପୁ ଓରାମ, ବନୁ ମହାନ୍ତି, ମାର୍କଣ୍ଡ ମିଶ୍ର ପ୍ରଭୃତି ନେତାମାନଙ୍କ ସଙ୍ଗେ ମିଶି ଆହ୍ଲାଦବାବୁ, ପ୍ରମୋଦବାବୁ ଅନୁପବାବୁ ପ୍ରଭୃତି ନାମରେ ପରିଚିତ ହେଲେଣି। କାହା କାହା ପଛରେ ସେଠି, ଦାସ, ଭୋଇ, ପଣ୍ଡା, ପଟେଲ ସାଙ୍ଗିଆ, ଭଳି ''ସିଙ୍ଗ'' ବା ''ଦେଓ'' ସାଙ୍ଗିଆଟିଏ ଥିଲେ ଥାଇପାରେ। ଯେମିତି ଅନୂପ ସିଙ୍ଗ ପ୍ରମୋଦ ଦେଓ ଇତ୍ୟାଦି।

ଏବଂ ଦୁର୍ଭାଗ୍ୟର କଥା ଯେ ଆମେ ଆମର ନନ୍ଦନକାନନ ବା ଅଭୟାରଣ୍ୟରେ କଦବା କେମିତି ଦେଖିବୁ ବୋଲି 'ସିଂହ' 'ଗରିଲା' ପ୍ରଭୃତି ପୋଷିଲା ଭଳି 'ରାଜପୁତ୍ର'ଟିଏ ତାର ଆକୃତି ଓ ପ୍ରକୃତି ସହ ନିର୍ବିଘ୍ନରେ ବଞ୍ଚାଇ ପୋଷିବାକୁ କୋଉଠି ଚିଡ଼ିଆଖାନା ଭଳି ରାଷ୍ଟ୍ର ଖର୍ଚ୍ଚରେ ଓ ମାଉଫତରେ ରାଜପ୍ରସାଦଟିଏ ମଧ୍ୟ ରଖିନାହୁଁ। ଫଳରେ ରାଜକୁମାର ରାଜକୁମାରୀ ସ୍ପେସିଜ ଆମ ଦେଶରୁ ଆମରି ଅମଳରେ ବି ଲୋପ ପାଇଗଲା। ବଡ଼ କରୁଣ କଥା ନିଶ୍ଚୟ। ଆମ ପିଲାଏ ଜୀବନ୍ତ ରାଜପୁତ୍ରଟିଏ କୋଉଠି ଦେଖିବାକୁ ପାଇଲେ ନାହିଁ। କିନ୍ତୁ ଆମ ଭାରତୀୟଙ୍କ ପାରଂପରିକ ଜାତୀୟ ଚେତନାରେ ''ରାଜପ୍ରୀତି'' ଅତୁଳନୀୟ। ଆମ ପୁରାଣମାନଙ୍କରୁ ଆମେ ରାଜା ଦିଲୀପ, ରଘୁ, ଦଶରଥ, ରାମଚନ୍ଦ୍ର, ଯୁଧିଷ୍ଠିର, ହରିଶ୍ଚନ୍ଦ୍ର, ମାନଧାତା, ଶିବି, ନଳ, ପୃଥୁ ପ୍ରଭୃତି ଦେବୋପମ ରାଜପୁରୁଷମାନଙ୍କର ଯେଉଁସବୁ ଆତ୍ମସ୍ପର୍ଶୀ ପରିଚୟ ପାଇଛୁ– ଏବଂ ଆମ କାବ୍ୟ କାହାଣୀମାନଂକରୁ ଯେଉଁସବୁ ବୀର ସୁନ୍ଦର ସୁପୁରୁଷ ଓ ସୁପ୍ରେମିକ ରାଜା ଓ ରାଜପୁତ୍ରମାନଙ୍କ ହୃଦୟସ୍ପର୍ଶୀ ପରିଚୟ ପାଇଛୁ। ତାହା ପୌରାଣିକ ଯୁଗର ଅତ୍ୟାଚାରୀ ରାଜା ରାବଣ ବା ଦୁର୍ଯ୍ୟୋଧନ, କଂସ ବା ଜରାସନ୍ଧମାନଙ୍କ ସ୍ମୃତିରେ ଯେମିତି ବ୍ୟାହତ ହୋଇନାହିଁ – ସେମିତି ଐତିହାସିକ ଯୁଗର ଅତ୍ୟାଚାରୀ ଗଡ଼ଜାତ ରାଜାମାନଙ୍କର ନୃଶଂସ ପ୍ରଜାପୀଡ଼ନ ସ୍ମୃତିଦ୍ୱାରା ମଧ୍ୟ ବ୍ୟାହତ ହୋଇନାହିଁ। ଜାତିର ପିତା ମହାତ୍ମା ଗାନ୍ଧୀ ସୁଦ୍ଧା ଭାରତର ଭବିଷ୍ୟତ ରାଷ୍ଟ୍ରପରିଚାଳନା ରାମ ରାଜ୍ୟ ହେବା ଉଚିତ ବୋଲି ବାରମ୍ବାର କହୁଥିଲେ। ଆମର ରାଜା ଆଉ ନାହାନ୍ତି। କିନ୍ତୁ ରାଜନୀତି ରହିଛି – ରାଜପଥ ରହିଛି। ଆଉ ମଧ୍ୟ ରହିଛନ୍ତି ରାଜହଂସ,

ରାଜବଣୀ ଇତ୍ୟାଦି ସଙ୍ଗେ "ରାଜାର ମିଜାଜ୍" ଆଉ "ରାଜଘର ଖାନା" ପ୍ରଭୃତି। ଆମ ପ୍ରେମିକମାନେ ସେମାନଙ୍କର ପ୍ରେମିକାଙ୍କର ହୃଦୟ ସିଂହାସନରେ ଅଧିଷ୍ଠିତ ରାଜା ଏବଂ ପ୍ରେମିକାମାନେ ସେମାନଙ୍କ ପ୍ରେମିକାମାନଙ୍କର ସ୍ୱପ୍ନରାଜ୍ୟର ରାଜକୁମାରୀ ବା ରାଣୀ।

ତେଣୁ ରାଜକୁମାର ଶବ୍ଦଟି ଶୁଣିବା ମାତ୍ରେ ଆମ ଅନ୍ତର୍ଦୃଷ୍ଟିର ପରଦାରେ ଗୋଟିଏ ବୁଦ୍ଧି ବିଦ୍ୟାହୀନ ଖିଆଲବାଦ, ହରଘଡ଼ି ମଦୁଆ, ନୃଶଂସ, ସାଡ଼ିଷ୍ଟ ଓ ଗରିଲାକୃତି କୌଣସି ଗଡ଼ଜାତିଆ ଖେଟେଡ଼ା ରାଜାଟୋକାର ଛବି ପ୍ରତିଫଳିତ ହୋଇଯାଏ ନାହିଁ। ଆମ କଳ୍ପନାର ପରଦାରେ ଆସି ଠିଆ ହୋଇଯାନ୍ତି ସେଇ ସବୁ ଦେବୋପମ ଦେବାକୃତି ସୁକୁମାର ଅଥଚ ବଳିଷ୍ଠ ଶାଳପ୍ରାଂଶୁ ବୃଷସ୍କନ୍ଧ ନୟନ ପ୍ରତିକର ରଥାରୋହୀ ବା ଅଶ୍ୱାରୋହୀ ଯୁବରାଜଗଣ – ରାମକୁମାର, ଲକ୍ଷ୍ମଣକୁମାର, ବା କୁମାର ନିଜ, କୁମାର ଅର୍ଜୁନ, ବା କୁମାର ଚନ୍ଦ୍ରଭାନୁ, ମିତ୍ରଭାନୁ ପ୍ରଭୃତି।

ହାୟ ଦୁର୍ଭାଗ୍ୟ। ସେମାନେ ଆଉ କେବେଠାରୁ ନାହାନ୍ତି। ଭାରତର ଅରଣ୍ୟରେ ତଥାପି କେତୋଟି ସିଂହ ଅର୍ଦ୍ଧଭୁକ୍ତ ଓ ଭୀତତ୍ରସ୍ତ ଅବସ୍ଥାରେ ହାଡ଼ମାଳ ହୋଇ ବୁଲୁଛନ୍ତି। ମାତ୍ର ଆମ ରାଜପ୍ରସାଦମାନଙ୍କରେ ଆଉ ରାଜକୁମାରମାନେ ନାହାନ୍ତି ଏବଂ ସେମାନଙ୍କ ସ୍ଥାନରେ ଗଣତାନ୍ତ୍ରିକ ସମାଜବାଦୀ ଭାରତର ଯେଉଁମାନେ ରାଜନୀତି କରୁଛନ୍ତି – ଅର୍ଥାତ୍ ଆମର ନେତା, ଉପନେତା, ପାତିନେତା ଓ ଯୁବନେତାମାନେ ? ସେମାନଙ୍କ ଭିତରୁ ଆକୃତି ଓ ପ୍ରକୃତିରେ ସେହି ଭଳି ରାଜୋଚିତ ବା ରାଜକୁମାରୋଚିତ ବିଗ୍ରହଟିଏ ଖୋଜିଲେ ମିଳିବ କି ? କେଜାଣି ?

ଇଂରେଜ ଜାତି କିନ୍ତୁ ରାଜା, ରାଣୀ, ରାଜକନ୍ୟା ଓ ରାଜପୁତ୍ରମାନଙ୍କୁ ବକିଂହାମ ରାଜପ୍ରାସାଦର ଅଭୟାରଣ୍ୟରେ ଏବେ ବି ପୋଷି ରଖିଛି। ତା' ଚାରିପଟେ ଗଣତାନ୍ତ୍ରିକ ସ୍ୱୀକୃତି ଓ ମର୍ଯ୍ୟାଦାର ସୁଦୃଢ଼ ପ୍ରାଚୀର ବେଷ୍ଟନ କରି। ଭଲଭାବେ ପରିପାଳିତ ପୋଷ୍ୟସିଂହ ପରି, ସେମାନେ ସିଂହୋଚିତ ମର୍ଯ୍ୟାଦାରେ ରହିଛନ୍ତି ଏବଂ ତା' ସଙ୍ଗେ ସଙ୍ଗେ ସେମାନଙ୍କଠାରୁ ସମସ୍ତ ସିଂହସୁଲଭ ହିଂସ୍ରତା ମଧ୍ୟ ଲୋପପାଇଛି। ସେମାନଙ୍କୁ ଦେଖିଲେ ଭଲ ଲାଗୁଛି। ପ୍ରାଣ ପୂରି ଯାଉଛି। ଆଉଁସିବାକୁ ମନ ଡାକୁଛି। କାହା କାହାର ବି ଚୁମାଟିଏ ଦେଇ ଦେବାକୁ ଅଧୀରତା ଆସୁଛି। ଆଉ କେହି କେହି ବା ସତକୁ ସତ—

ସ୍ୱାଧୀନତା ପୂର୍ବ ଭାରତବର୍ଷରେ ପଣ୍ଡିତ ମୋତିଲାଲଙ୍କର ଏକମାତ୍ର ନନ୍ଦନ ପ୍ରଥିତ ଯଥା ଚିରସ୍ମରଣୀୟ ଭାରତରତ୍ନ କୁମାର ଜବହାରଲାଲଙ୍କୁ ଆଖିରେ ଦେଖିବା ମାତ୍ରେ ସମଗ୍ର ଭାରତବାସୀ ଏମିତି ଆନନ୍ଦ ଉନ୍ମତ୍ତ ହୋଇ ଉଠୁଥିଲେ। ଆମେ ଦେଖିଛୁ ଡକୁମେଣ୍ଟାରୀ ସିନେମା ପରଦାରେ ଜବାହାରଙ୍କୁ ଛବିଟିରେ ଦେଖିଲାମାତ୍ରେ ପ୍ରେକ୍ଷାଳୟର ଆବାଳବୃଦ୍ଧବନିତା ଆନନ୍ଦ ଉଲ୍ଲାସରେ ଫାଟିପଡୁଥିଲେ। ଜବାହାରଲାଲ ଜିନ୍ଦାବାଦ ଧ୍ୱନିରେ ପ୍ରେକ୍ଷାଳୟ କମ୍ପି ଉଠୁଥିଲା। ଯୁବକମାନେ ଗାଲଟୁରୀ ବଜାଇ

ଉଲ୍ଲାସ ଦେଖାଉଥିଲେ। ବିଶ୍ୱକବି ଗୁରୁଦେବ ରବୀନ୍ଦ୍ରନାଥ ମଧ୍ୟ ଭାବବେଗ ସମ୍ଭାଳି ନପାରି ଏହି ରାଜୋଚିତ ଗୁଣଧର୍ମ ଆକୃତି ପ୍ରକୃତିବନ୍ତ ଯୁବାପୁରୁଷଙ୍କୁ 'ଭାରତବର୍ଷର ବସନ୍ତ ରତ୍ନ' ବୋଲି ସମ୍ବୋଧନ କରୁଥିଲେ। ଅବଶ୍ୟ ରମଣୀୟ ଆକୃତିଧାରୀ ଅତ୍ୟନ୍ତ ଭଦ୍ରଭବ୍ୟ ସୁକୁମାର ଗାମ୍ଭୀର୍ଯ୍ୟ ଓ ମାଧୁର୍ଯ୍ୟବନ୍ତ, ସମ୍ଭ୍ରାନ୍ତ ଅଥଚ ସହଜ ଓ ସାଧାରଣ ଅତ୍ୟନ୍ତ ଆନ୍ତରିକ ମୃଦୁ ସ୍ୱଭାବ ଇଂଲଣ୍ଡର ଯୁବରାଜ ଆୟୁଷ୍ମାନ ଚାର୍ଲସ ସମ୍ରାଟ ବଂଶରେ ଜନ୍ମଗ୍ରହଣ କରିଥିଲେ ବି ରାମଚନ୍ଦ୍ର, ଯୁଧିଷ୍ଠିର, ହରିଶ୍ଚନ୍ଦ୍ର ଆଦି ନରପତିମାନଙ୍କ ଦେଶର ଜବାହାରଲାଲଙ୍କ ସଙ୍ଗେ ସାମାନ୍ୟରେ ମଧ୍ୟ ତୁଳିତ ହୋଇପାରିବେ ନାହିଁ।

କିନ୍ତୁ ତଥାପି, ଏ ଦୃଷ୍ଟିରୁ ଭାବିଲେ ଏମିତି ଏକ ଅଭାବୀ ଯୁଗରେ ମର୍ଯ୍ୟାଦାବନ୍ତ ସୁକୁମାର ଭଦ୍ର ଭବ୍ୟ ସମ୍ଭ୍ରାନ୍ତ ରମଣୀୟ ବପୁ ରାଜକୁମାରଟିଏ ଦେଖିଲେ ସ୍ୱାଭାବିକ ଶ୍ରଦ୍ଧପ୍ରାଣା ବେଗରେ ଉନ୍ମତ୍ତପ୍ରାୟ ହୋଇ ସମସ୍ତ କୁଳଶୀଳ ମାନମର୍ଯ୍ୟାଦା ଲଜ୍ଜାସଙ୍କୋଚ ଧର୍ମାଧର୍ମ ଭୁଲିଯାଇ ତାଙ୍କୁ ଚୁମ୍ବନଟିଏ ଦେଇଦେବାର ରମଣୀସୁଲଭ ରମଣୀୟ ଦୃଷ୍ଟାନ୍ତ ତଥାପି ଏ ଦେଶର ଭାବବତୀ ରମଣୀମାନଙ୍କ ଭିତରେ ଏବେବି ବଞ୍ଚି ରହିଛି!! ବଳିହାରୀ କରିବା ଏ ଦେଶକୁ ତା'ହେଲେ। ତା ହେଲେ, ଆମପଟୁ କୃତଜ୍ଞତାର ନିଦର୍ଶନ ସ୍ୱରୂପ ଶ୍ରୀମତୀ ପଦ୍ମିନୀ କୋହ୍ଲାପୁରୀଙ୍କ ଉଦ୍ଦେଶ୍ୟରେ ଏକଶତ ଚୁମ୍ବନ ଆଜି ସକାଳେ ଉତ୍ସର୍ଗ କରି ଏଇ ସକାଳଟିକୁ ସାର୍ଥକ କରାଯାଉ।

ଚୁମ୍ବନ କ୍ରିୟାଟି ଶ୍ଳୀଳ କି ଅଶ୍ଳୀଳ ଅଥବା ଚୁମ୍ବନ କ୍ରିୟାଟି ପଛରେ କେତେ ଜୀବତ, କେତେ ମାନସିକ, କେତେ ନାନ୍ଦନିକ ବା କେତେ ଆତ୍ମିକ ପ୍ରେରଣା ବା ପ୍ରରୋଚନା ରହିଛି – ଏବଂ ଭାରତୀୟ ସଂସ୍କୃତିର ବିସ୍ତାର, ଗଭୀରତା, ପ୍ରାଣଶକ୍ତି ଓ ଆତ୍ମଶକ୍ତି କେତେ – ଏବଂ ଭାରତୀୟ ନାରୀ ମର୍ଯ୍ୟାଦାର ମଧ୍ୟ ସ୍ୱରୂପ, ସୁଗୁଣ ଓ ସ୍ୱଧର୍ମ କଣ – ଏବଂ ପଦ୍ମିନୀ ଦେବୀଙ୍କର ଚୁମ୍ବନ କ୍ରିୟାକାଣ୍ଡ ଫଳରେ ଭାରତୀୟ ନାରୀମର୍ଯ୍ୟାଦାର ଓ ସଂସ୍କୃତିର ଉତ୍‌ଥାନ କି ପତନ ହୋଇଛି – ସେସବୁ ବାବଦରେ ଆଲୋଚନା କରିବା।

ମାତ୍ର ଆହା! କି ଯୋଗରେ ଆଜି ରାତି ପାହିଥିଲାଟି। ଦୀନ୍ ଦୁନିଆର ମାଲିକ ଖୋଦା ତାଲ୍ଲାଙ୍କର କି ମେହେରବାନୀ। ଆଲ୍ଲା ହୋ ଆକବର! ସମ୍ବାଦଟି ପଢ଼ି ମନପ୍ରାଣ ଧନ୍ୟ ହୋଇଗଲା। ଏ ଯୁଗରେ ପୁଣି ଭାରତବର୍ଷର ଜାତୀୟ ସଂସ୍କୃତି ବିଷୟରେ ଭାବିତ ହୋଇ, ବିବ୍ରତ ହୋଇ, ବିଚଳିତ ହୋଇ, ଆଶଙ୍କିତ ହୋଇ ଏ ଦେଶର କେହି ଜଣେ ପୁରୁଷ ପୁଣି ଏମିତି ଏକୁଟିଆ ପ୍ରତିବାଦ କରୁଛି? ସେ ପୁଣି ଜଣେ ଭାରତୀୟ ମୁସଲମାନ? ତା'ହେଲେ ଆମପଟୁ କୃତଜ୍ଞତାର ନିଦର୍ଶନ ସ୍ୱରୂପ ଆନସାର ଅହମ୍ମଦଙ୍କ ଉଦ୍ଦେଶ୍ୟରେ ମଧ୍ୟ ଶହେଟି ସଲାମ ଉତ୍ସର୍ଗ କରି ଆଜିର ସକାଳଟିକୁ ସମ୍ମାନିତ କରାଯାଉ।



# ବିପନ୍ନ ଗ୍ରାମ୍ୟଲୋକ ଓ ବିକଳ ମନସ୍ତତ୍ତ୍ୱ

୪/୮/୮୦

ଏଥର ବନ୍ୟାବିପତ୍ତିବେଳେ ଗାଁ–ଗହଳିର ବିପନ୍ନ ଲୋକଙ୍କୁ ଚୁଡ଼ା, ଚାଉଳ ଲୁଗାପଟା ବାଣ୍ଟିଲାବେଳେ ଗୋଟିଏ ଅଦ୍ଭୁତ ମନସ୍ତତ୍ତ୍ୱର ପ୍ରକାଶ ଲକ୍ଷ୍ୟ କରାଯାଉଛି। କେତେକ ସ୍ଥଳରେ ବିପନ୍ନ ବ୍ୟକ୍ତିମାନେ ସ୍ୱେଚ୍ଛାସେବକମାନଙ୍କ ସହ ଦୁର୍ବ୍ୟବହାର କରିଥିଲେ। କେତେକ ସ୍ଥଳରେ କିଛି ବଳପୂର୍ବା ଲୋକ ଖାଦ୍ୟବସ୍ତା ସବୁ ଛଡ଼ାଇ ନେଇ ଲୁଚାଇ ଦେଉଥିଲେ। କୌଣସି କୌଣସି ଜାଗାରେ ଉତ୍ତ୍ୟକ୍ତ ଲୋକେ କେତେଜଣ ସ୍ୱେଚ୍ଛାସେବକଙ୍କ କଲମ, ଘଡ଼ି ଓ କାମିଜ ମଧ୍ୟ ଛଡ଼ାଇ ନେଇ ଥିବାର ସମ୍ବାଦ ମିଳିଥିଲା। କି ସରକାରୀ କି ବେସରକାରୀ ଯେ କୌଣସି ସାହାଯ୍ୟକାରୀ ସଂସ୍ଥା ପ୍ରତି ବିପନ୍ନ ବ୍ୟକ୍ତିମାନଙ୍କର ମନୋଭାବ ଅତ୍ୟନ୍ତ କଠୋର ଉତ୍ତ୍ୟକ୍ତ, ଅସହିଷ୍ଣୁ ଓ ଈର୍ଷାତ୍ମକ ହୋଇ ପଡ଼ିଥିଲା। ବହୁ ଜାଗାରେ ଲୋକେ ସ୍ୱେଚ୍ଛାସେବକମାନଙ୍କୁ ସେମାନଙ୍କ ଆଗରେ ବା ପଛରେ ଅତ୍ୟନ୍ତ ଅଶ୍ଳୀଳ ଭାବରେ ଭର୍ତ୍ସନା କରୁଥିବାର ମଧ୍ୟ ଶୁଣାଯାଇଥିଲା। ଏପରି କି ଉଡ଼ାଜାହାଜ ବା ହେଲିକପ୍ଟର ଦେଖିଲେ ସେମାନେ ଆରୋହୀମାନଙ୍କର ଅମଙ୍ଗଳ କାମନା କରି ସାହାଯ୍ୟ ପାଇବାକୁ ଅସ୍ଥିରତା ପ୍ରକାଶ କରୁଥିଲେ।

ଏବେ ପୁଣି ଖବର ପ୍ରକାଶ ପାଇଛି ଯେ, କେତେକ ଅଞ୍ଚଳରେ ଲୋଭାର୍ଥୀ ଲୋକେ ଉତ୍ତ୍ୟକ୍ତ ହୋଇ କେତୋଟି ରିଲିଫ ଡଙ୍ଗା ବୁଡାଇ ଦେଇଛନ୍ତି ଏବଂ ସରକାରୀ କର୍ମଚାରୀମାନଙ୍କୁ ମାଡ଼ମାରି ଖାଦ୍ୟବସ୍ତା ସବୁ ଛଡ଼ାଇ ନେଇଛନ୍ତି। ଅବସ୍ଥା ଏପରି ହେଲାଣି ଯେ, ସ୍ୱେଚ୍ଛାସେବକମାନେ ସେ ସବୁ ଅଂଚଳକୁ ରିଲିଫ ବଣ୍ଟନ କରିବାକୁ ଯିବା ଲାଗି ଭୟ କଲେଣି।

ନିକଟରେ କେତେକ ସ୍ଥାନରେ ଏ ମନୋଭାବ ଓ କାଣ୍ଡକାରଖାନା ଦେଖି ମୁଁ କେତେକ ବିପନ୍ନ ଗ୍ରାମବାସୀଙ୍କ ସଙ୍ଗେ କଥାବାର୍ତ୍ତା କରିଥିଲି। ସେଥିରୁ ଜଣାଗଲା ଯେ, ଏହି ବିପନ୍ନ, ଅର୍ଦ୍ଧ ବିପନ୍ନ ଓ ସାମାନ୍ୟ ଅସୁବିଧାଗ୍ରସ୍ତ ଗ୍ରାମବାସୀମାନେ ମନରେ ଦୃଢ଼ ଧାରଣା କରିଛନ୍ତି ଯେ ସହରାଗତ ଏଇ ସବୁ ବାବୁଭାୟାମାନେ ସମସ୍ତେ ଚୋର, ତସ୍କର ଓ ଅତ୍ୟନ୍ତ ଧନୀ, ବିଳାସୀ, ସ୍ୱାର୍ଥପର ଲୋକ। ଏମାନେ ସମସ୍ତେ ହୁଏ ତ ସରକାରୀ ଦଳର ମନ୍ତ୍ରୀ, ଏମ.ଏଲ. ଏ. ବଡ଼ ବଡ଼ ଦରମାବାଲା ହାକିମହୁକୁମା କିମ୍ବା ବିରୋଧୀ ଦଳର ରାଜନୀତିକ ନେତା (ଯେଉଁମାନେ ଗତ ଅଢ଼େଇ ବର୍ଷ ଗଣତନ୍ତ୍ର ନାମରେ ହରିଲୁଟ ଶାସନ କରି ବହୁ କଳାଟଙ୍କା ଉପାର୍ଜନ କରିଛନ୍ତି)

କିମ୍ବା ଅନ୍ତତଃ ପକ୍ଷେ ସେଇମାନଙ୍କ ପୁଅ–ପୁତୁରା–ଭାଇ–ଭିଣୋଇ ଅଥବା ଶଳା। ନତୁବା ବ୍ୟବସାୟୀ, କଣ୍ଟ୍ରାକ୍ଟର ଇତ୍ୟାଦିଙ୍କ ଦଳବଳ କି ପରିବାର। ଏବଂ ଏମାନେ ସମସ୍ତେ ଏଇ ତଥାକଥିତ ନିରୀହ ସରଳ ସୁନ୍ଦର ପଲ୍ଲୀଗ୍ରାମର ଅଧିବାସୀମାନଙ୍କୁ ଶୋଷଣ କରି, ଲୁଣ୍ଠନ କରି ଏମିତି ଆରାମରେ ବଞ୍ଚୁଛନ୍ତି ଓ ସେଇ ଲୁଣ୍ଠିତ ଧନକୁ ବଣ୍ଟନ କରି ଦାନୀପଣିଆ ଦେଖେଇ ହେଉଛନ୍ତି।

କଟକ ପୁରୀ ଜିଲ୍ଲାର କେତେକ ବନ୍ୟାପ୍ଲାବିତ ଅଞ୍ଚଳର ଲୋକେ ପୁଣି ଦୃଢ଼ଧାରଣା କରିଛନ୍ତି ଯେ ଏଇ ଆକସ୍ମିକ ବନ୍ୟାବିପ୍ଲାତର କାରଣ ହେଲା, କୁଆଡ଼େ କଟକ, ସମ୍ବଲପୁର, ଭୁବନେଶ୍ୱର ପ୍ରଭୃତି ସହରମାନ ଭାସି ଯିବ ବୋଲି ସରକାର ବା ତାଙ୍କ ଲୋକେ ମିଲିଟାରୀ ଲଗାଇ ବନ୍ଧମାନ ଗୁପ୍ତରେ କାଟିଦେଲେ। ଫଳରେ ସେ ସବୁ ସହରର ବାବୁଭାୟାମାନେ ଆରାମରେ ରହିଲେ ଓ ଗାଁ ମଳିମୁଣ୍ଡିଆମାନେ ପୋକମାଛି କରି କଲବଲ ହେଲେ। କୁଆଡ଼େ ବିରୋଧୀ ଦଳ ପକ୍ଷରୁ ଏମିତି ପ୍ରଚାର ହୋଇଛି।

କେତେକ ଜାଗାରେ ମୁଁ ଲୋକଙ୍କୁ ବିନୀତ ଭାବରେ ବୁଝାଇ କହିଲି – ଆରେ ଭାଇ। ମଳିମୁଣ୍ଡିଆ ଖାଲି ଗାଁରେ ନାହାନ୍ତି। ସହରମାନଙ୍କରେ ବି ତାଙ୍କର ସଂଖ୍ୟା କିଛି କମ ନୁହେଁ। ସହରୀ ମଳିମୁଣ୍ଡିଆମାନେ ବାହାରକୁ ସିନା ଏମିତି ଧୋବଧବଳ ଦିଶୁଛନ୍ତି ନ ହେଲେ ଭିତରେ ଭିତରେ ସେମାନଙ୍କ ଅବସ୍ଥା ତୁମମାନଙ୍କଠାରୁ ବି ଖରାପ। ତା' ଛଡ଼ା ଏଇ ସ୍ୱେଚ୍ଛାସେବକ ଭିତରୁ ବି ବହୁ ଲୋକ ଛାତ୍ର ଅଥବା ଅତି ସ୍ୱଳ୍ପ ବିତ୍ତ ଶ୍ରମିକ ବା ଚାକିରିଆ। କିନ୍ତୁ ଏ ସବୁ ଶୁଣିବାକୁ ସେମାନେ ରାଜି ନୁହନ୍ତି। ସେମାନେ ଦୃଢ଼ ଓ ହିଂସ୍ରକଣ୍ଠରେ କହୁଥାନ୍ତି ବାଜେ କଥା। ସବୁତକ ଚୋରତସ୍କର। ଏହି ଚୁଡ଼ା, ଚାଉଳ, ଲୁଗାପଟା ସବୁ ଆମରି ଧନ – ଆମରି ଧନ ଆମକୁ ଦଉଛନ୍ତି। ତାହା ପୁଣି ସମୁଦ୍ରକୁ ଶଙ୍ଖେ ପାଣି ଭଳିଆ।

ଆକାଶରେ ଏରୋପ୍ଲେନ ବା ହେଲିକପ୍‌ଟର ଉଡ଼ୁଥିବାର ଦେଖିଲେ ସେମାନଙ୍କ ହିଂସ୍ର ଈର୍ଷାକାତର କଣ୍ଠରୁ ସ୍ୱତଃ ବାହାରି ପଡୁଥାଏ – ଦେଖୁନ। ଆମକୁ ଟୋପେ କିରାସିନୀ ମିଳୁନି। ଏ ତସ୍କରମାନେ କେମିତି ମଜାରେ ତେଲ ପୋଡ଼ି ଉଡ଼ୁଛନ୍ତି– କଣ ନା ଆମେ ଦେଖୁଛୁ। କିଓ ଦେଖୁଛ କଣ? ଆମେ ତ ମରୁଛୁ। ତୁମେ ଦେଖୁଛ କଣ?

ମୁଁ ସେମାନଙ୍କୁ ବହୁ ଭାବରେ ବୁଝାଉଥାଏ ଯେ, କଥା ତା' ନୁହେଁ– ବନ୍ୟାରେ ରାସ୍ତାଘାଟ ବୁଡ଼ିଛି। ତୁମ ପାଖକୁ ଆସିବାକୁ ଉପାୟ ନାହିଁ। ତୁମମାନଙ୍କ ପାଖରେ ତୁରନ୍ତ ଖାଦ୍ୟଦ୍ରବ୍ୟ ପହଞ୍ଚାଇବାକୁ ଏ ବ୍ୟବସ୍ଥା। କିନ୍ତୁ ନାଃ – କିଏ କାହାର କଥା ଶୁଣେ। ସେମାନଙ୍କ ପାଟିରୁ ଅନର୍ଗଳ ଅସହିଷ୍ଣୁ ହିଂସ୍ର ଅଭିସଂପାତ ବାହାରୁଥାଏ।

ପ୍ରକାଶ ଥାଉ କି, ଏଭଳି ଅଭିସଂପାତ ଯେଉଁମାନଙ୍କ ପାଟିରୁ ବାହାରୁଥାଏ ସେମାନଙ୍କର ବୟସର ସୀମା ହେଲା ୨୦ ରୁ ୩୦ ଭିତରେ ଏବଂ ବ୍ରାହ୍ମଣଠାରୁ ହରିଜନଙ୍କ ପର୍ଯ୍ୟନ୍ତ ସବୁ ଜାତିର ଗ୍ରାମଣୀ ଯୁବଗୋଷ୍ଠୀ ଏହିଭଳି ମନୋଭାବ ଦେଖାଉଥାନ୍ତି।

କଟକ ଓ ପୁରୀ ଜିଲ୍ଲାର ଗ୍ରାମମାନ ଶତାବ୍ଦୀ ଶତାବ୍ଦୀ ଧରି ବନ୍ୟାବିପ୍ରାତ ଭୋଗୀ ଆସୁଥିଲେ। ଏ ସବୁ ଉପକୂଳ ଅଞ୍ଚଳରେ ନଈନାଳ ଜାଲ ଭଳି ଛନ୍ଦାଛନ୍ଦି। ୩୦-୪୦ ବର୍ଷ ପୂର୍ବେ ଭୟାବହ ବନ୍ୟାରେ ବହୁ ଧନଜୀବନ କ୍ଷତି ଘଟୁଥିଲା। ମାତ୍ର ବନ୍ୟାପରେ ବହୁ ଉପକାର ବି ହେଉଥିଲା। ଜମିରେ ପଟୁ ପଡୁଥିଲା। ରବି ଫସଲ ଭଲ ହେଉଥିଲା। ଲୋକେ କିଛିଦିନ ପ୍ରଚୁର ମାଛ ଧରି ଖାଉଥିଲେ। କିନ୍ତୁ ହୀରାକୁଦ ଓ ଅନ୍ୟାନ୍ୟ ବନ୍ଧବାଡ଼ ହେବା ଫଳରେ ଗତ ତିରିଶବର୍ଷ ଧରି ଆଉ ବନ୍ୟାର ନା ଗନ୍ଧ ନ ଥିଲା। ତେଣୁ ଗାଁ–ଗଣ୍ଡାରେ ଡଙ୍ଗା କି ନାହାର ସଂଖ୍ୟା କମି ଆସିଥିଲା। ଏ ସବୁ ଅଞ୍ଚଳରେ ଯୋଉ ସବୁ ପ୍ରକାଣ୍ଡ ପ୍ରକାଣ୍ଡ ବର, ଅଶ୍ୱତ୍ଥ, ଚାକୁଣ୍ଡା, ଆମ୍ବ, ପଣସଗଛ ବା ତୋଟାମାଳ ଥିଲା ତାହା ମଧ୍ୟ ଲୋକେ ସବୁ କାଟିକୁଟି ଜାଳି ସାରିଲେଣି। ତେଣୁ ବନ୍ୟାବେଳେ ଆଶ୍ରୟ ନେବାକୁ ବା ଗ୍ରାମ–ଗ୍ରାମ ଭିତରେ ସଂଯୋଗ ରଖିବାକୁ ଆଉ କିଛି ବର୍ତ୍ତମାନ ଉପାୟ ନାହିଁ। କେବଳ ବନ୍ଧବାଡ଼ ରହିଛି ଓ ଲୋକେ ତା' ଉପରେ ମଧ୍ୟ ଏଥର ଆଶ୍ରା ନେଲେ। ଯୋଗକୁ ଏଥର ବନ୍ୟାବେଳେ ବର୍ଷା ବା ପବନ ନଥିଲା, ନତୁବା ଅବସ୍ଥା ସଂଘାତିକ ହୋଇଥାନ୍ତା। ଆଉ ମଧ୍ୟ – ଏଥର ବନ୍ୟା ବଢ଼ିଲା ଯେମିତି ଜୋରରେ ଛାଡ଼ିଲା ମଧ୍ୟ ସେମିତି ଜୋରରେ। ଦିନକ ଭିତରେ ପାଣି କମିଗଲା। ଅବଶ୍ୟ ସମୁଦ୍ରର ନିକଟବର୍ତ୍ତୀ ଖାଲୁଆ ଅଞ୍ଚଳରେ ପୂର୍ଣ୍ଣିମା ଜୁଆର ଯୋଗୁଁ ବନ୍ୟାଜଳ ନିଷ୍କାସିତ ହେବାର କିଛି ଡେରି ହେଲା। ଏକଥା ନିଶ୍ଚିତ ଯେ, ବନ୍ୟା ଫଳରେ କଟକ, ପୁରୀ ଜିଲ୍ଲାର ଲୋକେ ଖୁବ୍ କଷ୍ଟ ପାଇଗଲେ, ମାତ୍ର ତାହା ଗୁଣ୍ଡୁପୁର ଅଞ୍ଚଳ ଭଳି ଏତେ ମାରାତ୍ମକ ନୁହେଁ। ଏଠି ସରକାରୀ ଓ ବେସରକାରୀ ସଂସ୍ଥାମାନଙ୍କରେ ସାହାଯ୍ୟ ଖୁବ ଶୀଘ୍ର ପହୁଞ୍ଚିଛି। ଆଗରୁ ଲୋକଙ୍କୁ ମଧ୍ୟ ସତର୍କ କରି ଦିଆଯାଇଛି ଓ ଏବେ ମଧ୍ୟ ସାହାଯ୍ୟ ଚାଲିଛି ଓ ବହୁବିଧି ଉପାୟରେ ଦୁର୍ଗତ ଲୋକଙ୍କୁ ସାହାଯ୍ୟ ଓ ଥଇଥାନ କରିବାଲାଗି ଉପାୟ କରାଯାଉଛି।

କିନ୍ତୁ କଟକ–ପୁରୀ ଗ୍ରାମାଞ୍ଚଳ ଲୋକଙ୍କ ମନୋଭାବ ଗତ ତିରିଶ ବର୍ଷ ଭିତରେ ବହୁତ ବଦଳି ଯାଇଛି। ପ୍ରଚୁର ସୁଯୋଗ ସତ୍ତ୍ୱେ, ଏସବୁ ଅଞ୍ଚଳର ଲୋକେ ତାର କିଛି ଉପଯୋଗ କରିନାହାନ୍ତି। ଏମାନେ ଭୀଷଣ ପରିଶ୍ରମ ବିମୁଖ, ଅଳସୁଆ ଏବଂ କଥା ଚାନ୍ଦିଆ। ଏ ଅଞ୍ଚଳର ମୂଲିଆମାନେ ଦିନକୁ ଦୁଇ ଘଣ୍ଟା ମଧ୍ୟ ଦେହ ଲଗେଇ ବିଲରେ କାମ କରନ୍ତି ନାହିଁ। ଲୋକେ କେବଳ ମାଲିମକଦ୍ଦମାରେ ମାତିଥାନ୍ତି ଏବଂ ଏବେ ଅଳ୍ପପାଠୁଆ ଯୁବକମାନେ ବେକାର ରହି କେବଳ ଫାଇତୁ ରାଜନୀତିରେ ମାତିଛନ୍ତି।

ଏମାନଙ୍କ ସଂଖ୍ୟା ବହୁତ ବଢ଼ିଗଲାଣି । ଏହି ବେକାର ଯୁବକମାନଙ୍କୁ କାର୍ଯ୍ୟ ଯୋଗାଇବା ପାଇଁ କୌଣସି ଉପାୟ ନାହିଁ ଏବଂ ଏମାନେ ମଧ୍ୟ ବିଲରେ ଚାଷ କରିବାକୁ ବିମୁଖ । ନିମ୍ନମାନର ନୀତି, ରୁଚି ଓ ଶିକ୍ଷା, ସଂସ୍କୃତିହୀନ, ଆଦର୍ଶହୀନ ରାଜନୀତିକ ନେତାମାନେ ଏମାନଙ୍କୁ ପାଳୁଲାପାଳୁଲି କରି ଗୋଡ଼ାଣିଆ କରି ରଖିଥାନ୍ତି ଏବଂ ଅସାଧୁ ଉପାୟରେ ଅର୍ଜିତ ଧନରୁ ଏମାନଙ୍କୁ କିଛି କିଛି ଦେଇ ହାତରେ ରଖନ୍ତି । ଫଳରେ ଏଇ ଯୁବଗୋଷ୍ଠୀର ମନୋଭାବ ଏମିତି ଈର୍ଷା, ହିଂସା ଓ ଦ୍ୱନ୍ଦାତ୍ମକ ହୋଇ ଉଠିଲାଣି । ଏମାନଙ୍କର ସେବା ମନୋଭାବ ବା କିଛି ଗଠନମୂଳକ ବୁଦ୍ଧି ବିକଶିତ ହେଉନାହିଁ । ରାଜନୀତିକ ନେତାମାନେ ମଧ୍ୟ ସେ ଦିଗରେ କିଛି ଯୋଜନା କରି ନାହାନ୍ତି ।

ଅଥଚ ଆମର ରାଜନୀତିକ ନେତାମାନେ ଭୋଟ୍‌ପାଇବା ଆଶାରେ କେବଳ ଗ୍ରାମବାସୀଙ୍କୁ ମୁହେଁ ମୁହେଁ ପ୍ରଶଂସା କରି ଚାଲିଛନ୍ତି । କିନ୍ତୁ ଗ୍ରାମବାସୀମାନେ କେମିତି ଯୋଜନାବଦ୍ଧ ଭାବେ କଠିନ ପରିଶ୍ରମ କରି ଉତ୍ପାଦନ ବୃଦ୍ଧି କରିବେ ଓ ଧନୀ ହେବେ, ସେ ଦିଗରେ କୌଣସି ନିଷ୍ଠାପର କର୍ମଧାରା ସୃଷ୍ଟିକରି ନାହାନ୍ତି, ଉତ୍ସାହ—ଉଦ୍ଦୀପନା ସୃଷ୍ଟି କରିନାହାଁଚି । ଫଳରେ ଆମ ରାଜ୍ୟକୁ ଯେତେ ପୋଟଳ, ଆଳୁ କୋବି, ବାଇଗଣ, ଟମାଟୋ, ଲଙ୍କା ଆଦି ଆସୁଛି – ଏପରି କି ଅଣ୍ଡା ଓ ମାଛ ମଧ୍ୟ ଆସୁଛି – ତାହା ଆସୁଛି ଆନ୍ଧ୍ର ଓ ରାଞ୍ଚି ଆଡୁ । ପ୍ରତିବର୍ଷ ତ ବନ୍ୟା—ମରୁଡ଼ି ବାତ୍ୟା ଆସୁଛି ଏବଂ ଆମ ନେତାମାନେ ତାକୁ ନେଇ ରାଜନୀତି କରୁଛନ୍ତି ଓ କେନ୍ଦ୍ରର ଦାନ ଟଙ୍କାରୁ କିଛି ବଣ୍ଟନ ମଣ୍ଡନ କରି ଓ କିଛି ରାଜନୀତି ପାଇଁ ବ୍ୟୟ କରି ଗ୍ରାମଲୋକଙ୍କୁ ଏମିତି ମାଗିଖିଆ ଓ ହୀନ ମନୋଭାବଗ୍ରସ୍ତ କରିସାରିଲେଣି । ଏଣେ ପୁଣି ଅତ୍ୟନ୍ତ ଭୁଲ ବାଟରେ ହରିଜନ ଓ ଆଦିବାସୀ କଲ୍ୟାଣ ନାମରେ ଗ୍ରାମେ ଗ୍ରାମେ ଲୋକଙ୍କ ଭିତରେ ଦ୍ୱନ୍ଦ, କଳହ ଓ ହିଂସା ଭର୍ତ୍ତି କରିଦେଲେଣି । ଗାଁଗହଳରୁ ପାରମ୍ପରିକ ଓ ଆଧୁନିକ ସଂସ୍କୃତି ଲୋପ ପାଇଗଲାଣି ଏବଂ ଅପସଂସ୍କୃତିର ପ୍ରସାର ବଢ଼ିଚାଲିଛି । ଗାଁ ଗହଳର ଉନ୍ନତି ପାଇଁ ଗାନ୍ଧୀଜୀ କ'ଣ ସବୁ ଚିନ୍ତା କରିଥିଲେ ଓ କି କି ପନ୍ଥା ବତାଇଥିଲେ, ତାହା ଆମ ରାଜନୀତିକ ନେତାମାନଙ୍କୁ ମାଲୁମ ନାହିଁ । ଫଳରେ ବର୍ତ୍ତମାନ ଆମର ଗାଁ—ଗହଳ ଅତ୍ୟନ୍ତ ଶୋଚନୀୟ ଭାବେ କେବଳ ଅର୍ଥନୈତିକ ଦୁର୍ଗତି ଭୋଗୁନାହିଁ – ନୈତିକ ଓ ଆଧ୍ୟାତ୍ମିକ ଅଧଃପତନ ମଧ୍ୟ ଘୋଟିଗଲାଣି । ଗ୍ରାମବାସୀମାନଙ୍କୁ ଅର୍ଥନୈତିକ ଦୃଢ଼ତା ଦେଇ ସେମାନଙ୍କୁ ଆତ୍ମପ୍ରତ୍ୟୟଶୀଳ, ଆତ୍ମମର୍ଯ୍ୟାଦାବୋଧସମ୍ପନ୍ନ କରିବା ବର୍ତ୍ତମାନ ସମସ୍ତଙ୍କର ଏକମାତ୍ର ଧ୍ୟେୟ ହେଉ । ଭୋଟ୍‌ପାଇବା ଲୋଭରେ ସେମାନଙ୍କୁ କେବଳ ପାକଳାପାକଳି କରି, ସାହାଯ୍ୟ ବାଣ୍ଟି, ସେମାନଙ୍କର ନୈତିକ ଜୀବନକୁ ଧ୍ୱଂସ କରା ନ ଯାଉ ।



# ଚୁମ୍ବନ ଦିଆ–ନିଆ ପ୍ରସଙ୍ଗରେ .....

୨୩/୨/୮୨

ସେଦିନ ଜଣେ ଖ୍ୟାତାନାମା କଥାଶିଳ୍ପୀଙ୍କ ବୈଠକଖାନାରେ କେତେଜଣ ପ୍ରୌଢ଼ ଲେଖକ ଓ କେତେଜଣ ଯୁବକ ବସି ପ୍ରସ୍ତୁତି ପଥରେ ରହିଥିବା ଗୋଟିଏ ରୋମାଣ୍ଟିକ୍ ଓଡ଼ିଆ କଥାଚିତ୍ରର ପ୍ରେମଦୃଶ୍ୟରେ ନାୟକ—ନାୟିକାଙ୍କ ଭିତରେ ମାତ୍ର ଦୁଇଟି ଚୁମ୍ବନର ଆଦାନପ୍ରଦାନ କରାଯିବ କି ନାହିଁ – ସେ ସମ୍ବନ୍ଧେ ଘମାଘୋଟ ଆଲୋଚନା କରୁଥିଲେ। ଯୁବକ ଚାରିଜଣ ଥିଲେ ସେହି ଚଳଚ୍ଚିତ୍ରଟିର ନିର୍ମାତା, ପ୍ରଯୋଜକ, ନିର୍ଦ୍ଦେଶକ ଓ ହିରୋ ଏବଂ ସେମାନେ ଚାହୁଁଥିଲେ – ଓଡ଼ିଆ ଚଳଚ୍ଚିତ୍ରରେ ଏହି ଚୁମ୍ବନଲୀଳା ଦେଖାଇ – ସେମାନେ ଏକ ଦୁଃସାହସିକ ବିପ୍ଳବର ପରିଚୟ ଦେବେ – ଏବଂ ସେନ୍‌ସରବୋର୍ଡ଼ ଯଦି ଅନୁମତି ନ ଦିଅନ୍ତି – ତେବେ ସେମାନେ ସାରା ଭାରତର ଚଳଚ୍ଚିତ୍ର ନିର୍ମାତାମାନଙ୍କୁ ମତାଇ ସେନ୍‌ସର ବିରୋଧରେ ଆନ୍ଦୋଳନ କରିବେ। ମାତ୍ର ବୈଠକଖାନାରେ ଉପସ୍ଥିତ ସ୍ୱୟଂ ପୌଢ଼ ଲେଖକ ଏବଂ ତାଙ୍କର ଅନ୍ୟ ତିନିଜଣ ପ୍ରୌଢ଼ ବନ୍ଧୁ ଏହି ଚୁମ୍ବନ ବ୍ୟାପାରଟି କିପରି ଘୋର ଅଶ୍ଳୀଳ ଏବଂ ଆଧ୍ୟାତ୍ମିକ ଦେଶ ଭାରତବର୍ଷର ସାଂସ୍କୃତିକ ପରମ୍ପରା ବିରୋଧୀ, ସେ ସମ୍ବନ୍ଧେ ଖୁବ୍ ଉଚ୍ଚ ସ୍ୱରରେ ଯୁକ୍ତି କରୁଥିଲେ ଏବଂ କେହି କାହାକୁ ସ୍ୱମତାନୁଗତ ନ କରି ପାରିବାରୁ ସମସ୍ୟାଟିକୁ ମୋ ଉପରକୁ ଛାଡ଼ି ଦିଆଗଲା। ମୁଁ ହସି ହସି କହିଲି– ଦେଖ ବନ୍ଧୁଗଣ! ମୁଁ ଆବାଲ୍ୟରୁ ବଡ଼ ଚୁମ୍ବନଖୋର। ଚୁମ୍ବନ ଭଳି ଏକ ନିର୍ଦ୍ଦୋଷ, ନିରୀହ ଓ ପ୍ରାୟ ଇ ନିରାମିଷ ଅଥଚ ଗଭୀର ଆହ୍ଲାଦଦାୟକ ବ୍ୟାପରକୁ ନେଇ ଏତେ କୁଣ୍ଠା, ଏତେ କାର୍ପଣ୍ୟ, ଏତେ ଭୟ ଓ ଏତେଦୂର ନୀତିରୂଚିବାଗୀଶତା ବା କାହିଁକି ?

ପାଶ୍ଚାତ୍ୟ ସମାଜରେ ଓ ସିନେମାରେ ଚୁମ୍ବନ ଦୃଶ୍ୟଟିକୁ ଦେଖି ମୋ ଭିତରେ କେବେ ଉଗ୍ର କାମଭାବ ଜାତ ହେବା କଥା ମୋର ମନେ ନାହିଁ। ବରଂ ଗୋଟିଏ ଗୋଟିଏ ଦୃଶ୍ୟରେ ଏକ ଏକ ଭାବଘନ ମୁହୂର୍ତ୍ତରେ ଦୀର୍ଘ ବା ହ୍ରସ୍ୱ ଚୁମ୍ବନଟିଏ ଦେବାର ବା ନେବାର ଦୁର୍ବାର ପ୍ରୟୋଜନୀୟତା ଥିଲାବେଳେ ଯଦି ତାହା କାର୍ଯ୍ୟକାରୀ ନ ହେଲା– ତେବେ ମତେ ଅଶ୍ୱସ୍ତି ଲାଗେ। ମୋର ପ୍ରଶ୍ନଟି ହେଲା– ନିବିଡ଼

ଭାବେ ଭଲ ପାଉଥିବା ଲୋକଟିକୁ ଏକ ଏକ ଦୁର୍ଲ୍ଲଭ ମୁହୂର୍ତ୍ତରେ କ'ଣ କ'ଣ ସବୁ ଦେଇ ଦେବାକୁ ଇଚ୍ଛା ହେଲାମାତ୍ରେ– ସେହି ପ୍ରଚଣ୍ଡ ଆବେଗତପ୍ତ ପ୍ରୀତିଭାବକୁ ମଣିଷ କିପରି ଚରିତାର୍ଥ କରିବ ? ପ୍ରେମପାତ୍ର ବା ପ୍ରେମପାତ୍ରୀର ଚନ୍ଦ୍ରମୁଖ, ପଦ୍ମମୁଖ, ବା ଗୁଲ୍ ବଦନରେ ତତ୍‌କ୍ଷଣାତ୍ ଚୁମାଟିଏ ମାତ୍ର ଦେଇ, ଆମେ ଆମ ପ୍ରୀତି–ପ୍ରତିଶ୍ରୁତିର ସ୍ୱାକ୍ଷରଟିଏ ମାତ୍ର ଦେଇଥାଉ। ସତକୁସତ ପ୍ରେମ କରୁଥିବା ଲୋକଟି ନିଧାର୍ଯ୍ୟ ଭାବେ ଜାଣେ ଯେ, ସେ ଚୁମ୍ବନଟିଏ ଦେଲାବେଳେ ତା'ର ସବୁ କିଛିକୁ ସେଇ ବାଟରେ ଦେଇ ଦେଉଥାଏ ଏବଂ ଚୁମ୍ବନଟି ଉପଭୋଗ କରୁଥିବା ପ୍ରୀତିପାତ୍ର ବା ପାତ୍ରୀଟି ମଧ ଜାଣେ ଯେ, ସେ ସେଇ ମୁହୂର୍ତ୍ତରେ ଚୁମ୍ବନଟି ମାଧମରେ ଅନେକ କଥା ବା ସବୁକଥା ପାଇଯାଉଛି। ତେଣୁ ଚୁମ୍ବନ କ୍ରିୟାଟିକୁ ଏତେ ଅଶ୍ଳୀଳ ଏବଂ ଯୌବନଭାବ ଉଦ୍ଦୀପକ ବୋଲି ଭାବି ଆମ ନାଟକ ସିନେମା ଜଗତରୁ ତାକୁ ବାଦଦେଇ ଆମେ ପ୍ରେମ ଦୃଶ୍ୟମାନ କେମିତି ଦେଖାଉଛୁ ?

ତା'ଛଡ଼ା– ଚୁମ୍ବନ କେବଳ ନାରୀ ପୁରୁଷ ବା ପ୍ରେମିକ ପ୍ରେମିକାଙ୍କର ଏକଚାଟିଆ ବ୍ୟାପାର କି ? ବାତ୍ସଲ୍ୟ ପ୍ରବଣ ମୁହଁଟି ଛାଏଁ ଛାଏଁ ନଇଁ ଆସେ ଶିଶୁଟିର ସରଳ ନରମ ଫୁଲ ପରି ମୁହଁଟି ଉପରକୁ। ନିସର୍ଗ ସୌନ୍ଦର୍ଯ୍ୟର ଭାବରେ ବିଭୋର ଓଠ ଦୁଇଟି ଛାଏଁ ଛାଏଁ ସୁନ୍ଦର ଫୁଲଟି ଉପରେ ଆପଣାକୁ ପରୀଷି ଦିଏ।

ଆଉ ଗୋଟିଏ କଥା– ଚୁମ୍ବନ ଯେ କେବଳ ଯୁବକ–ଯୁବତୀମାନଙ୍କର ଲୁଚାଚୋରା କାଣ୍ଡକାରଖାନା, ତା'ନୁହେଁ– ବୁଢ଼ାବୁଢ଼ୀମାନଙ୍କର ରକ୍ତ ଶିଥିଳ ହୋଇ ଆସିଥିଲେ ବି, କାମୋତ୍ତେଜନା ପ୍ରଶମିତ ହୋଇ ଯାଇଥିଲେ ବି, ସତକୁ ସତ ପ୍ରେମ କରୁଥିବା ବୁଢ଼ାବୁଢ଼ୀମାନେ ଅର୍ଥାତ୍ ପ୍ରଣୟରସରେ ତଥାପି ଜୁବୁବୁବୁ ହୃଦୟ–ବୁଢ଼ାବୁଢ଼ୀମାନେ ଚୁମାଟିଏ ଦେବାନେବା ଲାଗି କୁଣ୍ଠିତ ନୁହନ୍ତି କି ଦୁର୍ବଳ ନୁହନ୍ତି। ଚୁମ୍ବନଟିଏ ଦେବାର ଆଗ୍ରହ ଉପରେ ବାର୍ଦ୍ଧକ୍ୟର କିଛି ନିଷେଧନାମା ନାହିଁ କି ନିୟନ୍ତ୍ରଣ ନାହିଁ। ରାତିରେ ଶୋଇବା ପୂର୍ବରୁ ଓ ସକାଳେ ବିଛଣା ଛାଡ଼ିବା ପୂର୍ବରୁ ପ୍ରତିଦିନ ଅନ୍ତତଃ ପକ୍ଷେ ମାତ୍ର ଦୁଇ ଦୁଇଟି ଚୁମ୍ବନ ଦିଆନିଆ କରି ଆପ୍ୟାୟିତ ହେଉଥିବା ସତୁରି ଷାଠିଏ ବର୍ଷର ବୁଢ଼ାବୁଢ଼ୀଙ୍କ କଥା ମତେ ଜଣାଅଛି।

ମୋତେ ଥରେ ଜଣେ ଆଧାତ୍ମ ଭାବାପନ୍ନ ଅଥଚ ରୋମାଣ୍ଟିକ ପ୍ରେମିକ ବନ୍ଧୁ ତାଙ୍କର କଣ୍ଠରେ ଗଭୀର ବିଷାଦ ଓ କ୍ଷୋଭ ପ୍ରକାଶ କରି କହୁଥିବାର ମୋର ମନେ ଅଛି– ଏବଂ ତାଙ୍କର କଥା କେଇପଦ ମୋ ହୃଦୟରେ ବି ଗଭୀର ବିଷାଦର ରେଖା ଆଙ୍କି ଦେଇଛି। ସେ କହୁଥିଲେ– ବୁଝିଲ ବନ୍ଧୁ ! ଆଜିକୁ ତିରିଶି ବର୍ଷ ଧରି ତା'ର (ପ୍ରେମିକାର) ସର୍ବାବୟବ ଚୁମ୍ବନ କରି ଆସୁଛି। କିନ୍ତୁ ଆଜିପର୍ଯ୍ୟନ୍ତ ବି ତାର "ଆତ୍ମା" ନାମକ ଅଙ୍ଗ ବା ଅବୟବଟି କୋଉଠି ଅଛି– ତାର ସନ୍ଧାନ

ପାଇଲି ନାହିଁ। ବିଶ୍ବାସ କରି ବନ୍ଧୁ ଯୋଉ ଦିନ ମୁଁ ତାର (ପ୍ରେମିକାର) ସେହି ସର୍ବଶ୍ରେଷ୍ଠ ଅଙ୍ଗଟିର ସନ୍ଧାନ ପାଇବି ସେଇ ମୁହୂର୍ତ୍ତୁ ମୋର ମୃତ୍ୟୁ ପର୍ଯ୍ୟନ୍ତ ମୋର ଅଧରତାର ବରାଙ୍ଗରେ ଇ ଲାଖି ରହିବ ଆଉ ଛାଡ଼ିବ ନାହିଁ।

ତେବେ– ମୋ ଜାଣିବାରେ ଏମିତି ସବୁ ଅଲକ୍ଷଣା ସ୍ତ୍ରୀପୁରୁଷମାନଙ୍କୁ ମୁଁ ଜାଣେ, ଯେଉଁମାନେ ଚୁମ୍ବନ କ୍ରିୟାଟିକୁ ଅତି ଅସହ୍ୟ ବ୍ୟାପାର ବୋଲି ଚାରିଆଡ଼େ ପ୍ରଚାର କରନ୍ତି ଓ ନିଜେ ମଧ୍ୟ କାହାକୁ ଚୁମାଟିଏ ଜୀବନ ସାରା ଦେଇ ନାହାନ୍ତି କି ପାଇନାହାନ୍ତି। ପ୍ରଣୟ ଜଗତରେ ସେ ସବୁ ହତଲକ୍ଷ୍ମୀ ସ୍ତ୍ରୀପୁରୁଷମାନେ ଚୁମ୍ବନ ବିପକ୍ଷରେ ବହୁ ମନସ୍ତାତ୍ତ୍ଵିକ ଓ ବୈଜ୍ଞାନିକ ତତ୍ତ୍ଵ ତଥ୍ୟ ସମ୍ବଳିତ ପ୍ରମାଣ ବାକ୍ୟମାନ ଉଦ୍ଧାର କରିଥାନ୍ତି। ଥରେ ଜଣେ ମନସ୍ତାତ୍ତ୍ଵିକ ବନ୍ଧୁ ଚୁମ୍ବନ ବିପକ୍ଷରେ କହିଲେ– ଚୁମ୍ବନ ବ୍ୟାପାରଟି ହେଲା ଅସଲରେ ଏକ ଜାନ୍ତବ କାଣ୍ଡ କାରଖାନା। ଏହାର ମୂଳରେ ରହିଛି ଆଦିମ ଜନ୍ତୁର ଆଦିମ କ୍ଷୁଧା। ପ୍ରିୟ ଖାଦ୍ୟବସ୍ତୁଟିଏ ଆଗରେ ପାଇଲେ ତାକୁ ଗିଳିଦେବାକୁ, ଚୋବେଇ ଦେବାକୁ, ଶୋଷିଦେବାକୁ ଜନ୍ତୁଟିଏ ଉତ୍ତେଜିତ ବା ଉନ୍ମାଦିତ ହୋଇଉଠେ। କ୍ରମବିବର୍ତ୍ତନ ଫଳରେ ତୁମର ଯୌନକ୍ଷୁଧା ଓ ଉଦରକ୍ଷୁଧା ଆପାତତଃ ପୃଥକ୍ ହୋଇଛି ସିନା କିନ୍ତୁ ତୁମର ପାଟି ଭିତରେ ତା'ର ଗୋଟାଏ ପ୍ରଚ୍ଛନ୍ନ ପ୍ରଭାବ ରହିଛି। ତୁମେ କାହାକୁ ଚୁମା ଦେଲାବେଳେ ତୁମର ଅବଚେତନର ରସାତଳ ଗଭୀରତା ଭିତରୁ ଏବେବି ସେହି ଗିଳିଦେବାର ଉଗ୍ର କାମନାଟି ସାମାନ୍ୟରେ ହେଲେ ବି ଚରିତାର୍ଥ ହେଉଥାଏ। ଚୁମ୍ବନ ପଛରେ ପ୍ରେମପ୍ରୀତି ଇତ୍ୟାଦି ଥିବା କଥା ମିଛ।

ଆଉ ଥରେ ମୋର ଜଣେ ବିଜ୍ଞ ବନ୍ଧୁ ମୋ ପାଖରେ ଅକପଟ ଭାବରେ ପ୍ରକାଶ କଲେ ଯେ, ସେ ଜୀବନରେ କାହାକୁ ଚୁମାଟିଏ ଦେଇନାହାନ୍ତି କି ଚୁମାଟିଏ ପାଇନାହାନ୍ତି। ତାଙ୍କ ଭାଷାରେ– ଚୁମା ଦିଆଦେଇ ବ୍ୟାପରଟି ହେଲା ଗୋଟାଏ ଆଇଁଷିଣିଆ ଓ ଅଇଁଠା କରାକରି ଦିକ୍‌ଦାରି କାମ। ତା'ଛଡ଼ା – ତୁମେ ଭଲପାଉଥିବା ବହୁ ସ୍ତ୍ରୀପୁରୁଷର ଦାନ୍ତର ପାଇରିଆ ରୋଗରେ ଆକ୍ରାନ୍ତ ଥାନ୍ତି। ପୁଣି ଆଉ କେତେକଙ୍କ ଡେମେ ଯେତେ ଭଲ ପାଅ ପଛକେ ସେମାନଙ୍କର ମୁହଁରେ ଚୁମାଟିଏ ଦେବାକୁ ଭାରି ଘୃଣା ଆଉ ସଙ୍କୋଚ ଲାଗେ।

ଏବେ ଥରେ ଖବର ବାହାରିଥିଲା– ଜଣେ ବିଶ୍ଵବିଖ୍ୟାତ ଡାକ୍ତରଙ୍କ ମତରେ କୁଆଡ଼େ ଗୋଟିଏ ଚୁମ୍ବନରେ ଲକ୍ଷ ଲକ୍ଷ ରୋଗବାହୀ ଜୀବାଣୁମାନେ ମାତି ଉଠନ୍ତି ଏବଂ ଚୁମ୍ବନଦାତା ଓ ଗ୍ରହୀତାଙ୍କର ସ୍ନାୟୁମଣ୍ଡଳ ଅଯଥା ଉତ୍ତ୍ୟକ୍ତ ହେବା ଫଳରେ– ହିସାବକରି ଦେଖାଯାଇଛି ଯେ, ତଦ୍ଦ୍ଵାରା ବ୍ୟକ୍ତିର ଗୋଟିଏ ଚୁମ୍ବନରେ ଅଠର ସେକେଣ୍ଡ ଆୟୁ ନଷ୍ଟ ହୋଇଯାଉଛି।

ହାୟ ଦୁର୍ଦ୍ଦୈବ! ମୋର ବଡ଼ପୁଅ ଡାକ୍ତର। ମୁଁ ଜାଣେନା – ସେ ଏହି ହତଲକ୍ଷ୍ମୀ ବିଶ୍ୱବିଖ୍ୟାତ ଡାକ୍ତରଟିର ମତ ସହିତ ଏକମତ କି ନୁହେଁ। ତା' ଯଦି ହୋଇଥାଏ – ତେବେ ମୋର ଅଧ୍ୟାପିକା ବୋହୂଟି ଆଜି ପର୍ଯ୍ୟନ୍ତ କି ମନସ୍ତାପ ଭୋଗୁଥିବ– ସେକଥା ଭାବିଲେ ମୋ ଛାତି ହା ହା କାର କରି ଉଠୁଛି। କିନ୍ତୁ ଏକଥା ସତଯେ– ମୁଁ ମୋର ଅଧ୍ୟାପିକା କନ୍ୟାଟିକୁ ଆଉ କୋଉ ଡାକ୍ତର ଫାକ୍ତର ସାଙ୍ଗରେ ବାହାଦେବି ନାହିଁ। ଥାଆନ୍ତୁ ସେ ଡାକ୍ତରମାନେ ତାଙ୍କର ଜୀବାଣୁ ଆଉ ଫିଜ୍ ଓ ଫ୍ରିଜ୍ ଇତ୍ୟାଦିକୁ ନେଇ।

ପରମ ଧାର୍ମିକ ବିଶ୍ୱକବି ରବିନ୍ଦ୍ରନାଥଙ୍କ ଲେଖନୀ ନିଃସୃତ ଚୁମ୍ବନ ସଂପର୍କୀୟ କବିତା ଦୁଇଧାଡ଼ି ଶୁଣିବେ ?

"ଅଧରେର କାନେ ଯେନ,
ଅଧରେର ଭାଷା
ଦୌଁହାର ହୃଦୟ ଯେନ
ଦୌଁହେ ପାନ କରେ
ଗୃହ ଛେଡ଼େ ନିରୁଦ୍ଦେଶ
ଦୁ'ଟି ଭାଲୋବାସା
ତୀର୍ଥଯାତ୍ରା କରିୟାଛେ
ଅଧର ସଙ୍ଗମେ।

କିନ୍ତୁ ଡାକ୍ତର ?

ଆରେ ଯାଃ! ଡାକ୍ତର! ସେମାନଙ୍କୁ କୁହ, ଚୁମ୍ବନ–ବାହିତ–ଜୀବାଣୁଦ୍ୱାରା ରୋଗାକ୍ରାନ୍ତ ହୋଇ ମୃତ୍ୟୁବରଣ କରିବାକୁ ଏବେ ବି ପୃଥିବୀରେ କୋଟି କୋଟି ପ୍ରେମିକାପ୍ରେମିକ ପ୍ରସ୍ତୁତ ଅଛନ୍ତି। ସେମାନେ ଚୁମ୍ବନ–ଜନିତ–ଯନ୍ତ୍ରଣାରେ ଛଟପଟ ହେଲାବେଳେ କେବେହେଲେ ବି ଡାକ୍ତରଟାଏ ଡାକିବେ ନାହିଁ।

ଆହା! ସେହି ମାରାତ୍ମକ ଜ୍ୱାଳାମୟୀ ଗରଳାଧାରା ନାଗୁଣୀଟିର ଲହ ଲହ ମୁହଁରେ ଚୁମା ଦେଇ ଦେଇ ପ୍ରୀତି–ବିଷରେ ଘାରିହୋଇ ଢଳି–ପଡ଼ିଥିବା ପ୍ରେମିକ ଶିରୋମଣି ପୁରୁଷରତ୍ନଟିର କଥା ମୋର ବାରମ୍ବାର ମନେ ପଡ଼େ। ସେହି ପୁରୁଷୋତ୍ତମଟିର ଚରଣପଦ୍ମକୁ ମୋର ମନ–ଭ୍ରମର ଯେପରି ଦିନକୁ ଅନ୍ତତଃ ଶହେଟି ବାର ଚୁମ୍ବନ ଦିଏ।...

ତା'ହେଲେ ସିନେମାରେ ?

ମୋ ମତରେ– ଆମ ସିନେମାର ପ୍ରତିଟି ଦୃଶ୍ୟ ଯେମିତି ହୋଇଉଠେ ଲକ୍ଷେ ଚୁମ୍ବନରେ ସଙ୍କୁଳାୟିତ– ଅଥବା ଅଜସ୍ର ଚୁମ୍ବନ ସୁଧାରେ ମଧୁରାୟିତ ପରିପ୍ଳାବିତ।।

■■

# ନୂତନ ସ୍ୱପ୍ନ, ନୂତନ ସଂକଳ୍ପ ଓ ନୂତନ ଉଦ୍ୟମ

ଊନବିଂଶ ଶତାବ୍ଦୀର ମଧ୍ୟଭାଗରୁ ଶେଷ ପର୍ଯ୍ୟନ୍ତ ବିଶ୍ୱର ଚିନ୍ତା-ଚିନ୍ତନ-କ୍ଷେତ୍ରରେ ମହା ଆଲୋଡ଼ନ ସୃଷ୍ଟି କରିଥିବା ଦାର୍ଶନିକ ନିତ୍‌ସେ ତାଙ୍କର ''ଦସ୍ ସେକ୍ ଜରାଥୁଷ୍ଟ୍ର'' (ଜରାଥୁଷ୍ଟ୍ରଙ୍କ ବାଣୀ) ଗ୍ରନ୍ଥରେ ଓ ତାଙ୍କର ଅନ୍ୟାନ୍ୟ ଗ୍ରନ୍ଥରେ ଗଭୀର ଭାବାବେଗପୂର୍ଣ୍ଣ ଅଥଚ ଅକାଟ୍ୟ ଯୁକ୍ତି ଦେଇ ଭବିଷ୍ୟବାଣୀ କରିଥିଲେ—''ହୁଏତ ମନୁଷ୍ୟ ନିଜର ବର୍ତ୍ତମାନର ସୀମାକୁ ଅତିକ୍ରମ କରିବ— ନତୁବା ଧ୍ୱଂସ ପାଇଯିବ''। ମନୁଷ୍ୟର ବର୍ତ୍ତମାନର ସୀମା କହିଲେ ନିତ୍‌ସେ ବୁଝିଥିଲେ ଯେ, ମଣିଷ ବର୍ତ୍ତମାନ ତାର ସଭ୍ୟତା, ସଂସ୍କୃତି, ଜ୍ଞାନବିଜ୍ଞାନ, ଧର୍ମ ଓ ନୈତିକତା ଇତ୍ୟାଦି ନେଇ ଯେତେ ତମ୍ବୁତୋଫାନ୍ ଆସ୍ଫାଳନ କରୁ ନା କାହିଁକି, ପ୍ରକୃତ ସ୍ୱରୂପରେ କିନ୍ତୁ ମଣିଷ ''ଘାସକୁ ଲମ୍ବ ଓ ପାଳକୁ ଛୋଟ'' ଏହିପରି ଏକ ମଧ୍ୟବର୍ତ୍ତୀ ଅବସ୍ଥାରେ ରହି ଅତି ଦୟନୀୟ ଓ ଅସହାୟ ଭାବରେ କେବଳ ବଂଚିବା ପାଇଁ ଲାଗି ପଡ଼ିଛି। ମଣିଷ ନା ଦେବତାସ୍ତରକୁ ଉଠି ପାରୁଛି ନା ପଶୁସ୍ତରକୁ ସଂପୂର୍ଣ୍ଣ ଓହ୍ଲାଇ ପାରୁଛି !! ମନୁଷ୍ୟ ନା ପକ୍ଷୀରାଜ ଗରୁଡ଼ (ଇଗଲ) ପରି ମହାକାଶକୁ ଭେଦି ପାରୁଛି, ନା, ସର୍ପରାଜ ବାସୁକୀ (ସର୍‌ପେଣ୍ଟ) ପରି ପାତାଳ (ଆବିସ) କୁ ଭେଦି ପାରୁଛି। ମଣିଷ ନା ଶୀର୍ଷ ଦେଶକୁ ଉଡ଼ିଯାଇ ପାରୁଛି, ନା ଗଭୀରତମ ଗହ୍ୱର ଭିତରକୁ ଖସିଯାଇ ପାରୁଛି ! ସେ ଅସୁରଠାରୁ ଖୁବ୍ ଦୁର୍ବଳ, ହୀନବୀର୍ଯ୍ୟ ଏବଂ ଦେବତା ଠାରୁ ମଧ୍ୟ ତେଜ ଓ ମହାନତାରେ ଖୁବ୍ କ୍ଷୀଣ।

ନିତ୍‌ସେ ତେଣୁ ମନୁଷ୍ୟକୁ ଉଦ୍‌ବୋଧନ ଦେଇ କହିଥିଲେ – ମଣିଷ ଯେପରି ଏ ବିଶ୍ୱରେ ସର୍ବଶକ୍ତିମାନ ହୋଇ ବଂଚୁ। ଏକ ମହାଦାନବୀୟ ଅଥଚ ସମ୍ଭ୍ରାନ୍ତ-ଶକ୍ତି-ସଂପନ୍ନ ମନୁଷ୍ୟ ଜାତିର କଳ୍ପନା କରୁଥିଲେ ନିତ୍‌ସେ। ସେହି ମଣିଷ ଯେପରି ଆମର ରାବଣେଶ୍ୱର ପରି ମହାନ୍ ଗାରିମା ଓ ଶକ୍ତିସାମର୍ଥ୍ୟର ଅଧିକାରୀ ହେବ ଏବଂ ସ୍ୱର୍ଗ-ମର୍ତ୍ତ୍ୟ-ପାତାଳର ଅଧୀଶ୍ୱର ହେବ। ମଣିଷ ଚେତନାରେ ଏ ଯାବତ ପ୍ରତିଷ୍ଠିତ ରହି ମନୁଷ୍ୟକୁ ସର୍ବଦା ଭୟଭୀତ କରି ସାନ ଓ ଦୀନହୀନ କରି ରଖିଥିବା ସ୍ୱୟଂ ଈଶ୍ୱରଙ୍କୁ ମଧ୍ୟ ସେ ଅସ୍ୱୀକାର କରି ପାରିବ, ଆହ୍ୱାନ କରିପାରିବ। ଏହା ସହିତ ନିତ୍‌ସେ ମନୁଷ୍ୟପାଇଁ ଏହା ମଧ୍ୟ ଚାହିଁଥିଲେ ଯେ ମନୁଷ୍ୟ ଯେପରି ଏଇସବୁ ଛୋଟ ଛୋଟ ପାପପୁଣ୍ୟ ସୁଖଦୁଃଖମୂଳକ କ୍ରିୟା ଓ ତଜ୍ଜନିତ ପ୍ରତିକ୍ରିୟାଦିରୁ ମୁକ୍ତ ହୋଇ ମହାନ୍ ବିରାଟ ଓ ଦୁମୂଳ କୀର୍ତ୍ତିକଳାପର କର୍ତ୍ତା ହୋଇପାରିବ। ମୋଟ

ଉପରେ ଭବିଷ୍ୟତରେ ମଣିଷ ଯେମିତି ଏପରି ଅତିମାନୁଷିକ ଶକ୍ତି ସାମର୍ଥ୍ୟର ଅଧିକାରୀ ହେବ – ଯେପରି କି ସେ ତାର ପ୍ରଚଣ୍ଡ ସଂକଳ୍ପ ଓ ଅପରିମିତ ଉଦ୍ୟମଦ୍ୱାରା ନିଜର ନିୟତିକୁ ନିଜ ହାତରେ ରଖିପାରିବ। ମନୁଷ୍ୟ ନିଜେ ହିଁ ନିଜର ପ୍ରଭୁ ହୋଇପାରିବ।

ଅବଶ୍ୟ ଘୋର ପରିତାପର ବିଷୟ ଯେ ନିତ୍‌ସେଙ୍କର ଏହି ମହାନ୍ ସ୍ୱପ୍ନ ଓ ସଂକଳ୍ପମୂଳକ ଦର୍ଶନର ବିକୃତ ବ୍ୟାଖ୍ୟା ଓ ଅପବ୍ୟବହାର କରିଥିଲେ ସ୍ୱୟଂ ନାଜୀ ସମ୍ରାଟ ହିଟ୍‌ଲର ଓ ତାଙ୍କର ଅନୁଗାମୀମାନେ। ହିଟ୍‌ଲର ନିଜେ ନିଜକୁ କାଳପ୍ରେରିତ ସେହି ଅତିମାନବ ବୋଲି ମନେ କରିଥିଲେ ଏବଂ କେତେକ ପଣ୍ଡିତ ମତ ଦିଅନ୍ତି ଯେ ଦ୍ୱିତୀୟ ମହାଯୁଦ୍ଧ ପଛରେ ନିତ୍‌ସେଙ୍କ ଦର୍ଶନର ଏହି ବିକୃତ ବାଖ୍ୟା ଓ ବୁଝାମଣାଟି ହିଁ ପ୍ରଧାନ କାରଣ ଥିଲା।

କିନ୍ତୁ ସେ ଯାହା ହେଉ– ନିତ୍‌ସେଙ୍କ ଦର୍ଶନ ଊନବିଂଶ ଓ ବିଂଶ ଶତାବ୍ଦୀର ବହୁ ବିଶ୍ୱ ହିତୈଷୀ ମନିଷୀମାନଙ୍କୁ ଖୁବ ଶୁଭ ପ୍ରେରଣା ଯୋଗାଇଥିଲା। ମନସ୍ତତ୍ତ୍ୱବିଦ୍ ଆଡ୍‌ଲର, ଦାର୍ଶନିକ ସ୍ୱାଇଜର, ଦାର୍ଶନିକ ନାଟ୍ୟକାର ବାର୍ଣ୍ଣାଡ୍‌ସ, ସାହିତ୍ୟସ୍ରଷ୍ଟା ରିଲ୍‌କେ, ଥମାସମାନ, ହରମାନ ହେସ, ଆଣ୍ଡ୍ରେଗାଇଡ୍ ପ୍ରମୁଖ ବିଶ୍ୱବିଶ୍ରୁତ ପ୍ରଭାବଶାଳୀ ବ୍ୟକ୍ତିମାନେ ନିତ୍‌ସେଙ୍କ ଦର୍ଶନଦ୍ୱାରା ବ୍ୟକ୍ତିଗତ ଭାବେ ମଧ୍ୟ ଅନୁପ୍ରାଣିତ ହୋଇଥିଲେ। ବାର୍ଣ୍ଣାଡ୍‌ସଙ୍କ "ମ୍ୟାନ ଆଣ୍ଡ୍ ସୁପରମ୍ୟାନ" (ମାନବ ଓ ଅତିମାନବ) ନାଟକରେ ମନୁଷ୍ୟର ଅତିମାନବରେ ପରିଣତ ହେବା ଯେ ଅବଶମ୍ଭାବୀ ଏହି ତତ୍ତ୍ୱ ହିଁ ପ୍ରକଟିତ ହୋଇଛି।

ଏହିପରି ଭାବେ ଦେଖାଯାଇପାରେ ଯେ ଊନବିଂଶ ଶତାବ୍ଦୀଠାରୁ ମଧ୍ୟଯୁଗ ପର୍ଯ୍ୟନ୍ତ ସାରା ବିଶ୍ୱରେ ସଚେତନ ମନୁଷ୍ୟମାନେ ନିଜର କ୍ଷୁଦ୍ର ମାନବୀୟ ସୀମାକୁ ଅତିକ୍ରମ କରି ଏକ ଅତିମାନବିକ ସ୍ତରକୁ ଯିବାଲାଗି ଅନ୍ତତଃ ସ୍ୱପ୍ନ ଦେଖୁଥିଲେ। ବିଂଶଶତକର ପ୍ରଥମଭାଗରେ ସୋଭିଏତ୍ ରକେଟ୍–ବିଜ୍ଞାନର ଜନ୍ମଦାତା କନଷ୍ଟାଣ୍ଟିନ୍ ସିଓଲ୍‌ଡ୍‌ଭସ୍କି ଖୁବ୍ ଦୃଢ ସ୍ୱରରେ ଭବିଷ୍ୟବାଣୀ କରିଥିଲେ – ମଣିଷକୁ ଖୁବ୍ ଶୀଘ୍ର ଏ ପୃଥିବୀ ଛାଡ଼ି ମହାକାଶ ଅଭିଯାନରେ ଯିବାକୁ ପଡ଼ିବ। କାରଣ ପାର୍ଥିବ ଜୀବଟିଏ ମାତ୍ର ହୋଇ ଏହି ପୃଥିବୀର ମାଟିକୁ କାମୁଡ଼ି ଧରି ସେ ଏହି ଅନନ୍ତ ରହସ୍ୟମୟ ଓ ଶ୍ୱାସରୁଦ୍ଧକାରୀ ମହାକାଶକୁ ଚାହିଁ ଭୀତତ୍ରସ୍ତ ଓ ଦୀନହୀନ ଅବସ୍ଥାରେ ଆଉ ବେଶିକାଳ ବଞ୍ଚି ରହିପାରିବ ନାହିଁ। ଏହି ପୃଥିବୀଟି ମନୁଷ୍ୟ ଜାତିପାଇଁ ଏକ ଶୈଶବକାଳୀନ ଦୋଳିଖଟ (କ୍ରାଡ୍‌ଲ) ସତ୍ୟ, ମାତ୍ର ମନୁଷ୍ୟ କ'ଣ ଚିରଦିନ ସେଇ ଶୈଶବକାଳୀନ ଦୋଳି ଖଟରେ ଶିଶୁଟିଏ ହୋଇ ଶୋଇ ରହିଥିବ?

ସିଓଲଡ୍‌ଭସ୍କିଙ୍କ ପରି ଆଉ ଅନେକ ବିଶିଷ୍ଟ ବୈଜ୍ଞାନିକ ଦାର୍ଶନିକ ମଧ୍ୟ ମତ ଦେଇଛନ୍ତି ଯେ ମନୁଷ୍ୟ ଯଦି ଏଇ ପୃଥିବୀ ଓ ପାର୍ଥିବ ଜୀବନଟିକୁ ହିଁ ତାର ଏକମାତ୍ର ସୁଖ ଶାନ୍ତିର ହେତୁ ବୋଲି ଭାବି, କେବଳ ତାକୁଇ ଜାବୁଡ଼ି ଧରିଥାଏ

ଏବଂ ଏହି ପୃଥିବୀ ଓ ପାର୍ଥିବ ଜୀବନକୁ ଅନନ୍ତ କାମଧେନୁଟିଏ ବୋଲି ଭାବି ଆପଣାର ସମସ୍ତ କାମନାର ପୂରଣ ଲାଗି ତାକୁଇ ଅନନ୍ତ କାଳ ପର୍ଯ୍ୟନ୍ତ ଦୋହନ କରି ଚାଲିଥାଏ ... ତେବେ ମଣିଷକୁ ଶେଷ ପର୍ଯ୍ୟନ୍ତ ନିରାଶ ହେବାକୁ ହେବ ଏବଂ ଏହି ନୈରାଶ୍ୟ ବୋଧରୁ ସେ ହଠାତ୍ ଉନ୍ମାଦଗ୍ରସ୍ତ ହୋଇ ପରସ୍ପର ସହିତ ଯୁଦ୍ଧ କନ୍ଦଳରେ ମାତି ଉଠିବ... ପରିଣାମରେ ମଣିଷମାନେ ନିଜ ନିଜ ହାତରେ ନିଜକୁ ହିଁ ଧ୍ୱଂସକରି ଚାଲିବେ।

ଏହି ଶତାବ୍ଦୀର ଭାରତୀୟ ମହାଯୋଗୀ ଓ ଯୁଗପୁରୁଷ ଶ୍ରୀ ଅରବିନ୍ଦ ମଧ୍ୟ ଦୃଢ଼ ସିଦ୍ଧାନ୍ତ ଦେଇ କହିଛନ୍ତି – ମନୁଷ୍ୟ ତାର ପୂର୍ଣ୍ଣ ବିକଶିତ ବୌଦ୍ଧିକତା ବା ମାନସିକତାକୁ ଆଶ୍ରୟ କରି ତାର ଉନ୍ନତିର ଚରମ ସୀମାରେ ଆସି ପହଞ୍ଚିଗଲାଣି। କିନ୍ତୁ ଏହାପରେ ତାକୁ ନିଶ୍ଚିତ ଭାବେ ଅତିମାନସିକ ବା ଆତ୍ମିକ ସ୍ତରରେହିଁ ଉପନୀତ ହେବାକୁ ପଡ଼ିବ। ଏହା ଏକ କଳ୍ପନା ନୁହେଁ, ମନୁଷ୍ୟ ନିୟତିର ଏହାହିଁ ଅନିର୍ବାର୍ଯ୍ୟ ପରିଣତି। ପୁନଶ୍ଚ ଶ୍ରୀ ଅରବିନ୍ଦ ନିଜେ ସ୍ୱୀକାର କରିଛନ୍ତି ଯେ, ମନୁଷ୍ୟର ଏହି ଊର୍ଦ୍ଧ୍ୱାୟନ ପାଇଁ ଯେଉଁ ଅତିମାନସ ଶକ୍ତି ଓ ଚେତନାର ଆବଶ୍ୟକତା ଥିଲା, ତାହା ସେ ନିଜେ ନିଜର ଦୀର୍ଘ ଓ କଠିନ ଯୋଗ ତପସ୍ୟା ବଳରେ ଊର୍ଦ୍ଧ୍ୱରୁ ଏହି ପୃଥିବୀକୁ ଅବତରଣ କରାଇ ଆଣିଛନ୍ତି। ପାର୍ଥିବ ଜୀବନର ଦିବ୍ୟରୂପାନ୍ତର ଏଣିକି ଅବଶ୍ୟମ୍ଭାବୀ। ବର୍ତ୍ତମାନ ପୃଥିବୀରେ ଯେଉଁ ସବୁ ଅଭୂତପୂର୍ବ ନାରକୀୟ ଘଟଣାଗୁଡ଼ିକ ଦେଖାଯାଉଛି, ଶ୍ରୀ ଅରବିନ୍ଦଙ୍କ ମତରେ ସେ ସବୁ ଉଷାକାଳ ଆସିବା ପୂର୍ବରୁ ରାତ୍ରିର ଅନ୍ଧକାର ଘନୀଭୂତ ହେଲାଭଳି ବ୍ୟାପାର, ମନୁଷ୍ୟ ଜାତିର ଭାଗ୍ୟାକାଶରେ ଏ କାଳରାତି, ଖୁବ୍ ଶୀଘ୍ର ପାହିଯିବ ଓ ସୌଭାଗ୍ୟର ସୂର୍ଯ୍ୟୋଦୟ ଆଉ ବେଶୀ ଡେରି ନାହିଁ।

ଶ୍ରୀ ଅରବିନ୍ଦ ପୁନଶ୍ଚ କହନ୍ତି – ବର୍ତ୍ତମାନ ହିଁ ସେହି ବିରାଟ ପରିବର୍ତ୍ତନର ଦିବ୍ୟମୁହୂର୍ତ୍ତ। ଏହି ମୁହୂର୍ତ୍ତର ସୁଯୋଗ ଯଦି ନିଆ ନ ଯାଏ, ତେବେ ଏ ଲଗ୍ନ ଗଡ଼ିଯିବ ଏବଂ ଅଭ୍ୟୁଦୟର ସେହି ସୁବର୍ଣ୍ଣ ଯୁଗଟି ଆଉଥରେ ଆସିବା ପାଇଁ ଖୁବ୍ ଡେରି ହୋଇଯିବ।

ଏ ସବୁ କଥାକୁ ବିଚାର କଲେ ମନରେ ଏହା ହିଁ ଦୃଢ଼ ସିଦ୍ଧାନ୍ତ ହୋଇଯାଏ ଯେ, ବର୍ତ୍ତମାନ ମଣିଷ ପାଇଁ ଏହା ହିଁ ଏକମାତ୍ର ସ୍ୱପ୍ନ ଏବଂ ଏହାହିଁ ଏକମାତ୍ର ବିଶ୍ୱାସ। ଆଜି ସାରା ଜଗତରେ ଓ ଆମ ନିଜ ଦେଶରେ ଯେଉଁ ସବୁ ସଙ୍କଟ ଓ ଦୁରନ୍ତ ସମସ୍ୟାମାନ ଦେଖା ଦେଇଛି – ସେ ସବୁ ହେଲା କ୍ଷୀଣାୟୁ ପୁରାତନର ଶେଷଥର ପାଇଁ ମରଣାନ୍ତକ ସଂଗ୍ରାମ। ତେଣୁ ଏଇ ସବୁ ସଙ୍କଟ ଓ ସମସ୍ୟାର ସମାଧାନ ଆଉ ସେଇ ସବୁ ପୁରାତନ ପନ୍ଥାରେ କରିହେବ ନାହିଁ। ପୁରାତନ କୌଶଳ ମଧ୍ୟ ଆଉ କାମ ଦେବନାହିଁ। ବର୍ତ୍ତମାନ ଦରକାର ନୂତନ ସଙ୍କଳ୍ପ ଓ

ନୂତନ ଉଦ୍ୟମ। ଧର୍ମଠାରୁ ରାଜନୀତି ପର୍ଯ୍ୟନ୍ତ ଏବଂ ଶିକ୍ଷା ସଂସ୍କୃତିଠାରୁ ବିଜ୍ଞାନ ଓ ଅର୍ଥନୀତି ପର୍ଯ୍ୟନ୍ତ, ଜୀବନର ପ୍ରତିଟି କ୍ଷେତ୍ରରେ ଆମକୁ ଆଉ ଏକ ନୂତନ ମୂଲ୍ୟବୋଧ ଆବିଷ୍କାର କରିବାକୁ ପଡ଼ିବ। ଏଥିପାଇଁ ସର୍ବକ୍ଷେତ୍ରରେ ଆବଶ୍ୟକ ଏକ ଚରମ ଦୁଃସାହସିକତାର ଅଭିଯାନ।

ଏବଂ ଏ କଥା ମଧ୍ୟ ସମାନ ସତ୍ୟ ଯେ ଆଜି ବିଶ୍ୱର ସର୍ବତ୍ର ଯେଉଁମାନେ ସମାଜ ବା ରାଷ୍ଟ୍ରର ଭାଗ୍ୟ ଡୋରି ହାତରେ ଧରି ସମାଜ ବା ରାଷ୍ଟ୍ରକୁ ସେଇ ପୁରାତନ ଢଙ୍ଗରେ ଏବଂ କୌଶଳରେ ପରିଚାଳନା କରିବାକୁ ବସିଛନ୍ତି, ସେହି କ୍ଷୁଦ୍ର ନେତାମାନେ ଖୁବ୍ ଶୀଘ୍ର ଚରମ ବ୍ୟର୍ଥତାର ଦର୍ପଣରେ ନିଜ ନିଜର ଭଗ୍ନ ଓ ବିଭଙ୍ଗରୂପ ଦେଖି ମର୍ମାହତ ହେବେ ଓ ନିରାଶ ହେବେ।

❋❋

# ଧନବଳ ବା ଧର୍ମବଳ

ସ୍ୱାଧୀନତାର ବହୁବିଧ ଅବଦାନ ଭିତରୁ ପ୍ରଧାନ ଅବଦାନଟି ହେଲା ନିର୍ଭୟତା। ତା' ଅର୍ଥ—ଗୋଟିଏ ବ୍ୟକ୍ତି ବା ଜାତି ବା ଗୋଟିଏ ସମାଜ ନିଜକୁ ଯଥାର୍ଥରେ ସ୍ୱାଧୀନ ବୋଲି ଭାବିବ ସେତିକି ବେଳେ—ଯେତେବେଳେ ସେ ଅନୁଭବ କରିବ ଯେ, ତା'ର ଆଉ କାହାଠାରୁ ଭୟ ବା ଆଶଙ୍କା ବା ଉଦ୍‌ବେଗ ପାଇବାର ନାହିଁ। ଅବଶ୍ୟ ଏ କ୍ଷେତ୍ରରେ ଆମେ ସ୍ୱାଧୀନତା ଶବ୍ଦଟିକୁ ସମ୍ପୂର୍ଣ୍ଣ ସାମାଜିକ ବା ରାଜନୈତିକ ଦୃଷ୍ଟକୋଣରୁ ବ୍ୟବହାର କରୁଛୁ। ମଣିଷ ଏପରି ଗୋଟିଏ ରାଷ୍ଟ୍ର ବା ସମାଜ ଚାହେଁ ଯେଉଁଠି ସେ ଭୟଶୂନ୍ୟ ଚିତ୍ତରେ ଶାନ୍ତିରେ ଜୀବନଯାତ୍ରା ନିର୍ବାହ କରିପାରିବ। ତା'ର ପ୍ରବଳ ପରାକ୍ରମଶାଳୀ ସ୍ୱେଚ୍ଛାଚାରୀ ରାଜାକୁ ଭୟ ନ ଥିବ—ତା' କର୍ମଚାରୀମାନଙ୍କୁ ଭୟ ନଥିବ—ଚୋର ଡକାୟତଙ୍କ ପ୍ରାଦୁର୍ଭାବକୁ ଭୟ ନ ଥିବ—ଅସାମାଜିକ ଦୁର୍ବୃତ୍ତମାନଙ୍କ ଉତ୍ପୀଡ଼ନକୁ ଭୟ ନ ଥିବ—ତା'ଠାରୁ ସବୁ ଦିଗରୁ ସବଳ ଓ ସକ୍ଷମ ଲୋକମାନଙ୍କ ଖିଆଲ ଓ ଜିଦ୍ ପ୍ରତି ଭୟ ନ ଥିବ। ଅଚାନକ ସଂକ୍ରାମକ ରୋଗର ଆକ୍ରମଣ ପ୍ରତି ଭୟ ନଥିବ। କୌଣସି ସମାଜିକ ବା ରାଜନୈତିକ ସିଦ୍ଧାନ୍ତ ବା କାର୍ଯ୍ୟକ୍ରମ ଯଦି ତା'ମନକୁ ନ ପାଏ, ତେବେ ତା' ବିରୋଧରେ ସ୍ପଷ୍ଟ ମତବ୍ୟକ୍ତ କରିବାକୁ ମଧ ଭୟ ନଥିବ। ତା'ର ବ୍ୟକ୍ତିଗତ ଇଜ୍ଜତ ବା ସମ୍ମାନର କେହି ଅବମାନନା କରିବାର ଭୟ ନ ଥିବ। ତା' ହେଲେ ଯାଇ ବ୍ୟକ୍ତିଟିଏ ଭାବିବ ଯେ, ସେ ସତକୁ ସତ ଗୋଟିଏ ସ୍ୱାଧୀନ ସମାଜ ବା ରାଷ୍ଟ୍ରରେ ବାସ କରୁଛି ଓ ନିର୍ଭୟରେ ଶାନ୍ତିରେ ଜୀବନ ଅତିବାହିତ କରୁଛି। ଗୋଟିଏ ଦୃଷ୍ଟିରୁ ଦେଖିଲେ—ସ୍ୱାଧୀନ ସମାଜର ମଣିଷଟିଏ ନିଜେ ଯେପରି କାହାଠାରୁ ଭୟ ବା ଉଦ୍‌ବେଗ ପାଇବାର କଥା ନୁହେଁ—ସେହିପରି ନିଜେ ମଧ ଆଉ କାହାପ୍ରତି ଭୟ ବା ଉଦ୍‌ବେଗର କାରଣ ହେବା ଉଚିତ ନୁହେଁ।

ଭାରତବର୍ଷ ବିଦେଶୀ ଶାସନରୁ ମୁକ୍ତହୋଇ ସ୍ୱାଧୀନ ଜାତିଟିଏ ଭାବରେ ବଞ୍ଚିବାର ସାଧନା କରିଆସୁଛି ପ୍ରାୟ ଚାଳିଶିଟି ବର୍ଷ ହେଲା ଏବଂ ବହୁବର୍ଷ ଧରି ନାନାବିଧ ଭୟ, ଆଶଙ୍କା ଗ୍ଲାନି ଓ ଅନୁଶୋଚନାରେ ମ୍ରିୟମାଣ ହୋଇ ବଞ୍ଚିଥିବା ଏହି ମହାନ୍ ଜାତିକୁ ନୂତନ ଭାରତର ନିର୍ମାତାମାନେ, ସ୍ୱାଧୀନତା ସଂଗ୍ରାମରେ ଜୟଯୁକ୍ତ ବୀର ଜାତୀୟ ନେତାମାନେ, ଏହି ନିର୍ଭୟ ପ୍ରତିଶ୍ରୁତି ଦେଇଥିଲେ ଯେ, ଏହି ମହାନ୍ ଜାତିର ପ୍ରତ୍ୟେକ ବ୍ୟକ୍ତି ଜାତି, ଧର୍ମ, ଧନ, କ୍ଷମତାଧିକାର ନିର୍ବିଶେଷରେ ଏଣିକି

ପରମ ନିର୍ଭୟରେ ଗ୍ଲାନିଶୂନ୍ୟ ଚିତ୍ତରେ ଏ ଦେଶରେ ବାସକରି ପାରିବେ। ଏଣିକି ଏ ଦେଶରେ ଧନ, ମାନ, ବିଦ୍ୟା, କ୍ଷମତାଦିରେ ପ୍ରତିଷ୍ଠିତ କୌଣସି ବ୍ୟକ୍ତି ବା ସମ୍ପ୍ରଦାୟ ବା ଗୋଷ୍ଠୀ କାହା ପ୍ରତି ଭୟ, ଆଶଙ୍କା, ବା ଉଦ୍‌ବେଗର କାରଣ ହୋଇପାରିବ ନାହିଁ। ସ୍ୱାଧୀନ ଦେଶର ଜାତୀୟ ସରକାରର ଏ ଦେଶର ସମସ୍ତ ନାଗରିକମାନଙ୍କୁ ଏଣିକି ଏହି ଅଭୟ ନିର୍ଭୟ ବାଣୀ ଓ ପ୍ରତିଶ୍ରୁତି ହେଲା–ଏ ଦେଶରେ କେହି କାହାକୁ କୌଣସି ପ୍ରକାର ଭୟ ଦେଖାଇ ପାରିବେ ନାହିଁ।

ଏବଂ ଏଥିରେ ସନ୍ଦେହ ନାହିଁ ଯେ, ସ୍ୱାଧୀନତାପ୍ରାପ୍ତିର ପ୍ରଥମ କେତୋଟି ବର୍ଷ ଏ ଦେଶର ନାଗରିକମାନେ ବହୁପରିମାଣରେ ଭୟଶୂନ୍ୟତା ଅନୁଭବ କରିଥିଲେ। କିନ୍ତୁ କ୍ରମଶଃ ବିପରୀତ ହିଁ ଦେଖାଗଲା। ରାଜନୈତିକ ବ୍ୟକ୍ତିମାନେ କ୍ଷମତା ଲୋଭ ଚରିତାର୍ଥ କରିବା ପାଇଁ ଧନୀ ବ୍ୟକ୍ତିମାନଙ୍କ ସହିତ ପାପ ସମ୍ପର୍କ ସ୍ଥାପନ କରିବା ଦିନଠାରୁ ସମାଜରେ ଧନର ପ୍ରାଧାନ୍ୟ ଆଶାତୀତ ଭାବେ ବଢ଼ିଗଲା ଏବଂ ସେଥିପାଇଁ ସମାଜର ଆଦର୍ଶ ଓ ଲକ୍ଷ୍ୟ ମଧ୍ୟ ସ୍ଥିର ହୋଇଗଲା ଯେ କୌଣସି ଉପାୟରେ ଧନ ଉପାର୍ଜନ ଓ ସେହି ଧନ ବଳରେ କ୍ଷମତା ଅଧିକାର ଓ କ୍ଷମତାର ସୁରକ୍ଷା। ଉପର ସ୍ତରରେ କେବଳ ଧନବଳର ପ୍ରାଧାନ୍ୟକୁ ଗୁରୁତ୍ୱ ଦିଆଯିବା ଫଳରେ ଆଉ ସବୁ ମାନବୀୟ ସୁଗୁଣଗୁଡ଼ିକର ଗୁରୁତ୍ୱ ଛାଏଁ ଛାଏଁ କମିଗଲା ଏବଂ ଦୁର୍ଭାଗ୍ୟକୁ ବର୍ତ୍ତମାନ ଏ କଥା ସ୍ପଷ୍ଟଭାବେ ପ୍ରମାଣିତ ହୋଇଯାଇଛି ଯେ ଧନବଳ ହିଁ ଏକମାତ୍ର ବଳ ଓ ଏହି ବଳକୁ ଆଶ୍ରୟ କରି ରାଜନୈତିକ କ୍ଷମତା ମଧ୍ୟ ତିଷ୍ଠି ରହିଛି ଓ ଅଧିକ ବଳଶାଳୀ ହେଉଛି। ଧନବଳରେ ହିଁ ଅସାଧ ସାଧନ କରାଯାଇ ପାରୁଛି। ଧନବଳରେ ଦୋଷୀ ନିର୍ଦ୍ଦୋଷ ବୋଲି ପ୍ରମାଣିତ ହୋଇପାରୁଛି। ମୂର୍ଖ ପଣ୍ଡିତ ହୋଇପାରୁଛି। ପଙ୍ଗୁ ଗିରି ଲଂଘନ କରିପାରୁଛି। ଅବିଦ୍ୟା ବିଦ୍ୟାରେ ପରିଣତ ହୋଇପାରୁଛି ଓ ନିର୍ଗୁଣ ପରମ ଗୁଣବନ୍ତ ହୋଇପାରୁଛି ଏବଂ ଏପରିକି ନୈତିକ, ଧାର୍ମିକ ଓ ଆଧାତ୍ମିକ ସିଦ୍ଧିଗୁଡ଼ିକ ମଧ୍ୟ ଧନବଳରେ ହିଁ ନିରୂପିତ ହୋଇପାରୁଛି। ଧନବଳରେ ସମସ୍ତଙ୍କ ବୁଦ୍ଧିକୁ କାବୁ କରାଯାଇ ପାରୁଛି। ସମସ୍ତଙ୍କ ମୁହଁ ବନ୍ଦ କରାଯାଇପାରୁଛି। ଧନବଳରେ ସ୍ୱୟଂ ଭଗବାନଙ୍କୁ ମଧ୍ୟ ବଶୀଭୂତ କରାଯାଇ ପାରୁଛି। ଧନର ଏବଂବିଧ ଶକ୍ତି, କ୍ଷମତା ଓ ମହିମା ପ୍ରମାଣିତ ହୋଇଯିବା ଫଳରେ ବର୍ତ୍ତମାନ ଏହି ଧନ ଓ ଧନବନ୍ତ ଲୋକେହିଁ ସମାଜର ସବୁ ଶ୍ରେଣୀର ଲୋକଙ୍କ ପାଇଁ ଭୟ ଓ ଉଦ୍‌ବେଗର କାରଣ ହୋଇ ଉଠିଲାଣି। ଧନବନ୍ତ ସମସ୍ତଙ୍କ ମନରେ ସେଇ ଗୋଟିଏ କଥା–''ତା'ର କିଏ କ'ଣ କରିପାରିବ ?

ଆମର ନିର୍ବାଚନ ରାଜନୀତି ମଧ୍ୟ ଏହି ଧନବଳରେ ହିଁ ଚାଲିଛି। ନିର୍ବାଚନରେ ଲଢ଼ିବାକୁ ହେଲେ ବର୍ତ୍ତମାନ ଆଉ କୌଣସି ଅସ୍ତ୍ରଶସ୍ତ୍ର ଦରକାର ନାହିଁ। ଧନବଳ

ହିଁ ଏକମାତ୍ର ବ୍ରହ୍ମାସ୍ତ୍ର, ନତୁବା ରୁଦ୍ରବାଣ। କିଏ ଅମୁକ ଲୋକ ସାଙ୍ଗେ ପ୍ରତିଦ୍ୱନ୍ଦିତା କରିପାରିବ? କିଏ ବା ଅମୁକ ଦଳ ସାଙ୍ଗେ ପ୍ରତିଦ୍ୱନ୍ଦିତା କରିପାରିବ? କାହାର ଭଲା ଏତେ ଟଙ୍କା ଅଛି? ଏତେ ଧନବଳ ଅଛି?

ଏଇ ହୋଇଛି ବର୍ତ୍ତମାନ ଆମ ଦେଶର ଲୋକଙ୍କ ମନୋଭାବ ଏବଂ ଏ ମନୋଭାବ ସୃଷ୍ଟି ହୋଇଛି ଧନବଳକୁ ଏକମାତ୍ର ବଳ ଓ ସର୍ବୋତ୍ତମ ବଳ ବୋଲି ଭାବି ନେଇଥିବାରୁ। ସେଥିପାଇଁ ଆମ ମନରେ ଏହି ଧାରଣା ମଧ୍ୟ ଦୃଢ଼ୀଭୂତ ହୋଇଛି ଯେ "ନିର୍ଧନସ୍ୟ କୁତୋ ବଳମ୍?"

କିନ୍ତୁ ଧର୍ମଶାସ୍ତ୍ର ଓ ଇତିହାସ ଏହି ତଥ୍ୟକୁ ବାରମ୍ବାର ଅପ୍ରମାଣିତ କରିଆସିଛି। ଧନବଳ ଏକମାତ୍ର ବଳ ନୁହେଁ—ସର୍ବୋତ୍ତମ ବଳ ନୁହେଁ। ଧର୍ମବଳ ହିଁ ସର୍ବୋତ୍ତମ ବଳ। ନ୍ୟାୟବଳ ହିଁ ସର୍ବୋତ୍ତମ ବଳ। ସତ୍ୟବଳ ହିଁ ସର୍ବୋତ୍ତମ ବଳ। ପ୍ରେମବଳ ହିଁ ସର୍ବୋତ୍ତମ ବଳ।

ଦେଖ, କେହି ଜଣେ ନ୍ୟାୟ, ଧର୍ମ, ସତ୍ୟ ଓ ପ୍ରେମର ଶକ୍ତିକୁ ନିଜ ଭିତରେ ଧାରଣ କରି ସମ୍ପୂର୍ଣ୍ଣ ଭଲଗ୍ନ ଫକୀର ହୋଇ ସର୍ବୋଚ୍ଚ କ୍ଷମତା ଓ ଧନ ସମ୍ମୁଖରେ ନିର୍ଭୀକ ଭାବେ ଠିଆ ହୋଇ ଯାଉ ଏବଂ ନିର୍ଭୀକ ଭାବରେ ଅନ୍ୟାୟ ଅସତ୍ୟର ପ୍ରତିବାଦ କରୁ, ପ୍ରତିରୋଧ କରୁ, ମହା ମହା କ୍ଷମତା-ଦୃପ୍ତ ରାଜସିଂହାସନ ମଧ୍ୟ ଟଳିପଡ଼ିବ। ସ୍ୱର୍ଗର ଇନ୍ଦ୍ରପଦ ମଧ୍ୟ ଭୂଲୁଣ୍ଠିତ ହୋଇଯିବ। ମହା ପ୍ରତାପୀ ମହା ଐଶ୍ୱର୍ଯ୍ୟବନ୍ତ ଦଶଶିର ରାବଣର ସ୍ୱର୍ଣ୍ଣମୁକୁଟମାନ ଖଣ୍ଡବିଖଣ୍ଡିତ ହୋଇ ତଳେ ଛିଡ଼ି ପଡ଼ିବ।

କେବଳ ଭାରତବର୍ଷ ହିଁ ଏହି ସତ୍ୟଟିକୁ ବୁଝିଆସିଛି। ଧନବଳକୁ ଧନବଳଦ୍ୱାରା ପ୍ରତିହତ କରିବାକୁ ଚେଷ୍ଟା କର ନାହିଁ; ଧର୍ମବଳ ଦ୍ୱାରା ହିଁ ଧନବଳକୁ ଅତିକ୍ରମ କରିଯାଅ।

✱✱

# ଶ୍ରେଣୀର ଭାବରୂପ ନା ବ୍ୟକ୍ତିର ଭାବରୂପ ?

ଓଡ଼ିଆ ଉପନ୍ୟାସ ସାହିତ୍ୟର ଜନକ ଫକୀରମୋହନ ସେନାପତିଙ୍କ କଥା ସାହିତ୍ୟର ବହୁ ସଦ୍‌ଗୁଣ ଭିତରେ ଅନ୍ୟତମ ବିଶେଷତ୍ୱଟି ହେଲା—ତାଙ୍କର ଅନୁପମ ତୀବ୍ର ବ୍ୟଙ୍ଗବିଦ୍ରୂପ ଓ ପ୍ରାଣବନ୍ତ ହାସ-ପରିହାସ-ଦକ୍ଷତା । ସମାଜର କୁସଂସ୍କାରଗୁଡ଼ିକ ପ୍ରତି, ସାମାଜିକ ଅନୀତି ଅନ୍ୟାୟ ଓ ଅନାଚାର ପ୍ରତି ତାଙ୍କର ବ୍ୟଙ୍ଗ-ବିଦ୍ରୂପର ଶାଣିତ ବାଣଗୁଡ଼ିକ ନିକ୍ଷିପ୍ତ ହୋଇଥାଏ ।

ସମାଜର ପ୍ରତିଟି ଅନୁଷ୍ଠାନ, ଜାତି ଓ ବହୁବିଧ ବ୍ୟକ୍ତିଗତ ଚରିତ୍ର ସହିତ ଫକୀରମୋହନଙ୍କର ଥିଲା ପ୍ରତ୍ୟକ୍ଷ ଘନିଷ୍ଠ ପରିଚୟ ଏବଂ ସେଥିପାଇଁ ସେ ସେଗୁଡ଼ିକର ନିନ୍ଦନୀୟ ଦୁର୍ଗୁଣଗୁଡ଼ିକୁ ଭଲଭାବେ ଚିହ୍ନିଥିଲେ । କଥା ପ୍ରସଙ୍ଗରେ ଆମ ସମାଜର ବିଭିନ୍ନ ଜାତିଗୁଡ଼ିକର ଦୁର୍ଗୁଣ ବର୍ଣ୍ଣନା କରିବାକୁ ଯାଇ ସେ ବ୍ରାହ୍ମଣ, କରଣ, ଖଣ୍ଡାୟତ, ହରିଜନମାନଙ୍କ ସମ୍ପର୍କରେ ଖୁବ୍ କଡ଼ାକଡ଼ା କଥା କହିଛନ୍ତି । ବ୍ରାହ୍ମଣମାନେ ଲୋଭୀ, ମୂର୍ଖ, ଅଜସୁଆ, ଶାସ୍ତ୍ରଜ୍ଞାନ ଓ ନୀତି ବିବର୍ଜିତ, ଅହଂକାରୀ ଓ ପରସ୍ପର କଳହ ପରାୟଣ । କରଣମାନେ ଢେଉ ଗଣି ପଇସା ରୋଜଗାର କରିବାରେ ଓସ୍ତାଦ୍ । ନାନାଦି ନୀଚ ପନ୍ଥା ଅବଲମ୍ବନ କରି କଳ କୌଶଳରେ ଲକ୍ଷ୍ୟ ହାସଲ କରିବାରେ ନିପୁଣ । ଗଉଡ଼ମାନେ ଜଡ଼ମତି, ଗୋସ୍ୱଭାବଗ୍ରସ୍ତ ଏବଂ ଦୁଧରେ ପାଣି ନ ମିଶାଇ ବିକିବାରେ ଅସମର୍ଥ । ବାରିକ ବା ଭଣ୍ଡାରିମାନେ ଧୂର୍ତ୍ତ । ତେଲୀ ବ୍ୟବସାୟୀ ମହାକୃପଣ, ରାଢ଼ ଓ ଚିକିଟା ଜାତି । ଏମିତି ଏମିତି ବିଭିନ୍ନ ଜାତିର ବହୁ ଦୁର୍ଗୁଣ ଗାଇବାରେ ସେନାପତି ଯେତିକି ମୁଖର, ସେତିକି ଦୁଃସାହସୀ । ଏପରିକି ବହୁ ଲେଖାରେ ସେ ମୁସଲମାନମାନଙ୍କୁ ମଧ୍ୟ ସେମାନଙ୍କର କେତେକ ଅବିଗୁଣ ଅପକର୍ମ ଲାଗି ବିଦ୍ରୂପ କରିଛନ୍ତି ।

ଫକୀରମୋହନ ଆଜକୁ ପ୍ରାୟ ଶହେବର୍ଷ ତଳେ ତାଙ୍କର ଗଳ୍ପ ଉପନ୍ୟାସ ଲେଖିଥିଲେ । ସେତେବେଳେ ଆମ ସମାଜ ଥିଲା ଜାତିଭିତ୍ତିକ ଓ ସମ୍ପ୍ରଦାୟ ଭିତ୍ତିକ । ସମାଜ ମଧ୍ୟ ଏଇ ଭିତ୍ତିରେ ପରିଚାଳିତ ହୋଇଥିଲା । ସତକୁ ସତ ସେତେବେଳେ ଜାତିପ୍ରଥା ମଧ୍ୟ ଥିଲା ଖୁବ୍ କଠୋର । ସାମ୍ପ୍ରଦାୟିକତା ଥିଲା ଖୁବ୍ ଦୃଢ଼ । ଫକୀରମୋହନ ସମାଜ ସଂସ୍କାରରେ ପ୍ରୟାସୀ ଥିବାରୁ ଓ ମୁକ୍ତ ହୃଦୟ ଓ ମନ ନେଇ ଲେଖନୀ ଚାଳନା କରୁଥିବାରୁ କାହାପ୍ରତି ଭୟ ଆଶଙ୍କା ଭ୍ରୂକ୍ଷେପ ନ କରି ସେ ଏଇ ଜାତି ସମ୍ପ୍ରଦାୟଗୁଡ଼ିକର ଦୁର୍ଗୁଣ ବର୍ଣ୍ଣନା କରୁଥିଲେ । ସ୍ଥଳ ବିଶେଷରେ କିରାଣୀ ହାକିମ ଓ ପୁଲିସବାଲାମାନଙ୍କୁ ମଧ୍ୟ ଲେଖନୀ ମୁନରେ ଆଘାତ ନ କରି—ଏପରିକି ଘାଏଲ୍ ନ କରି ଛାଡ଼ୁନଥିଲେ ।

ଏବଂ ଆଶ୍ଚର୍ଯ୍ୟର କଥା–ଏହା ସତ୍ତ୍ୱେ ତାଙ୍କ ଲେଖା ସବୁ ଜାତି, ଶ୍ରେଣୀ ଓ ସଂପ୍ରଦାୟର ଲୋକଙ୍କ ଭିତରେ ଆଦୃତ ହେଉଥିଲା। ବ୍ରାହ୍ମଣମାନଙ୍କର ଲୋଭ ଓ ମୂର୍ଖତାକୁ ନେଇ ବିଦ୍ରୂପାତ୍ମକ ଲେଖାଟିକୁ ପଢ଼ି ବ୍ରାହ୍ମଣମାନେ କ୍ରୋଧାନ୍ୱିତ ହୋଇ ତାଙ୍କ ନାମରେ ମାନହାନି ମକଦ୍ଦମା କରୁ ନଥିଲେ।

ଏ କଥା ସମସ୍ତେ ସ୍ୱୀକାର କରିବେ ଯେ, ଫକୀରମୋହନଙ୍କ ସମୟର ଜାତିଭେଦ ପ୍ରଥା ବର୍ତ୍ତମାନ ଆଉ ସେପରି ଭାବରେ ସେତେ ଦୃଢ଼ କଠୋର ହୋଇ ନାହିଁ। ବର୍ତ୍ତମାନ ବ୍ରାହ୍ମଣକନ୍ୟା କରଣ ଘରେ ବୋହୂ–କରଣ କନ୍ୟା ତେଲୀ ଘରେ ବୋହୂ। ଗଉଡ଼ ଘର ଝିଅ ବ୍ରାହ୍ମଣ ଘରେ ବୋହୂ। ତା’ ଛଡ଼ା ବର୍ତ୍ତମାନ ସମାଜରେ ଭିନ୍ନ କଥାକୁ ଭିତ୍ତି କରି ଜାତି ସଂପ୍ରଦାୟମାନ ଗଠିତ ହୋଇ ଗଲାଣି। ‘‘ଜାତିଭେଦ ଉଠାଅ’’ ହେଲା ବର୍ତ୍ତମାନର ସ୍ଲୋଗାନ୍।

କିନ୍ତୁ ଗୋଟିଏ କଥା ଆଶ୍ଚର୍ଯ୍ୟ ଲାଗୁଛି–ବର୍ତ୍ତମାନ କୌଣସି ଲେଖକ ଫକୀର ମୋହନଙ୍କ ପରି ବ୍ରାହ୍ମଣ, କରଣ, ତେଲୀ, ଖଣ୍ଡାଏତ୍‌ଙ୍କ ଦୁର୍ଗୁଣ ବିଷୟରେ ଯଦି ଲେଖେ, ତେବେ ତା’ ବିରୋଧରେ ନିଶ୍ଚୟ କୋର୍ଟରେ ମକଦ୍ଦମା ହୋଇଯିବ। ସେପରି କେହି ଲେଖି ମଧ୍ୟ ପାରିବେ ନାହିଁ। ଗୋଟିଏ ହରିଜନ ସଂପ୍ରଦାୟର ଏକ ଦୁର୍ଗୁଣ ବିଷୟରେ ସାମାନ୍ୟ କିଛି ଲେଖିଦେଇ ଥିବାରୁ, ଜଣେ ଲେଖକଙ୍କୁ ସାଂପ୍ରଦାୟିକ ପ୍ରତିରୋଧର ସମ୍ମୁଖୀନ ହେବାକୁ ପଡ଼ିଥିଲା। ବିଶ୍ୱ-ବିଖ୍ୟାତ କବି ଅମୃତାପ୍ରିତମ୍‌ଙ୍କ କେତେକ ଲେଖାରୁ ଶିଖ୍-ଧର୍ମ ପ୍ରତି ଆକ୍ଷେପ ଅଛି ବୋଲି ଆବିଷ୍କାର କରାଯାଇ ବହୁ ସାଂପ୍ରଦାୟିକ ପ୍ରତିବାଦ ଉଠିଥିଲା। ଏମିତି ବହୁ ଉଦାହରଣ ରହିଛି, ଯେଉଁଠି ବର୍ତ୍ତମାନ ଲେଖକକୁ ଏ ସମ୍ବନ୍ଧେ ବହୁ ସାବଧାନ ଓ ଭୀତତ୍ରସ୍ତ ହୋଇ ଲେଖିବାକୁ ପଡୁଛି। ବର୍ତ୍ତମାନ କ’ଣ କେହି ଲେଖକ, ମାରୱାଡ଼ି, ଶିଖ୍, ମୁସଲମାନ, ହିନ୍ଦୁ, ଖ୍ରୀଷ୍ଟିଆନ ଆଦି ସଂପ୍ରଦାୟକୁ ନେଇ କିଛି ନିର୍ମଳ ହାସ୍ୟରସାତ୍ମକ ଲେଖା ଲେଖି ପାରିବେ ? ଅସମ୍ଭବ। ନିର୍ମଳ ନିରୁଦ୍ଦେଶ୍ୟ ହାସ୍ୟରସାତ୍ମକ ଲେଖାଟି ସଙ୍ଗେ ସଙ୍ଗେ ରକ୍ତାକ୍ତ ପରିସ୍ଥିତି ମଧ୍ୟ ସୃଷ୍ଟି କରିଦେବ।

ତା’ହେଲେ ଏଥିରୁ କ’ଣ ବୁଝାପଡୁଛି ? ଜାତି ଓ ସଂପ୍ରଦାୟବୋଧ ବଢୁଛି ସିନା କମୁନାହିଁ। ବରଂ ନୂଆ ନୂଆ ଶ୍ରେଣୀ ବା ଜାତି ସୃଷ୍ଟି ହେଉଛି ଏବଂ ଏହି ଶ୍ରେଣୀ ସଚେତନାକୁ ଜାବୁଡ଼ି ଧରି ବ୍ୟକ୍ତିଟି ନିଜକୁ ନିରାପଦ ମନେ କରୁଛି। କୌଣସି ବ୍ୟକ୍ତି ଆଉ ନିଜର ସ୍ୱଗୁଣ ବା ବ୍ୟକ୍ତିତ୍ୱର ଉତ୍କର୍ଷ ଉପରେ ନିର୍ଭର କରୁନାହିଁ। ଗୋଟିଏ ଜାତି ବା ଶ୍ରେଣୀର ଛତ୍ରଛାୟା ତଳେ ସେ ଲୁଚି ରହି ଯାହା ଇଚ୍ଛା ତାହା କରିପାରିବ ବୋଲି ଭାବି ନେଇଛି ଏବଂ କରୁଛି ମଧ୍ୟ।

ଏବେ କେତେକ ଶୁଭକାମୀ ଚଳଚ୍ଚିତ୍ର ନିର୍ମାତା ସାମାଜିକ ବିପ୍ଳବ ବା ସଚେତନତା ଆଣିବା ପାଇଁ ଚମତ୍କାର ଚଳଚ୍ଚିତ୍ରଗୁଡ଼ିଏ ନିର୍ମାଣ କଲେଣି। ‘‘ଇନ୍‌କିଲାବ’’, ‘‘ଆକ୍ରୋଶ’’, ‘‘ଅର୍ଦ୍ଧସତ୍ୟ’’ ପ୍ରଭୃତି ଛବିଗୁଡ଼ିକ ଯେଉଁମାନେ ଦେଖିଥିବେ, ସେମାନେ ଏହାର ପ୍ରଚଣ୍ଡ

ବ୍ୟଙ୍ଗ ବିସ୍ଫୋରଣ ପ୍ରତ୍ୟକ୍ଷ କରିଥିବେ। ଏବେ ଦୁର୍ନୀତିଗ୍ରସ୍ତ ରାଜନୀତିକ ନେତାମାନଙ୍କ କ୍ରିୟାକଳାପ ଓ ଚରିତ୍ରକୁ ନେଇ ଏକ ଚଳଚ୍ଚିତ୍ର "ଆଜକା ଏମ୍.ଏଲ୍. ଏ. ରାମ ଅବତାର" ଦେଖାଯାଉଛି। ଶୁଣାଯାଏ ଆମର ଗଣତନ୍ତ୍ର ପ୍ରେମୀ ସୁନୀତିଗ୍ରସ୍ତ ରାଜନୀତିକ ନେତୃବୃନ୍ଦ ଏଇ ଚଳଚ୍ଚିତ୍ରଟିର ପ୍ରଦର୍ଶନ ବନ୍ଦ କରିଦେବା ପାଇଁ ସରକାରଙ୍କ ଉପରେ ଚାପ ପକାଉଛନ୍ତି। ତଦ୍ଦ୍ୱାରା କୁଆଡ଼େ ଆମ ବିଧାନ ସଭା, ରାଜ୍ୟସଭା ଓ ଲୋକସଭା ପ୍ରଭୃତିର ମାନ୍ୟବର ସଭ୍ୟମାନଙ୍କର ଭାବରୂପ ବା ଇମେଜ୍ କ୍ଷୁର୍ଣ୍ଣ ହୋଇଯିବାର ଆଶଙ୍କା ଦେଖାଯାଉଛି। ତା' ହେଲେ କଣ ରାଜନୀତି ବାଲାଏ ଗୋଟିଏ ନିର୍ଦ୍ଦିଷ୍ଟ ଜାତିର ଅନ୍ତର୍ଭୁକ୍ତ ଲୋକ? ଜବାହରଲାଲ ନେହେରୁ, ରାଜଗୋପାଳଚାରୀ, ଉତ୍କଳମଣି ଗୋପବନ୍ଧୁ ଏବଂ ଅମୃକ ରାଉତରାଓ ସମୃକ ମହାପାତ୍ର ପ୍ରଭୃତି ଗୋଟିଏ ରାଜନୀତିକ ଶ୍ରେଣୀ ବା ଜାତିର ଲୋକ?

ଆମର ବର୍ତ୍ତମାନର ରାଜନୀତି ଏକ ବୃତ୍ତି ବା ଧନ୍ଦାରେ ପରିଣତ ହେଲାଣି। ସେଥିପାଇଁ ଆମ ନେତାଏ ତାକୁ ଗୋଟାଏ ଶ୍ରେଣୀ ବା ସଂପ୍ରଦାୟ କରି ତା' ତଳେ ଆଶ୍ରୟ ନେବାକୁ ଚାହୁଁଛନ୍ତି। କିନ୍ତୁ ସେମାନେ ବୁଝିବା ଉଚିତ୍ ଯେ, ଗୋଟିଏ ଶ୍ରେଣୀର ଭାବରୂପ ମଧ୍ୟ ସେହି ଶ୍ରେଣୀର ଅନ୍ତର୍ଭୁକ୍ତ ପ୍ରତିଟି ବ୍ୟକ୍ତିର ଚରିତ୍ର ଓ କ୍ରିୟାକଳାପକୁ ନେଇ ଗଠିତ ହୋଇଥାଏ।

ତା'ଛଡ଼ା ଆମର ବର୍ତ୍ତମାନର ରାଜନୀତିକ ବ୍ୟବସାୟୀମାନେ କ'ଣ ଭାବିଛନ୍ତି ଯେ ସମାଜରେ ସେମାନଙ୍କର ଭାବରୂପ ବା ଇମେଜ୍ ବୋଲି ଆଉ କିଛି ଅଛି? ରାଜ୍ୟର ବା ଦେଶର ଯେ କୌଣସି ରାଜନୀତିବାଲା ସମ୍ବନ୍ଧରେ ଯେ କୌଣସି ସ୍କୁଲ ପିଲାକୁ ଯାଇ ପଚାରନ୍ତୁ—ସେ ସେହି ରାଜନୀତିବାଲାଟି ସମ୍ବନ୍ଧେ କଣ ଶୁଣିଛି—କଣ ବିଶ୍ୱାସ କରିଛି ଓ କଣ କହୁଛି!! ସେଇଥିରୁ ବୁଝା ପଡ଼ିବ ଆମର ଆଧୁନିକ ରାଜନୀତିକ ନେତାମାନଙ୍କ ଇମେଜ୍ ବା ଭାବରୂପ ବର୍ତ୍ତମାନ ଜାତିର ଚିତ୍ତ ଫଳକରେ କେଉଁ ଭାବରେ ପ୍ରତିଫଳିତ ହୋଇଛି!!

ଏବଂ ରାଜନୀତିବାଲାଏ ମଧ୍ୟ ବୁଝିରଖନ୍ତୁ—ସେମାନଙ୍କ ଭାବରୂପ କେଉଁଦିନୁ ଭାଙ୍ଗି ଛିନ୍ନଛତର ହୋଇଗଲାଣି। ଏଣିକି ସେମାନଙ୍କର ବାହ୍ୟରୂପ ବା ଅସ୍ତିତ୍ୱଟିକୁ ରକ୍ଷା କରିବା ମଧ୍ୟ ଖୁବ୍ କଷ୍ଟକର ହୋଇପଡ଼ିବ। ସମାଜ ପାଇଁ ଭାବୁଥିବା ଓ ନିଃସ୍ୱାର୍ଥପର ଭାବେ ନିଜକୁ ସମାଜର କଲ୍ୟାଣ ପାଇଁ ବଳି ଦେବାକୁ ପ୍ରସ୍ତୁତ ଥିବା ନେତାଟିକୁ ସାଧାରଣ ସ୍କୁଲ ପିଲାଟିଏ ମଧ୍ୟ ବେଶ୍ ଭଲକରି ଚିହ୍ନେ ଓ ତା'ର ବିପରୀତ ରାଜନୀତିକ ଦଲାଲ, ଟାଉଟରେ ବା ରାଜନୀତି ବେପାରୀଟିକୁ ବି ଭଲଭାବେ ଜାଣେ।

ଏତିକି କଥା ବୁଝିବାପାଇଁ ଅନ୍ତତଃ ଆମର ପଦମର୍ଯ୍ୟାଦା ଓ କ୍ଷମତାକାଙ୍କ୍ଷୀ ରାଜନୀତିବାଲାଙ୍କର ସାମାନ୍ୟ ପରିମାଣରେ ବି ରାଜନୈତିକ ବୁଦ୍ଧିବିଚକ୍ଷଣତା ଆବଶ୍ୟକ।



# ରାଜନୀତିରେ କୂଟନୀତି ଓ କପଟାଚାର

ମଣିଷଟିଏ ଆଉ ଗୋଟିଏ ମଣିଷ ସଙ୍ଗେ ଚଳିବାକୁ ଯେତେବେଳେ ବାଧ୍ୟହୁଏ' ସେତେବେଳେ ତାକୁ ତିନୋଟି ବାଟରୁ ଗୋଟିଏ ବାଟରେ ଯିବାକୁ ପଡ଼େ। ସମାଜରେ ରହିଲେ ଆପଣ ଆଉ ଜଣକ ସଙ୍ଗେ ଯେ କୌଣସି କାରଣରୁ ସମ୍ପର୍କିତ ହେବାକୁ ବାଧ୍ୟ। ଏହି ସମ୍ପର୍କ ଯଦି ସ୍ୱାଭାବିକ ପ୍ରେମ ଓ ସ୍ନେହର ସମ୍ପର୍କ ହେଲା, ତେବେ ଆଉ ଅସୁବିଧା ନ ଥାଏ। କିନ୍ତୁ ପ୍ରେମ ସ୍ନେହ ଏତେ ସହଜ ବା ସୁଲଭ ବ୍ୟାପର ନୁହେଁ। ସମସ୍ତଙ୍କ ଦ୍ୱାରା ତାହା ସମ୍ଭବ ନୁହେଁ। ତେଣୁ ଆମେ ସାଧାରଣତଃ ଅନ୍ୟ ସଙ୍ଗେ ଚଳିବାକୁ ହୁଏତ କୂଟନୈତିକ ଉପାୟ ପ୍ରୟୋଗ କରୁ, ନତୁବା କପଟାତ୍ମକ ଉପାୟ ଅବଲମ୍ବନ କରୁ।

କିନ୍ତୁ କୂଟ ବା କପଟ ଏକା କଥା ନୁହଁ। ଯେ କୂଟନୀତି କରେ, ସେ ତା'ର ଉଦ୍ଦେଶ୍ୟ ସାଧନ ପାଇଁ ଏକ ଗୁପ୍ତ କୌଶଳ ପ୍ରୟୋଗ କରେ ଏବଂ ପ୍ରାୟତଃ ଏହା ସଦିଚ୍ଛା ମୂଳକ ହୋଇଥାଏ। ବୃହତ୍ତର ଦୃଷ୍ଟିକୋଣରୁ ଶୁଭପ୍ରଦ ମଧ୍ୟ ହୋଇଥାଏ। ଦୁଇଟି ଦେଶର ସରକାର ଭିତରେ ଏମିତି କୂଟନୈତିକ ସମ୍ପର୍କ ରହିଥାଏ। ସେମାନଙ୍କର ସବୁ ସମସ୍ୟା ପରସ୍ପର ଭିତରେ ଆପୋଷ ଆଲୋଚନା ଦ୍ୱାରା ସମାହିତ ହୋଇଥାଏ। ଯେ କୌଣସି ବିଷୟରେ ବିବାଦ ବା ଯୁଦ୍ଧକୁ ଏଡ଼ାଇ ପରସ୍ପର ଭିତରେ ଗୋଟାଏ ଗ୍ରହଣଶୀଳ ଅବସ୍ଥା ସୃଷ୍ଟି କରିବା ହେଲା କୂଟନୈତିକ ଆଲୋଚନାର ଫଳ ଏବଂ ଯେତେଦିନ ପର୍ଯ୍ୟନ୍ତ ଦୁଇରାଷ୍ଟ୍ର ମଧ୍ୟରେ ଏହି କୂଟନୈତିକ ସମ୍ପର୍କ ଅବ୍ୟାହତ ରହିଛି, ସେତେଦିନ ଯାଏ ଅନ୍ତତଃ ଦୁଇ ରାଷ୍ଟ୍ର ଭିତରେ ଯୁଦ୍ଧ—ବିଗ୍ରହର ଆଶଙ୍କା ନାହିଁ।

କିନ୍ତୁ ଯେ କୌଣସି ପକ୍ଷରୁ କୌଣସି କାରଣରୁ ଯେତେବେଳେ ଏହି ସମ୍ପର୍କ ବିଚ୍ଛିନ୍ନ ହୋଇଯାଏ, ସେତେବେଳେ ଯୁଦ୍ଧ ହୋଇଉଠେ ଅନିବାର୍ଯ୍ୟ।

ବର୍ତ୍ତମାନ ପୃଥିବୀର ଜାତି ଜାତି, ଦେଶ ଦେଶ, ରାଷ୍ଟ୍ର ରାଷ୍ଟ୍ର, ମଧ୍ୟରେ ଏହି କୂଟନୈତିକ ସମ୍ପର୍କ ହିଁ ମୁଖ୍ୟ ହୋଇ ରହିଛି। ପୁଞ୍ଜିବାଦୀ ରାଷ୍ଟ୍ର ଆମେରିକା ଓ ସାମ୍ୟବାଦୀ ରାଷ୍ଟ୍ର ଚାଇନା ଭିତରେ ଅଥବା ସାମ୍ୟବାଦୀ ରାଷ୍ଟ୍ର ଚାଇନା ଓ ସାମରିକ ରାଷ୍ଟ୍ର ପାକିସ୍ଥାନ ଭିତରେ ଏହି କୂଟନୈତିକ ସମ୍ପର୍କ ହିଁ ରହିଛି। ଅଥଚ ଏମାନେ ପରସ୍ପରର ରାଷ୍ଟ୍ର ବା ସାମାଜିକ ଆଦର୍ଶର ସମ୍ପୂର୍ଣ୍ଣ ବିରୋଧୀ। ମାତ୍ର ସବୁଠାରୁ ଭଲ କଥା ହୁଅନ୍ତା, ଯଦି ରାଷ୍ଟ୍ର ଭିତରେ କୂଟନୈତିକ ସମ୍ପର୍କ ସ୍ଥାପନ

ହେଲାବେଳେ ଦୁଇ ଦେଶର ଅଧିବାସୀଙ୍କ ଭିତରେ ସାଂସ୍କୃତିକ ସମ୍ବନ୍ଧ ସ୍ଥାପିତ କରାଯାଇ ଉତ୍ତମ ବୁଝାମଣା ଓ ପରସ୍ପର ଭାବର ଆଦାନପ୍ରଦାନ ପାଇଁ ପଥ ପରିଷ୍କାର କରାଯାଇ ପାରନ୍ତା। କିନ୍ତୁ ତାହା ହୋଇପାରେନା। କାରଣ ଯେଉଁ ରାଜନୀତିକ ବ୍ୟକ୍ତିମାନେ କ୍ଷମତାକୁ ଧରି ରଖିବାକୁ ଚାହାନ୍ତି, ସେମାନେ ତାଙ୍କ ଦେଶବାସୀଙ୍କୁ ସବୁଆଡୁ କବାଟ କିଳି ରଖନ୍ତି ଏବଂ କୌଣସି ରାଜନୈତିକ, ନୈତିକ ବା ଧାର୍ମିକ ବିରୋଧୀଭାବକୁ ମଧ୍ୟ ବଜାୟ ରଖି ଶାସନ ବ୍ୟବସ୍ଥା ଜାହିର କରୁଥାନ୍ତି। ଷ୍ଟାଲିନ୍ ଶାସିତ ରୁଷିଆରେ ଷ୍ଟାଲିନ୍ ତାଙ୍କ ଦେଶବାସୀଙ୍କୁ ଅନ୍ୟ ଦେଶର ଅଧିବାସୀଙ୍କ ଠାରୁ ଗୋଟିଏ ଲୌହ ପରଦା ଦ୍ୱାରା ପୃଥକ୍ କରି ରଖୁଥିଲେ। ଏବେ ମଧ୍ୟ ରୁଷିଆ ଓ ଚାଇନାର ସରକାରମାନେ ଅନ୍ୟ ଦେଶର ସରକାରଙ୍କ ସହିତ କୂଟନୈତିକ ସମ୍ପର୍କରେ ଯେତେ ନିବିଡ଼ତା, ନିଷ୍ଠା ଓ ଆନ୍ତରିକତା ଦେଖାଉଥିଲେ ବି, ଦୁଇ ଦେଶର ଅଧିବାସୀଙ୍କ ଭିତରେ ଆତ୍ମିକ ବୁଝାମଣା ବା ଭାବ-ବିନିମୟ କ୍ଷେତ୍ରରେ ଖୁବ୍ ସତର୍କତା ଅବଲମ୍ବନ କରିଥାନ୍ତି।

ଏହି କୂଟନୈତିକ ସମ୍ପର୍କ ମଧ୍ୟ ଗୋଟିଏ ଦେଶର ବିଭିନ୍ନ ରାଜନୈତିକ ଦଳ ଭିତରେ ରହିଥାଏ ଏବଂ ସମାନଶକ୍ତିସମ୍ପନ୍ନ ବିଭିନ୍ନ ରାଜନୈତିକି ନେତାମାନଙ୍କ ଭିତରେ ଥାଏ। କ୍ଷମତାରେ ପ୍ରତିଦ୍ୱନ୍ଦ୍ୱୀ ବା ସମାନ ଲୋକପ୍ରିୟ ରାଜନୈତିକ ନେତା-ନେତ୍ରୀଙ୍କ ମଧ୍ୟରେ ଏପରି କୂଟନୈତିକ ସମ୍ପର୍କ ରାଜତନ୍ତ୍ର ଅମଳରୁ ଗଣତନ୍ତ୍ର ଅମଳ ପର୍ଯ୍ୟନ୍ତ ଚଳିଆସିଛି।

ଏବେ କିନ୍ତୁ ରାଜନୈତିକ ବ୍ୟକ୍ତିମାନେ ଏତେ ତଳସ୍ତରକୁ ଗଲେଣି ଯେ, ସେମାନେ ଆଉ ପରସ୍ପର ଭିତରେ କୂଟନୈତିକ ସମ୍ପର୍କ ମଧ୍ୟ ରଖୁନାହାନ୍ତି। ବର୍ତ୍ତମାନ "କପଟାଚାର" ହିଁ ରାଜନୀତିବାଲାଙ୍କର ହାତରେ ମୁଖ୍ୟ ଅସ୍ତ୍ର ହୋଇଗଲାଣି। ଏହି "କପଟାଚାର" ବର୍ତ୍ତମାନ ଖୁବ୍ ହୀନସ୍ତରକୁ ଚାଲିଗଲାଣି। ରାମାୟଣ ଯୁଗରେ ରାବଣ ମାରିଚଙ୍କୁ ସ୍ୱର୍ଣ୍ଣମୃଗ କରି ରାମଙ୍କୁ ହୀନ କପଟାଚାରରେ ଭୁଲାଇ ହୀନ କାର୍ଯ୍ୟଟିଏ କରିଥିଲା। ମହାଭାରତ ଯୁଗରେ ଦୁର୍ଯ୍ୟୋଧନ ଶକୁନି ଦ୍ୱାରା ଯୁଧିଷ୍ଠିରଙ୍କ ସଙ୍ଗେ ଯେଉଁ ପଶାଖେଳର ପ୍ରତିଦ୍ୱନ୍ଦ୍ୱିତା ଭିଆଇଥିଲା, ତାହା ଥିଲା କପଟପାଶା, କପଟାଚାର। ପୁରାଣ ଓ ଇତିହାସରେ କୂଟନୀତି ଓ କପଟନୀତିର ବହୁ ଉଦାହରଣ ରହିଛି ଏବଂ ଏଥିରେ ନିପୁଣତା ଅର୍ଜନ କରିଥିବା ଲୋକମାନଙ୍କର ବିଚିତ୍ର ରୀତିନୀତି ସମ୍ବନ୍ଧେ ବହୁ ଚମତ୍କାର ବର୍ଣ୍ଣନା କରାଯାଇଛି।

ବ୍ୟକ୍ତି ଅନୁଯାୟୀ କୂଟନୀତିର ସ୍ୱରୂପ ଓ ସ୍ୱଧର୍ମର ମଧ୍ୟ ପରିବର୍ତ୍ତନ ହୋଇଥାଏ।

ପୌରାଣିକ ଯୁଗର ନାରଦ ମହର୍ଷିଙ୍କୁ ବିଭିନ୍ନ କୂଟନୈତିକ ଦୌତ୍ୟପଣ କରିବାକୁ ପଡ଼ିଛି। ଶ୍ରୀକୃଷ୍ଣ ସମଗ୍ର ମହାଭାରତରେ ଯେଉଁ ସବୁ କୂଟନୀତି ପ୍ରୟୋଗ କରିଛନ୍ତି—'କୂଟନୀତି ବିଚକ୍ଷଣତା'ରେ ତାହା ଏ ଯାବତ୍ ମଧ୍ୟ ଅତୁଳନୀୟ ହୋଇ ରହିଛି। ଐତିହାସିକ ଯୁଗରୁ ଆଜି ପର୍ଯ୍ୟନ୍ତ ଆମେ ବିଶ୍ୱର ବହୁ ବିଚକ୍ଷଣ କୂଟନୀତିଜ୍ଞଙ୍କୁ ଜାଣୁ। ଚାଣକ୍ୟ,

ବିସ୍‌ମାର୍କଙ୍କ ଠାରୁ ଆରମ୍ଭ କରି ଆନ୍ଦେ, ଗ୍ରୋମିକୋ, କାଉଣ୍ଟକାଭୁର, କିସିଞ୍ଜର ଓ ଆମ କୃଷ୍ଣମେନଙ୍କ ପର୍ଯ୍ୟନ୍ତ ବିଶ୍ୱବିଖ୍ୟାତ କୂଟନୀତିଜ୍ଞମାନେ ରାଷ୍ଟ୍ର ରାଷ୍ଟ୍ର ଭିତରେ ଯୁଦ୍ଧବିହୀନ ସଂପର୍କ ସ୍ଥାପନ ପାଇଁ ବହୁ ବିଚିତ୍ର କୂଟବୁଦ୍ଧିର ପ୍ରଦର୍ଶନ କରିଛନ୍ତି।

ଆଜି ସାରା ବିଶ୍ୱରେ ଏହି ''କୂଟବୁଦ୍ଧି'' ଓ ତାର ପ୍ରୟୋଗ ନୀତି ଉପରେ ଖୁବ୍ ଗୁରୁତ୍ୱ ଦିଆଯାଉଅଛି। କିନ୍ତୁ କୂଟନୀତିର ଦୁଇଟି ଦ୍ୱାର ଭିତରୁ ଗୋଟିଏ ଦ୍ୱାର ଖୋଲିଦେଲେ ପ୍ରେମ ପ୍ରୀତି ଶ୍ରଦ୍ଧାର ବୁଝାମଣା ବା ସମ୍ପର୍କ ସୂତ୍ର ବାହାରି ଆସିବ ଏବଂ ଆର ଦ୍ୱାରଟି ଖୋଲିଦେଲେ—ଭୟାବହ ଯୁଦ୍ଧର ଧ୍ୱଂସାବଶେଷଗୁଡ଼ିକ ବାହାରି ଆସିବେ। କୂଟନୀତି ପ୍ରେମ ଓ ଯୁଦ୍ଧ କାହାକୁ ବାଟ ଛାଡ଼ି ଦିଏ ନାହିଁ। ଦୁହିଁଙ୍କ ମଝିରେ ଥାଇ ନିଜର ମହିମା ପ୍ରକଟିତ କରୁଥାଏ।

କିନ୍ତୁ ବର୍ତ୍ତମାନ ''କୂଟନୀତି''କୁ ଆଡ଼େଇ ଦେଇ ଚାରିଆଡ଼େ ''କପଟନୀତି'' ହିଁ ମାଡ଼ି ଯାଉଛି। କୌଣସି ରାଷ୍ଟ୍ରକୁ ଜବଦ୍ କରିବା ପାଇଁ—ତାକୁ ଏପରି କୌଶଳରେ ରାଜନୈତିକ ଓ ଅର୍ଥନୈତିକ ଜାଲ ଭିତରେ ପକାଇ ଦିଆଯାଉଅଛି ଯେ, ସେ ଯେପରି ସେଥିରେ ଅଣନିଃଶ୍ୱାସୀ ହୋଇ ଅମର୍ଯ୍ୟାଦାକର ଭାବେ ଆତ୍ମସମର୍ପଣ କରିବ। ଏଣେ ଦେଶ ଭିତରେ ବି ସେମିତି ପରସ୍ପର ସ୍ପର୍ଦ୍ଧମାନ ପ୍ରତିଦ୍ୱନ୍ଦ୍ୱୀ ରାଜନୀତିକ ବ୍ୟକ୍ତିମାନେ କୂଟନୀତି ଛାଡ଼ି କପଟାଚାରରେ ପ୍ରତିପକ୍ଷକୁ କାବୁ କରି ବସାଇ ଦେବାକୁ ଚେଷ୍ଟା କରୁଛନ୍ତି। ଟିକିଏ ଦୃଷ୍ଟିକୁ ମୁକ୍ତ କଲେ, ଏହାର ବହୁ ଉଦାହରଣ ବର୍ତ୍ତମାନ ମିଳିଯିବ। କୂଟନୀତି ପଛରେ ରହିଛି ମର୍ଯ୍ୟାଦା ସଂପନ୍ନ ରାଜକୀୟତା। ମାତ୍ର କପଟାଚାର ପଛରେ ରହିଛି ଅତି ହୀନ ପୈଶାଚିକ ମତ୍ସରୀଭାବ। ଆଜିକାଲି ଆମର ଦେଶୀୟ ରାଜନୀତି କ୍ଷେତ୍ରରେ କ'ଣ ଚାଲିଛି ? କପଟାପାଶା ଅଥବା ଜତୁଗୃହଦାହ।

❋❋

# ମହାଯୁଦ୍ଧ ପାଇଁ ଅପେକ୍ଷା

ଆମ ଭାରତୀୟମାନଙ୍କର, ବିଶେଷତଃ ହିନ୍ଦୁମାନଙ୍କର, ଆହୁରି ବିଶେଷତଃ ଓଡ଼ିଆମାନଙ୍କର କେତେକ ବିଚିତ୍ର ଧାରଣା ବା ସଂସ୍କାର ବଦ୍ଧମୂଳ ହୋଇ ରହିଛି। ସେଥିମଧ୍ୟରୁ ଗୋଟିଏ ହେଲା—ଯେ କୌଣସି ସଫଳ ସୌଭାଗ୍ୟବାନ୍ ଲୋକଟିକୁ ବିଚାର କଲାବେଳେ ଆମେ ଧରିନେଉ ଯେ, ସେଇ ସଫଳତା ତାର ପ୍ରାପ୍ୟ—ତାର କର୍ମାର୍ଜିତ ସିଦ୍ଧି, କିମ୍ବା ତା'ର କିଛି ପୁଣ୍ୟଫଳରୁ ସେ ଏଇ ସୌଭାଗ୍ୟର ଅଧିକାରୀ ହୋଇଛି। ଜଣେ ଯଦି ଅକସ୍ମାତ୍ ବିପୁଳ ସମ୍ପତ୍ତିର ଅଧିକାରୀ ହୋଇଗଲା—ଅଥବା ଜଣେ ଯଦି ଅକସ୍ମାତ୍ କ୍ଷମତାର ଚୂଡ଼ାନ୍ତ ଶିଖରୀରେ ପହଞ୍ଚିଗଲା—କିମ୍ବା ହଠାତ୍ ଯଦି ଜଣେ ଅନାମଧେୟ ଖୁବ୍ ବିସ୍ତୃତ ଖ୍ୟାତି ବା ଯଶର ଅଧିକାରୀ ହୋଇଗଲା—ତେବେ ଆମେ ଭାବିନେଉ ଯେ, ତା'ର କିଛି ପୁଣ୍ୟଫଳ ନିଶ୍ଚୟ ସଂଚିତ ଥିଲା—ସେ ତା'ର ଫଳ ଭୋଗକରୁଛି ଅଥବା ତା'ପ୍ରତି ଈଶ୍ୱରଙ୍କର ଅହେତୁକ କରୁଣା ଅଜାଡ଼ି ହୋଇ ପଡ଼ିଲା—ତେଣୁ ସେ ଏଇ ବିପୁଳ ଧନ ବା କ୍ଷମତା ବା ଯଶର ଅଧୀଶ୍ୱର ହୋଇ ବସିଛି ଏବଂ ନିରଙ୍କୁଶ ଭାବେ ଭୋଗ କରୁଛି।

ଏଭଳି ଧାରଣା କରିବାର ବଡ଼ ବିପଦ ଓ ଦୋଷ ହେଉଛି—ଏଇ ନ୍ୟାୟରେ ଆମେ ବିଶ୍ୱର ବହୁ ଅତ୍ୟାଚାରୀ ଏବଂ ବିବେକହୀନ ଶାସକଙ୍କୁ ସ୍ୱୀକାର କରିଯିବା। ବହୁ ପାପାଚାରୀ ଧନାଢ୍ୟ ଲୋକଙ୍କୁ ସ୍ୱୀକାର କରିଯିବା ଏବଂ କୌଶଳପୂର୍ଣ୍ଣ ପ୍ରଚାର ଦ୍ୱାରା ବହୁ-ବିଶ୍ରୁତି ଲାଭ କରିଥିବା ଯଶସ୍ୱୀମାନଙ୍କୁ ମଧ୍ୟ ସ୍ୱୀକାର କରାଯିବା।

ଆମେ ଇତିହାସରେ ଦେଖିଆସିଛୁ, ଏବଂ ବର୍ତ୍ତମାନ ମଧ୍ୟ ଦେଖି ପାରୁଛୁ, ଆମ ଦେଶରେ ଦେଖିଛୁ ଓ ବିଶ୍ୱର ଅନ୍ୟତ୍ର ବି ଦେଖୁଛୁ—ଯେ କୌଣସି କ୍ଷେତ୍ରରେ ସଫଳତା ଅର୍ଜନ କରିଥିବା ବ୍ୟକ୍ତିମାନଙ୍କ ଭିତରୁ ପ୍ରାୟ ଶତକଡ଼ା ଅଠାନବେ ଭାଗ ଲୋକ ଅତ୍ୟନ୍ତ ହୀନ ଉପାୟ ଅବଲମ୍ବନ କରି ଧନ, ମାନ ଓ ଯଶ କ୍ଷମତାଦି ଅର୍ଜନ କରିଛନ୍ତି ଓ ଭୋଗ କରିଛନ୍ତି ଏବଂ ସେହି ଧନ, ମାନ, ଯଶ ଓ କ୍ଷମତାକୁ ରକ୍ଷା କରିବା ପାଇଁ ଏବଂ ସ୍ଥାୟୀ କରିବା ପାଇଁ ନିତ୍ୟନିୟତ ଆହୁରି ହୀନତମ ଚକ୍ରାନ୍ତ ବା ଉପାୟମାନ ଆବିଷ୍କାର କରୁଥାନ୍ତି ଏବଂ ପ୍ରୟୋଗ କରି ଚାଲିଥାନ୍ତି।

ଏବଂ ପୃଥିବୀ ଉପରକୁ ଏମିତି ସମୟ ଆସେ, ଯେତେବେଳେ ଏହି ହୀନକର୍ମୀମାନେ, ଏହି ପାପାଚାରୀ ଅସୁର ପ୍ରକୃତିର ଧୂର୍ତ୍ତ ଲୋକମାନେ ହିଁ ସର୍ବକ୍ଷେତ୍ରରେ ସାଫଲ୍ୟମଣ୍ଡିତ ହୋଇ ମହାଦମ୍ଭରେ ହୁଙ୍କାର, ମୁଁ କାର ରଡ଼ି ଛାଡୁଥାନ୍ତି।

କେହି ଭାବିବା ଉଚିତ୍ ନୁହେଁ ଯେ, ସର୍ବତ୍ର ଏବଂ ସବୁବେଳେ ଧର୍ମର ହିଁ ସବୁ ଯୁଦ୍ଧରେ ନିଶ୍ଚୟ ବିଜୟ ହୋଇଥାଏ। ତା' ହୋଇଥିଲେ, ଇତିହାସରେ ବହୁ ଧାର୍ମିକ ରାଜା ରାଜ୍ୟ ହରାଇ ବର୍ଷ ବର୍ଷ ଧରି ବଣରେ କଟାଇ ନ ଥାନ୍ତେ! ମଶାଣୀ ରଖୁଆଳ ହୋଇ ମଡ଼ାପୋଡ଼ା କାମ କରୁ ନ ଥାନ୍ତେ। ଧର୍ମାବତାର ରାଜା ଯୁଧିଷ୍ଠିର, ମର୍ଯ୍ୟାଦା ପୁରୁଷୋତ୍ତମ ରାଜା ରାମଚନ୍ଦ୍ର, ପରମ ଧାର୍ମିକ ରାଜା ନଳ, ମହାଦାନୀ ଓ ସତ୍ୟସନ୍ଧ ରାଜା ହରିଶ୍ଚନ୍ଦ୍ର ଇତ୍ୟାଦିଙ୍କ ଦୁର୍ଭାଗ୍ୟ କଥା ଆମମାନଙ୍କୁ ଜଣାଅଛି। ଇତିହାସରେ ବି ଏହାର ପ୍ରମାଣ ଭୂରି ଭୂରି ରହିଛି।

ଖାଲି ରାଜା ମହାରାଜାଙ୍କ କଥା ପଡ଼ିନାହିଁ—ବହୁ ପ୍ରତିଭାବାନ୍ କବି, ଦାର୍ଶନିକ, ବୈଜ୍ଞାନିକ, ଶିଳ୍ପୀ ଏପରିକି ବହୁ ସାଧୁ, ସନ୍ନ୍ୟାସୀ, ଯୋଗୀ, ଧର୍ମପ୍ରଚାରକ ସେମାନଙ୍କଠାରୁ ନଗଣ୍ୟ ଓ ହୀନ ଅଯୋଗ୍ୟ ଲୋକମାନଙ୍କ ଛଳ, କଳ, କୌଶଳରେ ସେମାନଙ୍କ ସମୟର ଅନ୍ୟାନ୍ୟ ବହୁ ନଗଣ୍ୟ ଲୋକ ଭଳି ଲୋକ ଲୋଚନାନ୍ତରାଳରେ ରହି ଯାଇଛନ୍ତି ଏବଂ ପୁଣି ଉପଯୁକ୍ତ କାଳ ଉପସ୍ଥିତ ହେଲାପରେ ସେମାନଙ୍କର ମହିମାର ପୁନରୁତ୍ଥାନ ହୋଇଛି।

ବରଂ ଏହି କଥାଟି ଆଜି ପର୍ଯ୍ୟନ୍ତ ଅଧିକ ସତ୍ୟ ଓ ବାସ୍ତବ ବୋଲି ପ୍ରମାଣିତ ହୋଇ ଆସିଛି ଯେ, ଅଯୋଗ୍ୟ ଓ ହୀନ ବ୍ୟକ୍ତିମାନେ ହିଁ ବାରମ୍ବାର ସୁଯୋଗ୍ୟ ଓ ଉଚ୍ଚତର ଲୋକଙ୍କ ଅପେକ୍ଷା ଏ ପୃଥିବୀରେ ଅଧିକ କାକତାଳିକ ନ୍ୟାୟରେ ପାର୍ଥିବ ଐଶ୍ୱର୍ଯ୍ୟ ହାସଲ କରିଛନ୍ତି ଓ ଯୁଦ୍ଧମାନଙ୍କରେ ବିଜୟ ଲାଭ କରୁଛନ୍ତି।

ଏବଂ ଏହି ଦୃଷ୍ଟାନ୍ତଟିକୁ ବାରମ୍ବାର ନିଜ ଆଖିରେ ଦେଖିବା ଯୋଗୁଁ ପୃଥିବୀର ଅଧିକାଂଶ ଲୋକ ଆପଣା ଆପଣାର ସେପରି ଅଭିଳାଷ ପୂରଣ ପାଇଁ ସେଇସବୁ ଅଯୋଗ୍ୟ ଓ ହୀନ ବ୍ୟକ୍ତିମାନଙ୍କର କୌଶଳ ଅପକୌଶଳ ଓ ହୀନ ପନ୍ଥାଗୁଡ଼ିକର ସଦ୍ ବ୍ୟବହାର କରିବାକୁ ପ୍ରୟାସ କରି ଚାଲିଛନ୍ତି।

ମୁହଁରେ ଆମେ ଯେତେ ଯେତେ ଧର୍ମ, ନ୍ୟାୟ, ସତ୍ୟ ଓ ଈଶ୍ୱର ଫିଶ୍ୱର କଥା କହୁ ନା କାହିଁକି ଆମ ସମସ୍ତଙ୍କ ଅନ୍ତରର ଅଭିଳାଷ ହେଲା—ଜୀବନର ସର୍ବ କ୍ଷେତ୍ରରେ ନିଜ କାମନା ବାସନାର ସଫଳତା ଏବଂ ସେ ସଫଳତା କେବେ ହେଲେ ବି ସତ୍ୟ, ନ୍ୟାୟ, ଧର୍ମ ବା ମର୍ଯ୍ୟାଦାଜନକ ଉପାୟରେ ହାସଲ କରାଯାଇ ପାରିବ ନାହିଁ। ତେଣୁ 'ମହାଜନୋ ଯେନ ଗତଃ ସ ପନ୍ଥାଃ' ବୋଲି ମୁହଁରେ ଘୋଷୁଥିବା ସିନା, କିନ୍ତୁ କାର୍ଯ୍ୟ କ୍ଷେତ୍ରରେ ସଫଳତା ପାଇଁ 'ହୀନ ଜନୋ ଯେନ ଗତଃ ସ ପନ୍ଥଃ' ହିଁ ଶ୍ରେୟ ପନ୍ଥା—ଏକମାତ୍ର ପନ୍ଥା ଓ ନିଶ୍ଚିନ୍ତ ନିର୍ଭର ପନ୍ଥା'' ବୋଲି ପ୍ରମାଣିତ କରି ଚାଲିଥିବା।

ଏଇ ଅପଦର୍ଶନଟି ଆମର ଅବଚେତନାରେ ଦୃଢ଼ ହୋଇ ସଂସ୍କାର ରୂପେ ପ୍ରତିଷ୍ଠିତ ହୋଇଯିବା ଫଳରେ ଆମେ ବର୍ତ୍ତମାନ ଯେ କୌଣସି କ୍ଷେତ୍ରରେ ଯେ କୌଣସି

ଉପାୟରେ ସଫଳ ହୋଇଥିବା ଲୋକଟିକୁ ସହ୍ୟ କରୁଛୁ। ଖାଲି ସହ୍ୟ କରୁ ନାହୁଁ–ତା ପଛରେ ଈଶ୍ୱରଙ୍କ ଆଶୀର୍ବାଦ ଅଛି ବୋଲି ମଧ୍ୟ ବିଶ୍ୱାସ କରୁଛୁ।

କିନ୍ତୁ ପ୍ରକୃତ କଥାଟି ହେଲା–ଏ ଜଗତରେ ଈଶ୍ୱର ଅବଶ୍ୟ ସର୍ବ ଶକ୍ତିମାନ। ସର୍ବୋଚ୍ଚ ସତ୍ୟ, ସର୍ବୋଚ୍ଚ ମଙ୍ଗଳ ଓ ସର୍ବୋଚ୍ଚ ସୌନ୍ଦର୍ଯ୍ୟ କେବଳ ତାଙ୍କରି ପାଖରେ ଅଛି ଏବଂ ଏ ବିଶ୍ୱରେ ଯାହା ଘଟୁଛି ସବୁର କର୍ତ୍ତା ସେ। କିନ୍ତୁ ଏହି ସତ୍ୟଟିକୁ ଆମେ ସ୍ୱାର୍ଥପର ଲୋକମାନେ ଓ ଯେ କୌଣସି ଉପାୟରେ ସଫଳତା ଚାହୁଁଥିବା ଲୋକମାନେ ଯେମିତି ବୁଝୁ କଥାଟି ସେପରି ନୁହେଁ। ଯେଉଁମାନେ ସତକୁ ସତ ଈଶ୍ୱରଙ୍କ ଭାବରେ ଉଦ୍‌ବୁଦ୍ଧ ହୋଇଛନ୍ତି ବା ଈଶ୍ୱରତ୍ୱ ଲାଭ କରିଛନ୍ତି–ସେମାନେ କେବଳ ଏହି ସତ୍ୟଟିକୁ ବୁଝିଛନ୍ତି। ଖ୍ରୀଷ୍ଟ, ବୁଦ୍ଧ, ରାମ, କୃଷ୍ଣଙ୍କଠାରୁ ଆରମ୍ଭ କରି ବିବେକାନନ୍ଦ, ଶ୍ରୀଅରବିନ୍ଦ, ଗାନ୍ଧିଜୀ ବିନୋବା ଆଦି ମହାଜନମାନେ ଈଶ୍ୱରଙ୍କ ଗୂଢ଼ତତ୍ତ୍ୱ ଜାଣନ୍ତି ଏବଂ ସେମାନେ ମଣିଷ ପାଇଁ ପ୍ରକୃତ କର୍ତ୍ତବ୍ୟ, ଅକର୍ତ୍ତବ୍ୟ କଣ ତାହା ସ୍ଥିର କରି ଦେଖାଇଛନ୍ତି। ସେମାନେ ସମସ୍ତେ ଗୋଟିଏ କଥାରେ ଏକମତ ଯେ ଅସତ୍ ଉପାୟ ଅବଲମ୍ବନ କରି ଯେଉଁ ସଫଳତା ଅର୍ଜନ କରାଯାଏ–ତାହା ଅଧର୍ମ। ତା'ପଛରେ ଈଶ୍ୱରଙ୍କ ଆଶୀର୍ବାଦ ନାହିଁ। ତା'ପଛରେ ରହିଛି ସୟତାନର ପ୍ରରୋଚନା ଓ ଶକ୍ତି। ସେପରି ଆଶୁ ସଫଳତା ଅପେକ୍ଷା ଜୀବନରେ ଏକ ମହତ୍ ଆଦର୍ଶ ପଛରେ ଆନ୍ତରିକ ଭାବେ ଧାଇଁ ଧାଇଁ ଯଦି ଶେଷ ପର୍ଯ୍ୟନ୍ତ ବିଫଳତା ଆସେ, ସେ ବିଫଳତା ବରଂ ଶ୍ରେୟ ଓ ବରଣୀୟ।

ସତ୍ୟପାଇଁ, ନ୍ୟାୟ ପାଇଁ, ପ୍ରେମପାଇଁ ଯେଉଁମାନେ ସତକୁ ସତ ଯୁଦ୍ଧ କରି ପରାସ୍ତ ହୋଇ ବନବାସ ବରଣ କରିଛନ୍ତି, ସେମାନେ ଆପାତତଃ ବିଫଳ ହେଲେ ବୋଲି ଜଣାପଡ଼େ। କିନ୍ତୁ ଏଇ ସବୁ ବ୍ୟକ୍ତିଗତ କ୍ଷୁଦ୍ର କ୍ଷୁଦ୍ର ବିଫଳତା ପରେ ଏପରି ଏକ ଈଶ୍ୱର–ପ୍ରେରିତ କାଳ ବା ମୁହୂର୍ତ୍ତ ଆସି ପହୁଁଚେ, ଯେତେବେଳେ ଆଉ ସତ୍ୟ ଓ ମିଥ୍ୟା ଭିତରେ ଖଣ୍ଡଯୁଦ୍ଧ ହୁଏ ନାହିଁ–ମହାଯୁଦ୍ଧ ଆରମ୍ଭ ହୋଇଯାଏ।

ଏବଂ ପୁରାଣ ଓ ଇତିହାସ ମାତ୍ରେ ଇ ସାକ୍ଷ୍ୟ ଦେଇଛନ୍ତି–ଏଇ ମହାଯୁଦ୍ଧରେ ସବୁବେଳେ ସତ୍ୟର ହିଁ ବିଜୟ ହୁଏ। ନ୍ୟାୟ ଓ ଧର୍ମର ହିଁ ବିଜୟ ହୁଏ।

ବିଜ୍ଞ ବ୍ୟକ୍ତିମାନେ କହୁଛନ୍ତି–ବର୍ତ୍ତମାନ ନିକଟ ଭବିଷ୍ୟତରେ ହିଁ ସାରା ବିଶ୍ୱରେ ମନୁଷ୍ୟ ସମାଜ ପାଇଁ ଏହିପରି ଏକ ମହାଯୁଦ୍ଧର ବେଳା ଆସି ପହୁଁଚି ଯିବ ଏବଂ ବର୍ତ୍ତମାନଠାରୁ ସତ୍ୟ ଓ ମିଥ୍ୟା ଉଭୟ ଶକ୍ତି ସେମାନଙ୍କର ସମସ୍ତ ଦଳବଳ ଧରି ପ୍ରାୟ ଇ ମୁହାଁ ମୁହିଁ ହୋଇଯିବା ଅବସ୍ଥାକୁ ଆସି ଗଲେଣି। ସତ୍ୟ ଓ ମିଥ୍ୟାର ସ୍ୱରୂପ ବୁଝିବା ପାଇଁ ମଧ୍ୟ ଆଉ ମଣିଷ ପକ୍ଷରେ କିଛି ପ୍ରତିବନ୍ଧକ ବା ମାୟାଜାଲ ନାହିଁ।

ସେହି ମହାଯୁଦ୍ଧ ଲାଗି ଅପେକ୍ଷା କରିବା ଛଡ଼ା ଆଉ କଣ କରିବାର ଅଛି ?



# ଦେହ କୈନ୍ଦ୍ରିକ ଓ କ୍ଷମତା କୈନ୍ଦ୍ରିକ

ଦୁଇଟି କଥା ଆମ କାନକୁ ଅସମ୍ଭବ ଶୁଭେ, ଆମ ମନକୁ ବି ପାଏ ନାହିଁ। ଗୋଟିଏ ହେଲା–ଯୌନ ମିଳନ ସୁଖ ସମ୍ଭୋଗର ଇଚ୍ଛା ନ ଥାଇ ନରନାରୀଙ୍କ ଭିତରେ ପ୍ରେମ ଏବଂ ଅନ୍ୟଟି ହେଲା–କ୍ଷମତା ରାଜନୀତିର ଊର୍ଦ୍ଧ୍ୱରେ ଥାଇ ଦେଶର ସେବା। ଦୁଇଟି ଯାକ ବିଷୟ ସନ୍ଦେହ ଉଦ୍ରେକକାରୀ।

ସତକଥା। ଯଦି କୌଣସି ପ୍ରେମିକ ବା ପ୍ରେମିକା ଦମ୍ପର ସହିତ କହନ୍ତି ଯେ, ଗତ ଏତେ ବର୍ଷଧରି ଆମେ ଗଭୀର ଉନ୍ମାଦନାର ସହିତ ପରସ୍ପରକୁ ପ୍ରେମ କରି ଆସୁଛୁ–କିନ୍ତୁ ଆମ ଦୁହିଁଙ୍କ ଭିତରେ ଯୌନ-ଲାଳସା କେବେ ଆସି ନାହିଁ ବା କେବେ ଆସିଲେ ବି, ଆମେ ତାକୁ ତୁଚ୍ଛ ମନେ କରି ପରିହାର କରି ଆସିଛୁ, ତେବେ ଏ କଥା ଶୁଣି ଆମେ ମୁହଁରେ କିଛି କହୁ ବା ନ କହୁ, କିନ୍ତୁ ଭିତରେ ଭିତରେ କହୁଥାଉ ଯେ, ଏମାନେ ଖୁବ୍ ଫୁଲେଇ ହେଉଛନ୍ତି। ନିଜର ସମ୍ପର୍କକୁ ମିଥ୍ୟା ମହିମା ଦେବା ପାଇଁ ଏମିତି ବଡ଼ ବଡ଼ କଥା କହି ଆମକୁ ଭଣ୍ଡାଉଛନ୍ତି କିମ୍ବା ସମାଜରେ ନିଜର ନୈତିକ ସ୍ଥିତିକୁ ନିରାପଦ ରଖିବାପାଇଁ ଏଭଳି ମିଥ୍ୟା କୈଫିୟତ ଦେଇ ଚାଲିଛନ୍ତି ଏବଂ ଏହା ମଧ ହୋଇ ପାରେ ଯେ, ଯୌନ ସୁଖ ଭୋଗ କରିବା ବ୍ୟାପାର ଏମାନଙ୍କ ମନରେ ଘୋର ପାପବୋଧର ଭୟ ସୃଷ୍ଟି କରୁଛି, ଯାହା ଫଳରେ କି ଏମାନେ ସେ ବ୍ୟାପାରଟିକୁ ଏଡ଼ାଇ ଚାଲିଛନ୍ତି ଓ ସେଥିଯୋଗୁଁ ନିଜର ଅସାମର୍ଥ୍ୟକୁ ଏପରି ଏକ ନୀତିସମ୍ମତ ଗୈରିକ ଆବରଣରେ ଘୋଡ଼ାଇ ରଖୁଛନ୍ତି।

ସାଧାରଣ ଲୋକ ଏ କ୍ଷେତ୍ରରେ ଏମିତି ଭାବିବା ସ୍ୱାଭାବିକ। କାରଣ ଆମେ 'ପ୍ରେମ'ର ପରିସର, ଉଚ୍ଚତା ଓ ଗଭୀରତା କେତେଦୂର ଯାଏ ବ୍ୟାପିଛି, ତାହା ଜାଣିନାହୁଁ ଏବଂ 'ଆନନ୍ଦ'ର ଅନୁଭବକୁ କେବଳ ଆମ ଦେହଦ୍ୱାରରେ ଭୋଗିଛୁ ଏବଂ ତାହା ପୁଣି ଦେହର ଏକ ବିଶେଷ କେନ୍ଦ୍ର ଉପରେ ନିର୍ଭର କରି ଭୋଗିଛୁ। ହୁଏତ ଆମ ବ୍ୟକ୍ତିତ୍ୱର ବିଭିନ୍ନ ସତ୍ତା ସଙ୍ଗେ ଆମର ପରିଚୟ ହୋଇନାହିଁ, ଏବଂ ସେହି ସତ୍ତାମାନଙ୍କର ଅନୁଭବ, ଉପଲବ୍ଧି ସଙ୍ଗେ ଆମର ମାନସିକ ପରିଚୟ ମଧ ଘଟି ନାହିଁ। ଆଉ ଗୋଟିଏ କଥା ହେଲା, ଆମେ କେବଳ ମଣିଷକୁ ସ୍ତ୍ରୀ ଓ ପୁରୁଷ ରୂପେ ଦେଖି ଆସିଛୁ ଏବଂ ପ୍ରକୃତରେ ମଧ ଅଧିକାଂଶ ହେଲେ କେବଳ ସ୍ତ୍ରୀ ଲୋକ ବା ପୁରୁଷ ଲୋକ।

କିନ୍ତୁ ଆମ ଭିତରେ ସବୁବେଳେ ଏମିତି ଅସାଧାରଣ ମଣିଷ ରହି ଆସିଛନ୍ତି, ଯେଉଁମାନେ କେବଳ "ପୁରୁଷ ସ୍ତ୍ରୀ" ସୀମାରେ ନାହାନ୍ତି। ସେମାନଙ୍କ ଭିତରେ କିଛି ଅସାଧାରଣ ବ୍ୟକ୍ତିତ୍ୱ ରହିଛି ଏବଂ ସେହି ସେହି 'ବ୍ୟକ୍ତିତ୍ୱ' ଏପରି ସବୁ ଅନୁଭବ କରିପାରେ, ଏପରି ସବୁ କାର୍ଯ୍ୟ କରିପାରେ, ଏପରି ସବୁ ଚିନ୍ତା କରିପାରେ ଯାହା କି ସାଧାରଣ କଳ୍ପନାର ବହିର୍ଭୂତ ଏବଂ ଏହି ଅସାଧାରଣ ବ୍ୟକ୍ତିତ୍ୱ ସଂପନ୍ନ ନରନାରୀ ହିଁ ମଣିଷ ସମାଜର କ୍ରମବିକାଶ ପଥରେ ଆମର ସହାୟକ ଓ ଆଦର୍ଶ ହୋଇ ରହି ଆସିଛନ୍ତି। ଏହି ବ୍ୟକ୍ତିତ୍ୱର କିଛୁତ ଅସାଧାରଣତ୍ୱ ହିଁ ଅପର ପକ୍ଷରେ ହୋଇ ଉଠିଛି ତୀବ୍ର ଆକର୍ଷଣୀୟ। ଗୋଟିଏ କଥାରେ କହିଲେ ବ୍ୟକ୍ତିତ୍ୱର ଆକର୍ଷଣରୁ ହିଁ "ପ୍ରେମ" ଉଦ୍‌ଭବ ହୁଏ ଏବଂ ସେହି ବ୍ୟକ୍ତିତ୍ୱର ବିକାଶ ଓ ପ୍ରକାଶ ଭିତରେ ହିଁ ପ୍ରେମ ପରିପୁଷ୍ଟ ହେଉଥାଏ। ଏହି କ୍ରମ ପରିପୁଷ୍ଟତା ହିଁ ପ୍ରେମାନୁଭୂତିରେ ଆସ୍ୱାଦନକୁ କ୍ରମାଗତ ବଢ଼ାଇ ଚାଲିଥାଏ। ଯେଉଁ ସ୍ଥଳରେ ପ୍ରେମ ଏଇ ପର୍ଯ୍ୟାୟକୁ ଉଠିଥାଏ ସେଠି ଯୌନସୁଖ ଅତି ଗୌଣ ବ୍ୟାପାର ହୋଇପଡ଼େ। ଏପରିକି ଗ୍ଲାନିକର ମନେହୁଏ।

କହିବା ବାହୁଲ୍ୟ ଯେ, ଏପରି ପ୍ରେମ ଓ ଏପରି ପ୍ରେମିକ-ପ୍ରେମିକା ଆମ ଭିତରେ ଆଗେ ଥିଲେ ଓ ଏବେ ମଧ୍ୟ ଅଛନ୍ତି। ଉଦାହରଣର ସଂଖ୍ୟା ନଗଣ୍ୟ ହେଲେବି— ଏକଥା ନିଶ୍ଚୟ ସ୍ୱୀକାର କରିବାକୁ ହେବ ଯେ, ଭବିଷ୍ୟତରେ ମଣିଷ ଏହି ଜାତୀୟ "ପ୍ରେମ"ର ଅଧିକାରୀ ହେବାକୁ ଚାହିଁବ। କାରଣ, ମଣିଷର ମଣିଷ ସହିତ ସମ୍ପର୍କ ସାଙ୍ଗେ, ମଣିଷର ଈଶ୍ୱରଙ୍କ ସହିତ ସମ୍ପର୍କର ସମ୍ଭାବନା ଓ ବାସ୍ତବତା ନିଶ୍ଚୟ ଜଡ଼ିତ।

ସେହିପରି ମଧ୍ୟ ଆମେ ଏପର୍ଯ୍ୟନ୍ତ ମନେ କରି ଆସିଛୁ ବା ଆମର ଏମିତି ଭାବିବା ଅଭ୍ୟାସ ହୋଇ ଯାଇଛି ଯେ, ଶାସନ କ୍ଷମତା ପାଇଁ ଲାଳସା ନ ରଖିଲେ ଦେଶ ଲାଗି କୌଣସି ସାଙ୍ଗଠନିକ କଲ୍ୟାଣ କର୍ମ କରିହେବ ନାହିଁ ବା ସେଥିରେ ସଫଳତା ଆଣିହେବ ନାହିଁ। ଆଉ ମଧ୍ୟ ଆମ ଭିତରେ ଏମିତି ଧାରଣା ଦୃଢ଼ ହୋଇ ଗଲାଣି ଯେ, କେହି ଶାସନ କ୍ଷମତାର ଆସନରେ ନ ବସିଲେ ବା ରାଜଦଣ୍ଡକୁ ସ୍ୱହସ୍ତରେ ଧାରଣ କରି ନ ଥିଲେ, ଦେଶ ବା ସମାଜର ନେତୃତ୍ୱ ନେଇ ପାରିବ ନାହିଁ। ଏପରି ଭାବିବାର ହେତୁ ହେଲା—ଆମେ ଆମର ସାମାଜିକ ଜୀବନରେ ସବୁକଥା ପାଇଁ ରାଷ୍ଟ୍ର ଉପରେ ହିଁ ନିର୍ଭର କରି ଚାଲିଛୁ। କାରଣ, ଆମେ ଆମର ସବୁ କିଛିକୁ ରାଷ୍ଟ୍ର ହାତରେ ସମର୍ପଣ କରିଦେଇଛୁ। ଏପରିକି ଆମର ବ୍ୟକ୍ତିଗତ ନୀତି, ରୁଚି, ଲକ୍ଷ୍ୟ ଓ ଆଦର୍ଶକୁ ମଧ୍ୟ ଆମ ରାଷ୍ଟ୍ର ଉପରେ ପକାଇ ଦେଇ ନିଶ୍ଚିନ୍ତରେ ବସିଛୁ। ଆମର ଧର୍ମ, ସାହିତ୍ୟ, କଳା, ବିଜ୍ଞାନ, ଶିକ୍ଷା, ବାଣିଜ୍ୟ—ଏପରିକି ସ୍ୱାସ୍ଥ୍ୟ ବିଷୟକୁ ମଧ୍ୟ ଆମେ ସରକାର ହାତକୁ ବଢ଼ାଇ ଦେଇଛୁ। ଫଳରେ ସରକାର ବର୍ତ୍ତମାନ ଆମର ସବୁ ବ୍ୟାପାରରେ ସର୍ବେସର୍ବା। ଆମ ଜୀବନରେ ସରକାର ହିଁ କେବଳ କର୍ତ୍ତା, ଏକମାତ୍ର କର୍ତ୍ତା।

ରାଷ୍ଟ୍ର ଓ ସରକାରଙ୍କୁ ସର୍ବକ୍ଷମତା ବା କର୍ତ୍ତୃତ୍ୱ ସମ୍ପନ୍ନ କରି ଦେଲାପରେ ତେଣିକି ସମସ୍ତେ ଅସହାୟ ଦୁର୍ବଳ। ଏପରି କ୍ଷେତ୍ରରେ ଶାସନ କ୍ଷମତା ହିଁ ଏକମାତ୍ର ହର୍ତ୍ତାକର୍ତ୍ତା ଦୈବୀବିଧାତା ଏବଂ ଏହି କ୍ଷମତାକୁ ଯେ କୌଣସି ଉପାୟରେ ଅର୍ଜନ କରିବାକୁ ହେବ—ଯେ କୌଣସି ଉପାୟରେ ସଂରକ୍ଷିତ କରି ରଖିବାକୁ ହେବ। ଯେତେବେଳେ ଏପରି ଅବସ୍ଥା ଆସେ, ସେତେବେଳେ ଶାସନ କ୍ଷମତାକୁ ଯେଉଁମାନେ ଧରିଥାନ୍ତି ଓ ଯେଉଁମାନେ ତାକୁ ସେମାନଙ୍କଠାରୁ ଛଡ଼ାଇ ଆଣିବାକୁ ଚେଷ୍ଟା କରୁଥାନ୍ତି—ସେହି ଉଭୟ ଗୋଷ୍ଠୀ ଆଉ କେହି "କ୍ଷମତା ଲାଭ" ବ୍ୟତୀତ ଦ୍ୱିତୀୟ ଲକ୍ଷ୍ୟ ବା ଆଦର୍ଶ ସମ୍ବନ୍ଧେ ଚିନ୍ତା କରି ପାରନ୍ତି ନାହିଁ। ସେହି ଉଭୟ ଗୋଷ୍ଠୀର ଚେତନାରୁ ଅନ୍ୟ ପ୍ରକାର ମାନବୀୟ ଭାବଦର୍ଶନ ଅନୁଭୂତି ବା ଆସ୍ପୃହା ଲୋପ ପାଇଯାଏ। ସେତେବେଳେ ଆଉ ଦେଶର ସ୍ୱାର୍ଥ ବଡ଼ ମନେ ହୁଏ ନାହିଁ। କ୍ଷମତା ଲକ୍ଷ୍ୟରେ ନିଜର ସ୍ୱାର୍ଥ ଏବଂ ଦଳୀୟ ସ୍ୱାର୍ଥ ହିଁ ବଡ଼ ହୋଇଯାଏ। ବର୍ତ୍ତମାନ ସାରା ଦେଶରେ ଓ ସାରା ବିଶ୍ୱରେ ଏହି ରାଜନୈତିକ କ୍ଷମତା ଅର୍ଜନ ଓ ସଂସ୍ଥାପନର ପାଳା ଚାଲିଛି।

ଏବଂ ଏଥିରେ ସନ୍ଦେହ ନାହିଁ ଯେ ଯଦି ଏହି କ୍ଷମତା-କେନ୍ଦ୍ରିକ ରାଜନୈତିକ କାର୍ଯ୍ୟକଳାପକୁ ପ୍ରତିରୋଧ କରା ନ ଯାଏ ତେବେ ଦେଶର ବା ମାନବ ଜାତିର ଭାଗ୍ୟରେ ସୁଖ ଶାନ୍ତି ନାହିଁ। ଏପରି ସ୍ଥଳେ କ୍ଷମତା ଓ ରାଜନୀତିକୁ ଲକ୍ଷ୍ୟରେ ନ ରଖି ଯଦି କେଉଁମାନେ ଦେଶ ପ୍ରେମ ବା ମାନବ ପ୍ରେମରେ ଉଦ୍‌ବୁଦ୍ଧ ହୋଇ, ସମାଜ ପାଇଁ କିଛି କାର୍ଯ୍ୟ କରିବାକୁ ସଂକଳ୍ପ କରନ୍ତି ଓ ସାଧନା ଆରମ୍ଭ କରନ୍ତି ତେବେ ସେମାନଙ୍କ ସଂଖ୍ୟା ଯେତେ ମୁଷ୍ଟିମେୟ ହେଲେ ବି ଓ ସେମାନଙ୍କ ସ୍ୱର ବର୍ତ୍ତମାନ ପାଇଁ ଯେତେ କ୍ଷୀଣ ଶୁଣାଗଲେ ବି ସେହିମାନେ ଓ ସେହିମାନଙ୍କ ସଂକଳ୍ପ ହିଁ ଭବିଷ୍ୟତ ପାଇଁ ସ୍ୱାଗତଯୋଗ୍ୟ। କାରଣ ଭବିଷ୍ୟତର ନେତୃତ୍ୱ ଆଉ ରାଜନୈତିକ ନେତୃତ୍ୱ ହୋଇ ରହିବ ନାହିଁ। ଏହା ହେବ ଆଦର୍ଶର ନେତୃତ୍ୱ-ସାମାଜିକ ନେତୃତ୍ୱ। ବ୍ୟକ୍ତିତ୍ୱ ନିର୍ଭର ନେତୃତ୍ୱ।

ଏ କଥା କ'ଣ ଆଉ କାହାକୁ ବୁଝାଇବାକୁ ପଡ଼ିବ ଯେ ଆମେ ଆଜି ସମାଜରେ କେବଳ ଏମ.ଏଲ.ଏ-ଏମ.ପି ବା ମନ୍ତ୍ରୀ ଉପମନ୍ତ୍ରୀଙ୍କୁ ଗାଡ଼ିରେ ଚଢ଼ି ବୁଲିବାର ଦେଖୁଛୁ—ପୋଲିସ ଗହଣରେ ଗତାଗତ ହେବାର ଦେଖୁଁଛୁ। ଆମ ଭଳି ସାଧାରଣ ଲୋକଙ୍କ ସହିତ ମିଶି ଆମକୁ ବାଟ ବତାଇ ଚାଲିଥିବା ଓ ଉତ୍ସାହ ଆଶ୍ୱାସନା ଦେଉଥିବା ଆମର ପ୍ରିୟ ନେତୃତ୍ୱଟିଏ ଦେଖିବାକୁ ପାଉ ନାହୁଁ? ଯଥାର୍ଥ ଲୋକପ୍ରିୟ ନେତାଟିଏ ଆମକୁ ମିଳୁ ନାହିଁ।



# ବର୍ତ୍ତମାନର ଆହ୍ୱାନ

ସାରା ଦେଶରେ ବର୍ତ୍ତମାନ ଯେଉଁସବୁ ଘଟଣା ଘଟିଯାଉଛି—ପଞ୍ଜାବଠାରୁ ଆସାମ ପର୍ଯ୍ୟନ୍ତ, ବିହାରଠାରୁ ବମ୍ବେ ପର୍ଯ୍ୟନ୍ତ—ଏବଂ ଆମ ନିଜ ରାଜ୍ୟରେ ମଧ୍ୟ ଯେଉଁସବୁ ଅର୍ଥନୈତିକ, ଶିକ୍ଷାଗତ, ପ୍ରଶାସନିକ ଓ ନୈତିକ ବିଶୃଙ୍ଖଳା ବିପର୍ଯ୍ୟୟମାନ ଦେଖାଯାଉଛି, ସେ ସବୁର କାରଣ ଓ ନିରାକରଣର ଉପାୟ ସବୁ ଆବିଷ୍କାର କରିବାର ଦାୟିତ୍ୱ କାହା ଉପରେ ? ଏହି ପ୍ରଶ୍ନଟି ଯାହା ମନେ ହେଉଛି, କେହି ନିଜ ଉପରକୁ ନେଉନାହିଁ କି ଅନ୍ୟକୁ ମଧ୍ୟ ପଚାରୁ ନାହିଁ। ଆମେ ଯେଉଁମାନଙ୍କୁ ବୁଦ୍ଧିଜୀବି ବୋଲି କହିଥାଉଁ—ଅଧ୍ୟାପକ, ଓକିଲ, ଲେଖକ, ସାମ୍ବାଦିକ ପ୍ରଭୃତି ସେମାନେ ସମସ୍ତେ କେବଳ ସେମାନଙ୍କର ନିଜର ଜୀବନ ଯାତ୍ରାଟିକୁ ସମୃଦ୍ଧ ଓ ନିରାପଦ କରି ରଖିବା ପାଇଁ ନିଜର ଯତ୍ସାମାନ୍ୟ ବୁଦ୍ଧିକୁ ନିୟୋଜିତ କରି କରି ନିଃଶେଷ କରିଦେଲେଣି। ସେମାନଙ୍କ ଠାରୁ ଆଉ କୌଣସି ବିଷୟ ଆଶା କରି ହେବ ନାହିଁ।

ବାକୀ ରହିଲେ ଆମର ରାଜନୈତିକ ନେତୃବୃନ୍ଦ। ସେମାନଙ୍କ ଭିତରେ ଯେଉଁମାନେ କ୍ଷମତାରେ ଅଛନ୍ତି, ସେମାନେ ସେମାନଙ୍କ କ୍ଷମତାକୁ ରକ୍ଷା କରିବାରେ ଓ ଭୋଗ କରିବାରେ ସତତ ବ୍ୟସ୍ତ। ଯେଉଁମାନେ କ୍ଷମତାରେ ନାହାନ୍ତି, ସେମାନେ କିପରି କ୍ଷମତାକୁ ଆସିବେ, ସେଇ ଚିନ୍ତାରେଇ ଭାବିତ ଓ ବ୍ୟାକୁଳ ହୋଇ କାଳାତିପାତ କରୁଛନ୍ତି। ଫଳରେ ଦେଶରେ ଉପୁଜିଥିବା ବର୍ତ୍ତମାନର କେତେକ ସମସ୍ୟା ଓ ସଂକଟ ଭିତରକୁ ମୁଣ୍ଡ ପୂରାଇବା ସେମାନଙ୍କ ପକ୍ଷରେ ସାଧ୍ୟାତୀତ ହୋଇ ପଡ଼ିଛି।

ଉଦାହରଣ ସ୍ୱରୂପ, ବର୍ତ୍ତମାନ ଦେଶରେ ଉପୁଜିଥିବା ସମସ୍ୟାଗୁଡ଼ିକୁ ଯଦି ବିଶ୍ଳେଷଣ କରାଯାଏ, ତେବେ ସେଗୁଡ଼ିକୁ ମୁଖ୍ୟତଃ ସାତୋଟି ଭାଗରେ ବିଭକ୍ତ କରାଯାଇ ପାରିବ। ପ୍ରଥମ ସମସ୍ୟାଟି ହେଲା—ଭାରତବର୍ଷ ଏକ ଅଖଣ୍ଡ ରାଷ୍ଟ୍ର ହୋଇ ରହିବ କି ନାହିଁ—ରହି ମଧ୍ୟ ପାରିବ କି ନାହିଁ ? ଦେଶର ଅଖଣ୍ଡତା କାହା କାହା ଉପର ନିର୍ଭର କରେ ? ଏହା କେବଳ ଏକ ରାଜନୈତିକ ବା ପ୍ରଶାସନିକ ଅଖଣ୍ଡତା ନା ଜାତୀୟତାବାଦୀର ଅଖଣ୍ଡତା ? ଯଦି ରାଜନୈତିକ ଅଖଣ୍ଡତାକୁ କେବଳ ଗୁରୁତ୍ୱ ଦିଆଯାଏ, ତେବେ ତାହା ସ୍ଥାୟୀ ହୋଇ ରହି ପାରିବ କି ? ଯଦି ଜାତୀୟତାବୋଧ ବୋଲି କିଛି ଥାଏ, ତେବେ ବର୍ତ୍ତମାନ ତାହା କେଉଁ କେଉଁ କଥା ଉପରେ ନିର୍ଭର କରୁଛି ?

ଏତେବଡ଼ ଦେଶରେ ବିଭିନ୍ନ ଭାଷା, ସଂସ୍କୃତି, ଧର୍ମ, ରୁଚି ଓ ନୀତିଗୁଡ଼ିକ ଭିତରେ ଏକ ଐକ୍ୟ ବା ସଂହତିର ସୂତ୍ର ଆବିଷ୍କାର ହୋଇ ପାରିବ କି ନାହିଁ?

ଦ୍ୱିତୀୟ ସମସ୍ୟାଟି ହେଲା– ଦେଶର ପ୍ରତିଟି ରାଜ୍ୟ ଓ ତା'ର ନେତୃତ୍ୱ କେନ୍ଦ୍ରର ଅଧୀନସ୍ଥ ହୋଇ ରହିବେ—ନା—ନିଜର ସ୍ୱାତନ୍ତ୍ର୍ୟ ଓ ମର୍ଯ୍ୟାଦାକୁ ଅକ୍ଷୁର୍ଣ୍ଣ ରଖି ଦିଲ୍ଲୀ ସହିତ ମୈତ୍ରୀ ଓ ଏକତାର ଭାବ ରକ୍ଷା କରିବେ? ତା' ଅର୍ଥ—ପ୍ରତିଟି ରାଜ୍ୟର ନେତୃତ୍ୱ (ଦଳ ନିର୍ବିଶେଷରେ) ସେହି ରାଜ୍ୟ ଭିତରେ କ୍ରମବିକଶିତ ହୋଇ ଗଠିତ ହେବ, ନା କେନ୍ଦ୍ରର ଅନୁଗ୍ରହ ନିଗ୍ରହ ଉପରେ ନିର୍ଭର କରିବ? ପ୍ରତିଟି ରାଜ୍ୟ ତା' ନିଜର ମୌଳିକ ସମସ୍ୟାଗୁଡ଼ିକୁ (ଅର୍ଥନୈତିକ, ସାମାଜିକ ଇତ୍ୟାଦି) ନିଜର ଆବଶ୍ୟକତା ଦୃଷ୍ଟିରୁ ସମାଧାନ କରିବ ନା' କେନ୍ଦ୍ରର ନିର୍ଦ୍ଦେଶାନୁସାରେ କରିବ?

ତୃତୀୟ ସମସ୍ୟାଟି ହେଲା—ଆମ ରାଷ୍ଟ୍ରର ଧର୍ମ ନିରପେକ୍ଷତା ବିଷୟଟିର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ବ୍ୟାଖ୍ୟା ଓ ପ୍ରୟୋଗ। ପ୍ରତ୍ୟେକ ଧର୍ମ ଓ ଧର୍ମାବଲମ୍ବୀମାନଙ୍କ ପାଇଁ ରାଷ୍ଟ୍ରନୀତି ଗୋଟିଏ ପ୍ରକାରେ ରହିବ, ନା ସ୍ଥଳବିଶେଷରେ ତୋଷଣ ପୋଷଣ ନୀତି ରହିବ? ପ୍ରତି ବ୍ୟକ୍ତି ପକ୍ଷରେ ଦେଶ ବା ଜାତି ବଡ଼ ହେବ, ନା ତା'ର ଧର୍ମ ବା ସଂପ୍ରଦାୟ ବଡ଼ ହୋଇ ରହିବ?

ଚତୁର୍ଥ ସମସ୍ୟାଟି ହେଲା—ରାଜନୀତି ସହିତ ଧର୍ମର ସର୍ମ୍ପକ ନିର୍ଦ୍ଧାରଣ କରିବା। କୌଣସି ସାଂପ୍ରଦାୟିକ ବା ଧାର୍ମିକ ନୀତିକୁ ନେଇ ରାଜନୈତିକ ଦଳ ଗଠିତ ଓ ସ୍ୱୀକୃତ ହୋଇପାରିବ କି ନାହିଁ।

ପଞ୍ଚମ ସମସ୍ୟାଟି ହେଲା—ସାରା ଦେଶ ପାଇଁ ଯୋଉ ଅର୍ଥନୀତିକ ବ୍ୟବସ୍ଥା ଗ୍ରହଣ କରାଯିବ—ବା ଏ ପର୍ଯ୍ୟନ୍ତ କରାଯାଇଛି—ତାହା ଏ ଦେଶର ଅଧିବାସୀଙ୍କ ପାଇଁ କଲ୍ୟାଣକର ହୋଇଛି କି ନାହିଁ, ଏବଂ ହେବ କି ନାହିଁ। ଏହି ଆର୍ଥନୀତିକ ବ୍ୟବସ୍ଥାର ଲକ୍ଷ୍ୟ କ'ଣ?

ଷଷ୍ଠ ସମସ୍ୟାଟି ହେଲା—ରାଷ୍ଟ୍ର କୌଣସି ଅର୍ଥନୈତିକ ବା ନୈତିକ ବା ସାମାଜିକ କଲ୍ୟାଣମୂଳକ କାର୍ଯ୍ୟକ୍ରମ ଗ୍ରହଣ କଲାବେଳେ—ଦେଶର ଅଧିବାସୀମାନଙ୍କୁ ସାଂପ୍ରଦାୟିକ ଦୃଷ୍ଟିରୁ ବିଭାଗ କରିବା ଉଚିତ୍ ନା କେବଳ ଅର୍ଥନୈତିକ ଦୃଷ୍ଟିରୁ ବିଚାର କରିବା ଉଚିତ?

ଏବଂ ସର୍ବଶେଷ ସମସ୍ୟାଟି ହେଲା—ଯାହାକୁ ଆମେ ଭାରତବର୍ଷ ବୋଲି କହୁଛୁ—ଏବଂ ଯାହାର ଅଧିବାସୀମାନଙ୍କୁ ଆମେ ଗୋଟିଏ ମହାଜାତି ବୋଲି କହୁଛୁ—ସେଇ ଦେଶ ବା ଜାତିର ଗୋଟିଏ ମହାନ୍ ଓ ସ୍ୱତନ୍ତ୍ର ଜାତୀୟ ଆଦର୍ଶ ବା ଲକ୍ଷ୍ୟ ଅଛି କି? ଯଦି ଅଛି ତେବେ ତାହାର ସ୍ୱରୂପ କ'ଣ ଓ ତା'ର କିପରି ପ୍ରତିଷ୍ଠା ହେବ, ସେ ସମ୍ବନ୍ଧରେ କିଛି ସ୍ଥିର ଆଲୋଚିତ ସିଦ୍ଧାନ୍ତ ହୋଇଛି କି? ବ୍ରିଟିଶ୍ ଶାସନରୁ ମୁକ୍ତ ହେଲାପରେ ଆମର ଜାତି ନିର୍ମାତାମାନେ ଓ ଜାତୀୟ ବୀରପୁରୁଷଗଣ

ଭାରତୀୟମାନଙ୍କ ପାଇଁ କିଛି ନିର୍ଦ୍ଦିଷ୍ଟ ଜାତୀୟ ଲକ୍ଷ୍ୟ ବା ଆଦର୍ଶ ନିରୂପଣ କରିଯାଇଛନ୍ତି କି? ସିଦ୍ଧାନ୍ତ କରିଯାଇଛନ୍ତି କି? ଯଦି ଆମ ପାଇଁ ସେପରି କିଛି ସିଦ୍ଧାନ୍ତ ଥାଏ, ତେବେ ସେ ସମ୍ବନ୍ଧେ ସମଗ୍ର ଜାତିକୁ ବିଭିନ୍ନ ଉପାୟରେ ବାରମ୍ବାର ଅବଗତ କରାଯାଇଛି କି? କରାଯାଉଛି କି? ବର୍ତ୍ତମାନ ଯେଉଁମାନେ ରାଷ୍ଟ୍ରର ଶାସନ ଡୋରି ହାତକୁ ନେଇଛନ୍ତି ବା ଭବିଷ୍ୟତରେ ଯେଉଁମାନେ ନେବେ ବୋଲି ପ୍ରସ୍ତୁତ ହେଉଛନ୍ତି, ସବୁ ଧରଣର ରାଜନୈତିକ ଦଳ ଆମର ଏଇ ଜାତୀୟ ଲକ୍ଷ୍ୟ ବା ଆଦର୍ଶ ସମ୍ବନ୍ଧେ ଅବଗତ ଅଛନ୍ତି କି?

ଯାହା ଦେଖାଯାଉଛି—ସାରା ଦେଶରେ କେବଳ କ୍ଷମତା ରାଜନୀତି ପାଇଁ ଘୋଡ଼ା ଦୌଡ଼ ଚାଲିଛି। କେବଳ ସେହି ଦୃଷ୍ଟି କୋଣରୁ ହିଁ ସବୁ ସମସ୍ୟାକୁ ବିଚାର ବା ସମାଧାନ କରିବାର ଚେଷ୍ଟା କରାଯାଉଛି। ଫଳରେ ଏତେଦିନ ଧରି ଆମେ ଯେଉଁସବୁ ମୌଳିକ ସମସ୍ୟାଗୁଡ଼ିକୁ ଆଡ଼େଇ ଦେଇ ଆସିଛୁ ବା ଚାପି ଚୁପି ରଖି ଆସିଛୁ—ସେହିସବୁ ସମସ୍ୟାମାନ ବର୍ତ୍ତମାନ ପଞ୍ଜାବଠାରୁ ଆସାମ ପର୍ଯ୍ୟନ୍ତ ବା ଆସାମଠାରୁ ବମ୍ବେ ପର୍ଯ୍ୟନ୍ତ ଘଟଣା ଦୁର୍ଘଟଣାଗୁଡ଼ିକ ଭିତର ଦେଇ ସାରା ଜାତିକୁ ଏଗୁଡ଼ିକର ସ୍ଥାୟୀ ସମାଧାନ ପାଇଁ ଆହ୍ୱାନ ଦେଇଛି। ତେଣୁ ବର୍ତ୍ତମାନ ଯେଉଁମାନେ ଶାସନ ଦାୟିତ୍ୱରେ ଅଛନ୍ତି ବା ଯେଉଁମାନେ ତାର ବାହାରେ ରହିଛନ୍ତି—ସେହିସବୁ ରାଜନୀତିକ ନେତା ଓ କର୍ମୀମାନଙ୍କ ପାଇଁ ବର୍ତ୍ତମାନର ସମୟ ଏକ ଆହ୍ୱାନର ସମୟ ରୂପେ ଠିଆ ହୋଇ ରହିଛି ଏବଂ କେବଳ ରାଜନୀତିକ ଲୋକମାନଙ୍କ ପକ୍ଷରେ ନୁହେଁ—ସାରା ଦେଶର ସମସ୍ତ ବୁଦ୍ଧିଜୀବୀ ସାଧାରଣ ବ୍ୟକ୍ତି ମଧ୍ୟ ଏହିସବୁ ମୌଳିକ ସମସ୍ୟାଗୁଡ଼ିକ ସମ୍ବନ୍ଧେ ଭାବିତ ଚିନ୍ତିତ ଓ କ୍ରିୟାଶୀଳ ହୁଅନ୍ତୁ—ଏହାହିଁ ବର୍ତ୍ତମାନ କାଳର ଏକମାତ୍ର ଆହ୍ୱାନ। ଏହି ଆହ୍ୱାନର ଉତ୍ତର ଉପରେ ହିଁ ଦେଶ ଓ ଜାତିର ଭବିଷ୍ୟତ ନିର୍ଭର କରୁଛି।

**

# ନେତା ଯିବେ, ଦଳ ବି ଯିବ !

''ହ୍ୟୁମାନ ସାଇକଲ'' (ମାନବଯୁଗଚକ୍ର) ଏବଂ ''ଆଇଡ଼ିଆଲ ଅଫ୍ ହ୍ୟୁମାନ ୟୁନିଟ'' (ମାନବୀୟ ଐକ୍ୟର ଆଦର୍ଶ) ନାମକ ଦୁଇଟି ଗ୍ରନ୍ଥରେ ବିଭିନ୍ନ ତଥ୍ୟ ଓ ତତ୍ତ୍ୱ ବିଶ୍ଳେଷଣ କରି ମହାଯୋଗୀ ଓ ମହାନ୍ ଦ୍ରଷ୍ଟା ପୁରୁଷ ଶ୍ରୀ ଅରବିନ୍ଦ ମାନବର ଭାବିନିୟତି ଉପରେ ଉଜ୍ଜ୍ୱଳ ଦୃଷ୍ଟି ନିକ୍ଷେପ କରିଛନ୍ତି। ତାଙ୍କ ମତରେ ଭବିଷ୍ୟତର ମାନବସମାଜ ବହୁକାଳ କାଳାନ୍ତର ଅତିକ୍ରମ କରି ଇତିହାସର ବହୁ ସରଳ-ବନ୍ଧୁର-ପତନ- ଅଭ୍ୟୁଦୟ ପନ୍ଥା ଅନୁସରଣରେ ଏପରି ଏକ ସ୍ତରରେ ନିଶ୍ଚୟ ଉପନୀତ ହେବ, ଯୋଉଠି ସେ ନିଜକୁ ବହୁ ଭାବରେ ଆବିଷ୍କାର କରି ପାରିବ, ନିଜ ଶକ୍ତି ସାମର୍ଥ୍ୟର ପୂର୍ଣ୍ଣାଙ୍ଗ ଉପଯୋଗ କରି ପାରିବ ଓ ନିଜ ଭିତରର ଏବଂ ବାହାରର ବହୁ ସ୍ଥୂଳ ବାଧାବିଘ୍ନକୁ ଜୟ କରି ସେ ଆଉ ଗୋଟିଏ ଶୁଭତର ନିୟତିର ବିଧାନ ସଙ୍ଗେ ପୂର୍ଣ୍ଣତଃ ସହଯୋଗ କରିପାରିବ। ତେଣିକି ମାନବ ସମାଜର ଭାଗ୍ୟ ଆଉ ଏକ ଉଜ୍ଜ୍ୱଳତର ଏବଂ କଲ୍ୟାଣତର ପଥରେ ସ୍ୱାଭାବିକ ଭାବେ ଗତି କରିବ।

ଏହି ଭବିତବ୍ୟତାର ବହୁ ବିଧାନ ଭିତରେ ଗୋଟିଏ ବିଶେଷ ବିଧାନ ହେଲା—ମଣିଷର ମନ କ୍ଷୁଦ୍ରତା ଓ ସଂକୀର୍ଣ୍ଣତା ଭିତରୁ ନିଶ୍ଚୟ ମୁକ୍ତ ହେବ। ଏହି କ୍ଷୁଦ୍ରତା ଓ ସଂକୀର୍ଣ୍ଣତା ଆସେ ମଣିଷର ବ୍ୟକ୍ତିଗତ ''ଅହଂକାର''ର ଦାବୀ ଭିତରୁ ଏବଂ ଏହି ବ୍ୟକ୍ତିଗତ ଅହଂକାର ନିଜକୁ ପୁଷ୍ଟ, ସବଳ, ପ୍ରଭାବଶାଳୀ ଏବଂ କ୍ଷମତାପନ୍ନ କରିବା ପାଇଁ ପରିବାର, ବଂଶ, ସମାଜ ଓ ଗୋଷ୍ଠୀ ଗଠନ କରି ଅନ୍ୟ ପରିବାର, ବଂଶ, ସମାଜ ଓ ଗୋଷ୍ଠୀ ସଙ୍ଗେ ନିତ୍ୟ ସଂଗ୍ରାମରେ ରତଥାଏ ଓ ରହିଛି। ସାମୂହିକ ଓ ସାମଗ୍ରିକ କଲ୍ୟାଣ ବା ବିକାଶ ଉପରେ ଦୃଷ୍ଟି ନ ଦେଇ ଓ ସେ ଦିଗରେ ଉଦ୍ୟମ ନ କରି, ଏହି ବିସ୍ତାରିତ ଅହଂର ଗୋଷ୍ଠୀଗୁଡ଼ିକ ନିଜର କ୍ଷୁଦ୍ର ଓ ସଂକୀର୍ଣ୍ଣ ବାସନା ପୂରଣ ଲାଗି ଅହରହ ସାଧ ସାଧନା କରନ୍ତି—ପ୍ରଚଣ୍ଡ ପ୍ରଚଣ୍ଡ କର୍ମମାନ ମଧ କରିଥାନ୍ତି—ଏବଂ ସେହି ସବୁ ପ୍ରଚଣ୍ଡ କର୍ମଗୁଡ଼ିକର ସାଧନା ଭିତରୁ ଯେଉଁ ଭୀଷଣ ସ୍ପନ୍ଦନ ସୃଷ୍ଟି ହୁଏ, ତାକୁ ଅନୁଭବ କରି ଉଲ୍ଲସିତ ଓ ପ୍ରମତ୍ତ ହେଉଥାନ୍ତି।

ବର୍ତ୍ତମାନ ଆମ ଦେଶରେ ଓ ସାରା ପୃଥିବୀରେ ଏହି ବିସ୍ତାରିତ ଅହଂର ଛୋଟ ଛୋଟ ଗୋଷ୍ଠୀମାନ ମହାପ୍ରଚଣ୍ଡ ହୋଇ ଉଠିଛନ୍ତି ଏବଂ ଘୋର କର୍ମମାନ ମଧ କରୁଛନ୍ତି। ପ୍ରଚଳିତ ଅର୍ଥରେ ଏହାକୁ ରାଜନୀତିକ କର୍ମଧାରା କୁହାଯାଏ ଏବଂ

ଏହି ଗୋଷ୍ଠୀଗୁଡ଼ିକୁ ପାର୍ଟି ବା ରାଜନୈତିକ ଦଳ କୁହାଯାଏ। ଏହି ରାଜନୈତିକ ଗୋଷ୍ଠୀ କେବଳ ଯେ ଦେଶର ରାଜନୈତିକ ଶାସନ କ୍ଷମତା ଅଧିକାର କରିବାକୁ ବ୍ୟଗ୍ର ହୁଅନ୍ତି, ତାହା ନୁହେଁ—ଦେଶର ଧର୍ମ ସାହିତ୍ୟ, କଳା ସଂସ୍କୃତି, ଶିକ୍ଷା ଓ ପ୍ରଶାସନିକ କ୍ଷେତ୍ରରେ ମଧ୍ୟ ସେମାନେ ଆପଣାର ସ୍ୱାର୍ଥଦୁଷ୍ଟ ପ୍ରଭାବ ବିସ୍ତାର କରି ବସନ୍ତି। ଏ ଦୃଷ୍ଟିରୁ ଯେ କୌଣସି ରାଜନୈତିକ ଦଳ ବା ଗୋଷ୍ଠୀ ସଙ୍ଗେ ଆପଣ ଯେ କୌଣସି ଧାର୍ମିକ ଅନୁଷ୍ଠାନ ବା ଟ୍ରେଡ୍ ୟୁନିୟନକୁ ମଧ୍ୟ ସମାନ ବୋଲି ମନେ କରି ପାରନ୍ତି। ଶିକ୍ଷକ ମହାସଂଘ ବା ଚତୁର୍ଥ ଶ୍ରେଣୀ କର୍ମଚାରୀ ସଂଘ ବା ଗେଜେଟେଡ୍ ଅଫିସରସ୍ ଆସୋସିଏସନ୍, ବା ବ୍ୟବସାୟୀ ସଂଘ ଓ ଅମୁକ ଧର୍ମର ସ୍ୱାର୍ଥ ସଂରକ୍ଷଣ କୌଣସି ଅନୁଷ୍ଠାନ ଏହି ଦୃଷ୍ଟିରୁ ଅତି ସଂକୀର୍ଣ୍ଣ ଓ ପ୍ରକୃତରେ ରାଜନୈତିକ ମତଲବ ଦୋଷରେ ଦୁଷ୍ଟ। ଏମାନେ ସମଗ୍ର ଦେଶରେ, ଜାତିର ବା ସମୂହର ସାମଗ୍ରିକ କଲ୍ୟାଣ ସଙ୍ଗେ ବା ସ୍ୱାର୍ଥ ସଙ୍ଗେ ନିଜର କଲ୍ୟାଣ ବା ସ୍ୱାର୍ଥକୁ ମିଶାଇ ବିଚାର କରି ପାରନ୍ତି ନାହିଁ। ଏମାନେ ସମୂହଠାରୁ ନିଜର ସ୍ୱାର୍ଥକୁ ବିଚ୍ଛିନ୍ନ କରି ଦେଖନ୍ତି ଏବଂ ବଡ଼ କରି ଦେଖନ୍ତି। ଏମାନଙ୍କ ମନୋଭାବ ହେଲା ସମଗ୍ର ଘରଟା ପୋଡ଼ି ପଛେ ଭସ୍ମ ହୋଇ ଯାଉ ଆମ ହାତରେ ବା ମୋ ହାତରେ କୁଟାଖିଏ ବା ବାଉଁଶଟିଏ ପଡ଼ିଗଲେ ହେଲା। କିମ୍ବା ସମଗ୍ର ଘରଟି ପୋଡ଼ି ଯିବାକୁ ଆରମ୍ଭ କଲାବେଳେ ତାହା କିପରି ଅଗ୍ନି ମୁଖରୁ ରକ୍ଷା ପାଇବ, ସେ ଚେଷ୍ଟା ନ କରି, ଏପରିକି ତେଣିକି ଦୃଷ୍ଟିପାତ ନ ଦେଇ ତା' ଭିତରୁ ଯାହା କିଛି ମାଲମତା ମିଳିବ, ତାକୁ ନିଜେ ନେଇ ଛୁଟି ପଳାଇବା ହେଲା ଏମାନଙ୍କର ମତଲବ। ଏହାକୁ ନିନ୍ଦନୀୟ ଅର୍ଥରେ ସଂକୀର୍ଣ୍ଣ ରାଜନୈତିକ ମନୋଭାବ କୁହାଯାଇଛି।

ଶ୍ରୀ ଅରବିନ୍ଦ ଭବିଷ୍ୟତ ମାନବ ସମାଜର ନିୟତି ଓ ବିଧାନ ସମ୍ପର୍କରେ କହିବାକୁ ଯାଇ ବହୁଭାବେ ସ୍ପଷ୍ଟ କରି କହିଛନ୍ତି ଯେ, ଆସନ୍ତା ଭବିଷ୍ୟତରେ ରାଜନୈତିକ ଦଳଗୁଡ଼ିକ ରହିବ ନାହିଁ ଏବଂ ଏହି ସବୁ ସମୂହ ସ୍ୱାର୍ଥଠାରୁ ବା ସମଗ୍ର ସତ୍ୟଠାରୁ ବିଚ୍ଛିନ୍ନ ସ୍ୱାର୍ଥ ସାଧକ ଗୋଷ୍ଠୀମାନ ମଧ୍ୟ ଆଉ ତିଷ୍ଠି ପାରିବ ନାହିଁ।

ଏ କଥା କିଛି ବର୍ଷ ତଳେ ଆମକୁ କେବଳ ଏକ ଚିନ୍ତାଧାର ବୋଲି ମନେ ହେଉଥିଲା। ମାତ୍ର ବର୍ତ୍ତମାନ ପୃଥିବୀର ବିଭିନ୍ନ ଦେଶର ଅବସ୍ଥା ଦେଖିଲା ପରେ ଓ ଆମ ନିଜ ଦେଶର ଅବସ୍ଥା ଦେଖିବା ପରେ ଶ୍ରୀ ଅରବିନ୍ଦଙ୍କର ଏହି ଭବିଷ୍ୟତ ବାଣୀର ସତ୍ୟତା ଆମ ଆଖି ଆଗରେ କ୍ରମଶଃ ସ୍ପଷ୍ଟରୁ ସ୍ପଷ୍ଟତର ହୋଇଉଠୁଛି। କେବଳ ଭାରତବର୍ଷର କଥା ଦେଖନ୍ତୁ; ଏତେ ବଡ଼ ଦେଶରେ ବର୍ତ୍ତମାନ ବହୁ ପାର୍ଟି ରହିଛନ୍ତି—ମାତ୍ର କୋଉ ଗୋଟିଏ ପାର୍ଟିର ଆଉ ଏପରି ଶକ୍ତି ନାହିଁ, ଯେ କି ଆପଣା ବଳରେ ଶାସନ କରିବାର ସାମର୍ଥ୍ୟ ଦେଖାଇ ପାରିବ। ତା' ଅର୍ଥ, ଏହି

କ୍ଷୁଦ୍ରଚେତା ରାଜନୈତିକ ଦଳଗୁଡ଼ିକ କ୍ରମଶଃ ଭାଙ୍ଗିରୁଜି ଗଲାଣି ପୁରୁଣା ଦେଉଳ ପରି। ତା' ଭିତରର ଦେବଦେବୀମାନେ ମଧ୍ୟ ଅପହୃତ ବା ଅନ୍ତର୍ହିତ।

ଏମାନେ କେବଳ ଶାସନ କ୍ଷମତାକୁ ଅଧିକାର କରିବା ଲାଗି ପରସ୍ପର ସଙ୍ଗେ ମିଶିବାକୁ ଛକାପଂଝା ଖେଳୁଛନ୍ତି। ଦୂଷିତ ଅନ୍ତର, ଦୂଷିତ ଲକ୍ଷ୍ୟ, କ୍ଷୁଦ୍ରଚିତ୍ତ ଏବଂ କ୍ଷୁଦ୍ରକର୍ମା ମତ୍ସରୀଭାବାପନ୍ନ ରାଜାମାନେ ମହା ମହା ରାଜବଂଶରେ ଜନ୍ମ ଏବଂ ମହାକାଳ ସେମାନଙ୍କୁ ପକ୍ୱ ରମ୍ଭା ପ୍ରାୟେ ଗିଳି ଦେଲା। ରାଜା ଗଲେ ରାଜତନ୍ତ ଗଲା। ଏବେ ପାଳି ପଡ଼ିଛି ରାଜନୀତିର ନେତା ଓ ଦଳମାନଙ୍କର। ମହାକାଳ ଏହି କ୍ଷୁଦ୍ର କୁତ୍ସିତମନା ରାଜନୀତିକ ନେତାମାନଙ୍କର ଆଡ଼କୁ ଜିଭ ବଢ଼େଇଛି—ଆଖିର ପଲକ ପଡ଼ି ନଥିବ ତା'ର ମୁଖ ଗହ୍ୱର ଭିତରକୁ ସେ ସେମାନଙ୍କୁ ଟାଣି ନେଇ ଗର୍ଭକୁ କ୍ଷେପି ଦେବ। ଏହି ନେତାମାନଙ୍କ ସହ ଏହି ଦଳଗୁଡ଼ିକ ମଧ୍ୟ ଅଚିରେ ମହାକାଳ ଗର୍ଭରେ ଲୀନ ହୋଇଯିବେ।.....ତା'ପରେ ?

ତା'ପରେ ସୁଦିନ ଆସିବା ଉଚିତ୍, ଆସିବାକୁ ବାଧ୍ୟ ଓ ଆମେ ମଧ୍ୟ ସେଇ ସୁଦିନକୁ ଆହ୍ୱାନ କରିବାକୁ ବାଧ୍ୟ ହେବୁ।

❋❋

# ଲୋକନାୟକଙ୍କ ଆତ୍ମାହୁତି

## (ଏକ ଅଶ୍ରୁଳ ଉଦ୍‌ବୋଧନ)

ସେ ନିଜେ ମୃତ୍ୟୁକୁ ନ ଚାହିଁବା ପୂର୍ବରୁ ମୃତ୍ୟୁ ତାଙ୍କୁ ନେଇ ପାରି ନ ଥିଲା। କିନ୍ତୁ ଗତ ଦୁଇବର୍ଷ ଧରି ମୃତ୍ୟୁ ତାଙ୍କ ପାଖେ ପାଖେ ଥିଲା—ଖୁବ୍ ନୀରବ ସନ୍ତର୍ପଣରେ, ଖୁବ୍ ସମ୍ମାନଜନକ ବ୍ୟବଧାନରେ, ଖୁବ୍ ବିନୀତ ଭଦ୍ରଭାବରେ ସ୍ୱୟଂ ଧର୍ମଦେବ ଯମରାଜ ବହୁଦିନ ଧରି ତାଙ୍କ ପାଖେ ପାଖେ ରହି ସତେ ଯେମିତି ତାଙ୍କର ଅନୁମତି ଭିକ୍ଷା କରି ଆସୁଥିଲେ। ସେ ସଦୟ ଅନୁମତି ନ ଦେବା ଆଗରୁ କିପରି ଭାବେ ତାଙ୍କୁ ସେ ପରଲୋକକୁ ନେଇ ପାରିଥାନ୍ତେ ? ଆଜି ପର୍ଯ୍ୟନ୍ତ ଆମ ଭଳି ଇତର ଜୀବମାନଙ୍କ ପାଇଁ ମୃତ୍ୟୁ ହୋଇଆସିଛି ଏକ ଅନିବାର୍ଯ୍ୟ ବିଧାନ। ଆମ୍ଭମାନଙ୍କ ଲାଗି ମୃତ୍ୟୁ ହିଁ ସର୍ବଶ୍ରେଷ୍ଠ ମହାବଳୀ ଦେବ। ଆମେ ସବୁ ନିମ୍ନ ପ୍ରକୃତିର ପ୍ରେରଣାରେ ବଞ୍ଚୁ ଏବଂ ସେହି ନିମ୍ନ ପ୍ରକୃତିର ପ୍ରେରଣାରେ ମୃତ୍ୟୁ ଦ୍ୱାରା କବଳିତ ହେଉ। ଆମ୍ଭମାନଙ୍କର ମୃତ୍ୟୁ ଉପରେ କିଛି ଅଧିକାର ନାହିଁ। ମୃତ୍ୟୁ ଉପରେ କର୍ତ୍ତୃତ୍ୱଟି ଆମର ଇଚ୍ଛାଧୀନ ନୁହେଁ। କିନ୍ତୁ ମହାପୁରୁଷମାନେ ଇଚ୍ଛାମୃତ୍ୟୁ ବରଣ କରନ୍ତି। ସେମାନେ ଯେତେବେଳେ ନିଜର ଆତ୍ମାନୁଭୂତିରେ ଜାଣନ୍ତି ଯେ, ଆଉ ଏ ପୃଥିବୀରେ ବଞ୍ଚିବା ଅନାବଶ୍ୟକ—ସେତେବେଳେ ସେମାନେ ମୃତ୍ୟୁକୁ ଆହ୍ୱାନ କରନ୍ତି। ମୃତ୍ୟୁ ଖୁବ୍ ଭଦ୍ରଭାବେ ସେମାନଙ୍କ ପାଖକୁ ଆସେ ଏବଂ ସେମାନେ ମଧ୍ୟ ମୃତ୍ୟୁ ସଙ୍ଗେ ଖୁବ୍ ଭଦ୍ରଭାବେ ଆରପୁରକୁ ଚାଲିଯାନ୍ତି। ଯୋଗୀ ଋଷିମାନେ ଆତ୍ମାକୁ ଯୋଗ ବଳରେ ସମାଧିସ୍ଥ ରଖି ଦେହତ୍ୟାଗ କରନ୍ତି ସଚେତନ ଭାବେ। ମହାପୁରୁଷମାନେ ନୀରବ ନିରୀହ ଧ୍ୟାନସ୍ଥ ହୋଇ ମୃତ୍ୟୁ ବରଣ କରନ୍ତି। ଏପରି ସ୍ତରର ଭଲ ମଣିଷ ଅଛନ୍ତି, ଦେଖାଯାଇଛି, ସେମାନେ ମଧ୍ୟ ଖୁବ୍ ସୁନ୍ଦର, ସହଜ ଓ ଭଦ୍ରଭାବେ ମୃତ୍ୟୁ ହାତରେ ନିଜକୁ ସମର୍ପଣ କରି ଦେଇଛନ୍ତି।

ସେ ଦିନ ପାହାନ୍ତା ପ୍ରହରର ପବିତ୍ର ଏକ ମୁହୂର୍ତ୍ତକୁ ସାର୍ଥକ କରି ଜନନାୟକ ଜୟ ପ୍ରକାଶଜୀ ଧୀର ସ୍ଥିର ଭଦ୍ରଭାବରେ ଚିରଦିନ ଲାଗି ଆଖି ବୁଜିଦେଲେ। ଏହି ମର ଦେହ ତ୍ୟାଗ କରି ତାଙ୍କର ଅମର ଆତ୍ମା ଆରପୁରକୁ ଚାଲିଗଲା। ଏହା ପୂର୍ବରୁ ସେ ଯେପରି ଭାବେ ଏତେ ଦିନ ବଞ୍ଚିଥିଲେ, ସେପରି ଭାବେ କେହି ସାଧାରଣ ଲୋକ ବଞ୍ଚିପାରି ନ ଥାନ୍ତା। ସେ କୃତ୍ରିମ କିଡ୍‌ନୀ ଓ ଡାଏଲେସିସ୍

ଭିତରେ ବଞ୍ଚିଥିଲେ ଏବଂ ଖୁବ୍ ସାହସିକତାର ସହିତ ବଞ୍ଚିଥିଲେ। ଅବଶ୍ୟ କେବଳ ବଞ୍ଚିବା ଲାଗି ଏକ ଜାନ୍ତବ ପ୍ରେରଣା ବଞ୍ଚାଇ ରଖି ନ ଥିଲା। ଗାନ୍ଧିଜୀ, ରାଜଗୋପାଳଚାରୀ, ଆଚାର୍ଯ୍ୟ ବିନୋବା, ଗୋପବନ୍ଧୁ ପ୍ରଭୃତି ମହାପୁରୁଷମାନେ ନିଜପାଇଁ ବଞ୍ଚନ୍ତି ନାହିଁ—ଆମଭଳି ହତଭାଗାମାନଙ୍କର କଲ୍ୟାଣ ଲାଗି ବଞ୍ଚନ୍ତି। ଏ ପୃଥିବୀକୁ ସୁନ୍ଦର କରିବାକୁ, ସହନୀୟ କରିବାକୁ ସେମାନେ ନିଜ ଜୀବନରେ ଅଶେଷ ଯାତନା ଭୋଗିଥାନ୍ତି। ନିଜ ଜୀବନକୁ ଉତ୍ସର୍ଗ କରି ଦେଇଥାନ୍ତି।

ଲୋକନାୟକ ଜୟପ୍ରକାଶଜୀ ନିଜ ଜୀବନକୁ ଦେଶ ପାଇଁ ପାଣି ଛଡ଼ାଇ ଦେଇଥିଲେ। ଭାରତର ରାଷ୍ଟ୍ରପତି ବା ପ୍ରଧାନମନ୍ତ୍ରୀ ହେବାର ଅଶେଷ ଯୋଗ୍ୟତା ତାଙ୍କର ଥିଲା। ଆମ ପିଲାଦିନେ ନେହେରୁଙ୍କ ପରେ ଆମେ ଜୟପ୍ରକାଶଜୀଙ୍କୁ ଏ ଦେଶର ରକ୍ଷକ ବୋଲି ଭାବିଥିଲୁ। ମାତ୍ର ଜୟପ୍ରକାଶଜୀ ରାଜନୈତିକ କ୍ଷମତା ଆଶା କଲେ ନାହିଁ। ତା'ଠାରୁ ଦୂରେଇ ରହିଲେ। ସେ ଗାନ୍ଧିଜୀଙ୍କର ଏକାନ୍ତ ଅନୁରକ୍ତ ଥିଲେ ଏବଂ ସେହି ମାର୍ଗରେ ଭାରତରେ ଏକ ସାମାଜିକି ବିପ୍ଳବର ଆୟୋଜନ କଲେ। ସେଥିପାଇଁ ସେ ସଙ୍ଗଠନ କଲେ ଓ ନିଜ ଜୀବନକୁ ମଧ ସଙ୍ଗଠିତ କଲେ। ତାଙ୍କର ସାମାଜିକ ଦର୍ଶନ ଥିଲା "ସମ୍ପୂର୍ଣ୍ଣ ବିପ୍ଳବ"। ସେ କେବଳ ଯେ କୌଣସି ଉପାୟରେ ଦେଶର ରାଜନୈତିକ ବା ଅର୍ଥନୈତିକ ଉନ୍ନତି ଚାହୁଁ ନ ଥିଲେ କିମ୍ବା ସମାଜର ଏକପାଖିଆ ବିଚାର ଚାହୁଁ ନ ଥିଲେ—ଯେମତି ଆଜିକାଲି ବହୁ ବାହାଦୁରିଆ ନେତା କହନ୍ତି—ଦେଶକୁ ଏମିତି କରିଦେବି, ସେମିତି କରିଦେବି, ସବୁ ଗାଁକୁ ସହର କରିଦେବି, ସବୁଠି ବନ୍ଦର କରିଦେବି—କଳକାରଖାନା ବସେଇଦେବି, ମତେ ଭୋଟ ଦିଅ—ଆମ ଦଳକୁ ଭୋଟ ଦିଅ...ଇତ୍ୟାଦି ଇତ୍ୟାଦି ଫାଜିଲ୍ କଥାରେ ତାଙ୍କର ଆସ୍ଥା ନ ଥିଲା। ଅର୍ଥନୀତିକ ବିକାଶ ନିଶ୍ଚୟ ବଡ଼ କଥା। ମାତ୍ର ବ୍ୟକ୍ତିର ଓ ସମାଜର ଅନ୍ୟାନ୍ୟ ବିକାଶଗୁଡ଼ିକୁ ଆଖି ବୁଜିଦେଇ କେବଳ ଯେ କୌଣସି ଉପାୟରେ ଧନଧାନ୍ୟ ବଢ଼ାଇବାକୁ ବସିଲେ ମନୁଷ୍ୟତାର ବିପର୍ଯ୍ୟୟ ଘଟିଥାଏ। କମ୍ୟୁନିଷ୍ଟ ରାଷ୍ଟ୍ରମାନେ ମଧ କେବଳ ଅର୍ଥନୀତିକ ବିକାଶ ଉପରେ ଦୃଷ୍ଟି ଦେଇ ନାହାନ୍ତି। ସମାଜର ନୈତିକ ଓ ସାଂସ୍କୃତିକ ବିକାଶ ଉପରେ ମଧ ସମଧିକ ଗୁରୁତ୍ୱ ଦିଆଯାଉଛି ସେହି ସବୁ ରାଷ୍ଟ୍ରମାନଙ୍କରେ। ତା' ନହେଲେ ଗୋଟିଏ ଦେଶ କେବଳ ସ୍ୱାର୍ଥପର ଅମାର୍ଜିତ ଜାନ୍ତବ ପ୍ରକୃତିର ଚୋର ଡକାୟତଙ୍କ ଦ୍ୱାରା ପୂର୍ଣ୍ଣ ହୋଇଯିବ ଓ ସେମାନେ ନାନା ଉପାୟରେ ଠୁଳ କରୁଥିବା ଧନଧାନ୍ୟରେ ପୂର୍ଣ୍ଣ ହୋଇ ମନୁଷ୍ୟତାକୁ ଜଡ଼ମତି ଓ ହୀନଚିତ୍ତ କରି ଦେବେ। ଜୟପ୍ରକାଶଜୀ ବ୍ୟକ୍ତି ଓ ସମାଜର ସର୍ବାଙ୍ଗୀନ ବିକାଶ ଏକାବେଳେକେ ଚାହୁଁଥିଲେ ଏବଂ ବ୍ୟକ୍ତି ଓ ସମାଜର କର୍ତ୍ତବ୍ୟ ଓ ଅଧିକାର ଭିତରେ ଏକ ସମତା ଓ ସଙ୍ଗତି ଆଣିବାକୁ ସାଧନା କରିଥିଲେ; ଦିଗ୍‌ଦର୍ଶନ ଦେଇଥିଲେ। ସେ ଥିଲେ ବ୍ୟକ୍ତି-ସ୍ୱାଧୀନତାର ପୂଜାରୀ—ମାତ୍ର ସମାଜର ସାମୂହିକ କଲ୍ୟାଣ

ବିନିମୟରେ ନୁହେଁ। ତାଙ୍କର ମନୁଷ୍ୟର ଅନ୍ତର୍ନିହିତ ଦିବ୍ୟ ପ୍ରକୃତି ଉପରେ ଖୁବ୍ ଆସ୍ଥା ଓ ବିଶ୍ୱାସ ଥିଲା। ସେଥିପାଇଁ ସେ ଚମ୍ବଲ ଉପତ୍ୟକାର ଦୁର୍ଦ୍ଧର୍ଷ ଡକାୟତମାନଙ୍କର ହୃଦୟ ପରିବର୍ତ୍ତନ ପାଇଁ ଚେଷ୍ଟା କରିଥିଲେ। ହିଂସା ବା ପ୍ରତିହିଂସା ଦ୍ୱାରା ନୁହେଁ—ଅସତ୍ୟ ବା କୁଟୀଳ ଉପାୟ ଦ୍ୱାରା ନୁହେଁ—ପ୍ରେମ ଦ୍ୱାରା, ସଦାଚରଣ ଦ୍ୱାରା ମନୁଷ୍ୟର ବ୍ୟକ୍ତିଗତ ଓ ସାମାଜିକ ପ୍ରକୃତିର ରୂପାନ୍ତର ଘଟାଯାଇ ପାରିବ, ଏହା ସେ ନିଜ ଜୀବନରେ ପ୍ରୟୋଗ କରି ଓ ସାମାଜିକ କ୍ଷେତ୍ରରେ ପରୀକ୍ଷା କରି ଚାଲିଥିଲେ। ଏ ଦିଗରେ ସେ ଥିଲେ—ଗାନ୍ଧିଜୀଙ୍କର ଉତ୍ତର ଦାୟାଦ ବା ଉତ୍ତର ସାଧକ।

ସେ ଥିଲେ ଆଜନ୍ମ ବିପ୍ଲବୀ। କିନ୍ତୁ ସେ ବିଦ୍ରୋହୀ ନ ଥିଲେ। ସାମାନ୍ୟଲାଭ ପାଇଁ ସେ ସଂଗ୍ରାମ କରୁ ନ ଥିଲେ। ସାମାନ୍ୟ ପ୍ରାପ୍ତିରେ ତାଙ୍କର ତୃପ୍ତି ନଥିଲା। ସେ ଚାହୁଁଥିଲେ—ବ୍ୟକ୍ତି ଓ ସମାଜର ଆମୂଳଚୂଳ ପରିପୂର୍ଣ୍ଣତା। ସେତେକ ନ ପାଇବା ପର୍ଯ୍ୟନ୍ତ ମନୁଷ୍ୟ ବିପ୍ଲବ କରୁଥାଉ—ଏହି ଥିଲା ତାଙ୍କର ମୂଳମନ୍ତ୍ର ଓ ଜୀବନ ଦର୍ଶନ।

ସାମାଜିକ ଘଟଣା ପ୍ରବାହର ବିଶ୍ଳେଷକ ଓ ବିଚାରକ ତତ୍‌ବିଦ୍‌ମାନେ କହନ୍ତି—ଜୟପ୍ରକାଶଜୀ ଦ୍ୱିତୀୟ ଥର ଲାଗି ୧୯୭୭ ମସିହାରେ ଭାରତବାସୀଙ୍କୁ ସ୍ୱାଧୀନତା ଅର୍ପଣ କରିଥିଲେ। ଏହି ମନ୍ତବ୍ୟର ଅର୍ଥ ଅର୍ଥାନ୍ତର ଯାହାହେଉ ପଛକେ, ଜୟପ୍ରକାଶଜୀ ଯେ ମନୁଷ୍ୟର ସ୍ୱାଧୀନତା ପାଇଁ ଆଜୀବନ ସଂଗ୍ରାମ ଓ ସାଧନା କରି ଆସିଛନ୍ତି—ଏଥିରେ କେହି ଦ୍ୱିମତ ହୋଇ ପାରିବେ ନାହିଁ। ଜୟପ୍ରକାଶଜୀ ଦେଶର ବିବିଧ ଓ ବିଭିନ୍ନ ଲକ୍ଷ୍ୟ ଦଳମାନଙ୍କୁ ନେଇ ଜନତା ପାର୍ଟିର ଶୁଭ ଦେଇଥିଲେ। ଗାନ୍ଧିଜୀଙ୍କ ସମାଧି ଛୁଆଇଁ ପ୍ରତିଜ୍ଞା କରାଇଥିଲେ ଏବଂ ଆଶା କରିଥିଲେ ଯେ, ଏହି ଦଳ ହିଁ ତାଙ୍କ ପୂର୍ଣ୍ଣାଙ୍ଗ ବିପ୍ଲବର ଆଦର୍ଶକୁ ଚରିତାର୍ଥ କରିବା ଦିଗରେ ଅଗ୍ରସର ହେବ। ମାତ୍ର ଶୋଚନୀୟ ବିଡ଼ମ୍ବନା ଯେ, ତାଙ୍କରି ଆଖି ଆଗରେ ଜନତାଦଳ ଖଣ୍ଡ ବିଖଣ୍ଡିତ ହୋଇଗଲା। ତାଙ୍କରି ନିର୍ଦ୍ଦେଶରେ ସମବେତ ନେତୃଗଣ କ୍ଷମତା ଲାଗି ପରସ୍ପର ସଙ୍ଗେ ଅତି ଜଘନ୍ୟ ଭାବେ କଳହ ଓ ସମରରେ ମାତିଗଲେ ଓ ପରସ୍ପରକୁ ବିଚବ୍‌ଜାର ଉପରେ ଚିତ୍ କରି ଜାନ୍ତବ ଉଲ୍ଲାସରେ ପାଶବିକ କୁହାଟମାନ ଛାଡ଼ିଲେ। ଯଦୁବଂଶ ଧ୍ୱଂସ ହେଲା ବେଳର ଦୃଶ୍ୟ ପୁଣିଥରେ ଅଭିନୀତ ହେବାକୁ ଲାଗିଲା। ଲୋକନାୟକ ଆଉ ଏହି ବୀଭତ୍ସ ଦୃଶ୍ୟ ଦେଖି ପାରିଲେ ନାହିଁ—ଆଖି ବୁଜିଦେଲେ। ଚିରଦିନ ଲାଗି ଆଖି ବୁଜିଦେଲେ। ମୃତ୍ୟୁର ଚାରିପାଞ୍ଚଦିନ ପୂର୍ବରୁ ସେ ବେଶ୍ ସୁସ୍ଥ ଥିଲେ। ମାତ୍ର ତା'ରି ଭିତରେ ସେ ତାଙ୍କର ଚିକିତ୍ସକ ଓ ବନ୍ଧୁମାନଙ୍କ ଆଗରେ ଅତି ଦୁଃଖରେ କହୁଥିଲେ—"ମୁଁ ଢେର୍‌ଦିନ ବଞ୍ଚିଲିଣି—ଆଉ ତ ମୁଁ ଦେଶପାଇଁ କିଛି କରି ପାରୁ ନାହିଁ, ଏଥର ମୋତେ ଚିରଦିନ ଲାଗି ଛୁଟି ମିଳୁ।" ତାହା ସେ ପାଇଲେ। ପରମାତ୍ମା ଏହି ମହାନ୍ ଆତ୍ମାକୁ ଅତି ଆଦରରେ ନିଜ କୋଳକୁ ଟାଣି ନେଲେ।

ତାଙ୍କ ମୃତ୍ୟୁରେ ଚାରିଆଡ଼େ ଶୋକଛାୟା ଘୋଟିଯାଇଛି। ସମସ୍ତେ ଭାବୁଛନ୍ତି—ଦେଶ ଜଣେ ମହାନ୍‌ବନ୍ଧୁଙ୍କୁ ହରାଇଲା—ଜଣେ ରକ୍ଷାକର୍ତ୍ତାଙ୍କୁ ହରାଇଲା, ଜଣେ ଦିଗ୍‌ଦର୍ଶକଙ୍କୁ ହରାଇଲା, ଜଣେ ଅଭୟ ଦାତାଙ୍କୁ ହରାଇଲା।

କିନ୍ତୁ ବିଚିତ୍ର ଲାଗୁଛି, ଯେତେବେଳେ ବହୁ ହଠକାରୀ କ୍ଷମତାଲୋଭୀ ରାଜନୀତି ବ୍ୟବସାୟୀମାନେ ତାଙ୍କ ଲାଗି ଶୋକ ପ୍ରକାଶ କରୁଛନ୍ତି। ସେମାନେ ତାଙ୍କ ନିର୍ଦ୍ଦେଶ କେବେ ମାନି ନାହାଁନ୍ତି। ସେମାନେ ଲୋକନାୟକଙ୍କୁ ଚିହ୍ନି ନାହାନ୍ତି, ତାଙ୍କର ମହାନ୍ ବ୍ୟକ୍ତିତ୍ୱର ପ୍ରଭାବ ସାମାନ୍ୟ ଭାବେ ହେଲେ ବି ସେମାନଙ୍କ ହୃଦୟକୁ ସ୍ପର୍ଶ କରି ନାହିଁ। ସେମାନେ ବରଂ ତାଙ୍କର ବିରୋଧୀ ଲୋକ। କିନ୍ତୁ ଖବର କାଗଜ ବାଲାଏ ସେଇମାନଙ୍କର କୃତ୍ରିମ ଶୋକବାର୍ତ୍ତାକୁ ଛାପୁଛନ୍ତି। ଖୁବ୍ ଭଲ ହୁଅନ୍ତା, ଯଦି ଖବର କାଗଜ ବାଲାମାନେ ରାମ ପ୍ରଧାନ, ରମଜାନ ଖାଁ, ସାବୀ ବେଓ୍ୱା, ଜନାଥନ ସାବୁଦ୍, ରାମାୟାରାଜୁ, ମଛିନ୍ଦର ସିଂ ବା ହାର୍ଗୁଣା ସାଓଁତା ପ୍ରଭୃତିଙ୍କର ଶୋକବାର୍ତ୍ତାରେ ସେମାନଙ୍କର କାଗଜର ପୃଷ୍ଠା ପୂର୍ଣ୍ଣ କରି ଦିଅନ୍ତେ। ଏଇମାନେ ହିଁ ପ୍ରକୃତ ଦେଶବାସୀ, ଏଇମାନେହିଁ ଦେହର ଝାଳ ନିଗାଡ଼ି ଶ୍ରମ କରନ୍ତି। ଭାରତବର୍ଷରେ ଏହି ସରଳଚିତ୍ତ ଧର୍ମପ୍ରାଣ ଦେଶବାସୀଙ୍କ ଚିତ୍ତରେ ଦେଶର ପିତା ଗାନ୍ଧିଜୀଙ୍କ ଭଳି, ଲୋକନାୟକ ଜୟପ୍ରକାଶଜୀ ସଜୀବ ପ୍ରେରଣା ହୋଇ ରହିଛନ୍ତି ଓ ଚିରଦିନ ରହିଥିବେ। ଜୟପ୍ରକାଶଜୀ ଏଇମାନଙ୍କ କଲ୍ୟାଣପାଇଁ ବଞ୍ଚିଥିଲେ, ଅଗଣିତ ଦୁଃଖୀ ସାଧାରଣ ଲୋକଙ୍କ ପାଇଁ ବଞ୍ଚିଥିଲେ, ଏଇସବୁ କ୍ଷମତା କାଙ୍ଗାଳ କୁଟୀଳ ରାଜନୀତିକ ନେତାମାନଙ୍କ ପାଇଁ ନୁହଁ। ଏମାନେ ଗାନ୍ଧିଜୀଙ୍କୁ ଚଳୁ କରି ଦେଇଛନ୍ତି। ଜୟପ୍ରକାଶଜୀଙ୍କୁ ଚଳୁ କରିବା ଏମାନଙ୍କ ପକ୍ଷରେ କେତେ ମାତ୍ର ? ଅବା କେତେ କ୍ଷଣ ?

କିନ୍ତୁ ଲୋକନାୟକ ବଞ୍ଚି ରହିବେ। ଭାରତବର୍ଷରେ ଯଥାର୍ଥ ଆତ୍ମା ସଙ୍ଗେ ସେ ମିଶି ଯାଇଛନ୍ତି। ସେହି ଭାରତର ଆତ୍ମା ବର୍ତ୍ତମାନ ଧୀରେ ଧୀରେ ଜାଗ୍ରତ ହେଉଛନ୍ତି। ଏହି ଜାଗରଣ ଯଜ୍ଞର ପ୍ରାରମ୍ଭରେ ଗାନ୍ଧିଜୀଙ୍କ ପରେ ଜୟପ୍ରକାଶଜୀ ହିଁ ନିଜକୁ ଦ୍ୱିତୀୟ ଆହୁତି ରୂପେ ଢାଳି ଦେଇଛନ୍ତି। ଏହାପରେ ଯଜ୍ଞାଗ୍ନି ହୁତ୍-ହୁତ୍ ହୋଇ ଜଳି ଉଠିବ। ଭାରତବର୍ଷ ସଂପୂର୍ଣ୍ଣ ଭାବେ ଜାଗି ଉଠିବ। ସଂପୂର୍ଣ୍ଣ ବିପ୍ଳବର ଅଶ୍ୱମେଧ-ଯଜ୍ଞରେ ସମର୍ପିତ କ୍ଷିପ୍ରଗତି ଘୋଡ଼ାର ଭୟଙ୍କର ଖୁରାଟାପୁରେ ଚତୁର୍ଦ୍ଦିଗ ପ୍ରକମ୍ପିତ ହେବ।

ଲୋକ-ସ୍ୱାର୍ଥବିମର୍ଦ୍ଦକ, କ୍ଷୁଦ୍ରଚିତ୍ତ, ଆପଣା ସ୍ୱାର୍ଥପରାୟଣ, କୁଟୀଳ ମିଥ୍ୟାଚାରୀ, କ୍ଷମତା ଲୋଭୀ ନେତୃବୃନ୍ଦ ସାବଧାନ-ସାବଧାନ-ସାବଧାନ ! ଲୋକନାୟକଙ୍କ ଆତ୍ମାହୁତିରେ ତୀବ୍ର ବେଗରେ ହଠାତ୍ ଜାଗି ଉଠିବ ଲୋକଶକ୍ତି। ସାବଧାନ ! ସାବଧାନ !



# ହାସପାତାଲରେ ଗଣତନ୍ତ୍ରର ଜୁଲୁମ

ଅଳ୍ପ ଦିନ ତଳେ ମୋର ଜଣେ ବୟୋବୃଦ୍ଧ ଆତ୍ମୀୟ ସାଂଘାତିକ ଭାବେ ପୀଡ଼ିତ ହୋଇ ରାଜ୍ୟର ଗୋଟିଏ ବିଶିଷ୍ଟ ହାସପାତାଳରେ ଭର୍ତ୍ତି ହେଲେ। ତାଙ୍କ ଠାରେ ଅସ୍ତ୍ରୋପଚାର ମଧ୍ୟ କରାଗଲା ଏବଂ ସେ ଥିଲେ ଜେନେରାଲ୍ ୱାର୍ଡ଼ରେ। ରୋଗର ସାଂଘାତିକତା ହେତୁ ରୋଗୀର ବିଭିନ୍ନ ସେବାଯତ୍ନ କରିବାଲାଗି ଆମ୍ଭମାନଙ୍କୁ ପାଳି କରି ଦିନ ରାତି ତାଙ୍କୁ ଜଗି ରହିବାକୁ ପଡୁଥିଲା। ସେ ପ୍ରାୟ ଏକ ମାସ ହାସପାତାଳରେ ରହି ଶେଷରେ ଆରୋଗ୍ୟ ଲାଭ କରି ଘରକୁ ଫେରିଲେ। ତାଙ୍କର ଅସ୍ତ୍ରୋପଚାର ଠାରୁ ଆରୋଗ୍ୟ ଲାଭ ପର୍ଯ୍ୟନ୍ତ ବଡ଼ ସାନ ଡାକ୍ତରମାନେ, ସିଷ୍ଟରମାନେ ଓ ବେହେରାମାନେ ମୋ ଜାଣିବାରେ ସମସ୍ତେ ସେମାନଙ୍କର କର୍ତ୍ତବ୍ୟ ଯଥାସାଧ୍ୟ ତୁଲାଉଥିଲେ। କେବଳ ଆମ ରୋଗୀଟି ନୁହନ୍ତି ଆମ ସାଙ୍ଗରେ ଆହୁରି ଅନେକ ମଫସଲ ଅଞ୍ଚଳର ରୋଗୀଥିଲେ ଓ ବହୁ ଦରିଦ୍ର ଅସହାୟ ରୋଗୀ ମଧ୍ୟ ଥିଲେ। ସମସ୍ତଙ୍କର ଯଥା ସାଧ୍ୟ ଚିକିତ୍ସା ଓ ସେବା ହେଉଥିଲା ବୋଲି ମୋର ମତ।

କିନ୍ତୁ ଅସୁବିଧାଟି ଥିଲା ଅନ୍ୟ ଗୋଟିଏ ଜାଗାରେ। ଯେଉଁ ରୋଗୀମାନେ ମଫସଲରୁ ଆସିଥିଲେ, ସେମାନଙ୍କ ସଙ୍ଗରେ ତାଙ୍କର ଆତ୍ମୀୟ ଆତ୍ମୀୟାଗଣ ମଧ୍ୟ ତାଙ୍କୁ ସେବା କରିବା ଲାଗି ସେଠି ଦିନ ରାତି ରହୁଥିଲେ। ସେମାନଙ୍କ ମଧ୍ୟରୁ କାହା କାହାର ସାନ ସାନ ପିଲାମାନେ ମଧ୍ୟ ଥିଲେ। ସେମାନେ ସମସ୍ତେ ମିଶି ମହା କୋଳାହଳ ସୃଷ୍ଟି କରୁଥିଲେ। ଏପରିକି ରୋଗୀକୁ ଦେଖିବାକୁ ଆସିଥିବା ଆତ୍ମୀୟଗଣ ମଧ୍ୟ ଡାକ୍ତରଖାନାର ସମସ୍ତ ଶାନ୍ତି ଶୃଙ୍ଖଳା ଭୁଲି ଖୁବ୍ ଉଚ୍ଚସ୍ୱରରେ କଥାବାର୍ତ୍ତା କରୁଥିଲେ ଏବଂ ବେଳେ ବେଳେ ଗାଁ ଗଣ୍ଡାର ମାଲିମକଦ୍ଦମା, କଳିକଜିଆ ଓ ଚାଷବାସ ପ୍ରସଙ୍ଗ ମଧ୍ୟ ରୋଗୀ ସଙ୍ଗେ ଗାଁରେ ରହି କଥାବାର୍ତ୍ତା କଲାଭଳି ଖୁବ୍ ଉଚ୍ଚ କଣ୍ଠରେ କରୁଥିଲେ। ତା' ସାଙ୍ଗକୁ ଯୋଡ଼ ବେଡ୍‌ରେ କଲେଜ ଛାତ୍ରଟିଏ ରହିଥାଏ, ତା' ପାଖକୁ ମଧ୍ୟ ତାର ବନ୍ଧୁ ସାଙ୍ଗ ଆସନ୍ତି ଏବଂ ଖୁବ୍ ପାଟିକରି କଥାବାର୍ତ୍ତା କରନ୍ତି ଏବଂ କେହି କେହି ରେଡ଼ିଓଟିଏ ମଧ୍ୟ ଖୁବ୍ ଉଚ୍ଚସ୍ୱରରେ ବଜାଉଥାନ୍ତି, ଯାହା ଭିତରୁ ଅବୋଧ କ୍ରିକେଟ ଖେଳର ଦୁର୍ବୋଧ ଗିଲେ ଅତି ବିରକ୍ତିକର ହୋଇ ଶୁଭୁଥାଏ। ବାରଣ୍ଡାଯାକ ରୋଗୀମାନଙ୍କ ପରିବାରର ଆବାଳବୃଦ୍ଧବନିତାଙ୍କ କଥାବାର୍ତ୍ତା ଓ ପିଲାମାନଙ୍କ କାନ୍ଦଣାଦି ସଙ୍ଗେ ଏସବୁ ମିଶି ଡାକ୍ତରଖାନା ଭିତରେ ମହାକୋଳାହଳ ସୃଷ୍ଟି ହେଉଥାଏ ଏବଂ ତାହା ହାଟଠାରୁ ବଳି ପଡ଼ିଥାଏ। ମୁଁ ବହୁବାର ସେମାନଙ୍କୁ

ବିନୀତ ଭାବେ ଜଣାଇଲି "ଭାଇ ଓ ଭଉଣୀମାନେ! ବାବୁ ବା ବନ୍ଧୁମାନେ! ଏଠି ବଡ଼ ପାଟି କର ନାହିଁ। ଏତେ ହଟଗୋଳ କର ନାହିଁ। ରୋଗୀମାନେ ଥିବା ଜାଗାରେ ଯଥାସମ୍ଭବ ଶାନ୍ତି ଓ ନୀରବତା ରକ୍ଷା କରିବା ଉଚିତ୍। ଅନେକ ରୋଗୀ ଏଇସବୁ ହଟଗୋଳରେ ଶୋଇ ପାରୁନାହାନ୍ତି। ଅନେକ ରୋଗୀ ବିରକ୍ତ ହେଉଛନ୍ତି। ଦୟାକରି ସେମାନଙ୍କ କଥା ବିଚାର କର।"

କିନ୍ତୁ କିଏ ବା କାହା କଥା ଶୁଣେ ? ନା ଖାତିର କରେ ? ସିଷ୍ଟର ଓ ଡାକ୍ତରମାନଙ୍କୁ ଜଣାଇଲି। ସେମାନେ ହାତ ଯୋଡ଼ି କହିଲେ—ଆଜ୍ଞା ଆମ୍ଭେମାନେ ନାଚାର। ଏ ହେଲା ଲୋକତନ୍ତ୍ର ବା ଗଣତନ୍ତ୍ର। ବହୁଲୋକ ଯାହା କରିବେ ତାହା ଠିକ୍। ବହୁ ଲୋକଙ୍କ ଇଚ୍ଛା ସେମାନେ ଡାକ୍ତରଖାନାରେ ଏମିତି ପାଟି କରିବେ, ବାରଣ୍ଡାରେ ବା ବାରଣ୍ଡା ତଳକୁ ବା ପାଇଖାନା ପାଖରେ ଝାଡ଼ା ପରିସ୍ରା କରିବେ। ସେମାନଙ୍କୁ କହିଲେ, ସେମାନେ ଖପା ହେବେ। ଆମେ ବହୁ ଚେଷ୍ଟା କରିଛୁ, ସେମାନେ କିନ୍ତୁ ଆମକୁ ଧମକ ଦେଇଛନ୍ତି। ନିକଟରେ ଜଣେ ସିଷ୍ଟରଙ୍କୁ ଜଣେ ବଡ଼ ଅଫିସରଙ୍କର ଶାଳୀ ଦୁଇ ଧକ୍କା ଦେଇଥିଲେ। ସେଇ ବଡ଼ ଅଫିସରଙ୍କର ଶାଳୀର ଖୁଡ଼ୀଶାଶୁ ସେଠି ଫିମେଲ ୱାର୍ଡ଼ରେ ଥିଲେ ଏବଂ ସେ ବଡ଼ ଖିଟି ଖିଟିଆ ରୋଗୀ। ତାଙ୍କର ଧାରଣା ଯେ, ପ୍ରତିଦିନ ଚାରି ପାଞ୍ଚଟି ଇଞ୍ଜେକ୍ସନ ନେଲେ ସେ ଚଞ୍ଚଳ ଭଲ ହୋଇଯିବେ। ମାତ୍ର ତାଙ୍କୁ ନାନାବିଧ ବଟୀକା ଓ ମିକ୍ସଚର୍ ଖାଇବାକୁ ଦିଆଯାଉଥିଲା। ଡାକ୍ତର କୌଣସି ଇଞ୍ଜେକ୍ସନ ପ୍ରେସକ୍ରାଇବ୍ କରି ନ ଥିଲେ। ସେ କିନ୍ତୁ ସିଷ୍ଟରଙ୍କୁ ବ୍ୟତିବ୍ୟସ୍ତ କରି ପକାଇଲେ। ତୁମେ ସମସ୍ତଙ୍କୁ ଏଠି ଇଞ୍ଜେକ୍ସନ ଦେଉଛ, ମତେ କାହିଁକି ଦେଉନ ? ଏଇ କଥା ନେଇ ଦିନେ ସିଷ୍ଟର ବହୁତ ସହ୍ୟ କଲାପରେ ଟିକିଏ କଡ଼ା କରି କହି ଦେଲେ। ବାସ୍—ବଡ଼ ଅଫିସରଙ୍କ ଶାଳୀ ସେଠି ଥିଲେ ଏବଂ ଚିହ୍ନିକି ଆସି ସେ ସିଷ୍ଟରଙ୍କୁ ଦୁଇ ଧକ୍କା ଖାଲି ମାରିଲେ ନାହିଁ, ଅତି ଅଶ୍ରାବ୍ୟ ଭାଷାରେ ଗାଳି ଦେଲେ। ଆଉ ଥରେ ଜଣେ ଗ୍ରାମବାସୀ ଦରିଦ୍ର ରୋଗୀର ସାରା ପରିବାର ଆସି ଏଇ ୱାର୍ଡ଼ ବାରଣ୍ଡାରେ ଦିନ ରାତି ରହିଲେ। ରୋଗୀଟିର ମାଆ ବୁଢ଼ୀ, ତାର ସ୍ତ୍ରୀ ଓ ତିନୋଟି ସାନ ସାନ ପୁଅଝିଅ। ସେମାନେ ଏଠି ପନ୍ଦର ଦିନ କାଳ ରହିଲେ। ତାଙ୍କର ଛୁଆମାନେ ୱାର୍ଡ଼ ଭିତରେ ଓ ବାରଣ୍ଡାରେ ଅନବରତ ମୁତିଲେ, ହଗିଲେ ଓ ବାନ୍ତିକଲେ। ଏପରିକି ୱାର୍ଡ଼ ଭିତରେ ପଶି ରୋଗୀମାନଙ୍କୁ ବିରକ୍ତ କଲେ। ସବୁବେଳେ କାନ୍ଦି କାଟି ସମସ୍ତଙ୍କୁ ବିରକ୍ତ କଲେ। ଦିନେ ଆମର ୱାର୍ଡ଼ ଦାୟୀତ୍ୱରେ ଥିବା ଡାକ୍ତର ସେମାନଙ୍କୁ ବିରକ୍ତ ହୋଇ ଏଠା ଛାଡ଼ି ଚାଲିଯିବାକୁ କହିଲେ। ସେମାନେ ସମସ୍ତେ ଏପରିକି ସ୍ୱୟଂ ରୋଗୀଙ୍କ ସମେତ ସମସ୍ତେ ଡାକ୍ତରଙ୍କୁ ଯେଚ୍ଛାତା ଭାଷାରେ ଶୋଧିଲେ ଏବଂ କହିଲେ ଯେ ଏହି ଡାକ୍ତରଖାନା କାହାର ବାପା ସମ୍ପତ୍ତି ନୁହେଁ।

କେବଳ ଏତିକି ନୁହେଁ। ସେହି ଘଟଣାକୁ ଅତିରଞ୍ଜିତ କରି ଖବର କାଗଜରେ ପ୍ରକାଶ କରାଯାଥିଲା ଯେ, ଏହି ଡାକ୍ତରଖାନାର ବଡ଼ଡାକ୍ତର ହରିଜନ ରୋଗୀଙ୍କୁ ଘୃଣା କରୁଛନ୍ତି ଓ ଦୁର୍ବ୍ୟବହାର କରୁଛନ୍ତି। ତାଙ୍କୁ ଏଠୁ ତୁରନ୍ତ ବଦଳୀ କରାଯାଉ। ସେ ସମ୍ପର୍କରେ କୁଆଡ଼େ ଛୋଟ ରାଜନୈତିକ ହସ୍ତକ୍ଷେପ ମଧ୍ୟ ହୋଇଥିଲା।

ଡାକ୍ତର ଓ ସିଷ୍ଟରମାନେ ଏହିପରି ବହୁ ଘଟଣା ବର୍ଣ୍ଣନା କଲେ–ଯେଉଁଥିରେ କି ଡାକ୍ତରଖାନାରେ ଶାନ୍ତି ଓ ପରିଚ୍ଛନ୍ନତା ଫେରାଇ ଆଣିବା ସେମାନଙ୍କର ସାଧ୍ୟାତୀତ ବୋଲି ମଧ୍ୟ ମନେ ହେଲା।

ସତକଥା–ଗଣତନ୍ତ୍ର ଓ ଜନମଙ୍ଗଳ ରାଷ୍ଟ୍ରରେ ସର୍ବସାଧାରଣ ଅନୁଷ୍ଠାନମାନଙ୍କରେ ଓ ବସ୍ ଟ୍ରେନ୍, ରାସ୍ତା ମନ୍ଦିର ପାର୍କ ଇତ୍ୟାଦିରେ ସମସ୍ତଙ୍କର ସମାନ ଅଧିକାର ଅଛି, ଏଥିରେ ସନ୍ଦେହ ନାହିଁ। କିନ୍ତୁ ପ୍ରତିଟି ସର୍ବସାଧାରଣ ଅନୁଷ୍ଠାନର ମଧ୍ୟ କେତେକ ସର୍ବସାଧାରଣ ପାଳନୀୟ ନିୟମ ଅଛି। ସେହି ନିୟମଗୁଡ଼ିକ ନିଶ୍ଚିତ ଭାବେ ସର୍ବସାଧାରଣଙ୍କ ମଙ୍ଗଳ ଲାଗି କରାଯାଇଛି। ଆମେ ସମସ୍ତେ ଯଦି ଗଣତନ୍ତ୍ର ନାମରେ ଏବଂ ସର୍ବସାଧାରଣଙ୍କ ଅଧିକାର ନାମରେ ସେହି ସବୁ ନିୟମ ଲଂଘନ କରି ଓ ଅନ୍ୟମାନଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟି ନ ଦେଇ ଏବଂ କୋଉ କ୍ଷେତ୍ରରେ ଆମର କର୍ତ୍ତବ୍ୟ କଣ ଏବଂ ଅଧିକାରର ସୀମା କେତେ, ସେ ସବୁକୁ ବେଖାତିର କରି କେବଳ ଆମର ଇଚ୍ଛା ଓ ରୁଚି ଅନୁଯାୟୀ କାମ କରିଯାଉ, ତା' ହେଲେ ଗଣ୍ଡଗୋଳ ଦେଖାଦେବ ଯେ, ଆମେ ଆଉ ସେ ସବୁକୁ ସୁଧାରି ପାରିବା ନାହିଁ। ଏହି ଭଳି କ୍ଷେତ୍ରରେ କେବଳ ସରକାରଙ୍କ ଉପରେ ନିର୍ଭର କଲେ ଚଳିବ ନାହିଁ। ଗୋଟିଏ ଗଣତାନ୍ତ୍ରିକ ଦେଶର ପ୍ରତ୍ୟେକ ନାଗରିକ ଏ ଦିଗରେ ନିଜର କର୍ତ୍ତବ୍ୟ ନିଜେ ନିଜେ ଉପରକୁ ନେବା ଉଚିତ୍। ତଥାପି ସରକାରଙ୍କ ଆଡୁ ମଧ୍ୟ ସାଧାରଣ ଲୋକେ କିପରି ସର୍ବସାଧାରଣ କ୍ଷେତ୍ରରେ ବ୍ୟବହାର କରିବେ ବା ସର୍ବସାଧାରଣ ଅନୁଷ୍ଠାନମାନଙ୍କରେ କିଭଳି ଆଚରଣ କରିବେ, ସେ ସମ୍ବନ୍ଧେ ଲୋକମାନଙ୍କୁ ସମୂହଭାବେ ଶିକ୍ଷା ଓ ସୂଚନା ଦେବାର ବନ୍ଦୋବସ୍ତ ହେବା ଉଚିତ୍। ଆମର ସୂଚନା ଓ ଲୋକସଂପର୍କ ବିଭାଗଟି ଏହି ଦିଗରେ କାମ କରିବା କଥା। କାରଣ, ଆଉ କୌଣସି ବିଭାଗ ମାଧ୍ୟମରେ ସରକାର ଲୋକସାଧାରଣଙ୍କୁ ସାଧାରଣ ବ୍ୟବହାର ବା ଆଚରଣ ବିଧି ଶିଖାଇ ପାରିବେ ନାହିଁ।



# ଟ୍ରେନ୍ ଓ ବସ୍‌ରେ ଗଣତନ୍ତ୍ରର ଜୁଲମ୍

ଗତ ସପ୍ତାହରେ ମୁଁ କୋଣାର୍କ ଏକ୍ସପ୍ରେସ ଯୋଗେ ଭୁବନେଶ୍ୱର ଆସିଥିଲି। ପ୍ରାୟ ସକାଳ ସାଢ଼େ ପାଞ୍ଚଟା ବେଳେ ବ୍ରହ୍ମପୁର ଷ୍ଟେସନରେ ଯାଇ ଶୁଣିଲି ଯେ, ଟ୍ରେନ୍ ଅଢ଼େଇ ଘଣ୍ଟା ବିଳମ୍ବ ଅଛି। ସାଢ଼େ ଆଠଟା ବେଳେ ଟ୍ରେନ୍ ଆସି ପହଞ୍ଚିଲା। ଏହି ଟ୍ରେନ୍‌ରେ ବ୍ରହ୍ମପୁର ତୀର୍ଥଯାତ୍ରୀମାନେ ବହୁତ ଯା'ନ୍ତି। ଭୁବନେଶ୍ୱରରେ ଏହା ପହଞ୍ଚିବା କଥା ସକାଳ ସାଢ଼େ ଆଠ ବା ନଅଟାରେ। ତା' ଫଳରେ ବ୍ରହ୍ମପୁର ଯାତ୍ରୀମାନେ ଭୁବନେଶ୍ୱର ଠାରେ ପହଞ୍ଚି ଅଫିସ ବା ଅନ୍ୟାନ୍ୟ କାର୍ଯ୍ୟମାନ ସୁରୁଖୁରୁରେ କରି ପାରନ୍ତି। କୋଣାର୍କ ଏକ୍‌ସ୍‌ପ୍ରେସ୍ ଗୋଟିଏ ଦ୍ରୁତଗାମୀ ଟ୍ରେନ୍ ଏବଂ ଏହା ଓଡ଼ିଶା ପାଇଁ ରେଳବାଇ ବିଭାଗର ଏକ ସ୍ୱତନ୍ତ୍ର ଅବଦାନ। ବ୍ରହ୍ମପୁରରୁ ଏ ଗାଡ଼ି ଦ୍ରୁତଗତିରେ ବାଟରେ କେଉଁଠି ନ ଅଟକି ଖୋର୍ଦ୍ଧାରେ ପାଞ୍ଚ ମିନିଟ ରହିବ। ତା'ପରେ ସିଧା ଭୁବନେଶ୍ୱର।

କିନ୍ତୁ ସେ ଦିନ ବିଳମ୍ବରେ ଆସିଥିବା ଟ୍ରେନଟିକୁ ବ୍ରହ୍ମପୁର ଛାଡ଼ିବା ପରେ ବାଟରେ ବହୁ ଜାଗାରେ ପ୍ରାୟ ପ୍ରତିଟି ସାନ ଷ୍ଟେସନରେ ଚେନ୍‌ଟାଣି ଅଟକାଗଲା। ଟ୍ରେନ୍ ଅଟକେ—ବହୁଯାତ୍ରୀ ଓହ୍ଲାଇ ଯାଆନ୍ତି ଓ ବହୁ ଯାତ୍ରୀ ପୁଣି ଟ୍ରେନ୍‌ରେ ଚଢ଼ନ୍ତି। ଗାଡ଼ି ଚାଲେ। ତା'ପରେ ଅନ୍ୟ ଷ୍ଟେସନରେ ଚେନ୍ ଟଣାଯାଏ। ଗାଡ଼ି ଅଟକେ। କେତେକ ଯାତ୍ରୀ ଚଢ଼ନ୍ତି ଓ କେତେକ ଓହ୍ଲାଇ ଯା'ନ୍ତି। ପ୍ରକାଶ ଥାଉକି, ଏହି ଯାତ୍ରୀମାନେ ସମସ୍ତେ ପ୍ରାୟ ଯୁବକ ଓ ଛାତ୍ର। ସେମାନେ ସ୍ଥାନୀୟ କଲେଜମାନଙ୍କରେ ପଢ଼ନ୍ତି। ବ୍ରହ୍ମପୁରଠାରୁ ଭୁବନେଶ୍ୱର ଭିତରେ ବହୁ କଲେଜ ଅଛି। ଏହି ଛାତ୍ରମାନେ କେହି ଟିକେଟ୍ କରନ୍ତି ନାହିଁ। ସେମାନେ ମନଇଚ୍ଛା ଟ୍ରେନ୍ ଭିତରେ ବୁଲୁଥିଲେ; ହଇହଲ୍ଲା କରୁଥିଲେ—ଗୀତ ଗାଉଥିଲେ ଏବଂ କେହି କେହି ମଧ୍ୟ ତା' ଭିତରେ ମଲ୍ଲଯୁଦ୍ଧ କରି ହସି ହସି ଗଡ଼ି ଯାଉଥିଲେ। ସେମାନେ ଟ୍ରେନ୍ ଭିତରେ ଥିବା ସୋରେଇମାନଙ୍କରୁ ପାଣି ପିଉଥିଲେ ଓ କେହି କେହି ସୋରେଇ ମୁହଁ ଖୋଲି ଦେଇ ସବୁ ପାଣି ବହିଯାଇ ସୋରେଇ ଖାଲି ହୋଇଯିବାର ଦୃଶ୍ୟ ଦେଖି ଉଲ୍ଲାସ ଅନୁଭବ କରୁଥିଲେ।

ଆମ୍ଭେମାନେ ଖୁବ୍ ବିରକ୍ତ ହେଉଥିଲୁ। ବହୁ ଯାତ୍ରୀ ଟ୍ରେନ୍ ଭୁବନେଶ୍ୱରରେ ବିଳମ୍ବରେ ପହଞ୍ଚିବ ଏବଂ ସେମାନେ ଆଜି କର୍ମକ୍ଷେତ୍ରରେ ଯୋଗଦେଇ ପାରିବେ ନାହିଁ ଭାବି, ଚିନ୍ତିତ ହେଉଥିଲେ। ବହୁଯାତ୍ରୀ ଭୁବନେଶ୍ୱରରେ ପହଞ୍ଚି କୌଣସି ଦୂର

ଜାଗାକୁ ଯିବାର ନିର୍ଦ୍ଦିଷ୍ଟ ବସ ପାଇବେ ନାହିଁ ବୋଲି ଦୁଃଖିତ ହେଉଥିଲେ। ବହୁ ଯାତ୍ରୀ ଏହି ଟ୍ରେନ୍‌ରେ ଚଢ଼ିଥିବା ଯୁବକମାନଙ୍କର ହଇହଲ୍ଲା ଓ ଉନ୍ମତ୍ତ କାଣ୍ଡ କାରଖାନା ଦେଖି ଅତିଷ୍ଠ ହୋଇ ଉଠୁଥିଲେ।

ଟ୍ରେନ୍‌ର ଗାର୍ଡ଼ ଓ କେତକ କର୍ମକର୍ତ୍ତାଙ୍କୁ ପଚାରିଲେ ସେମାନେ ନିରୁପାୟ ହୋଇ ଚୁପଚାପ୍ ଯେଝା ଜାଗାରେ ବସିଥାନ୍ତି ଓ ଅରାଜକତା କାହାକୁ କହନ୍ତି ତାହା ଦେଖୁଥାନ୍ତି। ସେମାନେ କହିଲେ—ଆଜ୍ଞା ! ଆମେ କିଛି କରି ପାରିବୁ ନାହିଁ। ସେମାନେ ଦଳବଦ୍ଧ ହୋଇ ଆମକୁ ବାଡ଼େଇବେ। ଆଗରୁ ଆମେ ମାଡ଼ ବି ଖାଇ ସାରିଛୁ। ସରକାର କିଛି ନିରାପତ୍ତା ଆମକୁ ଦେଇ ପାରି ନାହାନ୍ତି କି ଦେବେ ନାହିଁ। ତା'ଛଡ଼ା—ଆଗରେ ଇଲେକ୍‌ସନ। ଆମ ଉପରେ ଭିତିରିଆ ପରୋକ୍ଷ ନିର୍ଦ୍ଦେଶ ଅଛି—ନିର୍ବାଚନ ପୂର୍ବରୁ ଯାହା ଯେମିତି ଚାଲିଛି—ଚାଲୁ। କେହି କାହାକୁ ନିବାରଣ କର ନାହିଁ। ଉତ୍ତ୍ୟକ୍ତ କର ନାହିଁ—ବିଶେଷତଃ ଯୁବକମାନଙ୍କୁ ଉତ୍ତ୍ୟକ୍ତ କରନାହିଁ। ସେମାନେ ହେଲେ ବିରୁଡ଼ି ବା ବାଘେରା ମହୁମାଛି—ବସା ଓ ଫେଣାକୁ ଟେକାଟିଏ ମାରିଲେ ମାତି ଉଠିବେ।

ଆମ କାମେରାରେ ଜଣେ କମିଶନର ପର୍ଯ୍ୟାୟର ସଦାଶୟ ଏବଂ ଲୋକପ୍ରିୟ ସରକାରୀ ଅଫିସର ତାଙ୍କ ଝିଅ ସହ ବସିଥିଲେ। ସେ ବହୁଦୂରରୁ ଆସୁଥିଲେ। ସେ ଆଶ୍ଚର୍ଯ୍ୟ ହୋଇ ଦୁଇ ତିନିଜଣ ଯୁବକଙ୍କୁ ଡାକି କଥାବାର୍ତ୍ତା ହେଲେ। ସେମାନେ କହିଲେ—ଆଜ୍ଞା ! ଆମ୍ଭେମାନେ କଲେଜ ଛାତ୍ର, ଭିନ୍ନ ଭିନ୍ନ କଲେଜରେ ପଢ଼ୁ। ଏଇ ଟ୍ରେନ୍‌ରେ ଯିବା ଛଡ଼ା ଆମର ଆଉ କଲେଜକୁ ଯିବାର ଅନ୍ୟ ଉପାୟ ନାହିଁ। ତା'ପରେ ସଦାଶୟ ଅଫିସର ଜଣକ ଟ୍ରେନର କର୍ମଚାରୀଙ୍କ ସଙ୍ଗେ କଣ କଥାବାର୍ତ୍ତା କଲେ। ତାଙ୍କ କଥାବାର୍ତ୍ତାର ବିଷୟବସ୍ତୁ ଥିଲା—ଛାତ୍ରମାନଙ୍କର ଅସୁବିଧା କିପରି ଦୂରହେବ—ଏବଂ ଏକସପ୍ରେସ ଟ୍ରେନ୍ ମଧ୍ୟ କିପରି ତା'ରୀତିରେ ଚାଲିବ—ତା'ପାଇଁ ଉପାୟ ନିର୍ଦ୍ଧାରଣ କରିବା।

କୋଣାର୍କ ଏକସ୍‌ପ୍ରେସ୍ ଟ୍ରେନ୍ ଆସି ଭୁବନେଶ୍ୱରରେ ପହଁଞ୍ଚିଲା ସେଦିନ ୧୨.୩୦ ମିନିଟ୍‌ରେ। ଏଠି ଆଉ ମଧ୍ୟ କହି ରଖୁଛି ଯେ—ଏଇ ଚେନ ଟାଣି ଟ୍ରେନ୍ ଅଟକିବାରେ କେବଳ ଯେ ଛାତ୍ରମାନେ ଉପକୃତ ହେଉଥିଲେ ତା'ନୁହଁ—ବହୁ ସାଧାରଣ ଯାତ୍ରୀ ଦିନ ମଜୁରିଆ, ବୁଲା ବେପାରୀ ଆଦି ମଧ୍ୟ ଖୁବ୍ ଉପକୃତ ହେଉଥିଲେ।

ରେଳବାଇ କର୍ତ୍ତୃପକ୍ଷଙ୍କ ପ୍ରଦତ୍ତ ଏକ ହିସାବରୁ ଜଣାଯାଇଛି ଯେ, ୧୯୭୮ ମସିହାରୁ ୧୯୭୯ ମସିହା ପର୍ଯ୍ୟନ୍ତ କୋଣାର୍କ ଏକସ୍‌ପ୍ରେସ ଓ ହାଓଡ଼ା-ମାଡ୍ରାସ ଏକସ୍‌ପ୍ରେସ୍ ଗାଡ଼ିର ଚେନ ଟଣାଯାଇଛି ଆଠହଜାର ପାଞ୍ଚଶ ଚଉଦ ଥର ଓ ସେ ବାବଦକୁ ଏକସ୍‌ପ୍ରେସ୍ ଟ୍ରେନଗୁଡ଼ିକ ସମୁଦାୟ ଏକ ହଜାର ତିନିଶହ ଚଉତିରିଶି ଘଣ୍ଟା

ସମୟ ଅପବ୍ୟୟ କରିବାକୁ ବାଧ୍ୟ ହୋଇଛନ୍ତି। କିନ୍ତୁ ୧୯୭୯ ସେପଟେମ୍ବରଠାରୁ ଏପର୍ଯ୍ୟନ୍ତ ଏହି ସଂଖ୍ୟା ଆହୁରି ବେଶୀ ବୃଦ୍ଧି ପାଇଛି।

କେବଳ ଟ୍ରେନ୍ ନୁହଁ—ଆପଣ ଭୁବନେଶ୍ୱରରୁ ବ୍ରହ୍ମପୁର ଯେ କୌଣସି ବେସରକାରୀ ବସରେ ଯାଆନ୍ତୁ। ଦେଖିବେ, ସେଠି ମଧ୍ୟ ଏହି କଲେଜଗାମୀ ଛାତ୍ରମାନଙ୍କର କିଭଳି ଜବରଦସ୍ତ ଜୁଲମ। ଡ୍ରାଇଭର କ୍ଲିନର ଆଦି ସମସ୍ତେ ନିରସ୍ତ ଏବଂ ବିଚରା ଯାତ୍ରୀମାନେ ମହା ହନ୍ତସନ୍ତ।

କଲେଜ ପିଲାମାନେ ସୁବିଧାରେ ଯେଝା କଲେଜରେ ଯଥା ସମୟରେ ପହୁଞ୍ଚିବା ଉଚିତ୍ ଏବଂ ଟ୍ରେନ୍ ଓ ବସ୍‌ଗୁଡ଼ିକ ମଧ୍ୟ ଯଥା ନିୟମରେ ଓ ଯଥା ସମୟ ନିର୍ଘଣ୍ଟରେ ଲକ୍ଷ୍ୟ ସ୍ଥଳରେ ପହୁଁଞ୍ଚିବା ଉଚିତ୍—ଏହି ଦୁଇଟି ଉଚିତ୍ କଥା କ'ଣ ଏକାବେଳକେ ହୋଇପାରିବ ନାହିଁ ?

କିନ୍ତୁ ସେଦିନ ଟ୍ରେନ୍ ଭିତରେ ନିରୁପାୟ ଓ ଅସହାୟ ଭାବେ ବସି ରହିଥିବା ଗାର୍ଡ଼ ଓ ଟି.ଟି.ଆଇମାନେ କହିଥିଲେ—ଆଜ୍ଞା! ଏଇଟା ଗଣତନ୍ତ୍ରର ଯୁଗ। ପୁଣି ଭାରତୀୟ ଗଣତନ୍ତ୍ର। ବେଶୀ ଲୋକ ତାଙ୍କ ସୁବିଧାପାଇଁ ଜବରଦସ୍ତ ଯାହା କିଛି କରିଯିବେ—ତାକୁ ହିଁ ଆମ ସମସ୍ତଙ୍କୁ ମଥାପାତି ସହ୍ୟ କରିବାକୁ ହେବ। ବିଶେଷତଃ ଆଗରେ ଯେତେବେଳେ ନିର୍ବାଚନର ଯୁଦ୍ଧ ଘନେଇ ଆସୁଛି!

ଧନ୍ୟ ଏ ଦେଶ! ଧନ୍ୟ ଏ ଗଣତନ୍ତ୍ର। ଧନ୍ୟ ଏ ନିର୍ବାଚନ! ଆଉ ଧନ୍ୟ ଏଇ ସରକାର ଓ ତାର ବିରୋଧୀ ଦଳମାନଙ୍କୁ।

ହେ ଭଗବାନ୍! ରାଜନୈତିକ ପ୍ରକୋପରୁ ଏଇ ଛେଉଣ୍ଡ ଦେଶଟିକୁ କୌଣସି ପ୍ରକାରେ ରକ୍ଷାକର।

❋❋

# ଦୁଇଟି ବିସ୍ଫୋରଣ ପାଇଁ ଅପେକ୍ଷା

ଇରାନ୍ ଦେଶରେ ଗଣବିପ୍ଳବ ହେଲା । ରାଜତନ୍ତ୍ର ଲୋପ ପାଇଲା । ଇରାନ୍‌ର ଶାହା ଦେଶ ଛାଡ଼ି ପଳାଇଲେ । ବର୍ତ୍ତମାନ ସେ ଆମେରିକା ହାସପାତାଳରେ କର୍କଟ ରୋଗରେ ଚିକିତ୍ସିତ ହେଉଛନ୍ତି । ତାଙ୍କର ଶେଷଦିନ ଆଉ ବେଶୀ ଡେରି ନାହିଁ । ଏଣେ ଇରାନ୍‌ରେ ବିପ୍ଳବୀ ଦଳ ଶାସନ କ୍ଷମତାରେ ରହିଲେ । ଆୟାତୋଲ୍ଲା ଖୋମେନୀ ହେଲେ ତାଙ୍କର ନାୟକ । ସେ ଜଣେ ନୈଷ୍ଠିକ ମୁସଲମାନ ନେତା ମଧ୍ୟ । ତାଙ୍କ ଆଦେଶରେ ଶାହାଙ୍କ ସପକ୍ଷରେ ଥିବା ଓ ସପକ୍ଷବାଦୀ ବୋଲି ସନ୍ଦେହ ହେଉଥିବା ଶହ ଶହ ଇରାନବାସୀଙ୍କୁ ଧରି ପ୍ରତିଦିନ ଦେବୀଙ୍କ ପାଖେ କୁକୁଡ଼ା ବଳି ପକାଇଲା ଭଳି ଫାଶି ଦିଆଗଲା । ଇରାନରେ ମୁସଲମାନ ଧର୍ମର ଶାସନ ପଦ୍ଧତି ଚାଲିଲା ବୋଲି ଘୋଷଣା କରାଗଲା । ଅନେକ ଆଧୁନିକ ଚଳଣି, ବ୍ୟବହାର, ପଦ୍ଧତି, ଫେସନ ଆଦିକୁ ପାଶ୍ଚାତ୍ୟ ଆମଦାନୀ ଓ ମୁସଲମାନ ଧର୍ମବିରୋଧୀ ବୋଲି ନିଷିଦ୍ଧ କରାଗଲା । ଏପରିକି ଅଧ୍ୟାପିକା, ଲେଡ଼ିଡାକ୍ତର, କଲେଜ ଛାତ୍ରୀମାନଙ୍କୁ ବି ପ୍ରାଚୀନ ମୁସଲମାନ ମହିଳାଙ୍କ ଭଳି ଆପାଦ ମସ୍ତକ ଘୋଡ଼ାଇ ବୁର୍ଖା ପିନ୍ଧିବାକୁ ବାଧ କରାଗଲା ଓ ଏହିଭଳି ବହୁ ମଧ୍ୟଯୁଗୀୟ ରୀତିନୀତି ମୁସଲମାନ ଧର୍ମର ଦୋହା ଦେଇ ପ୍ରଚଳନ କରାଗଲା । ଏଣେ ଶାହା ଯୋଉ ଦେଶରେ ଶରଣ ପଶି ଆଶ୍ରୟ ନେଇଥିଲେ, ସେ ଦେଶର ସରକାରଙ୍କୁ ବାଧ କରାଗଲା ଯେ, ସେ ଶୀଘ୍ର ଶାହାଙ୍କୁ ତାଙ୍କ ଦେଶରୁ ତଡ଼ି ଦିଅନ୍ତୁ । ତାଙ୍କର ବିଚାର ହୋଇ ସର୍ବସମକ୍ଷରେ ତାଙ୍କୁ ଖୁଣ୍ଟରେ ବାନ୍ଧି ତାଙ୍କ ଛାତିକୁ ଗୁଳି କରି ମରାଯିବ ଏବଂ ଘୋଷଣା କରାଗଲା ଯେ, ଯେ କେହି କୌଶଳରେ ଶାହାଙ୍କୁ ମାରି ତାଙ୍କର ମୁଣ୍ଡ ଆଣି ଦେଖାଇବ, ତାକୁ ଲକ୍ଷ ଲକ୍ଷ ଟଙ୍କା ପୁରସ୍କାର ଦିଆଯିବ ।

ଇତି ମଧ୍ୟରେ ଇରାନର ବିପ୍ଳବୀ ଧର୍ମାନ୍ଧ ଛାତ୍ରମାନେ ଆମେରିକା ଦୂତାବାସକୁ ଅବରୋଧ କଲେ ଏବଂ ଆମେରିକା ସରକାର ଶାହାଙ୍କୁ ଜୀଅନ୍ତା ଇରାନ୍‌କୁ ପଠାଇ ନ ଦିଅନ୍ତି, ତେବେ ତାଙ୍କର ଷାଠିଏ ସରିକି ଲୋକଙ୍କୁ ଏଠି ରହିଥିବା ଦୂତାବାସ ଭିତରେ ମାରି ଦିଆଯିବ । ଇରାନର ଧର୍ମାନ୍ଧ, ହିଂସ୍ର, କାଣ୍ଡଜ୍ଞାନହୀନ ଛାତ୍ରମାନଙ୍କ ଦାବୀକୁ ଖୋମେନୀ ଓ ଇରାନ୍ ସରକାର ମଧ୍ୟ ସମର୍ଥନ କଲେ ଏବଂ ଆମେରିକାକୁ ଧମକ ଦେଲେ । ଆମେରିକା ସରକାର ଓ ଆମେରିକାବାସୀ ଏଥିରେ ଖୁବ୍ ଉତ୍କ୍ଷିପ୍ତ

ହୋଇ ଇରାନ୍‌କୁ ସମୁଚିତ ଶିକ୍ଷା ଦେବାଲାଗି ଯୁଦ୍ଧପାଇଁ ସଜବାଜ ହୋଇଗଲେଣି ଏବଂ ଇରାନ୍‌ର ଧର୍ମାନ୍ଧ ଖୋମେନୀ ବର୍ତ୍ତମାନ ବିଶ୍ୱର ସବୁ ମୁସଲମାନ ରାଷ୍ଟ୍ରମାନଙ୍କୁ ଆମେରିକା ସମେତ ସମସ୍ତ ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କ ବିରୋଧରେ ଏକଜୁଟ ହେବାଲାଗି ନିବେଦନ କଲେଣି। ଖୋମେନୀ ଏହାକୁ ଜେହାଦ୍ ବା ଧର୍ମଯୁଦ୍ଧର ରଙ୍ଗ ଦେଇ ସାରିଲେଣି।

ଇତି ମଧ୍ୟରେ ମକ୍କାଠାରେ ଥିବା ହଜରତ୍ ମହମ୍ମଦଙ୍କ ପବିତ୍ର ସମାଧି ମନ୍ଦିର ଭିତରେ କେତେକ ସଶସ୍ତ୍ର ମୁସଲମାନ ପ୍ରବେଶ କରି ତାକୁ ଅଧିକାର କରିନେବା ଲାଗି ଅବରୁଦ୍ଧ କରି ରଖିଲେ।

ସରକାର ନିଜଆଡୁ କୌଣସି ପ୍ରକାରେ ସେହି ସମାଧିକୁ କିଛିଦିନ ପାଇଁ ଅକ୍ତିଆର କରି ପାରିଲେ ନାହିଁ। କାରଣ ସଶସ୍ତ୍ର ଆକ୍ରମଣ କଲେ ସମାଧି ଭିତରେ ବହୁ ନିରୀହ ଭକ୍ତ ମୁସଲମାନ ମଧ୍ୟ ଆତତାୟୀଙ୍କ ହସ୍ତରେ ପ୍ରାଣ ଦେବେ। ସେହି ପବିତ୍ର ସମାଧିକୁ ଯେଉଁମାନେ ଜବରଦସ୍ତି ଦଖଲ କରୁଥିଲେ ସେମାନେ କିଏ ? ବହୁତ ପରେ କୁଆଡ଼େ ଜଣା ପଡ଼ିଲା ଯେ, ସେମାନେ ଅହମ୍ମଦିଆ ସଂପ୍ରଦାୟର ମୁସଲମାନ। ମୁସଲମାନ ଧର୍ମ ଭିତରେ ଏମାନେ ହେଲେ ସଂସ୍କାରପନ୍ଥୀ ଓ ଆଧୁନିକ ମନୋବୃତ୍ତିସମ୍ପନ୍ନ। ଏହି ଅହମ୍ମଦିଆମାନେ ହଜରତ ମହମ୍ମଦଙ୍କୁ ମାନନ୍ତି କିନ୍ତୁ ସର୍ବଶ୍ରେଷ୍ଠ ଧର୍ମଦୂତ ବୋଲି ମାନନ୍ତି ନାହିଁ। ସେମାନେ ଆଉ ଜଣେ ଅର୍ବାଚୀନ ଭାରତୀୟ ମୁସଲମାନଙ୍କୁ ସେମାନଙ୍କର ସର୍ବାଧୁନିକ ଧର୍ମଗୁରୁ ରୂପେ ମାନନ୍ତି ଏବଂ କୋରାନ୍ ସରିଫ୍‌ର ଆଧୁନିକ ବ୍ୟାଖ୍ୟା ସହ ନିଜର ଧର୍ମଗ୍ରନ୍ଥ ବୋଲି ଗ୍ରହଣ କରନ୍ତି। ସେମାନେ ମୁସଲମାନ ଧର୍ମର ବହୁ ରୀତିନୀତିକୁ କୁସଂସ୍କାର ଏବଂ ଆଧୁନିକ ଯୁଗରେ ଅଚଳ ବୋଲି ପରିହାର କରିଛନ୍ତି ଏବଂ ସବୁଠାରୁ ବଡ଼ କଥା ହେଲା ଯେ, ସେମାନେ ଅନ୍ୟ ସବୁ ଧର୍ମର ଧର୍ମଗୁରୁ ଓ ଅବତାରମାନଙ୍କୁ ଯଥା ଶ୍ରଦ୍ଧା ଓ ସମ୍ମାନ ଦେଇ ଗ୍ରହଣ କରନ୍ତି। ଏଥିଯୋଗୁଁ ପ୍ରାଚୀନପନ୍ଥୀ ଧର୍ମାନ୍ଧ ମୁସଲମାନଗଣ ସେମାନଙ୍କୁ ଆଦୌ ମୁସଲମାନ ବୋଲି ଗ୍ରହଣ କରନ୍ତି ନାହିଁ। ଇରାନ୍ ଓ ପାକିସ୍ଥାନରେ ସରକାରମାନେ ସେମାନଙ୍କୁ ଅଣ ମୁସଲମାନ ସମ୍ପ୍ରଦାୟ ରୂପେ ଗ୍ରହଣ କରିଛନ୍ତି। କହିବା ବାହୁଲ୍ୟ, ବର୍ତ୍ତମାନ ମୁସଲମାନ ଜଗତରେ ଏହି ଅହମ୍ମଦିୟା ଓ ମହମ୍ମଦିୟା ସଂପ୍ରଦାୟିକ ବିଭେଦ ବହୁତ ତିକ୍ତ ଅବସ୍ଥାକୁ ଆସିଗଲାଣି।

ମକ୍କାସ୍ଥିତ ମହମ୍ମଦଙ୍କର ପବିତ୍ର ସମାଧିକୁ ଅହମ୍ମଦିଆମାନେ ଅଧିକାର କରିଥିଲେ କି ନାହିଁ—ତାହା ମଧ୍ୟ ରହସ୍ୟାବୃତ। କିନ୍ତୁ ଇରାନ୍‌ବାସୀ ଧରିନେଲେ ଯେ ସମାଧିକୁ ଅଧିକାର କରୁଥିବା ଲୋକେ ନିଶ୍ଚିତଭାବେ ଆମେରିକା ଓ ଇସ୍ରାଏଲ୍ ସରକାରଙ୍କ ଦ୍ୱାରା ପ୍ରରୋଚିତ ହୋଇଛନ୍ତି। ତେଣୁ ଇରାନ୍ ପ୍ରକାଶ୍ୟରେ ଘୋଷଣା କରି ଆମେରିକା

ବିରୋଧରେ ବହୁ ବିଷୋଦ୍‌ଗାର କଲାଣି ଏବଂ ଏହା ଶୀତଳ ଯୁଦ୍ଧରେ ପରିଣତ ହେଲାଣି। ଏଣେ ପାକିସ୍ତାନରେ ମଧ୍ୟ କେତେକ ଉଦ୍ଧ୍ୟତ୍ତ ଲୋକେ ଆମେରିକା ଓ ଅନ୍ୟ କେତୋଟି ପାଶ୍ଚାତ୍ୟ ଦୂତାବାସ ଉପରେ ଆକ୍ରମଣ କରି ନିଆଁ ଲଗାଇ ପୋଡ଼ି ଚିତ୍କାର କଲେଣି—''ଶାଳା ଆମେରିକାନ୍ କୁକୁରଙ୍କୁ ଯୋଉଠି ଦେଖୁଛ ମାର ଓ ଚଢ଼।'' ତାହା ଦେଖାଦେଖି ଆମ କଲିକତାରେ ମଧ୍ୟ ଆମେରିକା ବିରୋଧରେ କେତେକ ମୁସଲମାନ ଦଳବାନ୍ଧି ବିକ୍ଷୋଭ ଧ୍ୱନି ଦେଲେଣି। ଏହି ଉତ୍ତେଜନା ସୃଷ୍ଟି କରି ଓ ଏହାକୁ ଆଳ କରି କିଛି ରାଜନୈତିକ ଫାଇଦା ହାସଲ କରିବା ମଧ୍ୟ କେତେକଙ୍କର ମତଲବ ରହିଛି।

ବର୍ତ୍ତମାନ ଯାହା ଦେଖାଯାଉଛି—କାହାର ଆଉ ମୁଣ୍ଡ ଠିକ ଥିଲା ଭଳି ଜଣାପଡୁ ନାହିଁ। ବ୍ୟକ୍ତି ଓ ରାଷ୍ଟ୍ରମାନେ ବୁଦ୍ଧି-ବିଚାରହୀନ ଏକବାଗିଆ, ଜିଦ୍‌ଖୋର ଶିଶୁଭଳି ବ୍ୟବହାର କରୁଛନ୍ତି। ଅବିଶ୍ୱାସ, ହିଂସା, ସନ୍ଦେହ, କ୍ଷମତାଲୋଭ, ପ୍ରମତ୍ତତା ସମଗ୍ର ବିଶ୍ୱର ମାନସିକତାକୁ ଗ୍ରାସ କରିଗଲାଣି। ଏତେଦିନ ପର୍ଯ୍ୟନ୍ତ ଆମେ ଆମ ମାନବଜାତିର ସଭ୍ୟତା, ସଂସ୍କୃତି, ବିଜ୍ଞାନ ଓ ଧର୍ମ ବୁଦ୍ଧିକୁ ନେଇ ଯେଉଁ ଟାଣପଣ କରିଥିଲୁ—ଏବଂ ମନୁଷ୍ୟର ବୁଦ୍ଧି ବିବେକ, ବିଚାର ଉପରେ ଯେଉଁ ଆସ୍ଥା ବା ଭରସା ରଖିଥିଲୁ, ତାହା ଅତି ଶୋଚନୀୟ ଭାବେ ଆମ ନିଜ ଭିତରେ ଗୋଟିଏ ଭଙ୍ଗା ଦେଉଳରୁ ଖଣ୍ଡ ଖଣ୍ଡ ପଥର ଖସି କ୍ରମଶଃ ଭୁଷୁଡ଼ି ପଡ଼ିଲା ଭଳି ଭୁଷୁଡ଼ି ପଡୁଛି। ଆମର ଗଣତନ୍ତ୍ର, ସମାଜବାଦ, ସାମ୍ୟବାଦ, ମାନବତାବାଦ ସବୁ ଯେପରି ଗୋଟିଏ ପ୍ରହସନରୂପେ ପରିଣତ ହୋଇଛି। ମୋଟ ଉପରେ ମାନବ ଜାତିର ବୁଦ୍ଧି ବିବେକ ଯେତିକି ଦୂର ଯିବା କଥା, ସେତିକି ଦୂର ପର୍ଯ୍ୟନ୍ତ ଯାଇ ଆଉ ଅଧିକ ଅଗ୍ରସର ହୋଇ ପାରୁନାହିଁ। ମାନବ ଜାତିକୁ ରକ୍ଷା କରିବା ଲାଗି ତା'ର ଏହି ବୁଦ୍ଧି ବିବେକ ଆଉ ଯଥେଷ୍ଟ ଶକ୍ତିଶାଳୀ ନୁହେଁ। କମ୍ୟୁନିଷ୍ଟ ରାଷ୍ଟ୍ରମାନେ ମାନବୀୟ ସାମ୍ୟ-ସଙ୍ଗତି କଥା କହୁଛନ୍ତି—ଗଣତାନ୍ତ୍ରିକ ରାଷ୍ଟ୍ରମାନେ ମାନବୀୟ ଆତ୍ମସମ୍ମାନ ଓ ସ୍ୱାଧୀନତା କଥା କହୁଛନ୍ତି। ଇସଲାମୀୟ ଓ ଖ୍ରୀଷ୍ଟିଆନ୍ ରାଷ୍ଟ୍ରମାନେ ମାନବୀୟ ଭ୍ରାତୃତ୍ୱବୋଧ, ଐକ୍ୟ, ତ୍ୟାଗ ଓ କରୁଣା ପ୍ରଭୃତିର କଥା କହୁଛନ୍ତି ମାତ୍ର କାହିଁ ଏସବୁ କଥା? ତାହାହେଲେ ଏତେ ବାଦ ବିସମ୍ବାଦ କାହିଁକି? ଏତେ ଷଡ଼ଯନ୍ତ୍ର ଓ ଶୀତଳଯୁଦ୍ଧ କାହିଁକି? ଏତେ ମରାମରି କାହିଁକି?

ଅସଲ କଥା ହେଲା—ଏହି ପୁରାତନ ପୃଥିବୀରେ ପରମାୟୁ ଶେଷ ହୋଇ ଆସିଲାଣି। ଏହି ପୃଥିବୀର ସମସ୍ତ ପାରମ୍ପରିକ ପ୍ରଜ୍ଞା, ବୁଦ୍ଧିବାଦ, ଧର୍ମ-ବୁଦ୍ଧି, ନୀତି, ନ୍ୟାୟ ଓ ଅନୁଷ୍ଠାନ ପ୍ରତିଷ୍ଠାନଗୁଡ଼ିକର କାର୍ଯ୍ୟକଳାପ ପୂରି ଗଲାଣି। ଏଗୁଡ଼ିକର ଅବକ୍ଷୟ ଘଟିଗଲାଣି। ସମଗ୍ର ମନୁଷ୍ୟ ଜାତି ପାଇଁ ଆଉ ଗୋଟିଏ ନୂତନ ଆଦର୍ଶ ଲୋଡ଼ା। ମନୁଷ୍ୟ ତା'ର ବର୍ତ୍ତମାନର ସୀମାକୁ ଅତିଶୀଘ୍ର ଅତିକ୍ରମ କରିବାକୁ କରିବ।

ଏ ଯୁଗର ପରମ ପ୍ରଜ୍ଞାବାନ୍ ଋଷି ଶ୍ରୀ ଅରବିନ୍ଦ ଏହି କଥାହିଁ ସ୍ପଷ୍ଟ ଭାବେ କହିସାରିଛନ୍ତି। "ଅତିମାନସ ଶକ୍ତି ଓ ଚେତନା" ଭିତରକୁ ସମସ୍ତ ମାନବ ସମାଜର ଉତ୍ତରଣ ହେବ ହିଁ ହେବ। ଏହା ହିଁ ମାନବ ଜାତିର ବିଧି ନିର୍ଦ୍ଦିଷ୍ଟ ନିୟତି।

"ଅତିମାନସ ଚେତନା" ଭିତରକୁ ପ୍ରବେଶ କରିବା ପୂର୍ବରୁ—କିନ୍ତୁ ଏଭଳି ଦୁର୍ଘଟଣାମାନ ଘଟିବଇ ଘଟିବ। ଅବକ୍ଷୟମାଣ ରାଜନୀତି, ଧର୍ମ ଓ ବିଜ୍ଞାନ, ସଂସ୍କୃତି ଅର୍ଥନୀତି, ସମାଜନୀତି ଏବଂ ସେ ସବୁକୁ ନେଇ ଯେତେ ଯାହା ଅନୁଷ୍ଠାନ ପ୍ରତିଷ୍ଠାନାଦି ଓ ତାକୁ ଚଳାଉଥିବା ଯେତେ ଯିଏ ସବୁ ଅହଂଗ୍ରସ୍ତ ଅମାନିଆ ବ୍ୟକ୍ତିବିଶେଷ ସମସ୍ତେ ସେହି ନୂତନ ଆଲୋକ ସଙ୍ଗେ ଶେଷ ଯୁଦ୍ଧ ପାଇଁ ଏକଜୁଟ ହୋଇଯିବେ ଓ ପ୍ରାଣପଣେ ଯୁଦ୍ଧରେ ମାତିବେ ଏବଂ ଶେଷ ପର୍ଯ୍ୟନ୍ତ ଶେଷ ହୋଇଯିବ। ପୃଥିବୀକୁ ଅଧିକାର କରିବ ଏକ ନୂତନ ଆଦର୍ଶ, ନୂତନ ପ୍ରଜ୍ଞା, ନୂତନ ଚେତନା ଓ ନୂତନ ଶକ୍ତି।

ବର୍ତ୍ତମାନ ତା'ରି ପ୍ରସ୍ତୁତିପର୍ବ ଚାଲିଛି। ସୂର୍ଯ୍ୟୋଦୟ ପୂର୍ବରୁ ଅନ୍ଧକାର ଆହୁରି ଘନୀଭୂତ ଓ ଆହୁରି ସାନ୍ଦ୍ର ହୋଇ ଉଠିଛି। ହୁଏତ ଖୁବ୍ ରକ୍ତପାତ ହେବ—ହୁଏତ ଖୁବ୍ ଅବକ୍ଷୟ ଘଟିବ—ହୁଏତ ଦିଗ୍‌ବଳୟ ଘୋର ଅନ୍ଧକାର ଭିତରେ ଅଦୃଶ୍ୟ ହୋଇଯିବ। କିନ୍ତୁ ଏସବୁ ସତ୍ତ୍ୱେ ପୃଥିବୀ ଉପରେ ନୂତନ ଯୁଗର ପ୍ରତିଷ୍ଠା ହେବ। ମାନବ ଜାତିର ଉତ୍ତରଣ ଘଟିବ। ଗତ ୨୪।୧୧।୭୯ ତାରିଖଟି ଥିଲା ସେହି ସୁଦିନର ପ୍ରତିଶ୍ରୁତି—ଯୁଗାବତାର ଶ୍ରୀଅରବିନ୍ଦଙ୍କର ସିଦ୍ଧି ଦିବସ। ସାରା ପୃଥିବୀର ବର୍ତ୍ତମାନ ଗୋଟିଏ ବିସ୍ଫୋରକ ସ୍ତୂପ ଉପରେ ଅଜାଣତରେ ଡିଆଁଡେଇଁ କରୁଛି। ଠିକଣା ସମୟରେ ସେ ଏହି ବିସ୍ଫୋରଣର ସମ୍ମୁଖୀନ ହେବଇ ହେବ।

କିନ୍ତୁ ଆଉ ଗୋଟିଏ ବିସ୍ଫୋରକ ମଧ୍ୟ ଆମର ସାମାନ୍ୟ ଉର୍ଦ୍ଧ୍ୱରେ ଆମର ଅଜଣାରେ ଅପେକ୍ଷା କରି ରହିଛି। ଠିକଣା ସମୟରେ ତାହା ମଧ୍ୟ ବିସ୍ଫୋରଣ ହେବ ଏବଂ ଆଉ ସମସ୍ତଙ୍କୁ ଏଇ ଦୁଇଟି ବିସ୍ଫୋରଣର ସମ୍ମୁଖୀନ ନିଶ୍ଚିତ ଭାବରେ କରିବାକୁ ପଡ଼ିବ। ଧ୍ୱଂସର ସ୍ତୂପ ଉପରେ ଗଢ଼ି ଉଠିବ—ନୂତନ ଜଗତ। ଏ ଯନ୍ତ୍ରଣା ସହିବାକୁ ହେବ—ସେହି ନୂତନ ଆନନ୍ଦର ସ୍ପର୍ଶ ପାଇବା ପୂର୍ବରୁ।



# ବାକ୍ ସ୍ୱାଧୀନତା

ଗଣତନ୍ତ୍ରରେ ବ୍ୟକ୍ତି ଯେତେ ପ୍ରକାର ସ୍ୱାଧୀନତା ଭୋଗକରେ, ତା' ଭିତରେ ବାକ୍ ସ୍ୱାଧୀନତା ବୋଧହୁଏ ସବୁଠାରୁ ବଡ଼କଥା, କିନ୍ତୁ ଏଇ ବାକ୍ ସ୍ୱାଧୀନତା ବ୍ୟାପାରଟିକୁ କେବଳ ରାଜନୈତିକ ଦୃଷ୍ଟିରୁ ନ ଦେଖି, ସାଧାରଣ ମାନବୀୟ ଦୃଷ୍ଟିକୋଣରୁ ବିଚାର କଲେ ବୁଝାଯିବ ଯେ, ମଣିଷର ସମସ୍ତ କୃତିତ୍ୱ ଭିତରେ ଏହି ମନର କଥାକୁ ଅବାଧରେ, ସ୍ୱଚ୍ଛନ୍ଦରେ ଓ ଯଥାଯଥ ଭାବରେ ପ୍ରକାଶ କରି ପାରିବାର ସାମର୍ଥ୍ୟ ହିଁ ସବୁଠାରୁ ବଡ଼ କୃତିତ୍ୱ। ଯଦି ଜଣକଠାରୁ ଏହି କ୍ଷମତା କାଢ଼ି ନିଆଯାଏ ବା ଜଣେ ଯଦି ନିଜ ଆଡ଼ୁ ଏହି ସାମର୍ଥ୍ୟ ହରେଇ ବସେ, ତେବେ ଜୀବନ ଶୋଚନୀୟ ହୋଇ ଉଠିବଇ ଉଠିବ।

ମାତ୍ର ବ୍ୟକ୍ତି କେବଳ କଥା କହିବାର ସ୍ୱାଧୀନତା ପାଇଲେ ଯଥେଷ୍ଟ ହେଲା ନାହିଁ। ବ୍ୟକ୍ତି ମଧ ଜାଣିବା ଉଚିତ୍ ଯେ, ସେ କଅଣ କହିବ—କିପରି କହିବ ଓ କିପରି ନକହିବ, କାହାକୁ କହିବ ଓ କାହାକୁ ନ କହିବ—ଆଉ ମଧ କେତେବେଳେ ସେ ପାଟି ବନ୍ଦକରି ଚୂପହୋଇ ବସିବ।

ଅଥଚ ଶୋଚନାର କଥା ଯେ, ଆମେ କେବଳ କଥା କହିବାର ସ୍ୱାଧୀନତା ଦାବୀ କରୁ—ହାସଲ କରୁ ଓ ବ୍ୟବହାର କରୁ ଏବଂ ଅନ୍ୟସବୁ ସର୍ତ୍ତଗୁଡ଼ିକୁ ଭୁଲିଯାଉ। ସାରା ପୃଥିବୀରେ ଓ ସାରା ଦେଶରେ ବର୍ତ୍ତମାନ ପ୍ରତ୍ୟେକ ବ୍ୟକ୍ତି ଏତେ କଥା କହୁଛନ୍ତି ଯେ, ସେଇ କଥାର କୋଳାହଳରେ ଆମ ମୁଣ୍ଡ ଖରାପ ହୋଇ ଯିବା ଉପରେ। ସମସ୍ତେ କେବଳ କହି ଚାଲିଛନ୍ତି ମନଇଚ୍ଛା। କେହି କାହା କଥା ଶୁଣିବାକୁ ନାରାଜ। କେହି ମଧ କେତେବେଳେ ଚୂପ୍ ହେବାକୁ ନାରାଜ। ସବୁବେଳେ ବକ ବକ ହେଉଥିବା ଲୋକେ ଭାବନ୍ତି ଯେ ସେମାନେ ସମସ୍ତଙ୍କୁ ଶୁଣାଇ ଦେଉଛନ୍ତି। ମାତ୍ର ସେଇ ବାଚାଳମାନେ ବୁଝନ୍ତି ନାହିଁ ଯେ କେହି ତାଙ୍କୁ ଶୁଣୁନାହାନ୍ତି। ସମସ୍ତେ ତାଙ୍କ କଥା ପ୍ରତି କାନରେ ଆଙ୍ଗୁଠି ଚିପି ରହୁଛନ୍ତି। ଆଜିକାଲି ଲୋକେ କେବଳ ପାଟିରେ କଥା କୁହନ୍ତି ନାହିଁ। କାଗଜ କଲମରେ ବେଶୀ କଥା କୁହନ୍ତି। ସେଥିପାଇଁତ ସାରାଦେଶରେ ଏତେ ଖବରକାଗଜ, ଏତେ ପତ୍ର ପତ୍ରିକା।

ବିଗତ ଜରୁରୀ ପରସ୍ଥିତିରେ ଯେଉଁମାନେ ବାକ୍ ସ୍ୱାଧୀନତା ହରାଇ ଥିଲେ—ଗତ ଜନତା ସରକାର ଅମଳରେ ସେମାନେ ତାହା ବହୁ ଗୁଣରେ ଫେରିପାଇଲେ ଏବଂ ଏଇ ଅଢ଼େଇ ବର୍ଷ ଭିତରେ ଅଜସ୍ର ପତ୍ରପତ୍ରିକାରେ ଅଜସ୍ର ସ୍ୱାଧୀନ-ମତ-ପ୍ରସୂତ-ବାକ୍ୟାବଳୀ

ପ୍ରକାଶିତ ହୋଇଗଲା। ବହୁ ବହି ଓ ସମ୍ବାଦ ପତ୍ରରେ ବହୁ ବହୁ କଥାମାନ ଲେଖା ହୋଇଗଲା। ଲକ୍ଷ ଲକ୍ଷ ସଂଖ୍ୟାରେ ବି ବିକ୍ରୀ ହୋଇଗଲା—ସବୁ ଭାଷାରେ ଏମିତି ଏମିତି ବହୁ ବହି ପତ୍ର—ପତ୍ରିକା ଓ ସମ୍ବାଦପତ୍ର। ମାତ୍ର ସତକୁସତ ଟିକିଏ ଭାବି ଦେଖିଲେ—ଆମ ମନରେ ପ୍ରଶ୍ନ ଉଠେ—ଆଚ୍ଛା! ଇତି ମଧ୍ୟରେ ଯାହାକିଛି ସ୍ୱାଧୀନ ଭାବରେ ଲେଖାଗଲା—ସେଥିରୁ ଶତକଡ଼ା ଅଠାନବେ ଭାଗ ଲେଖା ହୋଇ ନ ଥିଲେ କଣ ଖରାପ ହୋଇଥାନ୍ତା ? ସେମିତି, ଇତିମଧ୍ୟରେ ଯାହାସବୁ କୁହା ହୋଇଗଲା—ସେଥିରୁ ଶତକଡ଼ା ଅଠାନବେ ଭାଗ କୁହା ନ ହୋଇଥିଲେ କ'ଣ ଅଶୁଭ ହୋଇ ଯାଇଥାନ୍ତା ? ଏପରିକି ଇତି ମଧ୍ୟରେ ପତ୍ର—ପତ୍ରିକାରେ ଯେତେ ଯାହା ଫଟୋ ବା ଛବିମାନ ପ୍ରକାଶ ପାଇଗଲା, ସେଥିରୁ ଶତକଡ଼ା ଅଠାନବେ ଭାଗ ପ୍ରକାଶ ନ ପାଇଥିଲେ ଆମର କ'ଣ ହାନି ହୋଇଥାନ୍ତା ?

ସୁଜ୍ଞଜନମାନଙ୍କ ମତରେ ତାହା ଖୁବ୍ ଭଲ ହୋଇଥାନ୍ତା। ମତପ୍ରକାଶର ସ୍ୱାଧୀନତା ନାମରେ ଯେତେ ବାଚାଳତା, ଯେତେ ଅଶ୍ଳୀଳତା, ଯେତେ କୁତ୍ସା, ଯେତେ ଅସୂୟା, ଯେତେ ପ୍ରତିହିଂସା, ଯେତେ ମିଥ୍ୟା, ଯେତେ କୁମତଲବ, ଯେତେ ବିଭ୍ରାନ୍ତି ପ୍ରକାଶିତ ହୋଇଗଲା, ତାହା ଦ୍ୱାରା ସମାଜର ମାନସିକ ଜଳବାୟୁ ଦୂଷିତ ହୋଇଗଲା। ବହୁ ବିଶ୍ୱାସ ଓ ଆସ୍ଥା ଉପରେ ଅଯଥା ଆଘାତ ପଡ଼ିଗଲା। ବହୁ ଶାନ୍ତି ବ୍ୟାହତ ହୋଇଗଲା। କାରଣ, ବହୁସ୍ଥଳରେ ସ୍ୱାଧୀନ ମତ ପ୍ରକାଶକାରୀମାନେ ନିଜର ସ୍ୱାର୍ଥ ମତଲବରୁ କଥା କହିଥାନ୍ତି। କୁକଥାଠାରୁ ବଳି ମାରାତ୍ମକ ଅସ୍ତ୍ର ଆଉ ନାହିଁ। କୁକଥାଠାରୁ ବଳି ବ୍ୟାପକ ସଂକ୍ରାମକ ଆଉ କିଛି ନାହିଁ।

ଗୋଟିଏ ଦୃଷ୍ଟିରୁ ଦେଖିଲେ ମତପ୍ରକାଶ କରିବାକୁ ମାତ୍ରାତିରିକ୍ତ ଅଧୀରତା ହେଲା ଉନ୍ମତ୍ତ ମସ୍ତିଷ୍କର ପ୍ରତିକ୍ରିୟା ବା ପ୍ରବେଗ ମାତ୍ର। ଅସଂଯତ ଦାୟିତ୍ୱହୀନ ଓ ମତଲବବାଜ ବାଚାଳ ବ୍ୟକ୍ତିଙ୍କୁ ଅବାଧ ମତପ୍ରକାଶର ସ୍ୱାଧୀନତା ଦେଲେ ତା'ର ଫଳାଫଳ ବିଷମୟ ହୋଇଯାଏ। ଏକ ସଚେତନ ଅଭୀପ୍ସାପୂର୍ଣ୍ଣ ଓ ଏକାଗ୍ର ନୀରବତା ଯେତେ ଓ ଯେପରି ଶକ୍ତିଶାଳୀ ପ୍ରଭାବ ପକାଇପାରେ ଓ ଯେପରି ଭାବରେ ନିଜର ଉଦ୍ଦେଶ୍ୟ ବ୍ୟକ୍ତ କରିପାରେ—ଲକ୍ଷେ ଅସଂଯତ ଦୂରଭିସନ୍ଧିସମ୍ପନ୍ନ ଅମାର୍ଜିତ ବାଚାଳଙ୍କ ହୈ—ହଲ୍ଲା ବା ହଟଗୋଳ ତାହା କରିପାରେ ନାହିଁ।

କହିବାରେ ଦ୍ୱିଧା ନାହିଁ ଯେ, ଗତ ଅଢ଼େଇ ବର୍ଷ ଭିତରେ ଗଣତାନ୍ତ୍ରିକ ବାକ୍ ସ୍ୱାଧୀନତା ନାମରେ ଆମର ଶ୍ରଦ୍ଧେୟ ବନ୍ଧୁ ଉଚ୍ଚ ମଣିଷଙ୍କ ବିରୋଧରେ ବହୁ ହୀନ କୁତ୍ସା ବୟାନ କରାଯାଇ ସାମୟିକ ଭାବେ ସେମାନଙ୍କର ସମୁନ୍ନତ ଭାବରୂପ (image)କୁ ମଳିନ କରିବାର ଅପଚେଷ୍ଟା ହୋଇଛି। ବହୁ ବୀଭତ୍ସ କଥା ଓ ଛବି ପରିପୂର୍ଣ୍ଣ ବହୁ ଅଶ୍ଳୀଳ ପୁସ୍ତକ ଓ ପତ୍ର ପତ୍ରିକା ପ୍ରକାଶ ପାଇ ସମାଜର ପାରମ୍ପରିକ ସୁରୁଚି ଉପରେ କୁଠାରଘାତ କରିଛି ଏବଂ କମ୍ ସଂଖ୍ୟକ ଲେଖକ,

ସାମ୍ବାଦିକ ଓ ବକ୍ତା ସେମାନଙ୍କର ବାକ୍ ସ୍ୱାଧୀନତାର ସଦ୍ ବ୍ୟବହାର କରି ଦେଶ ପାଇଁ ସଂଯତ ଓ ଶୁଭ ବାର୍ତ୍ତାମାନ ପ୍ରକାଶ କରିଛନ୍ତି। ସବୁଠାରୁ କ୍ଳାନ୍ତିକର ବିଷୟ ହେଲା, ଆମର ରାଜନୈତିକ ନେତାମାନେ ଯେପରି ଭାବେ ପରସ୍ପର ଭିତରେ ଓ ପରସ୍ପର ବିଷୟରେ ପ୍ରକାଶ୍ୟଭାବେ କୁସାବାକ୍ୟମାନ ମୂର୍ଖ ବାଚାଳଙ୍କ ଭଳି କହିଚାଲିଲେ!

ଦେଶରେ ଯଦି ସୁଶାସନ ଆସେ, ତେବେ ଅସାମାଜିକ ଅନୀତିପୂର୍ଣ୍ଣ ଅକର୍ମଗୁଡ଼ିକ ଉପରେ ନିଶ୍ଚୟ ଶାସନର ଖଡ୍ଗ ଉତ୍ତୋଳିତ ହେବ। କିନ୍ତୁ ତା' ସଙ୍ଗେ ସଙ୍ଗେ ବିଗତ ଅଢ଼େଇ ବର୍ଷ ଭିତରେ ଯୋଉ ସବୁ ଅସାମାଜିକ, ନୀତି ଓ ରୁଚିବିଗର୍ହିତ ଅପବାକ୍ୟମାନ ପ୍ରକାଶ କରିବାର ଅଭ୍ୟାସ ହୋଇଯାଇଛି, ସେଗୁଡ଼ିକ ଉପରେ ତ ତଦ୍ରୂପ ସୁଶାସନର ଶୁଭକାମୀ ସଚେତନ ଦୃଷ୍ଟି ତୀକ୍ଷ୍ଣ ହୋଇପଡ଼େ। ଦାୟିତ୍ୱହୀନ, ହୀନବୁଦ୍ଧି ବାଚାଳମାନଙ୍କ ଜିହ୍ୱା ନିରଙ୍କୁଶ ନ ରହୁ। କିନ୍ତୁ ଯେଉଁମାନେ ଏହି ହୀନବୁଦ୍ଧି ପ୍ରସୂତ ବାଚାଳତାକୁ ସଂଯତ ବା ନିୟନ୍ତ୍ରିତ କରିବାକୁ ବସିବେ, ସେମାନେ ଯେପରି ମୂକପ୍ରାୟ ମନେ ହେଉଥିବା ଜନ ସାଧାରଣଙ୍କ ହୃଦୟ ମନର ଅକୁହା ଭାଷାକୁ ବୁଝି ପାରିବାର ଦକ୍ଷତା ଅର୍ଜନ କରିଥିବେ ଏବଂ ସୁଜ୍ଞଜନଙ୍କର ଇଚ୍ଛାକୃତ ନୀରବତାରୁ ସେମାନଙ୍କର ଯଥାର୍ଥ ମନୋଭାବ ଧରି ପାରିବା ଲାଗି ମନ ଚୈତନ୍ୟକୁ ଏକାଗ୍ର ରଖିଥିବେ। ତା' ନହେଲେ, ବାକ୍ ସଂଯମର ପରୁଆନା ଆଳରେ କ୍ଷମତାସୀନମାନେ ବାକ୍‌ଦେବୀଙ୍କର ବି କଣ୍ଠରୋଧ କରିଦେବାର ଆଶଙ୍କା ରହିଛି।



# ବେଆଇନ ଧର୍ମାନ୍ତର—ଏକ ସମୀକ୍ଷା

ସଂପ୍ରତି ଶ୍ରୀ ଓ.ପି. ତ୍ୟାଗୀଙ୍କ ଦ୍ୱାରା ଲୋକସଭାରେ ଆଗତ ବେଆଇନ ଧର୍ମାନ୍ତରୀକରଣ ନିରୋଧ ବିଲ ଦେଶସାରା ଖ୍ରୀଷ୍ଟିଆନ ସଂପ୍ରଦାୟ ମହଲରେ ଘୋର ଆଲୋଡ଼ନ ସୃଷ୍ଟି କରିଛି। ବମ୍ବେରେ କିଛିଦିନ ତଳେ ଏହି ବିଲ୍ ବିରୋଧରେ ଜନମତ ସୃଷ୍ଟି କରିବା ପାଇଁ ଯେଉଁ ବିରାଟ ଏବଂ ଅଭୂତପୂର୍ବ ଶୋଭାଯାତ୍ରା ବାହାରିଥିଲା, ସେଥିରେ ଲକ୍ଷ ଲକ୍ଷ ଆବାଳବୃଦ୍ଧବନିତା ଖ୍ରୀଷ୍ଟିୟାନ ଯୋଗଦେଇ "ଧର୍ମପ୍ରଚାରର ସ୍ୱାଧୀନତା ଦିଅ" ବୋଲି ତୁମୂଳ ଧ୍ୱନିମାନ ଦେଇଥିଲେ। ଏଠାରେ ପ୍ରକାଶ ଥାଉକି, ଏହି ବିଲ୍ ବିପକ୍ଷରେ ଖ୍ରୀଷ୍ଟିଆନମାନେ ଯେତେ ଉଦ୍‌ବିଗ୍ନ, ଆଉ ଉତ୍‌କ୍ଷିପ୍ତ ଭାରତବାସୀ ଅନ୍ୟ ଧର୍ମ ସଂପ୍ରଦାୟର ଲୋକେ ସେତେ ନୁହନ୍ତି—ପ୍ରାୟ ନୁହନ୍ତି। ବର୍ତ୍ତମାନ ଦେଶସାରା ଖ୍ରୀଷ୍ଟିଆନମାନେ ହିଁ ଏହି ବିଲ୍ ବିରୋଧରେ ବିକ୍ଷୋଭ ପ୍ରଦର୍ଶନ ପାଇଁ ଲାଗିପଡ଼ିଛନ୍ତି।

ଏହି ବିଲ୍‌ଟି ହେଉଛି ଧର୍ମ ନିରପେକ୍ଷ ଭାରତରେ କେହି କାହାକୁ ପ୍ରବଞ୍ଚନା, ଛଳନା ବା ପ୍ରତାରଣା କରି କିମ୍ବା କୌଣସି ପ୍ରକାର ପ୍ରଲୋଭନ ଦେଖାଇ ବା ପ୍ରବର୍ତ୍ତନା ଦେଇ ଅଥବା କୌଣସି ପ୍ରକାର ବଳ ପ୍ରୟୋଗ ଦ୍ୱାରା ଅନ୍ୟ ଧର୍ମରେ ଦୀକ୍ଷିତ କରାଇ ପାରିବେ ନାହିଁ। ଏସ୍ଥଳେ କହି ରଖିବାର ଅଛି ଯେ, ଏହି ବିଲ୍‌ଟି ଲୋକସଭାରେ ବିଲ୍ ହିସାବରେ ନୂତନ ହେଲେ ବି, ଭାରତୀୟ ପିଙ୍ଗଲ କୋର୍ଡ୍‌ର ସୀମା ବହିର୍ଭୂତ ବିଷୟ ନୁହେଁ। ଏହାଛଡ଼ା ମଧ୍ୟପ୍ରଦେଶ ଏବଂ ଓଡ଼ିଶାରେ ଏହି ଧରଣର ଆଇନ ଏବେ ବି ବଳବତ୍ତର ଅଛି। ଏହି ଦୁଇ ରାଜ୍ୟର ଏହି ଆଇନଟିକୁ ମଧ୍ୟ ସୁପ୍ରିମ କୋର୍ଟ ସିଦ୍ଧ ବୋଲି ଘୋଷଣା କରି ସାରିଛନ୍ତି। ତେଣୁ ଲୋକସଭାରେ ଆଗତ ମାତ୍ର ଏହି ବିଲ୍‌ଟିକୁ କେବଳ ଖ୍ରୀଷ୍ଟିଆନ ସଂପ୍ରଦାୟ ଆଜି ଏତେ ଜୋର ପ୍ରାଣ ବିକଳରେ କାହିଁକି ବିରୋଧ କରୁଛନ୍ତି, ତାହା ଆନ୍ତରିକତା ସହିତ ବିଚାର ବିଶ୍ଳେଷଣ କରିବା ବିହିତ। କିନ୍ତୁ ତା'ପୂର୍ବରୁ ତ୍ୟାଗୀ ମହାଶୟଙ୍କର ଏହି ବିଲ୍ ଆଗତ କରିବା ପଛରେ କ'ଣ ସବୁ ତଥ୍ୟ ବା ତତ୍ତ୍ୱମାନ ଅଛି—ତା'ର ମଧ୍ୟ ଉଦ୍‌ଘାଟନ ଆବଶ୍ୟକ।

ପ୍ରଥମତଃ ଆମେ ଦେଖିବା ଯେ, ଯେଉଁ ଖ୍ରୀଷ୍ଟିଆନ ଧର୍ମ ପ୍ରଚାରକମାନେ ଧର୍ମ—ନିରପେକ୍ଷ ଦେଶ ଭାରତରେ ଅନ୍ୟକୁ ଧର୍ମାନ୍ତରୀ କରିବାର ଅଧିକାର ଦାବୀ କରୁଛନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ବିଦେଶୀ। ସେମାନେ ଆସିଛନ୍ତି ସେହିସବୁ ଦେଶରୁ, ଯେଉଁ ଦେଶମାନଙ୍କରେ ଖ୍ରୀଷ୍ଟିଆନ ଧର୍ମର ରାଜନୈତିକ ପ୍ରାଧାନ୍ୟ ରହିଛି ଏବଂ

ସେ ସବୁ ଦେଶରେ ଖ୍ରୀଷ୍ଟିଆନ ଧର୍ମ ଛାଡ଼ି ଅନ୍ୟ ଧର୍ମ ଗ୍ରହଣ କରିବା ବା ଅନ୍ୟ ଧର୍ମର କେତେକ ବିଶ୍ୱାସକୁ ଆଂଶିକ ଭାବେ ଗ୍ରହଣ କରିବା ମଧ ଏତେ ସହଜ ବ୍ୟାପାର ନୁହେଁ। ଇଟାଲୀରେ ରୋମାନ କାଥଲିକ ଧର୍ମ ହେଉଛି ରାଷ୍ଟ୍ରଧର୍ମ। ଏଠାରେ କାଥଲିକ ଧର୍ମ ଓ ସଂପ୍ରଦାୟକୁ ରାଷ୍ଟ୍ର ସବୁ ପ୍ରକାରେ ଘଣ୍ଟ ଘୋଡ଼ାଇ ରଖିଛି। ସେହିପରି ସ୍ପେନ ଓ ପର୍ତ୍ତୁଗାଲ ଦେଶରେ ମଧ କାଥ୍‌ଲିକ ଧର୍ମ ରାଷ୍ଟ୍ରୀୟ କ୍ଷମତା ଓ ସୁରକ୍ଷା କବଚାବୃତ ହୋଇ ବଳଶାଳୀ। ସ୍କାଣ୍ଡିନେଭିଆ ଦେଶମାନଙ୍କରେ ଲୁଥେରିୟ ଚର୍ଚ୍ଚ ହେଉଛି ରାଷ୍ଟ୍ରୀୟ ଧର୍ମ ମନ୍ଦିର ଏବଂ ସମ୍ରାଟ ସ୍ୱୟଂ ଲୁଥେରୀୟ ଖ୍ରୀଷ୍ଟିଆନ। ଇଂଲଣ୍ଡରେ ମଧ ରାଜା ବା ରାଣୀ ହେଉଛନ୍ତି ଆଙ୍ଗ୍ଲିକାନ ଚର୍ଚ୍ଚର ମୁଖ୍ୟ ଏବଂ ପ୍ରଧାନମନ୍ତ୍ରୀ ମଧ ଆଙ୍ଗ୍ଲିକାନ ହେବାକୁ ଏକ ପ୍ରକାର ବାଧ। ତାଙ୍କର ଲର୍ଡ଼ ସଭାରେ ବାଇଶି ଜଣ ବିଶପ ଓ ଦୁଇ ଜଣ ଆର୍ଚ୍ଚ-ବିଶପ ସଭ୍ୟ ଥାଆନ୍ତି। ସେ ଦେଶରେ ସାମାଜିକ ଓ ଧାର୍ମିକ ବିଧାନ ସଙ୍ଗେ ରାଷ୍ଟ୍ରର ସମ୍ପର୍କ କେତେଦୂର ଜଡ଼ିତ, ତା'ବହୁ ବର୍ଷତଳେ ଏକ ବିବାହ ସଂକ୍ରାନ୍ତ ଅସଙ୍ଗତି ଯୋଗୁଁ ଅଷ୍ଟମ ଏଡ୍‌ୱାର୍ଡ଼ଙ୍କ ସିଂହାସନ ତ୍ୟାଗ ବ୍ୟାପାରରୁ ବୁଝାପଡ଼େ। ଇତିହାସର ଛାତ୍ର ମାତ୍ରେଇ ଜାଣନ୍ତି, ୟୁରୋପୀୟ ସାମ୍ରାଜ୍ୟବାଦର ବିସ୍ତାରକାଳରେ ବନ୍ଧୁକ ଓ କୂଟନୀତି ସାଙ୍ଗକୁ ଖ୍ରୀଷ୍ଟିଆନ ମିସ୍‌ନାରୀମାନେ ମଧ ଏସିଆ, ଆଫ୍ରିକା ଓ ଆମେରିକା ମହାଦେଶମାନଙ୍କରେ କି ସବୁ ଅଦ୍ଭୁତ କୃତିତ୍ୱମାନ ପ୍ରଦର୍ଶନ କରିଛନ୍ତି। ଭାରତ-ପର୍ତ୍ତୁଗାଲ-ଇତିହାସ-ବିଶାରଦ ଅଧାପକ ବକ୍‌ସର ପର୍ତ୍ତୁଗାଲ ସାମ୍ରାଜ୍ୟ ବିସ୍ତାର କାଳରେ ଚର୍ଚ୍ଚର ବିଭିନ୍ନ ଓ ବିଶେଷ ଭୂମିକା-ଗୁଡ଼ିକ ବିଷୟରେ ଚାଞ୍ଚଲ୍ୟକର ତଥ୍ୟମାନ ପ୍ରଦାନ କରିଛନ୍ତି। ଏପରିକି ଏହି ଅଳ୍ପ କେତେ ବର୍ଷ ପୂର୍ବେ ଆମ ଗୋଆରେ ପର୍ତ୍ତୁଗୀଜ ସରକାର ଖ୍ରୀଷ୍ଟିଆନ ଧର୍ମର ସୁରକ୍ଷା ଲାଗି ଓ ସେ ଧର୍ମରୁ ଅନ୍ୟ ଧର୍ମକୁ ଛାଡ଼ି ନ ଦେବା ଲାଗି ତୀକ୍ଷ୍ଣ ଦୃଷ୍ଟି ଓ ତୀକ୍ଷ୍ଣ ବ୍ୟବସ୍ଥା ଗ୍ରହଣ କରୁଥିଲେ। ସ୍ୱାମୀ ବିବେକାନନ୍ଦଙ୍କ ଭଳି ଧର୍ମନିରପେକ୍ଷ ଧାର୍ମିକ ନେତାଙ୍କ ଜୀବନୀ ପଢ଼ିଲେ ଜଣାପଡ଼େ, ସେକାଳରୁ ମଧ ବିଦେଶୀ ଖ୍ରୀଷ୍ଟାନ୍ ଧର୍ମପ୍ରଚାରକଗଣ ଏ ଦେଶରେ କି ଅଶୋଭନୀୟ କାଣ୍ଡ କାରଖାନାମାନ ଭିଆଇ ଆସିଛନ୍ତି।

ଏହା ସତ୍ତ୍ୱେବି, ଏଥିରେ ସନ୍ଦେହ ନାହିଁ ଯେ, ଖ୍ରୀଷ୍ଟିଆନ ମିସନାରୀମାନେ ଭାରତ ବର୍ଷକୁ ଆସି ଦରିଦ୍ର, ଅଶିକ୍ଷିତ ଓ ରୁଗ୍‌ଣ ବ୍ୟକ୍ତିମାନଙ୍କର ବହୁ ଦୃଶ୍ୟମାନ ସେବା କରିଛନ୍ତି। ଘୋର ଅରଣ୍ୟ ବେଷ୍ଟିତ ଓ ପର୍ବତ ବେଷ୍ଟିତ ଦୁର୍ଗମ ଅଞ୍ଚଳକୁ ବହୁ କଷ୍ଟରେ ପ୍ରବେଶ କରି ଖ୍ରୀଷ୍ଟିଆନ ମିସ୍‌ନାରୀମାନେ ଆମର ଦରିଦ୍ର ଦୁର୍ଗତମାନଙ୍କର ଯେଉଁ ଉପକାର କରିଛନ୍ତି, ତାହା ଆମର ପଚିଶ ଛବିଶ ବର୍ଷ ବୟସର ଡାକ୍ତର, ଅଧାପକ, ଇଞ୍ଜିନିୟରମାନେ, (ତରୁଣ, ଯେଉଁମାନେ ସରକାରୀ ନିଯୁକ୍ତି ପାଇ ଜୟପୁର ପାରଳାଖେମୁଣ୍ଡିରେ ଯାଇ କାମ କରିବାକୁ ଅନିଚ୍ଛୁକ) ବୁଝି ମଧ ପାରିବେ ନାହିଁ।

ସେହି ମିସ୍‌ନାରୀମାନେ ଆମ ଦରିଦ୍ର ଓ ଦୁର୍ଗତ ଲୋକଙ୍କ ଶିକ୍ଷା, ସ୍ୱାସ୍ଥ୍ୟ ଓ ନୈତିକତା ଓ ଅର୍ଥନୈତିକ ବିକାଶରେ ବହୁ ଉପଯୋଗ ଓ ସାଧ୍ୟ-ସାଧନା କରିଛନ୍ତି ଏବଂ କହିବା ବାହୁଲ୍ୟ ଯେ, ସେହିମାନଙ୍କୁ ଆଖି ଆଗରେ ରଖି ଆମର ଆର୍ଯ୍ୟ ସମାଜ ଓ ରାମକୃଷ୍ଣ ମିସନାରୀ ପ୍ରତିଷ୍ଠିତ ହୋଇଛି। କିନ୍ତୁ ବର୍ତ୍ତମାନ ସେହିସବୁ ଅଞ୍ଚଳକୁ ଯାଇ ଦେଖିଲେ ସ୍ପଷ୍ଟ ବୁଝିପଡ଼େ ଯେ, ମିସ୍‌ନାରୀମାନେ ସେମାନଙ୍କର ସେବା ମାଧ୍ୟମରେ କଣସବୁ କରିଛନ୍ତି ଓ ତଦ୍ୱାରା କି କି ସୁଫଳମାନ ଫଳିଛି—ଏବଂ ସେ ସବୁ ଦ୍ୱାରା ଦେଶରେ କେତେ ଲାଭ ବା କ୍ଷତି ହୋଇଛି !

୧୯୫୪ରେ ମଧ୍ୟପ୍ରଦେଶର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଖ୍ରୀଷ୍ଟିଆନ ମିସନାରୀମାନଙ୍କ କାର୍ଯ୍ୟ ତଦାରଖ କରି ନିୟୋଗୀ କମିଟି ଯେଉଁ ରିପୋର୍ଟ ଦେଇଥିଲେ, ସେଥିରୁ ଜଣାଗଲା ଯେ, ଅଧିକାଂଶ ସରଳ, ଦରିଦ୍ର ଲୋକ କିଛି ବଞ୍ଚିବା ଉପଯୋଗୀ ଧନଧାନ୍ୟ ଔଷଧମୌଷଧି ପାଇବା ଆଶାରେ ଖ୍ରୀଷ୍ଟିଆନ ହୋଇଛନ୍ତି। ସତ୍‌ରୁ ସତ ଯୀଶୁଖ୍ରୀଷ୍ଟ ବା ବାଇବେଲର ଧର୍ମୀୟ ଆବେଗ ଅନୁପ୍ରେରଣାରେ ନୁହେଁ। ରୋମାନ କାଥଲିକ୍ ଚର୍ଚ୍ଚ ତରଫରୁ ଅଭାବୀ ଲୋକଙ୍କୁ ଟଙ୍କା ଧାର ଦିଆଯାଏ ଏବଂ ସେହି ସୂତ୍ରରେ ସେମାନଙ୍କୁ ଭୁବନ ମଧ୍ୟ ଦିଆଯାଏ। ଏଠାରେ ଉଲ୍ଲେଖଯୋଗ୍ୟ ବିଷୟ ହେଲା—ନିୟୋଗୀ କମିଟିର ଏହି ତଦାରଖ କାର୍ଯ୍ୟରେ ପ୍ରୋଟେଷ୍ଟାଣ୍ଟମାନେ ଯେତିକି ସହଯୋଗ କରୁଥିଲେ, କାଥଲିକ୍‌ମାନେ ତାହା କରୁ ନଥିଲେ। ଓଲଟା ସେମାନେ ଏହି କମିଟି ବିରୋଧରେ ହାଇକୋର୍ଟରେ ଗୋଟିଏ ମାଣ୍ଡାମସରିଟ୍ ମଧ୍ୟ ଦାଏର କରିଥିଲେ। ହାଇକୋର୍ଟ ଅବଶ୍ୟ ଏହି ଆବେଦନକୁ ଆଗ୍ରାହ୍ୟ କରିଦେଇଥିଲେ।

ଆମେ ପିଲା ଦିନୁ—ଅର୍ଥାତ୍ ଇଂରାଜୀ ସରକାର ଅମଳରୁ ଦେଖି ଆସୁଛୁ—ଆମର ହାଟ, ମେଳଣ, ଯାନୀ ଯାତ୍ରା ଓ ମେଳା ମଉଚ୍ଛବମାନଙ୍କରେ ଖ୍ରୀଷ୍ଟିଆନ୍ ମିସନାରୀମାନେ ଅନାହୂତ ପ୍ରବେଶ କରି, ଧର୍ମପ୍ରଚାର କରୁ କରୁ ଶ୍ରୀକୃଷ୍ଣ, ବୁଦ୍ଧ, ଜଗନ୍ନାଥ, ଶିବ, କାଳୀ ପ୍ରଭୃତିଙ୍କ ସମ୍ପର୍କରେ ଅତି ଅଶ୍ଳୀଳ ନିନ୍ଦାମୂଳକ କୁତ୍ସାବାଦ ଓ ମିଥ୍ୟାବାଦ କରିଥାନ୍ତି। ହିନ୍ଦୁମାନଙ୍କ ସାମାଜିକ ଆଚାର-ବିଚାର ବିରୋଧରେ ଅତି ଅଶୋଭନୀୟ ଅନୁଚିତ ମନ୍ତବ୍ୟମାନ ଅତି ଅବଲୀଳାକ୍ରମେ ଦେଇ ଚାଲିଥାନ୍ତି। ବହୁ ଖ୍ରୀଷ୍ଟିଆନ ସ୍କୁଲରେ ଏବେବି ଶିକ୍ଷକ ଶିକ୍ଷୟତ୍ରୀମାନେ ଅଣଖ୍ରୀଷ୍ଟିଆନ ଛାତ୍ର ଛାତ୍ରୀଙ୍କ କୋମଳ ମନରେ ଅତି ସୂକ୍ଷ୍ମ ଓ ପରୋକ୍ଷଭାବେ ସେମାନଙ୍କ ଧର୍ମ ଓ ଧର୍ମାଚାର ବିରୋଧରେ ଅତି ହୀନଭାବ ସଂଚାରିତ କରାଇ ଦିଅନ୍ତି।

ବହୁ ବିଶିଷ୍ଟ ପର୍ଯ୍ୟବେକ୍ଷକମାନେ ମତ ଦେଇଛନ୍ତି—ଭାରତର ଉତ୍ତର ପୂର୍ବାଞ୍ଚଳରେ ବିଦେଶୀ ଖ୍ରୀଷ୍ଟିଆନ ମିସନାରୀଗଣ, ବିଶେଷତଃ ଆମେରିକାର ବାପଟିଷ୍ଟ ମିସନ, ମିଜୋ ଓ ନାଗା ବିଦ୍ରୋହୀମାନଙ୍କୁ ଭାରତ-ବିରୋଧୀ କରିବା ଦିଗରେ ଖୁବ୍ ଗୁପ୍ତରେ, ବେଳେ ବେଳେ ଖୋଲା ଖୋଲି ଭାବେ ଆର୍ଥିକ, ବୌଦ୍ଧିକ ଓ ନୈତିକ ସାହାଯ୍ୟ

ଦେଇ ଚାଲିଛନ୍ତି। ଏହି ବିଦ୍ରୋହୀମାନେ ପ୍ରାୟଶଃ ଖ୍ରୀଷ୍ଟିଆନ। ୧୯୫୦ରୁ ୫୪ ମଧ୍ୟରେ ରିଜର୍ଭ ବ୍ୟାଙ୍କର ପରିସଂଖ୍ୟାନ ତଥ୍ୟାନୁଯାୟୀ ବିଦେଶୀ ମିସନମାନଙ୍କଠାରୁ ପ୍ରାୟ ତିରିଶି କୋଟି ଟଙ୍କା ଗୃହୀତ ହୋଇଥିଲା। ସେଥିରୁ କୋଡ଼ିଏ କୋଟୀ ଟଙ୍କା ଆସିଥିଲା କେବଳ ଯୁକ୍ତରାଷ୍ଟ୍ର ଆମେରିକାରୁ। ଏହି ଚର୍ଚ୍ଚ ଅନୁଷ୍ଠାନଗୁଡ଼ିକ ଭିତରୁ ପୁଣି ଅଧିକାଂଶ କୁଆଡ଼େ ସି. ଆଇ.ଏ ଏବଂ ଭୂତପୂର୍ବ ସି.ଆଇ. ଏ.ର ଏଜେଣ୍ଟମାନଙ୍କ ସଙ୍ଗେ ଗୁପ୍ତ ସମ୍ପର୍କ ରଖି ଆସିଛନ୍ତି। ମଧ୍ୟପୂର୍ବ-ଭାରତର ଆଦିବାସୀମାନଙ୍କ ଭିତରେ ଖ୍ରୀଷ୍ଟଧର୍ମ ପ୍ରଚାର କରୁ କରୁ ଏହି ପ୍ରଚଣ୍ଡ ହିନ୍ଦୁ ବିରୋଧୀ ଓ ଭାରତ ବିରୋଧୀ ମିସ୍‌ନାରୀଗଣ ଭାରତ ବିରୋଧୀ ଭାବଧାରା ପ୍ରଚାର କରି ଚାଲିଛନ୍ତି। ଏପରିକି ଖ୍ରୀଷ୍ଟିଆନ ଓ ଅଣଖ୍ରୀଷ୍ଟିଆନ ଆଦିବାସୀଙ୍କ ଭିତରେ ବି ବିଭେଦ ସୃଷ୍ଟି କରି ଚାଲିଛନ୍ତି। ଝାଡ଼ଖଣ୍ଡ ଆନ୍ଦୋଳନକାରୀଙ୍କ ଭିତରୁ ପ୍ରାୟ ଶତକଡ଼ା ଅଠାନବେ ଜଣ ଖ୍ରୀଷ୍ଟିଆନ ଏବଂ ଜଣାପଡ଼ିଛି ଯେ, ଲୁଥେରୀୟ ମିସ୍‌ନାରୀମାନେ ଏଥିଲାଗି ଅର୍ଥ, ବୁଦ୍ଧି, ତତ୍ପରତା ଓ ପ୍ରରୋଚନା ଯୋଗାଇ ଚାଲିଛନ୍ତି।

ଏଇସବୁ କଥା ଜଣାପଡ଼ିଲା ପରେ ଖ୍ରୀଷ୍ଟିଆନ୍ ମିସ୍‌ନାରୀଙ୍କ ପ୍ରତି ଅନ୍ୟମାନଙ୍କ ମନରେ ନିଶ୍ଚିତ ଭାବେ ସନ୍ଦେହ ଓ ଶଙ୍କା ଜାଗ୍ରତ ହେବା ସ୍ୱାଭାବିକ ନୁହେଁ କି ?

❋❋

# ଦୁର୍ନୀତି—ସୌଭାଗ୍ୟ

ଜୀବନଯାକ ଘୋର ଦୁର୍ନୀତି କରି କିଛିତ ପରିଣତ ବୟସରେ ଦୁର୍ନୀତିଗ୍ରସ୍ତ ଲୋକଟିଏ ପାଗଳ ହୋଇଯିବାର କେତୋଟି ଉଦାହରଣ ଆମକୁ ଜଣାଅଛି ଏବଂ ଏହା ମଧ୍ୟ ଜଣାଅଛି ଯେ ସାରା ଜୀବନ ଭୟଙ୍କର ପାପ କାର୍ଯ୍ୟମାନଙ୍କରେ ଲିପ୍ତ ରହି ଶେଷ ଜୀବନରେ ସେହି ପାପୀ-ଶିରୋମଣୀ ହଠାତ୍ ଭକ୍ତଶିରୋମଣି ପାଲଟି ଯାଇଛନ୍ତି। ରାମ ବା କୃଷ୍ଣଙ୍କ ପ୍ରେମରେ ପାଗଳ ହୋଇଯାଇଛନ୍ତି।

କିନ୍ତୁ ଜୀବନଯାକ ଦୁର୍ନୀତିଟିଏ ବା ପାପ କାମଟିଏ ନ କରି ପାରିବା ହେତୁ, ସେହି ବିଫଳତାରେ ପାଗଳ ହୋଇଯାଇଥିବା ବା ପାଗଳ ହେବାକୁ ଉପକ୍ରମ କରୁଥିବା ମଣିଷଟିଏ ମୁଁ ସେହିଦିନ ହିଁ ଦେଖିଲି।

ଆମ୍ଭେମାନେ ଯେଉଁ ବସ୍‌ରେ ଆସିଥିଲୁ, ସେ ବସ୍‌ଟି ରାସ୍ତାରେ ଗୋଟିଏ ବଜାର ପାଖେ ଅଟକିଲା ମାତ୍ରେ ଦରିଦ୍ର ଓ ଶୀର୍ଣ୍ଣ ବୁଢ଼ାଟିଏ ତାର ମଇଳା ଓ ଗଣ୍ଠିଆ ପୁଡ଼ିଆଟିଏ ସହିତ ସେଠି ଓହ୍ଲାଇଗଲା ଏବଂ ତା ପଛେ ପଛେ ବାରମ୍ବାର ଜନ୍ମ କରି କରି ରୁଗ୍ଣ ରକ୍ତହୀନ ଓ କ୍ଳାନ୍ତ ହୋଇ ପଡ଼ିଥିବା ସ୍ତ୍ରୀ ଲୋକଟିଏ ତାର ଗୋଟିଏ କ୍ଷୀରଲଗା ଛୁଆକୁ ଛାତିରେ ଜାକି ଓ ଆଉ ଗୋଟିଏ ଛୁଆର ହାତ ଧରି ଓହ୍ଲାଇବାକୁ ଉଠିଲା ଏବଂ ତା ପଛରେ ''ଚାଲ ଚାଲ ଚଞ୍ଚଳ ଚାଲ'' ବୋଲି ଅଡ଼େଇ ନେଉଥିବା ଏବଂ ଆଉ ଦୁଇଟି ରୋଗୀଣା ଛୁଆଙ୍କ ଭିତରୁ ଜଣକୁ କାଖ କରି ଓ ଆର ଜଣକର ହାତଧରି ତାର ସ୍ୱାମୀ ବୋଲି ମନେ ହେଉଥିବା ଲୋକଟି ମଧ୍ୟ ଗଣ୍ଠିଆ ଗଣ୍ଡିଲିଟିଏ କାନ୍ଧରେ ଓହଳାଇ ବସ୍ ଭିତରୁ ଓହ୍ଲାଇଗଲା ଏବଂ ସେମାନଙ୍କ ସହିତ ତିନି ଚାରିଜଣ କଲେଜ ଛାତ୍ରଛାତ୍ରୀ ମଧ୍ୟ ସ୍ଥାନୀୟ ମହାବିଦ୍ୟାଳୟକୁ ଜ୍ଞାନାର୍ଜନ ଉଦ୍ଦେଶ୍ୟରେ ଓହ୍ଲାଇଗଲେ। ସମସ୍ତଙ୍କ ପଛରେ କୁତ୍ସିତଦର୍ଶନ କାଙ୍ଗାଳିଆ ଲକ୍ଷ୍ମୀଛଡ଼ା ବାବାଜୀଟିଏ ଓହ୍ଲାଇ ଯିବା ପରେ ବାହାରେ ଅପେକ୍ଷମାଣ ଯାତ୍ରୀମାନେ ବସ୍ ଭିତରକୁ ପଶିବା ଆରମ୍ଭ କଲେ।

ଏହି ଅବସରରେ ବଜାର ଭିତରୁ ଖୁବ୍ ଉଚ୍ଚସ୍ୱରରେ କାହାକୁ ନିରବଚ୍ଛିନ୍ନ ଭାବେ ଗାଳି ଦେଇ ଦେଇ ସେହି କିଛିତ ଶୀର୍ଣ୍ଣକାୟ ଲୋକଟି ବସ୍ ଭିତରକୁ ଖଣ୍ଡିଏ ବିଡ଼ି ଶୋଷି ଶୋଷି ଉଠି ଆସିଲା—ଲୋକଟି ତେଙ୍ଗାଳିଆ ମନେ ହେଉଥିଲେ ବି, ପ୍ରକୃତରେ ଗେଡ଼ା ଥିଲା। ତା ଦୁର୍ଭାଗ୍ୟକୁ ବସ୍ ଭିତରେ ଖାଲି ହୋଇଥିବା

ସିଟ୍‌ଗୁଡ଼ିକୁ ଅନ୍ୟମାନେ ଅଧିକାର କରି ନେଇଥିଲେ। ତେଣୁ ସେ ତା ପାଇଁ ସିଟ୍‌ଟିଏ ନ ପାଇ ଖୁବ୍ ରାଗିଗଲା ଓ କଣ୍ଡକ୍ଟର ଡ୍ରାଇଭରଙ୍କୁ ଯା' ଛା'ତାଇ ଗାଳିଦେଲା। ସେ କହିଲା ଯେ, ଏ ରାଜ୍ୟରେ ସବୁ କଣ୍ଡକ୍ଟର ଓ ଡ୍ରାଇଭର ଚୋର। ଟିକେଟ୍ ନ ଦେଇ ଯାତ୍ରୀଙ୍କଠାରୁ ପଇସା ନେଇ ପେଟ୍ରୋଲ ଚୋରାରେ ବିକି ଗାଡ଼ିର ପାର୍ଟସ ବଦଳାଇ ପ୍ରଚୁର ଟଙ୍କା କମାଉଛନ୍ତି ଓ ରାଜଧାନୀରେ ମସ୍ତ ମସ୍ତ କୋଠା ବନାଇ ଭଡ଼ାରେ ଲଗାଇଛନ୍ତି। ସେଇଠୁ ସେ ସରକାରଙ୍କୁ ଶୋଧିଲା ଏବଂ ତାଙ୍କ ଆଡ଼ର ଏମ.ଏ. ଇ.ଙ୍କ ବିରୋଧରେ କାମିନୀ-କାଞ୍ଚନ ପ୍ରୀତି ଜନିତ ନାନାଦି ଅପକର୍ମର ଲମ୍ବା ତାଲିକାଟିଏ ବୟାନ କଲା। ସେଇଠୁ ସେ ବହୁ ଏମ.ଏଲ.ଏ ଏବଂ ମନ୍ତ୍ରୀମାନଙ୍କର ନାନାଦି କୁକର୍ମର ଚାକ୍ଷୁଷ ପ୍ରମାଣ ପାଇଥିଲା ଭଳି କଥାମାନ ଗପି ଚାଲିଲା। ସେଇଠୁ ସେ ପୋଲିସମାନଙ୍କୁ ଆକ୍ରମଣ କଲା। କେତେଜଣ ସାନ ବଡ଼ ପୋଲିସ୍ ଅଫିସରଙ୍କ ନାମ ଧରି ସେମାନଙ୍କ ବିରୋଧରେ ବହୁ ଚାଞ୍ଚଲ୍ୟକର ଅପକର୍ମର ବିବରଣୀ ଦେଇ ଚାଲିଲା।

ତା'ପରେ ସେ ଆଉ କାହାକୁ ଛାଡ଼ିଲା ନାହିଁ। ଶିକ୍ଷକ, ଅଧ୍ୟାପକ, ଡାକ୍ତର, ଓକିଲ, ଇଞ୍ଜିନିୟର, ବ୍ୟବସାୟୀ ଏପରିକି ବିଚରା ପୋଷ୍ଟମ୍ୟାନ୍- କେହି ତାହାର ନିନ୍ଦାବାଣରୁ ବର୍ତ୍ତିଲେ ନାହିଁ। କ୍ଷମତାସୀନ ଓ ବିରୋଧୀ ଦଳର କୌଣସି ରାଜନୀତିକ ନେତାଙ୍କୁ ସେ ଛାଡ଼ିଲା ନାହିଁ। ସମସ୍ତଙ୍କ ବିରୁଦ୍ଧରେ ସେ ବହୁ ଦୁର୍ନୀତି ଓ ଅପକର୍ମର ଲମ୍ବା ଲିଷ୍ଟ ଗାଇଗଲା। ଶେଷରେ ସେ କେତେକ ବିଖ୍ୟାତ ସାଧୁ, ସନ୍ଥ, ଯୋଗୀ ସନ୍ୟାସୀଙ୍କ ବିରୋଧରେ ମଧ୍ୟ ଅନେକ କୁତ୍ସାବାଦ କରି ବସିଲା। ତା'ପରେ ସେ କେତେକ ବିଶିଷ୍ଟ ମହିଳାଙ୍କ ନାମ ଧରି ସେମାନଙ୍କୁ ସଂପୂର୍ଣ୍ଣ ଚରିତ୍ରହୀନା ବୋଲି ତା'ବାଗରେ ପ୍ରମାଣ କଲା ଏବଂ ଆଶ୍ଚର୍ଯ୍ୟ କଥା ହେଲା—ସେ ଦୀର୍ଘ ଦେଢ଼ଘଣ୍ଟା କାଳ ବସ୍ ଭିତରେ ଏକାଭାବେ ଚିତ୍କାର କରି ଅନର୍ଗଳ ସମସ୍ତଙ୍କ ପାପାଚାର କଥା ଗାଇ ଚାଲିଲା।

ପ୍ରଥମରୁ ଲୋକେ ତା'କଥା ଶୁଣିବାକୁ ଆମୋଦ ପାଉଥିଲେ। ତା'ପରେ ତା' କଥା ଖୁବ୍ ବିରକ୍ତିକର ବୋଧ ହେଲା। କେତେକ ଖୁବ୍ କ୍ଳାନ୍ତି ଅନୁଭବ କଲେ। ପରିବେଶ ମଧ୍ୟ ଦୁଃସହ ହେଲା ଏବଂ ଶେଷ ଆଡ଼ୁ ଆଉ କେହି ତା' କଥାକୁ କାନ ନ ଦେଇ ନିଜ ନିଜ ଭିତରେ ଗପସପ କଲେ, କେତେକ ଚୁପ୍‌ଚାପ୍ ବସିଲେ ଓ ଅନ୍ୟମାନେ ଘୁମାଇ ପଡ଼ିଲେ।

କିନ୍ତୁ ଲୋକଟିର ପାଟି ଆଉ ବନ୍ଦ ହେଉ ନଥାଏ। କାରଣ ତା'ପାଖରେ ବସିଥିବା କେତେକ କୁତ୍ସାମୋଦୀ ଯାତ୍ରୀ ତାକୁ ମଝିରେ ମଝିରେ ଚିହାଉ ଥାଆନ୍ତି ଏବଂ ତା କଥାକୁ ଗୁରୁତ୍ୱ ଦେଲାଭଳି ତାକୁ ମଧ୍ୟ ଟିକେ ଜେରାକରି ଦେଉଥାନ୍ତି।

ଫଳରେ ସେ ଖୁବ୍ ଉତ୍ତେଜିତ ହୋଇ ଉଠୁଥାଏ ଏବଂ ଖୁବ୍ ଉତ୍ସାହର ସହିତ ଅବିଶ୍ରାନ୍ତ ଅନ୍ୟମାନଙ୍କୁ ଦୁର୍ନୀତିଜନିତ ସଫଳତାର ବିବରଣୀ ଗାଇ ଚାଲିଥାଏ।

ଏହି ସମୟରେ ମୋ ପାଖରେ ବସିଥିବା ଜଣେ ପ୍ରୌଢ଼ ଭଦ୍ରଲୋକ କଣ ଭାବି କେଜାଣି ତାକୁ ପଚାରିଦେଲେ—ହଇଓ ବାବୁ! ଏ ଦୁନିଆଁରେ ସମସ୍ତେ ଦୁର୍ନୀତିଗ୍ରସ୍ତ ଆଉ ପାପୀ। ଆଉ ତୁମେ କଣ ତା' ହେଲେ ଏକା ସାଧୁ? ତୁମେ କିଛି ହେଲେ କିଛି ପାପ କାମ କରିନାହଁ?

ଲୋକଟି ସମାନ ଉତ୍ସାହ ଆଉ ଉଦ୍ଦୀପନାରେ ଉତ୍ତର ଦେଲା—

ଆରେ ବାବୁ! ଆମେ ଯଦି ସେବାଟେ ଯାଇଥାନ୍ତୁ ତେବେ ତୁମେ ଆମକୁ ଆଜି ଏଇ ଅବସ୍ଥାରେ ଦେଖୁଥାନ୍ତ? ଆମେ କ'ଣ ସେ ବାଟେ ଯାଇପାରିବୁ? ଆମର ସେଥିପାଇଁ ବୁଦ୍ଧି ଅଛି ନା ବଳ ଅଛି? ଭଗବାନ ତ'ଆମକୁ ସେ ବାଟ ଦେଖାଇଲେ ନାହିଁ। କି ଆମେ ବି ଶଃ...ଏତେ ହତଭାଗା ଯେ ଆମ ବାଟ ମଝିରେ ସୁନାମୁଣ୍ଡା ପଡ଼ିଛି—ଆମେ ଶଃ...ସେ ବାଟେ ଆଖିବୁଜି ବାଟ ଚାଲିଛୁ। ଆମ ଚାରିପଟେ ଟଙ୍କା ଖାଲି ଉଡ଼ୁଛି। ଆମେ ଧରି ପାରୁଛୁ କୋଉଠି? ଆମକୁ ଯଦି ଶଃ...ସେ ଯୋଗଥାନ୍ତା—ବିଶ୍ୱାସ କର ବାବୁ, ଏଇ ଯୋଉ ସିମେଣ୍ଟ ହେରଫେର୍ କାଣ୍ଡ ହେଲା—ଖବର କାଗଜରେ ପଢ଼ିଥିବ—ମୁଁ ଯଦି ପାରିଥାନ୍ତି ତେବେ ଟଙ୍କା ଷାଠିଏ ହଜାର ପାକିଟିରେ ପୂରାଇ ଚୁପ୍ ଚାପ୍ ବସି ଯାଇଥାନ୍ତି। କୋଉ ଶଃ...ମତେ ଧରି ପାରିଥାନ୍ତା? ହେଲେ, ଆମ ଭାଗ୍ୟରେ ନାହିଁ। ସେଇ କେସ୍‌ରେ କୁନା ସାନ୍ତାରା ଟଙ୍କା ଷାଠିଏ ହଜାର ମାରି ନେଇ ନାହିଁ? ହେଲେ, ତାକୁ କିଏ ଧରି ପାରିଲାନି? ନା'ସେ କୋଉ ଧରାଦେବ? ଯେଉଁମାନେ ଧରିବେ, ସେମାନେ ପରା ତାଙ୍କ ସଙ୍ଗେ ସଲାସୁତରା। ଫେର ସେ କିଏ ଜାଣିଛଟି? ଅମୁକ ମନ୍ତ୍ରୀ ପରା ତା'ର ଧର୍ମ ଭିଣୋଇ? ବୁଝିଲ ବାବୁ! ଆମେ କୋଉଠି ସେଠି ପଶି ପାରିବୁ? ଆମ ଭାଗ୍ୟ ଛୋଟ..

ତାର କଥା ବାର୍ତ୍ତାରୁ ଯାହା ଜଣାଗଲା—ବିଚରା ଲୋକଟାର ପାପ ଓ ଦୁର୍ନୀତି କରି ବଡ଼ଲୋକ ହେବାକୁ ପ୍ରବଳ ଇଚ୍ଛା। ମାତ୍ର ସେଥିଲାଗି ତା'ର ଶକ୍ତି ଓ ସାମର୍ଥ୍ୟ ଯୋଗାଇଲା ନାହିଁ ବୋଲି, ସେ ଭିତରେ ଭିତରେ ଖୁବ୍ ଦହଗ ବିକଳ ଓ ରଡ଼େଇ ଖଡ଼େଇ ହେଉଛି—ଏବଂ ସେଇ ଗ୍ଲାନିରେ ସେ ପ୍ରାୟ ପାଗଳ ହେବା ଅବସ୍ଥାକୁ ଆସିଗଲାଣି।

କିନ୍ତୁ ସେଇ ହତଭାଗା ଲୋକଟି କେବଳ ଗୋଟିଏ ନିଦର୍ଶନ ମାତ୍ର। ଏଇ ଲୋକଟିକୁ ଆମେ ବର୍ତ୍ତମାନ ଆମ ଦେଶର ଅଧିକାଂଶ ବିକଳ ମନସ୍ତତ୍ତ୍ୱଗ୍ରସ୍ତ ଲୋକଙ୍କର ପ୍ରତିନିଧି ବୋଲି କହି ଦେଇ ପାରିବା। ବର୍ତ୍ତମାନ ଆପଣ ସର୍ବତ୍ର ସର୍ବକ୍ଷଣ ଲୋକମାନେ ଦୁର୍ନୀତି, ଦୁର୍ନୀତି ବୋଲି ପାଟି କରୁଥିବାର ଶୁଣିବାକୁ ପାଇବେ। ଅସଲରେ କିନ୍ତୁ

ସେମାନେ ଦୁର୍ନୀତି ବିରୋଧରେ ନାହାନ୍ତି। ପ୍ରକୃତ କଥା ହେଲା—ସେମାନଙ୍କର ମଧ୍ୟ ଅନ୍ତରରେ ପ୍ରଚଣ୍ଡ ଆକାଙ୍କ୍ଷା ଯେ, କିପରି ଦୁର୍ନୀତି କରି ଅଳ୍ପ ସମୟ ଭିତରେ ବଡ଼ ଲୋକଟିଏ ହୋଇ ଯିବାକୁ; ମାତ୍ର ତାହା ନ କରି ପାରିବାରୁ ଘୋର ଆକ୍ରୋଶରେ ସେମାନେ ଦିନରାତି ଯନ୍ତ୍ରତନ୍ତ୍ର କେବଳ ଦୁର୍ନୀତି ଓ ସେଥିରେ ସଫଳତା ଅର୍ଜନ କରିଥିବା ଛୋଟ ବଡ଼ ଲୋକଙ୍କ ବିରୋଧରେ ଘୋର ଗର୍ଜନଶୀଳ; କୁତ୍ସାବାଦ କରି ଆପଣାର ଓରମାନ ମେଣ୍ଟେଇ ଚାଲିଛନ୍ତି। ସତକୁ ସତ ଯଦି ଅଧିକାଂଶ ଲୋକ ଦୁର୍ନୀତିକୁ ଘୃଣା କରୁଥାନ୍ତେ, ତେବେ ଏ ଦେଶରେ ଦୁର୍ନୀତି ଆଉ ଏହି ପରିମାଣରେ ରହିପାରନ୍ତା ନାହିଁ।

ବେଳ ବେଳେ ମନେହୁଏ-ସାରାଦେଶରେ ଅଧିକାଂଶ ସାନବଡ଼ ଲୋକ, ସାନ ବଡ଼ ଦୁର୍ନୀତିରେ ଲିପ୍ତ ରହି ଆନନ୍ଦରେ ଅଛନ୍ତି ଏବଂ ଆଉ କେତେକ ଦୁର୍ନୀତି କରିବାରେ ଅସମର୍ଥ ହୋଇ ଘୋର ଗ୍ଲାନି ଓ କ୍ଷୋଭରେ ଜର୍ଜରିତ ହେଉ ହେଉ ପାଗଳ ପ୍ରାୟେ ହେଲେଣି। ଏ ଦେଶରେ, ଏ ଯୁଗରେ ଦୁର୍ନୀତି କରିବାକୁ ସୁଯୋଗ ପାଇବାଟାକୁ ସୌଭାଗ୍ୟ ଏବଂ ସୁଯୋଗ ନ ପାଇବାଟାକୁ ଦୁର୍ଭାଗ୍ୟ ବୋଲି ମନେ କରାଯାଉଛି।

ତା'ହେଲେ—ଏଣିକି ପତ୍ର—ପତ୍ରିକାମାନଙ୍କରେ ରାଶିଫଳ ବିଭାଗରେ ପରିଷ୍କାର ଜଣାଇ ଦିଆଯାଉ—ଏମାସରେ ଆପଣ ଦୁର୍ନୀତି କରିବାର ସୌଭାଗ୍ୟ ସୁଯୋଗ ଅର୍ଜନ କରିବେ ନା ନ କରିବେ!!



# ଲକ୍ଷ୍ମୀଛଡ଼ା ଅର୍ଥନୀତି

ମଣିଷ ଜୀବନର ସାର୍ଥକତା କାହା ଉପରେ ନିର୍ଭର କରେ ? ଧର୍ମ ଉପରେ ନା ଅର୍ଥ ଉପରେ, ନା କାମ ଉପରେ ନା ମୋକ୍ଷ ଉପରେ— ? ଅଥବା ଏକାଠି ଏଇ ଚାରୋଟି ଯାକ ଉପରେ ?

ମାତ୍ର ଆମ ସମାଜର ବର୍ତ୍ତମାନ କାଳର ଜୀବନଚର୍ଯ୍ୟାକୁ ଦେଖିଲେ ମନେହୁଏ—ଏବେ ସମସ୍ତେ ଅର୍ଥବୃଦ୍ଧି ଜୀବନର ପରମଲକ୍ଷ୍ୟ ଏବଂ ଏକମାତ୍ର ଅର୍ଜନୀୟ ବିଷୟ ବୋଲି ଦୃଢ଼ଭାବରେ ଧରିନେଲେଣି । ଯେ କୌଣସି ଉପାୟରେ ଯେତେ ବିପୁଳ ପରିମାଣରେ ଅର୍ଥ ଉପାର୍ଜନ କରାଯାଇପାରେ—ତାହା କରିପାରିଲେ ଯାଇ ମଣିଷ ଭାବିବ ଯେ ତା' ଜୀବନ ସାର୍ଥକ ହେଲା ।

ଅର୍ଥ ହିଁ ଜୀବନର ଏକମାତ୍ର ପରମାର୍ଥ ବୋଲି ସ୍ଥିର ହୋଇଗଲା ପରେ—ତେଣିକି ଜୀବନର ସବୁ କଥାକୁ ସେହି ଆର୍ଥିକ ଦୃଷ୍ଟିରୁ ହିଁ ବିଚାର ଓ ତଉଲ କରିବାକୁ ହୁଏ । ସେହି ଆର୍ଥିକ ମାନଦଣ୍ଡରେ ସ୍ତ୍ରୀ, ପୁତ୍ର, କନ୍ୟା, ପିତା, ମାତା ବେଷ୍ଟିତ ସଂସାରଠାରୁ ଆରମ୍ଭ କରି ଦିଅଁ ଦେବତାଙ୍କ ପର୍ଯ୍ୟନ୍ତ ସବୁ କଥାକୁ ଓଜନ କରିବାକୁ ହୁଏ ଓ ବ୍ୟବହାର ମଧ୍ୟ କରିବାକୁ ହୁଏ । ଏହିପରିଭାବେ କ୍ରମଶଃ ସମାଜର ସଂସ୍କୃତିଟି ମଧ୍ୟ ଅର୍ଥନୈତିକ ଆଦର୍ଶ ଆଭିମୁଖ୍ୟର ଘେର ଭିତରେ ପଡ଼ିଯାଏ ।

ଏହି ଅର୍ଥନୀତିଭିତ୍ତିକ ଲାଭ-ଧର୍ମୀ ସମାଜରେ ସ୍ଥାନ କାଳ ପାତ୍ର ମଧ୍ୟ ସେହି ଆର୍ଥିକ ପରିମାପରେ ମପା ହେଉଥାଏ । ଏଠାରୁ କେନ୍ଦ୍ରାପଡ଼ା କେତେ ବାଟ ? ଏଇ ପ୍ରଶ୍ନର ଉତ୍ତର ହେଲା—ଦଶଟଙ୍କାର ବାଟ । ଅର୍ଥାତ୍ ବସ୍‌ରେ ଗଲେ ଦଶଟଙ୍କା ପଡ଼ିବ । ସେହି ଔଷଧଟିଏ ଖାଇଲା ପରେ ଆପଣଙ୍କ ସ୍ୱାସ୍ଥ୍ୟ କେମିତି ଅଛି ? ଏହାର ଉତ୍ତର ହେଲା—ମୁଁ ବର୍ତ୍ତମାନ ବାରେଣା (ଆଜିକାଲି ମୁଦ୍ରାରେ ପଚସ୍ତରୀ ପଇସା) ସୁସ୍ଥ ଅନୁଭବ କଲିଣି । "ଅମୁକ ଘଟଣାରେ ଅମୁକ ବାବୁଙ୍କ ଦାୟିତ୍ୱ କେତେ ? ପ୍ରଶ୍ନର ଉତ୍ତର ହେଲା—ସମୁକ ବାବୁଙ୍କର ସେଥିରେ ଟଙ୍କାଟା ଯାକର ଦାୟିତ୍ୱ । ଅର୍ଥାତ୍ ପୂରା ଦାୟିତ୍ୱ । "ଲକ୍ଷେ ଟଙ୍କାର ବର" ମାନେ ହେଲା—ବର୍ତ୍ତମାନର ବର ବଜାରରେ ଏ ପୁଅଟିର ଯୌତୁକ ଦାମ ହେଲା—ଲକ୍ଷେଟଙ୍କା । "ଦେଢ଼ଲକ୍ଷ ଟଙ୍କାର ବୋହୂ" ମାନେ ହେଲା—ଏ ବୋହୂଟି ଦେଢ଼ଲକ୍ଷ ଟଙ୍କାର ଧନ ତା' ବାପ ଘରୁ ଶଶୁର ଘରକୁ ଆଣିଛି ।

ଆର୍ଥନୀତିକ ସାମାଜିକି ସଂସ୍କୃତିରେ ଯେମିତି ସବୁ ପ୍ରକାର ମୂଲ୍ୟ ମଧ୍ୟ ଟଙ୍କାରେ ହିଁ ଗଣାଯାଏ। ଯୋଉ ଡାକ୍ତର ବେଶୀ ଟଙ୍କା ଫିସ୍ ନିଏ–ସେଇ କେବଳ ଯମ ମୁହଁରୁ ରୋଗୀକୁ ଟାଣି ଆଣି ପାରିବ। ଯୋଉ ଶାଢ଼ୀର ଦାମ୍ ଯେତେ ଟଙ୍କା, ସେ ଶାଢ଼ୀଟି ପିନ୍ଧିଲେ ଯାଇ ତୁମର ସୌନ୍ଦର୍ଯ୍ୟ ଓ ବ୍ୟକ୍ତିତ୍ୱ ପରିସ୍ଫୁଟ ହୋଇପାରିବ। ଯୋଉ ପୁଅ ବେଶୀ ରୋଜଗାର କରୁଛି ସେଇ ଏକା ହେଲା–ସୁଯୋଗ୍ୟତମ ପୁତ୍ର। ଯୋଉ ଲେଖକ ତା' ବହି ବିକ୍ରିରୁ ଯେତେ ବେଶୀ ଟଙ୍କା ରଏଲିଟ ପାଉଛି, ସେଇ ହେଉଛି ସେଇ ଅନୁପାତରେ ପ୍ରତିଭାବାନ ଲେଖକ। ଯୋଉ ଓକିଲ ଯେତେ ଅଧିକ ଫିସ୍ ହାଙ୍କେ, ସେଇ ହେଉଛି ସବୁଠାରୁ କରିତ୍‌କର୍ମା ଆଇନଜ୍ଞ, ଯେକି କଳାକୁ ଧଳା ଓ ଧଳାକୁ କଳା କରି ଖୁଣୀ ଆସାମୀକୁ ଫାଶି ଖୁଣ୍ଟରୁ ଓହ୍ଲାଇ ଆଣିପାରେ। ଏହି ପ୍ରକାର ବିଚାରରେ ଯୋଉ ଲୋକର ଟଙ୍କା ବେଶୀ, ସେଇ କେବଳ ଆମ ଆଖିରେ ମହାଜନ ଏବଂ ଶେଷରେ ଯୋଉ ଲୋକ ଯେତେ ବେଶୀ ଟଙ୍କା ବୁଣି ପାରିବ, ସେଇ କେବଳ ଭୋଟଯୁଦ୍ଧରେ ଜନପ୍ରିୟ ନେତା ହୋଇ ଜିତି ପାରିବ। ସେଇ ଦଳ ଶାସନ କ୍ଷମତାକୁ ଦଖଲ କରି ପାରିବ, ଯୋଉ ଦଳର ନୈତିକ ବଳ ଅପେକ୍ଷା ଏହି ଆର୍ଥିକ ବଳହିଁ ଅଧିକ।

ବର୍ତ୍ତମାନ ଆମ ସମାଜରେ ଏହି ଅର୍ଥ ବା ଟଙ୍କା ହିଁ ସବୁଠାରୁ ବଡ଼ ପୁରୁଷାର୍ଥ ରୂପେ ପ୍ରତିଷ୍ଠା ପାଇ ସାରିଲାଣି। ଆମର ଅନେକଙ୍କ ଧାରଣା ଯେ, ଏହି ସବୁ ଟଙ୍କା ପଇସା ସୁନା, ରୂପା ଆଦି ଧନ ଦୌଲତର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ମହାଲକ୍ଷ୍ମୀ। ଯାହା ହାତରେ ଯେତେ ଅଧିକ ଟଙ୍କା, ସେ ନିଶ୍ଚୟ ମହାଲକ୍ଷ୍ମୀଙ୍କର ଅନୁଗ୍ରହ ପାଇଛି ଓ ମହଲକ୍ଷ୍ମୀ ତାର ବଶୀଭୂତା ହୋଇ ରହିଛନ୍ତି ବୋଲି ଆମର ବିଶ୍ୱାସ; ମାତ୍ର ପ୍ରକୃତରେ ସେ କଥା ଠିକ୍ ନୁହେଁ। ଧନ ସମ୍ପତ୍ତିର ଦେବତା ହେଉଛନ୍ତି କୁବେର। କୁବେର ଅବଶ୍ୟ ଜଣେ ପୂର୍ଣ୍ଣାଙ୍ଗ ଦେବତା ନୁହଁନ୍ତି–ସେ ଉପଦେବତା। କେତେକ ଗଣେଶ ଭଗବାନଙ୍କୁ ମଧ୍ୟ ଧନସମ୍ପତ୍ତିର ଦେବତା ବୋଲି ପୂଜା କରନ୍ତି।

କିନ୍ତୁ ଗଣେଶ ହେଲେ ପ୍ରକୃତରେ ଜ୍ଞାନ-ବିଜ୍ଞାନର ଦେବତା। ସେ ପୁଣି ମଧ୍ୟ ବାଧାବିଘ୍ନଗୁଡ଼ିକୁ ବିନାଶ କରିବାର ଦେବତା। ଧନକାମୀ ଲୋକେ, ବିଶେଷତଃ ବ୍ୟବସାୟୀମାନେ ଗଣେଶଙ୍କୁ ପୂଜା କରିବାର କାରଣ ହେଲା–ଧନାଗମ ବା ଧନାର୍ଜନ ପଥରେ ଯାବତୀୟ ବାଧାବିଘ୍ନକୁ ସେ ନିର୍ମୂଳ କରି ପାରିବେ।

ଅସଲରେ କୁବେର ହେଉଛନ୍ତି ଏହିସବୁ ପୁଞ୍ଜିଭୂତ ଅର୍ଥ-ସଂପଦର ଦେବତା। ଯେ କୌଣସି ଉପାୟରେ ଓ ଯେ କୌଣସି ପରିସ୍ଥିତିରେ ଧନ ସଂଗ୍ରହ ବା ଧନ ଅର୍ଜନ କରି କୁଢ଼ କରାଇବାରେ ଏହି କୁବେର ହିଁ କୃପା କରିଥାନ୍ତି। କୁବେର ହେଲେ ପୁଞ୍ଜିବାଦର ଈଶ୍ୱର। କୁବେରଙ୍କ ପ୍ରସାଦରୁ ଗୋଟେ ପଟେ ନବତଳ ପ୍ରାସାଦ ଗଢ଼ି ଉଠିଥିବା ବେଳେ ଅନ୍ୟପଟେ କୁଡ଼ିଆଘର ମାନ ମଧ୍ୟ ଭୁଷୁଡ଼ି ପଡ଼ିଥାଏ।

ଗୋଟିଏ ପଟେ ଘିଅ ମହୁର ସ୍ରୋତ ଛୁଟୁଥିଲା ବେଳେ, ଅନ୍ୟ ସ୍ଥାନରେ ତୃଷ୍ଣା ନିବାରଣ କରିବାକୁ ମଧ୍ୟ ପାଣି ମୁନ୍ଦାଏ ମିଳୁ ନ ଥାଏ। ଗୋଟେ ପଟେ ପଞ୍ଚତାରକା ହୋଟେଲମାନଙ୍କର ଜାଜ୍ୱଲ୍ୟମାନତା ଏବଂ ଠିକ୍ ତାର ପାଖେ ପାଖେ ଅଭିଶପ୍ତ ଜଘନ୍ୟ ବସ୍ତିଗୁଡ଼ିକର ସାଲୁ ବାଲୁ ବୀଭତ୍ସ ଅନ୍ଧାର।

ବର୍ତ୍ତମାନ ଚାଲିଛି କୁବେରୀୟ ସଭ୍ୟତା ଓ ସଂସ୍କୃତିର ଅଭିଯାନ। ଯଥେଚ୍ଛା ଉତ୍ପାଦନ ଓ ଯଥେଚ୍ଛା ଅପଚୟ ହେଲା ବର୍ତ୍ତମାନ କୁବେରୀୟ ଅର୍ଥନୀତିର ମୂଳକଥା। ଏହି ଅର୍ଥନୀତିର ଅର୍ଥ ହେଲା–ସବୁ ପ୍ରକାର ପ୍ରାଚୁର୍ଯ୍ୟ ଭିତରେ ଥାଇ ମଧ୍ୟ ଅଧିକ ଅର୍ଥ ପାଇଁ ଘୋର ପ୍ରତିଦ୍ୱନ୍ଦ୍ୱିତାର ଉତ୍ତେଜନା।

କୁବେରୀୟ ସଂସ୍କୃତି ମଧ୍ୟ ହେଲା ଭୋଗଧର୍ମୀ। ଉତ୍ତେଜନା ଓ ଉନ୍ମାଦନା ହେଲା ବଞ୍ଚିବାର ଉପଲବ୍ଧି। କୁବେରୀୟ ରାଜନୀତିରେ କ୍ଷମତା ସହିତ ଲୁଣ୍ଠିତ ଧନ ମିଶି କରି ରହିଥାଏ ଏବଂ ଶାସକବୃନ୍ଦ ଧନ ଓ କ୍ଷମତା ବଳରେ ଧର୍ମକୁ ମଧ୍ୟ ଆପଣା ଆୟତ୍ତରେ ବନ୍ଧନ କରି ରଖନ୍ତି। କୁବେର ହେଲେ ଅସୁରମାନଙ୍କର ଛାତି ଦେବତା।

ମହାଲକ୍ଷ୍ମୀ କିନ୍ତୁ ଏହସବୁ ପାପଧନର ଅଧିଷ୍ଠାତ୍ରୀ ଦେବୀ ନୁହନ୍ତି। ସେ ମଧ୍ୟ ପୁଞ୍ଜିବାଦର ଅଧୀଶ୍ୱରୀ ନୁହନ୍ତି। ମହାଲକ୍ଷ୍ମୀଙ୍କର ଗୁଣ ସବୁ ହେଲା–ସୌନ୍ଦର୍ଯ୍ୟ, ସଙ୍ଗତି, ସାମ୍ୟ, ସମତା, ପବିତ୍ରତା, ସରଳତା, ପରିଚ୍ଛନ୍ନତା, ସଂଯମ, ସଚଳତା, ସମପୂର୍ଣ୍ଣତା, ଆନ୍ତରିକତା, ଆତ୍ମିକତା, ବିନମ୍ରତା, ସ୍ନେହ, ପ୍ରେମ ଓ ଦୟା ଓ କଲ୍ୟାଣମୟତା ଇତ୍ୟାଦି।

ବର୍ତ୍ତମାନ ଆମ ସାମାଜିକ ଜୀବନରୁ ଲକ୍ଷ୍ମୀ ଅନ୍ତର୍ହିତ ହୋଇଗଲେଣି। ଗଣେଶ ମଧ୍ୟ ଅନ୍ତର୍ଦ୍ଧାନ ହୋଇଗଲେଣି। ଏହି ଅଶେଷ ବିଘ୍ନସଂକୁଳ, ସଂକଟ ପରିପୂର୍ଣ୍ଣ, ଘୋର ଅଜ୍ଞାତ, ଅଚେତନ, ବିମୋହିତ, ନୀତିହୀନ ବିଷମ ଅନାତ୍ମ ଅର୍ଥନୀତି ଆଜି ମନୁଷ୍ୟକୁ ଅସୁର, ରାକ୍ଷସ ପିଶାଚରେ ପରିଣତ କରିବା ଦିଗରେ ଚାଲିଛି। କିଏ ତାର ଏହି ଦୁର୍ବାର ଗତିକୁ ରୋଧ କରିବ ?

❋❋

# ଏ ଅଭିଶାପ କାହା ଉପରେ ?

ବୁର୍ଲା ସହର ଏମିତି କେତେ ବଡ଼ ସହରକି ? କଲିକତା ନା, ବମ୍ବେ ? ଦିଲ୍ଲୀ ନା କଟକ ? ସାତ ଆଠ ହଜାରର ଲୋକସଂଖ୍ୟାର ଅତି ସାମାନ୍ୟ ସହରଟିଏ । ସେଠି ମେଡ଼ିକାଲ କଲେଜଟିଏ—ଇଞ୍ଜିନିୟରିଂ କଲେଜଟିଏ । ପାନ ଦୋକାନକୁ ମିଶାଇ କୋଡ଼ିଏ ପଚିଶଟି ଦୋକାନ—ଭଲ ଥାନାଟିଏ ବି ଅଛି । ସମ୍ବଲପୁର ସଦର ମହକୁମା ବେଶୀ ଦୂର ନୁହେଁ । ଗହଳି, ଚହଳି ଆଦୌ ନାହିଁ । ବ୍ୟବସାୟ ବାଣିଜ୍ୟର ସୁଯୋଗ ନଥିବାରୁ, କୋର୍ଟ କଚେରୀ ନ ଥିବାରୁ, ଶିଳ୍ପ କାରଖାନା ନ ଥିବାରୁ, ଐତିହାସିକ ଗୁରୁତ୍ୱ ନ ଥିବାରୁ ବାରଆଡ଼ୁ ବାର ପ୍ରକାର ଲୋକଙ୍କର ଗତାଗତ ନ ଥିବାରୁ ସହରଟି ଲାଗେ ଖୁବ୍ ସରଳ ଓ ନିଛାଟିଆ । ମଧ୍ୟେ ମଧ୍ୟେ ମେଡ଼ିକାଲ କଲେଜ ବା ଇଞ୍ଜିନିୟରିଂ କଲେଜ ପିଲାମାନେ ସାମାନ୍ୟ କଥାରେ ଖୁଡ଼୍‌ଖାଡ଼୍ ହୁଅନ୍ତି । ବେଳେବେଳେ ସାମାନ୍ୟ କଥାରେ ଦୁଇ କଲେଜ ପିଲାଙ୍କ ଭିତରେ ମାଡ଼ପିଟ୍ ବି ହୋଇଯାଏ । କିନ୍ତୁ ଏତିକି ଛଡ଼ା ଆଉ ବିଶେଷ କିଛି ମାରାତ୍ମକ ଘଟିବାର ସେଠି ଚାନ୍‌ସ ନାହିଁ ।

କିନ୍ତୁ ଏହି ମର୍ମନ୍ତୁଦ ଦୁର୍ଘଟଣା ଘଟିଗଲା ? ନଅଟି ନିରୀହ ଛାତ୍ର ଏପରି ଶୋଚନୀୟ ଭାବେ ପ୍ରାଣ ହରାଇଲେ କିପରି ? କିଏ ସବୁ ସେମାନଙ୍କୁ ଏମିତି ମୂଷା ଓ ଚୂଚୁନ୍ଦ୍ରାଙ୍କ ପରି ମାରିବାର କାରଣ ହେଲା ? କାହିଁକି ହେଲେ ? କୋଉସବୁ ବ୍ୟବସାୟୀଙ୍କ ସହିତ ସେ କଲେଜର କୋଉ କୋଉ ପିଲାଙ୍କର କଳିକଜିଆ ହୋଇଥିଲା ? କାହିଁକି ହୋଇଥିଲା ? କେତେ ଦିନ ଧରି ଏ ସଂଘର୍ଷ ଚାଲିଥିଲା ? ବୁର୍ଲା ଇଞ୍ଜିନିଅରିଂ କଲେଜରେ ଅଧ୍ୟାପକମାନେ ଅଛନ୍ତି ନା ନାହାନ୍ତି ? ଅଧ୍ୟକ୍ଷ ଅଛନ୍ତି ନା ନାହାନ୍ତି ? ଛାତ୍ରାବାସରେ ସୁପରିନ୍‌ଟେଣ୍ଡେଟ୍ ଅଛନ୍ତି ନା ନାହାନ୍ତି ? ଯଦି ଏମାନେ ସବୁ ଅଛନ୍ତି—ସେମାନେ କଣ କରନ୍ତି ? କଣ କରୁଥିଲେ ଆଜି ପର୍ଯ୍ୟନ୍ତ ? ସେମାନଙ୍କର ପିଲାଙ୍କ ସମସ୍ୟା ସହିତ କିଛି ସମ୍ପର୍କ ଅଛି ନା ନାହିଁ ? ଦାୟିତ୍ୱ ଅଛି କି ନାହିଁ ?

ବୁର୍ଲାରେ ଥାନା ଅଫିସରମାନେ କଣ କରୁଥିଲେ ? ପ୍ରଶାସନିକ ଅଫିସରମାନେ କଣ କରୁଥିଲେ ? ବୁର୍ଲାରେ ସବୁ ଦଳରେ ରାଜନୈତିକ ପ୍ରତିନିଧିମାନେ ଅଛନ୍ତି କି ନାହାନ୍ତି ? ସାମ୍ବାଦିକମାନେ ଅଛନ୍ତି କି ନାହାନ୍ତି ? ସେମାନେ ବହୁଦିନ ଧରି ଲାଗି ରହିଥିବା ଛାତ୍ର ଓ ବ୍ୟବସାୟୀଙ୍କ କଳି ଓ ଭୁଲ୍ ବୁଝାମଣା ମେଣ୍ଟାଇ ଦେଇ ପାରିଲେ ନାହିଁ ।

ଏଣେ ପୁଣି ବୁର୍ଲା ଇଞ୍ଜିନିୟରିଂ କଲେଜ ହଷ୍ଟେଲରେ ବେନିଅମ ଭାବେ ରହିଥିବା ଏବଂ ଗୁଣ୍ଡା ଓ ଅସାମାଜିକ ବୋଲି ଦୁର୍ନାମ ଅର୍ଜନ କରିଥିବା ସେହିପରି ଛାତ୍ରମାନଙ୍କ ଉପରେ କଲେଜର ଅଧ୍ୟକ୍ଷ ଓ ଅଧ୍ୟାପକ ବୃନ୍ଦ ଏବଂ ସହରର ପ୍ରଶାସନିକ ଅଫିସରମାନେ ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ ନା ନାହିଁ? ଏତେ ପର୍ଯ୍ୟନ୍ତ ସେମାନଙ୍କୁ ସହ୍ୟ କରାଯାଉଥିଲା କିପରି? ପ୍ରଶ୍ରୟ ଦିଆଯାଉଥିଲା କିପରି? ଏବେ ସେହି ଗୁଣ୍ଡା ଛାତ୍ରମାନେ କୁଆଡ଼େ ଫେରାର୍ ହୋଇଗଲେ? ପୋଲିସ୍ ସେମାନଙ୍କୁ ଧରି ପାରିଲେ କି ନାହିଁ? ଯଦି ନ ଧରିଛନ୍ତି, ତେବେ ଧରି ପାରିବେ କି ନାହିଁ? ଯୋଉ ପିଲାମାନଙ୍କର ଶବ ପାଣିରୁ ବାହାରିଲା—ସେମାନେ କଣ ଦୋଷ କରିଥିଲେ? ବ୍ୟବସାୟୀମାନଙ୍କର ଦୋକାନ ଲୁଟି କରିଥିଲେ କି? ଦୋକାନ ପୋଡ଼ି ଦେଇଥିଲେ କି? ପୋଲିସ୍‌କୁ ଟେକାପଥର ମାଡ଼ ଦେଇଥିଲେ କି? ବୋମା ଫିଙ୍ଗିଥିଲେ କି? କୋଉ ପରିସ୍ଥିତିରେ ସେମାନେ ପାଣି ସୁଅରେ ପଡ଼ି ଅକାଳରେ ମଲେ? ନା, ମରିସାରି ପାଣିରେ ପଡ଼ିଲେ?

ଯୋଉ ଗୁଣ୍ଡା ଛାତ୍ର କେତେଜଣ କାହାକୁ ନ ମାନି କାହାକୁ ଖାତିର୍ ନ କରି କଲେଜ ହଷ୍ଟେଲରେ ବଳାତ୍କାରରେ ଏହି ସବୁ ଅତ୍ୟାଚାର କରି ଆସୁଥିଲେ—ସେମାନଙ୍କୁ କିଏ ଘଣ୍ଟ ଘୋଡ଼ାଇ ରଖୁଥିଲେ? ଅଧ୍ୟକ୍ଷ—ଅଧ୍ୟାପକମାନେ? ପୋଲିସ୍—କି ପ୍ରଶାସନିକ ଅଫିସରମାନେ? ଶାସନ କ୍ଷମତାରେ ଥିବା ଦଳର ସ୍ଥାନୀୟ ନେତାମାନେ? ନା, ଆଉ କୋଉ ଦଳର ନେତାମାନେ?

ଇଞ୍ଜିନିୟରିଂ କଲେଜରେ ଯେଉଁ ଛାତ୍ରମାନେ ପଢ଼ନ୍ତି—ସେମାନେ ପରା ଖୁବ୍ ମେଧାବୀ ଛାତ୍ର? ଫାଷ୍ଟ ଡିଭିଜନ ସମସ୍ତେ? ସେମାନେ ପ୍ରାୟ ଉଚ୍ଚ ଶିକ୍ଷିତ ଓ ଧନୀ ମାନୀ ମହତ ଘରର ପିଲାମାନେ ପରା? ତାଙ୍କ ଭିତରେ ଏତେ ଗୁଣ୍ଡା ପିଲା କେମିତି କାହିଁକି ବାହାରୁଛନ୍ତି? ସେମାନେ ପୁଣି ଗୋଟାଏ କଲେଜ ହଷ୍ଟେଲ୍‌ରେ ଏପରି ସଂଗଠିତ ଅପଶକ୍ତି ଲାଭ କରୁଛନ୍ତି କିପରି? ଅନ୍ୟାନ୍ୟ ପିଲାମାନଙ୍କୁ ଡରାଇ ଏ ସବୁ କାମରେ ମତାଉଛନ୍ତି କିପରି?

ଆଚ୍ଛା—ସମାଜରେ ପୁଣି ଏଇ ସବୁ ଶ୍ରେଣୀର ଗୁଣ୍ଡା ଓ ଅସାମାଜିକ ଯୁବକମାନେ ଏତେ ପ୍ରଶ୍ରୟ ପାଉଛନ୍ତି କିପରି ଓ କାହା ଯୋଗୁଁ? କୋଉ ଅର୍ଥନୈତିକ, ରାଜନୈତିକ, ନୈତିକ ଓ ମନସ୍ତାତ୍ତ୍ୱିକ ବ୍ୟବସ୍ଥା ଆମର ଏଇ ଯୁବଶକ୍ତିକୁ ଏପରି ବିଭ୍ରାନ୍ତ କରୁଛି? ଉନ୍ମାର୍ଗଗାମୀ କରୁଛି? ଆମ ସମାଜରେ ଆଦର୍ଶ ମଣିଷଙ୍କ ସଂଖ୍ୟା କେତେ? ସବୁ କ୍ଷେତ୍ରରେ ଯେଉଁ କେତେଜଣ ମୁଷ୍ଟିମେୟ ନୀତିବାନ ଆଦର୍ଶ ମଣିଷ ଅଛନ୍ତି—ସେମାନଙ୍କୁ ରାଷ୍ଟ୍ର ସ୍ୱୀକାର କରେ କି? ସମାଜ ମଧ୍ୟ ସ୍ୱୀକାର କରେ କି? ସମାଜରେ ବର୍ତ୍ତମାନ କେଉଁମାନେ ପ୍ରାଧାନ୍ୟ ବିସ୍ତାର କରିଛନ୍ତି? କୋଉ ପ୍ରକାର ଲୋକ ଆଖିଦୃଶିଆ ହୋଇଛନ୍ତି? ଧନ ଓ କ୍ଷମତା ବର୍ତ୍ତମାନ କେଉଁ ପ୍ରକାର ଲୋକଙ୍କ ହାତରେ ଠୁଳ ହୋଇଛି?

ବର୍ତ୍ତମାନର ଛାତ୍ରଛାତ୍ରୀ ବା ଯୁବସମାଜ ବର୍ତ୍ତମାନ କେଉଁମାନଙ୍କୁ ବିଶ୍ୱାସ କରିବେ? ସମ୍ମାନ କରିବେ? ଆସ୍ଥା ରଖିବେ?

ପିଲାମାନଙ୍କ କଥା କିଏ ଭାବୁଛି? ସେମାନଙ୍କର ଦାୟିତ୍ୱ କାହା ଉପରେ ଅବା ଅଛି? ସରକାରଙ୍କ ଦୃଷ୍ଟି ରାଜଦଣ୍ଡ ଉପରେ। ରାଜନୀତିବାଲାଙ୍କ ଦୃଷ୍ଟି ଭୋଟସଂଖ୍ୟା ଉପରେ। କର୍ମଚାରୀଙ୍କ ଦୃଷ୍ଟି, ବଦଳି, ପ୍ରମୋସନ ଆଉ ଲାଞ୍ଚ ରିସିପତ ଉପରେ। ବ୍ୟବସାୟୀଙ୍କ ଦୃଷ୍ଟି ଲାଭ ଶୁଳ ଉପରେ। ଅଭିଭାବକମାନଙ୍କ ଦୃଷ୍ଟି କେବଳ ନିଜ ଉପରେ? ସାମ୍ବାଦିକମାନଙ୍କ ଦୃଷ୍ଟି ଚାଞ୍ଚଲ୍ୟକର ଘଟଣା ଦୁର୍ଘଟଣା ଉପରେ। ଗୁଣୀ ଲୋକଙ୍କ ଦୃଷ୍ଟି ଯଶ, ଅର୍ଥ ଓ ଲୋକପ୍ରିୟତା ଉପରେ। ଶିକ୍ଷକ ଅଧ୍ୟାପକଙ୍କ ଦୃଷ୍ଟି ନିଜ ନିଜ ଉପରେ। ପିଲାଙ୍କ ଉପରେ ତା' ହେଲେ କାହାର ଦୃଷ୍ଟି? ଏ ସମାଜରେ ସମସ୍ତେ ସୁରକ୍ଷିତ, କେବଳ ପିଲାମାନେ ଇ ଅରକ୍ଷିତ? ନା—ସମସ୍ତେ ଅର୍କ୍ଷିତ—ତେଣୁ ପିଲାଏ ଅର୍କ୍ଷିତ?

ଆମ ପିଲାମାନେ ବାପା ମାଆଙ୍କ ପ୍ରୀତିରୁ ଜନ୍ମ ହେଉ ନାହାଁନ୍ତି—କେବଳ ଯୌନ କ୍ରିୟାରୁ ଜନ୍ମ ହେଉଛନ୍ତି। ମାନବୀୟ ସ୍ନେହ ଆଦରରେ ବଢ଼ୁ ନାହାନ୍ତି—ପ୍ରାକୃତିକ ରୀତିରେ ବଢ଼ୁ ବଢ଼ୁ ବଢ଼ୁଛନ୍ତି। ସେମାନଙ୍କର ମନ ଭିତରେ ଅବିଶ୍ୱାସ, ଅନାସ୍ଥା, ଅନିଶ୍ଚୟତା ଓ ଉଦ୍‌ବେଗ ଭରିଯାଉଛି। ହୀନମନ୍ୟତା ଭରି ଯାଉଛି। ଅକାରଣ ହିଂସା ବଢ଼ି ଯାଉଛି। ସେମାନଙ୍କର ଆଉ କାହା ଉପରେ ମାୟାନାହିଁ। କାରଣ, ସେମାନଙ୍କ ଉପରେ ବି ଆଉ କାହାରି ମାୟା ନଥିବା ସେମାନେ ଅନୁଭବ କରୁଛନ୍ତି। ସେମାନେ ସର୍ବଦା ମନେ କରୁଛନ୍ତି—ସତେକି ସେମାନେ ସବୁଠାରୁ ପ୍ରତାରିତ ଓ ଅବହେଳିତ।

...ବୁର୍ଲା ଏମିତି କିବା ଗୋଟେ ସହର! ସେଠି ଏତେ ବଡ଼ ଗୋଟାଏ ଦୁର୍ଘଟଣା ଘଟିଗଲା? ନଅଟି ମେଧାବୀ ଯୁବପ୍ରାଣ ଅକାଳରେ ଓ ଅକାରଣରେ ନଷ୍ଟ ହୋଇଗଲା। ଏଥିପାଇଁ ଦାୟୀ କିଏ?

ସରକାର ତଦନ୍ତ କମିଶନଟିଏ ବସାଉଛନ୍ତି। ବସାନ୍ତୁ। କିନ୍ତୁ ନଅଟି ପିଲାଙ୍କର ପିତାମାତାଙ୍କ ଆଖିରୁ ଆଉ ଯେ ଲୁହ ଶୁଖିବ ନାହିଁ। ନଅଟି ପରିବାର ହୃଦୟ କନ୍ଦରରୁ ଆଉ ଏ ଶୋକର ନିଆଁ ଲିଭିବ ନାହିଁ!

ଆ! ନଅଟି ନିରୀହ ଯୁବପ୍ରାଣର ମରଣାନ୍ତକ ଅଭିଶାପ କେବଳ ଜଣକ ଉପରେ ପଡ଼ିବ ନାହିଁ—ଆଉ ସମସ୍ତଙ୍କ ଉପରେ ପଡ଼ିବ। ଆମେ ସମସ୍ତେ ମିଳିମିଶି ନଅଟି ଧରମାଙ୍କୁ ପାଣିକୁ ଠେଲି ମାରି ଦେଇଛୁ। ଆମ ସମସ୍ତଙ୍କୁ ଦିନେନା ଦିନେ ଏଥିପାଇଁ ଘୋର ନରକ ଯନ୍ତ୍ରଣା ଭୋଗିବାକୁ ପଡ଼ିବ।



# ସ୍ୱମର୍ଯ୍ୟାଦା ଓ ଆତ୍ମମର୍ଯ୍ୟାଦା

ସ୍ପଷ୍ଟ ଭାବରେ କହିବାକୁ ହେଲେ, ଆମ୍ଭେମାନେ ବର୍ତ୍ତମାନ ଏମିତି ଗୋଟାଏ ସାମାଜିକ ଓ ନୈତିକ ଦୁରବସ୍ଥାରେ ପହଁଞ୍ଚୁଛୁ—ଏମିତି ଏକ ମନସ୍ତାତ୍ତ୍ୱିକ ବିପର୍ଯ୍ୟୟ ଭିତରେ ପଡ଼ିଯାଇଛୁ—ଯାହା ଫଳରେ କି ଆମର ବ୍ୟକ୍ତିଗତ ଓ ସାମାଜିକ ଚାଲିଚଳନି ମଧ୍ୟ ଏକ ପ୍ରକାର ବିଷମ ଅମର୍ଯ୍ୟାଦାକର ଅବସ୍ଥାକୁ ଓହ୍ଲାଇ ଗଲାଣି ଏବଂ ଏହି ଦୁରବସ୍ଥାରୁ ଆମେ ଆଉ ଥରେ କେମିତି ମୁକୁଳିବା ତା' ପାଇଁ ହୁଏତ ବାଟ ଅଛି—ମାତ୍ର ସେଥିପାଇଁ କେଉଁମାନେ ଚେଷ୍ଟା କରିବେ ଓ କିପରି ଭାବେ ଚେଷ୍ଟା କରିବେ—ତାର ଉତ୍ତର ନିଜ ଭିତରୁ ବା ଅପର ତୁଣ୍ଡରୁ ଶୁଣିବାକୁ ମିଳୁନାହିଁ। ଗୋଟିଏ ଉଦାହରଣ ଦିଆଯାଉ—

ଭାରତ ସ୍ୱାଧୀନ ହେଲାପରେ ବହୁ ବହୁ ଲାଭ ଭିତରେ ଗୋଟିଏ ବଡ଼ ଲାଭ ଆମକୁ ମିଳିଲା। ତାହାହେଲା—ପ୍ରତ୍ୟେକ ବ୍ୟକ୍ତି ଜାତି-ଧର୍ମ-ଧନ-କ୍ଷମତାଦି ନିର୍ବିଶେଷରେ ନିଜକୁ ଜଣେ ସ୍ୱାଧୀନ ଓ ମର୍ଯ୍ୟାଦାସଂପନ୍ନ ବ୍ୟକ୍ତି ବୋଲି ମନେ କରିବାର ଅଧିକାର ଲାଭ କଲା। ତାର ଅର୍ଥ ହେଲା—ଏବେ ମତେ କେହି ଅପମାନିତ କରି ପାରିବେ ନାହିଁ। କେହି ମତେ ଲୁଣ୍ଠନ କରିପାରିବେ ନାହିଁ। କେହି ମଧ୍ୟ ମୋର ସ୍ୱାଧୀନତା ଓ ସମ୍ମାନକୁ ପଦଦଳିତ କରିପାରିବେ ନାହିଁ। କେହି ମଧ୍ୟ ମତେ କ୍ଷୁଦ୍ର, ନୀଚ ନଗଣ୍ୟ ବୋଲି ମନେ କରି ପାରିବେ ନାହିଁ। ମୋ ସଙ୍ଗେ ଅନ୍ୟ ଜଣେ ଯେ କୌଣସି ପରିସ୍ଥିତିରେ ସମ୍ମାନଜନକ ବ୍ୟବହାର କରିବେ—ଭଦ୍ର ବ୍ୟବହାର କରିବେ। ମର୍ଯ୍ୟଦାପୂର୍ଣ୍ଣ ବ୍ୟବହାର କରିବେ।

ଏବଂ ଆମେ ସମସ୍ତେ ଏହି ଅଧିକାରଟିକୁ ଭୋଗ କରିବାକୁ ଚାହୁଁ, ଏହି ଅଧିକାରଟିକୁ ମଧ୍ୟ ଜାହିର କରିବାକୁ ଚାହୁଁ। କିନ୍ତୁ ଆମେ ଏତିକି କଥା ବୁଝୁନାହୁଁ ଯେ, ଅନ୍ୟ ଲୋକଟି ମଧ୍ୟ ଅବିକଳ ଆମଠାରୁ ସେଇଆ ଚାହେଁ। ମୁଁ କେବଳ ଆପଣଙ୍କଠାରୁ ଭଦ୍ର ବ୍ୟବହାର ଦାବୀ କରି ପାରିବି ନାହିଁ। ଆପଣ ମଧ୍ୟ ସମାନ ଭାବେ ମୋଠାରୁ ଭଦ୍ର ବ୍ୟବହାର ଦାବୀ କରନ୍ତି ଏବଂ ଆତ୍ମ-ମର୍ଯ୍ୟାଦା ଲାଭ କରିବାର ମୂଳକଥାଟି ହେଲା ଯଥାସମ୍ଭବ ମୋ ଆଡୁ ଆପଣଙ୍କ ପ୍ରତି ମର୍ଯ୍ୟାଦାଶୀଳ ବ୍ୟବହାର ପ୍ରଦର୍ଶନ କରିବା। କାରଣ ତାହାହିଁ ଆପଣଙ୍କୁ ମୋ ପ୍ରତି ଭଦ୍ର ଓ ମର୍ଯ୍ୟଦାଶୀଳ ହେବା ଲାଗି ପ୍ରଥମେ ପ୍ରରୋଚନା ଦେବ। କିନ୍ତୁ ବର୍ତ୍ତମାନ କି ବିଚିତ୍ର

ମନସ୍ତାତ୍ତ୍ୱିକ ଚିନ୍ତା ଆମ ମନକୁ ବିକୃତ କରି ଦେଲାଣି ? ଆମେ କେବଳ ନିଜର ମର୍ଯ୍ୟାଦାକୁ ବଡ଼ ବୋଲି ଅନ୍ୟଠାରେ ଜାହିର କରିବାକୁ ଚାହୁଁ। ଅଥଚ ଅନ୍ୟକୁ ଭାବୁ ଆମଠାରୁ ନଗଣ୍ୟ ଆଉ ଦାନୀ ହୀନ ବୋଲି।

ଉଦାହରଣଟିଏ ଦିଏଁ। ରାସ୍ତାଛକରେ ଟ୍ରାଫିକ ପୋଲିସ ଠିଆ ହୋଇଛନ୍ତି ଗାଡ଼ି ଚାଳକମାନଙ୍କୁ ନିର୍ଦ୍ଦେଶ ଦେବାପାଇଁ। ଆପଣ ନିର୍ଦ୍ଦେଶ ନ ମାନି ଗାଡ଼ି ଚଳାଇଲେ। ସେ ଆପଣଙ୍କୁ ତଲବ କରନ୍ତେ—ହଠାତ୍ ଆପଣ ଅପମାନିତ ମନେ କଲେ ଏବଂ ସଙ୍ଗେ ସଙ୍ଗେ ଟ୍ରାଫିକ୍ ପୋଲିସ୍‌କୁ ଅଶ୍ଳୀଳ ଆଚରଣ ଦେଖାଇଲେ। କାରଣ ଆପଣଙ୍କ ଧାରଣା—ଆପଣ ଜଣେ ''ହା ଉଁଚା'' ବ୍ୟକ୍ତି, ଆପଣଙ୍କ ପାହିଆ ଏତେ, ଦରମା ସେତେ, ଶିକ୍ଷା ଓ ଜ୍ଞାନ କେତେ ନା କେତେ, ବଂଶ ମହିମା ଓ ବିସ୍ତାର ମଧ୍ୟ ଉପରେ ଆକାଶକୁ ପାରି ହୋଇଗଲାଣି ଏବଂ ତଳେ ସାତ ସମୁଦ୍ର ଡେଇଁ କୁଆଡ଼େ ନା କୁଆଡ଼େ ଯାଇ ହେଲାଣି। ଆଉ ସେ କନଷ୍ଟେବଲ ବାପୁଡ଼ାଟା କୋଉ ଧୂଳିର ଗୋଟିଏ ମଳି। ସେ ପୁଣି...ହେଁ! ହେଁ! କଣ କରି ପାଇଛି କି ମତେ ? ହ୍ୱାଟ୍ ଡଜ୍ ହି ଥିଙ୍କ୍ ଅଫ୍ ମି ?...ହମ୍‌କୁ କ୍ୟା ଠଉରାତା ହେ ?...ବେଟା ଆମାକେ କି ମନେ କରେ ? ରାସ୍କେଲ୍ ଇଡ଼ିଅଟ୍!! ଶ୍ଳା...! ଆପଣ ଯଦି ସତକୁ ସତ ଏଇଆ ଭାବୁଥାନ୍ତି—ତେବେ ଆପଣ ନିଜେ ଆପଣଙ୍କର ସବୁ ଥାଇ ମଧ୍ୟ ଜଣେ ଆତ୍ମମର୍ଯ୍ୟଦାହୀନ ବ୍ୟକ୍ତି। କାରଣ ଯେ ଅପରକୁ ମର୍ଯ୍ୟାଦା ଦେଇ ଜାଣେ ନାହିଁ, ଅଥଚ ନିଜର ମର୍ଯ୍ୟାଦା ଜାହିର୍ କରୁଥାଏ ସେ କେବଳ ସ୍ୱମର୍ଯ୍ୟଦା—ଲୋଭୀ ଜଣେ ଛୋଟ ଲୋକ। ଆତ୍ମମର୍ଯ୍ୟାଦାବନ୍ତ ବ୍ୟକ୍ତି ଜାଣେ—ସେ ନିଜେ ଯେପରି ଜଣେ ଆତ୍ମା, ଅପର ମଧ୍ୟ ତଦ୍ରୂପ ଜଣେ ଆତ୍ମା ଏବଂ ଆତ୍ମା ମାତ୍ରେଇ ସମ୍ମାନନୀୟ ଓ ଅନ୍ୟଠାରୁ ମର୍ଯ୍ୟାଦା ପାଇବାର ଅଧିକାରୀ।

ଆଶ୍ଚର୍ଯ୍ୟ କଥା—ପାଶ୍ଚାତ୍ୟ ଦେଶମାନଙ୍କରେ ଯୋଉଠି ଜଡ଼ବାଦ ଓ ଭୋଗବାଦର ଚୂଡ଼ାନ୍ତ ପରିପ୍ରକାଶ ଘଟିଛି—ସେଠି ଜଣେ ମଣିଷ ଆଉ ଜଣେ ମଣିଷକୁ ଯଥେଷ୍ଟ ମାନ ମର୍ଯ୍ୟାଦା ଦେଖାଏ। କାରଣ ସେଠାରେ ପ୍ରତ୍ୟେକ କର୍ମ ବା ଶ୍ରମକୁ ସମାନ ମୂଲ୍ୟ ଓ ମର୍ଯ୍ୟାଦା ଦିଆଯାଇଛି। ଝାଡୁଦାର, ଅଧ୍ୟାପକ ଓ କଲେକ୍ଟରଙ୍କର ଶ୍ରମ ବା କର୍ମ କେହି କାହାଠାରୁ କମ୍ ନୁହେଁ ବୋଲି ସେଠା ଲୋକେ ନିଜ ନିଜ ଚେତନାରେ ତାହା ପାରମ୍ପରିକ ଭାବେ ଗ୍ରହଣ କରି ନେଇଛନ୍ତି।

ମାତ୍ର ଆମ ଦେଶ! ଏଠି କୁଆଡ଼େ ହଜାର ହଜାର ବର୍ଷ ତଳେ ବେଦ ବେଦାନ୍ତ ସବୁ ସୃଷ୍ଟି ହୋଇଥିଲା ଏବଂ ଆତ୍ମା ପରମାତ୍ମାତତ୍ତ୍ୱ କୁଆଡ଼େ ଆମରି ପୂର୍ବପୁରୁଷ ମୁନିଋଷି ସମସ୍ତଙ୍କ ଆଗରୁ ପ୍ରଥମ କରି ଜାଣିଥିଲେ। କିନ୍ତୁ ଯାହା ଦେଖା ଯାଉଛି, ସମଗ୍ର ବିଶ୍ୱରେ ବର୍ତ୍ତମାନର ଭାରତୀୟମାନେ ହିଁ ବେଶୀ ଅନାତ୍ମବାଦୀ ଓ ଜଡ଼ମତି। ଏଠି ସାଧାରଣ ଅଜ୍ଞାନ ଲୋକଙ୍କ କଥା କ'ଣ ବା କହିବା ? ଅଧ୍ୟାପକଠାରୁ

ଏମ.ଏଲ. ଏ ମନ୍ତ୍ରୀଙ୍କ ପର୍ଯ୍ୟନ୍ତ ଏବଂ କିରାଣୀ ପୋଲିସଙ୍କଠାରୁ ବଡ଼ ବଡ଼ ଆଇ.ଏ.ଏସ୍., ଆଇ.ପି.ଏସ୍‌ଙ୍କ ପର୍ଯ୍ୟନ୍ତ ସମସ୍ତେ କେବଳ ଏଠି ନିଜ ନିଜର ମର୍ଯ୍ୟାଦା ଜାହିର କରିବାକୁ ଚାହାନ୍ତି—ଅନ୍ୟର ମର୍ଯ୍ୟାଦା ପ୍ରତି ଦୃଷ୍ଟି ଦିଅନ୍ତି ନାହିଁ। ଅଥଚ ପ୍ରତିଦିନ ଦେଶର ଖବର କାଗଜ ପୃଷ୍ଠାମାନଙ୍କରେ ଆମର ମନ୍ତ୍ରୀ, ଏମ.ଏଲ.ଏ, ଏମ୍‌ପି, ଡାକ୍ତର, ଇଞ୍ଜିନିୟର, ସାମ୍ବାଦିକ, ଅଧ୍ୟାପକ ଇତ୍ୟାଦିଙ୍କ ଆଚରଣ ସମ୍ବନ୍ଧେ ଯୋଉସବୁ ଲଜ୍ଜାକର ଘଟଣାମାନ ପ୍ରକାଶ ପାଉଛି—ସେ କଥା ମନେ କଲେ, ଆଶଙ୍କା ହେଉଛି—ଆମ୍ଭେମାନେ ସମସ୍ତେ ବର୍ତ୍ତମାନ ସୁଦ୍ଧା ଆମର ପାରମ୍ପରିକ ଜାତୀୟ ଆତ୍ମମର୍ଯ୍ୟାଦା ହରାଇ ବସିଲୁଣି ଏବଂ ଏ କଥା ଠିକ୍ ଯେ ଗୋଟିଏ ବ୍ୟକ୍ତି ବା ଜାତି ତା'ର ଯଥାର୍ଥ ଆତ୍ମମର୍ଯ୍ୟାଦା ହରାଇ ସାରିଲା ପରେ ତାର ଅହଂକାର-ସମ୍ଭୂତ ସ୍ୱମର୍ଯ୍ୟାଦାଟିକୁ ଜାହିର କରିବାରେ ଖୁବ୍ ହିଂସ୍ରଭାବେ ଲାଗି ପଡ଼ିଥାଏ। ହାୟ ଦୁର୍ଭାଗ୍ୟ! ଆମେ କେମିତି ବୁଝିବା ଯେ, ଆତ୍ମମର୍ଯ୍ୟାଦା ପାଇଁ ଚେଷ୍ଟା କଲେ ଆତ୍ମମର୍ଯ୍ୟାଦା ଫେରି ଆସିପାରେ, ମାତ୍ର ଅହଂକାରରୁ ଜାତ ସ୍ୱମର୍ଯ୍ୟାଦା ପାଇଁ ଦାବୀ କଲା ମାତ୍ରେଇ ପରସ୍ପର ଭିତରେ ଭୟଙ୍କର ସଂଘର୍ଷ ସୃଷ୍ଟି ହୋଇଯାଏ। ବର୍ତ୍ତମାନ ଭାରତବର୍ଷରେ ତାହାହିଁ ଘଟୁଛି। ଭାରତବର୍ଷ ବର୍ତ୍ତମାନ ଅଗଣନ ଅହଂ-ସଂଘର୍ଷର ଲୀଳାଭୂମି ହୋଇ ଯାଉଛି।

❋❋

# ସାରସ୍ୱତ ଦୃଷ୍ଟିରେ ପ୍ରଥମ ସାରଳା ପୁରସ୍କାର ଉତ୍ସବ

ଗତ ରଜ ସଂକ୍ରାନ୍ତି ଶନିବାର ଜୁନ ଚଉଦ ତାରିଖ ସନ୍ଧ୍ୟା ସାଢ଼େ ଛଅଟାଠାରୁ ସାଢ଼େ ନଅଟା ପର୍ଯ୍ୟନ୍ତ ସୂଚନାଭବନ ଠାରେ ଇଣ୍ଡିଆନ୍ ମେଟାଲସ୍ ପବ୍ଲିକ ଚାରିଟେବ୍ଲେଟ୍ରଷ୍ଟ ତରଫରୁ ସାରଳାପୁରସ୍କାରପ୍ରଦାନ ଉପଲକ୍ଷେ ଯେଉଁ ସୁଧୀ-ସୁଜନ-ଗୁଣୀ ବ୍ୟକ୍ତିମାନଙ୍କର ସମାବେଶ ହୋଇଥିଲା, ପ୍ରକୃତରେ ଭୁବନେଶ୍ୱରଠାରେ ଅତୀତରେ ଅନୁଷ୍ଠିତ ବହୁ ସାଂସ୍କୃତିକ ସଭାମାନଙ୍କ ଭିତରେ ତାହା ଥିଲା ସଂଗଠନ, ଗାମ୍ଭୀର୍ଯ୍ୟ, ସରସତା, ସୌହାର୍ଦ୍ଧ୍ୟ, ପରିପାଟୀ, ପରିଚର୍ଯ୍ୟା ଓ ସୁଭାଷଣ ଦୃଷ୍ଟିରୁ ସ୍ୱୟୋଂପମ। ବିଶେଷତଃ ରାଜ୍ୟ ଓ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ତରଫରୁ ଆୟୋଜିତ ଏହି ଭଳି ବାର୍ଷିକ ପୁରସ୍କାର ପ୍ରଦାନ ସଭାଗୁଡ଼ିକ ଯେପରି ନିଷ୍ପ୍ରଭ ନିରୁତ୍ସାହଜନକ, ଅସୂୟାଜର୍ଜରିତ, ଅବହେଳା-ଚାଳିତ, ରଙ୍ଗ-ରାଗ-ରସ-ଲେଶ ହୀନ ଅସଂହତ ଅସଂପୃକ୍ତ ପରିବେଶ ଭିତରେ ଅନୁଷ୍ଠିତ ହୋଇଥାଏ, ସେହି ଅସ୍ୱସ୍ତିକର ବିରସ ଅଭିଜ୍ଞତାର ସ୍ମୃତି ବହନ କରି, ଆଉ ଥରେ ହତାଶ ହୋଇ ଅନୁଶୋଚନା କରିବାକୁ ଯେଉଁମାନେ ପ୍ରସ୍ତୁତ ହୋଇ ସେ ଦିନ ସେ ସଭାକୁ ଆସିଥିଲେ, ସେମାନେ ମଧ୍ୟ ଅଭାବିତ ଭାବେ ଏହି 'ବୁଧହଂସକେଳିସର' ସଦୃଶ ଅପୂର୍ବ ଶ୍ରୀ ଓ ସଦ୍ଭାବପୂର୍ଣ୍ଣ ସଭାଟିକୁ ଦେଖି ହତାଶ ନ ହେବାରୁ ହତାଶ ହୋଇ ଫେରିଥିଲେ। କହିବା ବାହୁଲ୍ୟ ଯେ, ବିଗତ ନଭେମ୍ବର ମାସର ଚବିଶ ତାରିଖରେ 'ଧରିତ୍ରୀ' ତରଫରୁ ଆୟୋଜିତ ବାର୍ଷିକ ସାହିତ୍ୟ ସଭାର ସେହି ନିରାଡ଼ମ୍ବର ସଫଳତାକୁ ଏହା ବାରମ୍ବାର ସ୍ମରଣ କରାଇ ଦେଉଥିଲା।

ଏହି ସଭାରେ କଟକ ଭୁବନେଶ୍ୱର ସମେତ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ବହୁ ପ୍ରତିଷ୍ଠିତ ଓ ନବୀନ ସାହିତ୍ୟିକ ଯୋଗ ଦେଇ ସଭାର ସାରସ୍ୱତ ପରିବେଶକୁ ଜାଜ୍ୱଲ୍ୟମାନ କରି ରଖିଥିଲେ। ରାଜ୍ୟର ବିଶିଷ୍ଟ ସାମ୍ବାଦିକ ଗଣ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ବହୁ ସଂଖ୍ୟାରେ ଉପସ୍ଥିତ ରହି ଏହି ଉତ୍ସବଟିର ଘାଟନିକ ଗୁରୁତ୍ୱକୁ ଯଥୋଚିତ ଭାବରେ ପ୍ରତିପାଦନ କରିଥିଲେ। ରାଜଧାନୀର ଉଚ୍ଚପଦସ୍ଥ ସରକାରୀ କର୍ମଚାରୀମାନଙ୍କର ଉପସ୍ଥିତି ଦ୍ୱାରା ଉତ୍ସବଟିର ଗାମ୍ଭୀର୍ଯ୍ୟ ଶ୍ରୀ ବୃଦ୍ଧି ପାଇଥିଲା ଏବଂ ଭାରତୀୟ ସାହିତ୍ୟାକାଶର ତିନି ଜଣ ମହୋଜ୍ଜ୍ୱଳ ଜ୍ୟୋତିଷ୍କ, ଜ୍ଞାନପୀଠ ବିଜେତା, ଅମର ସାହିତ୍ୟକୃତିର ସ୍ରଷ୍ଟା ଶ୍ରୀମତୀ ଆଶାପୂର୍ଣ୍ଣା ଦେବୀ, ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତି ଓ ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ବାତ୍ସାୟନ ସଭାମଞ୍ଚରେ ଉପବିଷ୍ଟ ରହି ଭାରତ—ଭାରତୀଙ୍କର ରସ, ରୀତି ଓ ଧ୍ୱନି ବିଭବର ତ୍ରୟୀ ପ୍ରତିମୂର୍ତ୍ତି ଭାବରେ ପ୍ରତିଭାତ ହେଉଥିଲେ ଏବଂ ଆପଣା ଆପଣାର

ସ୍ୱକୀୟ ସାରସ୍ୱତ ଦୀପ୍ତିରେ ସଭାଜନଙ୍କ ହୃଦୟାକାଶକୁ ଦେଦୀପ୍ୟମାନ କରୁଥିଲେ। ସେମାନଙ୍କ ସହିତ ଓଡ଼ିଶାର ଅନ୍ୟତମ ପ୍ରଖ୍ୟାତ କଥାକାର ଏବଂ "କୁଳବୃଦ୍ଧ" ଶଂସିତ ଚରିତୋପନ୍ୟାସ ଲାଗି ଏଥରର ସାରଳା ପୁରସ୍କାର ବିଜେତା ଶ୍ରୀଯୁକ୍ତ ସୁରେନ୍ଦ୍ର ମହାନ୍ତି, ତାଙ୍କର ସ୍ୱଭାବ-ସୁଲଭ ଆତ୍ମମର୍ଯ୍ୟାଦା ଦୃପ୍ତ, ସ୍ୱୟଂ ପ୍ରତିଷ୍ଠ, ନିର୍ଭୀକ ନିଃସଙ୍କୋଚ ଏବଂ ଭାବାବେଗସ୍ପିତ ବ୍ୟକ୍ତିତ୍ୱର ପ୍ରସ୍ଫୁରଣ ଦ୍ୱାରା ସମାବିଷ୍ଟ ସାହିତ୍ୟାନୁରାଗୀ ନରନାରୀଙ୍କ ହୃଦୟରେ ସ୍ୱତଃସ୍ଫୂର୍ତ୍ତ ଭାବେ ସଂଭ୍ରମ ଓ ସଂପ୍ରୀତିର ଅନୁଭୂତି ସଂଚାର କରୁଥିଲେ। ତାଙ୍କ ସହିତ ଓଡ଼ିଶାର ବୟୋଜ୍ୟେଷ୍ଠ, ଆଜୀବନ ଗାନ୍ଧୀଦର୍ଶନ ଅନୁଗାମୀ, ସର୍ବଜନହୃଦୟ-ହରଣକାରୀ ଅମୃତମୟ ଭାଷା ଓ ଭାବରାଜ୍ୟର ସ୍ରଷ୍ଟା ସର୍ବମାନ୍ୟ ଶ୍ରୀଯୁକ୍ତ କାଳିନ୍ଦୀଚରଣ ପାଣାଗ୍ରାହୀ ସଭାମଞ୍ଚରେ ସମାବିଷ୍ଟ ରହି, ତାଙ୍କର ଅମାୟିକ ଅନାମୟ ଭାବମୂର୍ତ୍ତି ଦ୍ୱାରା ସଭାଜନଙ୍କ ଚିତ୍ତ ଦର୍ପଣରେ ସୁଶୀତଳ ନିର୍ମଳ ଚନ୍ଦ୍ରବିମ୍ବବତ୍ ପ୍ରତିଭାତ ହେଉଥିଲେ। ତାଙ୍କ ସହିତ ସ୍ୱନାମଧନ୍ୟ ରସମେଦୁର କଥାସାହିତ୍ୟର ସ୍ରଷ୍ଟା, "ଡଗର" ପତ୍ରିକାର ପ୍ରାଣ–ପ୍ରତିଷ୍ଠାତା, ବିନୀତ ଓ ପୁନୀତ ବ୍ୟକ୍ତିତ୍ୱ-ସମ୍ପନ୍ନ ମାଳା-ତିଳକଧାରୀ ବୈଷ୍ଣବ-ପ୍ରବର ଶ୍ରୀଯୁକ୍ତ ନିତ୍ୟାନନ୍ଦ ମହାପାତ୍ର—ଅଫୁରନ୍ତ ଜୀବନଶକ୍ତି ପ୍ରଦାୟକ 'କଷ୍ଟ ସହି ପର-କଷ୍ଟ-ସଂହାରକ' ହାସ୍ୟରସ ସାମ୍ରାଜ୍ୟର ଅପ୍ରତିଦ୍ୱନ୍ଦ୍ୱୀ ସମ୍ରାଟ ଅଥଚ ବାନପ୍ରସ୍ଥ ବେଶଧାରୀ ସନ୍ନ୍ୟାସୀପ୍ରତିମ ଶ୍ରୀଯୁକ୍ତ ଫତୁରାନନ୍ଦ—ଓଡ଼ିଆ ସାହିତ୍ୟର ଅପ୍ରତିଦ୍ୱନ୍ଦ୍ୱୀ ଯୋଦ୍ଧୃ—ଗବେଷକ, କାଳ ସଙ୍ଗେ 'କଳା'ର ସମ୍ପର୍କ ବିଧାୟକ, ଆଜୀବନ ସାହିତ୍ୟ—ତପସ୍ୟା ନିରତ ଶ୍ରୀଯୁକ୍ତ ନଟବର ସାମନ୍ତରାୟ ସଭାମଞ୍ଚରେ ଉପସ୍ଥିତ ରହି ପରମ ସୌଭାଗ୍ୟବତୀ ଉତ୍କଳ ଭାରତୀ ମା'ସାରଳାଙ୍କର କୀର୍ତ୍ତି—ସ୍ୱର୍ଗ—ବିଜୟୀ ପଞ୍ଚ ବୀବରର ପୁତ୍ରଙ୍କ ସଦୃଶ ଅତ୍ୟନ୍ତ ଦୀପ୍ୟମାନ ଦିଶୁଥିଲେ। ଏହି କୀର୍ତ୍ତିବନ୍ତ ସାହିତ୍ୟ ସାଧକମାନଙ୍କୁ ଜାତୀୟ କୃତଜ୍ଞତାର ନିଦର୍ଶନ ସ୍ୱରୂପ ପୁରସ୍କାର ଓ ଉପାୟନ ପ୍ରଦାନ କରିବାଦ୍ୱାରା ସଭାର ଗୌରବ ଏବଂ ଔଚିତ୍ୟବାଦ ବହୁଭାବେ ବୃଦ୍ଧି ପାଇଥିଲା।

ସାରଳା-ପୁରସ୍କାର-ପ୍ରଦାନ ସମିତର ଉପଦେଷ୍ଟାମଣ୍ଡଳୀଙ୍କ ମଧ୍ୟରୁ ମଞ୍ଚ ଉପରେ ଉପବିଷ୍ଟା ସଭାନେତ୍ରୀ ଶ୍ରୀମତି ଇଲା ପଣ୍ଡା ତାଙ୍କ ସ୍ୱଭାବ ସୁଲଭ ବ୍ୟକ୍ତିତ୍ୱର କୋମଳ ଲଳିତ—ଭାବମାଧୁର୍ଯ୍ୟ, ଅପୂର୍ବ ନମନୀୟ ଗୁଣାଗ୍ରାହକତା ଓ ଐଶ୍ୱର୍ଯ୍ୟମୟୀ ପୃଷ୍ଠପୋଷକତାର ସଦ୍‌ଭାବ ଦ୍ୱାରା, ସଭାସ୍ଥ ବ୍ୟକ୍ତିମାନଙ୍କ ଚିତ୍ତରେ ଅପୂର୍ବ ଆସ୍ଥା ଓ ପ୍ରସନ୍ନତା ସୃଷ୍ଟି କରୁଥିଲେ। ସାରଳା ପୁରସ୍କାର ସମିତିର ଅନ୍ୟତମ ସଭାପତି, ବିସ୍ମୃତିର ଅତଳ ଓ ସମୁଦ୍ରରୁ ଓଡିଶାର ପଲ୍ଲୀ—ସାହିତ୍ୟ ଓ ସଂସ୍କୃତି ରୂପକ "ଲୋକବେଦର" ଉଦ୍ଧାରକ, ସର୍ବମାନ୍ୟ ଓ ସର୍ବଗଣ୍ୟ ଅଧ୍ୟାପକ, ସ୍ୱନାମଧନ୍ୟ କବି ଓ ଲେଖକ କୁଞ୍ଜବିହାରୀ ଦାସ ତାଙ୍କର ଅନୁପମ ରସାଳ କାବ୍ୟ ବିଭୂତିମୟ ଅମୃତୋପମ ସୁମଧୁର ସ୍ନେହସିକ୍ତ ବ୍ୟକ୍ତିତ୍ୱର ସ୍ଫୁରଣ ଦ୍ୱାରା ସମସ୍ତଙ୍କ ହୃଦୟରେ ନିର୍ମଳ ଆନନ୍ଦର ସ୍ପନ୍ଦନ ସୃଷ୍ଟି କରୁଥିଲେ। ସେହି ସଭାର ସଭାପତି ରୂପେ ଇଣ୍ଡିଆନ୍ ମେଟାଲସ୍ ଆଣ୍ଡ ଫେରୋଆଲଏଜର

ପ୍ରତିଷ୍ଠାତା, ଓଡ଼ିଶାର ସର୍ବଶ୍ରେଷ୍ଠ ଫଳିତ ବିଜ୍ଞାନୀ, ଉତ୍କଳ–ଲକ୍ଷ୍ମୀଙ୍କର ନିତ୍ୟ–ଅଙ୍କ–ଲଗ୍ନ କଲ୍ୟାଣୀୟ ବରପୁତ୍ର, ଜାତୀୟ ଧର୍ମ ଓ ସଂସ୍କୃତିର ଅକୃପଣ ପରିପୋଷକ, ଶିଳ୍ପପତି ଶ୍ରୀଯୁକ୍ତ ବଂଶୀଧର ପଣ୍ଡା, ତାଙ୍କର ସୁମଧୁର, ସରଳ ସହଜ ଓ ଅଭୟଦାୟୀ ବ୍ୟକ୍ତିତ୍ୱର ବିଚ୍ଛୁରଣ ଦ୍ୱାରା ସମସ୍ତଙ୍କ ମନରେ ଯଥେଷ୍ଟ ସକୃତଜ୍ଞ ଆଶା ଓ ଭରସା ସୃଷ୍ଟି କରୁଥିଲେ। ପୁରସ୍କାର ସମିତିର ସମ୍ପାଦକ ଓଡ଼ିଶାର ସୁପରିଚିତ ସାହିତ୍ୟିକ ଅଧ୍ୟାପକ, ସାହିତ୍ୟ ସଂଗଠକ, ଗବେଷକ, ସମାଜସେବୀ ଶ୍ରୀଯୁକ୍ତ ନିତ୍ୟାନନ୍ଦ ଶତପଥି ତାଙ୍କର ଅସାଧାରଣ ସଂଗଠନ ଓ ପରିଚାଳନା କୌଶଳ ଦ୍ୱାରା ସଭାର ଶୃଙ୍ଖଳା ଓ ସଫଳତା ସଂରକ୍ଷଣ କରିବାରେ ସମସ୍ତଙ୍କର ପ୍ରିୟଭାଜନ ହେଉଥିଲେ ଏବଂ ଓଡ଼ିଶାର ସର୍ବଜନଗ୍ରାହ୍ୟ ଓ ସର୍ବମାନ୍ୟ ନେତା, ସମାଜ ସଂଗଠକ, ସ୍ୱନାମଧନ୍ୟ ସାହିତ୍ୟିକ ଶ୍ରୀଯୁକ୍ତ ଶ୍ରଦ୍ଧାକର ସୂପକାର ସଭା ମଧ୍ୟରେ ଅନ୍ୟାନ୍ୟ ବହୁ ବରେଣ୍ୟ ବାଣୀ–ସାଧକଙ୍କ ଗ୍ରହଣରେ ତାଙ୍କ ସଦୟ–ଉପସ୍ଥିତି ଦ୍ୱାରା ଉତ୍ସବଟିର ମହିମା ବୃଦ୍ଧିରେ ଯଥେଷ୍ଟ ସହାୟତା କରୁଥିଲେ।

ସ୍ୱାଧୀନତୋତ୍ତର ଓଡ଼ିଶାର ଅନ୍ୟତମ ସୁପ୍ରତିଷ୍ଠିତ ସ୍ୱନାମଧନ୍ୟ ସାମ୍ବାଦିକ, ସମ୍ପାଦକ, ସାହିତ୍ୟିକ ଓ ରାଜନୀତିଜ୍ଞ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ ଏହି ଉତ୍ସବଟିର ଶୁଭ ଉଦ୍‌ଘାଟନ କରି ସଭାସ୍ଥଳୀରେ ଶେଷ ପର୍ଯ୍ୟନ୍ତ ଉପସ୍ଥିତ ରହି, ଉତ୍ସବଟିକୁ ସର୍ବତୋଭାବେ ପରିପୂର୍ଣ୍ଣ ଓ ଶ୍ରୀମଣ୍ଡିତ କରିବାରେ ସହାୟତା କରିଥିଲେ।

ମୋଟ ଉପରେ, ଓଡ଼ିଶାର ଜାତୀୟ ପର୍ବ ରଜସଂକ୍ରାନ୍ତି ଭଳି ଏକ ବିଶେଷ ଦିନରେ ଦ୍ୟାବ୍ୟା ପୃଥିବୀ ଯେତେବେଳେ ବାରିବାହୀ ଘନ କୃଷ୍ଣ ମେଘମାଳାରେ ସମାଚ୍ଛନ୍ନ, ଆର୍ଦ୍ର ଓ ସୁଶୀତଳ ଥିଲା, ସେହି ମନୋରମ ରସ–ସ୍ନିଗ୍ଧ ବେଳାରେ ଏହି ସାରସ୍ୱତ ଉତ୍ସବଟି ସୁସମାହିତ ହୋଇ ସୁଧୀଜନମାନଙ୍କ ମନକୁ ବିଶେଷ ଭାବେ ଆନନ୍ଦ ଆହ୍ଲାଦ ପରିପ୍ଳୁତ କରି ରଖିଥିଲା। ସଭା ଗୃହରେ ମଲ୍ଲୀ, ଚମ୍ପା ଓ ରଜନୀଗନ୍ଧାର ଶତ ଶତ ସୁବାସିତ ମାଳା ଊର୍ଦ୍ଧ୍ୱରୁ ତଳକୁ ଲମ୍ବମାନ ହୋଇ ଝୁଲୁଥିଲା। ସଭାମଞ୍ଚଟି ନାନାବିଧ ପୁଷ୍ପସ୍ତବକ ଓ ମାଲ୍ୟ ଦ୍ୱାରା ଉତ୍‌ଫୁଲ୍ଲିତ ଦିଶୁଥିଲା। ସୁଗନ୍ଧ ଦ୍ରବ୍ୟର ବାରମ୍ବାର ବିଚ୍ଛୁରଣ ଫଳରେ ସୁରଭିତ ପରିବେଶଟି ଆମୋଦିତ ହେଉଥିଲା। କୋମଳ ଆଲୋକରେ ଆଲୋକିତ ସଭାଗୃହଟି ଏକ ସ୍ୱପ୍ନିଳ କାବ୍ୟାଲୋକର ଭାବ ସଂଚାର କରୁଥିଲା। ସଭା ଶେଷ ପର୍ଯ୍ୟନ୍ତ ଗୃହରେ ଭଦ୍ର ନୀରବତା, ଭବ୍ୟ ଧୈର୍ଯ୍ୟ ଓ ନମ୍ରଶାନ୍ତି ବିରାଜମାନ କରୁଥିଲା। ତା'ସଙ୍ଗେ ସଙ୍ଗେ ମଧ୍ୟ ସ୍ୱାଭାବିକ ଓ ସହଜ ଭାବେ ସଭାଜନଙ୍କ ଭିତରେ ଭାବାବେଗ ଚାଳିତ ଉତ୍ସୁକତା ଓ ଉଲ୍ଲାସ ପ୍ରକାଶ ପାଉଥିଲା। ପୁରସ୍କାର ଓ ଉପାୟନ ପ୍ରଦାନ କାଳରେ ବାରମ୍ବାର ଶୁଭ ଶଙ୍ଖ ବାଜୁଥିଲା। ସ୍ୱତଃସ୍ଫୂର୍ତ୍ତ ଭାବେ ବାରମ୍ବାର କରତାଳି ଦ୍ୱାରା ସଭାଜନମାନେ ସେମାନଙ୍କର ପ୍ରିୟ ସାହିତ୍ୟିକମାନଙ୍କୁ ହାର୍ଦ୍ଦିକ ସମର୍ଥନ ଓ ସମ୍ବର୍ଦ୍ଧନା ଜଣାଉଥିଲେ। ସଭାର ପରିଚର୍ଯ୍ୟା

ଦିଗରେ ଇଣ୍ଡିଆନ ମେଟାଲସ ଆଣ୍ଡ ଫେରୋ ଆଲୟଜ ସଂସ୍ଥାର ଲୋକସମ୍ପର୍କ ଅଫିସର ଶ୍ରୀଯୁକ୍ତ ମାର୍କସ ଦାସ ଓ ତାଙ୍କର ସହକର୍ମୀମାନେ ନିୟତ ସତର୍କ, ସକ୍ରିୟ ଓ ନିୟୋଜିତ ରହିଥିଲେ। ବକ୍ତାମାନଙ୍କର ଲିଖିତ ଓ ମୌଖିକ ଭାଷଣଗୁଡ଼ିକ ଖୁବ୍ ସାରଗର୍ଭକ, ସଂକ୍ଷିପ୍ତ ଓ ସମାୟାନୁପାତିକ ହୋଇଥିଲା। ସଭାପତି ଶ୍ରୀଯୁକ୍ତ ପଣ୍ଡା ଯେତେବେଳେ ଘୋଷଣା କଲେ ଯେ ତାଙ୍କର ସଂସ୍ଥା ବାର୍ଷିକ ଦଶ ସହସ୍ର ମୁଦ୍ରାର କେବଳ ଏକ ବାର୍ଷିକ ପୁରସ୍କାର ପ୍ରଦାନ କରି ନିଶ୍ଚିନ୍ତ ହେଉ ନାହିଁ, ଯଥାଶୀଘ୍ର ଓଡ଼ିଆ ଭାଷାରେ ଲିଖିତ ମୌଳିକ ଗ୍ରନ୍ଥମାନଙ୍କର ହିନ୍ଦୀ ଓ ଇଂରାଜୀ ଅନୁବାଦ କାର୍ଯ୍ୟ ମଧ୍ୟ ହାତକୁ ନେବ, ସେତେବେଳେ ତାଙ୍କର ଘୋଷଣା ପ୍ରତି ସମସ୍ତେ ବିପୁଳ ସାଧୁବାଦ ଅର୍ପଣ କରିଥିଲେ।

କହିବା ବାହୁଲ୍ୟ ଯେ, ସାରଳା ପୁରସ୍କାରର ଏହି ଆର୍ଥିକ ପରିମାଣ ଆମ ରାଜ୍ୟର ସରକାରୀ ଓ ବେସରକାରୀ ସଂସ୍ଥା ପ୍ରଦତ୍ତ ସମସ୍ତ ସାହିତ୍ୟ ପୁରସ୍କାରଠାରୁ ବହୁ ଅଧିକ।

ଆମ୍ଭେମାନେ ସର୍ବାନ୍ତଃକରଣରେ ଏହି ସଂସ୍ଥାର ଅଧିକାରୀ ଓ କର୍ମକର୍ତ୍ତାମାନଙ୍କୁ ଏଥିପାଇଁ ପ୍ରଚୁର କୃତଜ୍ଞତା ଓ ସାଧୁବାଦ ଅର୍ପଣ କରୁଛୁ।

ଜୟ ମା'ଶାରଳା!



# ବିଗାର ଥୋମାସ୍‌ର ସମସ୍ୟା....

ବହୁ ବର୍ଷ ତଳେ ଆମେରିକାର ବିଖ୍ୟାତ ନିଗ୍ରୋ ଔପନ୍ୟାସିକ ରିଚାର୍ଡ଼ ରାଇଟ୍‌ଙ୍କର "ଦି ବ୍ଲାକ୍ ବଏ" ଏବଂ "ନାଟିଭ ସନ୍" ନାମରେ ଦୁଇଟି ସାମାଜିକ ଉପନ୍ୟାସ ପଢ଼ିଥିଲି। ଦୁଇଟି ଯାକ ଉପନ୍ୟାସ ମତେ ବହୁଦିନ ପର୍ଯ୍ୟନ୍ତ ଖୁବ୍ ଅଭିଭୂତ କରି ରଖିଥିଲା। ରିଚାର୍ଡ଼ ରାଇଟ୍ ତାଙ୍କ ନିଜ ଜୀବନର ନିଦାରୁଣ ଅଭିଜ୍ଞତାଗୁଡ଼ିକ ତାଙ୍କ ଉପନ୍ୟାସରେ ପ୍ରତ୍ୟକ୍ଷ ବା ପରୋକ୍ଷବାଚକ ଶୈଳୀରେ ପ୍ରକାଶ କରିଥାନ୍ତି। ଗୋରା ଚମଡ଼ାବାଲାଙ୍କ ଦୌରାତ୍ମ୍ୟ ପିଲାଦିନୁ ଏତେ ଭୋଗିଥିଲେ ଯେ, କାଳେ ତାଙ୍କ ଲେଖାରେ ତାଙ୍କ ଅଜାଣତରେ ତାଙ୍କଠାରୁ ଅଧିକ ଗୋରା ଦିଶୁଥିବା ଲୋକଙ୍କ ପ୍ରତି ଏକ ଅନ୍ଧ ହିଂସ୍ରତା ଫୁଟି ଉଠିବ—ସେଥିପାଇଁ ସେ ସର୍ବଦା ଆଶଙ୍କା—ସଚେତନ ରହୁଥିଲେ।

"ନାଟିଭ ସନ୍" ଉପନ୍ୟାସର ନାୟକ ହେଲା କୋଡ଼ିଏ ବାଇଶି ବର୍ଷର ନିଗ୍ରୋ ଟୋକାଟିଏ—ବିଗାର୍ ଥୋମାସ୍। ମହାଲୋଫର ଆଉ ଅମାନିଆ ଏକଗୁଇଁଆ ଟୋକା—ହୁଣ୍ଡା, ଗୁଣ୍ଡା, ମିଛୁଆ ଏବଂ ସବୁବେଳେ ଛୋଟ, ଛୋଟ ଚୋରି ବା ଦଙ୍ଗା ହାଙ୍ଗାମାରେ ମାତିଥାଏ। ତା'ମାଆ ତାକୁ ବାରମ୍ବାର କହେ—ବିଗାର୍। କେଉଁ ପାପରୁ ତୁ ମୋ ପେଟରୁ ଜନ୍ମ ହେଲୁ କହତରେ! ତୋ'ଭଳିଆ ବାଳୁଙ୍ଗା ମାଙ୍କଡ଼କୁ ଏ ପୃଥିବୀରେ ମୋ ଭଳିଆ ଆଉ କେଉଁ ହତଭାଗିନୀ ମାଆ ଭଲା ଜନ୍ମ କରିଥିବେ ?

ଦିନେ ସେ ଟୋକାଟିକୁ ଚିକାଗୋର ଜଣେ ସଦାଶୟ ସମାଜସେବୀ ମଟର ଗାଡ଼ି ଚଳାଇବା କାମ ଶିଖାଇବା ବାହାନାରେ ତା'ମାଆକୁ କୁହା ପୋଛା କରି ସଂଗରେ ନେଇଗଲେ। ଉଦ୍ଦେଶ୍ୟ—ଉତ୍ତମ ପରିବେଶରେ ରଖି ସେ ତା'ର ଚରିତ୍ରର ସଂଶୋଧନ କରିବେ।

କିନ୍ତୁ ଦୁର୍ଭାଗ୍ୟକୁ ଠିକ୍ ସେହିଦିନ ରାତିରେ ବିଗାର ସେଇ ସମାଜସେବୀଙ୍କ ସୁନ୍ଦରୀ ଯୁବତୀ ଝିଅର ଶୋଇବା ଘରେ ଅଧ ରାତିରେ ପଶିଲା ଏବଂ ଧରା ପଡ଼ିଯିବା ଭୟରେ ସେ ଝିଅକୁ ହତ୍ୟାକରି ଗୋଟାଏ ନିକାଞ୍ଚନ ଜାଗାରେ ପୋପାଡ଼ି ଦେଲା। ତା'ପରେ ସେଠୁ ପଳାଇ ଯାଇ ଜଣେ ଧନୀ ନିଗ୍ରୋ ଘରେ ଲୁଚିଲା। ଏଣେ ନିହତ ଝିଅଟିର ଶବକୁ ଆବିଷ୍କାର କଲାପରେ ପୋଲିସ ପଳାୟିତ ବିଗାରକୁ ଖୋଜି ଖୋଜି ସେଇ ଧନୀ ନିଗ୍ରୋ ଘରେ ସନ୍ଧାନ ନେଲାବେଳେ, ବିଗାର ଆଶଙ୍କା କଲା ଯେ, ସେଇ ଧନୀ ନିଗ୍ରୋର ସ୍ତ୍ରୀ ହୁଏତ ତାକୁ ଧରା ପକାଇ ଦେବ।

ଭୟରେ ଉନ୍ମତ୍ତ ହୋଇ ସେ ତାକୁ ମଧ୍ୟ ହତ୍ୟା କରି ଚମ୍ପଟ ଦେଲା। କିନ୍ତୁ ତା'ପର ଦିନ ଚିକାଗୋ ସହରର ଏକ ଅଶ୍ଳୀଳ ବସ୍ତି ଅଞ୍ଚଳରେ ପୋଲିସ୍ ତାକୁ ଆରେଷ୍ଟ କଲେ। ସେ ଗୋଟାଏ ବରଫାଚ୍ଛାଦିତ ଭଙ୍ଗା କୁଡ଼ିଆ ଭିତରେ ଲୁଚିଥିଲା।

ବହୁ ଘଟଣାକୁ ବାଦ ଦେଇ ମୋଟା ମୋଟି ଶେଷ କଥାଟି ହେଲା—ବିଗାରର କୋର୍ଟରେ ବିଚାର ହେଲା ଓ ସେ ଫାଶି ହୁକୁମ ପାଇଲା।

କିନ୍ତୁ ତାର ଯେତେବେଳେ ବିଚାର ଚାଲିଥିଲା, ସେତେବେଳେ କୋର୍ଟରେ ସହୃଦୟ ଓକିଲ ଜଣକ ବିଗାର ସପକ୍ଷରେ ପ୍ଲିଡ୍ କରୁଥିଲେ—ସେ ଜଜ୍ ଓ ଜୁରୀମାନଙ୍କୁ ଶୁଣାଇ ଯେଉଁ ହୃଦୟସ୍ପର୍ଶୀ ବକ୍ତୃତାଟି ଦେଇଥିଲେ, ତାହା ମୋର ହୃଦୟରେ ଆଜି ପର୍ଯ୍ୟନ୍ତ ଲାଖି ରହିଛି। ସେ କହିଲେ—''ଇଓର ଅନର୍! ଏଇ ବିଗାର୍ ଥମାସ୍ ସେଦିନ ରବିବାର ସକାଳେ ଡାଲଟନ୍ ହୋମରେ ଯୋଉ ବୀଭତ୍ସ କାଣ୍ଡ କରିଛି, ଏବଂ ତତ୍‌ପୂର୍ବରୁ ଆଉ ଏକ ରବିବାର ରାତିରେ ଯୋଉ ଜଘନ୍ୟ କାଣ୍ଡଟି ଘଟାଇଛି—ସେ ସବୁ ହେଲା ତା'ର ସାରା ଜୀବନରେ ସେ ଯାହାସବୁ କରିଆସିଛି ତା'ର ଅତିକ୍ଷୁଦ୍ର ନିଦର୍ଶନ ମାତ୍ର। ସେ ତାର ନଗଣ୍ୟ ଅକ୍ଷିତ ଜୀବନକୁ ତାର ନିଜର ଅନ୍ଧ ପ୍ରବେଗଗୁଡ଼ିକର ତାଡ଼ନାରେ ବଂଚି ଆସିଛି ଏବଂ ଆମ୍ଭେମାନେ ମଧ୍ୟ ତାକୁ ସେମିତି ବଂଚିବାକୁ ବାଧ୍ୟ କରିଆସିଛୁ। ଆଜି ଆମେ ସମାଜରେ ଯୋଉ ସଭ୍ୟତା ଓ ସଂସ୍କୃତିର ପ୍ରସାର କରି ଚାଲିଛୁ—ତାଆରି ପ୍ରତିକ୍ରିୟା ଭିତରୁ ବିଗାର ଓ ତା' ଭଳିଆ ଟୋକାମାନେ ଜନ୍ମିଛନ୍ତି ଓ ବଢ଼ିଛନ୍ତି। ତାର ଚେତନା ବହୁ ଅବୋଧ ସନ୍ଦେହ, ଭୟ, ଆଶଙ୍କା ଓ ଘୃଣାରେ ତିଆରି ହୋଇଛି ଏବଂ ସେ ସବୁ ତା'ର ରକ୍ତ, ସ୍ନାୟୁ ଓ ହାଡ଼ ଭିତରକୁ ମଧ୍ୟ ପଶିଯାଇଛି—ତା'ର ଆତ୍ମାକୁ ଅଧିକାର କରି ସାରିଛି। ତାହାହିଁ ତା'ର ବ୍ୟକ୍ତିତ୍ୱକୁ ଗଢି ଚାଲିଛି ଏବଂ ତା'ର ସମଗ୍ର ଅସ୍ତିତ୍ୱକୁ ସାବ୍ୟସ୍ତ କରିଛି।..''

ହୃଦୟବାନ୍ ଓକିଲଙ୍କର ଏହିଭଳି କଥାରେ ଜଜ୍‌ଙ୍କର ଆଖି ସଜଳ ହୋଇ ନ ଥିଲା— ମାତ୍ର ତାଙ୍କର ବିବେକ ଉପରେ ପାହାର ପରେ ପାହାର ପଡୁଥିଲା। ଅଥଚ ଦେଶର ନିୟମାନୁସାରେ ବିଗାର୍ ଥୋମାସର ଫାଶି ପାଇବା ଛଡ଼ା ଗତ୍ୟନ୍ତର ନଥିଲା।....

ଏଇ ଦୁଇ ବର୍ଷ ତଳର କଥା। ଦିଲ୍ଲୀ ସହରର ଜଣେ ବଡ଼ ମିଲିଟାରୀ ଅଫିସରଙ୍କର ନିରୀହ ଅଳ୍ପ ବୟସ୍କ ପୁଅ ଝିଅକୁ ହତ୍ୟାକରି ସେଇ ସଇତାନ ଟୋକା ଦି'ଟା ରଙ୍ଗା ଆଉ ବିଲା— ଯୋଉଦିନ ଫାଶି ପାଇଲେ ସେ ଦିନ ସେଇ ନୃଶଂସ ଟୋକା ଦି'ଟାଙ୍କ ପ୍ରତି ମୋର ମନରେ ଘୋର ଘୃଣା ବିଦ୍ୱେଷ ସତ୍ତ୍ୱେ ଶେଷ ଆଡ଼କୁ ରିଚାର୍ଡ଼ ରାଇଟ୍‌ଙ୍କର ସେଇ ବିଗାର ଥୋମାସ୍ କଥା ମନେ ପଡ଼ି କିଛିଦିନ ପାଇଁ ମନ ବଡ଼ ବିଷାଦଗ୍ରସ୍ତ ହୋଇ ଉଠିଥିଲା।...

ଏବେ ତ ପ୍ରତିଦିନ ପ୍ରାୟ ଆମ ସହର ମାନଙ୍କରେ ବିଗାର୍‌ ଥୋମାସ ଭଳିଆ ଗୁଣ୍ଡା ଟୋକାମାନଙ୍କୁ ପୋଲିସ ହାତକଡ଼ି ପକାଇ ବାନ୍ଧି ରାସ୍ତାରେ ଚଲାଇ ଚଲାଇ କୋର୍ଟକୁ ନେଇ ଯାଉଥିବାର ଦୃଶ୍ୟ ପ୍ରାୟ ଇ ଆମ ଆଖିରେ ପଡ଼ୁଛି। ଆଉ ମଧ୍ୟ ତାକୁ ଘେରି ଅଧା ଖୁସି ଅଧା ଦୁଃଖିତ ଏବଂ କିଛି କୁତୂହଳୀ ଓ କିଛି କୌତୁକ ଦେଖାଳି ଅସଂପୃକ୍ତ ଲୋକଗୁଡ଼ିଏ ମଧ୍ୟ ଚାଲୁଥିବାର ଦୃଶ୍ୟ ଆମ ଆଖିରେ ପଡ଼ୁଛି। ସେଇ ଗୁଣ୍ଡା ଟୋକଟିକୁ ହାତକଡ଼ା ପିନ୍ଧାଇ ରାସ୍ତାରେ ଚଲାଇ ଚଲାଇ ନେଲାବେଳେ ପୋଲିସମାନେ ବୁଲା ଗୋରୁ ବା ମାରଣା ଷଣ୍ଢଟିକୁ ବାନ୍ଧିନେଇ ଯାଉଥିବା ଢଙ୍ଗରେ ଓ ଭାବରେ ଚାଲିଥାନ୍ତି। ତେଣେ କଚେରୀରେ ତା' ସପକ୍ଷରେ ଲଢ଼ିବେ ବୋଲି କେତେ ଜଣ ଦରିଦ୍ର ଓକିଲ ଡକାଏତଙ୍କ ଭଳି ଛକି ବସିଥାନ୍ତି ଏବଂ କେସ୍‌ଟିର ବିଚାର କରିବା ପାଇଁ ନିଯୁକ୍ତ ବିଚାରପତିମାନେ ଅଭିଯୁକ୍ତ ଗୁଣ୍ଡାଟି କୋଉ ରାଜନୈତିକ ଦଳର ଆଶୀର୍ବାଦରୁ ଏଭଳି ଗୁଣ୍ଡାମି କରବାକୁ ସାହାସ କରିଆସୁଛି, ତା'ର ଅନୁସନ୍ଧାନରେ ବ୍ୟସ୍ତ ରହିଥାନ୍ତି ଏବଂ ଆମର ରାଜନୈତିକ ନେତାମାନେ ବିଷୟଟିର କେବଳ ରାଜନୈତିକ ଗୁରୁତ୍ୱ ଅଛି କି ନାହିଁ ସେତିକି ପ୍ରତି ସଚେତନ ଥାନ୍ତି।

ଏବଂ ଆମର ସାହିତ୍ୟିକମାନେ କୋଉଠିଥାନ୍ତି ? ସେମାନେ ଇହଲୋକରେ ନ ଥାନ୍ତି କି ପରଲୋକରେ ନଥାନ୍ତି। ସେମାନେ ଥାନ୍ତି ତାଙ୍କର କ୍ଷୁଦ୍ରତମ ନିଜସ୍ୱ ଜଗତରେ– ଯୋଉଠି ସେମାନଙ୍କୁ କେବଳ ଆପଣାର ଛାଇଟି ଛଡ଼ା ଆଉ କିଛି ଦୃଶ୍ୟ ହେଉ ନଥାଏ – କି ଆପଣା ସ୍ୱରର ପ୍ରତିଧ୍ୱନି ଛଡ଼ା ଆଉ କିଛି ଶ୍ରାବ୍ୟ ହେଉ ନ ଥାଏ।

**

# ଆଉ ଥରେ ଯଦି.....

ନିଆଁଖୁଣ୍ଟା ପତ୍ରିକାର ପ୍ରତିଷ୍ଠାତା ଏବଂ "କଣ୍ଟା ଓ ଫୁଲ" ବ୍ୟଙ୍ଗ କାବ୍ୟର କବି ସ୍ୱର୍ଗତ ଗୋଦାବରୀଶ ମହାପାତ୍ର ଥରେ ଗୋଟିଏ ଚମତ୍କାର ବ୍ୟଙ୍ଗ କବିତା ଲେଖିଥିଲେ – "ଆଉ ଥରେ ଯଦି ଉତ୍କଳମଣି ଆସନ୍ତେ ଆଜି।" ତାର ବିଷୟ ବସ୍ତୁ ହେଲା – ବର୍ତ୍ତମାନ ସମୟରେ ଯଦି ଗୋପବନ୍ଧୁ ଦୈବାତ୍ ଫେରିଆସନ୍ତେ, ତେବେ ସେ ଅନେକ ସଂପୂର୍ଣ୍ଣ ନୂତନ ଅଜଣା ଦୃଶ୍ୟସବୁ ଦେଖନ୍ତେ। ଅନେକ ଅଦ୍ଭୁତ ପରିସ୍ଥିତିର ସମ୍ମୁଖୀନ ହୁଅନ୍ତେ— ଏବଂ ଶେଷରେ ଏମିତି ଅଜବ କଥା ସବୁ ତାଙ୍କ କାନରେ ପଡ଼ନ୍ତା– ଯାହାର କୌଣସି ଅର୍ଥ ବୁଝି ନ ପାରି ସେ ଭକୁଆ ମାରି ଯାଆନ୍ତେ ଏବଂ ସେ ସେଗୁଡ଼ିକର ଅର୍ଥ ବା ମର୍ମ ବା ଉଦ୍ଦେଶ୍ୟ ବୁଝିବା ପାଇଁ ବିଭିନ୍ନ ବ୍ୟକ୍ତିଙ୍କୁ ପ୍ରଶ୍ନ କରନ୍ତେ– ଏବଂ ସେମାନେ ଯୋଉ ସବୁ ଉତ୍ତର ଦିଅନ୍ତେ, ତାହା ଶୁଣି ଗୋପବନ୍ଧୁ ଭକୁଆବସ୍ଥାରୁ ମୁକ୍ତି ପାଇ ହଠାତ୍ ମୂର୍ଚ୍ଛା ଯିବାର ଉପକ୍ରମ କରନ୍ତେ।

ଗୋଦାବରୀଶଙ୍କ ସେହି କବିତାର ମର୍ମ ଅନୁସରଣ କରି ମନେ କରାଯାଉ ଯେ, ଉତ୍କଳମଣି ଏବେ ଦିନେ ହଠାତ୍ ଖସି ଆସି କଟକ ବା ଭୁବନେଶ୍ୱରର ଗୋଟିଏ ମୁଖ୍ୟ ରାସ୍ତାରେ ବୁଲୁବୁଲୁ ତାଙ୍କ କାନରେ "କିଳା ପୋତେଇ" ଶବ୍ଦଟି ପଡ଼ିଗଲା। ଏହି ଶବ୍ଦଟି ତାଙ୍କ ସମୟରେ ଲୋକ ମୁଖରେ ପ୍ରଚଳିତ ନ ଥିବାରୁ ଓ ପ୍ରହରାଜଙ୍କ ଭାଷାକୋଷରେ ମଧ୍ୟ ସ୍ଥାନିତ ହୋଇ ନଥିବାରୁ ଗୋପବନ୍ଧୁ ଏହି ସଂପୂର୍ଣ୍ଣ ଶବ୍ଦଟିର ଅର୍ଥ ଜାଣିବାକୁ ବ୍ୟାକୁଳ ହୋଇ କୌଣସି ମନ୍ତ୍ରୀ ବା ପଦସ୍ଥ ଅଫିସରଙ୍କ ଫାଟକ ପାଖେ ଟହଲ ମାରୁଥିବା ଜଣେ ଲୋକଙ୍କୁ ଡାକି କହିଲେ– ଭାଇ! ଏଇ ଯେ ଶୁଣିଲି ଲୋକମୁଖରେ "କିଳାପୋତେଇ" ବୋଲି ଶବ୍ଦଟିଏ, ତାର ଅର୍ଥ କଣ ମୋତେ ଦୟାକରି କହି ପାରିବେ ?

ଲୋକଟି ଗୋପବନ୍ଧୁଙ୍କ ମୁହଁକୁ କ୍ଷଣେ ଚାହିଁ ସାମାନ୍ୟ ହସିଦେଲା। ତା'ପରେ ବେଶ୍ ଧୀର ଭାବରେ ପଚାରିଲା– ତୁମ ଘର କୋଉଠି ? ଗୋପବନ୍ଧୁ କହିଲେ – ପୁରୀ ଜିଲ୍ଲାର ସୁଆଣ୍ଡୋ ଗ୍ରାମରେ।

ଲୋକଟି ପୁଣି ପଚାରିଲା– କଣ କାମ କର ? ଗୋପବନ୍ଧୁ ବିନୀତ ହୋଇ କହିଲେ– ପୂର୍ବେ ବଢ଼ି ମରୁଡ଼ି ଦୁର୍ଭିକ୍ଷାଦି ସମୟରେ ଲୋକଙ୍କୁ ଚୂଡ଼ା ଚାଉଳ ବାଣ୍ଟୁଥିଲି, ଏବେ କିନ୍ତୁ କଣ କରିବି କିଛି ସ୍ଥିର କରି ନାହିଁ। ତେବେ କିଛି ଗୋଟେ କରିବି ନିଶ୍ଚୟ।

କାମ ଖୋଜୁଛି। କିନ୍ତୁ ବର୍ତ୍ତମାନ ମୁଁ ଏଇ 'କିଳା ପୋତେଇ' ଶବ୍ଦଟିର ଅର୍ଥ ବୁଝିବାକୁ ଚାହେଁ, ଦୟାକରି ଜାଣିଛ ଯଦି କହିଦିଅ।

ଲୋକଟି ଗୋପବନ୍ଧୁଙ୍କ କାନ୍ଧରେ ହାତ ରଖି କହିଲା– ଶବ୍ଦଟି ବଡ଼ ଜଟିଳ। ତା'ର ଅର୍ଥ ମଧ ଜଟିଳତର ଏବଂ ତାକୁ କାର୍ଯ୍ୟରେ ପରିଣତ କରିବା ବଡ଼ କଷ୍ଟସାଧ। ତେବେ ସେହି କାର୍ଯ୍ୟଟିକୁ ଠିକ୍‌ଭାବେ କରି ପାରିଲେ ଆଜିକାଲି ଯୁଗରେ ଆଉ କୌଣ କାର୍ଯ୍ୟ କୋଉଠି ଅଟକିବ ନାହିଁ। ତୁମକୁ ମୁଁ ଏହାର ଅଗ୍ର ପଶ୍ଚାତ୍ ବୁଝିବାରେ ସାହାଯ୍ୟ କରିବି– ଆଗ ତୁମ ପକେଟରୁ ପାଞ୍ଚୋଟି ଟଙ୍କା କାଢ଼ି ମୋ ହାତକୁ ଦିଅ।

ଗୋପବନ୍ଧୁ ବିନା ଦ୍ୱିଧାରେ ଟଙ୍କା ପାଞ୍ଚୋଟି ଲୋକଟିର ହାତକୁ ଧରାଇ ଦିଅନ୍ତେ, ଲୋକଟି କହିଲା– ଏଇ ସନ୍ତକଟି ଦଉଛି ନିଅ। ଅମୁକ କଲେଜର ଅମୁକ ପ୍ରଫେସରଙ୍କ ପାଖକୁ ଯାଇ ସନ୍ତକଟି ସହିତ ଟଙ୍କା ଦଶଟି ହାତକୁ ଧରାଇଦେବ। ସେ ତୁମକୁ ''କିଳା ପୋତେଇ'' ଶବ୍ଦଟିର ଅସଲ ଅର୍ଥ ସରଳ କରି ବୁଝାଇ ଦେବେ।

ଗୋପବନ୍ଧୁ ସରଳ ଭାବେ ସନ୍ତକଟି ହାତରେ ଧରି ପଚାରିଲେ– ଆଚ୍ଛା, ଯଦି ମୁଁ ସେହି ପ୍ରଫେସରଙ୍କୁ ନପାଏ– ତେବେ ଆଉ କୋଉ ପ୍ରଫେସରଙ୍କୁ ପଚାରିଲେ ସଠିକ ଉତ୍ତର ପାଇବି ତ?

ଲୋକଟି କହିଲା– ଆରେ ନା–ନା। ଅନ୍ୟ ପ୍ରଫେସରମାନେ ଅସଲି ଅର୍ଥ ନ କହି ''ଭେଜାଲି'' ମିଶାଇ କହିବେ। ତୁମେ ଠକିବ। ସେଥିପାଇଁ ଯେତେ ସମୟ ଲାଗୁ ପରୁଆ କରିବ ନାହିଁ।

ଗୋପବନ୍ଧୁ ''ଭେଜାଲ''ଶବ୍ଦଟି ଶୁଣି ଚମକି ପଡ଼ିଲେ ଏବଂ କହିଲେ– ଏବେ ପୁଣି ଏ ''ଭେଜାଲ'' ଶବ୍ଦଟିର ଅର୍ଥ କ'ଣ ମୋତେ ଆଗ କହନ୍ତୁ।

ଲୋକଟି ନିର୍ବିକାର ଭାବେ କହିଲା– ତା' ହେଲେ ଆଉ ପାଞ୍ଚୋଟି ଟଙ୍କା ପକେଟରୁ କାଢ଼। କହି ଦେବା।

କହିବା ବାହୁଲ୍ୟ ଯେ, ଗୋପବନ୍ଧୁ ତାଙ୍କର ଚିରାଚରିତ ସ୍ୱଭାବାନୁଯାୟୀ ଲୋକଟିକୁ କୁଣ୍ଢାଇ ଧରି ଭୋ ଭୋ କରି କାନ୍ଦି ଉଠି କହିଲେ– ଓଃ! ହେ ଭଗବାନ! ଜାତିର କି ଘୋର ବିପର୍ଯ୍ୟୟ ଘଟିଗଲାଣି ଇତି ମଧ୍ୟରେ?

...କିନ୍ତୁ ଗୋପବନ୍ଧୁ ଜାତୀୟ ବିପର୍ଯ୍ୟୟର ଚୂଡ଼ାନ୍ତ ପରିଚୟ ପାଇଲେ ସେତିକି ବେଳେ, ଯେତେବେଳେ ସେ ଅଧୁନା ବହୁ ପ୍ରଚଳିତ ''ପଲିଟିକ୍ସ'' ଶବ୍ଦଟିର ଆଧୁନିକ ଅର୍ଥଟି ବୁଝି ନ ପାରି ସିଧା ସିଧା ବିଶ୍ୱବିଦ୍ୟାଳୟ ଭିତରକୁ ପଶିଗଲେ ଏବଂ ପଲଟିକାଲ୍ ସାଇନ୍‌ସର ମୁଖ୍ୟ ଅଧ୍ୟାପକଙ୍କୁ ଭେଟି ପଚାରିଲେ– ମହାଶୟ! ପଲିଟିକ୍ସ ଶବ୍ଦଟିର ଆଧୁନିକ ବ୍ୟାଖ୍ୟା କଣ?

ଅଧ୍ୟାପକ କିଛି ସମୟ ବିଷର୍ଣ୍ଣ ଦୃଷ୍ଟିରେ ଗୋପବନ୍ଧୁଙ୍କ ମୁହଁକୁ ଚାହିଁଲେ। ତା'ପରେ ହସି ହସି କହିଲେ— ମହାଶୟ! ପଲିଟିକ୍ସର ଆଧୁନିକ ବ୍ୟାଖ୍ୟା ଜାଣିଥିଲେ ମୁଁ ଏଠି କାହିଁକି ଛେଳି, ମେଣ୍ଢା ଚରାଉ ଥାଆନ୍ତି? ତେବେ, ଆପଣ ଯଦି ପଚାରୁଛନ୍ତି, ବିଶ୍ୱବିଦ୍ୟାଳୟଗତ ଦୃଷ୍ଟିରୁ ଦେଖିଲେ, ଏହା ତତ୍ତ୍ୱତଃ ଏକ ଦର୍ଶନ ଏବଂ ପ୍ରୟୋଗତ ଏକ ବିଜ୍ଞାନ। କିନ୍ତୁ କ୍ଷମତାରେ ଥିବା ନେତାମାନଙ୍କ ପାଇଁ ଏହା ଏକ ପ୍ରକାର ଇନ୍ଦ୍ରଜାଲ— ଏବଂ କ୍ଷମତାରୁ ବହିର୍ଭୂତ ବିରୋଧୀ ଦଳମାନଙ୍କ ପାଇଁ ଏହା କେବଳ ଏକ ଜାଲ।

ଅଧ୍ୟାପକଙ୍କ ବ୍ୟାଖ୍ୟା ଚାତୁରୀ ଗୋପବନ୍ଧୁଙ୍କ ସହଜ ବୁଦ୍ଧିରେ ବୋଧଗମ୍ୟ ନ ହେବାରୁ ସେ ସିଧା ଗୋଟିଏ ଗ୍ରାମକୁ ଯାଇ ନବ ନିର୍ବାଚିତ ଜଣେ ଦୃପ୍ତ ଯୁବ–ସରପଞ୍ଚଙ୍କୁ ପଚାରିଲେ– ବାବୁଜୀ! "ପଲିଟିକ୍ସ" ଶବ୍ଦଟି ଦ୍ୱାରା ତୁମେମାନେ ବର୍ତ୍ତମାନ କ'ଣ ବୁଝୁଛ, ତାହା ମତେ ସରଳ ଭାବେ ବୁଝାଇ ଦେଇ ପାରିବ କି?

ଯୁବ–ସରପଞ୍ଚ ମହୋଦୟ ଗୋପବନ୍ଧୁଙ୍କ ମୁହଁକୁ କଟମଟ କରି ଚାହିଁ କହିଲେ ତୁମକୁ ଦେଖିଲେ ମନେ ହେଉଛି— ତୁମେ ଉତ୍କଳମଣିଙ୍କ ନାତି ବା ଅଣନାତି। ତେବେ ତୁମେ ଯେ ଯାହାର ଯାହା ହୁଅନା କାହିଁକି— ପଲିଟିକସ୍ ଶବ୍ଦଟିର ଅର୍ଥକୁ ସରଳ ଭାବେ ବୁଝିବାକୁ ଯେ ଚାହୁଁଛ— ତାହା ତୁମର ଗୋଟିଏ ଦୂରନ୍ତ ଉଚ୍ଚାକାଂକ୍ଷା ହୋଇପାରେ ବା ସେଇ ଗାନ୍ଧୀ ଗୋପବନ୍ଧୁ ଯୁଗର ଏକ ହାସ୍ୟକର ମୂଢ଼ତା ହୋଇପାରେ। ପଲିଟିକ୍ସର ଅର୍ଥକୁ ସରଳ କରିଦେଲେ, ତାହା ଆଉ ପଲିଟିକ୍ସ୍ ହୋଇ ରହି ପାରେନା।

ଗୋପବନ୍ଧୁଙ୍କ କାନମୁଣ୍ଡା ଏ କଥାଶୁଣି ସେତେବେଳକୁ ଭାଁ ଭାଁ କଲାଣି। ସେ ଥକ୍କା ହୋଇ ଭୂଇଁରେ ବସି ପଡ଼ିଲେ ଏବଂ ମୁଣ୍ଡକୁ ଦୁଇ ହାତରେ ଧରି କ୍ଷୀଣ ସ୍ୱରରେ କହିଲେ— ହାୟ, ହାୟ! ଏ କି କଥା କହୁଛ ତୁମେ ସରପଞ୍ଚ ଆପଣେ! ଗାନ୍ଧୀ ଆମ୍ଭମାନଙ୍କୁ ପଲିଟିକ୍ସ କରିବାକୁ କହି ନଥିଲେ। ସେ ଦେଶ ସେବା କରିବା ପାଇଁ ଆମକୁ ଉଦବୁଦ୍ଧ କରିଥିଲେ।

ସରପଞ୍ଚ ମହୋଦୟ ଦୃପ୍ତ ସ୍ୱରରେ ଏକ ଅଟ୍ଟହାସ୍ୟ କରି କହିଲେ— ଆରେ ବାବୁ! ଗାନ୍ଧୀ କଣ ଗୋଟାଏ? ଇତି ମଧ୍ୟରେ ଦେଶରେ ଚାରି ଚାରିଟା ଗାନ୍ଧୀ ବାହାରିଲେଣି। ଚାରି ଯୁଗରେ ଚାରି ଗାନ୍ଧୀ। ଗାନ୍ଧୀକେ ମତ ଗୋଟିଏ। ତୁମ ଭାଗବତ କଣ କହୁଛି? କୋଉ ଗାନ୍ଧୀର କୋଉ ମତ। ତାହା ମୁଁ ଜାଣିବି କେମନ୍ତେ?

ଏହା ଶୁଣି ଗୋପବନ୍ଧୁ ପୁନର୍ବାର ଭକୁଆ ହୋଇ ପଚାରିଲେ— ତେବେ ସଂକ୍ଷେପରେ ମୋତେ ପଲିଟିକ୍ସର ଆଧୁନିକ ବ୍ୟାଖ୍ୟାଟି ବୁଝାଇ ଦେଇ ପାରିବେ ନାଇଁ?

ସରପଞ୍ଚ ଏଥର ଗମ୍ଭୀର ହୋଇ କହିଲେ– ଆଧୁନିକ ପଲିଟିକ୍ସକୁ କେହି କାହାକୁ ବୁଝାଏ ନାହିଁ। ଏହାକୁ କରିବାକୁ ହୁଏ। କରୁ କରୁ ହୁଏ। ତେବେ ଆଧୁନିକ ପଲିଟିକ୍ସ ହେଲା, ''ଏଠି ଅଛି ସେଠି ନାହିଁ। ଏଠି ଅଛି ସେଠି ଅଛି। ଏଠି ନାହିଁ ସେଠି ଅଛି। ଏଠି ଏଠି। ସେଠି ସେଠି। ଏଠି ସେଠି, ସେଠି ଏଠି। ଏ ସେ, ଏ ସେ। ଠି ଠି, ଠି ଠି।''

କହିବା ବାହୁଲ୍ୟ ଯେ, ଏତକ ଶୁଣୁ ଶୁଣୁ ଗୋପବନ୍ଧୁ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ ଏବଂ ସଙ୍ଗେ ସଙ୍ଗେ ସ୍ୱର୍ଗରୁ ବିଷ୍ଣୁ ଦୂତମାନେ ଆସି ପହୁଞ୍ଚିଯାଇ ଟେକା ଟେକି କରି ନେଇ ଦିବ୍ୟ ବିମାନରେ ଶୁଆଇ ଦେଲେ ଓ ହାବେଳୀ ମାର୍ଗେ ସ୍ୱର୍ଗ ଆଡ଼କୁ ଉଡ଼ିଚାଲିଲେ।

ସେହି ବିଷ୍ଣୁଦୂତମାନେ ବିରକ୍ତରେ କୁହାକୁହି ହେଉ ଥିଲେ– ''ଓଃ, ଆମେ ତେଣେ ଖୋଜୁଛୁ। ବାପେ ଆପଣେ ଆସି ଏଠି ? ଏଭଳି ମହାତ୍ମାଙ୍କୁ ସ୍ୱର୍ଗରେ ରଖିବା ଆମ ପକ୍ଷରେ ବଡ଼ ମୁସ୍କିଲ ବ୍ୟାପାର ହେଲାଣି !! କଣ ଭଲା ଏଥିରେ କରିବ ! ଏ ଲୋକଙ୍କୁ ସ୍ୱର୍ଗ ଭଲ ଲାଗୁ ନାହିଁ–ମଧ୍ୟେ ମଧ୍ୟେ ବାରଂବାର ଓଡ଼ିଶାକୁ ପଳେଇ ଆସୁଛନ୍ତି– ଆଉ ଏମିତି ମୂର୍ଚ୍ଛିତ ହୋଇ ତଳେ ପଡୁଛନ୍ତି ?''



# ଭଣ୍ଡତାର ବଢ଼ି ଯାଉଛି ପ୍ରସାର

ଓଡ଼ିଶାରେ ବହୁବର୍ଷ ହେଲା ପ୍ରତୀକ୍ଷିତ ପଞ୍ଚାୟତ ନିର୍ବାଚନ ନିକଟରେ ସରିଗଲା ଏବଂ ପଞ୍ଚାୟତ ସମିତି ନିର୍ବାଚନ ପରେ ପରେ ହେବାକୁ ଯାଉଛି। ଏତେ ବର୍ଷ ଧରି ଏହି ପଞ୍ଚାୟତ ନିର୍ବାଚନ କାହିଁକି କରାଯାଉ ନଥିଲା – ତାହା ଆମର ସବୁ ଦଳର ରାଜନୈତିକ ନେତୃବୃନ୍ଦଙ୍କୁ କେବଳ ଜଣା। ଜାଣିବା ଶୁଣିବା ଲୋକେ କହୁଛନ୍ତି– ପଞ୍ଚାୟତ ନିର୍ବାଚନରେ ବିଭିନ୍ନ ଦଳର ପ୍ରାର୍ଥୀମାନଙ୍କ ଜୟ ପରାଜୟ ବିଷୟରେ କେହି ନିଶ୍ଚିନ୍ତ ହୋଇ ପାରୁନଥିବାରୁ ଏ ନିର୍ବାଚନକୁ ଗଡ଼ାଇ ଗଡ଼ାଇ ନିଆ ଯାଉଥିଲା। କିନ୍ତୁ ଏକ ବିଶେଷ ପରିସ୍ଥିତିରେ ଏହି ନିର୍ବାଚନ କରାଗଲା। ଏହି ନିର୍ବାଚନରେ କଂଗ୍ରେସ ମୁଖପାତ୍ରମାନଙ୍କ କଥିତ ମତେ କଂଗ୍ରେସ ପ୍ରାର୍ଥୀମାନେ ହିଁ ଶତକଡ଼ା ସତୁରୀ ସ୍ଥାନରେ ଜୟଯୁକ୍ତ ହୋଇଛନ୍ତି ବୋଲି ଶୁଣାଯାଏ।

କଂଗ୍ରେସ ଦଳର ଏହି ସଦର୍ପ ଘୋଷଣା ଶୁଣି ବିରୋଧୀ ଦଳର ନେତାମାନେ ପାଟି କରୁଛନ୍ତି– ଏ ନିର୍ବାଚନରେ ନାନାଦି ଦୁର୍ନୀତି କରାହୋଇଛି। ପରାଜିତ ରାଜନୈତିକ ନେତାମାନେ ନୀତି ଦୁର୍ନୀତିର ଦୁହା ଉଠାଇବା ଏ ଦେଶରେ ନୂଆ ନୁହେଁ। କିନ୍ତୁ ଆଜି ଆଉ କୋଉ ଦଳର ରାଜନୈତିକ ନେତାମାନଙ୍କ ମୁହଁରୁ ନୀତି ଦୁର୍ନୀତିର ବାଣୀ ବିଚାର ଶୁଣିବାକୁ ଆମେ ପ୍ରସ୍ତୁତ ନୋହୁଁ। କାରଣ ସେକ୍ସପିଅରଙ୍କ କଥାକୁ ବଦଳାଇ ଦେଇ ବର୍ତ୍ତମାନ ନିର୍ଦ୍ୱନ୍ଦରେ କହିହେବ– "ଦୁର୍ନୀତି। ତୋରି ନାଁ ହେଲା ରାଜନୀତି।" ଯଦି କଂଗ୍ରେସର ଘୋଷଣାରେ ସତ୍ୟତା ଥାଏ, ତେବେ ବୁଝିବାକୁ ହେବ ଯେ, ଦେଶରେ ବା ରାଜ୍ୟରେ ବିରୋଧୀ ରାଜନୈତିକ ଦଳ ବୋଲି ଆଉ କିଛି ନାହିଁ। କିନ୍ତୁ ଏଭଳି ନିର୍ବାଚନରୁ ତାହା କଣ ସତରେ ପ୍ରମାଣିତ ହେଲା ?

ବର୍ତ୍ତମାନ କେତେକ ଖବର କାଗଜରେ ପ୍ରଶ୍ନ ଉଠାଇଛନ୍ତି – ପଞ୍ଚାୟତ ନିର୍ବାଚନରେ କୌଣସି ଦଳଗତ ରାଜନୀତି ରହିବ ନାହିଁ ବୋଲି ପୂର୍ବରୁ ସ୍ଥିର ହୋଇଥିଲେ ହେଁ, ବିଭିନ୍ନ ରାଜନୈତିକ ଦଳ ବିଜିତ ଓ ପରାଜିତ ପ୍ରାର୍ଥୀମାନଙ୍କୁ ନିଜ ନିଜ ଦଳର ବୋଲି ଘୋଷଣା କରୁଛନ୍ତି କିପରି ?

ଏଠାରେ ପ୍ରଶ୍ନ ଉଠୁଛି– ପଞ୍ଚାୟତ ନିର୍ବାଚନରେ ଦଳୀୟ ରାଜନୀତି ପଶିବ ନାହିଁ ବୋଲି ଯାହା ଲେଖାହୋଇଛି, ତାହା କେବଳ ଲିଖିତ ଆକାରରେ ପଶିବ ନାହିଁ ସିନା କିନ୍ତୁ ମୌଖିକ ଭାବେ କାହିଁକି ପଶିବ ନାହିଁ? ଆମ ଦେଶରେ ଲେଖା ଓ କଥା ଭିତରେ ପ୍ରଭେଦ ରହି ଆସିବାଟା ପରମ୍ପରା ଯେ। ବସ୍ ଭିତରେ ଧୂଆଁ

ପିଇବା ନିଷେଧ ବୋଲି କଣ ଲେଖା ହୋଇନାହିଁ କି? ଅଫିସ ଭିତରେ ଏଠିସେଠି ପାନଛେପ ପକାନ୍ତୁ ନାହିଁ ବୋଲି କ'ଣ ଲେଖା ହୋଇନାହିଁ କି? ତେଣୁ ଲେଖା କଥା କାହିଁକି ଉଠାଉଛ? ଲିଖନେ କି ଦରିଦ୍ରତା? ବଚନେ କି କୃପଣତା?

ସେହିପରି ପଞ୍ଚାୟତ ନିର୍ବାଚନରେ ଦଳୀୟ ନାମ ଲିଖିତାକାରରେ ବ୍ୟବହାର କରାନଯାଉ। ମାତ୍ର ଦଳୀୟ ନାମରେ ପ୍ରଚାର କରିବାର କି ଦୋଷ ଅଛି? ବର୍ତ୍ତମାନ ତ କଲେଜ ୟୁନିୟନ ନିର୍ବାଚନମାନଙ୍କରେ ବି ଦଳୀୟ ଜୟ ପରାଜୟ ଘୋଷଣା କରାଗଲାଣି?

କିନ୍ତୁ ଆମର ଆପତ୍ତି ହେଲା— ଯାହା କରୁଛ ବାବୁ କର— ସ୍ପଷ୍ଟ ଭାବେ କର।— କୋଉଟା ନୀତି କୋଉଟା ଅନୀତି ସେ କଥା ସ୍ଥିର କରିବା କଠିନ। ମାତ୍ର ସତ୍ୟ ଓ ଛଳନା ଭିତରେ ପ୍ରଭେଦଟା ଜକ ଜକ ଦେଖାଯାଉଛି। କେବଳ ଛଳନା ଓ ଶଠତାରେ ଆମେ ଦେଶର ନୈତିକତାକୁ ଧୂଳିସାତ୍ କରିଦେଲୁଣି। କାହିଁକି ଭଲା ଆମର ରାଜନୈତିକ ନେତାମାନେ ଏତେ ଛଳନା କରୁଛନ୍ତି? ଉପରଠୁଁ ତଳଯାଏଁ ରାଜନୈତିକ ନେତାଟିଏ ଦେଖିଲେ ଛଳନାର ଓ ଶଠତାର ପ୍ରତିମୂର୍ତ୍ତିଟିଏ ଭଳି ଲାଗୁଛି। ସମଗ୍ର ଜାତିର ଆତ୍ମାକୁ ଏପରି ଛଳନାର ଜାଲରେ ଯେଉଁମାନେ ଆବଦ୍ଧ କରି ସାରିଲେଣି— ଏହି ପାପ ପାଇଁ ସେମାନଙ୍କୁ ଖୁବ୍ ନିକଟ ଭବିଷ୍ୟତରେ କି ଭୀଷଣ ପ୍ରାୟଶ୍ଚିତ କରିବାକୁ ପଡ଼ିବ— ତାହା ସେମାନେ ଭାବି ପାରୁନାହାନ୍ତି। କାରଣ ଛଳନା ଓ ଶଠତାପୂର୍ଣ୍ଣ ଦୃଷ୍ଟିକୁ ନିର୍ଦ୍ଧାରିତ ଭବିତବ୍ୟର ଦୃଶ୍ୟ କେବେବି ଦେଖାଯାଏ ନାହିଁ।

ଆମର ଉତ୍ତର ପୁରୁଷ ଯୁବଗୋଷ୍ଠୀ, ଆମର ଚତୁରତା, ଆମର ଧୂର୍ତ୍ତତା, ଆମର ଛଳନା ଓ ଆମର ଶଠତାକୁ ଖୁବ୍ ସହଜରେ ଧରି ପାରୁଛନ୍ତି ଏବଂ ସେମାନେ ହିଁ ଦିନେ ଏହାର ଠିକଣା ଜବାବ ଦେବେ।

ସମସ୍ତେ ସବୁ ଜାଣୁଛନ୍ତି। ଅଥଚ ସବୁ ଭଣ୍ଡମାନେ ଏକାଠି ମିଶି ପରସ୍ପର ସହିତ ଭଣ୍ଡାମି କରୁଛନ୍ତି? ଏପରି ଭଣ୍ଡାମି ଓ ଶଠତା କରିବା ଅପେକ୍ଷା ବସ୍ ଭିତରେ ସିଗ୍ରେଟ୍ ଖାଅ, ହୋଟେଲରେ ମଦ ପିଅ, ଯୋଉଠି ଇଚ୍ଛା ସେଠି ଛେପ ପକାଅ, କଳାବଜାରରେ କାରବାର କର, ଲାଞ୍ଚ ରସିପତ୍ ଖାଅ, ପଞ୍ଚାୟତ ନିର୍ବାଚନରେ ଦଳୀୟ ପ୍ରାର୍ଥୀ ଠିଆ କରାଅ, ଯାହା କରୁଛ କର। ସ୍ପଷ୍ଟ ଭାବେ କର। ଲେଖୁଚ ପ୍ରକାରେ— କହୁଛ ଆଉ ପ୍ରକାରେ?

ଜଣେ ମନ୍ତ୍ରୀଙ୍କ କଥା ଶୁଣନ୍ତୁ। ସେ ପ୍ରତିବର୍ଷ କେତେକ ଦୁର୍ନୀତିଗ୍ରସ୍ତ କର୍ମଚାରୀଙ୍କୁ ସସ୍‌ପେଣ୍ଡ ନୋଟିସ୍ ଦେଇଦିଅନ୍ତି। ସେଇ ସସ୍‌ପେଣ୍ଡ୍ କର୍ମଚାରୀମାନେ ରାତିରେ ଆସି ମନ୍ତ୍ରୀଙ୍କୁ ଟଙ୍କା—ଥଳୀ ବଢ଼ାଇ ଦିଅନ୍ତି। ତାପରେ ସେମାନଙ୍କୁ ବିଚାର କରି ମୁକ୍ତି ଦିଆଯାଏ ଏବଂ ଅଳ୍ପଦିନ ଭିତରେ ଉଚ୍ଚ ପାହିଆକୁ ପ୍ରମୋସନ୍ ଦିଆଯାଏ। ସେହି ବଡ଼ କ୍ଷେତ୍ରକୁ ଯାଇ ସେଇ ଦୁର୍ନୀତିଗ୍ରସ୍ତ କର୍ମଚାରୀମାନେ ଆହୁରି ବେଶୀ ଦୁର୍ନୀତି କରନ୍ତି।

ମନ୍ତ୍ରୀ ପୁଣି ଥରେ ସେମାନଙ୍କୁ ସସ୍‌ପେଣ୍ଡ କରି ଦିଅନ୍ତି। ଏଥର ପୁଣି ସେମାନେ ରାତି ଅଧରେ ମନ୍ତ୍ରୀଙ୍କ ଘରକୁ ଆସି ବଡ଼ କ୍ଷେତ୍ରରୁ ଆହରିତ ବଡ଼ ଟଙ୍କାଥଳି ଧରାଇ ଦିଅନ୍ତି। ତା'ପରେ ମନ୍ତ୍ରୀ ଘରକୁ ଆସି ବଡ଼ କ୍ଷେତ୍ରରୁ ଆହରିତ ବଡ଼ ଟଙ୍କାଥଳି ଧରାଇ ଦିଅନ୍ତି। ତା'ପରେ ମନ୍ତ୍ରୀ ତାଙ୍କୁ ବିଚାର କରି ମୁକ୍ତି ଦିଅନ୍ତି ଓ କିଛିଦିନ ପରେ ପୁଣି ଆହୁରି ବଡ଼ କ୍ଷେତ୍ରକୁ ପ୍ରମୋସନ୍ ଦିଅନ୍ତି। ପୁଣି ସେମିତି ଚାଲେ। ଦୁର୍ନୀତିଗ୍ରସ୍ତ ଓ ସସ୍‌ପେଣ୍ଡ ହୋଇଥିବା କର୍ମଚାରୀ ଜାଣନ୍ତି ଯେ, ମନ୍ତ୍ରୀ ମହୋଦୟ ଭଣ୍ଡଶିରୋମଣି ଏବଂ ମନ୍ତ୍ରୀ ମହୋଦୟ ମଧ ଜାଣନ୍ତି ଯେ ଦୁର୍ନୀତିଗ୍ରସ୍ତ କର୍ମଚାରୀଟି ମଧ ଭଣ୍ଡ ଚୂଡ଼ାମଣି।

ସାରା ଦେଶଟାରେ ବର୍ତ୍ତମାନ ଏଇ ଭଣ୍ଡାମି ଚାଲିଛି। ଧର୍ମ ନାମରେ ଭଣ୍ଡାମି– ରାଜନୀତିରେ ଭଣ୍ଡାମି– ଶିକ୍ଷା କ୍ଷେତ୍ରରେ ଭଣ୍ଡାମି – ବିବାହରେ ଭଣ୍ଡାମି – ଜନ୍ମରେ ଭଣ୍ଡାମି – ମୃତ୍ୟୁରେ ବି ଭଣ୍ଡାମି।

ଏପରି ଜଣାଶୁଣା ବିଶିଷ୍ଟ ବ୍ୟକ୍ତିଙ୍କୁ ଆମେ ଜାଣୁ, ଯେ କି ସଭାରେ ଠିଆହୋଇ, ଯେଉଁ ମନ୍ତ୍ରୀ କ୍ଷମତାରେ ଇନ୍ଦ୍ର, ବିଦ୍ୟାରେ ଗଣେଶ, ରୂପରେ କାର୍ତ୍ତିକ ବୋଲି ଅନର୍ଗଳ ପ୍ରଶଂସାବାଦ କରିଥାନ୍ତି, – ସେ ଠିକ୍ ସଭାସ୍ଥଳୀରୁ ବାହାରି ଆସିଲା ପରେ ସେହି ମନ୍ତ୍ରୀଙ୍କ ବିରୋଧରେ ଯାବନ୍ତୁ କୁତ୍ସାବାଦ କରିଥାନ୍ତି। ପ୍ରଶ୍ନ ହେଲା– ସତକୁ ସତ ଯଦି ତୁମେ ଜଣକୁ ବା ତା'ର କାର୍ଯ୍ୟକଳାପକୁ ପସନ୍ଦ କରୁନାହଁ– ତା'ହେଲେ ତାଙ୍କୁ ନିନ୍ଦା କର ବା ତାଙ୍କ ସମ୍ବନ୍ଧେ ଅନ୍ୟକିଛି ବିଶେଷ କାରଣରୁ କିଛି ନ କହି ଚୁପ ରହ। କିନ୍ତୁ ଭଣ୍ଡତା କାହିଁକି ?

ଭଣ୍ଡ ଲୋକମାନେ ଅଧମ ଶ୍ରେଣୀର ଲୋକ ଏବଂ ସେହିମାନଙ୍କ ଦ୍ୱାରା ଦେଶ ପୂର୍ଣ୍ଣ ହୋଇଗଲାଣି। ଏଭଳି ଅବସ୍ଥାକୁ ଲକ୍ଷ୍ୟ କରି ରାଧାନାଥ ଦରବାର କାବ୍ୟରେ ଲେଖିଥିଲେ–

''ଅସାର ଝଟକ ହୋଇଅଛି ସାର,
ଭଣ୍ଡତାର ବଢ଼ି ଯାଉଛି ପ୍ରସାର।''

**

# ବୈମାତୃକ ନା ବୈପିତୃକ

ପୁରୁଷ ପ୍ରଧାନ ସମାଜରେ କେତେକ ନୀତିବାକ୍ୟ ଓ କେତେକ ଧାରଣା ବହୁ ବର୍ଷ ଧରି ଚଳିଆସିଛି। ସେଗୁଡ଼ିକ ଭିତରୁ ପ୍ରାୟ ଶତକଡ଼ା ଅନେଶତ ଭାଗ ବର୍ତ୍ତମାନ ଅଚଳ ହୋଇଗଲାଣି– ତା'ମାନେ ସେଗୁଡ଼ିକର ସତ୍ୟତା ଓ ବାସ୍ତବତା ବର୍ତ୍ତମାନ ଅପ୍ରମାଣିତ ହୋଇଗଲାଣି।

ଧରନ୍ତୁ ଏଇ 'ବୈମାତୃକଭାବ' କଥାଟି। ପିଲାପିଲି ଥାଇ ପ୍ରଥମ ସ୍ତ୍ରୀ ମରିଗଲେ ପୁରୁଷ ଯଦି ଆଉ ଗୋଟିଏ ସ୍ତ୍ରୀ ବିବାହ କରେ, ତେବେ ସେ ସ୍ତ୍ରୀ ଲୋକଟି ହେଲା ପ୍ରଥମ ମୃତ ସ୍ତ୍ରୀଟିର ପିଲାମାନଙ୍କ ସାବତ ମା' ବା ବିମାତା। ଅଥବା ଜଣେ ପୁରୁଷର ଏକାଧିକ ପତ୍ନୀ ଥିଲେ– ଗୋଟିଏ ପତ୍ନୀ ଅନ୍ୟ ପତ୍ନୀର ପିଲାପିଲିଙ୍କ ପକ୍ଷରେ ବିମାତା।

ଏବଂ ଏକଥା ପୁଣି ଧ୍ରୁବ ବୋଲି ଚଳିଆସୁଛି ଯେ, ବିମାତାମାନେ ସେମାନଙ୍କ ସପତ୍ନୀଙ୍କ ପିଲାପିଲିଙ୍କ ପ୍ରତି ବଡ଼ ନିର୍ମମ ଓ ନିଷ୍ଠୁର ବ୍ୟବହାର କରିଥାନ୍ତି। କିନ୍ତୁ ନିରପେକ୍ଷ ଭାବେ ଦେଖିଲେ ସବୁ କାଳର ବାସ୍ତବତାଟା ହେଲା- ବିମାତା ଓ ତା'ର ସପତ୍ନୀର ପୁତ୍ରକନ୍ୟାଙ୍କ ଭିତରେ ସମ୍ପର୍କଟି ବହୁ ବହୁ କାରଣରୁ ଯେପରି ତିକ୍ତ ହୋଇପାରେ– ସେହିପରି ଖୁବ୍ ମଧୁର ମଧ ହୋଇପାରେ। ଅନେକ କ୍ଷେତ୍ରରେ ବିମାତାମାନେ ବରଂ ଜନ୍ମିତ ମାତାମାନଙ୍କଠାରୁ ଅଧିକ ବାତ୍ସଲ୍ୟଭାବ ପ୍ରଦର୍ଶନ କରିଥିବାର ପ୍ରମାଣ ମିଳିଥାଏ ଏବଂ ଜନ୍ମ କଲା ସ୍ତ୍ରୀ ଲୋକଟିର ତା'ର ସନ୍ତାନ ପ୍ରତି ଯେଉଁ ସ୍ନେହ ମମତାକୁ ଆମେ ସାଧାରଣତଃ ପବିତ୍ର ବାତ୍ସଲ୍ୟ ପ୍ରେମ ବୋଲି କହିଥାଉଁ, ତାହା ପଛରେ ମୁଖ୍ୟତଃ ଏକ ଜାନ୍ତବ ପ୍ରାକୃତିକ ଅଜ୍ଞାନ ମୋହ ବ୍ୟତୀତ ଆଉ କିଛି ନ ଥାଏ। ଖୁବ୍ କମ୍ କ୍ଷେତ୍ରରେ ହିଁ ଜନ୍ମିତ ମା' ଟିଏ ଗଭୀର ବିଶୁଦ୍ଧ ବାତ୍ସଲ୍ୟ ପ୍ରେମର ଅଧିକାରିଣୀ ହୋଇଥାଏ।

ଆମ ଶାସ୍ତ୍ର ପୁରାଣ ଓ ଗଳ୍ପ ଉପନ୍ୟାସରେ ଆମେ ଏମିତି ସବୁ ଭାବମୟୀ ନାରୀଙ୍କ ପରିଚୟ ପାଉଛୁ– ଯେଉଁମାନେ କି ନିଜର ଜନ୍ମିତ ସନ୍ତାନ ସନ୍ତତି ଥିବା ସତ୍ତ୍ୱେ ବା ନ ଥାଇ ମଧ ସପତ୍ନୀର ପିଲାପିଲିଙ୍କ ପ୍ରତି ଅପୂର୍ବ ସ୍ନେହ ମମତା ଢାଳି ଦେଇଥାନ୍ତି। ଯଶୋଦାଙ୍କର କୃଷ୍ଣଙ୍କ ପ୍ରତି ଓ କୁନ୍ତୀଙ୍କର ନକୁଳ ସହଦେବଙ୍କ ପ୍ରତି ଯୋଉ ବାତ୍ସଲ୍ୟ ମମତା ତାହା ନିଜଠାରୁ ଜନ୍ମିଥିବା ପିଲାମାନଙ୍କଠାରୁ କମ୍ ନା ଅଧିକ ?

ନିଷ୍ଠୁରତା, ନିର୍ମମତା, ଅସହିଷ୍ଣୁତା, ହିଂସା, ଈର୍ଷା ଓ ପକ୍ଷପାତିତାଦି ଦୁର୍ଗୁଣଗୁଡ଼ିକୁ କେବଳ ବିମାତା ଉପରେ ଲଦି ଦେବାର କୌଣସି ଯୁକ୍ତିଯୁକ୍ତ ହେତୁ ନାହିଁ ଏବଂ ସେହି ସେହି ଦୁର୍ଗୁଣଗୁଡ଼ିକ ଯେଉଠି ଦେଖାଯିବ, ସେଠି ବୈମାତୃକ ଶବ୍ଦଟି ମଧ ବ୍ୟବହାର କରାଯିବାର କୌଣସି କାରଣ ନାହିଁ। ଖବର କାଗଜରେ ବାହାରିଥିବା ସମ୍ପାଦକଙ୍କୁ ପତ୍ର ବିଭାଗରେ "ମୁଖ୍ୟମନ୍ତ୍ରୀଙ୍କର ଅମୁକ ଅଞ୍ଚଳ ପ୍ରତି ବୈମାତୃକ ନୀତି" ଭଳି ବାକ୍ୟଟି ତେଣୁ ଏଇ ବୁଝାମଣାରେ ପୂରା ନିରର୍ଥକ। ....ସେଦିନ ଜଣେ ବିଶିଷ୍ଟ ମହିଳାଙ୍କ ବୈଠକଖାନାରେ ବସି କେତେକ ବିଶିଷ୍ଟ ବୁଦ୍ଧିଜୀବୀ ଏଇ

ପ୍ରସଙ୍ଗ ଉପରେ ଆଲୋଚନା କରୁଥିଲେ। ଭଦ୍ରମହିଳା ହସି ହସି ଅଥଚ ଖୁବ୍ ସଂପୃକ୍ତ ସଚେତନ ଅସହିଷ୍ଣୁତାର ସ୍ୱରରେ ଅଭିଯୋଗ କଲେ–

''ଆଚ୍ଛା ! ଆପଣମାନେ ସବୁବେଳେ ସବୁ କ୍ଷେତ୍ରରେ ନିଷ୍ଠୁରତା, ଈର୍ଷା ଓ ପକ୍ଷପାତିତା ଦୁର୍ଗୁଣଗୁଡ଼ିକ ପାଇଁ ବୈମାତୃକ ଶବ୍ଦଟି କାହିଁକି ନିର୍ବିଚାରରେ ବ୍ୟବହାର କରନ୍ତି ? ଏପରିକି ଜଣେ ପୁରୁଷ ମଧ୍ୟ ଯଦି ଏପରି ଦୁର୍ଗୁଣ ଦେଖାଉଥାଏ,– ତେବେ ବି ଆପଣମାନେ କହନ୍ତି ''ବୈମାତୃକ ଭାବ''। ଆଚ୍ଛା– ''ବୈପିତୃକ'' ଶବ୍ଦଟି ବ୍ୟବହାର କଲେ କିପରି ହୁଅନ୍ତା ? ବିମାତା ବା ସାବତ ମା' ଯେମିତି ଅଛନ୍ତି – ବିପିତା ବା ସାବତ ବାପା ସେମିତି ନାହାନ୍ତି କି ?

ମୁଁ କହିଲି– ଆମ ସମାଜରେ ଜଣେ ସ୍ତ୍ରୀ ଲୋକ ଯେତେବେଳେ ଏକାଧିକ ସ୍ୱାମୀର ଅଧିକାରିଣୀ ହେବାର ସୁଯୋଗ ପାଇବ, ସେତେବେଳେ ଯାଇ ବିପିତା ବା ସାବତ ବାପାମାନଙ୍କର ଅଭ୍ୟୁଦୟ ଘଟିବ।

ଭଦ୍ର ମହିଳା ସାମାନ୍ୟ ବିରକ୍ତ ସ୍ୱରରେ କହିଲେ–

ଏମିତି କଣ ହେଉନାହିଁ ଯେ, ସନ୍ତାନ ସନ୍ତତି ଥିବା ବିଧବାଟିଏ ପୁନର୍ବିବାହ କରୁଛି– ଏବଂ ତାର ଦ୍ୱିତୀୟ ସ୍ୱାମୀଟି କିଛି କିଛି ବୈପିତୃକଭାବ ଦେଖାଉଛି ?

ମୁଁ କହିଲି – ସେପରି ଉଦାହରଣ କେତୋଟି ଯାଗାରେ ନିଶ୍ଚୟ ଦେଖାଯାଉଛି। ଏପରି କ୍ଷେତ୍ରରେ ପୁରୁଷଟି ତା' ସ୍ତ୍ରୀର ପୂର୍ବ ସନ୍ତାନମାନଙ୍କୁ ଭୟଙ୍କର ଘୃଣା କରେ।

ଭଦ୍ରମହିଳା କହିଲେ– ତା'ହେଲେ ବୈପିତୃକ ଭାବଟି ମଧ୍ୟ ନିଶ୍ଚୟ ରହିଛି। କିନ୍ତୁ ଅଭିଧାନରେ ଅଛି କି ନାହିଁ ମୁଁ ଜାଣେନା। କିନ୍ତୁ ଆପଣମାନେ ଆଜିଠାରୁ ''ବୈମାତୃକ'' ଶବ୍ଦଟି ସହିତ ''ବୈପିତୃକ'' ଶବ୍ଦଟି ମଧ୍ୟ ସ୍ଥଳ ବିଶେଷରେ ବ୍ୟବହାର କରନ୍ତୁ।

ମୁଁ ଏବଂ ଅନ୍ୟ ବନ୍ଧୁଗଣ ତାଙ୍କ କଥାକୁ ହସି ହସି ସ୍ୱୀକାର କଲୁ। କିନ୍ତୁ ଆମ୍ଭମାନଙ୍କ ମଧ୍ୟରୁ ଜଣେ ପ୍ରବୀଣ ସାହିତ୍ୟିକ ଆଉ ଏକ ପ୍ରାସଙ୍ଗିକ ପ୍ରଶ୍ନ ଉଠାଇଲେ–

ଆଚ୍ଛା– ଆପଣଙ୍କ ମତ କଣ ? ଜଣେ ବିବାହିତା ସ୍ତ୍ରୀର ଯଦି ଅନ୍ୟ ଜଣେ ପ୍ରେମିକ ଥାଆନ୍ତି– ତେବେ ସେ ତାର ପ୍ରେମିକର ପୁଅଝିଅମାନଙ୍କୁ ଭଲ ପାଇପାରିବ ନା ଘୃଣଶ କରିବ ?

ଭଦ୍ରମହିଳା କହିଲେ – ''ପ୍ରେମିକ ପ୍ରେମିକା'' ଇତ୍ୟାଦି ଶବ୍ଦଗୁଡ଼ିକ ଯଦି ଆପଣ ଖୁବ୍ ଗଭୀର ଭାବେ ବ୍ୟବହାର କରୁଥାନ୍ତି– ତେବେ ମୋର ଧାରଣା– ସେ କ୍ଷେତ୍ରରେ ସେ ସେମାନଙ୍କୁ ଜୋଇଁ ବା ବୋହୂ ରୂପେ ପାଇଲେ ଖୁବ୍ ବେଶୀ ଖୁସି ହେବ ଏବଂ ଏଭଳି କ୍ଷେତ୍ରରେ ପୁରୁଷଟି ମଧ୍ୟ ତା'ର ପ୍ରେମିକାର ପୁଅ ବା ଝିଅକୁ ଜୋଇଁକି ବୋହୁ ରୂପେ ପାଇଲେ ନିଜକୁ ଖୁବ୍ ଧନ୍ୟ ମନେ କରିବ। ଏସବୁ କ୍ଷେତ୍ରରେ ବୈମାତୃକ ଭାବର ପ୍ରଶ୍ନ ଉଠେ ନାହିଁ। କିନ୍ତୁ ସବୁ ନିର୍ଭର କରୁଛି - ଏଇ ''ପ୍ରେମ, ପ୍ରେମିକା ଓ ପ୍ରେମିକ'' ପ୍ରଭୃତି ବ୍ୟାପାରଗୁଡ଼ିକ ଉପରେ। ବିବା.. ବିବାହ ଏଠି ଅବାନ୍ତର।

❋❋

# ଦେବଦାସୀଙ୍କ ଗଣବିବାହ

ଇତିମଧ୍ୟରେ କର୍ଣ୍ଣାଟକ ରାଜ୍ୟର ବିଜାପୁର ଜିଲ୍ଲାର ମହାଲିଙ୍ଗମ୍ପୁର ସହରରେ ଗୋଟିଏ ଚମତ୍କାର ବିବାହ ଉତ୍ସବ ଅନୁଷ୍ଠିତ ହୋଇଯାଇଛି। ଏହି ବିବାହ ଉତ୍ସବକୁ "ଗଣ ବିବାହ" କୁହାଯାଉଛି। କିନ୍ତୁ ଏହି "ଗଣ ବିବାହ" ଉତ୍ସବର ବିଶେଷତ୍ୱ ହେଲା– ମହାଲିଙ୍ଗମ୍ପୁର ସହରର ଅଧିଷ୍ଠାତ୍ରୀ ଦେବୀ ୟେଲାମ୍ମାଙ୍କ ନିକଟରେ ସମର୍ପିତା ହୋଇଥିବା ସତାବନ ଜଣ ଦେବଦାସୀଙ୍କୁ ସମ୍ପୂର୍ଣ୍ଣ ସାମାଜିକ ରୀତିରେ ସମାଜର ପ୍ରତିଷ୍ଠିତ ପରିବାରର ଯୁବକମାନେ ସ୍ୱେଚ୍ଛାରେ ବିବାହ କରିଛନ୍ତି। ଏହି ବିବାହର ଆୟୋଜକ ହେଉଛନ୍ତି ପୁଣି ଗଦାଗ୍ରର ମହାସ୍ୱମୀଜୀ ଶ୍ରୀ ତେଣ୍ଟାଚାର୍ଯ୍ୟ ଓ ଇଲ୍‌କାଳର ମହନ୍ତ ମହାରାଜ ଶ୍ରୀ ବିଜୟ ସ୍ୱାମୀଜୀ। ଏଇ ଧର୍ମାଚାର୍ଯ୍ୟ ଦ୍ୱୟ ଗତ କେତେବର୍ଷ ଧରି ହିନ୍ଦୁଧର୍ମ ଅନ୍ତର୍ଗତ ବହୁ ପତିତା ମହିଳାଙ୍କର ପୁନରୁଦ୍ଧାର କରି ସେମାନଙ୍କୁ ସମାଜରେ ପ୍ରତିଷ୍ଠିତ କରିବା ଲାଗି ବହୁତ ସାଧସାଧନ କରିଆସୁଛନ୍ତି। ଖାଲି ସେତିକି ନୁହେଁ– କର୍ଣ୍ଣାଟକ ରାଜ୍ୟର ଅବହେଳିତ ଓ ଉଚ୍ଚବର୍ଣ୍ଣର ଲୋକମାନଙ୍କ ଦ୍ୱାରା ଅପମାନିତ ଓ ଅତ୍ୟାଚାରିତ ହରିଜନମାନଙ୍କୁ ଯଥୋଚିତ ଧାର୍ମିକ ଓ ସାମାଜିକ ମର୍ଯ୍ୟାଦା ଦେବା ଦିଗରେ ମଧ୍ୟ ଏମାନେ ବହୁ କାର୍ଯ୍ୟ କରିଛନ୍ତି ଏବଂ ଅର୍ଥନୈତିକ ଓ ସାମାଜିକ ଦୁରାବସ୍ଥା ଯୋଗୁଁ ଯେଉଁ ଆଦିବାସୀ ଓ ହରିଜନମାନେ ନିରୂପାୟ ଭାବେ ଧର୍ମାନ୍ତରିତ ହୋଇଥିଲେ, ସେମାନଙ୍କୁ ପୁନଶ୍ଚ ସ୍ୱଧର୍ମକୁ ଫେରାଇ ଆଣି ସେମାନଙ୍କୁ ଅର୍ଥନୈତିକ ଓ ସାମାଜିକ ସଂସ୍ଥିତି ଓ ମର୍ଯ୍ୟାଦା ଦେବାରେ ମଧ୍ୟ ଏହି ଧର୍ମାଚାର୍ଯ୍ୟ ଦ୍ୱୟ ଯେଉଁ ପଦକ୍ଷେପମାନ ଗ୍ରହଣ କରିଛନ୍ତି – ତାହା ସମଗ୍ର ଦେଶରେ ଅତୁଳନୀୟ।

କର୍ଣ୍ଣାଟକରେ ଓ ଦକ୍ଷିଣ ଭାରତର କେତେକ ସ୍ଥାନରେ ଆଜି ସୁଦ୍ଧା ଦେବଦାସୀ ପ୍ରଥା ପ୍ରଚଳିତ ରହିଛି। ଏହି ଦେବଦାସୀମାନେ ସାଧାରଣତଃ ଅର୍ଥନୈତିକ ଦୁର୍ଗତି ଭୋଗୁଥିବା ଦରିଦ୍ର ଶ୍ରେଣୀରୁ ଆସିଥାନ୍ତି। କର୍ଣ୍ଣାଟକର ୟେଲ୍ଲାମା ଦେବୀଙ୍କ ମନ୍ଦିରରେ ପୁଣି ଯେଉଁ ଦେବଦାସୀମାନେ ଥିଲେ– ସେମାନେ ପ୍ରାୟ ଅଧିକାଂଶ ହରିଜନ ଶ୍ରେଣୀୟା।

ଦେବଦାସୀ ପ୍ରଥା ପୂର୍ବେ ଏକ ମହତ୍ ଆଦର୍ଶ ଉପରେ ପ୍ରତିଷ୍ଠିତ ହୋଇଥିଲା। ଅନେକ ସମୟରେ ଏକ ବିଶେଷ ଆଧ୍ୟାତ୍ମ୍ୟ ଉପଲବ୍ଧି ବା ଭାବାବେଗ ଦ୍ୱାରା ଅନୁପ୍ରାଣିତ ହୋଇ କେହି କେହି କୁମାରୀ–କନ୍ୟା ସଂସାର ପ୍ରତି ବିତସ୍ପୃହ ହୋଇ ସେମାନଙ୍କର ଇଷ୍ଟଦେବ ବା ଦେବୀଙ୍କ ନିକଟରେ ନିଜ ଜୀବନକୁ ଆମୃତ୍ୟୁ ସମର୍ପଣ କରିଥିଛନ୍ତି। ଏହି କନ୍ୟାମାନେ ଗୋଟିଏ ଦୃଷ୍ଟିରୁ ସନ୍ନ୍ୟାସିନୀ। ଏମାନେ ନିଜର ଇଷ୍ଟଦେବଙ୍କୁ ମନେ ମନେ ନିଜର ସ୍ୱମୀରୂପେ ବରଣ କରନ୍ତି ଓ ବିବାହ କରନ୍ତି। ମଣିଷ ସଙ୍ଗେ ସମସ୍ତ ସମ୍ପର୍କ ଛିନ୍ନ କରନ୍ତି ଏବଂ ସାରା ଜୀବନ କଠୋର ବ୍ରହ୍ମଚର୍ଯ୍ୟ ଓ

କୃଚ୍ଛ୍ରବ୍ରତ ସାଧନାରେ କଟାଇ ଦିଅନ୍ତି । ଏହି ସବୁ ଦେବଦାସୀମାନଙ୍କର ଅଭିଳାଷ ଥିଲା– ମଣିଷ ସହିତ ସଂସର୍ଗ ପରିତ୍ୟାଗ କଲେ ହିଁ, ଦେବତାଙ୍କ ସହିତ ସମ୍ପର୍କ ସମ୍ଭବ ହୁଏ । ମୋଟ ଉପରେ ଦେବଦାସୀ ପ୍ରଥା ମୂଳରେ ଏକ କଠୋର ତପଶ୍ଚର୍ଯ୍ୟାର ପ୍ରେରଣା ଥିଲା । ମାତ୍ର ଏହି ତପଶ୍ଚର୍ଯ୍ୟା ଭିତରେ ହିଁ ଇଷ୍ଟଦେବତାଙ୍କ ସହିତ ଅଧ୍ୟାତ୍ମସ୍ତରରେ ଏକ ମହାନନ୍ଦମୟ ମିଳନର ଉପଲବ୍ଧି ମଧ୍ୟ ମିଳୁଥିଲା ।

ମାତ୍ର ଆଜି ଦେବଦାସୀ ପ୍ରଥାର ସେହି ମୂଳ ଅଭୀପ୍ସା ଏବଂ ଉପଲବ୍ଧି ଆଉ ନାହିଁ । ବରଂ ଏହା ଏକ କୁସଂସ୍କାରରେ ଏବଂ ବ୍ୟଭିଚାରରେ ପରିଣତ ହୋଇଛି । ଏହା ବର୍ତ୍ତମାନ ସ୍ୱେଚ୍ଛାମୂଳକ ନ ହୋଇ ଏକ ପ୍ରକାର କୁସଂସ୍କାରଗତ ଓ ଅର୍ଥନୈତିକ ଦୁର୍ଗତିରୁ ରକ୍ଷା ପାଇବାର ଉପାୟ ସ୍ୱରୂପ ହୋଇଛି । ଦକ୍ଷିଣ ଭାରତର ବହୁ ମନ୍ଦିରର ଦେବଦାସୀମାନେ ପ୍ରକାଶ୍ୟରେ ଗଣିକା–ବୃତ୍ତି ଅବଲମ୍ବନ କରି ଚଳୁଛନ୍ତି ।

କିନ୍ତୁ ଅତି ଆନନ୍ଦର କଥା ଯେ, କର୍ଣ୍ଣାଟକର କେତେକ ଆଧୁନିକ ଧର୍ମାଚାର୍ଯ୍ୟ ଏହି ପ୍ରଥାର ସମୂଳ ବିଲୋପ ପାଇଁ ଖୁବ୍ ଲାଗି ପଡ଼ିଛନ୍ତି ଏବଂ କର୍ଣ୍ଣାଟକ ସରକାର ମଧ୍ୟ ଏ ଦିଗରେ ଏମାନଙ୍କୁ ବେଶ୍ ସାହାଯ୍ୟ କରୁଛନ୍ତି । ମହାଲିଙ୍ଗମ୍‌ପୁରରେ ପୂର୍ବୋକ୍ତ ଧର୍ମାଚାର୍ଯ୍ୟ ଦ୍ୱୟ ଯେଉଁ ସତାବନ ଜଣ ଦେବଦାସୀଙ୍କୁ ହିନ୍ଦୁ ରୀତିରେ ବୈଦିକ ବିବାହରେ ନିୟୋଜିତ କରିଦେଲେ– ସେଥିରେ କର୍ଣ୍ଣାଟକ ସରକାରଙ୍କର ମଧ୍ୟ ବେଶ୍ ସହଯୋଗ ରହିଛି । ଦେବଦାସୀ ପ୍ରଥା ଭଳି ସାମାଜିକ କଳଙ୍କ ଦୂର କରିବା ପାଇଁ କର୍ଣ୍ଣାଟକ ସରକାର ବହୁ ଯୋଜନା କଲେଣି । କର୍ଣ୍ଣାଟକର ସମାଜ କଲ୍ୟାଣ ବିଭାଗର ମିଳିତ ଆନୁକୂଲ୍ୟରେ ମଧ୍ୟ ମହାଲିଙ୍ଗମ୍ ପୁରର ଏହି ଗଣବିବାହ ଉତ୍ସବଟି ସମ୍ପନ୍ନ ହୋଇଥିଲା । ରାଜ୍ୟ ସମାଜ ମଙ୍ଗଳ ବିଭାଗ ପ୍ରତ୍ୟେକ ବିବାହିତ ଦେବଦାସୀ ଦମ୍ପତିଙ୍କୁ ଜୀବନର ଅୟମାରମ୍ଭ ନିମନ୍ତେ ତିନି ହଜାର ପର୍ଯ୍ୟନ୍ତ ଟଙ୍କା ସାହାର୍ଯ୍ୟ କରିଥିଲେ ।

ଆମ ଓଡ଼ିଶାରେ କେବଳ ଶ୍ରୀ ଜଗନ୍ନାଥଙ୍କ ମନ୍ଦିରରେ ଦେବଦାସୀ ପ୍ରଥା, ମାହାରୀ ପ୍ରଥାର ପ୍ରଚଳନ ଥିଲା । ପୂର୍ବେ ମାହାରୀମାନେ ରାତି ଅଧରେ ଜଗନ୍ନାଥଙ୍କ ଶେଷ ନୀତି ବେଳରେ ବଡ଼ ଶିଙ୍ଗାର ବେଶ ପରେ ଜୟଦେବଙ୍କ ଗୀତଗୋବିନ୍ଦ ଗାନ କରି ନୃତ୍ୟ କରୁଥିଲେ ଓ ତା' ପରେ ପହୁଡ଼ ପଡୁଥିଲା । ଏହି ଦେବଦାସୀମାନେ ଚନ୍ଦନ ଯାତ୍ରା ବେଳେ ଚାପ ଉପରେ ମଧ୍ୟ ନୃତ୍ୟ କରୁଥିଲେ । ମାତ୍ର ଦୁଃଖର କଥା ଯେ, ଆଜି ସେ ପ୍ରଥା ଶ୍ରୀମନ୍ଦିରରୁ ଉଠିଯାଇଛି ଛାଏଁ ଛାଏଁ । ଆଜି ଶ୍ରୀମନ୍ଦିରରେ ଆଉ ମାହାରୀ ନାହାନ୍ତି ।

କିନ୍ତୁ ଏହା ସତ୍ତ୍ୱେବି, ଓଡ଼ିଶାରେ ପତିତା ଓ ଅସହାୟା ନାରୀମାନଙ୍କ ସଂଖ୍ୟା ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି । ଆମର ସମାଜ ମଙ୍ଗଳ ବୋର୍ଡ଼ ଏହି ଅସହାୟା ଓ ପତିତା ନାରୀମାନଙ୍କୁ ସାମାଜିକ ଓ ଅର୍ଥନୈତିକ ମର୍ଯ୍ୟାଦା ଓ ନିରାପତ୍ତା ଦେବା ଦିଗରେ କ'ଣ କରୁଛନ୍ତି– ତାହା ଆମେ ଜାଣି ପାରୁନାହୁଁ ।



# ନୋବେଲ ପୁରସ୍କାର ଓ ମଦର ଟେରେସା

ବିଶ୍ୱରେ ଶାନ୍ତି ପ୍ରତିଷ୍ଠା ଦିଗରେ ନିରବଚ୍ଛିନ୍ନ ଭାବେ ସର୍ବୋତ୍ତମ ଉଦ୍ୟମ କରି ଆସୁଥିବା ଯୋଗୁଁ, ଆମ ଦେଶର ସକଳ ସମ୍ମାନୀୟା ସମାଜସେବିକା ଖ୍ରୀଷ୍ଟିୟାନ୍ ତପସ୍ୱିନୀ ମଦର ଟେରେସାଙ୍କୁ ଏ ବର୍ଷ ପାଇଁ ପନ୍ଦର ଲକ୍ଷ ଟଙ୍କାର ନୋବେଲ ପୁରସ୍କାର ଅର୍ପଣ କରି ନୋବେଲପୁରସ୍କାରକମିଟି ସାରା ବିଶ୍ୱର ସମର୍ଥନ ଓ ସାଧୁବାଦ ଗ୍ରହଣ କରିବାର ଯୋଗ୍ୟତା ଅର୍ଜନ କରିଛନ୍ତି। ଏ ପର୍ଯ୍ୟନ୍ତ ସାରା ବିଶ୍ୱରେ ଯେଉଁ କେତୋଟି ଆନ୍ତର୍ଜାତିକ ପୁରସ୍କାର ପ୍ରଚଳିତ ରହିଛି, ତନ୍ମଧ୍ୟରୁ ନୋବେଲ ପୁରସ୍କାର ହିଁ ସର୍ବଶ୍ରେଷ୍ଠ ବୋଲି ଏହାର ସାର୍ବଜନୀନ ମର୍ଯ୍ୟାଦା ବହୁ କାଳରୁ ପ୍ରତିଷ୍ଠିତ। ତଥାପି ଆଧୁନିକ କାଳରେ ବହୁ ବିଷୟର ମୂଲ୍ୟ ବା ମାନ ବିପର୍ଯ୍ୟୟ ଘଟିଲା ଭଳି ନୋବେଲ ପୁରସ୍କାରର ମଧ୍ୟ ସେହି ପାରମ୍ପରିକ ପ୍ରତିଷ୍ଠିତ ମର୍ଯ୍ୟାଦା କ୍ରମଶଃ କ୍ଷୟମାଣ ହେବାଭଳି ବହୁବେଳେ ଆଶଙ୍କା ହୋଇଛି। ନାନାଦି କୂଟ ଅଭିସନ୍ଧି ଓ ନାନାଦି ରାଜନୈତିକ ଓ ଗୋଷ୍ଠୀଗତ ବିଚାର ବର୍ତ୍ତମାନ ଅନ୍ୟାନ୍ୟ ପୁରସ୍କାର ଭଳି ନୋବେଲ ପୁରସ୍କାରକୁ ମଧ୍ୟ କଳୁଷିତ କରି ସାରିଲାଣି ବୋଲି ବହୁ ସୁଜ୍ଞଜନ ମତ ଦେଉଛନ୍ତି। ଅବଶ୍ୟ ଏକଥା ମଧ୍ୟ ସତ୍ୟ ଯେ, କୌଣସି ପୁରସ୍କାର କେବେହେଲେ ବି ସର୍ବତୋଭାବେ ସର୍ବସମ୍ମତ ସମର୍ଥନ ଯୋଗ୍ୟତା ଅର୍ଜନ କରି ନ ପାରେ। ଅଥବା, ଅନ୍ୟ ଦିଗରେ, ପୁରସ୍କାର ପାଇ ନଥିବା ବ୍ୟକ୍ତିର କୀର୍ତ୍ତି ସବୁବେଳେ ପୁରସ୍କାର ପାଇଥିବା ବ୍ୟକ୍ତିଠାରୁ ନ୍ୟୂନତର ବୋଲି ପ୍ରମାଣିତ ହୋଇ ନପାରେ। ତା' ଛଡ଼ା ପୁରସ୍କାର ପ୍ରଦାନର ବିଚାର ବେଳେ ମଧ୍ୟ ବିଚାରକମାନଙ୍କୁ ବହୁ ଦିଗ ଉପରେ ଦୃଷ୍ଟି ଦେବାକୁ ପଡ଼ିଥାଏ ଏବଂ ଏ ସମ୍ପର୍କରେ ଶେଷ କଥା ହେଉଛି, ପୁରସ୍କାରଦାତାମାନଙ୍କ କାନରେ ବିଶ୍ୱର ସବୁ କୀର୍ତ୍ତିମାନ ବା କୀର୍ତ୍ତିମୟୀମାନଙ୍କର କୀର୍ତ୍ତିଉଦନ୍ତ ପଡ଼ି ନଥାଏ ଓ ତେଣୁ ସବୁ କଥା ପରି ମାନବିକ ବିଚାର ସିଦ୍ଧାନ୍ତର ମଧ୍ୟ ଗୋଟିଏ ସୀମା ଅଛି ଓ ସେ ସୀମାକୁ ମଧ୍ୟ ଉଦାର ମନ ନେଇ ସହ୍ୟ କରିବାକୁ ପଡ଼ିବ।

କିନ୍ତୁ ସେ ସବୁ ସତ୍ତ୍ୱେ, କୌଣସି ପୁରସ୍କାରପ୍ରାପ୍ତ ବ୍ୟକ୍ତି ଯେ, ଆମ୍ଭମାନଙ୍କ ଭିତରେ ଜଣେ ଯଥାର୍ଥ କୀର୍ତ୍ତିଶାଳୀ ବ୍ୟକ୍ତି, ଏହି ସାଧାରଣ ଧାରଣାଟି ଯେପରି କୌଣସିମତେ କ୍ଷୁର୍ଣ୍ଣ ନ ହୁଏ, ସେଥିପ୍ରତି ପୁରସ୍କାର ବିଚାରଣା କମିଟିର ସଭ୍ୟମାନେ ଖୁବ୍ ସଚେତନ ରହିବା ଉଚିତ୍। ଅତତଃ ନୋବେଲ ପୁରସ୍କାର କ୍ଷେତ୍ରରେ ଏହା ସ୍ୱତଃ ପ୍ରମାଣିତ ହେବା ଉଚିତ୍।

ଏସବୁ କଥା କହିବାର କାରଣ ହେଲା, ଗତବର୍ଷ ପ୍ରେସିଡେଣ୍ଟ୍ ସାଦତ୍ ଓ ମେନାହେମ୍ ବେଜିନ୍‌ଙ୍କୁ ବିଶ୍ୱରେ ଶାନ୍ତି ପ୍ରତିଷ୍ଠା ଲାଗି ଯେଉଁ ଯୁଗ୍ମ ପୁରସ୍କାର ଅର୍ପିତ ହେଲା, ସେଥିରେ ସେମାନଙ୍କର ନିଜ ନିଜର ଦେଶବାସୀ ବା ମାର୍କିନ୍ ଜାତି ହୁଏତ ଖୁବ୍ ଆତ୍ମସନ୍ତୋଷ ଲାଭ କରିଥିଲେ। ମାତ୍ର ଅନ୍ୟ ଦେଶର ଲୋକଙ୍କୁ ଏହା 'ବିପରୀତ' ପ୍ରତିକ୍ରିୟା ଦେଇଥିଲା। ଅନେକ ମତ ଦେଇଥିଲେ– ନୋବେଲ ପୁରସ୍କାର ଶାନ୍ତି ପାଇଁ ନା ସମର ପାଇଁ? ସେମିତି ୧୯୭୩ ମସିହାରେ ଡକ୍ଟର କିସିଞ୍ଜର ଏବଂ ଲି–ଦୋ–ଥୁ ଙ୍କୁ ଶାନ୍ତି ପୁରସ୍କାର ମିଳିଲା ବୋଲି ଘୋଷଣା ହେଲା ପରେ ସାରା ବିଶ୍ୱରେ ଅସମର୍ଥନର ଗୁଞ୍ଜନ ଖେଳି ଯାଇଥିଲା। ଅବଶ୍ୟ ଲି–ଦୋ ଥୁ ଏହି ପୁରସ୍କାରକୁ ପ୍ରତ୍ୟାଖ୍ୟାନ କରି ମତ ଦେଇଥିଲେ ଯେ, ଭିଏତ୍‌ନାମରେ ପ୍ରକୃତ ଶାନ୍ତି ପ୍ରତିଷ୍ଠା ନ ହେବାଯାଏ ସେ ସେହି ସମ୍ମାନ ଗ୍ରହଣ କରିବେ ନାହିଁ। ଅବଶ୍ୟ ୧୯୭୬ ରେ ଯେତେବେଳେ ଶ୍ରୀମତୀ ବେଟୀ ଉଇଲିୟମ୍ ଓ କୁମାରୀ ମାଇରିଡ୍ କରିଗନ୍ ନାମ୍ନୀ ଦୁଇଜଣ ରୋମାନ୍ କାଥଲିକ୍ ଏଇ ଶାନ୍ତି ପୁରସ୍କାର ପାଇଲେ, ସେତେବେଳେ ବିଶ୍ୱର ସୁଜ୍ଞଜନେ ଏହାକୁ ନିରପେକ୍ଷ ଓ ସମୁଚିତ ବିଚାର ବୋଲି ମତ ଦେଇଥିଲେ। ପ୍ରକାଶ ଥାଉକି, ଉତ୍ତର ଆୟର୍ଲାଣ୍ଡରେ ସାଂପ୍ରଦାୟିକ ବିଦ୍ୱେଷ ଦୂର କରି, ଶାନ୍ତି ସଦ୍‌ଭାବ ପ୍ରତିଷ୍ଠା ଦିଗରେ ସେ ଦୁହିଁଙ୍କର ଉଦ୍ୟମ ଥିଲା ଅସାଧାରଣ। କିନ୍ତୁ ୧୯୭୫ରେ ଯେତେବେଳେ ସୋଭିଏତ୍ ରୁଷରୁ ପଳାତକ ଡକ୍‌ଟର ଆଣ୍ଡ୍ରେଜ୍ ସାଖାରୋଭ ଏହି ଶାନ୍ତି ପୁରସ୍କାର ପ୍ରାପ୍ତ ହେଲେ, ସେତେବେଳେ ସାରା ବିଶ୍ୱରେ ନୋବେଲ୍ ପୁରସ୍କାର ବିଚାରଣା କମିଟିର ଅଭିସନ୍ଧି ଉପରେ ସୁଜ୍ଞମାନଙ୍କର ଅନାସ୍ଥାଭାବ ଆସିଯାଇଥିଲା। କେବଳ ଶାନ୍ତି କ୍ଷେତ୍ରରେ ନୁହେଁ; ସାହିତ୍ୟ ଓ ବିଜ୍ଞାନ କ୍ଷେତ୍ରରେ ମଧ୍ୟ ଗତ କେତେବର୍ଷ ଧରି ବହୁବାର ନୋବେଲ୍ ପୁରସ୍କାର ଅପେକ୍ଷାକୃତ ନ୍ୟୂନତର ପ୍ରତିଭା ହାତରେ ଅର୍ପିତ ହୋଇଛି ବୋଲି ବା ଅଭିସନ୍ଧି ରଖିଦିଆଯାଇଛି ବୋଲି ବିଶ୍ୱବାସୀ ସନ୍ଦେହ କରି ଆସୁଛନ୍ତି।

କିନ୍ତୁ ଏତଦ୍‌ସତ୍ତ୍ୱେ, ଏ ବର୍ଷର ଶାନ୍ତି ପୁରସ୍କାର ପାଇଁ ମଦର ଟେରେସାଙ୍କୁ ସର୍ବଯୋଗ୍ୟ ବୋଲି ବିବେଚନା କରିବା ଦ୍ୱାରା ନିଶ୍ଚିତ ଭାବେ ନୋବେଲ ପୁରସ୍କାର ବିଚାରଣା କମିଟିର ନିରପେକ୍ଷ ଓ ଯଥାର୍ଥ ବିଚାର ଉପରେ ସାରା ବିଶ୍ୱର ଆସ୍ଥା, ପୁନଶ୍ଚ ଫେରିଆସିଛି।

ମଦର ଟେରେସା– ଆଜି ସାରା ଭାରତ ବର୍ଷରେ ଏକ ସର୍ବଜନାଦୃତ ଅତି ପ୍ରିୟ ଓ ମଧୁରନାମ। ତାଙ୍କୁ ଯେଉଁମାନେ ଦେଖିଛନ୍ତି ବା ଯେଉଁମାନେ ତାଙ୍କର କିଞ୍ଚିତ ସମ୍ପର୍କରେ ଆସିଛନ୍ତି, ସେମାନେ କହନ୍ତି– ଏହି ମହୀୟସୀ ସ୍ନେହ କରୁଣାମୟୀ ସେବାର ପ୍ରତିମୂର୍ତ୍ତି ବର୍ଷୀୟସୀ ମହିଳାଟିଙ୍କୁ ଦେଖିବା ମାତ୍ରେ ହିଁ ମନରେ ଆଶା,

ଆଶ୍ୱାସନା, ପବିତ୍ରତା ଓ ତ୍ୟାଗ ଆଦି ଭାବର ସ୍ୱତଃ ଉଦ୍‌ଗମ ହୋଇଥାଏ ଏବଂ ତାଙ୍କର ସେହି ଆର୍ତ୍ତ—ଦୁର୍ଗତ ଶରଣଦାୟୀ ଦୁର୍ଗୋପମ ପଦଯୁଗଳରେ ସ୍ୱତଃ ଦର୍ଶକର ମଥାନତ ହୋଇଯାଏ। ତାଙ୍କ ଭଳି ଅବିସମ୍ବାଦିତ ଅଜାତଶତ୍ରୁ ବ୍ୟକ୍ତିତ୍ୱ ଏ ଯୁଗରେ ବିରଳ।

ଏହି ବିଦେଶିନୀ କାଥଲିକ୍ ସଂପ୍ରଦାୟର ଖ୍ରୀଷ୍ଟିଆନ୍ ସନ୍ନ୍ୟାସିନୀ ୧୯୪୮ରେ ପ୍ରଥମ କରି କଲିକତାଠାରେ ଏକ ସେବାମୂଳକ ଧର୍ମପ୍ରତିଷ୍ଠାନ ଆରମ୍ଭ କରିଥିଲେ। ସେତିକି ବେଳୁ ସମସ୍ତେ ତାଙ୍କୁ ଜଣେ ସ୍ନେହଶୀଳା ଓ ପ୍ରଜ୍ଞାବତୀ ଶିକ୍ଷୟିତ୍ରୀ ଏବଂ ଦୟାମୟୀ ଧୈର୍ଯ୍ୟଶୀଳା ସେବିକା ରୂପେ ଚିହ୍ନିଯାଇଥିଲେ ଓ ସେ ହୋଇ ଉଠିଥିଲେ ଜାତି—ଧର୍ମ—ରାଜନୀତି ଓ ଗୋଷ୍ଠୀ ନିର୍ବିଶେଷରେ ସମସ୍ତଙ୍କର ସ୍ନେହ ସମ୍ମାନ ଓ ସମର୍ଥନର ପାତ୍ରୀ। ସେହି ଅନୁଷ୍ଠାନର ପରିଚାଳନା କରୁ କରୁ କ୍ରମଶଃ ଭାରତବର୍ଷର ଲକ୍ଷ ଲକ୍ଷ ଦରିଦ୍ର, ଅନାଥ ଓ ଅକ୍ଷମ ଶିଶୁ ଓ ନରନାରୀଙ୍କର ଦୂରାବସ୍ଥା ତାଙ୍କର କୋମଳ ହୃଦୟକୁ ବିମଥିତ ଓ ବିଗଳିତ କଲା। ତା' ପରେ ସେ କ୍ରମେ କ୍ରମେ ବହୁ ବାଳାଶ୍ରମ, ଅନାଥାଶ୍ରମ ଓ ଅକ୍ଷମାଶ୍ରମମାନ ଗଢ଼ିବାକୁ ଲାଗିଲେ ଏବଂ ସବୁ ଧର୍ମ, ସଂପ୍ରଦାୟ ଓ ଦଳଗୁଡ଼ିକର ସାହାଯ୍ୟ ସହଯୋଗ ଲୋଡ଼ିଲେ ଏବଂ ପାଇଲେ ମଧ୍ୟ। ତାଙ୍କର ସାର୍ବଜନୀନ ଉଦାର ସ୍ନେହ—କରୁଣା ବିଗଳିତ ମାତୃହୃଦୟ ଏବଂ ତାଙ୍କର ଆନ୍ତରିକ ସାଧୁ—ସଚ୍ଚୋଟ ଉଦ୍ୟମର ପରିଚୟ ମିଳିଲା ମାତ୍ରେ, ତାଙ୍କ ପାଖରେ ସାରା ଦେଶର ଅନାଥ, ଦରିଦ୍ର ଅକ୍ଷମ ଶିଶୁ ଓ ସ୍ତ୍ରୀଲୋକମାନେ ଆଶ୍ରୟ ଲାଗି ଆସି ଠୁଳ ହେଲେ ଏବଂ ସେହି ସଙ୍ଗେ ସଙ୍ଗେ ଲକ୍ଷ ଲକ୍ଷ ବଦାନ୍ୟ ବ୍ୟକ୍ତିଙ୍କ ଠାରୁ ଲକ୍ଷ ଲକ୍ଷ ଟଙ୍କା ସାହାଯ୍ୟ ଆକାରରେ ଆସି ଠୁଳ ହେଲା। ବିଶେଷତଃ ପ୍ରଥମରୁ କଲିକତା କର୍ପୋରେସନ ତାଙ୍କୁ କାଳୀଘାଟ ପାଖରେ ଏକ 'ବିସ୍ତୀର୍ଣ୍ଣ' ଜାଗା ଦାନ କଲେ ଏବଂ ମହାମାନ୍ୟ ଦ୍ୱାଦଶ ପୋପ୍ ମଧ୍ୟ ସଂପ୍ରଦାୟ ତରଫରୁ ତାଙ୍କୁ ବାଞ୍ଛିତ ଅର୍ଥ ମଞ୍ଜୁର କରିଥିଲେ। ଆସାନସୋଲଠାରେ କୁଷ୍ଠରୋଗୀଙ୍କ ସେବା ଓ ଚିକିତ୍ସା ନିମିତ୍ତ ସେ ଗୋଟିଏ ଶାନ୍ତିନଗର ମଧ୍ୟ ନିର୍ମାଣ କଲେ। ଇତିମଧ୍ୟରେ ତାଙ୍କର ଯଶ ସାରା ଦେଶରେ ଓ ବିଦେଶରେ ମଧ୍ୟ ବ୍ୟାପିଗଲା। ୧୯୬୩ରେ ଭାରତ ସରକାର ତାଙ୍କୁ ପଦ୍ମଶ୍ରୀ ଉପାଧିରେ ଭୂଷିତ କଲେ। ତା'ପର ବର୍ଷ ମହାମାନ୍ୟ ଚତୁର୍ଥ ପୋପ୍‌ପଲ ଭାରତ ଭ୍ରମଣରେ ଆସିଲାବେଳେ, ଏହି ମହୀୟସୀ—ସେବିକା ତପସ୍ୱିନୀଙ୍କୁ ଧାର୍ମିକ ସମ୍ମାନ ଅର୍ପଣ କରିଥିଲେ। ୧୯୭୧ ମସିହାରେ ସେ ତାଙ୍କୁ ପ୍ରଥମ କରି ତ୍ରୟୋବିଂଶ ପୋପ୍‌ଜନ୍ ଶାନ୍ତି ପୁରସ୍କାର ପ୍ରଦାନ କଲେ। ଏବେ ନୋବେଲ କମିଟି ହାତରୁ ସେ ଦ୍ୱିତୀୟଥର ପାଇଁ ଏହି ଶାନ୍ତି ପୁରସ୍କାର ଲାଭ କରୁଛନ୍ତି।

ମଦର ଟେରେସା ଏହି ପୁରସ୍କାର ଟଙ୍କାକୁ ତାଙ୍କର ସେହି ସବୁ ସେବା କାର୍ଯ୍ୟରେ ବିନିଯୋଗ କରିବେ ବୋଲି ଘୋଷଣା କରିଛନ୍ତି । ଏବେ ତାଙ୍କର ଅନୁଷ୍ଠାନରେ ସାତ ଶହରୁ ଅଧିକ ସନ୍ନ୍ୟାସିନୀ ସେବିକା ରହି ସେବା କାର୍ଯ୍ୟରେ ନିଜକୁ ଉତ୍ସର୍ଗ କରିଅଛନ୍ତି । କଲିକତାରେ ୬୦ଟି କେନ୍ଦ୍ର ଏବଂ ସାରା ପୃଥିବୀରେ ଆଉ ୭୦ଟି ଶାଖା କେନ୍ଦ୍ର ସେ ପ୍ରତିଷ୍ଠା କରି ସାରିଛନ୍ତି । ରୋମ୍‌ରେ ଗୋଟିଏ ସେବାକେନ୍ଦ୍ର ସେ ପ୍ରତିଷ୍ଠା କରିଛନ୍ତି, ଯେଉଁଠି ଭାରତୀୟ ଖ୍ରୀଷ୍ଟଆନ ସନ୍ନ୍ୟାସିନୀମାନେ ହିଁ ସେ ଅନୁଷ୍ଠାନକୁ ଚଳାଉଛନ୍ତି ।

ମଦର ଟେରେସା ଭାରତୀୟ ନାଗରିକତ୍ୱ ଗ୍ରହଣ କରିଛନ୍ତି ଏବଂ ତା' ସଙ୍ଗେ ସଙ୍ଗେ ଏ ଦେଶର ସଂସ୍କୃତିକୁ ମଧ୍ୟ ଗ୍ରହଣ କରିନେଇଛନ୍ତି । ସେ ନିଜେ ଏବଂ ତାଙ୍କର ସନ୍ନ୍ୟାସିନୀମାନେ ସମସ୍ତେ ଶାଢ଼ୀ ପିନ୍ଧନ୍ତି ଓ ଅତି ସରଳ ନରୀହ ଜୀବନ ଯାପନ ପ୍ରଣାଳୀ ଗ୍ରହଣ କରିଛନ୍ତି ।

ପ୍ରାୟ ସତୁରୀ ବର୍ଷ ବୟସର ଏହି ମହିଳା ଏବେ ବି ଖୁବ୍ କର୍ମଠ, ଜୀବନୀଶକ୍ତି ସମ୍ପନ୍ନା ଓ ଜୀବନରେ ଘୋର ଆଶାବାଦିନୀ ରହି ତାଙ୍କର ଏହି ସେବା କାର୍ଯ୍ୟକୁ ଦିନକୁ ଦିନ ଓ ଦେଶକୁ ଦେଶ ପ୍ରସାରିତ କରି ଚାଲିଛନ୍ତି । ତାଙ୍କର ଚାହାଣୀ ଗଭୀର ମମତାପୂର୍ଣ୍ଣ ଓ କୃପାସ୍ନିଗ୍ଧ । ତାଙ୍କର ସ୍ମିତ ଭିତରୁ ଆଶାଭରସା କ୍ଷମା ଓ କଲ୍ୟାଣର ଆଲୋକ ବିଚ୍ଛୁରିତ ହୋଇଥାଏ । ତାଙ୍କ ମତରେ– ମନୁଷ୍ୟକୁ ହୃଦୟ ଦେଇ ଭଲ ପାଇବାକୁ ହେବ ଏବଂ ପ୍ରତ୍ୟେକ ମନୁଷ୍ୟ ଅପରର ଦୁଃଖ ବୁଝି ତା'ର ନିରାକରଣ କରିବା ଲାଗି ଆନ୍ତରିକ ଭାବେ ଆଗେଇ ଯିବ । ଏହା ହିଁ ଈଶ୍ୱରଙ୍କୁ ପାଇବାର ଏକମାତ୍ର ପଥ ।

ମଦର ଟେରେସା ଦୀର୍ଘଜୀବନ ଲାଭ କରନ୍ତୁ ଏବଂ ତାଙ୍କର ଚେତନା ଆମ ସମସ୍ତଙ୍କର ହୃଦୟକୁ ସ୍ପର୍ଶ କରୁ ।

✱✱

# "ଅନ୍ଧକାର ତା'ଠାରୁ ଭଲ"

ଆମ ଦେଶରେ ଗତ କେତେ ବର୍ଷ ଭିତରେ ଯେତୋଟି କାର୍ଯ୍ୟ ସରକାର କରିଛନ୍ତି ବୋଲି କୁହାଯାଉଛି, ତା' ଭିତରୁ ଗୋଟିଏ କାର୍ଯ୍ୟ ସତକୁ ସତ କିଛି ପରିମାଣରେ ଆଖି ଦୃଶିଆ ହୋଇଛି ବୋଲି ଲୋକେ କହୁଛନ୍ତି। ତାହା ହେଲା– ଗ୍ରାମାଞ୍ଚଳରେ ବିଦ୍ୟୁତୀକରଣ। ଓଡ଼ିଶାର ବହୁ ଗାଁଗଣ୍ଡା, ବିଶେଷତଃ ରାସ୍ତାଘାଟ ଥିବା ବହୁ ଗାଁଗଣ୍ଡାକୁ ବିଦ୍ୟୁତ୍ ଶକ୍ତି ଯୋଗାଇ ଦିଆଯାଇଛି। ଫଳରେ ଗାଁମାନଙ୍କରେ ବହୁ ଥିଲାବାଲା, ନ ଥିଲାବାଲା ନିଜ ନିଜ ଘରକୁ ବିଜୁଳି ଆଲୁଅ ନେଲେଣି। ବିଜୁଳି ପଙ୍ଖା ଲଗେଇଲେଣି। ବହୁ ଗ୍ରାମ୍ୟ ହାଟ ବଜାରରେ ବିଜୁଳି ଆଲୁଅ ଝଲମଲ କଲାଣି ଏବଂ ଅଠର ଘଣ୍ଟା ସହରଠାରୁ ବଳି ମାଇକରେ ସିନେମା ଗୀତ କାନଫଟା ରଡ଼ିରେ ବାଜି ଚାଲିଛି। ସେହିସବୁ ଗାଁଗଣ୍ଡାରେ ବର୍ତ୍ତମାନ ପର୍ବପର୍ବାଣି, ଯାନିଯାତ୍ରା ଓ ବାହାବ୍ରତାଦି ଅନୁଷ୍ଠାନରେ ବିଜୁଳି ଆଲୁଅର ଘନଘଟା ମଧ୍ୟ ଲକ୍ଷ୍ୟ କରିବାର କଥା। ମାଇକ୍‌ର ପାଦୁର୍ଭାବ ମଧ୍ୟ ଲକ୍ଷ୍ୟ କରିବାର କଥା।

କିନ୍ତୁ ଏହି ବିଦ୍ୟୁତ୍ ବିଭାଗଟିରେ ବର୍ତ୍ତମାନ ସବୁଠାରୁ ବେଶୀ ଜୁଆଚୋରୀ ଚାଲିଛି। ବହୁ ଲୋକ ସ୍ଥାନୀୟ ବିଦ୍ୟୁତ୍ କର୍ମଚାରୀଙ୍କୁ କିଛି ହାତଗୁଞ୍ଜା ଦେଇ ବେନିୟମ ଭାବେ ବିଦ୍ୟୁତ୍‌ଶକ୍ତି ନିଜ ଘରକୁ ନେଇଛନ୍ତି ଓ ନେଉଛନ୍ତି। ଯୋଉ ପଦ୍ଧତିରେ ମୂଳଖୁଣ୍ଟି ସଙ୍ଗେ ସଂଯୋଗ ରଖି ବିଜୁଳି ତାର ସବୁ ଘରକୁ ନେବା କଥା, ତାହା ଅନେକ ନେଇ ନାହାନ୍ତି। ଗାଁ ଗହଳରେ ଘରସବୁ ଲଗାଲଗି ହୋଇଥିବା ହେତୁ– ଜଣେ ମୂଳଖୁଣ୍ଟିରୁ ତାର ଆଣିଲେ, ସେ ତା'ଘରୁ ଅନ୍ୟମାନଙ୍କୁ ଘରୋଇ ବ୍ୟବସ୍ଥାରେ ନିଜେ ତାର ଲଗାଇ ଦେବାର ବ୍ୟବସ୍ଥା କରୁଛି ଓ ତା'ଠାରୁ ମାସିକ ଟଙ୍କା ନେଉଛି। ଲୋକେ ମନଇଚ୍ଛା ରେଡ଼ିଓ ପଙ୍ଖା ଓ ଆଲୁଅ ବ୍ୟବହାର କରୁଛନ୍ତି। ମାତ୍ର କେତେ ଶକ୍ତି ସେମାନେ ଖର୍ଚ୍ଚ କରୁଛନ୍ତି ତାକୁ ମାପିବା ପାଇଁ ମିଟର ନାହିଁ। ଯୋଉଠି ମିଟର ଅଛି– ତାକୁ ସ୍ଥାନୀୟ ସଂପୃକ୍ତ ବିଦ୍ୟୁତ୍ କର୍ମଚାରୀଙ୍କ ଜାଣତରେ ବା ଅଜାଣତରେ ଅଚଳ ବା ମନ୍ଥର କରି ଦିଆହେଉଛି। ମୁଁ ଦେଖିଛି– ଗାଁ ଗହଳରେ ଲୋକେ ଇଲେକ୍‌ଟ୍ରିକ୍ ଷ୍ଟୋଭ ଜାଳି ରୋଷେଇ ମଧ୍ୟ କରୁଛନ୍ତି, ମାତ୍ର ମାସ ଶେଷରେ ସେମାନଙ୍କୁ ମାତ୍ର ଦଶ ପନ୍ଦର ଟଙ୍କା ବିଲ୍ ଦେବାକୁ ପଡୁଛି। ଏ କ୍ଷେତ୍ରରେ ସ୍ଥାନୀୟ ବିଦ୍ୟୁତ୍ ଯୋଗାଣ କର୍ମଚାରୀଟି ପ୍ରତି ଘରୁ କିଛି କିଛି ହାତଗୁଞ୍ଜା ପାଇ ନିଜ ହାତଟି ଚିକ୍‌କଣ କରୁଛନ୍ତି। ଗାଁ ଲୋକେ ଏଥିରେ ମହାଖୁସି।
ହାତଗୁଞ୍ଜା ପାଇ ନିଜ ହାତଟି ଚିକ୍‌କଣ କରୁଛନ୍ତି। ଗାଁ ଲୋକେ ଏଥିରେ ମହାଖୁସି।
ହୀରାକୁଦ ଜଳଭଣ୍ଡାରରେ ଆଉ କେତେ ପାଣି ଅଛି ବା ମାଛକୁଣ୍ଡରୁ ଆମେ ଏବେ କେତେ ବିଦ୍ୟୁତ୍ ଶକ୍ତି ପାଇବାର ସମ୍ଭାବନା ଅଛି ବା ବିଦ୍ୟୁତ୍‌ଶକ୍ତି ଅଭାବରୁ ଆମର

କେତେ କଳକାରଖାନାରେ କାମ ବନ୍ଦ ହୋଇ ଆମ ଶିଳ୍ପ ଉତ୍ପାଦନ କେତେ ବାଧାପ୍ରାପ୍ତ ହେଲାଣି, ସେ କଥା ଏହି ବିଦ୍ୟୁତ୍-ପ୍ରମତ୍ତ ଆପଣାସ୍ୱାର୍ଥୀ ଲୋକଙ୍କୁ ମାଲୁମ ନାହିଁ କି ସେହି ଦୁର୍ବୃତ୍ତ ବିଦ୍ୟୁତ୍ କର୍ମଚାରୀଙ୍କ ଚିନ୍ତାରେ ନାହିଁ।

ଗାଁ ଗହଳକୁ ବିଦ୍ୟୁତ୍‌ଶକ୍ତି ଯୋଗାଇବା ପଛରେ ଥିଲା ଗୋଟାଏ ବଡ଼ ଅର୍ଥନୈତିକ ଉଦ୍ଦେଶ୍ୟ। ବିଦ୍ୟୁତ୍‌ଶକ୍ତି ପାଇଲେ ଗାଁ ବାଲାଏ ତା' ସାହାଯ୍ୟରେ ଛୋଟ ଛୋଟ ଶିଳ୍ପ ଚଳାଇ ପାରିବେ ଓ କୃଷିର ସୁରକ୍ଷା ଓ ଉନ୍ନତି କରିପାରବେ- ଏହାହିଁ ଥିଲା ମୂଳ ଲକ୍ଷ୍ୟ। ମାତ୍ର ସେ କଥ କୁଆଡ଼େ ଗଲାଣି। ଲୋକେ ମାଗଣାରେ ବିଜୁଳି ଆଲୁଅ, ବିଜୁଳି ପଙ୍ଖା ଓ ବିଜୁଳି ଚୂଲୀ ବ୍ୟବହାର କରି ମହାଖୁସି। ବାହାଘର ବ୍ରତଘରରେ ବିଜୁଳିବତୀ ଝଲମଲ କରି "ବାବାରେ ଆଲୁଅ" "ମାଆରେ ଆଲୁଅ" କଲେଣି।

ଖାଲି ଗାଁ ଗଣ୍ଡା କଥା କାହିଁକି କହିବା, ସହରମାନଙ୍କ ଅବସ୍ଥା ଆହୁରି ଶୋଚନୀୟ। ଖୋଦ୍ ଭୁବନେଶ୍ୱର ଅବସ୍ଥା ତ ଆହୁରି ଶୋଚନୀୟ। ବହୁ ଲୋକେ ବେନିୟମ ଭାବେ ବିଦ୍ୟୁତ୍‌ଶକ୍ତି ବ୍ୟବହାର କରି ଚାଲିଛନ୍ତି ବେପରୁଆ ଭାବେ। ଖୁବ୍ ବଡ଼ ଅଫିସର, ପ୍ରଫେସରଙ୍କ ଠାରୁ ଆରମ୍ଭ କରି ସର୍ବନିମ୍ନ କର୍ମଚାରୀଙ୍କ ପର୍ଯ୍ୟନ୍ତ ବହୁ ଘରେ ଯେତିକି ବିଦ୍ୟୁତ୍‌ଶକ୍ତି ମାସକୁ ଖର୍ଚ୍ଚ ହୁଏ, ସେତିକି ଅନୁପାତରେ ସେମାନେ ତାଙ୍କ ନିର୍ଧାର୍ଯ୍ୟ ଦେୟ ଦିଅନ୍ତି ନାହିଁ। ଖୁବ୍ ବଡ଼ ବଡ଼ ଲୋକେ ମଧ୍ୟ ଶହେ ଦେଢ଼ଶହ ଟଙ୍କାର ବିଦ୍ୟୁତ୍‌ଶକ୍ତି ଘରେ ଖର୍ଚ୍ଚ କରି ମାସକୁ ମାତ୍ର ତିରିଶି ଚାଳିଶ ଟଙ୍କା ଦିଅନ୍ତି ବୋଲି ଅତି ନିର୍ଲଜ୍ଜ ଭାବେ ସ୍ୱୀକାର ମଧ୍ୟ କରିଥାଆନ୍ତି; ବାହାଦୁରୀ ଦେଖାଇଥାନ୍ତି। ବହୁ ଘରେ ମିଟରଟି ଠିକ୍ ନ ଥାଏ କିମ୍ବା ମିଟରଟିକୁ ସଂପୃକ୍ତ କର୍ମଚାରୀଙ୍କୁ ହାତଗୁଞ୍ଜା ଦେଇ ତାଙ୍କ ଜ୍ଞାତସାରରେ ବା ଅଜ୍ଞାତସାରର ଅଚଳ କରି ଦିଆଯାଇଥାଏ। ଏଣେ ଦିନରାତି ପ୍ରତି କଠୋରୀରେ ପଙ୍ଖାମାନ ଘୂରୁଥାଏ, ଆଲୁଅ ଜଳୁଥାଏ, ରେଡ଼ିଓ ବାଜୁଥାଏ। ଭାତ ଫୁଟୁଥାଏ ବା ଗୋରୁଙ୍କ ପାଇଁ ବିରୀ, କୋଳଥ ଓ କୁଳୁଚି ସିଝୁ ଥାଏ। ସହରରେ ଉଚ୍ଚଶିକ୍ଷିତ ବଡ଼ ବଡ଼ ଦରମା ବାଲା ହାକିମ୍ ହୁକୁମାମାନେ ଏ ବ୍ୟାପାରଟିକୁ ସେତେ ଗୁରୁତ୍ୱପୂର୍ଣ୍ଣ ଅନୀତି ବୋଲି ଭାବନ୍ତି ନାହିଁ। ଘେନା ମଧ୍ୟ କରନ୍ତି ନାହିଁ।

ତେଣେ ଅଫିସମାନଙ୍କରେ, କଲେଜଗୁଡ଼ିକର ଶ୍ରେଣୀ ପ୍ରକୋଷ୍ଠମାନଙ୍କରେ ମଧ୍ୟ ସମସ୍ତଙ୍କ ଆଖି ଆଗରେ ବିନା ଆବଶ୍ୟକତାରେ ପଙ୍ଖା ସବୁ ଘୂରୁଥାଏ, ଆଲୁଅମାନ ଜଳୁଥାଏ। ସମସ୍ତଙ୍କର ଧାରଣା- ଯେ ସବୁ ସରକାରୀ ଜିନିଷ- ଯାକୁ ଯେ ଯେମିତି ପାରୁଛି ଭୋଗ କରିନିଅ। ପ୍ରତି ଘରେ ବିଦ୍ୟୁତ୍‌ଶକ୍ତିର ବ୍ୟବହାରରେ ଯେଉଁ ଅନୀତି ଓ ଦୁର୍ନୀତି ଚାଲିଛି, ତାହା ସେ ଘରେ ପିଲାଟାଏ ଜନ୍ମ ହେଲାଦିନୁ ପ୍ରତ୍ୟକ୍ଷ କରୁଛି ଓ ତା' ମନରେ ମୂଳରୁ ତା' ପିତାମାତାଙ୍କ ସାମାଜିକ ନୀତି ଅନୀତି ସମ୍ପର୍କରେ ଯୋଉ ଧାରଣା ଆସୁଛି ଓ ସେଇ ଧାରଣା ତାର ନିଜ ବ୍ୟକ୍ତିତ୍ୱ ବା ଚରିତ୍ରକୁ ସେପରି ଗଠନ କରୁଛି, ତାହା ତ ଆମେ ସମସ୍ତେ ବର୍ତ୍ତମାନ ଦେଖୁଥାଇଁ।

ଆମେ ସମସ୍ତେ ବର୍ତ୍ତମାନ ଅନ୍ୟକୁ ଦୁର୍ନୀତିଗ୍ରସ୍ତ ବୋଲି ସାବ୍ୟସ୍ତ କରି ଦୁର୍ନୀତି ବିରୁଦ୍ଧରେ ସ୍ୱର ଉଠାଉଛ ବୋଲି ମନେ ମନେ ଆତ୍ମପ୍ରସାଦ ଅନୁଭବ କରୁଛୁ। ମାତ୍ର ମୂଳ ଦୁର୍ନୀତିଟି ରହିଛି ଆମ ପ୍ରତ୍ୟେକଙ୍କ ଭିତରେ। ନିଜପାଇଁ ଦୁର୍ନୀତି କଲାବେଳେ, ଆମେ ନିଜ ପାଖେ ଓ ଅନ୍ୟ ପାଖେ ସଫେଇ ଦେଉଁ– ଚାରିଆଡ଼େ ଦୁର୍ନୀତିର ଜାଲ ଘେରି ରହିଛି, ଦୁର୍ନୀତି ନ କଲେ ଆମେ ବଂଚି ପାରିବୁ ନାହିଁ, ସମାଜରେ ତିଷ୍ଠି ପାରିବୁ ନାହିଁ। କିନ୍ତୁ ଅନ୍ୟ ଲୋକର ଦୁର୍ନୀତି ବିଷୟ ବିଚାର କଲାବେଳେ ଏହି ଜୀବନଦର୍ଶନଟି ଆମ ମନକୁ ପଇଟେ ନାହିଁ।

ସେ କଥା ନୁହେଁ। ଆମେ ଦୁର୍ନୀତିର ଓ ସ୍ୱାର୍ଥ କେନ୍ଦ୍ରିକତାର ଅତି ଗଭୀର ଖାଲରେ ଯାଇ ପଡ଼ିଗଲୁଣି। ଏ ସ୍ଥଳେ, ଯେ କୌଣସି ସରକାର ଆସିଲେ ବି ଦେଶର କିଛି ମଙ୍ଗଳ ହୋଇ ପାରିବ ନାହିଁ। କୌଣସି ସରକାର କୌଣସି ଯୋଜନା କାର୍ଯ୍ୟକାରୀ କରିପାରିବେ ନାହିଁ। ଯଦି ଗୋଟିଏ ଜାତିର ପ୍ରତ୍ୟେକ ବ୍ୟକ୍ତି କେବଳ ନିଜ କଥାଟିକୁ ଭାବେ– ଉପସ୍ଥିତ ମୁହୂର୍ତ୍ତଟିରେ କେବଳ ନିଜେ କିଭଳି ତିଷ୍ଠିରହିବ ସେଇ କଥାଟି ଭାବେ ଏବଂ ଦେଶ, ଜାତି ଓ ଆସନ୍ତା କାଲିଟି ମୋର କାର୍ଯ୍ୟ ଫଳରେ କିପରି ଆକ୍ରାନ୍ତ ହେବ, ସେ କଥାକୁ ଜମା ଭାବେ ନାହିଁ ବା ଭାବିବାକୁ ଇଚ୍ଛା କରେ ନାହିଁ– ଏପରି କ୍ଷେତ୍ରରେ ଉପସ୍ଥିତ ମୁହୂର୍ତ୍ତଟି ଯେତେ ଆଲୋକମୟ ମନେ ହେଲେ ବି, ଆସନ୍ତା ମୁହୂର୍ତ୍ତଟି ଯେ ଘୋର ଅନ୍ଧକାରମୟ ଗହ୍ୱର ଭିତରକୁ କ୍ରମଶଃ ଖୁବ୍ ଦ୍ରୁତଗତିରେ ଖସି ଚାଲିଛି– ଏଭଳି ଆଶଙ୍କା ଆମର ସାଧାରଣ ଅଶିକ୍ଷିତ ଜନସାଧାରଣଙ୍କୁ ଯେମିତି ଜଣା ନାହିଁ– ସେମିତି ମଧ୍ୟ ଜଣାପଡୁ ନାହିଁ ଆମର ଉଚ୍ଚଶିକ୍ଷିତ ବଡ଼ ବଡ଼ିଆ ହାକିମ ହୁକୁମାମାନଙ୍କୁ ବା ଶିକ୍ଷିତ ଅଧ୍ୟାପକମାନଙ୍କୁ ବା ମନ୍ତ୍ରୀ, ଏମ୍. ଏଲ. ଏ., ଏମ୍. ପି. ଆଦି ରାଜନୀତି ବ୍ୟବସାୟୀମାନଙ୍କୁ। ତା' ନହେଲେ, ଆମେ ଘର ଭିତରେ ପ୍ରଥମେ ଆଲୁଅଟିଏ ଜାଳୁ ଜାଳୁ ଅନ୍ଧାରକୁ ଡ଼ାକି ଆଣନ୍ତୁ ନାହିଁ। ସତ କଥା, ଯେ କୌଣସି ବଡ଼ ବଡ଼ିଆଙ୍କ ବାହା, ବ୍ରତ, ଭୋଜି ଭାତରେ ମୁଁ ଯେତେବେଳେ ବିଜୁଳି ଆଲୁଅର ଘୋର ଘନଘଟା ଦେଖେ, ସେତେବେଳେ ମୋର ମନରେ ଗୋଟାଏ ଅସ୍ୱସ୍ତିକର ଆଶଙ୍କାର ଭାବ ଖେଳିଯାଏ। ତାହାହେଲା – ଏହି ଆଲୋକର ଘନଘଟା ସତକୁ ସତ ଆଲୁଅ ତ ? ନା ଚିରୁଗୁଣିମାନଙ୍କ ଆଲୁଅ ପଟୁଆର ଦେଖି ଆମେ ଆଲୋକର ଔଜ୍ଜ୍ୱଲ୍ୟରେ ଏମିତି ଉଦ୍‌ଫୁଲ୍ଲିତ ହୋଇଉଠୁଛୁ ?

ଏପରି କ୍ଷେତ୍ରରେ ଯଦି ଏହି ବିଦ୍ୟୁତ ଆଲୋକଟି ଆମର ସବୁ ପ୍ରକାର ସତ୍ୟ ଓ ନୀତିବୋଧକୁ ମୂଳରୁ ହିଁ ବିଲୋପ କରୁଥାଏ, ତା'ହେଲେ କବି ସଚ୍ଚି ରାଉତରାଙ୍କର ସେହି ବିଖ୍ୟାତ ପଦଟି ବରଂ ବର୍ତ୍ତମାନ ବେଶୀ ଅର୍ଥପୂର୍ଣ୍ଣ ମନେହୁଏ। ତାହାହେଲେ–

"ଆଲୁଅ ତା'ର କି ମନୋହର,
(କିନ୍ତୁ) ଅନ୍ଧକାର ତା'ଠାରୁ ଭଲ।।



# ଖଣ୍ଡଗିରି ମେଳା

ମାଘ ମାସ ସପ୍ତମିତିଥି ପୁଣ୍ୟଦିବସ। ସେ ଦିନ ପାହାନ୍ତାରେ ଚନ୍ଦ୍ରଭାଗା ବୁଡ଼ ଓଡ଼ିଶା ବିଖ୍ୟାତ, ଏବଂ ଚନ୍ଦ୍ରଭାଗା ବୁଡ଼ ଲେଉଟାଣି ଭୁବନେଶ୍ୱର ସନ୍ନିକଟ ଖଣ୍ଡଗିରିଠାରେ ମଧ୍ୟ ବେଶ୍ ଗୋଟାଏ ବଡ଼ ମେଳା ହୁଏ ଏବଂ ଏହି ମେଳା କିଛିଦିନ ଯାଏ ଅନୁଷ୍ଠିତ ହୁଏ। ପୂର୍ଣ୍ଣିମା ପର୍ଯ୍ୟନ୍ତ ପ୍ରତିଦିନ ହଜାର ହଜାର ନରନାରୀ ଏହି ମେଳାକୁ ଚାଲିଥାନ୍ତି ଓ ମେଳାରୁ ଫେରୁଥାନ୍ତି। ସେ ପଟେ ଖୋର୍ଦ୍ଧା ସନ୍ନିକଟସ୍ଥ ଗ୍ରାମମାନଙ୍କରୁ ଓ ଏପଟେ ବାରଙ୍ଗ ସନ୍ନିକଟ ଗ୍ରାମମାନଙ୍କରୁ ବହୁ ଧର୍ମପ୍ରାଣ ଆବାଳ ବୃଦ୍ଧବନିତା ଗାଡ଼ିମଟରରେ ଅଥବା ଚାଲି ଚାଲି ଖଣ୍ଡଗିରିରୁ ଯିବା ଆସିବା ଦୃଶ୍ୟ ବେଶ୍ ଆନନ୍ଦ, ଆଶା ଓ ଉତ୍ସାହଦାୟକ। ଖୋଦ୍ ରାଜଧାନୀର ଉପକଣ୍ଠରେ ଥିଲେ ମଧ୍ୟ, ଏହା ଏପର୍ଯ୍ୟନ୍ତ ଗୋଟିଏ ପଲ୍ଲିମେଳା ହୋଇ ରହିଛି। ରାଜଧାନୀର ଉଚ୍ଚଶିକ୍ଷିତ ହାକିମ ହୁକୁମାମାନେ ପ୍ରାୟ ଏ ମେଳା ଦେଖିଆସନ୍ତି ନାହିଁ। ଖୁବ୍ କମ୍ ସଂଖ୍ୟକ ରାଜଧାନୀଆଙ୍କ ପାଦ ପଡ଼େ ଏଠି। କିନ୍ତୁ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଚନ୍ଦ୍ରଭାଗା ବୁଡ଼ ପାଇଁ ଆସିଥିବା ଯାତ୍ରୀମାନେ ଅଧିକାଂଶ ଚନ୍ଦ୍ରଭାଗାରୁ ଫେରି ଖଣ୍ଡଗିରି ଆସିବାକୁ ଧର୍ମତଃ ବାଧ୍ୟ।

ବହୁ ସାଧୁ ସନ୍ୟାସୀ ଏହି ସମୟରେ ଏଠି ଆସି ପହଁଞ୍ଚନ୍ତି ଏବଂ ଖଣ୍ଡଗିରିର ବିଭିନ୍ନ ଗୁମ୍ଫାରେ ବା ପାହାଡ଼ର ପାଦଦେଶରେ ଧୂନି ଜାଳି ବସିଥାନ୍ତି। ସେମାନଙ୍କୁ ଘେରି ବସିଥାନ୍ତି ଭକ୍ତମାନେ। ଠାଏ ଠାଏ ଖଞ୍ଜଣି ମାଡ଼ ସହ ଭଜନ ଚାଲୁଥାଏ ଏ ରାତିଯାକ। ''ବାଇମନରେ। ବସି ହଂସକୁ ଖେଳା, ହଂସ ଉଡ଼ିଗଲେ ବୁଡ଼ିବ ଭେଳା।'' ମଝିରେ ମଝିରେ ଚିଲମରେ ଗଞ୍ଜେଇ ଭରି ଅଗ୍ନି ସଂଯୋଗାନ୍ତେ ପ୍ରସାଦ କରିସାରି ସାଧୁ ଜଣକ ଭକ୍ତମାନଙ୍କ ହାତକୁ ବଢ଼ାଇ ଦେଉଥିବେ ଏବଂ ଭକ୍ତମାନେ ସେହି ପ୍ରସାଦ ସେବନ କରି ଆହୁରି ଭକ୍ତି—ଉନ୍ମାଦନାରେ ଖଞ୍ଜଣି ପିଟି ଗାଇ ଚାଲୁଥିବେ— 'ମନମୂଷାରେ! ତୁ ତ ଗଞ୍ଜେଇ ଖାଇ— ଦିନେ ବିରାଡ଼ିକି, ଦିନେ ବିରାଡ଼ିକି, ଦିନେ ବିରାଡ଼ିକି ଚିହ୍ନିଲୁ ନାହିଁ। ଆଉ ଠାଏ ଠାଏ ଝାଞ୍ଜ, ଗିନି, ମୃଦଙ୍ଗ ସହଯୋଗରେ ସଂକୀର୍ତ୍ତନ ମଧ୍ୟ ଚାଲିଥିବ।' ଆର୍ କବେ ନିତାଇ ଆମାୟ କରୁଣା କରିବେ।'' କିମ୍ବା ''ସୁନାର ବରନ ପୋଷା ପକ୍ଷୀଟିଏ କିଏ ସେ ଦେଖିଛ ଭାଇ?'' ଆଉ ଠାଏ ଠାଏ ହାର୍‌ମୋନିୟମ୍ ଓ ଡୁବିତାବଲା ସହଯୋଗରେ ଭଜନ ଗୀତ ସବୁ ବୋଲା ହେଉଥିବା— ''ଚକାଆଖି! କାହାକୁ ମୁଁ କରିବଇଁ ସାକ୍ଷୀ ହେ।''

କିମ୍ବା "ରାଧିକା ବୋଇଲେ ଦୂତୀ ଗୋ ମତେ ଜର କରିଛି।" ପାହାଡ଼ର ପାଦଦେଶରେ ଠାବେ ଠାବେ କାଠଗରିଣ୍ଡାମାନ ଜାଳି କେହି କେହି ସାଧୁ ଗୁମ୍ ଗମ୍ଭୀର ହୋଇ ବସି ରହିଥିବେ। ପାଖରେ ତ୍ରିଶୂଳଟିଏ ପୋତା ହୋଇଥିବ। ତା' ଦେହରେ ନାଲି କନାଟିଏ ବନ୍ଧା ହୋଇଥିବ। ତାଙ୍କୁ ଘେରି ରହିଥିବେ କେତେକ ରହସ୍ୟବାଦୀ ଭକ୍ତ। ସେମାନଙ୍କ ମନରେ ଏଇସବୁ ପ୍ରଶ୍ନ– "ମୃତ୍ୟୁ ପରେ ଆତ୍ମା କୁଆଡ଼େ ଯାଏ ?" କିମ୍ବା "ଜୀବ ପରମ କେବେ ଭେଟାଭେଟି ହେବେ ?" ଜୈନ ମନ୍ଦିର ତଳକୁ ବକୁଳଗଛ ମୂଳରେ ପ୍ରତିବର୍ଷ ପରି ଏକ ମହାଯଜ୍ଞ ଅନୁଷ୍ଠିତ ହେଉଛି। ସନ୍ନିକଟ ଗୁମ୍ଫାମାନଙ୍କରେ ବହୁ ଲୋକ ପରିବାର ଧରି ରହୁଛନ୍ତି କିଏ ଦିନେ, କିଏ ଦି' ଦିନ, ତିନିଦ୍ଦିନ। ସେମାନେ ଆସିଛନ୍ତି ମଫସଲମାନଙ୍କରୁ ଶଗଡ଼ଗାଡ଼ିରେ। ଶଗଡ଼ ଗାଡ଼ିସବୁ ଧାଡ଼ି ଧାଡ଼ି ହୋଇ ରାସ୍ତାକଡ଼ରେ ମଫସଲମାନଙ୍କରୁ ବଳଦମାନଙ୍କର ବେକରେ ଘଣ୍ଟି ଘାଗୁନି ରୁଣୁଝୁଣୁ ଶୁଭୁଛି। ଏତେ ଅରକ୍ଷିତ ଦାସ୍‌ଙ୍କ ଗାଦି ମଠରେ ମଧ ବହୁତ ବସିଛନ୍ତି। ସେଠି ମଧ ଚାଲିଛି କୀର୍ତ୍ତନ ଓ ଭଜନ– "ଆରେ, ନିଶବଦ ଘରୁ ଶବଦ ଶୁଭୁଛି– ଶୂନ୍ୟମଣ୍ଡଳରେ ରାହାସ ଚାଲିଛି– ଅଣସର ଘରେ କିଳିଶୀ ପଡ଼ିଛି ଚେଇଁଛି ଶୋଇଛି ଜଣା ନ ପଡୁଛି....."

ଆଉ ଏଣେ ପାଞ୍ଚନମ୍ବର ଜାତୀୟ ରାଜପଥର ଛକଠାରୁ ପାହାଡ଼ ପର୍ଯ୍ୟନ୍ତ ବହୁ ପ୍ରକାର ପଲ୍ଲି–ଉତ୍ପାଦିତ ପଣ୍ୟଦ୍ରବ୍ୟ ସବୁ ବିକ୍ରୀ ହେଉଛି। କାଠ ତିଆରି ଜିନିଷ, କୁଲା, ବାଉଁସିଆ, ଟୋକେଇ, ମାଠିଆ, ହାଣ୍ଡି, ଆଲୁମିନିୟମ ବାସନ, କୃଷି ଉପକରଣ ଇତ୍ୟାଦି। ମାଟିତିଆରି କଣ୍ଢେଇ, ଚିନାମାଟି ଓ ପଥରର ବାସନ ଓ ମୂର୍ତ୍ତିମାନ ବିକ୍ରୀ ହେଉଛି। ସକାଳ ଦଶଟାରୁ ରାତିତମାମ ଯାତ୍ରା ଲାଗି ରହିଛି। ବହୁ ଜଳଖିଆ ଦୋକାନ, ମିଠେଇ ଦୋକାନ ଓ ହୋଟେଲ ବି ଚାଲିଛି। ମନୋହରୀ ଦୋକାନ ଓ ଚୂଡ଼ୀ ଅଳଙ୍କାରାଦି ଦୋକାନରେ ମଧ କମ୍ ଭିଡ଼ ହେଉନାହିଁ। ଏଣେ ତିନି ଚାରିଗା ଯାତ୍ରାପାର୍ଟି ମଧ ତମ୍ବୁ ଘେରାଇ ରାତିରେ ଅଭିନୟ ଦେଖାଉଛନ୍ତି। ସେଠି ଟକେଟ୍ କିଣି ଲୋକେ ରାତିସାରା ଯାତ୍ରା ଅଭିନୟ ଦେଖୁଛନ୍ତି। ସବୁଠାରେ ଆନନ୍ଦ ଉନ୍ମାଦନା। ସହଜ ସରଳ ଫୁର୍ତ୍ତିମନ୍ତ ଆନନ୍ଦ। ମୁକ୍ତ ହୃଦୟରେ ଆନନ୍ଦ। ଖଟିଖିଆ ଲୋକଙ୍କର ଆନନ୍ଦ। ରାତ୍ରିର ଆକାଶରେ ନିର୍ମଳ ଜହ୍ନ ଶୋଭା ପାଉଛି। ଧବଳ ଜ୍ୟୋତ୍ସ୍ନାରେ ଖଣ୍ଡଗିରିର ବୃକ୍ଷଲତା ଅତ୍ୟନ୍ତ ରମଣୀୟ ଦେଖାଯାଉଛି। ଜ୍ୟୋତ୍ସ୍ନା ଓ ଛାୟାର ଅପୂର୍ବ ବିନ୍ୟାସରେ ସମସ୍ତ ସ୍ଥାନ ଦିଶୁଛି ସତେକି ଗୋଟିଏ ରହସ୍ୟମୟପୁର ବା କଳ୍ପଲୋକ। ଖଣ୍ଡଗିରିର ଇତିହାସ ଅତି ପ୍ରାଚୀନ। ଦୁଇ ହଜାର ବର୍ଷ ଧରି ଏଠି କେତେ ଲୀଳା ହୋଇଗଲାଣି। ବୌଦ୍ଧ, ଜୈନ, ଶାକ୍ତ, ଶୈବ, ତନ୍ତ୍ର ବୈଷ୍ଣବ ଆଦି ବହୁ ଧର୍ମସାଧନାର ପୀଠଭୂମି ଏଇ ଖଣ୍ଡଗିରି। ସେଠି ପାଦ ଦେଲାମାତ୍ରେ ଇତିହାସର ବାସନା ବାହାରେ। ଦୁଇ ହଜାର ବର୍ଷଧରି କେତେ ସାଧୁ, କେତେ ସନ୍ଥ,

କେତେ ବୈରାଗୀ, କେତେ ଭିକ୍ଷୁ ଆଉ ତୀର୍ଥଙ୍କରମାନଙ୍କର ଦେହ ହାତର ସ୍ପର୍ଶ ସେଇ ପଥରମାନଙ୍କରେ ଲାଗି ରହିଛି। ଇତିହାସକୁ ନ ଜାଣି ମଧ୍ୟ ଏକ ଅବୋଧ ଆକର୍ଷଣରେ ଏହି ସ୍ଥାନ ସୂକ୍ଷ୍ମ ଅନୁଭୂତି—ପ୍ରବଣ ମଣିଷର ମନକୁ ଟାଣିରଖେ। ଆଉ ଯେଉଁମାନେ ଇତିହାସକୁ ଜାଣିଛନ୍ତି, ସେମାନଙ୍କ ମନ ଭିତରେ ଜ୍ୟୋସ୍ନା ରାତିରେ ବୃକ୍ଷଗୁଳ୍ମ ଆହ୍ଲାଦିତ ଏଇ ତପୋଭୂମି ଅପୂର୍ବ ମାୟାଲୋକର ଆଚ୍ଛନ୍ନତା ସୃଷ୍ଟିକରେ। ମନ ଭିତରେ ସବୁ ଉଗ୍ର ପ୍ରତିକ୍ରିୟାମାନ ଶାନ୍ତ ହୋଇଯାନ୍ତି। ଖୁବ୍ ଶୀତଳ ଲାଗେ— ପରିପୂର୍ଣ୍ଣ ଲାଗେ— ଅବିଚ୍ଛନ୍ନ ଲାଗେ— ହୃଦୟ ସହଜ ସତେଜ ହୋଇଉଠେ। ବିଶେଷତଃ ଏଇଭଳି ମେଳା ଦିନମାନଙ୍କରେ ସମବେତ ହୋଇଥିବା ସେହିସବୁ ପୂଣ୍ୟକାମୀ ନରନାରୀଙ୍କ ସହିତ ଏକାତ୍ମଭାବ ଆସିଯାଏ।

କିନ୍ତୁ ହାୟ! ରାଜଧାନୀର ଲୋକେ, ବିଶେଷ କରି ସେଇ ମେଳାକୁ ଯାଆନ୍ତି ନାହିଁ। ଏଠାକାର ରୁଦ୍ଧ ବାୟୁମଣ୍ଡଳରେ, ଧନ, କ୍ଷମତା, ଚାକିରି, ପ୍ରମୋସନ, ରାଜନୀତି, ଧର୍ମଘଟ ଓ ସରକାରମାନଙ୍କର ଉତ୍‌ଥାନ ପତନ ନେଇ ରାଜଧାନୀର ଅଧିବାସୀମାନେ ଦିନରାତି ମାତି ଥାନ୍ତି ଓ ଖବର କାଗଜ ପଢ଼ି ଘଟଣାମାନଙ୍କର ସତ୍ୟାସତ୍ୟ ସମ୍ବନ୍ଧେ କଳ୍ପନା ଜଳ୍ପନା କରୁଥାନ୍ତି। ସେମାନଙ୍କୁ ଏଇସବୁ ଭଲ ଲାଗେ। ଏହା ବାହାରେ ସାରା ପୃଥିବୀ ସଙ୍ଗେ ଓ ଘଣ୍ଟା ନିର୍ଦ୍ଧାରିତ ସମୟର ବାହାରେ ଥିବା "ସମୟ" ସଙ୍ଗେ ସେମାନଙ୍କର ସମ୍ପର୍କ ନାହିଁ। ସେଥିପାଇଁ ରାଜଧାନୀର ବାଳକ, ଯୁବକ, ବୃଦ୍ଧ, ନାରୀ ସମସ୍ତଙ୍କ ମୁହଁରେ ଏକ ଅବରୁଦ୍ଧ ଜଟିଳ ଓ ପ୍ରପୀଡ଼ିତ ଆତ୍ମାର ବିକଳ ଅନୁଶୋଚନା ଫୁଟି ଦିଶେ। ସେ ମୁହଁରେ ଜୀବନର ସହଜ, ସରଳ, ସ୍ୱଚ୍ଛନ୍ଦ ସଜୀବ ଆତ୍ମିକ ଆଲୋକର ହୃଦୟସ୍ପର୍ଶୀ ଦୀପ୍ତ ନାହିଁ— ରସ ନାହିଁ, ଉଲ୍ଲାସ ନାହିଁ।

ଅଥଚ, ରାଜଧାନୀଠାରୁ କେତେ ନିକଟରେ ଏଇ ଖଣ୍ଡଗିରି! ଆଉ ଖଣ୍ଡଗିରିର ଏଇ ସପ୍ତାହ ବ୍ୟାପୀ ଆନନ୍ଦ— ଉତ୍ସବର ପବିତ୍ର ମେଳାରେ ଅନୁଷ୍ଠାନ ଆମର କେତେ ନିକଟରେ।

ଖଣ୍ଡଗିରି ମେଳା ଚଥାପିଚାଲିଛି। ଜହ୍ନରାତି ସରିନାହିଁ। ଯାଆନ୍ତୁ ନା ଆଜି ସସ୍ତ୍ରୀକ ବା ସପରିବାର ବା ବନ୍ଧୁମାନଙ୍କୁ ଧରି ରାତିରେ ଘେରାଏ ଖଣ୍ଡଗିରି ବୁଲି ଆସିବେ !!



# ଆନନ୍ଦପୁରର ଆନନ୍ଦ ଓ ନିରାନନ୍ଦ

ନିକଟରେ ଗୋଟିଏ ଗାଁକୁ ଯାଇଥିଲି। ଗାଁଟି ବାଙ୍କି ରାସ୍ତାରେ ମହାନଦୀ କୂଳରେ। ସରଣ୍ଡା ପାହାଡ଼ ଘେରି ରହିଛି ଗାଁଟିକୁ। ପାହାଡ଼ ତଳେ ତଳେ ସୁବିଖ୍ୟାତ ଅଂଶୁପା ହ୍ରଦ। ସେ ପଟେ ଆଠଗଡ଼ଠାରୁ ଏଗାର କିଲୋମିଟର ଦୂର। ଅଂଶୁପାର ଗୋଟିଏ କୋଣରେ ସୁବର୍ଣ୍ଣପୁର ଗ୍ରାମ। ବେଶ୍ ବଡ଼ ଗ୍ରାମଟିଏ। ହାଇସ୍କୁଲ, ଡାକ୍ତରଖାନା ଅଛି। କିନ୍ତୁ ବଜାର ହାଟ ନାହିଁ। ସେଇ ଗାଁ ଠାରୁ ତିନିଚାରି କିଲୋମିଟର ଦୂରରେ ଆନନ୍ଦପୁର ଗ୍ରାମ।

ସେଇ ଆନନ୍ଦପୁର ଗାଁ କଥା କହୁଛି। ସେଇ ଗାଁର କେତେକ ଯୁବକ ''ବିବେକାନନ୍ଦ ଯୁବ ମହାମଣ୍ଡଳ'' ଗଢ଼ିଛନ୍ତି। ପାଠଚକ୍ରଟିଏ ଗଢ଼ିଛନ୍ତି। ସ୍ୱାମୀ ବିବେକାନନ୍ଦଙ୍କ ବହି ପଢ଼ାପଢ଼ି କରି ସେମାନେ ବିବେକାନନ୍ଦଙ୍କ ଭାବରେ ଉଦ୍‌ବୁଦ୍ଧ ହୋଇଛନ୍ତି ଓ କେତେକ ସାମାଜିକ କର୍ମରେ ଲାଗି ରହିଛନ୍ତି। ''ନିଖିଳ ଓଡ଼ିଶା ଯୁବ ମହାମଣ୍ଡଳ''ର ସମ୍ପାଦକ ସାଙ୍ଗେ ଆମେ କେତେଜଣ ତାଙ୍କ ବାର୍ଷିକ ଉତ୍ସବକୁ ଯାଇଥିଲୁ। ଆମକୁ ସେମାନଙ୍କ ଭିତରେ ପାଇବା ମାତ୍ରେ ଗ୍ରାମବାସୀମାନେ ଖୁବ୍ ଉତ୍ସାହିତ ହୋଇପଡ଼ିଲେ। ସଭା ହେଲା– ବିବେକାନନ୍ଦ, ରାମକୃଷ୍ଣ, ଶ୍ରୀଅରବିନ୍ଦ, ଗାନ୍ଧିଜୀଙ୍କ କଥା ଆଲୋଚନା ହେଲା। ଭାରତବର୍ଷ କାହାକୁ କହନ୍ତି– ଭାରତବର୍ଷର ଆତ୍ମାର ବାଣୀ କ'ଣ – ଏ ଦେଶର ଅବତାରବାଦ – ପ୍ରାଚୀନ ଓ ଆଧୁନିକ ମୁନିଋଷିଗଣ– ମଣିଷର ଭାଗ୍ୟ ଓ କ୍ରମବିକାଶ – ଆମର ଋଷିମାନଙ୍କ ଦ୍ୱାରା ପ୍ରଦର୍ଶିତ ଜୀବନର ଲକ୍ଷ୍ୟ–ଆମର ବର୍ତ୍ତମାନ ସାମାଜିକ ବ୍ୟବସ୍ଥା–ଆମର ଜାତିଭେଦ– ବର୍ଣ୍ଣଭେଦ ପ୍ରଭୃତିର ମନ୍ଦ ଦିଗ– ଆମର ସାମାଜିକ ଜୀବନରେ ସାମ୍ୟବାଦ ବା ସମାଜବାଦ– ଈଶ୍ୱର ଓ ଦିବ୍ୟଜୀବନ, ଦିବ୍ୟସମାଜ ପ୍ରଭୃତି ବହୁ ଗୁରୁତର ବିଷୟରେ ବକ୍ତାମାନେ ଆଲୋଚନା କଲେ ଏବଂ ଗ୍ରାମବାସୀଗଣ ଆବାଳ ବୃଦ୍ଧବନିତା ସେଗୁଡ଼ିକୁ ମନଯୋଗ ଦେଇ ରାତ୍ରି ଦଶଟା ପର୍ଯ୍ୟନ୍ତ ଶୁଣିଲେ ଏବଂ ଖୁବ୍ ଖୁସି ମଧ୍ୟ ହେଲେ। ଜଣେ ଉତ୍ସାହୀ ଭାବବାଦୀ ଗ୍ରାମବାସୀ କହିଲେ – ''ଆଜ୍ଞା! ଆଗ କାଳର ସବୁ ବିଧି ବ୍ୟବସ୍ଥା ତ ଲୋପ ହୋଇଗଲା। କୀର୍ତ୍ତନ ଗଲା– ଭଜନ ଗଲା– ଭକ୍ତଗୋଷ୍ଠୀ ହରିନାମ ମହୋତ୍ସବ ମଧ୍ୟ ଆଉ ଆଜିକାଲି କେହି କରୁନାହାନ୍ତି। ଭାଗବତ ଘରକୁ ମଧ୍ୟ ଆଉ କେହି ମାନୁ ନାହାନ୍ତି। ଟୋକାମାନେ ତ ଏଗାର କିଲୋମିଟର ରାସ୍ତା ସାଇକେଲରେ ଯାଇ ଆଠଗଡ଼ରେ ସିନେମା ଦେଖି

ରାତି ଦୁଇଟାକୁ ଘରକୁ ଫେରୁଛନ୍ତି । ଆଉ ଗାଁମାନଙ୍କରେ ତ ସାହସ୍ର ପୋଥି ଚର୍ଚ୍ଚା ହେଉନାହିଁ । ଖାଲି ଭୋଅଟ କଥା ଚାଲିଛି । ଖାଲି ଜନତା, କଂଗ୍ରେସ, ଲୋକଦଳ– ଏଇଥିରୁ ଗୁଡ଼େ ହେଉଛନ୍ତି । ସରପଞ୍ଚ, ଚେୟାରମ୍ୟାନ; ଭଆଡ଼ମେମ୍ବର, ସମସ୍ତେ ସେଇ ଗୋଟିଏ ନାଆରେ । ଆଜି କିଏ କଂଗ୍ରେସରେ ତ, କାଲି ସେ ଯାଇ ଜନତାରେ ମାରିଲାଣି– ଆଜି ଜନତାରେ ତ କାଲି ଲୋକଦଳରେ । କଣ ଏବେ କରିବ ମଣିଷ ! ଖାଆଲି ଏଇଥିରୁ ଗୁଡ଼େ ହେଉଛନ୍ତି । ସେଇଥିରୁ ବାଡ଼ିଆବାଡ଼ି, ମାଲିମକଦ୍ଦମା । ଡେଢ଼ାଡେଢ଼ି– ପେଲାପେଲି । ଧର୍ମ କଥା, ଦେଶ କଥା କିଏ କହୁଛି– ନା କିଏ ଶୁଣୁଛି ! ତେବେ ଆଜି ବକ୍ତାମାନେ ଯୋଉ ସବୁ ବିଷୟରେ କହିଲେ– ଆମ ସମସ୍ତଙ୍କ ମନବୋଧ ହୋଇଗଲା । ଏଇମିତି ସବୁ ବିଷୟରେ ଯଦି ଆମେ କଥାବାର୍ତ୍ତା ହୁଅନ୍ତେଇଁ ସବୁଦିନେ, ତା' ହେଲେ ଲୋକଙ୍କମନରୁ ଏ ବିଷୟ ହରଣ ହୋଇଯାନ୍ତା । ଗାଁ ଗାଁ ରେ ଆଉ ଅପକର୍ମ ହୁଅନ୍ତା ନାହିଁ । ଆମକୁ ଏ ସବୁ ଅମୃତବାଣୀ ଭଲା କିଏ କହୁଛି– କିଏ ଶୁଣାଉଛି ? ତିନିଦିନ ତଳେ ଦଳେ ଆସି ସେ ନଈକୂଳେ ସଭା କରିଥିଲେ । ଖାଲି ବାଦ ବିବାଦ କଥା । ସେ ଏମିତି– ଆମେ ଏମିତି । ସେ ଖାଇଗଲେ– ଆମେ ଖୁଆଇବୁ । ସେ ପେଲିଦେଲେ– ଆମେ ଉଠାଇବୁ । ସେ ନେଇଗଲେ ଆମେ ଦେଇଦେବୁ । ଖାଲି ପରନିନ୍ଦା– ଆପଣା ବଡ଼ିମା । ଅସଲ କଥା– ଆମକୁ ଭୋଟ ଦିଅ । ଆମେ ରାଜା ମନ୍ତ୍ରୀ ହେବୁ । ଭବିଲା ବେଳକୁ ସମସ୍ତେ ଚୋର । କାଇଁ କାହା ମୁହଁରୁ ତ ଏପରି ଅମୃତ କଥା ବାହାରୁ ନାହିଁ । ଏସବୁ ମହାପୁରୁଷଙ୍କ ବିଷୟରେ କେହି ତ ପଦେ କିଛି କହୁନାହାନ୍ତି ! କେହି କଣ କେମିତି କହିବେ ? ସେମାନେ କଣ ରାମକୃଷ୍ଣ, ବିବେକାନନ୍ଦ, ଗାନ୍ଧୀ ମହାତ୍ମାଙ୍କ କଥା ଜାଣିଛନ୍ତି ଯେ ? ସେମାନଙ୍କ ବାଟରେ ଗମିଛନ୍ତି ଯେ, ସେ ଭାବ କହିବେ ? ଖାଲି କଥା ଜାଣିଛନ୍ତି– ଆପଣା ଲାଭ ମନାସୁଛନ୍ତି ।

ରାତି ଦଶଟାରେ ସଭା ସରିଲା । ଅରୁଆ ଭାତ, ଡାଲମା ଆଉ ଆମ୍ବ ଖଟାର ମହୋତ୍ସବ ମଧ୍ୟ ସରିଲା । ପ୍ରାୟ ଦୁଇଶହ ଲୋକ ଖାଇଲେ । ସେଇଠୁ ଆରମ୍ଭ ହେଲା ସେଇ ପେଣ୍ଡାଲରେ "ରାମଲୀଳା" । ଗତ କେତେଦିନ ଧରି ସବୁଦିନେ ରାମାୟଣର ଗୋଟିଏ କାଣ୍ଡ ଅଭିନୀତ ହେଉଥାଏ । ସେ ଦିନ ଥିଲା କିଷ୍କିନ୍ଧାକାଣ୍ଡ । ବାଳୀ ସୁଗ୍ରୀବ ଯୁଦ୍ଧ । ଯେଉଁମାନେ ରାମଲୀଳାରେ ଅଭିନୟ କଲେ– ସେମାନେ ସମସ୍ତେ କୃଷିକାରୀ ଓ ମତ୍ସ୍ୟଜୀବୀ । ସେ ଗାଁରେ ପାଣି ସୁବିଧା ଥିବାରୁ ହରେକ ରକମର ପରିବା ଚାଷ ହୁଏ । ଏବେ ଟାଇଚୁଙ୍ଗ ଧାନ କଟା ଚାଲିଥାଏ । ଅଭିନେତାମାନେ ଏହି ଭୀଷଣ ଖରାରେ ସକାଳ ପହରୁ ତିନିଟାଯାଏ ବିଲକାମ କରି ଫେରନ୍ତି । ସେମାନଙ୍କ ପାଇଁ ଅରୁଆ ଭାତ, ଡାଲମା, ଆମ୍ବ ଖଟା ରନ୍ଧା ହୋଇଥାଏ– ଠାକୁର ଘରେ । ପ୍ରସାଦ ହୋଇଥାଏ । ସେତକ ଖାଇ କିଛି ସମୟ ବିଶ୍ରାମ ନିଅନ୍ତି । ରାମଲୀଳ

ଆରମ୍ଭ ହେଲାଦିନୁ ସମସ୍ତେ ହବିଷ ପାଳୁଛନ୍ତି। ଦିନକେ ବକ୍ତେ ଆହାର। ରାତି ବାରଟା ବେଳକୁ ଅଭିନୟ ଆରମ୍ଭ ହୁଏ। ରାତି ପାହିବାଯାଏ ଚାଲେ। ସେ ରାତିରେ ସେହିମାନେଇ ଓହ୍ଲାଇଥିଲେ ରାମ, ଲକ୍ଷ୍ମଣ, ସୁଗ୍ରୀବ, ହନୁମାନ, ନଳ, ଅଙ୍ଗଦ, ସୁଷେଣ, ଜାମ୍ବବାନ, ଗୟ, ଗବୟ, ତାରା ଓ ରୁମା ଆଦି ଭୂମିକାରେ। ରାମାୟଣର ସେହି ମହାନ୍ ସ୍ମରଣୀୟ ଚରିତ୍ରଗୁଡ଼ିକ ସେମାନଙ୍କର ସରଳ ଆନ୍ତରିକ ଅଭିନୟରେ ଜୀବନ୍ତ ହୋଇ ଉଠିଥିଲେ। ଦରିଦ୍ରଗ୍ରାମ୍ୟ ଶ୍ରମଜୀବୀମାନେ। ମୂଲ୍ୟବାନ ଚକମକିଆ ନାଟ୍ୟପୋଷାକ ପରିଚ୍ଛଦ କାହୁଁ ପାଇବେ? ନଗରୀ ରାଣୀ ଅଯୋଧ୍ୟା ବା ସ୍ୱର୍ଣ୍ଣମୟୀ ଲଙ୍କାପୁରୀର ଐଶ୍ୱର୍ଯ୍ୟ ସେହି ଦରିଦ୍ର ଗ୍ରାମବାସୀମାନେ କେତେ ପର୍ଯ୍ୟନ୍ତ ବା କଳ୍ପନା କରିପାରବେ? ମାତ୍ର ସେହି ଦୀନହୀନ ମଳିନ ଛିନ୍ନ ପୋଷାକ ପରିଚ୍ଛଦ ଭିତରେ ସେମାନଙ୍କର କି ମର୍ମସ୍ପର୍ଶୀ ଆନ୍ତରିକ ଅଭିନୟ! ଶହ ଶହ ଲୋକ ରାତିସାରା ବସି ଦେଖୁଥାନ୍ତି। ଋଷ୍ୟମୂକ ପର୍ବତ ତଳେ ଯେତେବେଳେ ହନୁମାନ, ଶ୍ରୀରାମ, ଲକ୍ଷ୍ମଣଙ୍କୁ ଦେଖି ଯାଇ ଭକ୍ତିଭରେ ଭୂମିଷ୍ଠ ପ୍ରଣାମ କଲେ, "ହରିବୋଲ ହୁଳହୁଳି"ରେ ଗାଁ ଦାଣ୍ଡ ଉଚ୍ଛୁଳି ଉଠିଲା। ଗ୍ରାମ୍ୟ ରାତିର ସେହି ସରଳ ପରିବେଶଟି ଦିବ୍ୟ–ପ୍ରେମଭକ୍ତିରେ ହାଲୋଳମୟ ହୋଇଗଲା। ସମସ୍ତଙ୍କ ଆଖିରୁ ଲୁହ ବୋହି ପଡ଼ିଲା। ସତେକି ହଜାର ହଜାର ବର୍ଷ ପରେ ପୁଣି ଥରେ ସେହି ଦିବ୍ୟଦୃଶ୍ୟ ସମସ୍ତଙ୍କ ଆଗରେ ପ୍ରକଟ ହୋଇଗଲା– ରାମ ହନୁମାନ ଭେଟ।

ଆମ୍ଭେମାନେ ଏ ଦୃଶ୍ୟରେ ଅତ୍ୟନ୍ତ ଅଭିଭୂତ ହୋଇ ପଡ଼ିଲୁ। ମନରେ ପ୍ରତ୍ୟୟ ହେଲା– ପ୍ରକୃତରେ ଭାରତବର୍ଷର ଆତ୍ମା ଏଇ ଗ୍ରାମ ଭିତରେ ତଥାପି ବଞ୍ଚି ରହିଛି। ଏଇ ଖଟିଖିଆ ଚାଷୀ ମୂଲିଆମାନେ ଭାରତବର୍ଷର ଅସଲ ଧର୍ମକୁ ଆପଣା ଭିତରେ ବଞ୍ଚାଇ ରଖିଛନ୍ତି। ଆମେ ସବୁ ଧୋବଧାଉଳିଆ ସ୍ୱାର୍ଥସର୍ବସ୍ୱ କଥାକୁହା ମୁକୁନ୍ଦମାନେ ରାଜନୀତି, ସିନେମା, ରେଡ଼ିଓ, ଟେଲିଭିଜନ, କାର୍, ଫ୍ରିଜ୍ ନେଇ ବ୍ୟସ୍ତ। ବକ୍ତୃତା, ନୃତ୍ୟ, ସଙ୍ଗୀତ, ସାହିତ୍ୟ କଳା ସଂସ୍କୃତି– ଏପରିକି ଧର୍ମ ଇତ୍ୟାଦି ଯାହାସବୁ ନେଇ ଆମେ ସହରରେ ଖୁବ୍ ଢାକଢୋଲ ପିଟୁଥାଉ ସେ ସବୁ ବଡ ଅନ୍ତଃସାରଶୂନ୍ୟ ମନେ ହେଲା।

କିନ୍ତୁ ରାମଲୀଳା କିଛି ବାଟ ଅଗ୍ରସର ହୋଇଛି କି ନାହିଁ– ହଠାତ୍ ଲାଇଟ୍ ଲିଭିଲା। ସେ ଗ୍ରାମକୁ ବିଦ୍ୟୁତ୍ ଆଲୋକ ଯାଇଥିଲେ ବି ଗାଁ ଲୋକେ ନିଜ ନିଜ ଘରକୁ ନେଇ ନାହାଁନ୍ତି। କିନ୍ତୁ ରାମଲୀଳା ଆସରରେ ବିଦ୍ୟୁତ୍ ଆଲୋକ ଜଳୁଥିଲା ଏବଂ ବାରମ୍ବାର ଲାଇଟ୍ ଲିଭିଲା ଏବଂ ରାମଲୀଳାରେ ବ୍ୟାଘାତ ଘଟିଲା। କେତେକ ଲୋକ ମନରେ ସନ୍ଦେହ କରି ଗ୍ରାମଠାରୁ କିଛି ଦୂର ଯାଇ ଦେଖିଲେ ଯେ, ବିଦ୍ୟୁତ୍ ତାର ଉପରେ ସାଇକେଲ ଚେନ୍‌ଟିଏ ପଡ଼ିଛି। ଅନୁସନ୍ଧାନରୁ ବୁଝାଗଲା ଯେ, ଆଖପାଖର

ଗୋଟିଏ ଗାଁର କେତେକ ଯୁବକ ଏହା କରିଛନ୍ତି। ତା'ର କାରଣ ହେଲା— ସେମାନେ ଏଗ୍ରାମକୁ ରାମଲୀଳା ଦେଖି ଆସିଥିଲେ ଏବଂ ମଞ୍ଚ ପାଖରେ ଗୋଟିଏ ଅନୁଚିତ ସ୍ଥାନରେ ବସି ଅଶୋଭନୀୟ ଆଚରଣ କଲେ। ତାଙ୍କୁ ସେଠାରେ ବସି ସେପରି ଆଚରଣ ନ କରିବାକୁ ଏ ଗ୍ରାମର କେତେକ ମୁରବୀ ଟିକିଏ ଟାଣ ଭାଷାରେ କହିବାରୁ ଯୁବକମାନେ ଉତ୍ତ୍ୟକ୍ତ ହୋଇ ଉଠିଗଲେ ଓ "ଦେଖିବା କେମିତି ରାମଲୀଳା କରିବ"ବୋଲି ଧମକ ଦେଇ ଏହି ରୂପେ "ଦେଖିଲା କାମ" କରିଦେଲେ।

ରାତି ପାହି ନଥିଲେ ବି ଅଗତ୍ୟା ସେ ରାତିରେ ରାମଲୀଳା ବାଧ୍ୟ ହୋଇ ବନ୍ଦ ହୋଇଗଲା ଏବଂ ଦର୍ଶକମାନେ ଅତ୍ୟନ୍ତ ଦୁଃଖିତ ଓ ନିରାଶ ହୋଇ ଫେରିଗଲେ। ଅଭିନେତାମାନେ ମଧ୍ୟ ଖୁବ୍ ହତାଶ ବୋଧକଲେ। ସମସ୍ତେ ଦୀର୍ଘଶ୍ୱାସ ପକାଇ ସେଇ ଗୋଟିଏ ବାକ୍ୟ କହୁଥିଲେ— "ଆଜି ଆଉ ରାମ ହନୁମାନ ଭେଟ"ହୋଇ ପାରିଲା ନାହିଁ।

ଆଜିକାଲି ଯୋଉସବୁ ଗାଁକୁ ବିଦ୍ୟୁତ୍ ଆଲୋକ ଯାଇଛି— ସେ ସବୁଗାଁରେ ଏମିତି ହଠକାରିତା ଚାଲିଛି— ଯାନୀଯାତ୍ରା ବାହାବ୍ରତ ଆଦି ଉତ୍ସବମାନଙ୍କରେ। କଣ ତା' ହେଲେ ଲାଭ ହେଲା ? ଆଜିକୁ ୪୦—୫୦ ବର୍ଷ ତଳେ ଯେତେବେଳେ ଗାଁ ଗଣ୍ଡାରେ ପେଟ୍ରୋମାକସ୍ ଲାଇଟ୍ ବି ନ ଥିଲା— ସେତେବେଳେ ମଶାଲ ଆଲୁଅରେ ରାମଲୀଳା ହୋଇ ପାରୁଥିଲା— ରାମ ଭରତ ମିଳନ ହେଉଥିଲା— ରାମ ହନୁମାନ ଭେଟ ହେଉଥିଲା। କୃଷ୍ଣ ସୁଦାମା ଭେଟ ହେଉଥିଲା— ରାଧା କୃଷ୍ଣ ମିଳନ ହେଉଥିଲା। କିନ୍ତୁ ଆଜି ଗାଁ ଗାଁରେ ବିଜୁଳି ଆଲୁଅ ଜଳିଲା— କିନ୍ତୁ ସେହି ବିଜୁଳି ଆଲୁଅରେ ଯଦି ରାମ ହନୁମାନ ଭେଟ ନ ହୋଇପାରିଲା— କି ରାଧାକୃଷ୍ଣ ମିଳନ ନ ହୋଇପାରିଲା— ତେବେ ସେ ବିଜୁଳି ଆଲୁଅରେ ଲାଭ କ'ଣ ? ତାହା ବିଜୁଳି ଆଲୁଅ ନା ଡାହାଣୀ ଆଲୁଅ ?

❋❋

# କଥାକୁହା କପିଳା

ଗୋଟିଏ ପ୍ରାଇଭେଟ୍ ବସ୍‌ରେ ଆମେ ଯାଇ ବସିଲୁ। ପୁରୀ ଯିବୁ। ସାଢେ ଗୋଟାଏ ବେଳେ ବସ୍ ଛାଡ଼ିବ। ଭିତରେ ଲୋକ ଖୁନ୍ଦି ହୋଇଗଲେଣି। ତଥାପି ଲୋକ ପଶୁଛନ୍ତି। ସରକାରୀ ବସ୍‌ଠାରୁ ଏ ବସ୍‌ଟି ନିଶ୍ଚୟ ସୁନ୍ଦର ଓ ସ୍ୱାଛନ୍ଦ୍ୟଦାୟକ। ଖୁବ୍ ଗୁଳୁଗୁଳି ଗରମ ହେଉଥାଏ। ଏଣେ ମେଘ ମଧ ବର୍ଷିବ ବର୍ଷିବ ହେଉଥାଏ। ତିନିଜଣ ଯୁବକ ଗୋଟିଏ ସିଟ୍‌ରେ ବସିଥିଲେ। ଜଣେ ପାଟିକରି ଡାକିଲା– ହେ କଣ୍ଡକ୍ଟର ଭାଇ। ଆହେ ଆମ ବହିସବୁ ଓଦା ହୋଇଯିବ– ଭିତରକୁ ନେଇ ଆସ। ମାତ୍ର କଣ୍ଡକ୍ଟର୍ ଶୁଣିବା ଅବସ୍ଥାରେ ନ ଥାନ୍ତି। ସେ ଦଣ୍ଡାୟମାନ ଓ ଆଗନ୍ତୁକ ଯାତ୍ରୀମାନଙ୍କୁ ଟିକେଟ୍ ଦେବାରେ ବ୍ୟସ୍ତ। ଦି'ଚାରି ଟୋପା ମେଘ ପଡ଼ିଗଲା।

ବସ୍ ଚାଲିଲା। କଣ୍ଡକ୍ଟର୍ ଆସିଲେ ପଛଆଡ଼କୁ। କହିଲେ– ତିନି ଗଣ୍ଠିଲି ବହି ପାଇଁ ମାସୁଲ ଦେବାକୁ ପଡ଼ିବ। ଜଣେ ଯୁବକ କହିଲେ– ଆମେ ତିନିଜଣ ଟିକେଟ୍ କରିଛୁ। ତା'ଛଡ଼ା–ଏ ହେଲା ରାମକୃଷ୍ଣ ମିଶନ୍ ବହି। ଏଥିପାଇଁ ଆମକୁ ମାସୁଲ ଦେବାକୁ ପଡ଼େନାହିଁ। କଣ୍ଡକ୍ଟର୍ କିନ୍ତୁ ନଛୋଡ଼ବନ୍ଧା। କି ରାମକୃଷ୍ଣ ମିଶନ୍ ହୋ ? ହକ୍ ମାଲ ନଉଛ–ମାସୁଲ ଦେବ। ଆଉ ଜଣେ ଯୁବକ କହିଲେ, ଆମେ ଏଥିଲାଗି ମାସୁଲ ଦେଉନାହୁଁ କି ଦବୁ ମଧ ନାହିଁ। ତମେ କଣ କରିବ କର। ମାତ୍ର କଣ୍ଡକ୍ଟର ପାଟିକରି ଚିଲେଇଲେ। ପାଖ ସିଟ୍‌ର ଜଣେ ଭଦ୍ରଲୋକ କହିଲେ– ଆହେ ବାବୁ! ରାମକୃଷ୍ଣ ମିଶନର ବହି। କେଯାଏ ବା ମାସୁଲ ହେବ ? ଗୋଟେ ଧର୍ମାନୁଷ୍ଠାନ। ଧର୍ମ ପାଇଁ ଟଙ୍କା ଦି'ଟା ଛାଡ଼ିପାରୁନ ? କଣ୍ଡକ୍ଟର୍ ନିର୍ବିକାର ଭାବେ କହିଲେ, ଆଜ୍ଞା ! ଧର୍ମରୁ ଆମକୁ କଣ ମିଳିବ ? ମାଲ ନଉଛ, ମାସୁଲ ଦେବ। ଧର୍ମ କଥା କାହିଁକି ଉଠୁଛି ? ଆଉ ଜଣେ ଯାତ୍ରୀ କହିଲେ– ଆରେ ବାବୁ; ଏ ତ ଏମିତି ସେମିତି ମାଲ ନୁହଁ। ଏ ହେଲା ଧର୍ମମାଲ। ଯାକୁ ତୁମେ ତୁମଆଡୁ ମାସୁଲ ଦେଇ ବସ୍‌ରେ ଦେବା କଥା। କଣ୍ଡକ୍ଟର କହିଲେ– "ଆଜ୍ଞା ଆଜିକାଲି ଆଉ ଧର୍ମ ଅଛି ? ଜଣେ ପ୍ରୌଢ ଗ୍ରାମ୍ୟ ଭଦ୍ରବ୍ୟକ୍ତି ଉତ୍ତ୍ୟକ୍ତ ସ୍ୱରରେ କହିଲେ– ଧର୍ମ ନାହିଁ ? ଧର୍ମ ନଥିଲେ ତୁମ ବସ୍ ଚାଲୁଛି କେମିତି ? ଜଣେ ନେତା ଭଳିଆ ଲୋକ ହସି ହସି କଣ୍ଡକ୍ଟରଙ୍କ ତରଫରୁ କହିଲେ– ବସ୍ ଧର୍ମରେ ଚାଲୁନାହିଁ, ଡିଜେଲରେ ଚାଲୁଛି। କଣ୍ଡକ୍ଟର୍ କିନ୍ତୁ ଏ ସବୁ ବୃଥା ଯାତ୍ରୀ ସୁଲଭ, ବାଦାନୁବାଦରେ ଯୋଗ ନ ଦେଇ ବହି ଲଗି ମାସୁଲ ଦାବୀ କରୁଥାନ୍ତି ଏବଂ ବସ୍‌ଟି ଜଗନ୍ନାଥ ସଡ଼କରେ ଉଠି ପଡ଼ି ଚାଲିଥାଏ। ଶେଷକୁ ସେ ଯୁବକମାନେ ଖୁବ୍ ଉତ୍ତ୍ୟକ୍ତ ହୋଇ କହିଲେ–

ତୁମେ ଏତକ ମିଶନ ବହି ପାଇଁ ମାସୁଲ ଦାବୀ କରୁଛ, କିନ୍ତୁ ରାଜନୀତିବାଲାଙ୍କୁ, ପୋଲିସଙ୍କୁ ମାଗଣାରେ ବସ୍‌ରେ ବସାଇ ନେବ। ତା' ଛଡ଼ା ଦକ୍ଷିଣା ବି କିଛି ଦେବ। କଣ୍ଡକ୍ଟର୍ କହିଲେ– ବାବୁ! ସେଇଟା ଆମର ଧର୍ମ। ତୁମ ଧର୍ମ ତୁମେ ପାଳୁଛ, ଆମ ଧର୍ମ ଆମେ ପାଳୁଛୁ। ରାଜନୀତି ନେତା ଆଉ ପୋଲିସ ଅସନ୍ତୁଷ୍ଟ ହେଲେ ଆମ ବସ ଚକ ବନ୍ଦ ହୋଇଯିବ। ଏହି ସମୟରେ ନେତା ଭଳିଆ ଦିଶୁଥିବା ଜଣେ ଯାତ୍ରୀ କହିଲେ– ହେ କଣ୍ଡକ୍ଟର୍ ବାବୁ! ବନ୍ଦକର। ମିଶନ ବହି ପାଇଁ ମାସୁଲ ନିଅନା। ବନ୍ଦକର, ମୁଁ କହୁଛି। କଣ୍ଡକ୍ଟର୍ ଚୂପ୍ ହୋଇଗଲେ।

କିଛି ବାଟ ବସ ଚାଲିଲା। ବସ୍ ଉଠୁଥାଏ, ପଡୁଥାଏ। ଯାତ୍ରୀମାନେ ଜଗନ୍ନାଥ ସଡ଼କର ଦୂରବସ୍ଥା ସମ୍ବନ୍ଧେ କଥାବାର୍ତ୍ତା ହେଉଥାନ୍ତି। ଜଣେ କହିଲେ– ଦୀର୍ଘ ବାରବର୍ଷ ହୋଇଗଲା। ଦୁଇ ଦୁଇଟା ନବକଳେବର ଗଲାଣି। ମାତ୍ର ଏ ରାସ୍ତା ତିଆରି ହୋଇ ପାରିଲା ନାହିଁ। ଓଡ଼ିଶାର ସବୁଠାରୁ ମାନ୍ୟଗଣ୍ୟ ପୁରୁଣା ରାସ୍ତା ଏ। ଲୋକେ ଏବେ ମଧ ଏ ରାସ୍ତାକୁ ପାଦ ଦେବା ପୂର୍ବରୁ ଆଗ ହାତ ·ଲଗାଇ ମୁଣ୍ଡରେ ମାରନ୍ତି। ଗୋଟାଏ ଆତ୍ମମର୍ଯ୍ୟଦା ସମ୍ପନ୍ନ ଜାତି ଗୋଟେ ମାସ ଭିତରେ ଏ ରାସ୍ତାକୁ ଠିକ୍ କରି ଦିଅନ୍ତା। ସମସ୍ତେ ଏ ବାଟେ ଯାଉଛନ୍ତି– ମନ୍ତ୍ରୀଙ୍କଠାରୁ ଏମ୍.ଏଲ୍.ଏଙ୍କ ଯାଏ, ଭକ୍ତଙ୍କଠାରୁ ବେପାରୀଙ୍କ ଯାଏ। କାହା ଆଖିରେ ପଡୁନି? ଆଉ ଜଣେ ଯାତ୍ରୀ କହିଲେ– କାହା ଆଖି ଆଉ ରାସ୍ତା ଉପରେ ନାହିଁ ଭାଇ! ସମସ୍ତଙ୍କ ଦୃଷ୍ଟି ରହିଛି ବେରାସ୍ତା ଉପରେ। ସମସ୍ତେ ବେରାସ୍ତାରେ ଧାଉଁଛନ୍ତି। ମାର୍ଗ ଉପରେ ଦୃଷ୍ଟି ପଡ଼ିବ କେମନ୍ତେ? ଜଗନ୍ନାଥ ସଡ଼କ ପରା ଧର୍ମମାର୍ଗ? ଧର୍ମମାର୍ଗକୁ ସମସ୍ତେ ଅନ୍ଧ।

ବସ୍‌ଟି ରହିଲା ଦାଣ୍ଡମୁକୁନ୍ଦପୁର ବଜାର ଉପରେ। ବହୁ କଷ୍ଟରେ ଜଣେ ବୃଦ୍ଧ ବ୍ରାହ୍ମଣ ବାଡ଼ିଟିଏ ଓ ପୁଟୁଳି ବ୍ୟାଗ୍‌ଟିଏ ଧରି ବସ୍‌କୁ ଉଠିବା ମାତ୍ରେ ଗାଡ଼ି ଛାଡ଼ିଲା। ଖୁନ୍ଦାଖୁନ୍ଦି ହୋଇ ଲୋକେ ଠିଆ ହୋଇଥାନ୍ତି। ବୃଦ୍ଧ ତା'ଭିତରେ ଅଣନିଶ୍ୱାସୀ ହୋଇଗଲେ। ବସିବାକୁ ତ ଜାଗା ନାହିଁ–ଠିଆ ହେବାକୁ ମଧ ସୁବିଧା ନାହିଁ। ବୃଦ୍ଧ ସିଧା ଠିଆ ହୋଇ ପାରୁନଥାନ୍ତି। ବଡ଼ ବିକଳ ହେଉଥାନ୍ତି। ମାତ୍ର ତେଣିକି କାହାର ନିଘା ନ ଥାଏ। ମାତ୍ର ହଠାତ୍ ରାମକୃଷ୍ଣ ମିଶନ୍‌ବାଲା ଯୁବକଙ୍କ ଭିତରୁ ଜଣେ ଉଠି ଠିଆ ହେଲେ ଏବଂ ବୃଦ୍ଧଙ୍କୁ ଆଣି ନିଜ ଜାଗାରେ ବସାଇ ଦେଲେ। ବୃଦ୍ଧଟି ଆଶ୍ଚର୍ଯ୍ୟ ହୋଇ, ଖୁବ୍ କୃତଜ୍ଞତା ବୋଧ କରି ବସିଲେ ଓ ପଚାରିଲେ, କିଏ ତୁମେ ବାବା! ମୁଁ ତ ତୁମକୁ ଚିହ୍ନିପାରୁନାହିଁ? ଯୁବକ କହିଲେ– ଆପଣ ନିଶ୍ଚିତ ଭାବେ ବସନ୍ତୁ ଆଜ୍ଞା! ମୁଁ ଜଣେ ଆପଣଙ୍କ ନାତି। ବୃଦ୍ଧ ଅତ୍ୟନ୍ତ କୃତାର୍ଥ ଚିତ୍ତରେ କୌତୁକର ହସ ହସିଲେ। କହିଲେ– ନାତି? ହଉ, ହଉ ବାପା ଦୀର୍ଘାୟୁ ହୁଅ। ଧର୍ମରେ ମତି ରହୁ।

ଯାତ୍ରୀମାନଙ୍କ ମଧ୍ୟରୁ ଜଣେ କହିଲେ, ଦେଖିଲ ତ ? ଧର୍ମ ଅଛି ନା, ନାହିଁ ? ତାହା ଶୁଣି ଜଣେ ବୁଦ୍ଧିମାନ ରସିକ ଯାତ୍ରୀ ଉତ୍ତର ଦେଲେ—ହଁ, ଧର୍ମ ନାହିଁ ବୋଲି କେମିତି କହିବା ? ମାତ୍ର ତାହା ଆଉ ଜଣେ ଆଚରିଲେ ଯାଇ ଆମେ ଜାଣିପାରୁଯେ ଧର୍ମ ଅଛି। ନିଜେ ଆଚରଣ କରି ଧର୍ମକୁ ପ୍ରତିଷ୍ଠା ଦେଇ ପାରୁନାହିଁ।

ବସ୍ ସେମିତି ଚାଲିଥାଏ ଉଠିପଡ଼ି। ସାକ୍ଷୀଗୋପାଳରେ ବସ୍ ଠିଆ ହେଲା। ଅଳ୍ପ କେତେଜଣ ଓହ୍ଲାଇଲେ। ତା'ଠାରୁ ଅଧିକା ଲୋକ ବସ ଭିତରେ ଚଢ଼ିଲେ। ଛକରେ ଗୋଟିଏ ସିନେମା ପୋଷ୍ଟର ମରା ହୋଇଥାଏ। ଛବିଟିର ନାମ 'ପ୍ରେମିକା'। ସୁନ୍ଦରୀ ଚିତ୍ରତାରକାଟିର ନଗ୍ନ ଅଙ୍ଗଶୋଭା ଆଡ଼କୁ ଚାହିଁ ପୂର୍ବୋକ୍ତ ଗପୁଡ଼ୀ ଯାତ୍ରୀମାନଙ୍କ ଭିତରୁ ଜଣେ କହିଲେ—ଧର୍ମ ନ ରହନ୍ତା କାହିଁକି ? ଭାରତଭୂମି ଏ। ଧର୍ମର ଦେଶ ଏ। କିନ୍ତୁ ସବୁ ସାରୁଛି ଏହି ଲଙ୍ଗଳୀ ଛବି। ଆମର ଯୁବକ ଯୁବତୀମାନେ ଏହି ଲଙ୍ଗଳୀ ଛବି ଦେଖି ଖରାପ ହୋଇ ଯାଉଛନ୍ତି। ହାଇସ୍କୁଲରେ ପଢୁ ପଢୁ, ଏମାନେ ପ୍ରେମ କରିବାକୁ ବାହାରିଲେଣି। କଲେଜମାନଙ୍କରେ ତ ଆଉ ପାଠ ପଢା ହେଉନାହିଁ। ଖାଲି ଏଇ ସବୁ ଟୋକାଟୋକୀଙ୍କର ବ୍ୟଭିଚାର ଚାଲିଛି।

ମୋ ପାଖରେ ଜଣେ ପ୍ରୌଢ ଭଦ୍ରବ୍ୟକ୍ତି ବସିଥିଲେ। ପରେ ଜାଣିଲି ଯେ, ସେ ଜଣେ ଅଧ୍ୟାପକ। ଏତେବେଳଯାଏ ଯେ ଚୁପ୍ ଚାପ୍ ବସିଥିଲେ। ବର୍ତ୍ତମାନ ମୁହଁ ଖୋଲି କହିଲେ—ବୁଝିଲେ ଆଜ୍ଞା ! ଟୋକା ଟୋକୀମାନଙ୍କୁ ଗାଳି ଦେଇ ଆପଣଙ୍କୁ ଭାରି ଖୁସି ଲାଗୁଛି ନାଇଁ ? ଟୋକାଟୋକୀମାନେ ବ୍ୟଭିଚାର କଥା କୋଉଠୁ ଶିଖୁଛନ୍ତି ? ଗପୁଡ଼ୀ ଲୋକଟି ହଠାତ୍ ଥତ୍‌ମତ୍ ହୋଇ ପୁଣି କହିଲେ- କୋଉଠୁ ଆଉ ଶିଖିବେ ? ମାଷ୍ଟ୍ରଙ୍କଠାରୁ !! ଅଧ୍ୟାପକ ପଚାରିଲେ, ମାଷ୍ଟ୍ରେ ପୁଣି କୋଉଠୁ ଶିଖୁଛନ୍ତି ? ଗପୁଡ଼ୀଯାତ୍ରୀ କଣ ଉତ୍ତର ଦେବେ ଠିକ୍ କରିପାରିଲେ ନାହିଁ। ତାଙ୍କ ପାଇଁ ଆଉ ଜଣେ ଚତୁର ଯାତ୍ରୀ କହିଲେ— ମାଷ୍ଟ୍ରମାନେ କୋଉଠୁ ଶିଖିବେ ? ସେମାନଙ୍କୁ ପୁଣି କିଏ ଶିଖାଇବ ? ସେମାନେ ଯେ ନିଜେ ଶିକ୍ଷକ ! ସେମାନେ ଆପେ ଶିଖନ୍ତି, ତା'ପରେ ଅନ୍ୟକୁ ଶିଖାନ୍ତି।

ସେଇଠୁ ବସ୍ ରହିଲା ବାଟ ମଙ୍ଗଳାଙ୍କ ପାଖରେ। ଗାଡ଼ିବାଲା କେତୁଟା ପଇସା ମଙ୍ଗଳାଙ୍କ ବାକ୍ସରେ ପକାଇଲେ। ପୂଜାରୀ ସିନ୍ଦୁର ଓ ମାଳାଟିଏ ଆଣି ଡ୍ରାଇଭରଙ୍କୁ ଦେଲେ। ବସ୍‌ଯାକ ଯାତ୍ରୀ ସମସ୍ତେ "ମାଆ, ମାଆ" କହି ନମସ୍କାର କଲେ ଏବଂ ଆପଣା ଧାର୍ମିକତାର ପରିଚୟ ଦେଲେ।

ସେଇ ବୃଦ୍ଧ ବ୍ରାହ୍ମଣ ଭଦ୍ରବ୍ୟକ୍ତି ଆପଣାର ବାଡ଼ି ଓ ବୁଜୁଳି ବ୍ୟାଗ୍ ଧରି ସେଇଠି ଓହ୍ଲାଇବାକୁ ଉଠିଲେ ଏବଂ ରାମକୃଷ୍ଣ ମିଶନବାଲା ଯୁବକ ଦି'ଜଣ ତାଙ୍କୁ ଧରାଧରି କରି ବସ୍‌ରୁ ଓହ୍ଲାଇଦେଲେ। ଗଲାବେଳେ ସେ ହସି ହସି କହିଲେ— ଗାଡ଼ିଟାଯାକ କେବଳ କଥାକୁହା କପିଳାମାନେ ଜୁଟିଛନ୍ତି। ଏଇ ଟୋକାମାନେ ହିଁ ଅସଲରେ ଧର୍ମ କଣ ଜାଣନ୍ତି।



# କାପୁରୁଷତାର ନିର୍ଲଜ ନିଦର୍ଶନ

ଓଡ଼ିଶାର ଗୋଟିଏ ବିଶିଷ୍ଟ ସହରକୁ କିଛିଦିନ ତଳେ ଯିବାକୁ ପଡ଼ିଥିଲା। ସହରର ବିଭିନ୍ନ ରାସ୍ତାରେ ବୁଲୁ ବୁଲୁ ରାସ୍ତା କଡ଼ରେ ଥିବା ବିଭିନ୍ନ ପ୍ରାଚୀର ଓ କାନ୍ଥମାନଙ୍କରେ ବଡ଼ ବଡ଼ ଅକ୍ଷରରେ ଅଶ୍ଳୀଳ କଥା ଲେଖାଯାଇଥିବାର ଆଖିରେ ପଡ଼ିଲା। ସେଥିରୁ ଗୋଟିଏ ବିଶେଷ ଲେଖା ବାରମ୍ବାର ଆଖିରେ ପଡୁଥାଏ। ତା'ହେଉଛି ସ୍ଥାନୀୟ କୌଣସି ମହିଳା କଲେଜର ଭୂତପୂର୍ବା ଜନୈକା ଅଧ୍ୟକ୍ଷାଙ୍କ ନାମରେ। ପ୍ରକାଶ ଥାଉକି ସେହି ଅଧ୍ୟକ୍ଷା ଶିକ୍ଷା ବିଭାଗରେ ଜଣେ ସ୍ୱନାମଧନ୍ୟା ବଶିଷ୍ଠା ଅଧ୍ୟାପିକା ରୂପେ ଓ ଅଧ୍ୟକ୍ଷା ଭାବରେ ଖ୍ୟାତିଲାଭ କରିଥିଲେ। କୌଣସି କାରଣରୁ ସେହି କଲେଜରେ ଛାତ୍ରୀ ବୃନ୍ଦ ଓ ଅନ୍ୟ ଅନ୍ତେବାସୀମାନେ ତାଙ୍କ ଉପରେ ଅସନ୍ତୁଷ୍ଟ ହୋଇ ତାଙ୍କୁ ସେଠାରୁ ସ୍ଥାନାନ୍ତରିତ କରିବାକୁ ଆନ୍ଦୋଳନ ଏବଂ ସେହି ଆନ୍ଦୋଳନ ସୀମାତିକ୍ରମ କଲାପରେ ତାଙ୍କୁ ସେଠାରୁ ସ୍ଥାନାନ୍ତରିତ କରାଗଲା। ଯେ ସବୁ ବିଷୟରେ ଆମ୍ଭମାନଙ୍କର ବିଶେଷ କିଛି କହିବାର ନାହିଁ। ଯଦିଓ, ଗୋଟିଏ ଅନୁଷ୍ଠାନର ଅଧିକାଂଶ ଅନ୍ତେବାସୀ ସେହି ଅନୁଷ୍ଠାନର କୌଣସି କର୍ତ୍ତା ବା କର୍ତ୍ତ୍ରୀଙ୍କ ବିରୁଦ୍ଧରେ ସକାରଣେ ବା ଅକାରଣେ ଅସନ୍ତୋଷ ପ୍ରକାଶ କଲେ, ତାହା ତୁମୂଳ ଆନ୍ଦୋଳନ ହେବା ପୂର୍ବରୁ ମୀମାଂସିତ ହୋଇଯିବା ଉଚିତ୍ ବୋଲି ଆଶା କରାଯାଏ ଏବଂ ଆଧୁନିକ ଯୁଗର ବିଚାର ପରିପ୍ରେକ୍ଷୀରେ ସେଠାରୁ ତାଙ୍କୁ ତୁରନ୍ତ ଅନ୍ତର କରି ନେବା ଅଧିକ ଯୁକ୍ତିସଂଗତ ଓ ଶାନ୍ତିସ୍ଥାପକ ବ୍ୟବସ୍ଥା ଏବଂ ସଂପୃକ୍ତ ବ୍ୟକ୍ତିଙ୍କ ସମ୍ମାନରକ୍ଷା କରିବାର ଏକମାତ୍ର ପନ୍ଥା।

କିନ୍ତୁ କଥା ସେଠି ନାହିଁ। କଥା ହେଉଛି— ସେହି ସମ୍ମାନନୀୟା ଅଧ୍ୟକ୍ଷାଙ୍କ ବିରୋଧରେ ଯେଉଁ ସବୁ ଅଶାଳୀନ କଥାମାନ କାନ୍ଥବାଡ଼ରେ ଲେଖା ହୋଇଥିଲା, ସେଗୁଡ଼ିକ ବର୍ତ୍ତମାନ ପର୍ଯ୍ୟନ୍ତ ସେହିପରି ଅବିକୃତ ଭାବେ ଜାଜ୍ୱଲ୍ୟମାନ ରହିଥିବାର ଦେଖାଗଲା। ସେହି ସବୁ କ୍ରୋଧ—ସଞ୍ଜାତ ଅଶାଳୀନ ଉଦ୍‌ଗୀରଣଗୁଡ଼ିକୁ କାନ୍ଥବାଡ଼ରୁ ଲିଭାଇଦେବା ଲାଗି କେହି କାହାକୁ ଆଦେଶ ବା ଅନୁରୋଧ କରିନାହାଁନ୍ତି। ସେଗୁଡ଼ିକୁ ଆଜି ପର୍ଯ୍ୟନ୍ତ ସେହି ସହରର ଜାତୀୟ ସମ୍ପତ୍ତି ରୂପେ ଅକ୍ଷୁର୍ଣ୍ଣ ରଖାଯାଇଛି। ଜଣେ ବିଶିଷ୍ଟ ଭଦ୍ରମହିଳାଙ୍କର କୌଣସି ବିଶେଷ କାର୍ଯ୍ୟରେ ସନ୍ତୋଷ ଓ ଅସନ୍ତୋଷ ପ୍ରକାଶ କରିବାର ସ୍ୱାଧୀନତା ସମସ୍ତଙ୍କର ଅଛି। ମାତ୍ର ତାଙ୍କର ବ୍ୟକ୍ତିଗତ ଜୀବନ ଉପରେ

କୁତ୍ସାରଚନା କରି ଏବଂ ଛାଇବାଡ଼ାରେ ସେଗୁଡ଼ିକୁ ଜାଜ୍ୱଲ୍ୟମାନ କରି ଆମେ ସାମାଜିକମାନେ ବର୍ତ୍ତମାନ କେଉଁ ଉନ୍ନତ ରୁଚିର ପରିଚୟ ଦେଉଅଛୁ? ଜନତା ସରକାର ସମସ୍ତଙ୍କୁ ଏତେଦୂର ସ୍ୱାଧୀନତା ଦେଇଛନ୍ତି ଯେ, ବର୍ତ୍ତମାନ ଯେ ବଳୁଆ ପଡୁଛି, ସେ ଅନ୍ୟ ଉପରେ ଅତ୍ୟାଚାର କରିପାରୁଛି। ଯେ ବଡ଼ ପାଟିରେ କଥା କହି ପାରୁଛି, ବଡ଼ ବଡ଼ ଅକ୍ଷରରେ ଲେଖିପାରୁଛି, ସେ ଅନ୍ୟ ନିରୀହ ଲୋକର ମାନ–ସମ୍ମାନ ଓ ବ୍ୟକ୍ତିଗତ ଇଜ୍ଜତକୁ ନିମିଷକ ମଧ୍ୟରେ ଧୂଳିସାତ କରିପାରୁଛି। ସେହିପରି, ଯଦି କୌଣସି ଗୋଟିଏ ଅନୈତିକ ବ୍ୟାପାରକୁ ନେଇ ଗୋଟିଏ ଦୃଢ଼ ଦଳ ବା ଗୋଷ୍ଠୀ ଗଢ଼ାହୋଇ ଯାଉଛି, ତେବେ ସେହି ବହଳକାଳିଆ ଦଳ ଗୋଟାଏ ବସ୍ତି ବା ସାଇ ବା କୌଣସି ଜନପଦ ଉପରେ ଯେଉଁଠାତାଇ ଅତ୍ୟାଚାର କରି ପାର ହୋଇ ଯାଇପାରୁଛନ୍ତି। ଆମ ଦେଶରେ ବା ଆମ ରାଜ୍ୟରେ ବର୍ତ୍ତମାନ ସ୍ୱାଧୀନତା ନାମରେ ଏକ ପ୍ରକାର ଘୋର ଅରୁଚିକର ବିଶୃଙ୍ଖଳା ଦେଖାଦେଲାଣି। ଏହା ଗଣତନ୍ତ୍ର ନାମରେ ''ଦଳତନ୍ତ୍ର''ର ଅତ୍ୟାଚାର।

ବିଶେଷତଃ ନାରୀମାନଙ୍କୁ ନେଇ ନାନାଦି କୁତ୍ସିତ ଆଚରଣ ଆମ ରାଜ୍ୟରେ ଏକ ଅଶାଳୀନ ବ୍ୟବହାର ପରଂପରା ସୃଷ୍ଟି କଲାଣି। ଏ ଯୁଗରେ ନାରୀ କେବଳ ପୁରୁଷର ଅଙ୍କଶାୟିନୀ, ପୁରୁଷଶାସିତ। ଅବଳା ପ୍ରାଣୀଟିଏ ମାତ୍ର ନୁହଁ। ବର୍ତ୍ତମାନ ସବୁ କ୍ଷେତ୍ରରେ ନାରୀ ପୁରୁଷର ସମକକ୍ଷ ଓ ବହୁ କ୍ଷେତ୍ରରେ ପୁରୁଷଠାରୁ ଅଧିକ ଯୋଗ୍ୟତା ସଂପନ୍ନା ବୋଲି ମଧ୍ୟ ପ୍ରମାଣିତ ହେଲାଣି। କିନ୍ତୁ ବଡ଼ ଅବଶୋଷର କଥା ଯେ, ସେହି ଅନୁପାତରେ ପୁରୁଷର ରୁଚି ଓ ମର୍ଯ୍ୟାଦାବୋଧ ଯେତିକି ବଢ଼ିବା କଥା, ତାହା ତ ବଢ଼ୁ ନାହିଁ– ବରଂ କମିବାରେ ଲାଗିଛି। ବିଶେଷତଃ ଓଡ଼ିଶାରେ ପୁରୁଷମାନଙ୍କ ପକ୍ଷରେ ଏହା ଏକ ବିକୃତିରେ ପରିଣିତ ହୋଇଗଲାଣି। ଯେ କୌଣସି ନାରୀ ଯଦି କୌଣସି କ୍ଷେତ୍ରରେ କୌଣସି ପ୍ରକାର ବିଶେଷତ୍ୱ ପ୍ରଦର୍ଶନ କଲେ, ତାହା ଆମ ମନରେ ଅଦୃଶ୍ୟ ଈର୍ଷା ଭାବର ସଂଚାର କରି ହଠାତ୍ ଦିନେ ଦୃଶ୍ୟମାନ ଅମର୍ଯ୍ୟାଦାକାରୀ ବ୍ୟବହାରରେ ପ୍ରକାଶ ପାଇଯାଏ। ଯେଉଁ ଜାତି ତା'ର ନାରୀମାନଙ୍କୁ ଏବଂବିଧ ହୀନ ଓ ଅଶାଳୀନ ଦୃଷ୍ଟିରେ ଦେଖେ, ନାରୀ ପ୍ରତି ଈର୍ଷାଳୁ ଭାବରେ ଜର୍ଜରିତ ହୁଏ– ତାହା କେବଳ ଜାତୀୟ ପୌରୁଷହୀନତାର ହିଁ ପରିଚୟ ଦେଇଥାଏ। ଯଥାର୍ଥ ପୌରୁଷହୀନ, ସାମର୍ଥ୍ୟହୀନ ଜାତିଟିଏ ଏଭଳି ନାରୀ ଚାହେଁ, ଯେଉଁମାନେ ତାର ଅଧୋଭାବର ହିଁ ଚିରଦିନ ରହିଥିବେ। ପ୍ରତିଭାବତୀ, ଶକ୍ତିମୟୀ, ମନସ୍ୱିନୀ ଦୀପ୍ତିମୟୀ ନାରୀଟିଏ ଦେଖିଲେ ଗୋଟିଏ କ୍ଷୟିଷ୍ଣୁ ଜାତିର ପୌରୁଷ ଦିବାଭାଗରେ ପେଚକ ବୃକ୍ଷକୋଟରାଶ୍ରିତ ହୋଇ ରହିଲା ପରି ଲୁଚିଯାଏ ଏବଂ ଜୋକମାନ ଜୋକ ଲବଣ ସଂଯୋଗରେ ସଂକୋଚି ଗଲାପରି ସଂକୁଚିତ ହୋଇଯାଏ ଏବଂ ସେଇ ଲୋଚା କୋଚା

ପୌରୁଷର ଏକମାତ୍ର ପୌରୁଷ ପ୍ରଦର୍ଶନ ହେଲା– ଜଣେ ଦୀପ୍ତିମୟୀ ନାରୀମୁଖ୍ୟମନ୍ତ୍ରୀର ବା ଜଣେ ଜ୍ଞାନସିଦ୍ଧା– ଅଧ୍ୟାପିକାର ବା ପ୍ରତିଭାମୟୀ ନାରୀ– କବିର ବା ଜଣେ ସହୃଦୟା ସମାଜ– ସେବିକାର ବ୍ୟକ୍ତିଗତ ଜୀବନ ସମ୍ପର୍କରେ କେବଳ କଳ୍ପୋଳ–କଳ୍ପିତ। ଯୌନକୈନ୍ଦ୍ରିକ ଅରୁଚିକର କୁତ୍ସାବାଣୀ ପ୍ରଚାର କରି ନିଜ ନିଜର ହୀନମନ୍ୟତା ଓ ଅବଦମିତ ଯୌନ ବୁଭୁକ୍ଷାର ଦୟନୀୟ ପରିଚୟ ପ୍ରକଟ କରିବା, ଏବଂ ଏଥିରେ ସଂଦେହ ନାହିଁ ଯେ, ଯେଉଁ ଜାତି ତା'ର ନାରୀ ସମାଜ ପ୍ରତି ଏବଂବିଧ ମନୋଭାବ ପୋଷଣ କରେ ସେ ଜାତିର ସଂସ୍କୃତିଗତ ଅଧଃପତନ କୋଉ କାଳୁ ଘଟିଗଲାଣି ବୋଲି ବୁଝିବାକୁ ହେବ। ଏବଂ ସେହି ଜାତି କ୍ରମଶଃ ଅଶ୍ଳୀଳ ଓ ଅମାର୍ଜିତ ଏକ ଅପସଂସ୍କୃତିର ଗହ୍ୱର ଭିତରକୁ କିପରି ଖସି ଖସି ଯାଏ, ତାହା ଆମ୍ଭେମାନେ ପ୍ରତିଦିନ ପ୍ରତ୍ୟକ୍ଷ କରୁଛୁ ଏବଂ ନାରୀକୁ ଯଥାର୍ଥ ମର୍ଯ୍ୟାଦାନ ଦେବା ଫଳରେ ସମାଜରେ ଯେଉଁ କାପୁରୁଷତାର ଭାବ ସୃଷ୍ଟି ହୋଇ ଚାଲେ– ତାହା ମଧ୍ୟ ଆମେ ପ୍ରତିଦିନ ଅନୁଭବ କରିବାକୁ ବାଧ୍ୟ ହେଉଛୁ।

କିନ୍ତୁ ତା' ପୂର୍ବରୁ ଏତିକି ଅନ୍ତତଃ ଆମର ତଥା–କଥିତ ପୁରୁଷମାନଙ୍କ ଉଦ୍ଦେଶ୍ୟରେ କହି ରଖୁଛୁ ଯେ– ନାରୀ ହିଁ ସର୍ବପ୍ରଥମେ ଏହି ସରଳ ସଳଖ ନିର୍ବୋଧ ପୁରୁଷଟିକୁ ଜ୍ଞାନବୃକ୍ଷର ଫଳ ଭକ୍ଷଣ କରିବାକୁ ପ୍ରଚୋଦନା ଦେଇଅଛି। ପ୍ରକୃତି ଉପରେ ନିର୍ଭର ନକରି ଆପଣା ପାଇଁ ଆପଣା ଖାଦ୍ୟ ଉତ୍ପାଦନ କରିବାକୁ ପ୍ରବର୍ତ୍ତନା ଦେଇଅଛି। ଗୋଷ୍ଠୀ ବା ସମାଜଟିଏ ଗଠନ କରି ନିଜକୁ ବିରୋଧୀଶକ୍ତିର ଆକ୍ରମଣରୁ ରକ୍ଷା କରିବାର ଉପାୟମାନ ବତାଇ ଅଛି ଏବଂ ଏହି ନାରୀ ହିଁ ଆମକୁ ପ୍ରେରଣା ଦେଇଛି ଗୀତ ଗାଇବାକୁ, ନୃତ୍ୟ କରିବାକୁ, କ୍ରୀଡ଼ା କରିବାକୁ ଏବଂ ଶେଷରେ ସେହି ନାରୀ ହିଁ ଆମକୁ ବାଟ କଢେଇ ନେଇ ଯାଇଛି ଅଗ୍ମାଗ୍ମି ବନସ୍ତ ଭିତରେ ଥିବା ସେହି ଦୂରାଧିଗମ୍ୟ ପର୍ବତ କନ୍ଦରକୁ, ଯୋଉଠି ଗୁହାହିତ ହୋଇ ଲୁଚି ରହିଛନ୍ତି ସେହି ପରମାରାଧ୍ୟ ପୁରୁଷୋତ୍ତମ।

ଓଡ଼ିଆ ଜାତି। କୋଉ ଦିନ ତୁମେ ନୂତନ ଭାବଦୃଷ୍ଟିରେ ନାରୀକୁ ଦେଖିବ? କୋଉଦିନ ତୁମେ ନାରୀକୁ ତା'ର ଯଥାପ୍ରାପ୍ୟ ମର୍ଯ୍ୟାଦା ଦେଇ ଆପଣାର ପୌରୁଷକୁ ବଜାୟ ରଖିବ? ଆମ କାପୁରୁଷତାର ନିର୍ଲଜ୍ଜ ନିଦର୍ଶନ–ଜନିତ ଲଜ୍ଜା, ଦୁଃଖ ଓ ମ୍ରିୟମାଣତାରୁ କେବେ ଭଲା ଆମର ନାରୀସମାଜ ରକ୍ଷା ପାଇବେ?

**

# ଅମାନୁଷିକ ନୃଶଂସତା

କିଛିଦିନ ତଳେ କରୁଣ ଖବରଟିଏ ପଢି ମନ ବିଷାଦରେ ଭରିଗଲା।ଉତ୍ତର ଭାରତର କୌଣସି ଏକ ମହିଳା କଲେଜରେ କୁମାରୀ ଅଧ୍ୟାପିକାଙ୍କ ଘରେ ତେର ଚଉଦ ବର୍ଷର ଚାକର ପିଲାଟିଏ ରଖିଥିଲେ। ସେ ପିଲାଟି ଉପରେ ସର୍ବଦା ବିରକ୍ତ ହୁଅନ୍ତି। କାରଣ ଅଧ୍ୟାପିକାଙ୍କ ଉର୍ବର ମସ୍ତିଷ ଭଳି ତା'ର ମସ୍ତିଷଟିଏ ନ ଥିଲା। ଶହେ କିଲୋମିଟର ଦୂରରେ ସେ ତାର ଦରିଦ୍ର ବାପମାଆଙ୍କ କଥା ଭାବି ବହୁ ସମୟରେ କାନ୍ଦୁଥିଲା। ତାକୁ ସେହି ସହରର ଫ୍ଲାଟ୍ ଘର ବଡ଼ ଏକୁଟିଆ ଲାଗୁଥିଲା। ସହରଟାର ଅତ୍ୟଧିକ ଆଲୋକ, ଔଜଲ୍ୟ ଓ ଦୁର୍ବୋଧ ଧାଁଧପଡ଼, ଗାଡ଼ି, ମଟର ଘୋ ଘା ତା'ର ନିରୀହ କଅଁଳ ସ୍ନାୟୁମଣ୍ଡଳକୁ ଖୁବ୍ ଉତ୍କ୍ଷିପ୍ତ କରୁଥିଲା। ସେ ଘରେ ତାର କେହି ସାଙ୍ଗ ତ ନ ଥିଲେ, କେହି ମଧ ତା' ସଙ୍ଗେ କଥାବାର୍ତ୍ତା କରୁନଥିଲେ। ସେ କେବଳ କାମ କରିବ, କିନ୍ତୁ ମାଲିକାଣୀ ସଙ୍ଗେ କଥାବାର୍ତ୍ତା କରିପାରିବ ନାହିଁ। ତା'ମନରେ କିଛି ପ୍ରତିକ୍ରିୟା ପ୍ରକାଶ କଲାମାତ୍ରେ କୁମାରୀ ଅଧ୍ୟାପିକା ତା' ଗାଲରେ ଠାଇକିନା ଚଟକଣାଟିଏ ବସାଇ ଦିଅନ୍ତି, ଚୁପ୍ କର ଭାଲୁ। ଭାରୀ କଥା କହୁଛୁ ତ। କହିବା ବାହୁଲ୍ୟ, ସବୁଦିନେ ପିଲାଟି ମାଡ଼ଖାଏ ପ୍ରଚୁର। କିନ୍ତୁ ତା' ପେଟକୁ ପୂରା ମୁଠାଏ ଖାଇବାକୁ ପାଏ ନାହିଁ। ତା'ପାଇଁ ତର୍କାରୀ ନ ଥାଏ, ଡାଲି ନ ଥାଏ, ଦୁଇ ପଟରୁ ଅଧିକ ରୁଟିର ବ୍ୟବସ୍ଥା ବି ନ ଥାଏ। ତାକୁ ଜଳଖିଆ ଦିଆଯାଏ ନାହିଁ। ସେ ସବୁଦିନେ ଛୋଟ ବଡ଼ କିଛି ନା କିଛି ଦୋଷ କରେ (ଆଉ ଆମ ଭିତରୁ କିଏ ବା ନ କରେ?) ତା' ହାତରୁ ପାଣି ଢାଳିଯାଏ– ସେ ଅମୁକ ଜିନିଷ ଆଣିବା ପରିବର୍ତ୍ତେସମୁକ ଜିନିଷ ନେଇ ଆସେ। ବଜାରରୁ ବାଇଗଣ କିଣି ଆଣିଲେ ଗୋଟାଏ ବାଇଗଣ ବୁଢା ମଞ୍ଜିଆ ପଡ଼ିଯାଏ। କଲମରେ କାଳି ଭର୍ତ୍ତି କରୁ କରୁ କାଳି ଟିକିଏ ଢାଳିଯାଏ। ଲୁଗା କାଚିଲା ବେଳେ ତା' ହାତରୁ ଛୋଟ ସାବୁନଟି ଖସିଯାଇ ଦିନେ ଦିନେ ପାଇଖାନା ଭିତରେ ଗଳିପଡ଼େ। ଆଉ ଦିନେ ଦିନେ ବି ଅଟାରେ ଟିକିଏ ବେଶି ପାଣି ହୋଇଯାଏ ଓ ଭଜାଟା କଡ଼େଇରେ ଲାଗିଯାଏ। ଏମିତି ସେମିତି କେତେ ଦୋଷ ସେ କରେ ପ୍ରତିଦିନ। ପ୍ରତିଦୋଷ ପାଇଁ ତରୁଣୀ କୁମାରୀ ବିଜ୍ଞାଅଧ୍ୟାପିକାଙ୍କ ଠାରୁ ଖୁବ୍ ମାଡ଼ ଖାଏ। ମାଡ଼ ଖାଇ କାନ୍ଦେ ଏବଂ କାନ୍ଦିବା ଯୋଗୁଁ ଫେର୍ ମାଡ଼ଖାଏ। ଅଧ୍ୟାପିକା, କଲେଜକୁ ଗଲେ, ତା'ର ସେତିକି ସମୟ ମୁକ୍ତି। କିନ୍ତୁ ସେଇ ସମୟ ଭିତରେ ବି ସେ

ଦୋଷଟିଏ କରି ଦେଇଥାଏ। ହୁଏତ ଭିତର ପଟୁ କିଳିଣି ଦେଇ ଶୋଇ ପଡ଼ିଥାଏ। ଅଧ୍ୟାପିକା ପାଠ ପଢ଼ାଇ କ୍ଲାନ୍ତ ହୋଇ ଘରକୁ ଫେରି କବାଟ ସଂଲଗ୍ନ ଘଣ୍ଟି ବଜାନ୍ତି। କିନ୍ତୁ ସେ ଉଠି ପାରେ ନାହିଁ। କବାଟ ଧଡ଼୍ ଧଡ଼୍ କଲେ ଯାଇ ଉଠି ଆସି କବାଟ ଫିଟାଏ ଓ କବାଟ ଫିଟାଉ ଫିଟାଉ ଅଧ୍ୟାପିକା ତାର ଦୁଇ କଅଁଳ ଗାଲରେ ଠାଇ ଠାଇ ଚଟକଣି ବସାଇ ଦିଅନ୍ତି– ଗଧୀ କାହିଁକା ପେଟେ ଲେଖାଁ ଗିଳିବାରୁ ନିଦ ଭାଙ୍ଗୁନି। କ୍ରମଶଃ ପିଲାଟି ମାଡ଼ ଖାଇ ଖାଇ ଗଇଁଠା ହୋଇଗଲା। ଆଉ କାନ୍ଦିଲା ନାହିଁ। କାଠପରି ମାଡ଼ ସହିଗଲା। ସେ ମାଡ଼ଖାଇ ନ କାନ୍ଦିବାରୁ ଅଧ୍ୟାପିକାଙ୍କ ରାଗ ଆହୁରି ବଢ଼ିଯାଏ, ସେ ଆହୁରି ଜୋରରେ ପିଟନ୍ତି। ପିଲାଟି କାନ୍ଦିବାଯାଏ ପିଟି ଲାଗନ୍ତି। ତା'ପରେ ଚାହା ଖାଇ ଖଟ ଉପରେ ଗଡ଼ି ପଡ଼ନ୍ତି। ତାଙ୍କର ସବୁ ଦିନେ ମୁଣ୍ଡ ବଥାଏ ଏବଂ ସବୁବେଳେ ସେ ବୋର୍ ହେଉଥାନ୍ତି। ତାଙ୍କୁ ଆସି ତିରିଶିବର୍ଷ ବୟସ ହେଲା– କିନ୍ତୁ ସେ କୋଉ ପୁରୁଷର ପ୍ରେମରେ ପଡ଼ି ନାହାନ୍ତି କି କୋଉ ପୁରୁଷ ବି ତାଙ୍କ ପ୍ରେମରେ ପଡ଼ି ପାରି ନାହାନ୍ତି।

ଦିନେ କିନ୍ତୁ ଅଧ୍ୟାପିକା କଲେଜକୁ ବାହାରିଲା ବେଳକୁ ରୋଷ ଘରେ ଠକ୍ କିନା କ'ଣ ଶୁଭିଲା। ରୋଷ ଘରେ ପଶି ଦେଖିଲେ ପିଲାଟି ହାତରୁ ଖସି ପଡ଼ି ତାଙ୍କର ଦଶଟଙ୍କା ମୂଲ୍ୟର ସୁନ୍ଦର କପ୍‌ପ୍ଲେଟ୍ ହଳକ ଭାଙ୍ଗି ଚୂନ୍‌ଭୂତ ହୋଇଯାଇଛି। ତରୁଣୀ କୁମାରୀ ବିଜ୍ଞା ଅଧ୍ୟାପିକା ଆଉ ସମ୍ଭାଳି ପାରିଲେ ନାହିଁ। ପିଲାଟିର ଚୁଟି ଧରି ଗୋଟିଏ ରୁମ୍‌କୁ ଘୋଷାରି ନେଲେ। ତା' ଦେହରେ କିରୋସିନି ଢାଳି ଦେଲେ। ଡିଆସିଲି ମାରି ଦେଲେ ଓ ବାହାର ପଟୁ କବାଟ ବନ୍ଦ କରି ଦେଇ କଲେଜ ଚାଲିଗଲେ।

ପରବର୍ତ୍ତୀ ଦୁଃସମ୍ବାଦଟି ହେଲା– ପିଲାଟି ତା' ଭିତରେ ପୋଡ଼ି ହୋଇ ମରିଗଲା। ତା' ମରଣ କାଳ ଚିତ୍କାର କାହାକୁ ଶୁଭିବାର ଉପାୟ ନ ଥିଲା। ଅବଶ୍ୟ ଏ କଥା ପରେ ଜଣାପଡ଼ିଲା ଓ ଅଧ୍ୟାପିକାଙ୍କ ନାମରେ ପୋଲିସ୍ କେସ ହେଲା। ବୋଧହୁଏ ସେ ବର୍ତ୍ତମାନ ଜେଲରେ ଅଛନ୍ତି।

କିନ୍ତୁ କଥା ସେଠି ନାହିଁ। ଅଧ୍ୟାପିକା ଜେଲରେ ଥାନ୍ତୁ କି ନଗରରେ ଥା'ନ୍ତୁ, ଏ ଭଳି ନୃଶଂସ ଘଟଣା ଯେ ଆଜିକାଲି ବଢ଼ି ଚାଲିଛି, ଏହାର କାରଣ କିଛି ବୁଝାପଡୁ ନାହିଁ। ପ୍ରତିଦିନ ଖବର କାଗଜରେ ଅତି ନୃଶଂସ ହତ୍ୟାକାଣ୍ଡର ଖବରମାନ ପ୍ରକାଶ ପାଉଛି। କପି ଧରିଥିବା ଅଧ୍ୟାପକଙ୍କୁ ଷ୍ଟେସନରେ ବା ଟ୍ରେନ ଡବା ଭିତରେ ଉଠି ଛାତ୍ରମାନେ ସାଇକେଲ୍ ଚେନ୍ ବା ଛୁରାରେ କୁରା କୁରା କରି ଛେଦି ଦେଇଗଲେ। କେଉଁ ଗାଁରେ ପୁଅ ମା' ଭଉଣୀ ମିଶି ସଦ୍ୟବିବାହିତା ନିରୀହ ବୋହୂଟିକୁ ତା' ବାପ ଅଙ୍ଗୀକୃତ ଯୌତୁକ ପୂର୍ଣ୍ଣମାତ୍ରାରେ ନ ଦେଇ ଥିବା ଅପରାଧରେ ତାକୁ ପିଟି ପିଟି ତଳେ ପକାଇ ଦେଲେ। ସମସ୍ତେ ମିଶି ତାକୁ ମାଡ଼ି ବସିବା ଅବସ୍ଥାରେ

ଶାଶୁ ତା' ମୁହଁକୁ ଆମ୍ପୁଡ଼ି ଓ କାମୁଡ଼ି ଦେଇ ଛିଣି ଛିଣା କରିଦେଲା କିମ୍ବା କେଉଁଠି ଦଶଜଣ ଯୁବକ ଗୋଟିଏ ଯୁବତୀକୁ ତା' ଘରୁ ଟେକି ନେଇ ଗୋଟିଏ ମଠହତା ଭିତରେ ଜଣ ଜଣ କରି ତା' ଉପରେ ପାଶବିକ ଅତ୍ୟାଚାର କଲେ ଇତ୍ୟାଦି ବହୁ ମର୍ମନ୍ତୁଦ ଅମାନୁଷିକ ଘଟଣା ଆମ ଦେଶରେ ପ୍ରାୟ ପ୍ରତିଦିନ ଘଟି ଚାଲିଛି ଏବଂ କ୍ରମଶଃ ବୃଦ୍ଧି ପାଇବାରେ ଲାଗିଛି। କଅଣ ଏହାର କାରଣ ? କାହିଁକି ଏସବୁ ବଢୁଛି ? କିପରି ଭାବେ ଏସବୁର ନିରାକରଣ ହୋଇ ପାରିବ ?

ଜଣେ ବଂଧୁ କହିଲେ, ବୃଥାରେ ଏ ସବୁ କଥାରେ ମୁଣ୍ଡ ଖେଳାଅ ନାହିଁ, ଦେହକୁ ନିଅ ନାହିଁ। ଏସବୁ ଘଟଣା ସବୁ ଯୁଗରେ ଘଟୁଥିଲା ଏବେ ମଧ ଘଟୁଛି। କେବଳ ଏ ଯୁଗରେ ଖବରକାଗଜ ଅଛି ବୋଲି ସେଗୁଡ଼ିକ ପ୍ରକାଶ ପାଉଛି। ସେମାନେ ଏହିଭଳି ଚମକପ୍ରଦ ଘଟଣାମାନ ପ୍ରକାଶକରି କାଗଜର ଆକର୍ଷଣ ବଢାନ୍ତି ଏବଂ ସେ ଉଦ୍ଦେଶ୍ୟରେ ଖୋଜି ଖୋଜି ଏହି ଭଳି ଘଟଣାମାନ ଗୋଟାଇଥାନ୍ତି। ବୃଥାରେ ଆମେ ସେ ସବୁ ମୁଣ୍ଡରେ ଭର୍ତ୍ତି କରି ଆମ ସ୍ନାୟୁମଣ୍ଡଳୀକୁ ଉତ୍‌କ୍ଷିପ୍ତ ବା ବିଷାଦଗ୍ରସ୍ତ କରିବା ଉଚିତ୍ ନୁହେଁ।

କିନ୍ତୁ ଏସବୁ କଥା ନିଜ ଦେହକୁ ନ ନେଇ ରହି ହବ କି ?

❋❋

# ଗଣପତି ପୂଜା ପ୍ରସଙ୍ଗ

ସବୁ ବର୍ଷପରି ଏ ବର୍ଷ ମଧ ବିଘ୍ନବିନାଶନ, ସିଦ୍ଧିଦାତା; ଜ୍ଞାନଦାତା ଭଗବାନ ଶ୍ରୀ ଗଣପତି ତାଙ୍କର ନିର୍ଦ୍ଦିଷ୍ଟ ଦିବସଟିକୁ ପବିତ୍ର ଓ ଆନନ୍ଦମୟ କରି ମୃଣ୍ମୟ ପ୍ରତିମା ଭିତରେ ଆବିର୍ଭୂତ ହୋଇ ବହୁସ୍ଥାନରେ ସଂପୂଜିତ ହେଲେ। ସେ ଦିନ ପ୍ରତି ବିଦ୍ୟାଳୟରେ, କଲେଜମାନଙ୍କରେ, ବ୍ୟବସାୟ କେନ୍ଦ୍ରମାନଙ୍କରେ ଓ ପ୍ରତି ସାହିରେ ଗଣପତି ମୂର୍ତ୍ତି ସ୍ଥାପିତ ହୋଇ ମହାସମାରୋହରେ ପୂଜାର୍ଚ୍ଚନା ହୋଇଥିଲା। କଲେଜ ଓ ବିଦ୍ୟାଳୟମାନଙ୍କରେ, ସାମୂହିକ ଗଣେଶ ପୂଜା ନ ହୋଇ ପ୍ରତ୍ୟେକ ବିଭାଗ ସ୍ୱତନ୍ତ୍ରଭାବେ ଗଣେଶ ପୂଜା କରିଥାନ୍ତି। ମଫସଲୀ ସହରମାନଙ୍କରେ ଓ ବଡ଼ ବଡ଼ ସହରମାନଙ୍କରେ ପ୍ରତି ସାହିରେ ବା ଗଳିରେ ବହୁ ଗଣେଶ ପୂଜା ଅନୁଷ୍ଠାନ ହୋଇଥିଲା। ସେଥିପାଇଁ ବହୁ ପୂଜାଉଦ୍ୟୋକ୍ତା ରସିଦ୍ ଖାତା ଧରି ଚାନ୍ଦା ଅସୁଲରେ ଲାଗି ପଡ଼ିଥିଲେ। ଗୃହସ୍ଥମାନେ ଚାନ୍ଦା ଦେଇ ବିରକ୍ତ। କାରଣ ଗୋଟିଏ ସାହିରେ ପ୍ରାୟ ପାଞ୍ଚୋଟି ଗଣେଶ ପୂଜା। ଯୁବକମାନେ, କିଶୋରମାନେ, ବାଳକମାନେ ଓ ଏବର୍ଷ ଶିଶୁମାନେ (୪ବର୍ଷରୁ ୬ବର୍ଷ) ମଧ ସ୍ୱତନ୍ତ୍ର ଭାବେ ଗଣେଶ ପୂଜା କରିଥିଲେ। ଏବେ ଜଣାଯାଉଛି ଯେ, ଇସ୍କୁଲ ବା କଲେଜରେ ସରସ୍ୱତୀ ଓ ଗଣେଶ ପୂଜା ହେଉଥିଲେ ମଧ ଛାତ୍ରଛାତ୍ରୀମାନଙ୍କର ସେଥିପ୍ରତି କୌଣସି ସରାଗ ନାହିଁ। ତେବେ ପ୍ରତି ଅଭିଭାବକ ତାର କଲେଜ ପଢୁଆ ପ୍ରତି ପିଲା ପାଇଁ ଅନ୍ତତଃ ପାଞ୍ଚଟଙ୍କା ପର୍ଯ୍ୟନ୍ତ ଚାନ୍ଦା ଦେବାକୁ ବାଧ ହୋଇଛନ୍ତି। ସାହି ସାହିରେ ଯୋଉ ଗଣେଶ ପୂଜାମାନ ହୋଇଥିଲା, ସେଥିରୁ ଅଧିକାଂଶ ଜାଗାରେ ପୂଜା ଥିଲା ଯୁବକମାନଙ୍କର ଗୋଟାଏ ମଉଜ ମଜଲିସ୍ ବ୍ୟାପାର। ଉଚ୍ଚକିତ ରୋଳରେ ମାଇକରେ ସିନେମା ଗୀତ ବାଜୁଥାଏ, ଗୋଟିଏ ସାହିରେ ପାଞ୍ଚୋଟି ଜାଗାରେ—ଦିନ ଓ ରାତି—ଯେତେଦିନ ଯାଏ ଗଣେଶ ରହିଛନ୍ତି। ସାହିବାଲା ଚାନ୍ଦାଦେବାରେ ବିରକ୍ତ ଓ ମାଇକ୍‌ରେ ପ୍ରଚଣ୍ଡ ଶବ୍ଦଶୁଣି ତହୁଁ ବିରକ୍ତ। ମାତ୍ର କିଛି କରିବାର ବା କହିବାର 'ଜୁ' ନାହିଁ। ତେବେ ସୁଖର କଥା ଯେ, ଏବର୍ଷ ଭୁବନେଶ୍ୱରରେ ମାଇକ୍ ଗଣ୍ଡଗୋଳ କେତେକାଂଶରେ କମିଛି। ମାତ୍ର ଚାନ୍ଦା ପାଇଁ ଜୁଲମ ବଢ଼ିଛି। ଗୋଟିଏ ଗରିବ ଚାହା ଦୋକାନୀକୁ ଗଣେଶ ଭକ୍ତ ଯୁବବୀରମାନେ ପନ୍ଦରଟଙ୍କା ଚାନ୍ଦା ମାଗିଲେ। ସେ କିନ୍ତୁ ପାଞ୍ଚଟଙ୍କା ଦେବାକୁ ରାଜି ହେଲା। ଜ୍ଞାନଦାତା ଗଣେଶଙ୍କ ଭକ୍ତ ଯୁବକମାନେ ମାତ୍ରାଧିକ ଜ୍ଞାନାଶିନୀ ସୁରାପାନରେ ମତ୍ତ ହୋଇ ସର୍ବସାଧାରଣଙ୍କ ଆଗରେ ତାକୁ ତା'ର ମାତା ଭଗିନୀ ସମ୍ପର୍କୀୟ ଅଶ୍ଳୀଳ ଭର୍ତ୍ସନାରେ

ପୋତି ପକାଇଲେ। ଧକମ୍ ଧକ୍କା ଦେଲେ ଓ ତାର ବେଞ୍ଚଟିକୁ ଓ ସେଣ୍ଟାଲ ଚାନ୍ଦା ପୂର୍ଣ୍ଣ କେଟଲୀଟି ଧରି ଉଠାଇ ନେଇ ଚାଲିଗଲେ। ବାସ୍ ସମସ୍ତେ ଦେଖୁଛନ୍ତି—କିନ୍ତୁ କିଂକର୍ତ୍ତବ୍ୟବିମୂଢ଼। ସେମିତି ରାସ୍ତାମାନଙ୍କରେ ଦଳ ଦଳ ପିଲା ରାସ୍ତାରେ ଇଟା ଓ କାଠ ଥୋଇ ସ୍କୁଟର, ସାଇକେଲ, ମଟର ଓ ବସ୍‌ମାନ ଅଟକାଇ ଯାତ୍ରୀମାନଙ୍କଠାରୁ ଜବରଦସ୍ତି ଗଣେଶ ଚାନ୍ଦା ଅସୁଲ କରୁଥିଲେ।ଗଣେଶ ପୂଜାର ଦୁଇଦିନ ଆଗରୁ ମୁଁ ବାରିପଦାରେ ଥିଲି। ବାରିପଦାର ଷ୍ଟେସନ ବଜାର ଠାରୁ ଟ୍ରେନ୍ ଲାଇନ୍ କଡ଼େ କଡ଼େ ମୁଁ ଗୋଟିଏ ସାଇକେଲରେ ବାଗ୍ରାରାଡ଼ ଯାଉଥାଏ। କେତେକ ପିଲା ମୋତେ ଘେରି ଗଲେ ଓ ଜବରଦସ୍ତି ମୋଠାରୁ ଟଙ୍କା ଦୁଇଟି ଅସୁଲ କଲେ।

ସହରର ଗୋଟିଏ ଗୋଟିଏ ଗଣେଶ ପୂଜାମଣ୍ଡପରେ ବିଦେଶୀ ପପ୍‌ମ୍ୟୁଜିକ୍ ଚାଲିଥାଏ ଓ ରାତିଯାକ ନିଶା—ଉନ୍ମତ୍ତ ଯୁବକମାନେ ତାଳରେ ଓ ବେତାଳରେ ଉଦ୍ଦଣ୍ଡ ହେଉଥାନ୍ତି। ପ୍ରାୟ ସବୁ ପୂଜାମଣ୍ଡପରେ ବିଦ୍ୟୁତ୍ ଆଲୋକର ସଜାସଜା ଆଡ଼ମ୍ବର ଲକ୍ଷ୍ୟ କରିବା କଥା। ବିଦ୍ୟୁତ୍‌ଶକ୍ତିର ଅଭାବ ପଡ଼ିଛି ବୋଲି କଳକାରଖାନାରେ କାମ ସମୟ କମି ଯାଉଛି– କିନ୍ତୁ ବାହାବ୍ରତଠାରୁ ଗଣେଶପୂଜାଯାଏ ଏତେ ଜାକଜମକରେ ବିଦ୍ୟୁତ୍‌ସଜାହେଉଛି କିପରି ?

ବହୁ ସ୍ଥାନରେ ଗଣେଶ ମେଢ଼ରେ ସୁନ୍ଦର ସୁନ୍ଦର ଗଣେଶ ମୂର୍ତ୍ତି ତିଆରି ହୋଇଥିଲେ। କିନ୍ତୁ ମେଢ଼ଜାକ ବହୁ ସୁନ୍ଦରୀ ଲାସ୍ୟମୟୀ ଉଦ୍‌ଭିନ୍ନ—ଯୌବନା ତରୁଣୀଙ୍କ ମୂର୍ତ୍ତିମାନ କାହିଁକି ଖଞ୍ଜାଯାଇଥିଲା କେଜାଣି ? ଆଜୀବନ ବ୍ରହ୍ମଚାରୀ ଗଣେଶଙ୍କୁ ଏମାନଙ୍କ ମେଳରେ ରଖି ପୂଜା କରିବାର ମତଲବ କଣ ? କେତେକ ଜାଗାରେ ହେମାମାଳିନୀ କି ସାଇରାବାନୁଙ୍କ ଚେହେରା ଭଙ୍ଗୀ ସଙ୍ଗେ ସାମଞ୍ଜସ୍ୟ ରଖି ବିରାଟ ପାର୍ବତୀ ମୂର୍ତ୍ତି ତିଆରି ହୋଇଥିଲେ ଏବଂ ସେହି ନର୍ତ୍ତକୀ ତାରକା—ସଦୃଶା ନାରୀ ମୂର୍ତ୍ତିଟି ଗୋଟିଏ ପାହାଡ଼ ମୁଣ୍ଡିଆ ଉପରେ ଏକ ବିଶେଷ ସିନେମା ଢଙ୍ଗରେ ବସି ମାତ୍ର ବର୍ଷକର ଶିଶୁ ଗଣେଶଟିକୁ କୋଳରେ ଧରି ରାଣି ଲଡୁଟିଏ ଖୁଆଉଥିଲେ ଏବଂ ତାଙ୍କୁ ଘେରି ବହୁ ସୁନ୍ଦରୀ ନର୍ତ୍ତକୀ ବିବିଧ ଶୃଙ୍ଗାର ଭଙ୍ଗୀରେ ନୃତ୍ୟରତା ଦିଶୁଥିଲେ। ସେଠାରେ ପହୁଞ୍ଚି ବହୁ ଗଣେଶ ଦର୍ଶନକାମୀ ଦର୍ଶକମାନଙ୍କ ଭିତରୁ ଗଣେଶ ମୂର୍ତ୍ତିଟି କେଉଁଠି ବୋଲି ପରସ୍ପରକୁ ଜିଜ୍ଞାସାବାଦ କରୁଥିଲେ ଏବଂ ଜଣେ ବହୁତ ଉଣ୍ଡାଉଣ୍ଡି କରି ନାରୀମୂର୍ତ୍ତିଗୁଡ଼ିକ ମଧ୍ୟରୁ ଶିଶୁ ଗଣେଶଟିକୁ ଠାବ କରି ଅନ୍ୟ ପ୍ରୌଢ଼ ପ୍ରୌଢ଼ାମାନଙ୍କୁ ଆଙ୍ଗୁଳି ନିର୍ଦ୍ଦେଶ କରି ଦେଖାଇ ଦେଉଥିଲେ।

ଗତବର୍ଷ ଗଣେଶ ପୂଜାକୁ ପୁରୀ ଯାଇଥିଲି। ବଡ଼ଦାଣ୍ଡର ଉଭୟ ପାର୍ଶ୍ୱରେ ବିରାଟ ମୃଣ୍ମୟ ଗଣେଶ ମୂର୍ତ୍ତିମାନ ଚମତ୍କାର ମେଢ଼ ଭିତରେ ଶୋଭା ପାଉଥିଲେ ଓ ତାଙ୍କ ପାଖେ ବିଧିପୂର୍ବକ ପୂଜାରାଧନା ମଧ୍ୟ ଚାଲିଥିଲା। ପୁରୀରେ ଗଣପତି ପୂଜା ଖୁବ୍ ଜାକଜମକରେ ହୁଏ। ଶ୍ରୀ ଜଗନ୍ନାଥ ସ୍ୱୟଂ ଗଜବେଶ ଧାରଣ କରି

ଗଣପତି ରୂପେ ପୂଜିତ ଓ ଅର୍ଚ୍ଚିତ ହୁଅନ୍ତି। ସେହି ଉପଲକ୍ଷେ ବିଭିନ୍ନ ମେଢ଼ ପାଖରେ ନାଟତାମସା, ଦାସକାଠିଆ, ନୃତ୍ୟସଂଗୀତାଦି ମଧ୍ୟ ରାତିଯାକ ଚାଲିଥାଏ। ତଥାପି, ସେଠି ମଧ୍ୟ ଏହି ଅଶ୍ଳୀଳ ମାଇକ୍ ଯୋଗେ ସିନେମା ସଂଗୀତର ଚିତ୍କାର ଠାଏ ଠାଏ ଶୁଭୁଥିଲା। ଆଜିକାଲି ମାଇକ୍ ବଜେଇବାଟାକୁ ସଭ୍ୟତା ବା ସଂସ୍କୃତି ବୋଲି ଆମ ଲୋକେ ଭାବୁଛନ୍ତି। ଅଥଚ ପୃଥିବୀ ସାରା ସର୍ବସାଧାରଣ ସ୍ଥାନରେ ଉଚ୍ଚ ରଡ଼ିରେ ମାଇକ୍ ବଜାଇବା ଗୋଟିଏ ବେଆଇନ୍ ସଭ୍ୟତାର କାରବାର ବୋଲି ଘୋଷିତ।

ଗଣେଶଙ୍କ ପାଇଁ ବର୍ଷକ ଭିତରେ ଯୋଉ ଦିନଟି ନିର୍ଦ୍ଦିଷ୍ଟ ସେଦିନ ଠିକ୍ ସେ ଆସୁଛନ୍ତି ବର୍ଷ ବର୍ଷ ଧରି । ସେଥିରେ କିଛି ବ୍ୟତିକ୍ରମ ନାହିଁ। କିନ୍ତୁ ଗଣେଶ ଥରେ ମର୍ତ୍ତ୍ୟରେ ଆବିର୍ଭୂତ ହୋଇଗଲେ କେବେ ପୁଣି ସେ ତାଙ୍କର ସ୍ୱକୀୟରୂପକୁ ଫେରିଯିବେ, ସେଥିଲାଗି ବର୍ତ୍ତମାନ କିଛି ନିର୍ଦ୍ଦିଷ୍ଟ ସ୍ଥିର ବିଧାନ ନାହିଁ। କୌଣସି କୌଣସି ଜାଗାରେ ଗଣେଶ ପୂଜା ଚତୁର୍ଥୀଦିନ ହୁଏ ଓ ପଞ୍ଚମୀ ଦିନ ସକାଳୁ ବିସର୍ଜନ ହୋଇ ସନ୍ଧ୍ୟା ବେଳକୁ ପାଣିରେ ପଡ଼ନ୍ତି। ଆମ ପିଲାଦିନେ ମଧ୍ୟ ସର୍ବତ୍ର ତାହାହିଁ ହେଉଥିଲା। ଦୁର୍ଗାଙ୍କ ପରି ଗଣେଶଙ୍କ ପାଖରେ ପାଞ୍ଚଦିନ ପୂଜା ହୁଏ ନାହିଁ। ସେଥିପାଇଁ ହିନ୍ଦୁ ଶାସ୍ତ୍ରରେ ବ୍ୟବସ୍ଥା ନାହିଁ। ମୃଣ୍ମୟ ମୂର୍ତ୍ତି ପୂଜାର ବ୍ୟବସ୍ଥା ଯେଉଁମାନେ କରିଛନ୍ତି– ସେମାନେ ମଧ୍ୟ ତାହା ଲାଗି ଆବାହନ, ପୂଜା ଓ ବିସର୍ଜନର ବିଧି ନିର୍ଦ୍ଦିଷ୍ଟ କରିଛନ୍ତି। କିନ୍ତୁ ଆଜିକାଲି ନବ୍ୟମାନେ ସେ କଥା ଜାଣି ନାହାନ୍ତି ଓ ମାନୁନାହାନ୍ତି। ସାତ ଆଠ ଦିନ ପରେ ମଧ୍ୟ ଆମ ସହରର ସବୁ ଗଣେଶ ପାଣିରେ ପଡ଼ି ନ ଥିଲେ। ଗୋଟେ ଗୋଟେ ଜାଗାରେ ପନ୍ଦର ଦିନ ଯାଏ ମଧ୍ୟ ବିଭିନ୍ନ କାରଣରୁ ଗଣେଶ ପଡ଼ି ରହୁଛନ୍ତି।

ଥରେ କଟକରେ ଗଣେଶଙ୍କ ଉପରେ ସରକାର ୧୪୪ ଧାରା ଜାରି କରିଥିଲେ। ସହରର ଗୋଟିଏ ନିଛାଟିଆ ରାସ୍ତାରେ ଗଣେଶ ତାଙ୍କ ମେଢ଼ରେ ବର୍ଷେକାଳ ବସି ରହିଥିଲେ। ବର୍ଷାରେ ମାଟି ଧୋଇ ଯାଇ ଭିତରର କୁଟି ଦିଶୁଥିଲା। ମେଢ଼ ଉପରେ ଚିଲ, ଶାଗୁଣା ଓ କୁଆମାନେ ବସୁଥିଲେ। ବଡ଼ କରୁଣ, ଅଶ୍ଳୀଳ ଓ ନାରଖାର ସେ ଦୃଶ୍ୟ। ଦୁଇ ସାହିର ଗଣେଶ ଭକ୍ତମାନଙ୍କ ଭିତରେ ବିସର୍ଜନ ବେଳେ ମାଡ଼ପିଟ୍ ହେବାରୁ ସରକାର ଗୋଟିଏ ସାହିର ଗଣେଶ ଭକ୍ତମାନଙ୍କୁ ଏଥିପାଇଁ ଦାୟୀ କରି ସେମାନଙ୍କ ଆରାଧ୍ୟ ଗଣେଶଙ୍କୁ ଏମନ୍ତ ପ୍ରକାର ଦଣ୍ଡ ଦେଇଥିଲେ।

ଆଜି ମଧ୍ୟ ଦୁଇ ସାହି ଓ ଦୁଇ ୟୁନିଟ୍‌ର ଗଣେଶ ପୂଜାବାଲାଙ୍କ ଭିତରେ ମାଡ଼ଗୋଳ ହେଉଛି ଏବଂ ଗଣେଶ ପୂଜା ଦିନ ଓ ବିସର୍ଜନ ଦିନଯାଏ ବହୁ ଦେଶୀ ଓ ବିଦେଶୀ ମଦ୍ୟର କାରବାର ହେଉଛି।

ଗଣେଶ ହେଲେ ହିନ୍ଦୁର ପାଞ୍ଚ ଆରାଧ୍ୟ ଦେବତାଙ୍କ ମଧ୍ୟରେ ସର୍ବାଦୌସଂପୂଜିତ ଦେବତା। ସବୁ କାର୍ଯ୍ୟରେ ପ୍ରଥମେ ତାଙ୍କୁଇ ବରଣ କରାଯାଏ। ସେ ମହାବିଷ୍ଣୁଙ୍କର ଅଂଶ। ସେ ଉପଦେବତା ନୁହଁନ୍ତି। ସେ ସର୍ବବିଘ୍ନ ବିନାଶ କରନ୍ତି। ସର୍ବ ସାଧନାର ସିଦ୍ଧି ତାଙ୍କରି କୃପାଧୀନ ଏବଂ ସେହି କେବଳ ଜ୍ଞାନଦାତା।

ସେ ଯାହାହେଉ, ଆସନ୍ତାକାଲି ଆମ ବସ୍ତିରେ ଗଣେଶ ନଦୀକୁ ବିସର୍ଜନ ହେବା ପାଇଁ ଟ୍ରକରେ ବୁହା ହୋଇ ଯିବେ। କିନ୍ତୁ ଶେଷରେ ସେ ପାଣିରେ ପଡ଼ିବେ, କି ତା' ପୂର୍ବରୁ କୋଉଠି ପଡ଼ିବେ ସେ କଥା କିଏ ଜାଣେ ? ବିଘ୍ନ—ବିନାଶନ ନିଜେ ତାଙ୍କ ଯିବା ପଥର ବାଧାବିଘ୍ନ ଦୂର କରନ୍ତୁ—ଏତିକି କାମନା କରି ରହୁଛି।

ଅତଃପର ବିଶ୍ୱକର୍ମା ଆସୁଛନ୍ତି।

❋❋

# ସ୍କୁଲ କଲେଜରେ ପରୀକ୍ଷାଋତୁ...

ବର୍ତ୍ତମାନ ସ୍କୁଲ କଲେଜମାନଙ୍କରେ ମାଟ୍ରିକ୍, ଆଇ.ଏ, ବି.ଏ, ବି.ଏସ.ସି, ଆଇ.କମ୍, ବି.କମ୍ ପରୀକ୍ଷାଦି ଆରମ୍ଭ ହେବାର ଯଥାଯଥ ଋତୁ ଆସିଗଲା। ଅବଶ୍ୟ ଆଜିକାଲି କଲେଜମାନଙ୍କରେ ବର୍ଷସାରା ପାଠପଢ଼ା ଯେତେ ନହେଉଛି, ପରୀକ୍ଷାଗୁଡ଼ିକ ତା'ଠାରୁ ବହୁ ଗୁଣରେ ଅଧିକ ହେଉଛି; କିନ୍ତୁ ଏବେ ଆସିଯାଉଛି ଏ ବର୍ଷ ଲାଗି ଶେଷ ପରୀକ୍ଷା। ଏହି ପରୀକ୍ଷାଗୁଡ଼ିକ ସାଧାରଣତଃ ବସନ୍ତଋତୁର ପ୍ରାରମ୍ଭରୁ ବର୍ଷାଋତୁର ମଧ୍ୟଭାଗ ପର୍ଯ୍ୟନ୍ତ ଚାଲିବ। ଅବଶ୍ୟ ଅଚାନକ ସରକାର ଭାଙ୍ଗି ସାନି ନିର୍ବାଚନ ପଡ଼ିଥିଲେ, କିମ୍ବା ବନ୍ୟା, ବାତ୍ୟା ଓ ମରୁଡ଼ି ଇତ୍ୟାଦି ପ୍ରାକୃତିକ ଦୁର୍ବିପାକ ଘଟିଲେ ପରୀକ୍ଷାର୍ଥୀମାନଙ୍କର ଆନ୍ଦୋଳନାତ୍ମକ ଦାବୀ ଫଳରେ, କର୍ତ୍ତୃପକ୍ଷ ଯଦି ପରୀକ୍ଷାରେ ସମୟ ସୀମା ଘୁଞ୍ଚାଇବାକୁ ବାଧ୍ୟ ହୁଅନ୍ତି– ତେବେ ଏହି ପରୀକ୍ଷା ଶାରଦାକାଶରେ ନିର୍ମଳ ଚନ୍ଦ୍ର ମଣ୍ଡଳ ବିରାଜିତ ହେବା ପର୍ଯ୍ୟନ୍ତ ମଧ୍ୟ ଚାଲିପାରେ। ଏମନ୍ତ ନିଜର ଅତୀତ ଇତିହାସରେ ଏକାନ୍ତ ବିରଳ ନୁହେଁ। ଛାତ୍ର–ଛାତ୍ରୀ–ବତ୍ସଳ ଅପୋଗଣ୍ଡ ସରକାରଟିଏ ଥିଲେ, ଏହା ନିଶ୍ଚୟ ଘଟିବ। ମୋଟ ଉପରେ ବର୍ଷର ଛଅ ଋତୁରୁ ଏହି ପରୀକ୍ଷା ପର୍ବ ମୋଟ ତିନୋଟି ଋତୁକୁ ପରିବ୍ୟାପ୍ତ ହୋଇ ଚାଲିବ। ହଜାର ହଜାର ପିଲା ପରୀକ୍ଷା ଦେବେ। ହଜାର ହଜାର ଶିକ୍ଷକ–ଅଧ୍ୟାପକ ସେମାନଙ୍କୁ ଜଗିବା ଲାଗି ନିଯୁକ୍ତ ହେବେ। ହଜାର ହଜାର ପରୀକ୍ଷା କେନ୍ଦ୍ର ରାଜ୍ୟର ବିଭିନ୍ନ ସ୍ଥାନରେ ସ୍ଥାପିତ ହୋଇଥିବ। ଘରେ ଶାଗ ପଖାଳ ମାତ୍ର ଖାଇ ସୁବିଧାରେ ଯାଇ ପରୀକ୍ଷା ଦେଇ ପାରିବା ନାମରେ, ପୁଣି ଶହ ଶହ ନୂତନ କେନ୍ଦ୍ରମାନ ଖୋଲିବାକୁ ଦାବୀ ମଧ୍ୟ ଆସିବ। ସେଥିରୁ ଗୋଟିଏ ଦାବୀ ଏ ବର୍ଷ ଲାଗି ଗୃହୀତ ହେବ। ଦୁଇ ବର୍ଷ ତଳେ ସମୂହ କପି କରି, ଜଗୁଆଳି ଓ କେନ୍ଦ୍ର ଅଧ୍ୟକ୍ଷଙ୍କ ନାକ, କାନ କାଟି ଦେଇଥିବା ଅପରାଧରେ ଯେଉଁ ସବୁ ପରୀକ୍ଷା କେନ୍ଦ୍ରକୁ ନାକଚ କରି ଦିଆ ଯାଇଥିଲା, ସେଠାର ଜନସାଧାରଣ ଓ ନେତୃବୃନ୍ଦଙ୍କ ଦାବୀରେ ସେହି ମୃତ କେନ୍ଦ୍ର ଗୁଡ଼ିକୁ ପୁନଶ୍ଚ ନବଜୀବନର ଆଶ୍ୱାସନା ଦିଆଯାଇ ଜାଗ୍ରତ କରାଯିବ। ହଜାର ହଜାର ପରୀକ୍ଷକ ଓ ନିରୀକ୍ଷକ ଇତ୍ୟାଦି ନିଯୁକ୍ତ ହେବେ। ଲକ୍ଷ ଲକ୍ଷ ଖାତା ଲେଖାହେବ ଓ ଲକ୍ଷ ଲକ୍ଷ ଖାତା ଏଠୁ ସେଠିକି ପଠାହେବ। ସେଠୁ ଏଠିକି ପଠାହେବ

ଶିକ୍ଷାଳୟମାନଙ୍କରେ ମହା ଉତ୍ତେଜନା, ଉନ୍ମାଦନା ଓ ହାଲଡ଼ୋଳି ଖେଳିଯିବ। ଉତ୍କଣ୍ଠା ଓ ଉଦ୍‌ବେଗ, ସତର୍କତା, ତତ୍ପରତା, ସାବଧାନତା, ଆଶଙ୍କା ଓ ଇତସ୍ତତଃତାରେ ଶିକ୍ଷାଳୟଗୁଡ଼ିକର ବାତାବରଣ ଗୁମ୍‌ସୁମ୍ ହୋଇଉଠିବ। କପି କରି ପାସ୍ କରିବାକୁ ପ୍ରସ୍ତୁତ ଥିବା ପିଲାମାନେ ଚଞ୍ଚଳ ହୋଇ ଉଠିବେ। ଛୁରୀ ଓ ସାଇକେଲ ଚେନ୍ ଧରି ସେମାନଙ୍କର ଗୁଣ୍ଡା ବଂଧୁମାନେ ଛକ ଜାଗାମାନଙ୍କରେ ଓ ସୁବିଧା ଜାଗା ଉଣ୍ଡି ଛକି ରହିବେ ଓ କପି ଧରାଳି ଶିକ୍ଷକମାନଙ୍କୁ ଘାଏଲ୍ କରିବେ।

ପରୀକ୍ଷା ହଲ୍‌ରେ ପ୍ରବେଶ କରିବା ପୂର୍ବରୁ ଜଗୁଆଳି ଶିକ୍ଷକ ଅଧ୍ୟାପକମାନେ ଗୋଟି ଗୋଟି କରି, ଶାନ୍ତ, ଅଶାନ୍ତ, ପ୍ରଶାନ୍ତ, ଦୁଷ୍ଟ, ଶିଷ୍ଟ ନିର୍ବିଶେଷରେ ସବୁ ପରୀକ୍ଷାର୍ଥୀଙ୍କ ପକେଟ୍ ଗୁଡ଼ିକରେ ହାତ ପୂରାଇ ଦେଖିବେ– କେହି ଦୁର୍ବୃତ୍ତ ପିଲା କିଛି ସନ୍ଦେହଜନକ କାଗଜ ପାଗଜ ରଖିଛି କି ନାହିଁ। ସେମାନେ ସମସ୍ତଙ୍କୁ ଚୋର, ବଦମାସ୍ ପରି ତନଖି କରି ହଲ୍ ଭିତରକୁ ଛାଡ଼ିବେ। ଏଣେ ହଲ ଭିତରେ ବି ଜଗୁଆଳିମାନେ ସୈନ୍ୟବୃନ୍ଦ ମାର୍ଚ୍ଚ କଲା ଭଳି ସର୍ବଦା ଘୂରୁଥିବେ– ସବୁ ପରୀକ୍ଷାର୍ଥିଙ୍କୁ ସନ୍ଦେହ ଦୃଷ୍ଟିରେ କଟାକ୍ଷ କରୁଥିବେ– ମଝିରେ ମଝିରେ ହେଣ୍ଡାଳ ଛାଡ଼ୁଥିବେ। ଏଣେ ବାହାରେ ମଧ୍ୟ କୌଣସି କୌଣସି ଜାଗାରେ ଟିଫିନ୍ କାରିୟର ବା ଦୁଧ ବୋତଲ ଧରି ପିତାମାତାମାନେ ଛୁଆଛଡ଼ା ବିଲେଇଙ୍କ ପରି ଏକର ସେକର ହେଉଥିବେ ଏବଂ କେତେକ ଜଗୁଆଳି ଶିକ୍ଷକ ଅଧ୍ୟାପକ ମଧ୍ୟ ବାହାରେ ଜଗି ଜଗି ବୁଲୁଥିବେ– ସମସ୍ତଙ୍କୁ ସନ୍ଦେହରେ ଉଣ୍ଡୁଥିବେ। ଠାବେ ଠାବେ ବିଶେଷତଃ ସହର ଜାଗାମାନଙ୍କରେ କିଛି ପୁଲିସ୍‌ବାଲା ମଧ୍ୟ ଠେଙ୍ଗାବାଡ଼ି ଧରି ଆସି ଗୋଟିଏ ଗଛ ଛାଇ ତଳେ ଠୁଳ ହୋଇଥିବେ, ମାତ୍ର ତଥାପି ମଧ୍ୟ, ପରୀକ୍ଷାକେନ୍ଦ୍ରରେ ଖାଁ-ଖାଁ କିଛି କିଛି କପି ଧରା ପଡ଼ିବ ଓ କିଛି କିଛି କପି ମଧ୍ୟ ଧରା ପଡ଼ିବ ନାହିଁ। ପରୀକ୍ଷା ଚାଲୁଥିବା ସମୟ ମଧ୍ୟରେ ଖବର କାଗଜରୁ ଜଣାପଡ଼ିବ ଯେ, କୌଣସି କୌଣସି ସ୍ଥାନରେ କପି ଧରିଥିବାରୁ କେହି କେହି ଅପରିଣାମଦର୍ଶୀ ଶିକ୍ଷକ ବା ଅଧ୍ୟାପକଙ୍କୁ ଛୁରାମାରି ବା ଚେନ୍ ଦ୍ୱାରା ଆଘାତ କରି ଘାଏଲ୍ କରାଯାଇଛି ଓ ସଂପୃକ୍ତ ହତଭାଗ୍ୟ ଶିକ୍ଷକ ବା ଅଧ୍ୟାପକ ଜଣକ ହାସ୍‌ପାତାଳରେ ସଂକଟାପନ୍ନ ଅବସ୍ଥାରେ ଅଛନ୍ତି ବା ଅର୍ଦ୍ଧ ପ୍ରାଣ–ସଙ୍କଟରେ ପତିତ ହୋଇ ଦ୍ରୁତ ନିଃଶ୍ୱାସ ପ୍ରଶ୍ୱାସ ଦ୍ୱାରା ବଂଚିବା ଲାଗି ମରଣାନ୍ତକ ପ୍ରୟାସ କରୁଛନ୍ତି।

ଏଣେ କିନ୍ତୁ ବହୁ ମଫସଲି ପରୀକ୍ଷା କେନ୍ଦ୍ରରେ ରୀତିମତ୍ କପି ଚାଲିଥିବ। ସେଠି ପୁଲିସବାଲା ନଥିବେ। ଅଥଚ ସ୍ଥାନୀୟ ରାଜନୀତିକ ଟାଉଟର୍‌ମାନେ ଥିବେ। ସେମାନେ ଆସନ୍ତା ପଞ୍ଚାୟତ ନିର୍ବାଚନରେ ଅଥବା ବିଧାନସଭା ନିର୍ବାଚନରେ ଲଢ଼ିବାକୁ ପ୍ରସ୍ତୁତ ହେଉଥିବେ ଏବଂ ପ୍ରତ୍ୟେକ ନିଜକୁ ଲୋକପ୍ରିୟ ଓ ଛାତ୍ରବନ୍ଧୁ ବୋଲି

ପ୍ରମାଣ କରିବାକୁ ଅତ୍ୟନ୍ତ ବ୍ୟାକୁଳ ହେଉଥିବେ। ତେଣୁ ସ୍କୁଲ କଲେଜର ଛାତ୍ରଙ୍କର ମନତୋଷଣ କରିବାକୁ, ବିଶେଷତଃ କପି କରି ପାସ୍ କରିବାକୁ ବସିଥିବା ଗୁଣ୍ଡା ଗୁଆଁର ଛାତ୍ରମାନଙ୍କ ମନ ତୋଷଣ କରି ସେମାନଙ୍କୁ ହାତରେ ରଖିବାକୁ, ସେମାନଙ୍କୁ କପି କରିବା ପାଇଁ ପ୍ରଶୟ ଦେବା ଲାଗି ସଂପୃକ୍ତ ଶିକ୍ଷକ ଅଧ୍ୟାପକଙ୍କୁ ପରୋକ୍ଷରେ ବା ପ୍ରତ୍ୟକ୍ଷରେ ଉତ୍ସାହିତ ବା ପ୍ରେରଣା ଦେଉଥିବେ। କିଛି କିଛି ମୃଦୁ ମଧୁର ଧମକ ମଧ ଦେଉଥିବେ। ତେଣୁ ସେହି ସବୁ ମଫସଲୀ କେନ୍ଦ୍ରମାନଙ୍କରେ ଖୋଲା ଖୋଲି ସହଜ ଓ ସ୍ୱାଭାବିକ ରୀତିରେ କପି ଚାଲିଥିବ ଏବଂ ସେହିସବୁ ପରୀକ୍ଷାକେନ୍ଦ୍ରର ନିର୍ଲିପ୍ତ ଜଗୁଆଳିମାନେ ନିଶ୍ଚିନ୍ତ ମନରେ ସିଙ୍ଗଡ଼ା, ଛେନାପୋଡ଼ାଦି ଖାଇସାରି, ପାନସିଗ୍ରେଟ୍‌ରେ ବିଳାସ କରୁଥିବେ। କେହି କେହି ହଲ ଭିତରେ ଘୁମାଉଥିବେ। ଏଣେ ପରୀକ୍ଷା ଚାଲିଥିବ– କପି ମଧ ଚାଲିଥିବ। ମେଳା ମେଳା ହୋଇ ଛୁରୀଧାରୀ ଗୁଣ୍ଡାଟୋକାମାନେ କେନ୍ଦ୍ର ଚାରିପଟେ ଓ ବାରଣ୍ଡାରେ ଛାତି ଫୁଲାଇ ସିଂହ ନାଦ କରି କୁଦି କୁଦି ଚାଲିଥିବେ। ହଇହଲ୍ଲା କରୁଥିବେ– କପିମାନ ଯୋଗାଉଥିବେ। ଗ୍ରାମ୍ୟ ଟାଉଟରମାନେ କୁଜୀ କୁଜୀ ନେତାମାନେ, ଭୋଟପ୍ରାର୍ଥୀ ନେତାଙ୍କ ସଙ୍ଗେ ଭ୍ରମଣ କରି ଆପଣାର ମହତୀ କୀର୍ତ୍ତି ପ୍ରଚାର କରୁଥିବେ।

ଏମିତି ଏମିତି ହୋଇ ପରୀକ୍ଷାମାନ ସରିବ। ପାହାଡ଼ ପ୍ରମାଣେ ଗଦା ଗଦା ପରୀକ୍ଷା ଖାତା ବସ୍, ଟ୍ରେନ୍ ଇତ୍ୟାଦିରେ ବୁହା ହୋଇ ଘୁରିବେ। ଅଭିଜ୍ଞ ପରୀକ୍ଷକମାନେ ସେଗୁଡ଼ିକୁ ଦେଖିବା ପାଇଁ ଖୋଲିବେ। ସେ ଗୁଡ଼ିକୁ ଦେଖିଲା ଭଳି ପୃଷ୍ଠା ଓଲଟାଇବେ। ନମ୍ବର ଦେବେ। ମାର୍କଲିଷ୍ଟ ପ୍ରସ୍ତୁତ କରିବେ।

ଏହାର କିଛିଦିନ ପରେ ପରୀକ୍ଷାଫଳ ବାହାରିବ। ପିଲାମାନେ ପାସ୍ କରିବେ– ଫେଲ୍ ମଧ ହେବେ। କେତେକ ପାସ୍‌ପିଲା ଭାବିବେ ଯେ, ସେମାନେ ଫେଲ ହୋଇଥାନ୍ତେ, ପାସ କରିଗଲେ। କେତେକ ଫେଲ ପିଲା ଭାବିବେ ଯେ, ପାସ୍ କରିଥାନ୍ତେ ଫେଲ ହୋଇଗଲେ। କେତେକ ତୃତୀୟଶ୍ରେଣୀ ଭାବିବେ ଯେ ସେମାନେ ପ୍ରଥମ ଶ୍ରେଣୀ କାହିଁକି ନ ପାଇଲେ। ପୁଣି କେତେକ ପ୍ରଥମ ଶ୍ରେଣୀ ବାଲା ଭାବିବେ ଯେ, ସେମାନଙ୍କର ଭାଗ୍ୟ ଭଲ– କିମ୍ବା ସେମାନଙ୍କର ଯୋଗାଡ଼ ଯନ୍ତ୍ର ଠିକ୍ କାମ ଦେଲା। ନ ହେଲେ ସେମାନେ ତୃତୀୟ ଶ୍ରେଣୀ ପାଇ ଯାଇଥାନ୍ତେ। ତା ପରେ ଖବର କାଗଜରେ କେତୋଟି ଫେଲ୍ ଜନିତ ଆତ୍ମହତ୍ୟାର ଖବର ବାହାରିବ। କେତୋଟି ଚିଠି ମଧ ବାହାରିବ ପରେ ପରେ– ଯେଉଁଥିରେ ଲେଖାଥିବ–

ଆରେ ବାପା ଗୁଣନିଧି! ଫେଲ୍ ହେଲେ ହେଲୁ। ସପ୍ଲିମେଣ୍ଟାରୀ ଦେବେ ଦେବୁ ନ ଦେଲେ ନାହିଁ। ଏ ପରୀକ୍ଷା କିବା କଥା ? ଜୀବନରେ ବହୁ ପରୀକ୍ଷା ଆସିବ ଯିବ। ତୋ' ମାଆ ଅନ୍ନଜଳ ତେଜ୍ୟା କରି ମଲାଭଳି ହେଲାଣି– ତୋ'

ଭାଇଭଉଣୀମାନେ କାନ୍ଦି କାନ୍ଦି ଦରମରା ହେଲେଣି। ମୋ କଥା ନ କହିଲେ ଭଲ। ମୁଁ ଖିଆପିଆ ନ କଲେ ବି, ମୋର ନିର୍ଲଜ ପିତୃପ୍ରାଣ ଏଡ଼େ ସହଜରେ ଯାଉ ନାହିଁ। ତୁ ଚଞ୍ଚଳ ଫେରିଆ। ଇତି— ତୋର ବାପା।

ଏମନ୍ତ ଏମନ୍ତ ହୋଇ, ଏମନ୍ତ ଏମନ୍ତ ପ୍ରକାରେଣ ଏ ବର୍ଷର ଏ ପରୀକ୍ଷାମାନ ସରିବ ଏବଂ ଅତଃପର ଏଇ ସବୁ ପରୀକ୍ଷାରେ ପାସ୍ ଓ ଫେଲ୍ ହୋଇଥିବା ଉଭୟ ଶ୍ରେଣୀର ପିଲାମାନେ ଭାବିବାକୁ ଆରମ୍ଭ କରିବେ ଯେ, ଏହାପରେ ଆମେ କଣ କରିବା ? ଏବଂ ତାଙ୍କର ଶିକ୍ଷକ ଅଧ୍ୟାପକମାନେ ଭାବିବାକୁ ଆରମ୍ଭ କରିବେ ଯେ, ଏହାପରେ ଆମ୍ଭେମାନେ ପୁଣି କେବେ କେଉଁମାନଙ୍କୁ ପରୀକ୍ଷା କରିବା ?

ହାୟରେ ପରୀକ୍ଷା !!

* *

# ପରୀକ୍ଷା ଓ କପି ସମସ୍ୟା

ଗତ ସପ୍ତାହରେ 'ସ୍କୁଲ କଲେଜରେ ପରୀକ୍ଷାରତ୍ନ' ପାଠ କରି ଅନେକ ପାଠକ ପାଠିକା ଖୁବ୍ ଖୁସି ହୋଇ ଚିଠି ଲେଖିଛନ୍ତି– ଏବଂ ଆମ ପାଖର ପାଠକ–ପାଠିକା ମଧ୍ୟ ଦେଖିବା ମାତ୍ରେ ଅଭିନନ୍ଦନ ଜଣାଇ କହୁଛନ୍ତି– ଦେବବାବୁ! ଲେଖାଟି ଭାରି ମଜାଦାର ହୋଇଛି। ହସି ହସି ବେଦମ୍ ହେଲୁ। ଏପରିକି କେତେକ ଶିକ୍ଷକ, ଅଧ୍ୟାପକ ଓ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଯେଉଁମାନେ ବର୍ତ୍ତମାନ ପରୀକ୍ଷା ସଙ୍ଗେ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ସମ୍ପୃକ୍ତ ହୋଇ ପରୀକ୍ଷା ହଲ୍ ଜଗୁଛନ୍ତି ବା ଖାତା ଦେଖୁଛନ୍ତି– ସେମାନେ ମଧ୍ୟ ଲେଖାଟି ପଢ଼ି ଖୁବ୍ ଆମୋଦ ପାଇଲେ ବୋଲି କେହି ଲିଖିତ ଓ କେହି ମୌଖିକ ଭାବେ ଜଣାଇଛନ୍ତି।

ଏସବୁ ପ୍ରଶଂସାବାଦ ଶୁଣି ବଡ଼ ଦୁଃଖ ଲାଗୁଛି। ''ଧରିତ୍ରୀ'' ଖବରକାଗଜରେ ''ସାପ୍ତାହିକ ଦୃଷ୍ଟିପାତ'' ଲେଖି ଅନ୍ୟକୁ ଆମୋଦ ଦେବାକୁ ବା ପ୍ରଶଂସାବାଦ ଅର୍ଜନ କରିବାକୁ ଆମ୍ଭେ ''ଦେବଦାସ ପଦ'' ନେଇନାହୁଁ। ଅନ୍ୟକୁ, ବିଶେଷତଃ ଓଡ଼ିଆମାନଙ୍କୁ କିପରି ଚିନ୍ତିତ କରିବୁ, ତାହା ହିଁ ଆମ୍ଭର ମୂଳ ଉଦ୍ଦେଶ୍ୟ ଅଟେ। କାରଣ ଆମ୍ଭେ ନିଧାର୍ଯ୍ୟ ଜାଣୁ ଯେ, ଆମେ ଓଡ଼ିଆମାନେ ବର୍ତ୍ତମାନ ଗୋଟିଏ କୁଣ୍ଠିତ ତାମସିକ ଜାତିରେ ପରିଣତ ହୋଇଗଲୁଣି। ଆମର ସବୁଥିରେ କୁଣ୍ଠା। ଆଖି ଖୋଲି ଦେଖିବାକୁ କୁଣ୍ଠା– କାନ ଖୋଲି ଶୁଣିବାକୁ କୁଣ୍ଠା– (ଅବଶ୍ୟ ଅନ୍ୟର କୁସା ଶୁଣିବାକୁ ସର୍ବଦା ଉତ୍‌କର୍ଣ୍ଣ), ପାଟି ଖୋଲି କହିବାକୁ କୁଣ୍ଠା– ହୃଦୟ ଦେଇ ଅନୁଭବ କରିବାକୁ କୁଣ୍ଠା– ହାତ ଗୋଡ଼ ଲଗେଇ କିଛି କାର୍ଯ୍ୟ କରିବାକୁ ମଧ୍ୟ କୁଣ୍ଠା। ମୋଟ ଉପରେ ଆମେ ଗୋଟିଏ କୁଣ୍ଠା–କପିଳା ଜାତିରେ ପରିଣତ ହୋଇଗଲୁଣି।

ହଉ– ବର୍ତ୍ତମାନ ସେଇ ପରୀକ୍ଷା ବିଷୟଟିକୁ ଆସିବା ହେଉ। ଇତି ମଧ୍ୟରେ ଆମେ ଗୋଟିଏ କଲେଜ ପରୀକ୍ଷା କେନ୍ଦ୍ରକୁ ଯାଇଥିଲୁ। କଲେଜଟି ଗୋଟିଏ ନବପ୍ରତିଷ୍ଠିତ ଘରୋଇ କଲେଜ। ତାର ସ୍ୱତନ୍ତ୍ର ଘର ନ ଥିବାରୁ ତାହା ସେହି ସହରର ପୁରୁଣା ହାଇସ୍କୁଲ ଘରେ ଚାଲୁଛି। ସେ ଘର ଚାରିପାଖେ ପାଚେରୀ ନାହିଁ। ବାରଣ୍ଡାଗୁଡ଼ିକ ଖୋଲା। ତେଣୁ ଅନ୍ୟସବୁ ବଡ଼ କଲେଜରେ ଯେମିତି ଚାରିଆଡ଼ ବନ୍ଦ ହୋଇ ଗୋଟାଏ ବାଟ ଖୋଲା କରାଯାଇ ସେ ବାଟେ ପରୀକ୍ଷାର୍ଥୀଙ୍କୁ ଆପାଦମସ୍ତକ ତନଖି

କରାଯାଇ ସମ୍ପୂର୍ଣ୍ଣ ସନ୍ଦେହମୁକ୍ତ ହେଲାପରେ, ପରୀକ୍ଷା ହଲ୍‌କୁ ଛଡ଼ା ଯାଉଛି– ସେ କଲେଜରେ ସେମିତି ବ୍ୟବସ୍ଥା କରାଯାଇପାରୁନାହିଁ। ସେଠାର ଅଧ୍ୟାପକମାନେ ବେଶ୍ ତରୁଣ। ଦେଖାଗଲା ଯେ, ପରୀକ୍ଷା ପୂର୍ବରୁ ଖୁବ୍ ଧସ୍ତାଧସ୍ତି ଚାଲିଛି। କେତେକ ପରୀକ୍ଷାର୍ଥୀ କଲିବିଲି ହୋଇ କପି ଧରି ହଲ୍ ଭିତରକୁ ପଶିଗଲେ ଏବଂ ପରୀକ୍ଷା ମଝିରେ ଗୋଟିଏ ହଲରୁ ସାତ ଆଠୋଟି କପି ମଧ୍ୟ ଧରା ହେଲା।

ତା'ପରେ କିନ୍ତୁ ଅବସ୍ଥା ଅନ୍ୟ ପ୍ରକାର ଧରିଲାଣି। କପିଧରାଳିମାନେ ଆଉ ଘରୁ ବାହାରି ପାରୁନାହାନ୍ତି। ସେମାନଙ୍କ ଉପରେ ଠେଙ୍ଗା ବା ଛୁରା ମାଡ଼ କରିବାପାଇଁ ବଜାରଯାକ ଧୃତ କପିଛାତ୍ର ଓ ତାଙ୍କ ବନ୍ଧୁମାନେ ଛକି ରହିଲେଣି ଏବଂ ସ୍ଥାନୀୟ ତିନୋଟି ରାଜନୀତି ଦଳର ମୁଖ୍ୟ ନେତାମାନେ ଓ ଆଉ କେତେକ ଉଦୀୟମାନ୍ ନେତା ଖୋଲାଖୋଲି କହୁଛନ୍ତି ଯେ, ଏ ବର୍ଷ ପରୀକ୍ଷା ସେଣ୍ଟର ନୂଆ ହେଉ ହେଉ, ଏଇ ଅପରିଣାମଦର୍ଶୀ ଅର୍ବାଚୀନ ଅଧ୍ୟାପକମାନେ ହଠାତ୍ ଏମିତି କପି ଧରିବାଟା ବୁଦ୍ଧିମାନ କାମ ହେଲାନାହିଁ। ସେହି ଘରୋଇ କଲେଜଟିର କେତେଜଣ ପରିଚାଳକ ଓ ଅଧ୍ୟାପକ ମଧ୍ୟ ମତ ଦେଇଛନ୍ତି ଯେ, ଏଇ କପି ଧରିବା ଦ୍ୱାରା ଆମର ଶିଶୁ ଅନୁଷ୍ଠାନଟି ଆଉ ଉଠେଇ ପାରିବ ନାହିଁ। କାରଣ ଏ କଲେଜରେ କପି ଫପି ଧରାହେବ ନାହିଁ ଆଶାକରି ଅନ୍ତତଃ ପିଲାମାନେ ଏଠି ଆସି ପଢୁଛନ୍ତି। ତା' ନହେଲେ ଆଖପାଖ କୋଡ଼ିଏ କିଲୋମିଟର ଭିତରେ ଆଉ ତିନିଟା ନୂଆ ଘରୋଇ କଲେଜ ମଧ୍ୟ ଖୋଲାଯାଇଛି। ପିଲାମାନେ ସେସବୁ କଲେଜକୁ କାହିଁକି ନ ଯିବେ ? ସେ ସହରର କେତେକ ପ୍ରତିଷ୍ଠିତ ଲୋକଙ୍କଠାରୁ ମଧ୍ୟ ଶୁଣିଲୁ ଯେ, ସେମାନେ ମଧ୍ୟ କପି କରିବା ସପକ୍ଷରେ କହୁଛନ୍ତି। ସେମାନଙ୍କର ମତ ହେଲା– ଆଜିକାଲି ସମୟ ଯେମିତି ହେଲାଣି– ପାଠପଢ଼ା ଯେମିତି ଚାଲିଛି, ରାଜନୀତି ଯେମିତି ଚାଲିଛି– ବଣିଜ ବେପାର ଯେମିତି ଚାଲିଛି– ଶିକ୍ଷକ ଅଧ୍ୟାପକ ମଧ୍ୟ ସେପରି ହେଲେଣି– ସେଥିରେ ବିଚରା ପିଲାମାନଙ୍କ ପ୍ରତି ଏତେ କଠୋର ନହେବା ଭଲ। କରନ୍ତୁ ସେମାନେ କପି। ସ୍କୁଲରେ ତ ସେମାନେ ଭଲ ପାଠ ପଢ଼ିନାହାନ୍ତି। କଲେଜରେ ମଧ୍ୟ ସେ ପାଠକୁ ଆୟତ୍ତ କରି ପାରୁନାହାନ୍ତି। ପାସ୍ କଲେ ବି ସେମାନେ କରିବେ କ'ଣ ? ଚାକିରୀ ବାକିରି ତ ନାହିଁ। ତେଣୁ କପି ଉପରେ ଏତେ ଗୁରୁତ୍ୱ ନ ଦେବା ଉଚିତ୍।

କେତେକ ପରୀକ୍ଷାର୍ଥୀଙ୍କ ସଙ୍ଗେ କଥାବାର୍ତ୍ତା ହେଲୁ। ସେମାନେ ସମସ୍ତେ ଗୋଟିଏ କଥା କହିଲେ– ଆଜ୍ଞା ! କପି କରିବା ଅନ୍ୟାୟ, ଆମେ ମାନୁଛୁ। କିନ୍ତୁ ଦେଶରେ ଏହାଠାରୁ ହଜାରେ ଗୁଣ ଅନ୍ୟାୟ ଚାରିଆଡ଼େ ବ୍ୟାପିଛି। ଆଗ ସେ ସବୁ ଅନ୍ୟାୟ ଦୂର କରନ୍ତୁ। ତା' ନକରି ସେଣିକି ନ ଯାଇ ଏଇ ଶିଶୁ ଅନୁଷ୍ଠାନଟି ଉପରେ

ଏତେ ଆକ୍ରୋଶ କାହିଁକି ? ଯେତେହେଲେ ଆମେ ପିଲାଲୋକ ନା କ'ଣ ? ଆଗ ବଡ଼ବଡ଼ିଆଙ୍କ କପି ଧରନ୍ତୁ। ତା' ଛଡ଼ା, ଆମେ କପି କରି ପାସ୍ କରିଗଲେ ବି, କଣ ସରକାର ଆମକୁ ଚାକିରୀ ଦେଇଦେବେ ?

ମୋଟ କଥା– ସମସ୍ତେ କପି କରିବା ସପକ୍ଷରେ ଓ କପି ଧରିବା ବିପକ୍ଷରେ ଅଛନ୍ତି। ତେଣୁ ଆମେ ଭାବୁଛୁ– ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଗୋଟିଏ ବ୍ୟବସ୍ଥା କରନ୍ତୁ। କପି କରିବା ନ କରିବା ପିଲାମାନଙ୍କ ଉପରେ ଛାଡ଼ି ଦିଅନ୍ତୁ। ପରୀକ୍ଷା ଫଳ ପ୍ରକାଶ କଲାବେଳେ ଦୁଇଟି ପୃଷ୍ଠାରେ ଫଳ ପ୍ରକାଶ କରନ୍ତୁ। ପ୍ରଥମରେ କପିସହ ପାସ୍ ଓ ଦ୍ୱିତୀୟରେ କପି ବିନା ପାସ୍।

ବାସ୍– ଆଉ ସମସ୍ୟା ରହିବ ନାହିଁ। ସାର୍ଟିଫିକେଟରେ ମଧ୍ୟ ଏହିପରି ଲେଖାଯାଉ। ସେଥିରେ କିଛି କ୍ଷତି ନାହିଁ। କାରଣ, ଚାକିରି କ୍ଷେତ୍ରରେ ଆଦିବାସୀ, ହରିଜନଙ୍କ ପାଇଁ ସଂରକ୍ଷିତ ସ୍ଥାନପରେ ଆଉ ଯେଉ କେତୋଟି ଚାକିରୀ ରହିବ, ସେଥିପାଇଁ ଏହି ଡ଼ିଗ୍ରୀ ସାର୍ଟିଫିକେଟଗୁଡ଼ିକ ବା କେତେ ସାହାଯ୍ୟ କରିପାରିବେ ?

❋❋

# ଧନ୍ୟ ଏକାଡ଼େମୀ, ଧନ୍ୟ ତା' ଉତ୍ସବ !

ଗତ ଆଠ ତାରିଖ ସନ୍ଧ୍ୟା ସାଢ଼େ ଛଅଟାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତରଫରୁ ରବୀନ୍ଦ୍ରମଣ୍ଡପରେ ୧୯୭୪ ରୁ ୧୯୭୬ ମଧ୍ୟରେ ଲିଖିତ ପୁସ୍ତକମାନଙ୍କ ଭିତରେ ଛଅଟି ଶ୍ରେଷ୍ଠ ପୁସ୍ତକର ଲେଖକମାନଙ୍କୁ ମାନପତ୍ର ଓ ପୁରସ୍କାର ପ୍ରଦାନ କରିବା ଉଦ୍ଦେଶ୍ୟରେ ଏକ ଉତ୍ସବ ସମାବେଶ ଅନୁଷ୍ଠିତ ହୋଇଥିଲା। କହିବା ବାହୁଲ୍ୟ ଯେ, ପୁରସ୍କାରପ୍ରାପ୍ତ କଥାକାର ଶ୍ରୀ ଚନ୍ଦ୍ରଶେଖର ରଥ, ରମ୍ୟରଚନା ଲେଖକ ଡକ୍ଟର ଭୁବନେଶ୍ୱର ବେହେରା, କବି ଶ୍ରୀ ସୌରୀନ୍ଦ୍ର ବାରିକ୍, ଶିଶୁ ସାହିତ୍ୟିକ ଶ୍ରୀ ରାମକୃଷ୍ଣ ନନ୍ଦ ଏବଂ ନାଟ୍ୟକାର ଶ୍ରୀ ହରିହର ମିଶ୍ର ଓ ଶ୍ରୀ ରତ୍ନାକର ଚଇନି— ସେମାନଙ୍କର ନିଷ୍ଠାପର ନିରବଚ୍ଛିନ୍ନ ସାହିତ୍ୟ ସାଧନା ଦ୍ୱାରା ସମଗ୍ର ଓଡ଼ିଶାରେ ସେମାନେ ସୁପରିଚିତ, ସମାଦୃତ ଓ ସ୍ୱନାମଧନ୍ୟ। ଆନନ୍ଦର କଥା ଯେ, ରାଜ୍ୟ ଏକାଡ଼େମୀ ଏଇ କୃତବିଦ୍ୟାମାନଙ୍କର ସିଦ୍ଧିକୁ ବିନମ୍ର ସ୍ୱୀକୃତି ଦେଇ ନିଜର କୃତଜ୍ଞ ଗୁଣଗ୍ରାହକତାର ପରିଚୟ ପ୍ରଦାନ କଲେ। ଏଥିଲାଗି ଏକାଡ଼େମୀ କର୍ତ୍ତୃପକ୍ଷ ଧନ୍ୟବାଦାର୍ହ।

ରାଜ୍ୟ ଏକାଡ଼େମୀ ତରଫରୁ ପ୍ରାୟ ପ୍ରତିବର୍ଷ ଏହି ପୁରସ୍କାର ଉତ୍ସବ ଅନୁଷ୍ଠିତ ହୋଇ ଆସୁଅଛି ଏବଂ ପ୍ରାୟ ଏକାରୀତିରେ ହୋଇ ଆସୁଛି। ସେଥିରେ କୌଣସି ପ୍ରଗତିଶୀଳ ବ୍ୟତିକ୍ରମ ଘଟୁନାହିଁ। ବରଂ ଏହି ଆନନ୍ଦ ଉଲ୍ଲାସପୂର୍ଣ୍ଣ ଅନୁଷ୍ଠାନଟି କ୍ରମଶଃ ନିରାନନ୍ଦକର ଏବଂ ଶୁଷ୍କ ପଦ୍ଧତିରେ ପର୍ଯ୍ୟବେସିତ ହୋଇଗଲାଣି। ପ୍ରଖ୍ୟାତ କବି ସଚ୍ଚି ରାଉତରାୟ, ପ୍ରବୀଣ ଗାଳ୍ପିକ ରାଜକିଶୋର ରାୟ, ସବୁଜ ଯୁଗର ସ୍ମାରକ ହରିହର ମହାପାତ୍ର ଓ ନାଟ୍ୟକାର ପ୍ରାଣବନ୍ଧୁ କରଙ୍କ ଭଳି ନେତୃସ୍ଥାନୀୟ ସାହିତ୍ୟିକଙ୍କ ସହଯୋଗରେ ଏହି ଅନୁଷ୍ଠାନଟି ଯେ ଆହୁରି ମନୋରମ, ହୃଦ୍ୟ ଏବଂ ପ୍ରୋତ୍ସାହନାମୟ ହେବ ବୋଲି ଆଶା କରାଯାଉଥିଲା, ସେ ଆଶା ପରାହତ ହୋଇଛି। ପ୍ରଥମେ ଦେଖାଯାଉ— ଏହି ପୁରସ୍କାରଟିର ଆର୍ଥିକ ପରିମାଣ କଥା। ଏହା ବାଇଶି ବର୍ଷ ତଳେ ହଜାରେ ଟଙ୍କା ଥିଲା। ଇତି ମଧ୍ୟରେ ଟଙ୍କାର ମୂଲ୍ୟ ଅଧାରୁ ବେଶୀ କମିଗଲାଣି। ସେହି ଅନୁପାତରେ ବଜାରରେ ସବୁ ଜିନିଷର ମୂଲ୍ୟ ବଢ଼ିଯାଇଛି। ସରକାରୀ ଓ ବେସରକାରୀ କର୍ମଚାରୀମାନଙ୍କର ଦରମା ଓ ମହଙ୍ଗାଭତ୍ତା ବଢ଼ିଯାଇଛି।

ମୂଲିଆମାନଙ୍କର ମୂଲ ବଢ଼ିଯାଇଛି। କିନ୍ତୁ ସାହିତ୍ୟ ପାଇଁ ବାଇଶି ବର୍ଷ ତଳେ ନିର୍ଦ୍ଧାରିତ ପୁରସ୍କାର ଟଙ୍କାର ପରିମାଣ ଯେତିକି ଥିଲା, ସେତିକି ଅଛି।*

ଏକାଡ଼େମୀ କର୍ତ୍ତୃପକ୍ଷ କହନ୍ତି ଯେ– ଏକାଡ଼େମୀକୁ ସରକାର ଯେତିକି ଟଙ୍କା ଦେବା ଉଚିତ୍, ତାହାର ଚାରିଭାଗରୁ ଭାଗେ ଟଙ୍କା ମଧ୍ୟ ସରକାର ଗ୍ରାଣ୍ଟ୍ ଦେଉନାହାନ୍ତି। ସରକାର ଭାବୁଛନ୍ତି, ମାନେ ଏମ୍.ଏଲ୍. ଏ., ମନ୍ତ୍ରୀବୃନ୍ଦ ସେକ୍ରେଟାରୀମାନେ ବିଚାରୁଛନ୍ତି– ହଉ ବାବୁ! ଏତ ଗୋଟେ ପୁରସ୍କାର। ଏହାର ଗୋଟେ ଦ୍ରବ୍ୟ ମୂଲ୍ୟ କ'ଣ ? ହଜାରେ ଯାହା, ପାଞ୍ଚ ହଜାରେ ତାହା। ତା' ଛଡ଼ା ସାହିତ୍ୟ କ'ଣ ଏମିତି ଗୋଟେ ଜରୁରୀ ବିଷୟ ? ତାହା କ'ଣ ରାଜ୍ୟବାସୀଙ୍କୁ ଅନ୍ନବସ୍ତ୍ର ଯୋଗାଇବାରେ ସାହାଯ୍ୟ କରିବ ? ସାହିତ୍ୟିକମାନେ କ'ଣ ନିର୍ବାଚନରେ ଭୋଟଦାତାଙ୍କ ଉପରେ କିଛି ପ୍ରଭାବ ପକାଇ ପାରିବେ ? ସାହିତ୍ୟିକମାନେ କ'ଣ ଗୋଟାଏ ସତ୍ୟାଗ୍ରହ, ଧର୍ମଘଟ କରି ବା କରାଇ ଦେଇପାରିବେ ? ବରଂ ଆମେ ବୋଲି କିଛି କିଛି ପୁରସ୍କାର ଦେଉଛୁ– ସେତିକି ଯଥେଷ୍ଟ ନୁହେଁ ଯେ ଆଉ ଗୁଡ଼ାଏ...

ପ୍ରକୃତ କଥା! ସାହିତ୍ୟ କ'ଣ, ତା'ର ଜୀବନ ସଙ୍ଗେ ସମ୍ପର୍କ କ'ଣ– ତାହା ବ୍ୟକ୍ତି ଓ ସମାଜ ପକ୍ଷେ ନିତାନ୍ତ ଆବଶ୍ୟକ କି ନୁହେଁ– ପୁଣି ସାହିତ୍ୟ କେବଳ ଏକ ମନୋରଞ୍ଜନ ମଜାଳିଆ ବ୍ୟାପାର ନା! ଏହା ମନୁଷ୍ୟର ଅନୁଭୂତି ଓ ଚିନ୍ତନମନରୁ ଗୁଣାତ୍ମକ ପରିସରକୁ ଉନ୍ନୀତ କରିବାରେ ସାହାଯ୍ୟ କରେ– ଏ ସମ୍ବନ୍ଧେ ଆମର ରାଜ୍ୟବାସୀ ଓ କର୍ତ୍ତୃପକ୍ଷ କାହାର କିଛି ଠିକ୍ ଠିକଣା ଧାରଣା ନାହିଁ। ପୁଣି ଆମ ସାହିତ୍ୟ ଓ ଆମ ମାତୃଭାଷା ପ୍ରତି ମଧ୍ୟ ଆମ ରାଜ୍ୟବାସୀ ଓ କର୍ତ୍ତୃପକ୍ଷଙ୍କର କର୍ତ୍ତବ୍ୟ କ'ଣ ତାହା ମଧ୍ୟ କାହାକୁ ଜଣା ନାହିଁ, କି ସେ ସମ୍ବନ୍ଧେ ଭାବିବାକୁ କାହାରି ସମୟ ନାହିଁ, କି ପ୍ରବୃତ୍ତି ନାହିଁ। ବରଂ ସେ ସମ୍ବନ୍ଧେ ସମସ୍ତେ ନିଃସ୍ପୃହ ଓ ଉଦାସୀନ।

ଅବଶ୍ୟ ଏଥିପାଇଁ ଆମର ସାହିତ୍ୟିକମାନେ ମଧ୍ୟ କମ୍ ଦାୟୀ ନୁହନ୍ତି। ଆମର ଅଧିକାଂଶ ସାହିତ୍ୟିକ ସାହିତ୍ୟକୁ ଏକ ଦାୟିତ୍ୱହୀନ ଅଧିକା ବିଷୟଟିଏ ବୋଲି ଧରିଥାନ୍ତି। ଯାହା କିଛି ଲେଖି, ତା' ମାଧ୍ୟମରେ କିଛି ଅର୍ଥ ବା କିଛି ଆୟୋଜିତ ଖ୍ୟାତି, ମାନ ଇତ୍ୟାଦି ପାଇଗଲେ ଯଥେଷ୍ଟ ହୋଇଗଲା ବୋଲି ଭାବନ୍ତି। ଆମ ସାହିତ୍ୟକମାନେ ପରସ୍ପରର ଲେଖା ପଢ଼ନ୍ତି ନାହିଁ। ପଢ଼ିଲେ ବି ଶ୍ରଦ୍ଧାର ସହିତ ଗୁରୁତ୍ୱ ଦେଇ ପଢ଼ନ୍ତି ନାହିଁ। ସେଥିପାଇଁ ଆମ ଲେଖକମାନେ କେହି କାହାକୁ ଚିହ୍ନନ୍ତି ନାହିଁ, କି କେହି କାହାକୁ ଚିହ୍ନାନ୍ତି ନାହିଁ। ପରସ୍ପରର ମୂଲ୍ୟ କଳି ପାରନ୍ତି ନାହିଁ। ସେଥିଲାଗି ପରସ୍ପରକୁ ଶ୍ରଦ୍ଧା ବା ସମ୍ମାନ ଦିଅନ୍ତି ନାହିଁ, ଦେଇ ପାରନ୍ତି ନାହିଁ। ଏହି କାରଣରୁ

ବନ୍ଧୁ ଓଡ଼ିଆ ଲେଖକଙ୍କର ଚେହେରା ମଧ୍ୟ ବଡ଼ ଦୀନ ଓ ଦୟନୀୟ ଦେଖାଯାଏ। ତା' ମୁହଁ ସର୍ବଦା ଶୁଖିଲା ଦିଶୁଥାଏ। ସେଥିରେ ତେଜ ନଥାଏ। ଆନନ୍ଦ ନ ଥାଏ। ପ୍ରେମ, ପ୍ରୀତି ଓ ପ୍ରସାଦ ଗୁଣ ନଥାଏ। ନ ଥାଏ ମଧ୍ୟ ଉତ୍ସାହ କିମ୍ବା କାରୁଣ୍ୟ ଅଥବା କିଛି ପ୍ରଚୋଦନାମୟ ଦୀପ୍ତି। ଏପରିକି ସେ ମୁହଁରେ ଗଭୀର ବିଷାଦ ବା ଜୀବନ-ଯନ୍ତ୍ରଣାର ଛାପ ମଧ୍ୟ ନଥାଏ। ମୋଟ ଉପରେ ସେ ମୁହଁଟିରେ କିଛି ସାହିତ୍ୟିକ ଭାବ ପ୍ରକାଶ ପାଏ ନାହିଁ। ସେ ମୁହଁଟିକୁ ଦେଖିଲେ, ତାକୁ ଜଣେ ସାହିତ୍ୟିକ ବୋଲି ଠଉର କରି ହେବ ନାହିଁ। ବରଂ ଅଣସାହିତ୍ୟକର ସମସ୍ତ ଲକ୍ଷଣ ଆମର ଅଧିକାଂଶ ସାହିତ୍ୟିକଙ୍କ ଆଖି, ନାକ, ଆଉ ଓଠରେ ପ୍ରକାଶ ପାଇଥାଏ। ସବୁ ପ୍ରତି ଓ ସମସ୍ତ ପ୍ରତି ଗୋଟିଏ ବିଜାତୀୟ ଘୃଣା, ବିଦ୍ୱେଷ, ପରଶ୍ରୀକାତରତା, କ୍ଷୁଦ୍ର କୁତ୍ସିତ ଅହମିକା, ଅହେତୁକୀ ଦୀନ ଅଭିମାନ ଅଥବା ଅହଂକାରୀ ପ୍ରତିକ୍ରିୟାଶୀଳ ଉତ୍ତେଜନା ସଙ୍ଗେ ସର୍ବଦା "ଦେହି ଦେହି" ଭାବ। ଆମ ସାହିତ୍ୟିକମାନେ କଳି କରିବା ବ୍ୟତୀତ ଅନ୍ୟଥା ଏକତ୍ର ହେବାର ଦେଖାଯାଏ ନାହିଁ। ଏକତ୍ର ଚାହାପାନ କରି କବିତା, ଗଳ୍ପ ନାଟକ ଶୁଣିବାର ବା ତା' ଉପରେ ସଶ୍ରଦ୍ଧ ଆଲୋଚନା କରିବାର ଦେଖାଯାଏ ନାହିଁ। ସେମାନେ ମନୁଷ୍ୟଜୀବନ ପ୍ରତି ବା ସମାଜ ପ୍ରତି, କୌଣସି ଜୀବନାଦର୍ଶ ପ୍ରତି, ବା ଏପରିକି କୌଣସି ବ୍ୟକ୍ତି, ଅନୁଷ୍ଠାନ ବା ସଙ୍ଗଠନ ପ୍ରତି ସଂପୃକ୍ତ ନୁହନ୍ତି- ଅଙ୍ଗୀକୃତ ନୁହନ୍ତି ବା ଦାୟିତ୍ୱବାଦୀ ନୁହନ୍ତି- କି ଉତ୍ତରଦାୟୀ ନୁହନ୍ତି। ସେମାନଙ୍କର କାହା ଉପରେ କିଛି ସ୍ଥିର ଚିନ୍ତା ନଥାଏ- ସୁସ୍ପଷ୍ଟ ଧାରଣା ବା ମନ୍ତବ୍ୟ ନଥାଏ। ସେମାନେ କର୍ତ୍ତୃପକ୍ଷଙ୍କ ପାଖରେ ଦାବୀ କରି ପାରନ୍ତି ନାହିଁ- ଅନୁଗ୍ରହ ଭିକ୍ଷା କରିଥାନ୍ତି।

ଏହାର ଫଳ ଯାହା ହେବାର କଥା, ତାହା ହେଉଛି। ସମାଜ ଓ ସରକାର ଆମ ସାହିତ୍ୟ ପ୍ରତି ଯେମିତି ଉଦାସୀନ, ସେମିତି ବିଶ୍ରବ୍ଧ, ଯେମିତି ଅବହେଳୁ, ସେମିତି ଆମର ସାହିତ୍ୟିକମାନଙ୍କର ମଧ୍ୟ ସାମାଜିକ ଗୁରୁତ୍ୱ କିଛି ନାହିଁ ବୋଲି ସେମାନେ ନିଶ୍ଚିତ ଭାବେ ଧରି ନେଇ ଚୁପ୍‌ଚାପ ବସି ଯାଇଛନ୍ତି।

ଏହି କଟୁ ଖେଦୋକ୍ତି ପାଇଁ କିନ୍ତୁ ସେଦିନ ସନ୍ଧ୍ୟାର ଏକାଡ଼େମୀ ଆୟୋଜିତ ପୁରସ୍କାର ବିତରଣୀ ଉତ୍ସବ ଖୁବ୍ ଉତ୍ୟନ୍ତ ସଂପ୍ରେରଣ ଯୋଗାଇ ଦେଇଥିଲା। ସନ୍ଧ୍ୟା ଛଅଟାରେ ପହଞ୍ଚି ଦେଖିବାକୁ ମିଳିଲା ଯେ, ଅଳ୍ପ କେତେଜଣ ସାହିତ୍ୟିକ ଓ ସାହିତ୍ୟ ପ୍ରେମୀଙ୍କ ସମେତ କୌଣସି ପ୍ରକାର କର୍ତ୍ତବ୍ୟ ତୁଲାଇ ଚଞ୍ଚଳ ଘରକୁ ଯିବା ରୀତିରେ ଏକାଡ଼େମୀର କର୍ତ୍ତୃପକ୍ଷଗଣ ଚୁପ୍‌ଚାପ ବସିଛନ୍ତି। ଏତେ ବଡ଼ ହଲରେ ଆଲୋକ ଏତେ କ୍ଷୀଣ। ମଞ୍ଚ ଉପରେ କୌଣସି ଉତ୍ସବ ସୂଚକ ସାଜସଜ୍ଜା ନାହିଁ।

ପୃଷ୍ଠ ଭୂମିରେ ଧୀର ମଧୁର ସ୍ୱରରେ କୌଣସି ଯାନ୍ତ୍ରିକ ବା ମୌଖିକ ସଂଗୀତର ମୂର୍ଚ୍ଛନା ନାହିଁ। ସଭା ଆରମ୍ଭ ହେବାଯାଏ ପ୍ରାୟ ଚାଳିଶ ପଚାଶ ମିନିଟ୍ କାଳ ସମସ୍ତେ ଚୁପ୍ ଚାପ ଗମ୍ଭୀର ହୋଇ ବସିଥାନ୍ତି। ସତେ କି ସମସ୍ତେ ସମସ୍ତଙ୍କର ଏକାନ୍ତ ଅପରିଚିତ ବା ଶତ୍ରୁ। କେହି ଭରସି କରି କାହା ମୁହଁକୁ ମଧ ଚାହୁଁନଥାନ୍ତି। କଥାବାର୍ତ୍ତା ତ ଦୂରର କଥା। ପୁରସ୍କୃତ ହେବାକୁ ଆସିଥିବା ସାହିତ୍ୟିକମାନଙ୍କୁ କେହି ମଧ ଯାଇ ବ୍ୟକ୍ତିଗତ ଭାବେ ଅଭିନନ୍ଦନ ଜଣାଉ ନଥାନ୍ତି। ସେମାନେ ମଧ "କ'ଣ ଗୋଟାଏ ପାପ ହୋଇଯାଇଛି" ରୀତିରେ କାହୁଁ ଅଇଲା ପରି ବସିଥାନ୍ତି ତଳକୁ ମୁହଁ ପୋତି। ଚାରିଆଡ଼େ ଗୋଟାଏ ନୀରସ ଓ ଅଭାବୀ ପରିବେଶ। ବଡ଼ ଅଶ୍ୱସ୍ତି ଲାଗୁଥାଏ। ଏ କ'ଣ? ଏଠି ଏତେ ମଧୁକର। ଗୁଞ୍ଜନ କାହିଁ? ଏଠି ଏତେ ବିହଙ୍ଗ। କୂଜନ କାହିଁ? ଏଠି ଏତେ ରସସ୍ରଷ୍ଟା। ଜୀବନବାଦୀ ଭାବୁକ କବି, ଲେଖକ ବସିଛନ୍ତି। ଅଥଚ ଏ ପରିବେଶ ଏମିତି ନିର୍ଜୀବ ନିରୁତ୍ସାହ ଲାଗୁଛି କାହିଁକି? ସତେକି ଘରେ ମଡ଼ାଟିଏ ପଡ଼ିଛି। ଯେ ମରିଛି– ତାହା ପ୍ରତି କାହାର ମମତା ନଥିଲା ବା ନାହିଁ। ସେ ମରିଯିବାରେ ବି କାହାର ଶୋକ ନାହିଁ। କିନ୍ତୁ ସଭିଙ୍କ ମୁଣ୍ଡରେ ଗୋଟିଏ ଚିନ୍ତା– ସେ ମଡ଼ାଟିକୁ କିପରି କିଏ ଚଞ୍ଚଳ ଉଠାଇ ନିଅନ୍ତା। କାରଣ ସେ ମଡ଼ାଟିକୁ ଛୁଇଁବାକୁ ସମସ୍ତେ ନାରାଜ। ଏଣେ ମଡ଼ାଟିଏ ପଡ଼ିଥିବାରୁ ସବୁରି ମନରେ ଅଶ୍ୱସ୍ତି।

ଗୋଟିଏ ସାହିତ୍ୟିକ–ଉତ୍ସବ–ପରିବେଶ, ପୁଣି ଏକାଡ଼େମୀ ତରଫରୁ ଚାଲିଛି। ସେଥିରେ କର୍ତ୍ତୃପକ୍ଷଙ୍କର କିଛି ସରାଗ ନାହିଁ– ଆନ୍ତରିକତା ନାହିଁ– କିମ୍ବା ସାହିତ୍ୟିକ, ସାହିତ୍ୟପ୍ରେମୀମାନଙ୍କର ବି କିଛି ସରାଗ ହାର୍ଦ୍ଦିକତା ନାହିଁ। ହାୟରେ କପାଳ। ହାୟରେ ଓଡ଼ିଶା– ହାୟରେ ଓଡ଼ିଆ ସାହିତ୍ୟ ଆଉ ସାହିତ୍ୟିକ।

ଯୋଉ ସବୁ ବହି ପୁରସ୍କୃତ ହେଲା– ସେ ସବୁ ପଢ଼ି ମୁଁ ପଢ଼ିଛି। ସବୁଗୁଡ଼ିକ ଉଚ୍ଚ ଶ୍ରେଣୀର ଲେଖା। ପୁରସ୍କାର ପାଇବାର ଯୋଗ୍ୟ। ସେଠାରେ ଉପସ୍ଥିତ ଥିବା ପ୍ରାୟ ତିରିଶଜଣ ସାହିତ୍ୟିକଙ୍କ ସଙ୍ଗେ, ମୁଁ ମୋ ଉପାୟରେ କଥାବାର୍ତ୍ତା କରିଛି। ସେଥିରୁ ଦଶଜଣ ପୁରସ୍କାର ପାଇଥିବା ବହିରୁ ଖଣ୍ଡିଏ ବି ପଢ଼ିନଥିବାର ସେମାନେ ନିନ୍ଦା କଲେ ଓ ତା'ର ଲେଖକମାନଙ୍କ ସମ୍ବନ୍ଧେ ନାନାଦି କୁତ୍ସା କଲେ। କେତେକ ଓଡ଼ିଆ ଲେଖକ ମଧ ମୋ କାନରେ ଫିସ୍ ଫିସ୍ କରି କହିଲେ ଯେ, ସେମାନେ ନିଶ୍ଚୟ ପୁରସ୍କାର ପାଇଥାନ୍ତେ– ମାତ୍ର ବହୁ ଷଡଯନ୍ତ୍ର ଓ ଧରାଧରି ଫଳରେ ସେମାନେ ଏହି ସୌଭାଗ୍ୟରୁ ବଞ୍ଚିତ ହୋଇଛନ୍ତି ଓ ତାଙ୍କ ଅପେକ୍ଷା କମ୍ ପ୍ରତିଭାବାନ୍‌ମାନେ ଏ ପୁରସ୍କାର ପାଇ ଯାଇଛନ୍ତି।

ଏଇ ହେଉଛି ଆମର ସାହିତ୍ୟ, ସାହିତ୍ୟିକ ଓ ଏକାଡ଼େମୀର ବ୍ୟାପାର। ଓଡ଼ିଶାର ସାହିତ୍ୟ ସଙ୍ଗୀତ, ନାଟକ ଓ କଳାକୁ ନେଇ ଏକାଡ଼େମୀଟିଏ ଗଠିତ ହୋଇଛି। କିନ୍ତୁ ଏକାଡ଼େମୀର ଗୋଟିଏ ଏତେବଡ଼ ବାର୍ଷିକ ଉତ୍ସବରେ ଏଇ ଚାରୋଟି ବିଭାଗର ସମ୍ମିଳିତ ଦୃଶ୍ୟ ବା ଶ୍ରାବ୍ୟ କିଛି ଆମର ଦୃଷ୍ଟି ପଥରେ ବା କର୍ଣ୍ଣପଥରେ ପଡ଼ିଲା ନାହିଁ। କାହାଆଡ଼ୁ କିଛି ସରାଗ ନ ଥାଇ, ନିଷ୍ଠା ନଥାଇ, ଉତ୍ସାହ ନଥାଇ, କି ଉଦ୍ଦୀପନା ନଥାଇ, ଯୋଉ ଉତ୍ସବ ବା ଯୋଉ ପୁରସ୍କାରପ୍ରଦାନ, ତାହା ହେଲେ କେତେ– ନହେଲେ ବା କେତେ ?

---

ଏବେ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ଏହାର ପରିମାଣ ପାଞ୍ଚହଜାର ଟଙ୍କା ହୋଇଛି। ସାଧୁବାଦ।

**

# ଶ୍ରୀ କ୍ଷେତ୍ରରୁ ଫେରି.....

ଗତ ସପ୍ତାହରେ ୧୯୭୯ ଶେଷ ହେବା ପୂର୍ବରୁ ଶ୍ରୀ ଜଗନ୍ନାଥ ଦର୍ଶନ ଆଶାରେ ଜଣେ ବନ୍ଧୁଙ୍କ ସହ ପୁରୀ ଯାଇଥିଲି ଏବଂ ପୁରୀରେ ତିନିଦିନ ମଧ୍ୟ ରହିଥିଲି। ଏହି ସମୟରେ ପୁରୀର ଜଳବାୟୁ ଖୁବ୍ ଚମତ୍କାର ଲାଗୁଥିଲା। ଶୀତ ନଥିଲା; କିନ୍ତୁ ସବୁଆଡ଼େ ଖୁବ୍ ଶୀତଳ ଆଉ ଆରାମଦାୟକ ବୋଧ ହେଉଥିଲା। ସେତେବେଳେ ପୁରୀକୁ ବହୁ ଯାତ୍ରୀ ଆସିଥିଲେ। ପ୍ରାୟଶଃ ସେମାନେ ବଙ୍ଗାଳୀ। ଶ୍ରୀ ଜଗନ୍ନାଥ କ୍ଷେତ୍ରକୁ ସବୁବେଳେ ଭାରତବର୍ଷର ବିଭିନ୍ନ ସ୍ଥାନରୁ ଯାତ୍ରୀମାନେ ଆସିଥାନ୍ତି। କିନ୍ତୁ ବେଳେ ବେଳେ ଶ୍ରୀ ଜଗନ୍ନାଥ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ବେଶଧରି ଆବିର୍ଭୂତ ହେଲାଭଳି, ବେଳେବେଳେ ପୁରୀ ବଡ଼ଦାଣ୍ଡ ବା ସମୁଦ୍ର କୂଳରେ ଭାରତର ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳର ନରନାରୀଙ୍କୁ ବହୁ ସଂଖ୍ୟାରେ ଦେଖିବାକୁ ମିଳେ। ବେଳେ ବେଳେ ଆପଣ ଦେଖିବେ, ଉତ୍ତର ପ୍ରଦେଶ ବା ମଧ୍ୟପ୍ରଦେଶର ଯାତ୍ରୀମାନେ ଧାଡ଼ିବାନ୍ଧି ଚାଲିଥିବେ ବଡ଼ଦାଣ୍ଡରେ କିମ୍ବା ସମୁଦ୍ରକୂଳ ଆଡ଼କୁ। ଏମାନେ ସମସ୍ତେ ଭକ୍ତିପୂର୍ଣ୍ଣ ହୃଦୟରେ ଆସିଥାନ୍ତି, ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାକୁ। ମାତ୍ର ପୁରୀରେ ବଙ୍ଗଦେଶୀ ଯାତ୍ରୀଙ୍କ ବାହୁଲ୍ୟ ଦେଖିଲେ ଭାବିବେ ନାହିଁ ଯେ, ଶ୍ରୀଜଗନ୍ନାଥଙ୍କ ଏକାନ୍ତ ଆକର୍ଷଣରେ ଏମାନେ ଏମିତି ଶ୍ରୀକ୍ଷେତ୍ରକୁ ଛୁଟି ଆସିଛନ୍ତି। ଏମାନେ ଆସିଥାନ୍ତି ସମୁଦ୍ର ଦେଖିବାକୁ— ସମୁଦ୍ର ସଙ୍ଗରେ ଖେଳ ହେବାକୁ— ସମୁଦ୍ର ବାଲିରେ ବୁଲିବାକୁ ବସିବାକୁ ଓ ଗଡ଼ିବାକୁ। ନାରୀ ପୁରୁଷ ହାତ ଧରାଧରି ହୋଇ ସମୁଦ୍ର ବାଲିରେ ପ୍ରେମ–ପ୍ରଣୟର ମଧୁପର୍ବ ପାଳନ କରିବାକୁ। ପୁରୀ ସମୁଦ୍ରକୂଳ ପରି ଏତେ ବିସ୍ତୀର୍ଣ୍ଣ, ଏତେ ପରିଚ୍ଛନ୍ନ, ଏତେ ମନୋହର ସମୁଦ୍ରତଟ ଆଉ କୋଉଠି ନାହିଁ। ସ୍ୱର୍ଗଦ୍ୱାର ପାଖରେ ବସିଲେ ଆପଣ ସକାଳେ ଦେଖିବେ, ସୂର୍ଯ୍ୟଦେବ ନାଲି ଟହ ଟହ ହୋଇ ପୂର୍ବଦିଗରୁ ସମୁଦ୍ର ଭିତରୁ ଉଠି ଆସୁଛନ୍ତି। ପୁଣି ସଞ୍ଜବୁଡ଼େ ଦେଖିବେ ନାଲି ଟହ ଟହ ହୋଇ ସୂର୍ଯ୍ୟଦେବ ପଶ୍ଚିମ ଆକାଶରେ ସେଇ ସମୁଦ୍ର ଭିତରେ ହିଁ ବୁଡ଼ି ଯାଉଛନ୍ତି। ପୁରୀ ସମୁଦ୍ରକୂଳରେ ପୂର୍ବ ଆଉ ପଶ୍ଚିମର ଉଦୟାସ୍ତ ଶୋଭା ଅତି ଅପୂର୍ବ। ସେଥିପାଇଁ ସମୁଦ୍ରକୂଳ ହଜାର ହଜାର ବଙ୍ଗୀୟ ନରନାରୀ, କିଶୋର କିଶୋରୀ, ବାଳକ ବାଳିକାଙ୍କ କଳକାକଳୀରେ ମୁଖରିତ ହୋଇ ଉଠିଥିଲା ଏବଂ ସମୁଦ୍ରକୂଳ ସେମାନଙ୍କର ଆନନ୍ଦପୂର୍ଣ୍ଣ ସରସ ସମାବେଶରେ ଅତି ମନୋହର ଦିଶୁଥିଲା। ବିଶେଷତଃ ସ୍ୱର୍ଗଦ୍ୱାର ପାଖରେ ସେମାନଙ୍କୁ ଦେଖିଲେ

ମନେ ହେବ ଯେପରିକି ଜୀବନରେ କିଛି ଆଉ କାମ ନାହିଁ– ଆଉ କିଛି ଚିନ୍ତା ନାହିଁ– କିଛି ଆଉ ସଂକଟ କି ସମସ୍ୟା ନାହିଁ– କେହି ଶତ୍ରୁ ନାହାନ୍ତି– ଆଧିବ୍ୟାଧି ନାହିଁ– ଖାଲି ଅଛି ସମୁଦ୍ର ଆଉ ତା'ର ଏଇ କଅଁଳ ବାଲି। ଖାଲି ହସ ଆଉ ହାତ ଧରାଧରି– ମନ ଘେନାଘେନି– ପ୍ରାଣର ବନ୍ଧୁ ବା ବାନ୍ଧବୀଟିଙ୍କୁ ଖୁସି କରିବାପାଇଁ ମନଖୋଲା ମଧୁର ଚାଟୁବାଣୀ। ସତେକି ଜୀବନରେ ମୃତ୍ୟୁ ନାହିଁ– ସୟତାନ୍ ନାହିଁ। ଭଗବାନ୍ ଥିଲେ ଭଲ, ନଥିଲେ ବି କିଛି କ୍ଷତି ନାହିଁ। କିନ୍ତୁ ସମୁଦ୍ର ଥାଉ ବାଲି ଥାଉ– ସୂର୍ଯ୍ୟ ଏମିତି ଉଠୁଥାଆନ୍ତୁ– ଆଉ ବୁଡୁଥାନ୍ତୁ। ସ୍ୱର୍ଗଦ୍ୱାରରେ ଏମିତି ଆଠ ଦଶଟା ଦୋକାନ ଥାଉ। ସେଠି କେତୁଟା ସିଙ୍ଗଡ଼ା, କଚୁରୀ, ସନ୍ଦେଶ ଆଉ ଚାହା କପେ ଲେଖାଁ ମିଳୁଥାଉ। ମିଳୁଥାଉ ହରେକ୍ ରକମର ରଙ୍ଗଢ଼ଙ୍ଗିଆ ମାଳି, କଅଁଳ ପଥରର ହରେକ୍ ରକମର ସୁନ୍ଦରିଆ ଯୁଗଳମୂର୍ତ୍ତି– ମିଳୁଥାଉ ହରେକ୍ ରକମର ଶଙ୍ଖ ଆଉ ଶାମୁକା ପଟ୍ଟଚିତ୍ରମାନ। ଜୀବନରେ ଏତିକି ଯଥେଷ୍ଟ– ଏତିକିରେ ପରିପୂର୍ଣ୍ଣ। କିନ୍ତୁ ଏତିକି ପାଇଁ ମଧ ଜୀବନ ବଡ଼ କୃପଣ। ବେଶୀଦିନ ଛୁଟୀ ମିଳେ ନାହିଁ। ପୁରୀ ଏକ୍ସପ୍ରେସ୍ ଟ୍ରେନ ଷ୍ଟେସନରେ ଅପେକ୍ଷା କରିଥାଏ। ଘନ ଘନ ସିଟି ବଜାଉଥାଏ– "ଚାଲିଆସ– ଚାଲିଆସ ଯଥେଷ୍ଟ ହୋଇଗଲା ସ୍ୱର୍ଗଦ୍ୱାର ପାଖରେ ଥାଜି ଯୋଉ ସୁନ୍ଦର ଯୁବକ ଯୁବତୀ ଯୁଗଳ ହାତ ଧରାଧରି ହୋଇ ହସଖୁସ୍ ମିଜାଜରେ ସମୁଦ୍ର ଆଡ଼ିକି ମୁହାଇ ଯାଉଥିଲେ– କାଲି ହୁଏତ ଆପଣ ଦେଖିବେ, ସେମାନେ ମୁହଁ ଶୁଖାଇ ରିକ୍ସାରେ ବସି ଷ୍ଟେସନ ଆଡ଼ିକି ବଡ଼ ଅନିଚ୍ଛାରେ ଚାଲିଯାଉଛନ୍ତି। ପୁରୀ ଏକ୍ସପ୍ରେସ୍ ହାଓଡ଼ା ଷ୍ଟେସନରେ ଖୁବ୍ ସୁନ୍ଦର ଦିଶେ– ସେତିକି ଯୌବନର ଜୀବନ ରସରେ ପରିପୂର୍ଣ୍ଣ। ମାତ୍ର ସେଇ ଗାଡ଼ି ପୁରୀ ଷ୍ଟେସନରେ ଲାଗେ ଗୋଟିଏ ଖିଟିମିଟିଆ ଅସହିଷ୍ଣୁ ଦିଗ୍‌ଦୋର ବୁଢ଼ାଭଳି; ଯେ ତା'ର ଜାକିଟି ପକେଟ୍‌ରୁ ଘଣ୍ଟାଟି କାଢ଼ି ବାରଂବାର ସମୟ ଦେଖୁଥାଏ– ଆଉ ସିଟି ବଜାଇ ଚିଲାଉଥାଏ– "ସମୟ ହୋଇଗଲା।" ସମୟ ବି ସତକୁ ସତ ହୋଇଯାଏ– "ସମୟ ହୋଇଗଲା।" କଲିକତାରେ ଯୋଉ ସମୟ– ପୁରୀରେ ବି ସେଇ ସମୟ। କିନ୍ତୁ ସମୟ ଭେଳିକି ଦେଖାଏ। ସମୟ ତୁମକୁ ସମୟ ବାହାରକୁ ଠେଲିଦିଏ। କିନ୍ତୁ ସାଙ୍ଗେ ସାଙ୍ଗେ ପୁଣି ତାଭିତରକୁ ଟାଣି ଆଣେ ଓ ଜୀର୍ଣ୍ଣ କରିଦିଏ।

ସେମାନେ ସମୁଦ୍ରକୁ ଭାବନ୍ତି ଜଗନ୍ନାଥ। କିନ୍ତୁ ସେମାନେ ବି ଯାଆନ୍ତି ଜଗନ୍ନାଥଙ୍କୁ ଦର୍ଶନ କରିବାପାଇଁ। ଭକ୍ତିରେ ନୁହେଁ, ପ୍ରେମରେ। ଜଗନ୍ନାଥ ସତେକି ତାଙ୍କ ପ୍ରେମପ୍ରଣୟର ଖୁସି ଆନନ୍ଦର ସାଥୀ–ସଙ୍ଗୀତ। ଜଗନ୍ନାଥ ଅଛନ୍ତି। ତାଙ୍କର ବଡ଼ଦେଉଳରେ ଫର ଫର ହୋଇ ନାଲିବାନା ଉଡୁଛି। ଜଗନ୍ନାଥେ ଆନନ୍ଦରେ ଅଛନ୍ତି। ଶୁଣାଯାଏ ଯେ, ସେ' କୁଆଡ଼େ ଦିନକୁ ଛାଠିଏ ପଉଟି ନାନାଦି ସ୍ୱାଦିଷ୍ଟ ଅନ୍ନବ୍ୟଞ୍ଜନ ଆଉ ମିଷ୍ଟାନ୍ନ

ଭୋଜନ କରନ୍ତି ଓ ଅନ୍ୟମାନଙ୍କୁ ଭୋଜନ କରାନ୍ତି। ତାଙ୍କର ବାର ମାସରେ ତେର ପର୍ବ। କେବଳ ତେର ପର୍ବ ନୁହେଁ; ତେର ଶହ ପର୍ବ ଆଉ ପାର୍ବଣ। ବିଶ୍ଚ ଷହେ ବେଶ ଆଉ ଭୂଷା। ଏବେ ଚାଲିଛି ମାସେ କାଳ– ଗତ ଧନୁ ସଂକ୍ରାନ୍ତିଠାରୁ ଆଗତ ମକର ସଂକ୍ରାନ୍ତି ପର୍ଯ୍ୟନ୍ତ ପୁଷ୍ୟାଭିଷେକ ପର୍ବ। ଜଗନ୍ନାଥେ ବଡ଼ିଭୋର୍‌ରୁ, ମାନେ ପାହାନ୍ତା ଚାରିଟା ବେଳୁ ଉଠୁଛନ୍ତି। (ଶୋଉଛନ୍ତି କେତେବେଳେ କେଜାଣି!) ଖେଚେଡ଼ୀ; ମୂଳାରାଇ ଓ ନାନାଦି ପିଡ଼ାଖଜା ଖାଉଛନ୍ତି ସକାଳୁ ସକାଳୁ। ତାଙ୍କର ଜ୍ୟେଷ୍ଠା ପତ୍ନୀ ଲକ୍ଷ୍ମୀ ବାପଘରକୁ ଯାଇଛନ୍ତି ସମୁଦ୍ର ଭିତରକୁ। ସେଠି ସେ ମାସେ ରହିବେ। ବର୍ତ୍ତମାନ ଜଗନ୍ନାଥଙ୍କୁ ତାଙ୍କ ମାଆ ଅତି ଗେହ୍ଲାପଣରେ ଖୁଆଇ ପିଆଇ ସମ୍ଭାଳୁଛନ୍ତି। ଜଗନ୍ନାଥେ ଭଲରେ ଅଛନ୍ତି। ଭଲରେ ଥାଅ ପ୍ରଭୁ, ଭଲରେ ଥାଅ ଚିରଦିନ। ଜଗବନ୍ଧୁ! ତୁମେ ନିଜେ ଆନନ୍ଦ ଖୁସିରେ ରହିଥାଅ। ତୁମେ ଖୁସିରେ ରହିଲେ, ଜଗତ ଖୁସିରେ ରହିବ। ଆମେ ସମସ୍ତେ ଖୁସିରେ ରହିବୁ। ଆମ ଖୁସିରେ ତୁମ ଖୁସି– ଆଉ ତୁମ ଖୁସିରେ ବି ଆମର ଖୁସି।

ବଡ଼ଦାଣ୍ଡରେ ଉତ୍ତର ଭାରତର ହିନ୍ଦୀଭାଷୀ ଭକ୍ତଟିଏ, ନୀଳଚକ୍ରକୁ ଚାହିଁ ଗାଇ ଚାଲିଛି– "ଠାକୁର ଭାଲୋ ବିରାଜୋଜୀ!"

କିନ୍ତୁ ସିଂହଦ୍ୱାର ଠାରୁ ସମୁଦ୍ର କୂଳଯାଏ ଯୋଉ ରାସ୍ତାଟି ଯାଇଚି ମୋଚି ସାହି ବାଟେ, ତାର ପାଖକେ କଚେରୀ– ସମୁଦ୍ରଠାରୁ କେତେ ମିଟର ପୂର୍ବରୁ ଆଚାର୍ଯ୍ୟ ହରିହରଙ୍କ ମୂର୍ତ୍ତି– ସେଇ ରାସ୍ତାରେ ପଡ଼ିଛି ମଲା ଗାଈଟିଏ– ଚାରିହାତ ଲମ୍ବାଇ ପଡ଼ିଛି। ତାର ପାଟି ବାଟେ ରକ୍ତ ବହି ଯାଇଛି– ତା'ର ପେଟ ଫୁଲି ଉଠିଛି– ତାର ମଳଦ୍ୱାର ବାଟେ ଝାଡ଼ା ବହିଯାଉଛି– ତା'ର ମୁହଁ ପାଖେ ଓ ମଳଦ୍ୱାର ପାଖେ କୁଆମାନେ ବେଢ଼ି ତାକୁ ଖୁମ୍ପି ଖୁମ୍ପି ବୀଭତ୍ସ କରି ଦେଲେଣି। ଲୋକେ କହିଲେ ଯେ, ସେ ଗାଈ କୁଆଡ଼େ ସେଠି ଦୁଇଦିନ, ଦୁଇରାତି ହେଲାଣି ମରି ପଡ଼ିଲାଣି। ତା'ର ରକ୍ଷକ କିଏ, ତାଙ୍କର ଦେଖା ନାହିଁ। ମ୍ୟୁନିସିପାଲଟି ବାଲାଙ୍କର ଆଖିରେ ବି ସେ ଦୃଶ୍ୟ ତଦବିଧି ପଡ଼ିନାହିଁ। ଗାଈଟି ସେମିତି ପଡ଼ିଛି। ସତେକି ସେ ଏମିତି ସେଠି ପଡ଼ି ପଡ଼ି ସେଇଠି ସେ ରାସ୍ତାରେ ମିଶିଯିବ। ଓଡ଼ିଆମାନେ ଗୋପବନ୍ଧୁଙ୍କର ସେଇ ବିଖ୍ୟାତ ପଦଟିକୁ ସର୍ବଦା କେବଳ ପ୍ରାଣୀମାନଙ୍କ ପାଇଁ ପାଳି ଆସିଛନ୍ତି। "ମିଶୁ ତା'ର ଦେହ ଏଦେଶ ମାଟିରେ, ଦେଶବାସୀ ଚାଲି ଯାଆନ୍ତୁ ପିଠିରେ।"

ଖାଲି ଶ୍ରୀକ୍ଷେତ୍ରର ସେଇ ରାସ୍ତା ବା ସେହି ଗାଈଟି କଥା କାହିଁକି ପଡ଼ିଛି– ଓଡ଼ିଶା ସାରା ରାସ୍ତାଘାଟରେ ବିଲୁଆ, କୁକୁର, ଛେଳି, ମେଣ୍ଢା ଗାଈଗୋରୁ ରୋଗରେ ହେଉ, କି ଦୁର୍ଘଟଣାରେ ହେଉ– ମରି ପଡ଼ିଥିବେ। ମାସ ମାସଧରି ତାଙ୍କ ଶବ

ସେଠି ପଡ଼ିରହିବ। ତାଙ୍କ ଶବ ଉପରେ ହଜାର ହଜାର ଟ୍ରକ୍, ବସ୍ ଚାଲିଥିବ, ସେମାନଙ୍କର ଶବ ସେହି ସଡ଼କରେ ଧୂଳି ହୋଇ ମିଶିଯିବା ପର୍ଯ୍ୟନ୍ତ। "ମିଶୁ ତା'ଙ୍କ ଦେହ ଏ ଦେଶ ମାଟିରେ, ଦେଶବାସୀ ଚଢ଼ି ଯାଆନ୍ତୁ ପିଠିରେ।"

ଧନ୍ୟରେ ଓଡ଼ିଆ ଜାତି। ତୁମକୁ ଏ ସମୁଦ୍ର କିଏ କାହିଁକି ଦେଲା ? ତୁମକୁ ଏ ବଡ଼ଦାଣ୍ଡ କିଏ କାହିଁକି ଦେଲା ? ତୁମକୁ ଏ ସ୍ୱର୍ଗଦ୍ୱାର କିଏ କାହିଁକି ଦେଲା ? କିଏ କାହିଁକି ତୁମକୁ ଦେଲା ଏଇ ଭୁବନେଶ୍ୱର ? ଏଇ କୋଣାର୍କ ? ଏଇ ଚିଲିକା?

ଏଇ କଥାରେ ବିରକ୍ତ ହୋଇ ସେ ଦିନ ଜଣେ ବିଶିଷ୍ଟ ରାଜନୀତିଜ୍ଞ ନେତା ବନ୍ଧୁଙ୍କୁ ପଚାରିଲି। ସେ ଲୋକସଭା ନିର୍ବାଚନ କାମରେ ବ୍ୟସ୍ତ ଥିଲା ପରି ଜଣାପଡୁଥିଲେ। ଗଲରେ ଜାକିଥିବା ଗୁଣ୍ଡିମିଶା ପାନଟିକୁ ବଡ଼ କଷ୍ଟରେ ଜିଭ ଉପରକୁ ଆଣି, ତାକୁ ଚାକୁଳେଇ ଚାକୁଳେଇ ସେ ବହୁ ଅୟାସରେ କୁଛେଇ କୁଛେଇ ଆନୁନାସିକ ସ୍ୱରରେ କହିଲେ - ତୁଁମେ ତୁଁମ କାଁମରେ ଯାଉଁନ ଭାଁଇନାଁ !! କିଏ ଆଉଁ ଦଁବ ? ଦେଁଲା ବାଁଲା ଦଁଉଛି– ନେଁଲା ବାଁଲା ନଁଉଛି– ରହଁରହଁ ଟିଁକିଏ ଏ ଭୋଁଟ ସଁରୁ।

ହେଁ ଜଁଗନ୍ନାଥଁ !

✱✱

# ମଙ୍ଗଳବାର ଥିଲା ରାକ୍ଷୀପୂର୍ଣ୍ଣିମା

ଗତକାଲି ଥିଲା ରାକ୍ଷୀ—ପୂର୍ଣ୍ଣିମା। ଆମ ଓଡ଼ିଶାରେ କହୁ "ଗହ୍ମା—ପୁନେଇଁ"। ସାରା ଭାରତରେ ଏହି ପର୍ବପାଳିତ ହୁଏ। ମୁସଲମାନ ଖ୍ରୀଷ୍ଟିଆନ ପ୍ରଭୃତି ଅନ୍ୟ ଧର୍ମର ଲୋକେ ମଧ୍ୟ ହିନ୍ଦୁଙ୍କ ସଙ୍ଗେ ମିଶି ଏହି ପର୍ବଟିକୁ ଉପଭୋଗ କରନ୍ତି। ସେ ଦୃଷ୍ଟିରୁ ଏହା ଏକ ସାମାଜିକ ପର୍ବ ମଧ୍ୟ। ସାରା ଭାରତରେ ସହର ବଜାରମାନଙ୍କରେ ବିଭିନ୍ନ ଧରଣର ସୁନ୍ଦର ସୁନ୍ଦର ରାକ୍ଷୀମାନ ପର୍ବର ପାଞ୍ଚ ଛଅ ଦିନ ଆଗରୁ ବିକ୍ରୀ ହୁଏ। ଏଥିଲାଗି ସ୍ୱତନ୍ତ୍ର ଅସ୍ଥାୟୀ ଦୋକାନମାନ ବସେ। ଠିକ୍ ଦିଆଲି ଉତ୍ସବ ଲାଗି ବାଣ ଦୋକାନଗୁଡ଼ିକ ଭଳି। ଆଜିକାଲି ବହୁଧରଣର ବିଚିତ୍ର କାରୁକାମ ସମ୍ବଳିତ ରାକ୍ଷୀମାନ ତିଆରି ହୋଇ ବିକ୍ରୀ ହେଉଛି। ଗୋଟିଏ ଗୋଟିଏ ରାକ୍ଷୀର ଦାମ ଦଶବାର ଟଙ୍କାରୁ ପଚିଶି ତିରିଶ ପଇସା ପର୍ଯ୍ୟନ୍ତ। ଗୋଟିଏ ଗୋଟିଏ ରାକ୍ଷୀରେ ପ୍ଲାଷ୍ଟିକ୍ ବା ସରୁ ଆଲୁମୁନିୟମ ଚକ୍ତି ଲଗା ଯାଇ ସେଥିରେ ରାମ—ସୀତା, ହନୁମାନ, ଶ୍ରୀକୃଷ୍ଣ, ଲକ୍ଷ୍ମୀଆଦିଙ୍କର ଚିତ୍ରମାନ ଛପାଯାଇଛି। ଆମ କଟକର ଗୋଟିଏ ରାକ୍ଷୀ ଦୋକାନରେ ମୁଁ କେତୋଟି ରାକ୍ଷୀ ଦେଖିଲି, ଯୋଉଥିରେ କି ଉର୍ଦ୍ଦୁ ଅକ୍ଷରରେ ମୁସଲମାନ ଧର୍ମର କିଛି ମନ୍ତ୍ର ଖୁବ୍ ସୁନ୍ଦର ଭାବେ ଏକ ପ୍ଲାଷ୍ଟିକ୍ ଚକ୍ତିର ଖୋଳା ଯାଇଛି। ଦେଖି ଭାରି ଖୁସି ଲାଗିଲା। ଆମ କ୍ଷମତା—ରାଜନୀତିର ନିର୍ଲଜ ପ୍ରବଞ୍ଚକ ଘୋଡ଼ା ବେପାରୀମାନେ ଧର୍ମାନ୍ଧ ଓ ଧର୍ମ—ନିରପେକ୍ଷ ଆଦି ଶବ୍ଦଗୁଡ଼ିକ ଦ୍ୱାରା ନିଜକୁ ଭୂଷିତ ଓ ଅନ୍ୟକୁ ଦୂଷିତ କରି ଦେଶକୁ ଛାରଖାର କଲାବେଳେ, ଏଣେ ସାମାଜିକ ସ୍ତରରେ ଶୁଦ୍ଧ—ବୁଦ୍ଧି ସମ୍ପନ୍ନ ବ୍ୟକ୍ତିମାନେ ମନ ଭିତରୁ ଆପେ ଆପେ ସମସ୍ତ ସଂକୀର୍ଣ୍ଣତାକୁ କାଟି ଦେଇ ଅନ୍ୟଧର୍ମର ଲୋକଙ୍କ ସଙ୍ଗେ ଭାଇ ଭାଇ ହୋଇ ମିଶିଯିବାକୁ କି ବ୍ୟାକୁଳତା ଦେଖାଉଛନ୍ତି ତାର ଏହା ଗୋଟିଏ ସୁନ୍ଦର ନିଦର୍ଶନ। ଇଦ୍ ପର୍ବରେ ମଧ୍ୟ ସେମିତି ହିନ୍ଦୁମାନଙ୍କୁ ଡାକିନେଇ ମୁସଲମାନମାନେ ଇଦ୍—ମୁବାରକ୍ ଜଣାନ୍ତି। ଅସଲ ଧର୍ମଭାବ ଏମିତି ମିଳାଏ—ମିଶାଏ।

ରାକ୍ଷୀବନ୍ଧନ ଗୋଟିଏ ଅତି ପ୍ରୀତିପୂର୍ଣ୍ଣ ବ୍ୟବସ୍ଥା। ପରିବାର ଭିତରେ ଭଉଣୀମାନେ ସେମାନଙ୍କର ସାନ ବା ବଡ଼ଭାଇ ହାତରେ ରାକ୍ଷୀ ବାନ୍ଧି ଆଲିଙ୍ଗନ କରନ୍ତି ଏବଂ ଭାଇ ପାଖରୁ କିଛି ଉପହାର ମଧ୍ୟ ପାଆନ୍ତି। ସମାଜରେ ବନ୍ଧୁପତ୍ନୀମାନେ ବନ୍ଧୁଙ୍କ ହାତରେ ରାକ୍ଷୀ ବାନ୍ଧି ନିଜର ସ୍ନେହ—ପ୍ରୀତି ଦର୍ଶାଇଥାନ୍ତି। ବର୍ତ୍ତମାନ କିନ୍ତୁ ପୁରୁଷ ପୁରୁଷଙ୍କ ଭିତରେ ମଧ୍ୟ ରାକ୍ଷୀବନ୍ଧନ ଚାଲିଲାଣି। ବନ୍ଧୁ ବନ୍ଧୁ ରାକ୍ଷୀ ବନ୍ଧାବନ୍ଧି ହେଲେଣି।

ବିଭିନ୍ନ ଧର୍ମର ବନ୍ଧୁମାନେ ପରସ୍ପର ହାତରେ ରାକ୍ଷୀ ବାନ୍ଧି ନିଜ ହୃଦୟର ସ୍ନେହ–ପ୍ରୀତି ଓ ମୈତ୍ରୀଭାବ ନିବେଦନ କରୁଛନ୍ତି। ମୋଟ ଉପରେ ଏହି ରାକ୍ଷୀବନ୍ଧନ ବ୍ୟାପାରଟି ଖୁବ୍ ଆନନ୍ଦଦାୟକ ଭାବପ୍ରବଣ ଉତ୍ସବଟିଏ। ଧନୀ ଗରିବ ନିର୍ବିଶେଷରେ ସମସ୍ତେ ରାକ୍ଷୀର ସଦ୍‌ବ୍ୟବହାର କରନ୍ତି। କଟକରେ ଦେଖିଛି– ବେଡା, ଟୋକେଇ ବୁଣାଳିମାନେ, ରେକ୍‌ସାବାଲାମାନେ ଏବଂ ମାଲଗୋଦାମରେ ପିଠିରେ ବସ୍ତା ବୋହୁଥିବା ଶ୍ରମଜୀବୀମାନେ ଅଧିକାଂଶ ହାତରେ ସୁନ୍ଦର ରଙ୍ଗୀନ୍ ରାକ୍ଷୀ ସବୁ ବନ୍ଧା ହୋଇଛି।

ଆମ ଓଡ଼ିଶାର ଗାଁ ଗହଳରେ ଏଇ କେତେ ବର୍ଷ ପୂର୍ବେ କିନ୍ତୁ ଏହି ରାକ୍ଷୀବନ୍ଧା କଥାଟି ପ୍ରଚଳିତ ନ ଥିଲା। ଏବେ କିନ୍ତୁ ସ୍କୁଲ, କଲେଜ ପିଲାମାନେ ଓ ନୂଆ ନୂଆ ବ୍ୟବସାୟୀମାନେ ସହରମାନଙ୍କରୁ ଏହା ଶିଖି ଗାଁ ଗହଳରେ ପ୍ରଚଳନ କରି ଦେଲେଣି।

କିନ୍ତୁ ଓଡ଼ିଶାରେ ଗାଁଗହଳରେ ଏ ଦିନଟିକୁ "ଗହ୍ମା ପୂର୍ଣ୍ଣିମା" ବୋଲି ପାଳନ କରାଯାଏ। ଏ ଦିନ କୃଷି ସଭ୍ୟତା ଓ ସଂସ୍କୃତିର ଅବତାର ପୁରୁଷ ଶ୍ରୀ ଶ୍ରୀ ବଳଦେବ ଜନ୍ମ ଗ୍ରହଣ କରିଥିଲେ। ବଳଭଦ୍ର ଭଗବାନ ଶ୍ରୀକୃଷ୍ଣଙ୍କର ଜ୍ୟେଷ୍ଠଭ୍ରାତା ଏବଂ ଦଶ ଅବତାର ଭିତରେ ଅଷ୍ଟମ ଅବତାର। ସେ କୃଷ୍ଣମାତା ଦେବକୀଙ୍କର ମଧ୍ୟ ଅଷ୍ଟମ ଗର୍ଭ। କଂସ ଭୟରେ ଯୋଗମାୟା ଦେବୀକଙ୍କର ଗର୍ଭରୁ ତାଙ୍କୁ ହରଣ କରି ବସୁଦେବଙ୍କର ଅନ୍ୟତମା ପତ୍ନୀ ରୋହିଣୀଙ୍କର ଗର୍ଭରେ ସ୍ଥାପନ କରିଥିଲେ। ଜନ୍ମ ପରେ ରୋହିଣୀ ଶିଶୁ ବଳରାମଙ୍କ ସହ ନନ୍ଦଗୃହରେ ଆଶ୍ରୟ ନେଇଥିଲେ। ପରେ ପରେ ଶ୍ରୀକୃଷ୍ଣଙ୍କୁ ମଧ୍ୟ ବସୁଦେବ ନନ୍ଦଗୃହରେ ଛାଡ଼ିଆସିଲେ। କୃଷ୍ଣ ଓ ବଳରାମଙ୍କ ବାଲ୍ୟଜୀବନ ଗୋପପୁରରେ ଗୋ-ଚାରଣ କରି ଗୋପାଳ ବାଳକମାନଙ୍କ ସହିତ ଅତିବାହିତ ହୋଇଥିଲା ଏବଂ ଗୋପଲୀଳାରେ ବଳରାମ ଥିଲେ ଭଗବାନ ଶ୍ରୀକୃଷ୍ଣଙ୍କର ଲୀଳାସହଚର। କୃଷ୍ଣ ଓ ବଳରାମଙ୍କ ଭିତରେ ଥିଲା ଅନୁପମ ଭ୍ରାତୃପ୍ରୀତି। ବଳରାମ ଥିଲେ ସରଳ ହୃଦୟ ଓ କ୍ଷଣକୋପୀ। ସେ ଯମୁନା ନଦୀ ପ୍ରତି କ୍ରୁଦ୍ଧ ହୋଇ ନିଜର ହଳ ଅସ୍ତ୍ର ଦ୍ୱାରା ଭୂମିତାଡ଼ନ କରି ତା'ର ସ୍ରୋତକୁ ବହୁଦୂର ଆକର୍ଷଣ କରି ଆଣିଥିଲେ। ଦୁର୍ଯ୍ୟୋଧନଙ୍କ କନ୍ୟା ସହ କୃଷ୍ଣପୁତ୍ର ଶାମ୍ବଙ୍କ ବିବାହ କାଳରେ ଦୁର୍ଯ୍ୟୋଧନର ଅନୁଚିତ ବ୍ୟବହାରରେ କ୍ରୁଦ୍ଧ ହୋଇ ନିଜର ହଳମୂଷଳ ଦ୍ୱାରା ହସ୍ତିନାପୁର ତାଡ଼ି ଦେବାକୁ ବସିଥିଲେ। ବଳରାମ କାଦମ୍ବରୀ ନାମକ ଏକ ମାଦକଦ୍ରବ୍ୟ ପ୍ରତି ଅତ୍ୟନ୍ତ ଆସକ୍ତ ଥିଲେ ବି ତାଙ୍କର ଦିବ୍ୟ ଚେତନା ଖୁବ୍ ଉଜ୍ଜ୍ୱଳ ଏବଂ ନ୍ୟାୟବୋଧ ମଧ୍ୟ ଖୁବ୍ ତୀକ୍ଷ୍ଣ। ମହାଭାରତ ଯୁଦ୍ଧରେ ସେ ନିରପେକ୍ଷ ରହିଥିଲେ। କିନ୍ତୁ ତୀର୍ଥଯାତ୍ରା ଶେଷ କରି ହସ୍ତିନାରେ ଭୀମ ଦୁର୍ଯ୍ୟୋଧନଙ୍କ ଗଦାଯୁଦ୍ଧ ବେଳେ ସେ ଉପସ୍ଥିତ ଥିଲେ। ଭୀମସେନଙ୍କ ଗଦାଘାତରେ ଦୁର୍ଯ୍ୟୋଧନଙ୍କ

ଭରୁଭଙ୍ଗ ହେବାରୁ ସେ ଏହାକୁ ଯୁଦ୍ଧନୀତି-ଲଙ୍ଘନଜନିତ ଅନ୍ୟାୟ ଯୁଦ୍ଧ ବୋଲି ଘୋଷଣା କରିଥିଲେ ଏବଂ ପାଣ୍ଡବମାନଙ୍କୁ ଧ୍ୱଂସ କରିବାକୁ ହଳମୂଷଳ ଉତ୍ତୋଳନ କରିଥିଲେ। କିନ୍ତୁ ଶ୍ରୀକୃଷ୍ଣ ତାଙ୍କୁ ବହୁ ବୁଝାବୁଝି କରାଇ ଶାନ୍ତ କରିଥିଲେ। ମୋଟ ଉପରେ ବଳରାମ ଥିଲେ ନ୍ୟାୟ ନୀତି ନିପୁଣ। ମାତ୍ର ସାମାଜିକ ନ୍ୟାୟନୀତିର ସୀମା ଊର୍ଦ୍ଧ୍ୱରେ ଯେଉଁ ଅଧାତ୍ମ ସତ୍ୟର ନ୍ୟାୟନୀତି ବୋଧ ରହିଛି, ତାହା ସେ ନିଜେ ଉପଲବ୍ଧି କରିପାରୁ ନଥିଲେ। କିନ୍ତୁ ତାଙ୍କ ଉପରେ ସାନ ଭାଇ ଶ୍ରୀକୃଷ୍ଣଙ୍କର ଅଖଣ୍ଡ ପ୍ରଭାବ ଥିଲା। କୃଷ୍ଣଙ୍କ କଥାକୁ ସେ ଏଡ଼ି ଦେଇ ପାରୁ ନଥିଲେ। ଜଟିଳ ରାଜନୀତି, କୂଟନୀତି, ଯୁଦ୍ଧନୀତି ପ୍ରଭୃତି ବ୍ୟାପାରରେ ତାଙ୍କର ପ୍ରବେଶ ନଥିଲା କି ଉତ୍ସାହ ମଧ୍ୟ ନଥିଲା। ତେଣୁ ବେଳେ ବେଳେ ତାଙ୍କର କାର୍ଯ୍ୟ ବା ଭାବାବେଗ ବା ନୀତି ପ୍ରବଣତା ବଡ଼ ଖାପଛଡ଼ା, ଏପରିକି କାଣ୍ଡଜ୍ଞାନହୀନ ବୋଲି ସନ୍ଦେହ ସୃଷ୍ଟି କରୁଥିଲା। ଅର୍ଜୁନଙ୍କ ଦ୍ୱାରା ସୁଭଦ୍ରା ହରଣ ବେଳେ ବଳରାମଙ୍କର ଅର୍ଜୁନଙ୍କ ସହିତ ଯୁଦ୍ଧ କରିବା ଉଦ୍ୟମ ଏହି ଭଳି ଗୋଟିଏ ବିସଦୃଶୀ ବ୍ୟାପାର। କିନ୍ତୁ ଏସବୁ ସତ୍ତ୍ୱେ ବଳରାମଙ୍କର ଭ୍ରାତୃପ୍ରୀତି ଥିଲା ଅସାଧାରଣ...। ସେ ଥିଲେ କୃଷି-ଚେତନାର ଏକ ଶୁଦ୍ଧ ସରଳ ଦେବତା ଓ ପ୍ରବର୍ତ୍ତକ।

ଗହ୍ମା ପୂର୍ଣ୍ଣିମା ଦିନ ଓଡ଼ିଶାର ଗାଁ ଗହଳରେ ମାଟିରେ ଗହ୍ମା ତିଆରି ହୋଇ ପୂଜିତ ହୁଅନ୍ତି। ଘରେ ଘରେ ପୁରଦିଆ ଏଣ୍ଡୁରୀ ପିଠା ଓ କ୍ଷୀରି ହୁଏ। ପ୍ରଥମେ ବଳଦ ଓ ଗାଈମାନଙ୍କୁ ଗାଧୋଇ ଦେଇ ଫୁଲଚନ୍ଦନ ସିନ୍ଦୂର ଭୂଷିତ କରି ଏଣ୍ଡୁରୀ ପିଠା ଖାଇବାକୁ ଦିଆଯାଏ। ଗାଈ ବଳଦ ହେଲେ କୃଷି ସଭ୍ୟତାର ମୁଖ୍ୟ ଅବଲମ୍ବନ। ବ୍ରାହ୍ମଣମାନେ ନଡ଼ିଆ ଓ ପଇତାଦି ଦାନ କରି ଅନ୍ୟ ଜାତିର ଲୋକଙ୍କଠାରୁ ପ୍ରଭୂତ ଦକ୍ଷିଣାଦି ପାଇଥାନ୍ତି। ଏହି ଦିନ ରାଧାକୃଷ୍ଣଙ୍କ ଝୁଲଣ ମଧ୍ୟ ସମାପନ ହୁଏ। ଏହି ପୂର୍ଣ୍ଣିମା ପୂର୍ବରୁ ଚାରିଦିନ କାଳ ରାଧାକୃଷ୍ଣ ଓ ଗୋପୀମାନଙ୍କର ପବିତ୍ର ଝୁଲଣ ଯାତ୍ରା ଅନୁଷ୍ଠିତ ହୁଏ। ପୁରୀ ଓ ଓଡ଼ିଶାର ଅନ୍ୟାନ୍ୟ ମଠବାଡ଼ିରେ ଏହି ଝୁଲଣ ଯାତ୍ରା ଖୁବ୍ ଯାକଯମକରେ ହୋଇଥାଏ। ଏହି ପୂର୍ଣ୍ଣିମା ପରେ ଅଷ୍ଟମୀଦିନ ଭଗବାନ ଶ୍ରୀକୃଷ୍ଣଙ୍କର ପବିତ୍ର ଜନ୍ମ ଉତ୍ସବ ପାଳିତ ହେବ।

ଏହି ପୂର୍ଣ୍ଣିମା ସ୍ନେହ, ପ୍ରୀତି, ମୈତ୍ରୀ ଓ ସରଳ ସହଜ ଶୁଦ୍ଧ ସମ୍ପର୍କ ସୃଷ୍ଟି କରିବାରେ ସାର୍ଥକ ହୋଇଛି। କିନ୍ତୁ ସାରା ବିଶ୍ୱରେ ଓ ସାରା ଦେଶରେ ଆମେ ବର୍ତ୍ତମାନ କଣ ଦେଖୁଛୁ? ଘୃଣା, ଦ୍ୱେଷ, ଷଡ଼ଯନ୍ତ୍ର, ହିଂସା ଓ ଉନ୍ମତ୍ତତାର ପାଳା। ସାରା ପୃଥିବୀର ବିବେକ ହଜି ଯାଇଥିବା ଭଳି ମନେ ହେଉଛି। ସବୁଠାରୁ ନୈରାଶ୍ୟଜନକ ଅବସ୍ଥା ହୋଇଛି ଭାରତବର୍ଷର। ରାଜନୀତିର ପଣ୍ଡାମାନେ ଦେଶରୁ ମଦ୍ୟ ନିବାରଣ ଲାଗି ପାଟି କରୁଛନ୍ତି। କିନ୍ତୁ ସମସ୍ତେ ଅତି ବୀଭତ୍ସ ଭାବେ କ୍ଷମତା ପାଇବାର ବୀଭତ୍ସ ନିଶାରେ ଉନ୍ମତ୍ତ ଏବଂ ଏହି ଉନ୍ମତ୍ତତା ଦେଶର ସବୁ ସ୍ତରକୁ ଆକ୍ରାନ୍ତ

କରି ପାରିଲାଣି । ବର୍ତ୍ତମାନ କେହି କାହା ହାତରେ ରାକ୍ଷୀ ବାନ୍ଧିବାକୁ ବ୍ୟାକୁଳ ନୁହଁ । ଅନ୍ୟ ହାତରେ ହାତକଡ଼ି ପକାଇ ନିଜେ ସିଂହାସନ ଅଧିକାର କରିବାକୁ ସମସ୍ତେ ପାଗଳ ପ୍ରାୟେ ହେଉଛନ୍ତି । ବେଳେବେଳେ ପ୍ରେମର ରାକ୍ଷୀ ହୋଇଉଠେ ବନ୍ଧନର ଲୌହ-ଶୃଙ୍ଖଳ । ପୁଣି କେବେ ବା ବନ୍ଧନର ଲୌହ-ଶୃଙ୍ଖଳ ରୂପାନ୍ତରିତ ହୋଇଯାଏ ମୁକ୍ତପ୍ରେମର ଦିବ୍ୟ ରାକ୍ଷୀରେ !!

କିନ୍ତୁ ତଥାପି, ଏ ଦେଶର ସାଧାରଣ ଲୋକର ଆତ୍ମା ଏବେ ବି ରହିଛି ଅନାବିଳ । ଭାରତବର୍ଷର ସେହି ପୁରାଣଅଭିଜ୍ଞ ସମଷ୍ଟିଭୂତ ଆତ୍ମା ଖୁବ୍ ଶୀଘ୍ର ଏହି ଦୂରବସ୍ଥାର ମୁକାବିଲା କରିବ ଏ ବିଶ୍ୱାସ ଆମର ଅଛି । ମଙ୍ଗଳବାର ରାକ୍ଷୀ ପୂର୍ଣ୍ଣିମା ଗଲା । ଆମେ ଅପେକ୍ଷା କରିଛୁ ଆସନ୍ତା କାଲିର ଜନ୍ମାଷ୍ଟମୀକୁ ! ସେଦିନ ଆମର ଏହି ଦୁଃଖତାପ ପ୍ରପୀଡ଼ିତ ଧୂଳିଧୂସରିତା ପୃଥିବୀ ଉପରେ ଦିବ୍ୟପ୍ରେମ ଓ ଆନନ୍ଦର ଅବତାର ଭଗବାନ ଶ୍ରୀକୃଷ୍ଣ ଭୂମିଷ୍ଠ ହେବେ ।



# ବରଷକେ ଥରେ ଆସିଛି ରଜ....

ଆଜିଠାରୁ ଓଡ଼ିଶାର ଏକ ବିଶିଷ୍ଟ ଜନପ୍ରିୟ ପର୍ବ "ରଜ" ଆରମ୍ଭ ହେଉଛି। ଏ ପର୍ବ ତିନିଦିନ ଚାଲେ। କିନ୍ତୁ "ପହିଲିରଜ"ର ପୂର୍ବ ରାତିରୁ ହୁଏ ଅଯମାରମ୍ଭ। ଘରେ ଘରେ ଚାଉଳଚୂନା, ଗୁଡ଼, ଦୁଧ, ଦହି, ଛେନା ଓ ନଡ଼ିଆ ପ୍ରଭୃତି ମିଶ୍ରଣରେ ପ୍ରକାଣ୍ଡ ପ୍ରକାଣ୍ଡ ପୋଡ଼ପିଠା ପ୍ରସ୍ତୁତ ହୁଏ। ଗାଁର ଝିଅ ବୋହୂମାନେ ନିଜ ନିଜର ସୁନାରୂପା, ପିତଳ ଓ ଗିଲିଟିର ଅଳଙ୍କାରମାନ ସାବୁନ୍ ବା ସୋଡ଼ା ପାଣିରେ ପକାଇ ସଫା କରନ୍ତି। ରାତି ପାହାନ୍ତାରୁ ଉଠି ଦଳ ଦଳ ହୋଇ ଗାଧୋଇ ଯା'ନ୍ତି। ସୂର୍ଯ୍ୟ ଉଠିବା ଆଗରୁ ଗାଧୋଇ ସାରି ଘରକୁ ଫେରନ୍ତି—ଆଏ ଅଳଙ୍କାରମାନ ପିନ୍ଧନ୍ତି—ନୂଆ ଶାଢ଼ୀ, ସେମିଜ୍ ପିନ୍ଧନ୍ତି। କପାଳରେ ଚନ୍ଦନଟିପା ଲଗାନ୍ତି। ତା' ପରେ ପିଠାପଣା ଖାଇ ଦଳ ଦଳ ହୋଇ ଗାଁ ବୁଲି ବାହାରନ୍ତି। କୁଆଁରୀ କନ୍ୟାମାନେ ଜଠାଉ ବା ଚଟି ମାଡ଼ି ବୁଲନ୍ତି। ଭୂଇଁ ଉପରେ ଏ ତିନିଦିନ ପାଦ ଲାଗିବା ବିଧି ନୁହେଁ। ସେଦିନ ସବୁ ଘରେ ପାନ ଭାଙ୍ଗିବାର ନାନା ବିଚିତ୍ର ସୁନ୍ଦର କଳା ପ୍ରଦର୍ଶନୀ ହୁଏ। ଅଳେଇଚ, ଗୁଜରାତି, ଲବଙ୍ଗ, ଜାଇଫଳ, କିମାମ୍, ଜରଦା ଦେଇ ନାନା ବିଚିତ୍ର ଆକାରରେ ପାନଖିଲିମାନ ଭଙ୍ଗାଯାଇ ବନ୍ଧୁ ବାନ୍ଧବ, ଅତିଥି-ସ୍ୱଜନ ଆଉ ସଙ୍ଗାତ, ମଇତ୍ର, ଅଭଡ଼ା, ବଉଳ, ଆମକଷି, ନିର୍ମାଲ୍ୟ, ଅଶୋକା ଆଦି ନାମରେ ନାମିତ ବା ନାମିତା ପ୍ରୀତି-ସମ୍ପର୍କ-ମଧୁର ବନ୍ଧୁବାନ୍ଧବୀଙ୍କୁ ସଙ୍ଖୋଳି ଅର୍ପଣ କରାଯାଏ। ଗାଁ ଦାଣ୍ଡ ସୁବେଶା ସୁଶୋଭିତା ସୁନ୍ଦରୀ କନ୍ୟା ଓ ବଧୂମାନଙ୍କ ସମାବେଶରେ ଅତ୍ୟନ୍ତ ରମଣୀୟ ହୋଇ ଉଠେ। ଗାଁର ରମଣୀରୂପଲୋଲୁପୀ ରମଣୀ ସାନ୍ନିଧ୍ୟାଭିଳାଷୀ ଯୁବକମାନେ ମଧ ରମଣୀ-ସମାବେଶ-ସୁଯୋଗର ସଦ୍‌ବ୍ୟବହାର କରିଥାନ୍ତି। ଶୃଙ୍ଗାରରସ ପ୍ଲାବିତ ଗୀତରେ-ଗାଁ-ଦାଣ୍ଡ- ମୁଖରିତ ହୋଇ ଉଠେ। କେହି କିନ୍ତୁ କୋଉ କଥାକୁ ଅସୁଖ ମଣନ୍ତି ନାହିଁ—ଦିହକୁ ନିଅନ୍ତି ନାହିଁ। ବରଂ ସୁନ୍ଦରୀମାନେ ନିଜ ନିଜର ଗୀତି ମୁଖର-ରୂପ ପ୍ରଶଂସା ଶୁଣି ଆତ୍ମଶ୍ଳାଘାରେ ଆହୁରି ରମଣୀୟ ହୋଇ ଉଠନ୍ତି। ରଜ ତିନିଦିନ ଯାକ ରମଣୀମାନେ କୌଣସି ଗୃହକର୍ମ କରନ୍ତି ନାହିଁ। ପୁରୁଷମାନଙ୍କୁ ସେ ତିନିଦିନ ରନ୍ଧନ କରି ଖାଇବାକୁ ପଡ଼େ।

ଗାଁର ନିକାଞ୍ଚନ ଆମ୍ବତୋଟାରେ ବା ବରଗଛ ମୂଳେ ଦୋଳି ଝୁଲୁଥାଏ। ଝିଅ ବୋହୂମାନେ ସାରା ଦିପ୍ରହର ସେଠି ଦୋଳି ଖେଳନ୍ତି—ସେମାନଙ୍କର ସରଳ

ଅନାବିଳ କଣ୍ଠରୁ ଜୀବନର ରସ ଓ ଧ୍ୱନି ସଙ୍ଗୀତ ଆକାରରେ ଝରିପଡ଼େ। ଚତୁର୍ଦ୍ଦିଗ ସେହି ମଧୁକାକଳିର ଆନନ୍ଦ ଉଦ୍ଧାଦନାରେ କମ୍ପୁଥାଏ। ଦୁଇପ୍ରହରେ ଘରେ ଘରେ ବା ଘର ବାହାରେ ଖାସି ମାଂସ ଓ ଖେଚୁଡ଼ିର ଭୋଜି ହୁଏ ଏବଂ ଅପରାହ୍ନରେ ଗାଁ ପାଖ ପଡ଼ିଆରେ ପୁରୁଷମାନଙ୍କ ଭିତରେ "ବାଗୁଡୁଗୁଡୁ", "ବାଗୁଡ଼ି", "ଡୁଡୁ", "ପାହି କିତି କତି" ଆଦି ଖେଳ ଆରମ୍ଭ ହୋଇଯାଏ। ସାଇ ସାଇ ଭିତରେ ଏଇ ଖେଳ ଲାଗି ପ୍ରତିଦ୍ୱନ୍ଦ୍ୱିତା ହୁଏ। ଶହ ଶହ ଦର୍ଶକ ଚାରିପଟେ ଘେରି ଖେଳ ଦେଖନ୍ତି। ଯୋଡ଼ି-ନାଗରା ବାଜୁଥାଏ। ରଜ ତିନିଦିନ ପୁରୁଷମାନେ ମଧ୍ୟ କୌଣସି କାର୍ଯ୍ୟକ୍ରମ କରନ୍ତି ନାହିଁ। କେବଳ ଭୋଜି, ଖେଳ, ଗୀତ ଆନନ୍ଦ। ରାତିରେ ଗାଁ ଗାଁରେ ବାଦୀପାଲା, ଦାସକାଠିଆ, କିମ୍ବା ଯାତ୍ରାଦି ଅନୁଷ୍ଠିତ ହୁଏ। ତିନିଦିନଯାକ ଗାଁର ଆବାଳବୃଦ୍ଧବନିତା ମହାଆନନ୍ଦ ଆଉ ଆହ୍ଲାଦରେ କଟାଇ ଦିଅନ୍ତି। ସେହି ତିନି ଦିନ ଗାଁ ଲୋକେ ବାଦବିସମ୍ବାଦ ଭୁଲିଯାଇଥାନ୍ତି। ଖଳ ବା ଅହନ୍ତାପଣ ଭୁଲିଯାଇଥାନ୍ତି। କେବଳ ଖୁସୀ, ଆନନ୍ଦ, ଫୂର୍ତ୍ତି ଆଉ ଜମାଣ।

ପ୍ରାୟ କୋଡ଼ିଏ ବର୍ଷତଳେ ରଜ ବେଳକୁ ବର୍ଷାଋତୁ ଆସି ଯାଇଥାଏ। ଗାଡ଼ିଆ ପୋଖରୀରେ ଗୋଳିଆପାଣି ଜମି ଯାଇଥାଏ ଓ ସେ ପାଣିରେ ବେଙ୍ଗଫୁଲାମାନ ଭାସୁଥାଆନ୍ତି। ରାତିଯାକ ବେଙ୍ଗମାନେ ରଡ଼ିଛାଡ଼ନ୍ତି ଓ ବ୍ରାହ୍ମଣିଆ ବେଙ୍ଗମାନେ ରଡ଼ି ଛାଡ଼ି ପରସ୍ପର ସଙ୍ଗେ ଉତ୍ତର ପ୍ରତ୍ୟୁତ୍ତର ଆଦାନ ପ୍ରଦାନ କରୁଥାଆନ୍ତି। ରଜ ପୂର୍ବରୁ ପ୍ରବଳ ବର୍ଷା ହେଉଥିବା ହେତୁ ପାଗ ଥାଏ ଶୀତଳ, ଆର୍ଦ୍ର ଓ ଆରାମଦାୟକ। ଆକାଶ ମେଘାଚ୍ଛନ୍ନ ଥିବା ହେତୁ ସୂର୍ଯ୍ୟଙ୍କର ପ୍ରଖର ତାପରୁ ରକ୍ଷା ମିଳେ। ବୁଲାବୁଲି ଓ ଖେଳାଖେଳି ଲାଗି ପ୍ରଶସ୍ତ ପାଗ। ବୁଢ଼ା ବୁଢ଼ୀମାନେ ପଶାପାଲି କିମ୍ବା ତାସପାଲି ଧରି ଦିନଯାକ ଖେଳୁଥାନ୍ତି। ବର୍ଷେ ବର୍ଷେ ରଜ ତିନିଦିନଯାକ ଝିପିଝିପି ହୋଇ ବର୍ଷା ହେଉଥାଏ। ସେ ବର୍ଷ, "ରଜ ସଜବାଜ ମଉଜ" କୁ ଝିପିଝିପି ବର୍ଷା ନଷ୍ଟ କରିଦିଏ। ଆକାଶ ମେଘାଚ୍ଛନ୍ନ, ଭୂମି ଓ କୃଷିକ୍ଷେତ୍ର ଆର୍ଦ୍ର—ବୃକ୍ଷଲତା ନିଦାଘ ତାପରୁ ରକ୍ଷା ପାଇ ସତେଜ ସଜୀବ ଓ ପ୍ରଫୁଲ୍ଲ ଦିଶନ୍ତି। ବଣବୁଦାରୁ ତାହୁକ ଓ କୁମ୍ଭାଟୁଆମାନେ ବୋବାଉଥାନ୍ତି। କୋଇଲିଙ୍କ କଣ୍ଠସ୍ୱର ଭାଙ୍ଗିଯାଏ। କେହି କେହି କୋଇଲି ସେହି ଭଙ୍ଗା କଣ୍ଠରେ ମଧ୍ୟ ଏକୁଟିଆ କୋଉ ଗଛ ଗହଳରୁ ବୋବେଇ ଉଠନ୍ତି। ବର୍ଷେ ବର୍ଷେ ନାଲି ଗୁଲୁଗୁଲୁ ସାଧବବୋହୂ ପୋକଙ୍କର ମଧ୍ୟ ପଡ଼ିଆ ଯାଗାରେ ଦେଖା ମିଳେ। ଚାରିଆଡ଼େ ଲତାପତ୍ରମାନ କଅଁଳି ଉଠୁଥାଏ। ସବୁଆଡ଼େ ଆଶା-ବିହ୍ୱଳ ଉଚ୍ଛୁଳା ଆନନ୍ଦ। ମୋ ପିଲାଦିନେ ଦେଖିଛି—ଆମ ଗାଁରେ ମୁସଲମାନ ଖ୍ରୀଷ୍ଟିଆନ୍‌ମାନେ ମଧ୍ୟ ହିନ୍ଦୁଙ୍କ ପରି ରଜପର୍ବ ପାଳନ କରନ୍ତି। ପିଠାପଣା କରି ଖାଆନ୍ତି ଓ ଖେଳ କୌତୁକରେ ମାତି ଥାଆନ୍ତି। ରଜ ଧାର୍ମିକ ପର୍ବ ନୁହେଁ—ବରଂ ଅଧିକ ମାତ୍ରାରେ ସାମାଜିକ ପର୍ବ ସାଂସ୍କୃତିକ ପର୍ବ।

କଥିତ ଅଛି ଯେ, ରଜ ତିନିଦିନଯାକ ବସୁଧାମାତା ରଜସ୍ୱଳା ହୁଅନ୍ତି। ଚତୁର୍ଥ ଦିନ ଘରେ ଯାହାସବୁ ଲୁହାନିର୍ମିତ ଦ୍ରବ୍ୟ ଥାଏ,—ସବୁକୁ ଏକତ୍ର କରି ହଳଦୀ ପାଣିରେ ଗାଧୋଇ ଦିଆଯାଏ। ଫୁଲ ବରକୋଳି ପତ୍ର, ଦୁବ ଏବଂ ଅରୁଆ ଚାଉଳ ଦ୍ୱାରା ପୂଜା ଅର୍ଘ୍ୟ ଦିଆଯାଏ, ସେସବୁ ହାତ ହତିଆରକୁ ନବ ବସ୍ତ୍ରରେ ଆବୃତ କରାଯାଇ ଭୋଗ ଲଗାଯାଏ। ଏହାକୁ ଠାକୁରାଣୀ ପୂଜା କହନ୍ତି। ତୃତୀୟ ରଜ ଦିବସକୁ "ଭୂଇଁଦଅଁଣ" କୁହାଯାଏ। ସେଦିନ କେହି ଭୂମି ଉପରେ ଆଘାତ କରନ୍ତି ନାହିଁ। ରଜ ତିନିଦିନଯାକ ବିଲକୁ ହଳଯିବା ନିଷେଧ।

ରଜ ଓଡ଼ିଶାର ଜାତୀୟ ପର୍ବ। ମାତ୍ର ପଶ୍ଚିମତ ଓଡ଼ିଶାର ଏହି ପର୍ବ ପାଳିତ ହୁଏ ନାହିଁ। ଏବେ କାଁ ଭାଁ ଏହି ପର୍ବ ଅନୁଷ୍ଠିତ ହେଉଛି। ଆଜିକାଲି ଗାଁ ଦାଣ୍ଡରେ ମଧ୍ୟ ଏ ପର୍ବ ତାର ଜାକଜମକ ହରାଇଲାଣି। ପିଠାପଣା ଅବଶ୍ୟ ହେଉଛି। ମାତ୍ର ପୂର୍ବଭଳି ସେଇ ଖେଳ, ଭୋଜି, ଯାତ୍ରା, ପାଲା ନାହିଁ। ସ୍ତ୍ରୀ ଲୋକମାନଙ୍କର ସେଇ ଆନନ୍ଦ ଉଲ୍ଲାସ ମଧ୍ୟ ନାହିଁ। ଗାଁ ଗଣ୍ଡାରେ ବ୍ଲକ୍ ଓ ପଞ୍ଚାୟତ ପ୍ରଭୃତି ହେଲାଦିନୁ ଗ୍ରାମବାସୀଙ୍କ ମନ ଭିତରେ ରାଜନୀତି ପଶିଗଲାଣି। ଏବେ ପୁଣି ଭାଗଚାଷ ଆନ୍ଦୋଳନ ଓ ସବର୍ଣ୍ଣ ହରିଜନ ଭେଦଭାବ ଗ୍ରାମବାସୀଙ୍କ ମନକୁ ତିକ୍ତ କରିଦେଲାଣି। ସେଭଳି ଏକତା ଆଉ ନାହିଁ। ସେଭଳି ଆନନ୍ଦ ଉତ୍ସବ ମଧ୍ୟ ଆଉ ନାହିଁ। ଧନ କ୍ଷମତା ଓ ପ୍ରତିଷ୍ଠା ଲାଗି ଗାଁରେ ମଧ୍ୟ ପ୍ରତିଦ୍ୱନ୍ଦିତା ଓ କଳିକନ୍ଦଳ ପ୍ରବଳ ହୋଇଉଠିଲାଣି। ଆଧୁନିକ ଗାଁ ଗଣ୍ଡାରୁ ସେହି ସହଜ ଜୀବନର ଆନନ୍ଦ ଲୋପ ପାଇଗଲାଣି। ପରସ୍ପରକୁ ସନ୍ଦେହ, ସଂଶୟ ଓ ଈର୍ଷା କରି କରି ଗାଁବାଲାଙ୍କ ଜୀବନରୁ ସେହି ପ୍ରାଣପ୍ରାଚୁର୍ଯ୍ୟ ଓ ବିପୁଳ ଜୀବନର ରସ ଝରଣା ଶୁଖିଗଲାଣି। ଗାଁର ଅଧିବାସୀମାନେ ବରଂ ବର୍ତ୍ତମାନ ସହରବାସୀଙ୍କଠାରୁ ମନସ୍ତାତ୍ତ୍ୱିକ ଦିଗରୁ ଅଧିକ ନିରାନନ୍ଦକର ଜୀବନ କଟାଉଛନ୍ତି। ଗାଁବାଲାଟି ବରଂ ବର୍ତ୍ତମାନ ଅଧିକ ଏକୁଟିଆ ବୋଧ କରୁଛି। ତା'ର ହୃଦୟରୁ ଜୀବନର ଉତ୍ତାପ ଖସିଗଲାଣି। ତା'ର ଚିତ୍ତ ସହରବାସୀଟିଠାରୁ ଅଧିକ ଆଶଙ୍କା-ଜର୍ଜରିତ ଓ ପ୍ରେମ-ପ୍ରୀତି-ଭାବ-ସମ୍ପର୍କ-ବର୍ଜିତ ହୋଇ ଉଠିଲାଣି। ତେଣୁ ଆଜି ରଜ ଆଉ ଗାଁ ଗହଳରେ ପୂର୍ବ ପରି ଜୀବନର ଉନ୍ମାଦନାରେ ପ୍ରମତ୍ତ ବା ବିହ୍ୱଳ ନୁହେଁ।

ସବୁ ବର୍ଷ ପରି ରଜ ଆସୁଛି, ଆସିଛି ଓ ଚାଲିଯିବ। ଗତ କେତେବର୍ଷ ଧରି ରଜ ବେଳକୁ ପ୍ରଚଣ୍ଡ ଖରା ହେଉଛି। ଏ ବର୍ଷ ମଧ୍ୟ ମୌସୁମୀ ବର୍ଷାର ଦେଖାନାହିଁ ଏ ଯାବତ୍। ଓଡ଼ିଶାରୁ ଜଙ୍ଗଲ ପଦା ହୋଇଗଲାଣି। ସାର ଓଡ଼ିଶା ଦିଶିଲାଣି ଧୂ ଧୂ ମରୁଟାଙ୍ଗର ଭଳି। ଓଡ଼ିଆଙ୍କ ମନ ଓ ହୃଦୟ ମଧ୍ୟ କ୍ରମଶଃ କ୍ଷୁଦ୍ର ଓ ଶୁଷ୍କ ହୋଇ ଆସିଲାଣି, ତା' ନହେଲେ ରଜ ଭଳି ଏତେବଡ଼ ଗୋଟାଏ ଜାତୀୟ ପର୍ବ ସାରା ରାଜ୍ୟରେ ମହା ସମାରୋହରେ ପାଳିତ ହୁଅନ୍ତା ନାହିଁ?

ଚାରିଆଡ଼େ—କି ସହର କି ମଫସଲ ସର୍ବତ୍ର ଖେଳ କସରତର ପ୍ରତିଯୋଗିତା ହୁଅନ୍ତା; ପାଲା, ଯାତ୍ରା, ଦାସକାଠିଆ ଓ ନୃତ୍ୟ ସଙ୍ଗୀତରେ ସହର ମଫସଲ କମ୍ପୁଥାନ୍ତା । ଗୋଟାଏ ଜାତି ଯଦି ଅଧିକ ପରଶ୍ରମୀ ହୁଅନ୍ତା, ଅଧିକ ଚିନ୍ତାଶୀଳ ହୁଅନ୍ତା ଓ ଅଧିକ ଅନୁଭୂତି ପ୍ରବଣ ହୁଅନ୍ତା, ତେବେ ତା'ର ହୃଦୟ ବିଶାଳ ଓ ମାଧୁର୍ଯ୍ୟ ପରିପୂର୍ଣ୍ଣ ହୋଇଉଠନ୍ତା । ତା' ପକ୍ଷରେ ଜୀବନ ଏବଂ ସମବେତ ଜୀବନ ହୋଇଉଠନ୍ତା ଅଧିକ ଉପଭୋଗ୍ୟ, ସ୍ୱାଦ ଓ ଆନନ୍ଦଉଲ୍ଲାସ ପରିପୂର୍ଣ୍ଣ ।

ଯାହା ହେଲେ ବି ସବୁ ବର୍ଷ ପରି ଏ ବର୍ଷ ମଧ୍ୟ ରଜ ଆସିଛି ଏବଂ ଏଇ ଅବସରରେ ମୋର ପ୍ରିୟ ପାଠକ-ପାଠିକାମାନଙ୍କୁ ମୁଁ ଏକ ଆନନ୍ଦ-ମୁଖର ଅବସର ବିନୋଦନ ପାଇଁ ଶୁଭେଚ୍ଛା ଜଣାଉଛି ।

**

# ଧାର୍ମିକ ପ୍ରତାରଣା

ଏଭଳି ଦେଖାଯାଇଛି ଯେ, ଗୋପନରେ ଅନ୍ୟ ପୁରୁଷମାନଙ୍କ ସହିତ ପାପ ପ୍ରଣୟରେ ମାତିଥିବା ବିବାହିତା ସ୍ତ୍ରୀ ଲୋକଟି ଗଳାରେ ପିନ୍ଧିଥିବା ହାରଟିରେ "ପତି ପରମ ଗୁରୁ" ବୋଲି ଉତ୍କୀର୍ଣ୍ଣ ବଡ଼ ଲକେଟ୍ ବା ପଦକଟିଏ ଝୁଲାଇ ବୁଲୁଥାଏ। କଥା କଥାକେ ଅନ୍ୟମାନଙ୍କ ଆଗରେ ନିଜ ସ୍ୱାମୀର ଗୁଣ ବୟାନ କରି ଚାଲିଥାଏ ଏବଂ ତା'ର ପାପ-ପ୍ରଣୟୀ ସଙ୍ଗେ ମିଳିତ ହେବାର ପୂର୍ବ ପର୍ଯ୍ୟନ୍ତ ନିଜ ସ୍ୱାମୀର ଏପରି ହେପାଜତ ବା ପରିଚର୍ଯ୍ୟା କରୁଥାଏ ଯେ, ତାକୁ ଦେଖି ସୀତା, ସାବିତ୍ରୀ, ଅରୁନ୍ଧତୀ, ଦମୟନ୍ତୀ ପ୍ରଭୃତି ସତୀକୁଳ-ଲଲାମଭୂତା ରମଣୀମାନେ ମଧ୍ୟ ହଡ଼ବଡ଼େଇ ଯିବେ।

ତେବେ, ଏଭଳି ଆତ୍ମଦୃଷ୍ଟାନ୍ତ କେବଳ ସ୍ତ୍ରୀ ଜାତି ଉପରେ ଲଦି ଦିଆଯାଇ ନ ପାରେ। ମୁଁ ଏପରି ଚାଲାଖ ଚତୁର ପୁରୁଷ-ବୃଷଭମାନଙ୍କୁ ଜାଣେ; ଯେଉଁମାନେ ଅର୍ଦ୍ଧନାରୀଶ୍ୱର ଶିବଙ୍କ ଭଳି ଆପଣା ପତ୍ନୀକୁ ସର୍ବଦା ଦେହଲଗ୍ନ କରି ରଖିଥାନ୍ତି ଏବଂ ପଦପଦକେ ପତ୍ନୀଙ୍କର ମନକୁ ଜଗି, ମିଜାଜ୍‌କୁ ଜଗି, ମର୍ଜିକୁ ଜଗି ନିଜେ ଚଳୁଥାନ୍ତି ଓ ପତ୍ନୀକୁ ମଧ୍ୟ ଚଳାଉଥାନ୍ତି। ପତ୍ନୀ ସୂତାଖିଏ ଚାହିଁଲେ, ତାଙ୍କ ପାଦତଳେ ପାଟ ଶାଢ଼ିଟିଏ ଆଣି ଥୋଇ ଦିଅନ୍ତି। ପତ୍ନୀ ତାଙ୍କର ପାଦବଲ୍ଲବଟିକୁ ଟେକିବା ମାତ୍ରେ, ତାକୁ ଧାରଣ କରିବା ପାଇଁ ଆପଣାର ମଥାଟିକୁ ଆଭୂମି ଅବନତ କରି ଦେଖାଇ ଦିଅନ୍ତି। ପୁଣି କଥା କଥାକେ ସାଙ୍ଗ ସାଥୀଙ୍କ ଆଗରେ ସର୍ବଦା ଜଣାଉଥାନ୍ତି ଯେ, ତାଙ୍କର ଏଇସବୁ ଯାହା କିଛି ଧନଜନ ଗୋପଲକ୍ଷ୍ମୀ, କୀର୍ତ୍ତି, ଯଶ ଆଦି ସମ୍ଭବ ହୋଇଛି—ସବୁ ଏଇ ରମଣୀ ରତ୍ନ ପାଇଁ। କିନ୍ତୁ ଏହି ପତ୍ନୀ-ଗୁଣ-ଗାୟକ ବାଚାଳ ପୁରୁଷପୁଙ୍ଗବଟି ପତ୍ନୀକୁ ସୁନିଦ୍ରା ଦେବା ବାହାନାରେ ମଧ୍ୟେ ମଧ୍ୟେ ନିଦ ବଟିକା ଖୁଆଇ ବାହାରେ ଇତର ସ୍ତ୍ରୀ ଲୋକଙ୍କ ସହିତ ରାତିର କେତୋଟି ଘଣ୍ଟା କଟାଇ ଆସୁଥିବାର ଅଥବା ଘର ଭିତରେ ସୁରକ୍ଷିତା ବିଧବା ଭାଉଜ ବା ଶ୍ୟାଳିକା ସହିତ ଅଥବା ଚାକରାଣୀ ସହିତ କେତୋଟି ଦୁର୍ଲଭ ଆନନ୍ଦ ଘନ-ମୁହୂର୍ତ୍ତ ବିତାଉଥିବାର ବହୁ ବହୁ ବୃତ୍ତାନ୍ତ ଆମକୁ ଖୁବ ଜଣାଅଛି।

କିନ୍ତୁ ଏସବୁ ଘଟଣା ଦୁର୍ଘଟଣାମାନ ଆମର ଆଲୋଚ୍ୟ ବିଷୟ ନୁହେଁ। କେବଳ ଉପଲକ୍ଷ୍ୟ ମାତ୍ର। ଏସବୁ ଉପଲକ୍ଷ୍ୟ ପ୍ରସଙ୍ଗରୁ ଅନ୍ତତଃ ଗୋଟାଏ କଥା ସାବ୍ୟସ୍ତ ହେଉଛି ଯେ, ଏଇ ଘୋର କଳିଯୁଗରେ ବା ବିଂଶଶତାବ୍ଦୀର ଏଇ ଶେଷ

ବିଂଶକରେ ଅଥବା ଯୁଗେ ଯୁଗେ, ମଣିଷ ପ୍ରକୃତିରେ ଏମନ୍ତ ରୀତି ଚଳି ଆସିଛି ଯେ, ଯୋଉ କଥାଟିକୁ ଜଣେ ଜାଣି ଅଥଚ ଗୋପନରେ ହରାଉଥାଏ, ପ୍ରକାଶ୍ୟରେ ସର୍ବସାଧାରଣରେ ସେ ସେହି କଥାଟିର ହିଁ ନାମ-ରୂପ-ଗୁଣ ଗାନ କରିବାରେ ବା ତା'ର ମହିମା ପ୍ରଖ୍ୟାପନ କରିବାରେ ନିର୍ଲଜବତ୍ ମାତ୍ରା ଲଘଂନ କରି ବାଚାଳ ହୋଇପଡ଼େ। ଅନ୍ୟ ଭାବରେ କହିଲେ–ଏହି ବ୍ୟବହାରରୁ ହିଁ ପ୍ରତାରଣା, ପ୍ରବଞ୍ଚନା, ଶଠତା, ଛଦ୍ମତାଦି ବୌଦ୍ଧିକ ଦୁର୍ଗୁଣଗୁଡ଼ିକର ଉଦ୍‌ଭବ ଓ ବିକାଶ ଘଟିଥାଏ।

ଆମ ଦେଶରେ ସେମିତି ବର୍ତ୍ତମାନ "ଧର୍ମ" "ଧର୍ମ" ବୋଲି ବହୁତ ହୁରି ପଡ଼ିଛି। ଗ୍ରାମେ ଗ୍ରାମେ, ସହରେ ସହରେ ଧର୍ମଗୁରୁମାନେ ବହୁସଂଖ୍ୟାରେ ଉଦୟ ହେଲେଣି। ପୀର, ପୟଗମ୍ବର, ଫକୀର ମୁଲ୍ଲାମାନେ ଉଦୟ ହେଲେଣି। ଦିବ୍ୟ ପୁରୁଷ ବା ଅବତାରମାନେ ମଧ୍ୟ ଅଜସ୍ର ସଂଖ୍ୟାରେ ଆବିର୍ଭୂତ ହେଲେଣି। ଚାରିଆଡ଼େ ଧର୍ମସଭାମାନ ପ୍ରବଳ ହେଲାଣି। ଦିବ୍ୟବାଣୀ ଓ ଧାର୍ମିକ ପ୍ରବଚନମାନଙ୍କରେ ଦିବାରାତ୍ରୀ ମୁଖରିତ ହେଉଛି ଦେଶରେ ଆକାଶ ବତାଶ। ଶିଳ ଶିଳୁପଟାମାନେ ଲିଙ୍ଗ ପାଲଟି ଗଲେଣି। ରାସ୍ତାର ଟେକା ପଥରମାନ ହୋଇ ଉଠିଲେଣି ଜୀବନ୍ତ ଶାଳଗ୍ରାମ। ଘରେ ଘରେ ବାବା, ମାଆ ଆଉ ଗୁରୁଜନମାନଙ୍କର ଫଟୋ, ବିଭୂତି, ଧୂପ, ଛଡ଼ାମାଳ। ଯତ୍ର ତତ୍ର ଗଢ଼ା ଚାଲିଛି ନୂଆ ନୂଆ ମନ୍ଦିର, ମସ୍‌ଜିଦ୍, ଗୀର୍ଜା। ସାହି ସାହିରେ ସବୁ ମାସରେ ତେତିଶ କୋଟି ଦେବ ଦେବୀଙ୍କ ପୂଜା ଅର୍ଚ୍ଚନାର ଘଣ୍ଟ ଘୋଷ ଓ ମାଇକ୍ ନିର୍ଘୋଷ। ମସ୍‌ଜିଦ୍‌ମାନଙ୍କର ଗମ୍ବୁଜେ ଗମ୍ବୁଜେ ମାଇକ୍ ନିଃସୃତ ଉଚ୍ଚକିତ ଆଜାନ୍ "ଆଲ୍ଲା ହୋ ଆକ୍‌ବର"।

କଥା କଥାକେ ଲୋକଙ୍କ ପାଟିରୁ ବାହାରି ପଡୁଛି–"ଜୟଗୁରୁ" "ଜୟବାବା", "ଜୟ ମା'–ଅଥବା "ଜୟ-ଜଗନ୍ନାଥ"। ଯେ କୌଣସି ସଙ୍କଟ ବା ସମସ୍ୟା ଆଗରେ ପଡ଼ିଗଲେ, ଅତ୍ୟନ୍ତ ବୁଦ୍ଧିମାନ ବୋଲି ଖ୍ୟାତନାମା ଲୋକଙ୍କ ପାଟିରୁ ବି ବାହାରି ପଡୁଛି–"ଯାହା ଈଶ୍ୱରଙ୍କ ଇଚ୍ଛା" ଅଥବା "ଯାହା ଗୁରୁ କରିବେ", ଅଥବା "ମା ଭଗବତୀର ଯେ କୃପା" ଅଥବା "ଯାହା କରିବ କାଳିଆ" ଅଥବା "ଖୋଦାଙ୍କ ଯେ ମର୍ଜି, ଯେ ମେହେର୍ ବାନୀ !!" ଅଥବା "ଯାଃ ଆଲ୍ଲାହା"।

ଆହା ! ତାହାହେଲେ ଆଉ ଚିନ୍ତା କ'ଣ ? ଦେଶରେ ତ ବର୍ତ୍ତମାନ ଭକ୍ତି, ବିଶ୍ୱାସ, ଜ୍ଞାନ, ବୈରାଗ୍ୟାଦି ଧର୍ମ ଭାବର ଝଡ଼ ପ୍ରବଳ ବେଗରେ ବହିଲାଣି। ତା'ହେଲେ ତ ସତ୍ୟଯୁଗ ପ୍ରବଳ ବେଗରେ ମାଡ଼ି ଆସିଲାଣି। ଏଣିକି କଳିଯୁଗ ଲାଙ୍ଗୁଡ଼ ଯାକି ଅତଳ୍ପରେ କୁଆଡ଼େ ପଳାଇବ, ସେଥିପାଇଁ ବାଟ ଖୋଜି ଖୋଜି "ଆଜି ଯା" ଘରେ କାଲି ତା'ଘରେ ବାଉଳାରେ ପଶିଯାଉଛି ସିନା !!

ତା'ହେଲେ ତ ଦେଶରୁ ଚୋରୀ, ରାହାଜାନି, ଲୁଣ୍ଠନ, ଧର୍ଷଣ ପ୍ରଭୃତି କମି ଯାଆନ୍ତାଣି। ବ୍ୟବସାୟୀମାନେ ଖାଣ୍ଟି ଜିନିଷ ଉଚିତ୍ ମୂଲ୍ୟରେ ଠିକ୍ ଓଜନ କରି ବିକନ୍ତେଣି। ରାଜନୀତିବାଲାଏ ନିଜ ସେବା କଥା ନ ଭାବି ଦେଶସେବା କଥା ଭାବନ୍ତେଣି। ଶିକ୍ଷକ ଅଧ୍ୟାପକମାନେ ପାଠ ପଢ଼ାନ୍ତେଣି। ଏମିତି ଏମିତି ଡାକ୍ତର, ଇଞ୍ଜିନିୟର, ଓକିଲଙ୍କଠାରୁ ଆରମ୍ଭ କରି ସରକାରୀ ଚାକିରୀଆ ବା ଚାଷୀ ମୂଲିଆଙ୍କ ପର୍ଯ୍ୟନ୍ତ ସମସ୍ତେ ଠିକ୍ ନୀତିପଥରେ ଚାଲନ୍ତେଣି।

କିନ୍ତୁ ସେ ଦିଗରେ ତ ଓଲଟା କଥା ଦେଖାଯାଉଛି। ଦିନକୁ ଦିନ ବେଶୀ ଅନ୍ଧାର ଘୋଟି ଆସିଲା ଭଳି ଆଶଙ୍କା ହେଉଛି ଏବଂ ବିଚିତ୍ର କଥା–ଆଜି ଯେଉଁମାନେ ସମାଜରେ ମାତ୍ରାତିରିକ୍ତ ଭାବେ ଅନୀତି ଓ ଦୁର୍ନୀତିପରାୟଣ, ଶଠ, ପ୍ରବଞ୍ଚକ ଏବଂ ନାନାଦି ଜଘନ୍ୟ କାର୍ଯ୍ୟକଳାପର କର୍ତ୍ତା, କର୍ମ ଓ କରଣ ବୋଲି ପଦେ ପଦେ ପ୍ରମାଣିତ–ସେମାନଙ୍କ ତୁଣ୍ଡରୁ ପୁଣି ମାତ୍ରାତିରିକ୍ତ ଧାର୍ମିକ ପ୍ରବଚନମାନ ନିଃସୃତ ହଉଛି। ସେଇମାନଙ୍କ ଆଙ୍ଗୁଠି ଓ ବେକଠାରୁ ଆରମ୍ଭ କରି ତାଙ୍କ ଯାନବାହାନ ପର୍ଯ୍ୟନ୍ତ ସର୍ବତ୍ର ଧାର୍ମିକ ମନ୍ତ୍ର, ଚିତ୍ର ଓ ଯନ୍ତ୍ରମାନ ଖଞ୍ଜା ହୋଇଛି।

ତେଣୁ ଆମର ଏ ଦେଶରେ ଓ ଏଇ ଯୁଗରେ ଆଜି ଏତେଦୂର ଧାର୍ମିକ ପ୍ରଦର୍ଶନୀ, ଧାର୍ମିକ ବାଚାଳତା ଓ ଧାର୍ମିକ କାଣ୍ଡ କାରଖାନା ମାନ କଅଣ ବୁଝାଉଛି। କେତେକ ବିଜ୍ଞ ବ୍ୟକ୍ତିଙ୍କ ମତରେ ଏସବୁ ସେଇ ଭିତରେ ଭିତରେ ପ୍ରତି ମୁହୂର୍ତ୍ତରେ ଜାଣି ଜାଣି ଧର୍ମକୁ ଜଳାଞ୍ଜଳି ଦେଇ ଚାଲିଥିବା ମୂଢ଼, ଶଠ, ପ୍ରତାରକମାନଙ୍କର ବାହାରେ ବାହାରେ ଜାଣି ଜାଣି ଧର୍ମ, ଧର୍ମ, ବୋଲି ହୁରି ପକାଇବା ଅବ୍ୟାପାର ବା ପ୍ରବଞ୍ଚନା।

ଏ କ୍ଷେତ୍ରରେ ବରଂ ମୁଁ ମୋର ଜଣେ ପରିଣତବୟସ୍କା ବିଦୂଷୀବାନ୍ଧବୀଙ୍କର ଚମତ୍କାର ଉକ୍ତି ଉଦ୍ଧାର କରିବି। ସେ ଜଣେ ସମାଜରେ ପ୍ରତିଷ୍ଠିତା ମହିଳା, ସେ ଥିଲେ ଆଜୀବନ ବହୁ ପୁରୁଷବନ୍ଧୁ–ବିଳାସିନୀ। ଅଥଚ ତାଙ୍କର ସୁଖମୟ ଦାମ୍ପତ୍ୟ ଜୀବନଟି ମଧ୍ୟ ଅତୁଳନୀୟ। ସେହି ସତ୍ୟବତୀ ଓ ଭାବବତୀ ବିଦୂଷୀ ରମଣୀ ଓ ଯୁଗର 'ସମୀଚୀନ ସତୀତ୍ୱ' ସମ୍ବନ୍ଧେ ସ୍ପଷ୍ଟ ଭାବେ ନିଜର ମତଟି ସମସ୍ତଙ୍କୁ କହୁଥିଲେ। ସେ କହୁଥିଲେ–"ସତୀତ୍ୱ ବ୍ୟାପାରଟି ବଡ଼ ଜଟିଳ। ଅଥଚ ନାରୀ ଓ ପୁରୁଷ ଉଭୟଙ୍କ ପାଇଁ ତାହାହିଁ ଯୁକ୍ତିଯୁକ୍ତ ଆଦର୍ଶ ଜୀବନଚର୍ଯ୍ୟା"। କିନ୍ତୁ ଯେଉଁମାନେ ଗୋଟିଏ ନାରୀ ଓ ଗୋଟିଏ ପୁରୁଷର ଅଜ୍ଞତାପ୍ରସୂତ ଏଇ ନିରୁପାୟ ଛନ୍ଦାଛନ୍ଦି ହୋଇ ଯିବାଟାକୁ କେବଳ "ସତୀତ୍ୱ" ବୋଲି ଅନୁଶାସନ ଦିଅନ୍ତି–ମୁଁ ତାକୁ କେବେ

ମାନିବି ନାହିଁ। ମୋର ନୀତି ଓ ରୁଚି—ଏ ଜୀବନର ମନଲାଖି ପୁରୁଷ ଓ ସ୍ତ୍ରୀଲୋକଟିଏ ଦୁର୍ଲ୍ଲଭ। କିନ୍ତୁ ଯଦି ମୋ ଭାଗ୍ୟକୁ ମନଲାଖି ପୁରୁଷଟିଏ ମିଳିଗଲେ—ତେବେ ସେ ମୋ ପକ୍ଷରେ ଯେ କୌଣସି ନୀତିଧର୍ମ ନିର୍ବିଶେଷରେ ବରଣୀୟ ଓ ଆଦରଣୀୟ। କିନ୍ତୁ ଏହା ବୋଲି ମୁଁ ମୋର ପୁରୁଷବନ୍ଧୁମାନଙ୍କୁ ଭୁଲାଇବା ପାଇଁ ମୋ ସ୍ୱାମୀଙ୍କ ଗୁରୁତ୍ୱକୁ ଅସ୍ୱୀକାର କରେ ନାହିଁ—କି ସ୍ୱାମୀଙ୍କୁ ଭୁଲାଇବା ପାଇଁ ପୁରୁଷବନ୍ଧୁମାନଙ୍କ ଗୁରୁତ୍ୱକୁ ଖର୍ବ କରେ ନାହିଁ।''....

ଏ ଯୁଗର ଧର୍ମପ୍ରବଣ ନରନାରୀ ଉପରୋକ୍ତ କଥାଟିରୁ ଯଦି କିଛି ସତ୍ୟ ଆବିଷ୍କାର କରି ପାରନ୍ତେ—ତା'ହେଲେ ଶତ ଶତ ଦୁର୍ବିପାକ ଭିତରେ ବି ଆମେ ଅନ୍ତତଃ କିଛି ପରିମାଣରେ 'ଧର୍ମ' ଓ 'ସତୀତ୍ୱ' ସତକୁ ସତ ରକ୍ଷା କରି ପାରନ୍ତେ। କାରଣ ଧର୍ମ ଓ ସତୀତ୍ୱକୁ ଭଣ୍ଡତା ଭିତରେ କେବେ ହେଲେ ବି ରକ୍ଷା କରାଯାଇ ପାରିବ ନାହିଁ।

❋❋

# ରାଜଧାନୀରେ ଭକ୍ତ ଉପଦ୍ରବ୍ୟ

ରାଜଧାନୀ ଏମନ୍ତ ଏକ ସ୍ଥାନ, ଯୋଉଠି କିଛି ନା କିଛି ଉପଦ୍ରବ ଲାଗି ରହିଥାଏ। ଅନ୍ୟ ପ୍ରକାରେ କହିଲେ—ସବୁଠାରୁ ଉପଦ୍ରୁତ ଅଞ୍ଚଳଟିକୁ ହିଁ ଜନପଦବାସୀମାନେ ରାଜଧାନୀ ବୋଲି ଆଖ୍ୟା ଦେଇଥାନ୍ତି। ଚୋର, ଗୁଣ୍ଡା, ପକେଟ୍‌ମାର୍, ଧର୍ଷଣକାରୀ, କଳାବଜାରୀ ଲାଞ୍ଚଖୋର ସରକାରୀ କର୍ମଚାରୀ, ଧର୍ମଘଟକାରୀ, ଚାନ୍ଦାଖୋର୍ ଓ ଚାହାଘରିଆମାନଙ୍କ ଉପଦ୍ରବ ପ୍ରଭୃତିଠାରୁ ଆରମ୍ଭ କରି ମଶା, ମାଛି, ବୁଲା ଗୋରୁଗାଈ, ମାରଣା ମଇଁଷି, ପାଗଳା କୁକୁର, ବିଦ୍ୟୁତ୍ ବାଲା ଓ ପାଣିବାଲାଙ୍କ ଉପଦ୍ରବ୍ୟ ପର୍ଯ୍ୟନ୍ତ ବିଭିନ୍ନ ଉପଦ୍ରବ୍ୟ ଆମ ରାଜଧାନୀମାନଙ୍କରେ ଆଠକାଳୀ ବାରମାସୀ ଲାଗି ରହିଛି ଏବଂ ଏସବୁ ଆମ ରାଜଧାନୀବାଲାଙ୍କର ଦେହସୁହା ହୋଇଗଲାଣି ଏବଂ ଆମେ ଆଉ ଏସବୁ ଉପଦ୍ରବ୍ୟଗୁଡ଼ାକୁ କେୟାର୍ ବା ଗ୍ରାହ୍ୟ କରୁନାହୁଁ ଏଇସବୁ କାରଣରୁ ଯେ, ରାଜଧାନୀରେ ରହିବାର ଗୌରବ ଅର୍ଜନ କରିଛୁ ଯେତେବେଳେ, ଆମକୁ ଏଇସବୁ ଉପଦ୍ରବମାନ ସହ୍ୟ କରିବା ସୂତ୍ରରେ ସେଥିପାଇଁ ମୂଲ୍ୟ ଦେବାକୁ ପଡ଼ିବ।

କିନ୍ତୁ ଏବେ କିଛି ବର୍ଷ ଧରି ରାଜଧାନୀରେ ନୂଆ ଏକ ଉପଦ୍ରବ ଆରମ୍ଭ ହୋଇ କ୍ରମେ ଏହା ଅସମ୍ଭାଳ ଅବସ୍ଥାକୁ ଆସିଗଲାଣି ବୋଲି ଆଶଙ୍କା ହୋଇଛି। ବ୍ୟାପାରଟି ହେଲା—ରାଜଧାନୀରେ ଏବେ ଭକ୍ତମାନଙ୍କ ସଂଖ୍ୟା ବା ଧାର୍ମିକମାନଙ୍କ ସଂଖ୍ୟା ଆଶାତୀତ ଭାବେ ବଢ଼ିଚାଲିଛି ଏବଂ ଭକ୍ତିର ବନ୍ୟା ଏପରି ଉଦ୍‌କୂଳ ହେଲାଣି ଯେ, ସେଥିରେ ସମସ୍ତଙ୍କର କାଣ୍ଡାକାଣ୍ଡଜ୍ଞାନ କୁଆଡ଼େ ଭାସିଯାଇ ସମୁଦ୍ରରେ ପଡ଼ି ସାରିଲେଣି।

କିଛି ବର୍ଷ ହେଲା ରାଜଧାନୀର ଯୁବଗୋଷ୍ଠୀ ଗଣେଶ ଓ ସରସ୍ୱତୀ ପୂଜା ଖୁବ୍ ମାଇକ୍ ନିଃସୃତ ସିନେମା ସଙ୍ଗୀତ ଦ୍ୱାରା ଖୁବ୍ ଧୂମ୍‌ଧାମ୍‌ରେ କରି ଆସୁଛନ୍ତି ଏବଂ ଏଇସବୁ ପୂଜାର ଅତ୍ୟାଚାର ଆମେ ରାଜଧାନୀଆମାନେ ଖୁବ୍ ନୀରବରେ ସହ୍ୟ କରି ଆସିଛୁ। ମାତ୍ର ଏବେ ଆଉ କେବଳ ଗଣେଶ ସରସ୍ୱତୀ ଉପଦ୍ରବ୍ୟ କରୁନାହାନ୍ତି; ଦୁର୍ଗା, ଲକ୍ଷ୍ମୀ, ବିଶ୍ୱକର୍ମା ଏବଂ କଟକରୁ ଖୁଦୁରୁକୁଣୀ ଦେବୀ ମଧ ରାଜଧାନୀରେ ନିଜ ନିଜ ପାଇଁ ଯଥେଷ୍ଟ ସଂଖ୍ୟକ ଭକ୍ତ ଯୋଗାଡ଼ କରି ନେଇ ଉପଦ୍ରବ୍ୟ ଆରମ୍ଭ କରି ଦେଲେଣି। ଏଇସବୁ ପୂଜାରେ ଅହୋରାତ୍ର ମାଇକ୍ ଯୋଗେ ସିନେମା ସଙ୍ଗୀତ ସହିତ, ଉଚ୍ଚକିତ ସ୍ୱରରେ ମଧ୍ୟେ ମଧ୍ୟେ ଜଗନ୍ନାଥ ଭଜନ ଚାଲିଥାଏ।

ରେକର୍ଡ଼ ଫଟା ହେଉ–ବା ବା ପିନ୍ ମୁଣ୍ଡା ହେଉ–ବା ଟେପ୍ ଲୋଚାକୋଚା ହୋଇଯାଉ– ଏବଂ ତାହା ବିକୃତ ସ୍ୱରରେ ଏକ ବୀଭତ୍ସ ରବ ପ୍ରାୟ ଶୁଭୁଥାଉ– ସେଥିରେ ଭକ୍ତମାନଙ୍କର କିଛି ଯାଏ ଆସେନା।

ଏବେ ପୁଣି ଆଉ ଗୋଟିଏ ଧରଣର କାଣ୍ଡଜ୍ଞାନ ବିବର୍ଜିତ ଭକ୍ତିକାଣ୍ଡ ରାଜଧାନୀରେ ଆରମ୍ଭ ହୋଇ ଗଲାଣି। ବର୍ତ୍ତମାନ ରାଜଧାନୀ ସାରା ତ୍ରିନାଥ ମନ୍ଦିରଠାରୁ ହନୁମାନ ମନ୍ଦିର ପର୍ଯ୍ୟନ୍ତ ସାନ ସାନ ମନ୍ଦିରରେ ଭରିଗଲାଣି ଏବଂ ଏଇସବୁ ମନ୍ଦିର ବେଢ଼ାରେ ବର୍ଷସାରା ଦିନରାତି ମାଇକ୍ ଯୋଗେ ଭଜନକୀର୍ତ୍ତନ ଅଥବା ଧର୍ମସଭା ବକ୍ତୃତାବାଜି ଚାଲିଛି। ବେଳେ ବେଳେ ମାଇକ୍ ଆଗରେ ଝାଞ୍ଜ–ମୃଦଙ୍ଗ ବଜାଇ ବିକୃତ କଣ୍ଠରେ ଭକ୍ତମାନେ ଅଷ୍ଟପ୍ରହରୀ ବା ଚବିଶି ପ୍ରହରୀ ନାମ ସଂକୀର୍ତ୍ତନ କରି ଚାଲିଛନ୍ତି। ଫଳରେ ସେହିସବୁ ବିକୃତ, ବୀଭତ୍ସ ଓ ଦୁଃସହ ଶବ୍ଦ କୋଳାହଳରେ ଆମମାନଙ୍କ ଭଳି ଭକ୍ତିହୀନ ନିରୀହ ଭଦ୍ରଲୋକମାନଙ୍କ ଅବସ୍ଥା ବାରଣ୍ଡା ଦି'କଡ଼ା ହେଲାଣି। ଆମର ବିନା ଦୋଷରେ ବଳପୂର୍ବା ଭକ୍ତମାନେ ଆମର ସୁକୁମାର କର୍ଣ୍ଣଦ୍ୱାରରେ ଜବରଦସ୍ତି ଭକ୍ତିଶଳାକାମାନ ପୂରାଇ ଲାଗିଛନ୍ତି– ଆମ ଇଚ୍ଛା ଅନିଚ୍ଛାକୁ ଖାତିରନକରି– ଏପରି କି ଆମ ଯାଚନା–ଯନ୍ତ୍ରଣାକୁ ଖାତିର୍ ନ କରି, ମଧ୍ୟେ ମଧ୍ୟେ ପୁଣି ପର୍ବପର୍ବାଣିରେ, ଏଇ ଯେମିତି କାର୍ତ୍ତିକ ମାସର ପଞ୍ଚୁକ ପାଞ୍ଚଦିନ ବା ଭାଦ୍ରବ ମାସର ଝୁଲଣ ପାଞ୍ଚଦିନ– ଏହିପରି ଦିନମାନଙ୍କରେ ପୁଣି ରାଜଧାନୀର ଭକ୍ତମାନେ ବେଶୀ ମାତି ଉଠନ୍ତି। ସେଇ କେତୋଟି ଦିନ ଆଉ ରାତି– ମନ୍ଦିର ସନ୍ନିକଟ ଘରମାନଙ୍କରେ ଆଉ କେହି ଶାନ୍ତିରେ ବସି ପାରିବେନି–କି କିଛି କାମ କରି ପାରିବେନି।

ଥରେ କେତେକ ଉତ୍କଟ ଭକ୍ତଙ୍କୁ ବିନୀତ ଭାବେ ଅନୁରୋଧ କରାଗଲା– "ସମ୍ମାନନୀୟ ଭକ୍ତପୁଙ୍ଗବଗଣ! ଆପଣମାନେ ମାଇକ ଯୋଗେ ଏତେ ଉଚ୍ଚସ୍ୱରରେ ଫଟା ଭଜନ ରେକର୍ଡ଼ମାନ ବଜାଇ ଯୋଉ ସବୁ ନାମ–ସଂକୀର୍ତ୍ତନ ବା ଭଜନାଦି ପ୍ରଚାର କରୁଛନ୍ତି– ତଦ୍ୱାରା ଆପଣମାନଙ୍କର ଓ ଆପଣଙ୍କ ପଡ଼ୋଶୀମାନଙ୍କର କି ଲାଭକ୍ଷତି ହେଉଛି– ତାହା କେବେ ବିଚାର କରିଛନ୍ତି କି?

କାଣ୍ଡଜ୍ଞାନହୀନ ଜଣେ ଉତ୍କଟ ଭକ୍ତ ଗମ୍ଭୀର ବଚନରେ ଜବାବ ଦେଲେ– "କଳିଯୁଗରେ ନାମ–ଭଜନ ଏକମାତ୍ର ପାପ ନାଶକ ମହୌଷଧ। ଆମେ ମାଇକ୍‌ରେ ନାମଭଜନ ଉଚ୍ଚସ୍ୱରରେ ପ୍ରଚାର କରିବା ଦ୍ୱାରା ପ୍ରତିଦିନ ହଜାର ହଜାର ପାପୀଙ୍କ କାନରେ ପବିତ୍ର ନାମାମୃତ ପଡୁଛି। ଫଳରେ ସେହି ପାପୀମାନେ ଛାଏଁ ଛାଏଁ ପାପମୁକ୍ତ ହୋଇ ଯାଉଛନ୍ତି।"

ଏଭଳି ଦୁର୍ବୁଦ୍ଧି, ମୂର୍ଖ ଓ ତାମସିକ ଅହଂକାରୀ ଭକ୍ତମାନଙ୍କୁ କିଏ କେମିତି ବୁଝାଇ ପାରିବ ଯେ, ସେମାନେ ଆମ ସମସ୍ତଙ୍କୁ ଯେତିକି ପାପୀ ବୋଲି ଭାବୁଛନ୍ତି– ଆମେମାନେ ପ୍ରକୃତରେ ସେତିକି ପାପୀ ନୋହୁଁ। କାରଣ, ଆମ ଭଳି ଭକ୍ତି ଭାବହୀନ

ସାଧାରଣ ଭଦ୍ରଲୋକମାନେ ଏମିତି କିଛି ପାପକାର୍ଯ୍ୟ କରିବାକୁ ଅସମର୍ଥ, ଯୋଉ ମହତ୍ ପାପରୁ କ୍ଷାଳନ ପାଇଁ ଆମ୍ଭମାନଙ୍କୁ ଅହୋରାତ୍ର ପାଞ୍ଚଦିନ କାଳ ଗୋଟାଏ ବୀଭତ୍ସ ମାଇକ୍ ମୁହଁରୁ ଫଟା ରେକର୍ଡ଼-ନିଃସୃତ ରାମ ବା କୃଷ୍ଣ ନାମ ଅବଶ୍ୟ ଶ୍ରବଣ କରିବାକୁ ପଡ଼ିବ। କେବଳ ପାପ ନୁହେଁ– ଆମ ଭଳି ନିରୀହ ଭଦ୍ରଲୋକମାନେ ସାମାନ୍ୟ ପୁଣ୍ୟ କର୍ମଟିଏ ମଧ୍ୟ କରିବାକୁ ସମର୍ଥ ନୁହନ୍ତି। ପୁଣ୍ୟ ହେଉ କି ପାପ ହେଉ– କିଛି ଗୋଟାଏ ଅସାଧାରଣ କରିବାକୁ ହେଲେ, ଯଥେଷ୍ଟ, ବୁଦ୍ଧି, ଶକ୍ତି, ସାହସ ଓ ସାମର୍ଥ୍ୟ ଥିବା ଆବଶ୍ୟକ। ତା'ଛଡ଼ା, ସତକୁ ସତ ଯେଉଁ କରିତ୍‌କର୍ମାମାନେ ପାପକର୍ମରେ ନିଜର ଶକ୍ତି ସାମର୍ଥ୍ୟ ପ୍ରଦର୍ଶନ କରିବାର ସୁଯୋଗ ପାଇଛନ୍ତି– ସେମାନଙ୍କ କାନରେ ରାମ ବା କୃଷ୍ଣଙ୍କ ନାମାମୃତ ଢାଳିବା ବୃଥା। କାରଣ ସେଇମାନଙ୍କ ପୂର୍ବପୁରୁଷମାନେ ହିଁ ରାମଙ୍କୁ ବଣକୁ ପଠାଇଥିଲେ– ସୀତା ଚୋରି କରିଥିଲେ– ଓ କୃଷ୍ଣଙ୍କୁ ପିଲାକାଳରୁ ମାରି ଦେବାଲାଗି ପୁତନା, ବକା, ଅଘା ଓ ଶକଟାସୁରକୁ ପେଷିଥିଲେ।

ତେଣୁ ଆମର ଅଭିଯୋଗ ହେଲା– ଆମ ଭଳି ନିରୀହ ନିଷ୍ପାପ ଓ ଭକ୍ତିହୀନ ଭଦ୍ରଲୋକମାନଙ୍କୁ ଜବରଦସ୍ତି ଭକ୍ତିର ଅମୃତ ପିଆଇବାକୁ ଲାଗି ପଡ଼ିଛନ୍ତି ଯୋଉ ଭକ୍ତମାନେ, ସେମାନେ ଆମ ମତରେ ଆମ ଉପରେ ଉପଦ୍ରବ କରୁଛନ୍ତି ଏବଂ ସେ ଉପଦ୍ରବ ରାଜଧାନୀରେ ଗୁଣ୍ଡା, ଖଣ୍ଡ, ମଶା, ମାଛି ଓ ବୁଲା ଗୋରୁଗାଈ ବା କୁକୁରଙ୍କ ଉପଦ୍ରବଠାରୁ ଅଧିକ ଉତ୍କଟ, ଅଧିକ ଯାତନାଦାୟକ ଓ ଭୟଙ୍କର ବୋଲି ଆମର ଆଶଙ୍କା ହେଲାଣି।

ଆଚ୍ଛା! ରାଜଧାନୀରେ ଦିନକୁ ଦିନ ଭକ୍ତମାନଙ୍କ ସଂଖ୍ୟା ଏମିତି ବିପଜ୍ଜନକ ଭାବେ ବୃଦ୍ଧି ପାଇବାର କାରଣ କ'ଣ? ଗାଁମାନଙ୍କରେ ତ ଆମେ ବର୍ତ୍ତମାନ ଓଲଟା ଦେଖୁଛୁ। ଆଜିକାଲି ଗ୍ରାମବାସୀମାନେ ଆଉ ଏସବୁ ଭଜନ କୀର୍ତ୍ତନ ଫିର୍ତ୍ତନରେ ବେଶୀ ମାତୁନାହାନ୍ତି ତ।

ହଁ– ରାଜଧାନୀବାଲାଙ୍କର ବା ଆଉ କି ଚିନ୍ତା? କି ଦକ? ଜୀବନ ସଂଗ୍ରାମ ଏଠି ସେତେ ଗୁରୁତର ନୁହେଁ। ମାସକୁ ମାସ ଦରମା ମିଳିଯାଏ। କାମ ବେଶୀ ନାହିଁ, କି ଦାୟିତ୍ୱ ବେଶୀ ନାହିଁ। ତେଣୁ ଆମ ରାଜଧାନିଆଙ୍କର ଆଉ କିଛି ବଳୁ ନ ବଳୁ, 'ଭକ୍ତି' ଭାବଟା ବଢ଼ି ଚାଲିଛି। ଫଳରେ ଭକ୍ତସଂଖ୍ୟା ବୃଦ୍ଧି ପାଇଛି ଓ ସେମାନଙ୍କ ଉପଦ୍ରବରେ ଆମ୍ଭେମାନେ ଅତିଷ୍ଠ ହେଲୁଣି। ତେବେ "ଅତିଭକ୍ତି ଯେ ଚୋରର ଲକ୍ଷଣ"– ଏକଥା ବି ଖୋଦ୍ ରାଜଧାନିଆ ଭକ୍ତଙ୍କୁ କିଏ କହି ପାରିବ?

ମାତ୍ର କିଏ ଆମକୁ ରକ୍ଷା କରିବ? ଧର୍ମ ନିରପେକ୍ଷ ରାଷ୍ଟ୍ରରେ ସରକାର ବା ଏଥିରେ କି ପ୍ରତିକାର କରିପାରିବେ?



# ଜଗନ୍ନାଥଙ୍କୁ ଲଜ୍ଜା ଦିଅନା

ସେଦିନ, ପୁରୀ ବନ୍ଦ ହେଲା ବୋଲି ଶୁଣାଗଲା। ପୁଣି ଆଉ ଦିନେ ବନ୍ଦ ହେଲା କଟକ। କାରଣ, ପଞ୍ଜାବରେ କେତେକ ଅଜ୍ଞାନ ଉନ୍ମତ୍ତ ଗୁଣ୍ଡା ଶ୍ରେଣୀର ଲୋକ ସେଠି ଜଗନ୍ନାଥଙ୍କ ମୂର୍ତ୍ତି ପୋଡ଼ିଦେଲେ। ତା'ରି ପ୍ରତିକ୍ରିୟା ଦେଖାଦେଲା ଏଠି ଓଡ଼ିଶାରେ। ଜଗନ୍ନାଥ ଓଡ଼ିଆ ଜାତିର ଇଷ୍ଟଦେବତା— ପ୍ରାଣର ଠାକୁର। ଓଡ଼ିଆଙ୍କ ଜାତୀୟ ଅସ୍ମିତା ସେଇ ଜଗନ୍ନାଥଙ୍କ ଭାବ ବା ଚେତନାରେ ବିକାଶ ପାଇ ଆସିଛି— ସମୃଦ୍ଧ ହୋଇ ଆସିଛି। ସାମ୍ୟ, ମୈତ୍ରୀ, ଉଦାରତା, ଅଖଣ୍ଡତା, ଆତିଥେୟତା, ସହିଷ୍ଣୁତା, ପ୍ରେମପରାୟଣତା, ଗତି, ମୁକ୍ତି, ଭକ୍ତି ଭୁକ୍ତି, ପ୍ରଭୃତି ଦିବ୍ୟଭାବ ହୋଇଛି। ଜଗନ୍ନାଥ ଅନ୍ୟ ଦେବଦେବୀଙ୍କ ଭଳି ଗୋଟିଏ ମୂର୍ତ୍ତିମାତ୍ର ନୁହନ୍ତି। ତା'ଛଡ଼ା, ଏଠି ତାଙ୍କର ମୂର୍ତ୍ତି କେବଳ ଏକ ରୂପକ ବା ପ୍ରତୀକମାତ୍ର। ଏ ମୂର୍ତ୍ତି ଧାତୁ କି ପାଷାଣରେ ନୁହଁ। କାଠର ମୂର୍ତ୍ତି। ଏ ମୂର୍ତ୍ତିକୁ ପୁଣି କେତେ ବର୍ଷ ଅନ୍ତରରେ ବିସର୍ଜନ ଦିଆଯାଏ। ନୂଆ କଳେବର ନୂଆ କାଠରେ ତିଆରି ହୁଏ। ସେଇ ମୂର୍ତ୍ତି ଭିତରେ ରହିଛନ୍ତି ଅସଲ ଜଗନ୍ନାଥ— ପରମ ରହସ୍ୟମୟ ପଦାର୍ଥ। ବ୍ରହ୍ମ ପଦାର୍ଥ। ମୂର୍ତ୍ତି ସିନା ବଦଳେ, ସେ ବଦଳନ୍ତି ନାହିଁ। ନିତ୍ୟ ନୂତନ, ଚିରନ୍ତନ। ସେହି ପରମସଂଗୁପ୍ତ ବ୍ରହ୍ମ ପଦାର୍ଥଟିକୁ କେହି ବୁଦ୍ଧଙ୍କ ଦନ୍ତ ବୋଲି ତର୍କଣା କରୁ— ଅଥବା ଶ୍ରୀକୃଷ୍ଣଙ୍କ ଅର୍ଦ୍ଧଦଗ୍ଧ ଅସ୍ଥି ବୋଲି ଭାବନା କରୁ— ତାହା କିନ୍ତୁ ଶାଶ୍ୱତ ଭାବ ଦ୍ୟୋତକ।

ଜଗନ୍ନାଥଙ୍କ ମୂର୍ତ୍ତିର ହଜାର ବର୍ଷର ଇତିହାସରେ କେତେବାର ଦୁର୍ବୃତ୍ତମାନେ, ପିଶାଚମାନେ, ସେ ମୂର୍ତ୍ତିକୁ ଦେଉଳରୁ ଉଠାଇ ନେଇଛନ୍ତି। ଏପରିକି ଶୁଣାଅଛି ଯେ ଅତ୍ୟାଚାରୀ ମ୍ଳେଚ୍ଛମାନେ ତାଙ୍କୁ ଚମଦଉଡ଼ିରେ ବାନ୍ଧି ବଡ଼ଦାଣ୍ଡରେ ଘୋଷାଡ଼ି ଘୋଷାଡ଼ି ନେଇଛନ୍ତି। କଥିତ ଅଛି— ଜଣେ ଦୁର୍ବୃତ୍ତ ତାଙ୍କ ମୂର୍ତ୍ତିକୁ ନେଇ ଗଙ୍ଗାକୂଳରେ ପୋଡ଼ି ଦେଇଥିଲା। ଜଗନ୍ନାଥଙ୍କ ମୂର୍ତ୍ତି ପରେ ଏମିତି ବହୁ ବିପତ୍ତି ପଡ଼ିଛି। ବହୁ ଅପମାନ ପଡ଼ିଛି। ମାତ୍ର ଅସଲ ଜଗନ୍ନାଥଙ୍କର କିଛି ହୋଇନାହିଁ। ସେ ଯେମିତି ଥିଲେ, ସେମିତି ଅଛନ୍ତି, ସେମିତି ରହିବେ କାଳ କାଳକୁ। କେହି ତାଙ୍କର କିଛି କରିପାରିବେ ନାହିଁ। ପବନ ତାଙ୍କୁ ଶୁଖାଇ ପାରିବ ନାହିଁ, ଜଳ ତାଙ୍କୁ ବୁଡ଼ାଇ ପାରିବ ନାହିଁ,

ଅଗ୍ନି ତାଙ୍କୁ ପୋଡ଼ି ପାରିବ ନାହିଁ। ସେ ଅନାଦି, ଅନନ୍ତ ଭୂମା ଚିରନ୍ତନ ବ୍ରହ୍ମ ବା ପରମାତ୍ମା ପୁରୁଷୋତ୍ତମଙ୍କ ଚୈତନାରେ ଧୃତ ଓ ଧାରକ।

ତା'ଛଡ଼ା ସ୍କନ୍ଦ ପୁରାଣରେ ଜଗନ୍ନାଥେ ସ୍ୱୟଂ କ'ଣ କହିଛନ୍ତି ଜାଣନ୍ତି? କହିଛନ୍ତି– "ଏଠାରେ ମୋର ମନ୍ଦିର ରହୁ ବା ନରହୁ– ମୋର ମୂର୍ତ୍ତି ଥାଉ ବା ନଥାଉ– ମତେ ଛପନ ପଉଟି ଭୋଗ କିଏ ଦେଉ ବା ନଦେଉ– ମୁଁ ଗୋଟିଏ ମୁହୂର୍ତ୍ତ ପାଇଁ ସୁଦ୍ଧା ନୀଳାଚଳ ଛାଡ଼ି କୁଆଡ଼େ ଯିବି ନାହିଁ– ଯିବି ନାଇଁ– ଯିବି ନାଇଁ।"

ଜଗନ୍ନାଥଙ୍କୁ କ'ଣ କରି ପାଇଛ କି ତୁମେ? ସେ ଆମର– ଖାଣ୍ଟି ଆମର– ଆମ ଓଡ଼ିଆଙ୍କର। ସେମିତି ମଧ୍ୟ ସେ ଜଗତର– ଜଗତର ନାଥ ସିଏ। କିନ୍ତୁ ଆମ ଓଡ଼ିଆଙ୍କର ପ୍ରାଣର ବନ୍ଧୁ, ରକ୍ତର ସମ୍ପର୍କ– ଆମ କୁଟୁମ୍ବୀ ଠାକୁର। ଭାରତ ବର୍ଷର ସବୁ ସାଧୁ ସନ୍ଥ ଜଗନ୍ନାଥଙ୍କ ପାଖକୁ ଆସିଛନ୍ତି। ଗରୁଡ଼ ଖୁମ୍ବ କୁଣ୍ଢାଇଛନ୍ତି। ଛଡ଼ା ତୁଳସୀ, ଛଡ଼ା ଚନ୍ଦନ ପାଇଛନ୍ତି। ଅଭଡ଼ା, ଡାଲି, ବେସର, ମହୁର ସେବା କରିଛନ୍ତି। ମଗଜ ଲଡ୍ଡୁ, ଆରିଷା, ପୁଳି ଖାଇଛନ୍ତି। କିଏ ଆସି ନାହାଁନ୍ତି କି? କୋଉଠୁ ଆସି ନାହାନ୍ତି କି? ଶଙ୍କର, ରାମାନୁଜ, ଚୈତନ୍ୟଙ୍କ ଠାରୁ ଆରମ୍ଭ କରି କବିର ଆଉ ନାନକଙ୍କ ଯାଏ– ଉତ୍ତରରୁ ଦକ୍ଷିଣ ଯାଏ– ପୂର୍ବରୁ ପଶ୍ଚିମ ଯାଏ। ଏଠା ନରେନ୍ଦ୍ର, ମହୋଦଧିରେ କିଏ ଭଲା ସ୍ନାନ ନ କରିଛନ୍ତି? ବଡ଼ ଦାଣ୍ଡରେ ଠିଆହୋଇ ନୀଳଚକ୍ରକୁ ଚାହିଁ ଚାହିଁ କିଏ ଭଲା ନିଉଛାଳି ନ ହୋଇଛନ୍ତି? ଜଗନ୍ନାଥଙ୍କ ପାଖରେ ବହୁ ବିଭେଦ ଲୋପ ପାଇଛି। ସବୁ ସଂଶୟ ପାଲଟିଛି। ସବୁ ଅମେଳରେ ମେଳ ସିଏ– ସବୁ "ନେତି"ର "ଇତି" ସିଏ– ସବୁ ଟଳମଟଳରେ ସେଇ ଏକା ଧ୍ରୁବ, ସନାତନ ଜଗନ୍ନାଥ।

ଜଗନ୍ନାଥଙ୍କୁ ସମସ୍ତେ ଆଦରିଛନ୍ତି– ଜଗନ୍ନାଥେ ବି ସମସ୍ତଙ୍କୁ ଆଦରିଛନ୍ତି। ସେଥିପାଇଁ ଓଡ଼ିଆ ଜାତି ମଧ୍ୟ ସମସ୍ତଙ୍କୁ ଆପଣାର ବୋଲି ଭାବି ଆସିଛି କାଳ କାଳରୁ। ଜଗନ୍ନାଥଙ୍କର ଏ ଭୂଇଁରେ ବଙ୍ଗାଳୀ, ତେଲୁଗୁ, ଗୁଜରାଟୀ, ମରହଟ୍ଟୀ, ବିହାରୀ, ପଞ୍ଜାବୀ ସମସ୍ତେ ଭାଇ ପଣରେ ଏକାଠି ରହିଛନ୍ତି। ଶରଣପଞ୍ଜର ଜଗନ୍ନାଥେ ସମସ୍ତଙ୍କୁ ସମାନ ଭାବେ କୃପା ଦୃଷ୍ଟିରେ ଚାହିଁଛନ୍ତି। ସେହି ପତିତପାବନ ପୁରୁଷୋତ୍ତମଙ୍କ କୃପାରୁ ଏଇ ଓଡ଼ିଆ ଭୂଇଁରେ ଜାତିଭେଦ ନାହିଁ– ଭାଷା ଭେଦ ନାହିଁ– ଧର୍ମଭେଦ ନାହିଁ। ଏଠି ସବୁ ମତର, ସବୁ ନୀତିର ଓ ସବୁ ରୁଚିର ସମନ୍ୱୟ ଘଟିଛି। ଶରଣପଞ୍ଜର ଜଗନ୍ନାଥଙ୍କ ବିଶାଳ ପ୍ରଲମ୍ବ ଭୁଜ ତଳେ ସମସ୍ତେ ନିରାପଦରେ ଏ ଭୂଇଁରେ ଦିନ କାଟୁଛନ୍ତି।

ସେଥିପାଇଁ ଆଜି ଜଗନ୍ନାଥଙ୍କ ଚେତନା ଭାରତବର୍ଷର ସବୁ ପ୍ରଦେଶକୁ ବ୍ୟାପିଗଲାଣି। ଭାରତକୁ ଅତିକ୍ରମ କରି ପାଶ୍ଚାତ୍ୟ ଦେଶମାନଙ୍କୁ ବି ପ୍ରସରି ଗଲାଣି। ଆଜି ଜଗନ୍ନାଥେ କେବଳ ସର୍ବଭାରତୀୟ ଦେବତା ନୁହନ୍ତି— ଆନ୍ତର୍ଜାତିକ ଦେବତା। ତାଙ୍କ ମହିମା ମଧ୍ୟ ଦିନକୁ ଦିନ ବଢୁଛି।

ଆଜି ଏବେ ପଞ୍ଜାବରେ କେତେକ ଉନ୍ମତ୍ତ ଦୁର୍ବୃତ୍ତ ତାଙ୍କ ମୂର୍ତ୍ତିକି ପୋଡ଼ିଦେଲେ। ତଦ୍ଦ୍ୱାରା ଜଗନ୍ନାଥଙ୍କର କ'ଣ ହୋଇଯିବ? ଦାରୁମୂର୍ତ୍ତି ପୁଣି ଗଢ଼ା ହୋଇଯିବ। ଜଗନ୍ନାଥଙ୍କ ଚେତନା ତ ଆଗାମୀ କାଳର ବିଶ୍ୱଚେତନା। ସେ ଚେତନାକୁ କିଏ ଲୋପକରି ପାରିବକି? ଏଠି ଆମ ଓଡ଼ିଶାରେ ଯୋଉ ଶିଖ୍ ଭାଇମାନେ ଅଛନ୍ତି— ସେମାନେ ଏକାଠି ବସି ଏ କୁକାର୍ଯ୍ୟର ଘୋର ନିନ୍ଦା କରିଛନ୍ତି— ଘୋର ଦୁଃଖ ପ୍ରକାଶ କରିଛନ୍ତି। ସବୁ ପଞ୍ଜାବୀ ଭାଇମାନେ, ଶିଖ୍‌ଭାଇମାନେ ଏଥିପାଇଁ ଘୋର ଉଦ୍‌ବେଗ ପ୍ରକାଶ କରିଛନ୍ତି।

ଏଇ ପରିସ୍ଥିତିରେ ଆମର ଓଡ଼ିଆ ଭାଇଭଉଣୀମାନଙ୍କୁ ବିନୀତ ନିବେଦନ ସେମାନେ ଏଥିରେ ବିଚଳିତ ହୁଅନ୍ତୁ ନାହିଁ— କୌଣସି ହିଂସ୍ର ପ୍ରତିକ୍ରିୟା ଦେଖାନ୍ତୁ ନାହିଁ। ଆଜି ଭାରତ ବର୍ଷରେ ବିଭେଦକାରୀ ଶକ୍ତିମାନେ ମୁଣ୍ଡ ଟେକିଛନ୍ତି— ବିଦେଶୀ ଶତ୍ରୁମାନେ ଭାରତର ଶିରୀ ଦେଖି ନପାରି ଭାରତକୁ ଖଣ୍ଡ ଖଣ୍ଡ କରିଦେବାକୁ ଚକ୍ରାନ୍ତ କରିଛନ୍ତି। ସାରା ବିଶ୍ୱରେ ଭାରତବର୍ଷ ହଠାତ୍ ଏ ବଡ଼ଶକ୍ତି ହୋଇ ଉଠିବାର ଅନ୍ୟମାନେ ସହିପାରୁ ନାହାନ୍ତି। ଆମ ଦେଶର କେତେକ ଦୁର୍ବୃତ୍ତ ଅଜ୍ଞାନ ସେମାନଙ୍କ ହାତ ବାରିସି ହୋଇ ଧର୍ମ, ଭାଷା, ପ୍ରାଦେଶିକତା, ସାମ୍ପ୍ରଦାୟିକତାଦିର ଦୁହା ଉଠାଇ ନାନା ଗଣ୍ଡଗୋଳ ସୃଷ୍ଟି କରୁଛନ୍ତି। ସାରା ପୃଥିବୀରେ ମଧ୍ୟ ବଡ଼ ବଡ଼ ରାଷ୍ଟ୍ରମାନେ ଯୁଦ୍ଧପାଇଁ ପାଗଳ ଭଳି ସଜବାଜ ହେଉଛନ୍ତି। ମାରଣାସ୍ତ୍ରମାନ ବିଶ୍ୱକୁ ଧ୍ୱଂସ କରି ଦେବା ପାଇଁ ଚାରିଆଡ଼େ ବିଛେଇ ହୋଇଗଲାଣି। ଏକ ପ୍ରଚଣ୍ଡ ବିଭେଦକାରୀ ଧ୍ୱଂସକାରୀ ଆସୁରିକ ଶକ୍ତି ଆଜି ମଣିଷ ସମାଜକୁ ନିଃଶେଷ କରି ଦେବା ପାଇ ହୁଙ୍କାର ଛାଡ଼ିଲାଣି। ସାରା ବିଶ୍ୱ ବର୍ତ୍ତମାନ ଏକ ସଙ୍କଟରେ ପଡ଼ିଛି। ଆମ ଦେଶ ମଧ୍ୟ ବର୍ତ୍ତମାନ ଘୋର ବିପଦର ସମ୍ମୁଖୀନ।

ଏହି ଦୁଃସାଢ଼ ପରିସ୍ଥିତିରେ ଶ୍ରୀଜଗନ୍ନାଥ ହିଁ ଭରସା। ସେ ସମସ୍ତଙ୍କୁ ସଦ୍‌ବୁଦ୍ଧି ଦିଅନ୍ତୁ। ଓଡ଼ିଆ ଜାତି ଏହି ସମୟରେ ତା'ର ସମୁନ୍ନତ ଆଧ୍ୟାତ୍ମଚେତନାର ପରିଚୟ ପ୍ରଦାନ କରୁ। ପଞ୍ଜାବରେ ମୂର୍ତ୍ତି ପୋଡ଼ି ଘଟଣାକୁ ଆଳ କରି କେତେକ ଏଥିରୁ ରାଜନୈତିକ ଫାଇଦା ଉଠାଇବା ପାଇଁ ଲୋକମାନଙ୍କୁ ବୃଥାରେ ଉତ୍ୟକ୍ତ କରୁଛନ୍ତି। ଆମେ ଏଥିପାଇଁ ସାବଧାନ ହେବା। ଖୁବ୍ ଧୈର୍ଯ୍ୟ ଓ ସହିଷ୍ଣୁତା ଦେଖାଇବା।

ଆମେ ସେହି ଦୁଷ୍କର୍ମର ପ୍ରତିବାଦ କରିବା– ନିନ୍ଦାବାଦ କରିବା । ମାତ୍ର ହିଂସ୍ର ଉତ୍ତେଜନାରେ ବା ନୀଚ ରାଜନୈତିକ ପ୍ରରୋଚନାରେ ପଡ଼ି ଯେମିତି ଆମର ବିବେକ ହରାଇ ନ ବସିବ । ଓଡ଼ିଶାରେ ଆମର ପଞ୍ଜାବୀ ଶିଖ୍‌ଭାଇମାନଙ୍କ ପ୍ରତି ଅଥବା ସେମାନଙ୍କ ଧର୍ମମନ୍ଦିର ପ୍ରତି ଯେପରି କିଛି ଅଶୋଭନୀୟ ଆଚରଣ ନ ଦେଖାଇବା । ତା'ହେଲେ ଶ୍ରୀ ଜଗନ୍ନଥଙ୍କ ମହିମା କ୍ଷୁର୍ଣ୍ଣ ହେବ– ଜଗନ୍ନାଥେ ମଧ ଦୁଃଖିତ ହେବେ । ଓଡ଼ିଆମାନେ ଜାଣି ରଖନ୍ତୁ– ଓଡ଼ିଆଙ୍କର କିଛି ଅପକୀର୍ତ୍ତି ଦେଖିଲେ ଜଗନ୍ନାଥେ ସ୍ୱୟଂ ଖୁବ୍ ଲଜ୍ଜିତ ହେବେ । ସାଧୁ ସାବଧାନ ! ଜଗନ୍ନାଥଙ୍କୁ କେହି ଲଜ୍ଜା ଦିଅନା ।

❋❋

# ପରଦାରେଷୁ ମାତୃବତ୍ ଇତ୍ୟାଦି....

କିଛି ମାସ ତଳେ ଗୋଟିଏ କଲେଜରେ ଏକ ସାଂସ୍କୃତିକ ସଭାରେ ଶ୍ରୋତା ଭାବରେ ଯୋଗ ଦେବାର ସୁଯୋଗ ମିଳିଥିଲା। ସେଦିନ ସଭାକୁ ଯେ ବକ୍ତୃତା ଦେବାକୁ ଆସିଥିଲେ– ସେ ଥିଲେ ଜଣେ ଆଧୁନିକ "ବାବା" ଜାତୀୟ ସନ୍ୟାସୀ ଏବଂ ବିଭିନ୍ନ ଧର୍ମସଭାରେ ଭାରତୀୟ ନୈତିକତା ଓ ଆଧ୍ୟାତ୍ମିକତା ଉପରେ ଭାଷଣ ଦେଇ ସେ କିଛି ଖ୍ୟାତି ମଧ୍ୟ ଅର୍ଜନ କରିଥିଲେ।

ସେଦିନ ତାଙ୍କର ବକ୍ତୃତାର ବିଷୟବସ୍ତୁ ଥିଲା– "ଆତ୍ମସଂଯମ ଓ ଆତ୍ମଜ୍ଞାନ" ଉପରେ। କିଛି ସ୍ତୁତିମୂଳକ ସଂସ୍କୃତ ଶ୍ଳୋକ ଗୁରୁ ଗମ୍ଭୀର କଣ୍ଠରେ ଗାନ କରି ସାରି ସେ ହିନ୍ଦୀ ଭାଷାରେ ତାଙ୍କର ବକ୍ତବ୍ୟ ଆରମ୍ଭ କଲେ। ତାଙ୍କର ପୋଷାକ ପରିଚ୍ଛଦ ଠାରୁ ଠିଆ ହେବା, ଚାହିଁବା ଓ ବକ୍ତୃତା ଦେବାର ସବୁତକ ଠାଣୀ ବା ଭଙ୍ଗୀ ଥିଲା ନାଟକୀୟ ଓ ପ୍ରଦର୍ଶନୀ ସୁଲଭ– ଦୃପ୍ତ ଓ ବିଜ୍ଞମନ୍ୟ।

ବହୁ ସଂସ୍କୃତ ଶ୍ଳୋକ ଏବଂ କେତୋଟି ଇଂରାଜି ଶ୍ଳୋକର ଉଦ୍ଧୃତ ଦେଇ ସେ ଅନର୍ଗଳ ଭାବେ ଭାରତର ଅଧ୍ୟାତ୍ମବାଦୀ ଏବଂ ପାଶ୍ଚାତ୍ୟର ଜଡ଼ବାଦୀ ସଭ୍ୟତା ସଂସ୍କୃତିର ତୁଳନା କରି ଭାରତର ଆଧ୍ୟାତ୍ମିକତା ଓ ନୈତିକତାକୁ ଖୁବ୍ ଉଚ୍ଚାସନାରେ ବସାଇଲେ ଏବଂ ପାଶ୍ଚାତ୍ୟ ଦେଶବାସୀମାନେ ଗ୍ରହ–ଉପଗ୍ରହକୁ ଛୁଇଁ ସାରିଥିଲେ ବି, ବର୍ତ୍ତମାନ କିପରି ମ୍ଳେଚ୍ଛ ଓ ପୈଶାଚିକ ସାମାଜିକ ଜୀବନ ଯାପନ କରୁଛନ୍ତି– ତାହା ମଧ୍ୟ ଉଦାହରଣ ଦେଇ ପ୍ରତିପାଦନ କଲେ ଏବଂ ବର୍ତ୍ତମାନ ପାଶ୍ଚାତ୍ୟ ଜଗତର ସବୁ ଜ୍ଞାନ–ବିଜ୍ଞାନ କିପରି ଅତୀତ ଭାରତରେ ଥିଲା ଓ ଇଂରେଜମାନେ ସେ ସବୁ ପୋଥି ଏଠୁ ଜବରଦସ୍ତ ନେଇ ଯାଇ ନିଜେ ଲାଭବାନ୍ ହେଲେ– ସେ ଜନଶ୍ରୁତି ମଧ୍ୟ ଦର୍ଶାଇଲେ। ତା'ପରେ ସେ ପ୍ରତିପାଦନ କଲେ ଯେ, ବର୍ତ୍ତମାନ ନାରୀମାନଙ୍କର ସତୀତ୍ୱ କିଛି ଭାବେ କେବଳ ଭାରତ ବର୍ଷରେ ସୁରକ୍ଷିତ ହୋଇଅଛି ଏବଂ ପାଶ୍ଚାତ୍ୟ ଦେଶର ରମଣୀଗଣ ସମସ୍ତେ ଗଣିକା ଶ୍ରେଣୀଭୁକ୍ତା ହୋଇ ସାରିଲେଣି।

ଏହି ସବୁ ପାଣ୍ଡିତ୍ୟପୂର୍ଣ୍ଣ ଚିନ୍ତାଗର୍ଭକ ଅଧ୍ୟାତ୍ମଭାଷଣ ଦେଇସାରି ସେ ଉପସ୍ଥିତ ଯୁବ ଛାତ୍ରଛାତ୍ରୀମାନଙ୍କ ଉଦ୍ଦେଶ୍ୟରେ ତାଙ୍କର ଶେଷ ଉପଦେଶ ଦେବା ଛଳରେ ପୂର୍ବେ ଭାରତରେ କିପରି ଗୁରୁକୁଳ ଶିକ୍ଷାଶ୍ରମରେ ଛାତ୍ରମାନେ ଅଖଣ୍ଡ ବ୍ରହ୍ମଚର୍ଯ୍ୟ ପାଳନ କରୁଥିଲେ, ତାହା ପ୍ରାଞ୍ଜଳ ଭାବେ ବୁଝାଇଲେ ଏବଂ ଆଧୁନିକ ଭାରତୀୟ ଯୁବକମାନଙ୍କୁ ଅଖଣ୍ଡ ବ୍ରହ୍ମଚର୍ଯ୍ୟ ପାଳନ କରି ନିତ୍ୟ ଗୀତା, ଭାଗବତ ଉପନିଷଦାଦି ପଢ଼ିବାକୁ ମନ୍ଦିରକୁ ଯିବାକୁ ଏବଂ ପିତାମାତାଦି ବୟସ୍କ ଗୁରୁଜନମାନଙ୍କୁ ଭକ୍ତି ପ୍ରଦର୍ଶନ

କରିବାକୁ ଉପଦେଶ ଦେଲେ। ପରିଶେଷରେ ଆଧୁନିକ କାମୋନ୍ମତ୍ତ ଯୁବ ସମାଜକୁ ତାଙ୍କର ଜ୍ୱାଳାମୟୀ ଉଦ୍‌ବୋଧନ ଜଣାଇ କହିଲେ– "ହେ ଭାରତର ଯୁବକଗଣ! ଭାରତର ପାରମ୍ପରିକ ନୀତି ହେଲା– ପରଦାରେଷୁ ମାତୃବତ୍ ଓ ପରଦ୍ରବ୍ୟେଷୁ ଲୋଷ୍ଟ୍ରବତ୍"। ହେ ଯୁବକଗଣ! ତୁମ୍ଭେମାନେ ସ୍ତ୍ରୀଲୋକମାନଙ୍କୁ ମାଆ ଭଳି ଜ୍ଞାନ କରିବା ଉଚିତ୍। ତା'ହେଲେ ତୁମ୍ଭମାନଙ୍କର ହୃଦୟ ନିଶ୍ଚୟ ଶୁଦ୍ଧ ପବିତ୍ର ଭାବରେ ପରିପୂର୍ଣ୍ଣ ହୋଇ ଉଠିବ"।

ତା'ପରେ ସେ ଉପସ୍ଥିତ ଛାତ୍ରୀମାନଙ୍କୁ ସୀତା ସାବିତ୍ରୀଙ୍କ ପରି ହେବାକୁ ଉପଦେଶ ଦେଇ କହିଲେ– "ହେ ଭାରତର ମାତୃଗଣ! ତୁମ୍ଭେମାନେ ବିବାହ ପରେ ପତିଙ୍କୁ ଦେବତା ତୁଲ୍ୟ ମନେ କରିବ। ପତିଙ୍କ ପ୍ରତି ବିଶ୍ୱସ୍ତ ଓ ନିଷ୍ଠାପର ରହିବ। ପତି ଯାହା ମନେ ତାହା ହୁଅନ୍ତୁ– ନିର୍ବିକାର ଓ ସହିଷ୍ଣୁ ଚିତ୍ତରେ ପରମ ପ୍ରେମର ସହିତ ପତିଦେବାଙ୍କ ପଦସେବା କରି ନିଜର ନାରୀଜନ୍ମକୁ ସାର୍ଥକ ହିଁ ଭାରତୀୟ ନାରୀର ପରମ ଆଦର୍ଶ ଓ ଏକମାତ୍ର ଧର୍ମ ସାଧନ।"

ସନ୍ୟାସୀ ଏହି ସବୁ କଥା ଆବେଗପୂର୍ଣ୍ଣ କଣ୍ଠରେ ବାଚାଳଙ୍କ ପରି ଗପି ଚାଲିଥିଲା ବେଳେ– ହଲ୍‌ରେ ଛାତ୍ରମାନେ କେହି ହସୁଥିଲେ– କେହି ଛିଙ୍କୁଥିଲେ–କେହି ମଧ କାଶୁଥିଲେ ଏବଂ ଅନ୍ୟମାନେ ନିଜ ଭିତରେ ଖୁସିଗପ କରୁଥିଲେ। ମାତ୍ର ସେହି କାଣ୍ଡଜ୍ଞାନହୀନ ପ୍ରଗଳ୍‌ଭ ସନ୍ୟାସୀ ଗପୁଥିଲା ବେଳେ ଏ ସବୁ ପ୍ରତି ସଚେତନ ନଥିଲେ ଏବଂ ଆମ୍ଭେମାନେ ମଧ ସେହି ଭାଷଣରେ ଖୁବ୍ ବିରକ୍ତ ଓ ବ୍ୟସ୍ତ ହୋଇ ଉଠିଥିଲୁ। କିନ୍ତୁ ଆମ ସମସ୍ତଙ୍କୁ ଚକିତ କରିଦେଇ ଗୁରୁ ଗମ୍ଭୀର ଅଥଚ ଖୁବ୍ ଆନ୍ତରିକ ଏବଂ ଆପଣାର ସରସ ସହଜ ଭଙ୍ଗୀରେ ସେଦିନର ସଭାପତି ତାଙ୍କର ଅଭିଭାଷଣ ଆରମ୍ଭ କଲେ। ସଭାପତି ଥିଲେ ଜଣେ ଜଣାଶୁଣା ଅଧ୍ୟାପକ– ଯେ କି ସାରା ରାଜ୍ୟରେ ତାଙ୍କର ପ୍ରଗତିଶୀଳ ଲେଖା, ବକ୍ତୃତା ଯୋଗୁଁ ଖୁବ୍ ଲୋକପ୍ରିୟତା ଅର୍ଜନ କରିଥିଲେ। ତାଙ୍କର ବକ୍ତବ୍ୟ ଥିଲା ଖୁବ୍ ସହଜ, ସରଳ, ରସପୂର୍ଣ୍ଣ ଓ ଯୁଗପୋଯୋଗୀ ଯୁକ୍ତିଯୁକ୍ତ ବିଜ୍ଞତାରେ ଗ୍ରହଣଯୋଗ୍ୟ। ସେ ବିଷୟଟିକୁ ଅଯଥା ଆଡ଼ମ୍ବର ପୂର୍ଣ୍ଣ ଗୁରୁଗାମ୍ଭୀର୍ଯ୍ୟରୁ ମୁକ୍ତ କରି ସ୍ଥାନ କାଳ ପାତ୍ରୋଚିତ ଭାଷାରେ ହସାଇ ମଜାଇ ବିଶ୍ଳେଷଣ କଲେ।

ଇତିହାସ ଓ ପୁରାଣରୁ ନାନାଦି ଉଦାହରଣ ଦେଇ ସେ ପ୍ରାଚୀନ ଭାରତର ଗୁରୁକୁଳ ଆଶ୍ରମ ଓ ସାମାଜିକ ଜୀବନର ବିଭିନ୍ନ କ୍ଷେତ୍ରରେ କିପରି ବର୍ତ୍ତମାନ ଅପେକ୍ଷା ଗୁରୁତର ନୈତିକ ବିପର୍ଯ୍ୟମାନ ଘଟିଥିଲା– ତାହା ପ୍ରକାଶ କଲେ। ତାଙ୍କର ମତ ହେଲା– ପ୍ରାଚୀନ ଓ ଆଧୁନିକ, ପ୍ରାଚ୍ୟ ଓ ପାଶ୍ଚାତ୍ୟ ସର୍ବତ୍ର ମଣିଷ ଜୀବନ କେତେକ ମୌଳିକ ସମସ୍ୟାରେ ଆକ୍ରାନ୍ତ। ସମସ୍ୟାଗୁଡ଼ିକୁ ଏକ ପାଖିଆ ବିଚାର କରି, ସାମଗ୍ରିକଭାବେ ବିଚାର ନ କଲେ ମଣିଷଜାତି ଏମିତି ବିପର୍ଯ୍ୟୟ ଭୋଗୁଥିବ।

ତା'ଛଡ଼ା– ମଣିଷର ନୈତିକ ଜୀବନ ଓ ସାମାଜିକ ଜୀବନକୁ ତାର ନିଜସ୍ୱ ପରିବେଶ ଓ ଯୁଗର ଦାବୀ ଅନୁଯାୟୀ ସଜାଡ଼ିବାକୁ ହେବ। ବର୍ତ୍ତମାନ ଯୁଗ ହେଲା, ଯୁକ୍ତିର ଯୁଗ– ପରୀକ୍ଷା ନିରୀକ୍ଷା ଓ ବିଶ୍ଳେଷଣର ଯୁଗ। ସବୁ କଥାକୁ ଆଗ ତାର ମୌଳିକ ଆବେଦନରୁ ବିଚାର କରିବାକୁ ହେବ। ସେଥିପାଇଁ ଆମର ଅନେକ ପ୍ରାଚୀନ ନୀତିବାକ୍ୟ, ବର୍ତ୍ତମାନ ଆମ ପାଇଁ ଅର୍ଥହୀନ ଓ ଅନାବଶ୍ୟକ।

ଉଦାହରଣ ସ୍ୱରୂପ– ଜଣେ ଆଧୁନିକ ଯୁବକକୁ ମୁଁ କହିପାରିବି ନାହିଁ ଯେ, ରାସ୍ତାରେ ଚାଲିଯାଉଥିବା ବା ତୁମ ପାଖାପାଖି ରହିଥିବା କୌଣସି ଅସଂପର୍କିତା ସ୍ତ୍ରୀଲୋକକୁ ତୁମେ ମାଆ, ମାଉସୀ, ଖୁଡ଼ୀ ବା ଭଉଣୀ ବୋଲି ଭାବିବାକୁ ବାଧ୍ୟ। ମୋର ବିଚାର ହେଲା– ପ୍ରତ୍ୟେକ ପୁରୁଷ ତା'ର ବୟସ, ରୁଚି ଓ ଅଭିଳାଷ ଅନୁଯାୟୀ ସ୍ତ୍ରୀ ଲୋକଟିକୁ ଦେଖିବ। କିନ୍ତୁ ପ୍ରଥମେ ଜଣେ ସ୍ତ୍ରୀଲୋକକୁ ଜଣେ "ଭଦ୍ରମହିଳା" ବୋଲି ମନେ କରିବା ହେବ ଜଣେ ପୁରୁଷ ପକ୍ଷରେ ସବୁଠାରୁ ବାସ୍ତବ ଓ ସମୀଚୀନ ମନୋଭାବ ଏବଂ ଆମର ଭଦ୍ର ସମାଜରେ ପ୍ରତ୍ୟେକେ ପ୍ରତ୍ୟେକଙ୍କଠାରୁ ବ୍ୟବହାରରେ ଭଦ୍ରତା, ସୌଜନ୍ୟ ଓ ସମ୍ଭ୍ରମ ଭାବ ଆଶା କରନ୍ତି। କାହାକୁ ଲଜ୍ଜିତ ବା ଅପମାନିତ କରିବା ହେଲା ଅମାର୍ଜିତ ଲୋକର ବ୍ୟବହାର। କୌଣସି ପୁରୁଷ, ସେ ଯେତେ ସୌଭାଗ୍ୟବନ୍ତ ହେଉ ପଛେ– କୌଣସି ସ୍ତ୍ରୀଲୋକ ସହିତ ଭଦ୍ର ବ୍ୟବହାର ନ କରି ତାର ପ୍ରେମ ପାତ୍ର ହୋଇ ପାରିବ ନାହିଁ– ଏପରିକି କାହା ପାଖେ ନିଜକୁ ଆକର୍ଷଣୀୟ କରି ପାରିବ ନାହିଁ। ଅଶ୍ଳୀଳ ଯୌନଇଙ୍ଗିତ ପ୍ରଦର୍ଶନ କରୁଥିବା ପୁରୁଷଟିକୁ ଆତ୍ମସମ୍ମାନ ବୋଧଥିବା ରୁଚି ସମ୍ପନ୍ନା–ମହିଳାମାନେ ଘୃଣା ହିଁ କରିଥାନ୍ତି। କି ପୁରୁଷ କି ନାରୀ ଜୀବନକୁ କଳାମୟ, ଯୁକ୍ତିଯୁକ୍ତ ଓ ସମ୍ବେଦନଶୀଳ କରି ବଞ୍ଚିବା ଉଚିତ। ତାହା ହିଁ ମଣିଷ ଭାବେ ବଂଚିବା।

ଦ୍ୱିତୀୟ ଉଦାହରଣ ଦେଇ ସେ କହିଲେ ଯେ, ପରଦ୍ରବ୍ୟ ହେଉ ବା ନିଜ ଦ୍ରବ୍ୟ ହେଉ– ଦ୍ରବ୍ୟ ମାତ୍ରକୁ ଖଣ୍ଡିଏ ମାଟି ପଥରର ଟେଳା ମଧ୍ୟ ତା'ର କ୍ଷେତ୍ରରେ ଉପଯୋଗୀ। ସେମିତି ଯେ କୌଣସି ମୂଲ୍ୟବାନ୍ ବା ସୌଖୀନ୍ ବା ସୁନ୍ଦର ଜିନିଷଟିର ଗୁରୁତ୍ୱ, ବ୍ୟବହାର ଏବଂ ଉପଯୋଗିତା ଯେ ବୁଝି ନ ପାରେ, ସେ ଜଣେ ଅମାର୍ଜିତ ମୂଢ଼ ବ୍ୟକ୍ତି–ଗଧ ବା ମର୍କଟ। କାହାର ଭଲ ଜିନିଷଟିଏ ଦେଖିଲେ ସେ ଜିନିଷଟିକୁ ନିଜର କରିବାକୁ ସ୍ୱାଭାବିକ ଆଗ୍ରହ ଯାହାର ନ ହୁଏ– ତାକୁ ଦ୍ରବ୍ୟାଦ୍ରବ୍ୟ ଗୁଣ ଜଣା ନ ଥାଏ ବୋଲି ବୁଝିବାକୁ ହେବ। କିନ୍ତୁ ତା' ବୋଲି ଜଣକର ଅନୁମତି ବିନା ଆମେ ତା' ଜିନିଷଟିକୁ ନେଇଯିବା ଠିକ୍ ହେବ କି? ଏକଥା ଠିକ୍ ବୋଲି ସିଦ୍ଧାନ୍ତ କରି ଦେଲେ– ସମସ୍ତେ ସମସ୍ତଙ୍କ ଠାରୁ ଜିନିଷପତ୍ର ଛଡ଼ାଛଡ଼ି କରିବେ ଓ ଆମେ ସମସ୍ତେ କିଛି କଷ୍ଟ ଭୋଗିବା। ସେମିତି ଅନ୍ୟ ଜଣେ ଭଲ ଜିନିଷଟିଏ ରଖିଛି ବୋଲି, ଆମ ମନରେ ତା' ପ୍ରତି ଈର୍ଷା ହେଲେ ତାକୁ ଅତିକ୍ରମ କରିବା ଭଲ।

କାରଣ, ଈର୍ଷା କରିବା ହେଲା ମନସ୍ତାତ୍ତ୍ୱିକ ବିପର୍ଯ୍ୟୟ–ରୋଗ ଭଳି। ଏହାଦ୍ୱାରା ଈର୍ଷାନ୍ୱିତ ବ୍ୟକ୍ତି ନିଜ ମସ୍ତିଷ୍କ ଓ ହୃଦୟର କ୍ଷତି କରେ। ବେଶୀ ଈର୍ଷା ହେଲେ– ପେଟ ମଧ୍ୟ ଖରାପ ହୋଇଯାଏ ଏବଂ ବିଚାରା ଈର୍ଷୁକ ବ୍ୟକ୍ତିଟି ଦିନରାତି ଭଲ ଖାଇ ପାରେନା କି ଶୋଇ ପାରେନା। ଏପରିକି ମନଖୁସିରେ ସିନେମା ଦେଖି ପାରେନା। ଭଲ ଜିନିଷଟିଏ ନିଜର କରି ପାଇବାକୁ ହେଲେ ଆମକୁ ତାହା ଦୋକାନରୁ କ୍ରୟ କରିବାକୁ ହେବ ଏବଂ ସେ ସାମର୍ଥ୍ୟ ନ ଥିଲେ– ଆମକୁ ଅପେକ୍ଷା କରିବାକୁ ହେବ।

ତୃତୀୟ ଉଦାହରଣ ଦେଇ ସେ କହିଲେ ଯେ– ସ୍ୱାମୀ ଓ ସ୍ତ୍ରୀ କେହି କାହାକୁ ଦେବ ଦେବୀ ବୋଲି ନ ଭାବି, ଆଗ ମଣିଷ ବୋଲି ଭାବିବା ଉଚିତ ଏବଂ ପରସ୍ପର ଦୋଷ ଗୁଣଗୁଡ଼ିକୁ ସହାନୁଭୂତି ଓ ସମ୍ମାନର ସହିତ ଗ୍ରହଣ କରିବା ଉଚିତ୍। ପ୍ରଥମେ ଉଭୟଙ୍କ ଭିତରେ ଯଥାର୍ଥ ବୁଝାମଣା ଓ ପ୍ରେମଭାବ ରହିବା ଚାହିଁ ଏବଂ ପ୍ରେମଭାବ ହିଁ ସବୁ ସମସ୍ୟାକୁ ସମାଧାନ କରିବା ପାଇଁ ଏକମାତ୍ର ସମର୍ଥ। କିନ୍ତୁ ସେହି ପ୍ରେମ ଆତ୍ମକେନ୍ଦ୍ରିକ ବା ସ୍ୱାର୍ଥପର ହେଲେ– ଆମେ ଅନ୍ୟ ସହିତ ଆମର ହୃଦୟର ଯୋଗ ରଖି ପାରିବା ନାହିଁ। ଫଳରେ ଆମ ଜୀବନ ନଷ୍ଟଭ୍ରଷ୍ଟ ହୋଇଯିବ।

ବିଜ୍ଞ ଓ ବିଦଗ୍ଧ ସଭାପତି ତାଙ୍କ ଭାଷଣରେ ସେଦିନ ଅନେକ କଥା ଏହି ଭାବେ ଆଧୁନିକ ବିଚାରପଦ୍ଧତି ଅବଲମ୍ବନ କରି କହିଥିଲେ ଏବଂ ଆମେ ଆଶ୍ଚର୍ଯ୍ୟ ହେଲୁ ଯେ, ହଲରେ ଉପବିଷ୍ଟ ସମସ୍ତ ଛାତ୍ରଛାତ୍ରୀ ତାଙ୍କ କଥାକୁ ଖୁବ୍ ମନୋଯୋଗ ଦେଇ ନିସ୍ତବ୍ଧ ଭାବେ ଶେଷ ପର୍ଯ୍ୟନ୍ତ ଶୁଣୁଥିଲେ।

ଏଥିରୁ ମନେ ହେଲା, ଆମେ ଆମର ଯୁବସମାଜକୁ ନୈତିକ ଭାବେ ଦାୟୀ କରିବା ପୂର୍ବରୁ ପ୍ରଥମେ ଆମେ ହିଁ ନୈତିକତାର ଯଥାର୍ଥ ଯୁଗୋପଯୋଗୀ ମୂଲ୍ୟ ବୁଝିବା ଉଚିତ୍।



# ମହାଦେବଙ୍କ ଷଣ୍ଢ ବିଚାରାର ଇତିକଥା

ଏବେ ଗୋଟିଏ ଓଡ଼ିଆ ସମ୍ବାଦରେ କରୁଣ ଓ ବୀଭତ୍ସ ଖବରଟିଏ ପଢ଼ିବାକୁ ମିଳିଲା। କୌଣସି ଏକ ଗ୍ରାମରେ ବଳୁଆ ଷଣ୍ଢଟିଏ ଥିଲା। ଷଣ୍ଢଟି ବାଛୁରୀ ଥିଲା ବେଳେ କେହି ଜଣେ ଧର୍ମଭୀରୁ ବ୍ୟକ୍ତି ତାଙ୍କର ବାପାଙ୍କ ମୃତ୍ୟୁ ଦଶାହ କ୍ରିୟାରେ ତାଙ୍କୁ ସ୍ଥାନୀୟ ମହାଦେବଙ୍କ ପାଖରେ "ବୃଷଭ–ଉତ୍ସର୍ଗ" କରି ପିତୃଋଣରୁ ମୁକ୍ତ ହେଲେ ବୋଲି ମନେକରି ନିଶ୍ଚିନ୍ତ ହୋଇଥିଲେ। ବାଛୁରୀଟି ବଢ଼ି ବଢ଼ି ଷଣ୍ଢ ହେଲା ଓ ମହାଦେବଙ୍କ ଷଣ୍ଢରୂପେ ସ୍ୱନାମଧନ୍ୟ ହୋଇ ଗ୍ରାମବାସୀଙ୍କ ଠାରୁ କିଛି କିଛି ସମ୍ଭ୍ରମ ଓ ସାହାଯ୍ୟ ମଧ୍ୟ ପାଇଲା। ସାଧାରଣତଃ ଷଣ୍ଢମାନେ ବୁଲା। ସେମାନଙ୍କ ବେକରେ କାହାର ପଘା ନଥାଏ। ସେମାନେ ବୁଲି ବୁଲି ଖାଉଥାନ୍ତି ଏବଂ ଗ୍ରାମବାସୀଙ୍କ ଋତୁମତୀ ଗାଭୀମାନଙ୍କୁ ଗର୍ଭବତୀ କରୁଥାନ୍ତି। କିନ୍ତୁ ଆମର କଥିତ ଏହି ଷଣ୍ଢଟି "ମହାଦେବଙ୍କ ବାହନ" ଷଣ୍ଢ ହେତୁ ତାର ସାହସ, ବଳପଣାଗୁଣ ଓ ବେଖାତିର୍ ପଣିଆ ବହୁତ ବଢ଼ି ଯାଇଥିଲା। ପ୍ରଥମେ ପ୍ରଥମେ ଗ୍ରାମରେ ଗୋଚର ଭୂଇଁ ବହୁତ ଥିଲା। ଷଣ୍ଢଟିର ଘାସ ଚରିବାରେ କିଛି ଅସୁବିଧା ନଥିଲା। ତା'ଛଡ଼ା, ବେଳେ ବେଳେ ସେ ବାଡ଼ ଉପରୁ ବଣୁଆ ଲଟା ସବୁ ଖାଉଥିଲା। ମହାଦେବଙ୍କ ପାଖେ ସାମୟିକ ଅନ୍ନକୂଟାଦି ଉତ୍ସବରେ ଅଇଁଠା ପତ୍ର ଓ ବଳକା ଅନ୍ନବ୍ୟଞ୍ଜନାଦି ମଧ୍ୟ ଖାଉଥିଲା ଏବଂ ବେଳେ ବେଳେ ବାଡ଼ ଭାଙ୍ଗି ବାଡ଼ିଘରେ ପଶି କାଁ–ଭାଁ ଶାଗ ବା ପନିପରିବା ଗଛ ମଧ୍ୟ ଖାଇ ଯାଉଥିଲା। ଏପରିକି ଫସଲ କିଆରିରେ ମଧ୍ୟ ଥରେ ଅଧେ ପଶି ମୁଗ, ବିରି ଧାନାଦି ଗଛରେ ମୁହଁ ମାରି ଦେଉଥିଲା।

ଲୋକେ ଦୁଃଖ କରୁଥିଲେ ବି, ତାକୁ ସହୁ ଥିଲେ। କାରଣ ମହାଦେବଙ୍କ ବାହାନ ବୋଲି ଲୋକଙ୍କର କିଛି ଭୟ ଥିଲା ଏବଂ ଷଣ୍ଢଟି ପରିପୁଷ୍ଟ ଥିବାରୁ ଏବଂ ନିତ୍ୟସଙ୍ଗମ ସମର୍ଥ ଥିବାରୁ ଗାଈମାନେ ଭଲ ଗର୍ଭବତୀ ହେଉଥିଲେ– ଏଥିପାଇଁ ମଧ୍ୟ ଲୋକେ ଷଣ୍ଢଟି ପ୍ରତି କିଛି କୃପାବିଷ୍ଟ ଥିଲେ।

କିନ୍ତୁ ସମୟ ବଦଳିଗଲା। ଗାଁର ଗୋଚର ଜମି ଆଉ ରହିଲା ନାହିଁ। କାରଣ ଦାରିଦ୍ର୍ୟ ସୀମାରେଖା ତଳେଥିବା ଲୋକଙ୍କୁ ଓ ହରିଜନମାନଙ୍କୁ ସରକାର କୃପାସିନ୍ଧୁ ହୋଇ ଜମିଦାନ କରୁ କରୁ ଗାଁର ଗୋଚର, ଦଣ୍ଡା ସବୁ ଦେଇଦେଲେ। ଷଣ୍ଢଟି ଚରାଭୂଇଁ ପାଇଲା ନାହିଁ। ଷଣ୍ଢଟିକୁ ମଧ୍ୟ ଆଉ କେହି ବାଡ଼ଭାଙ୍ଗି ପନିପରିବା

କିଆରି ଖାଇ ଧ୍ୱଂସଶଂସନ କରିବାକୁ ଦେଲେ ନାହିଁ। କାରଣ, ଲୋକେ ଏଣିକି କେବଳ ପନିପରିବା ଚାଷ ନିଜେ ଖାଇବା ପାଇଁ କରୁନଥିଲେ। ଗ୍ରାମ ହାଟରେ, କଖାରୁ, କାକୁଡ଼ି, ଲାଉ, ଜହ୍ନି ଇତ୍ୟାଦି ବିକ୍ରି କରି ପ୍ରଚୁର ପଇସା ପାଉଥିଲେ। ଷଣ୍ଢଟି ମଧ୍ୟ ଆଉ ବିଲ ବାଡ଼ିକୁ ସହଜରେ ଯାଇପାରୁ ନଥିଲା। କାରଣ ବର୍ଷେ ବଢ଼ିରେ ଓ ଆଉ ବର୍ଷେ ମରୁଡ଼ିରେ ଗାଁ ଗହୀରରେ ଫସଲଟକ ନଷ୍ଟ ହୋଇ ଯାଇଥିବାରୁ ଦିନରାତି''ବଗ ମୀନକୁ ଚାହିଁ ରହିଲା ପରି'' ଚାହିଁ ରହୁଥିଲେ। ଯୋଗକୁ ପୁଣି ଗ୍ରାମରେ ପଶୁପାଳନ କେନ୍ଦ୍ର ଓ ପଶୁଡ଼ାକ୍ତରଖାନା ଖୋଲିବା ଫଳରେ ଭଲ ଜର୍ସି ଓ ହରିଆନା ଷଣ୍ଢର ଶୁକ୍ର ଇଞ୍ଜେକ୍ସନ୍ ଦେଇ ଗ୍ରାମର ଧେଡ଼ୀ ଗାଈମାନଙ୍କୁ ଜର୍ସି ଓ ହରିଆନା ବାଛୁରୀର ଜନନୀ ହେବାର ଗୌରବ ମିଳିଲା। ତେଣୁ ମହାଦେବଙ୍କ ଷଣ୍ଢର ଆଜ ସେ ଉପଯୋଗିତା ମଧ୍ୟ ରହିଲା ନାହିଁ।

ଏଣେ ପୁଣି ମହାଦେବଙ୍କ ମହିମା ଓ ପ୍ରତାପ ମଧ୍ୟ ଦୁର୍ଭାଗ୍ୟକୁ କମି କମିଗଲା। କାରଣ ଦିନେ ରାତିରେ ମହାଦେବଙ୍କ ମନ୍ଦିରର ତାଲା ଭାଙ୍ଗି ସେଇ ଗାଁ କେତେଜଣ ଲୋକ ତାଙ୍କର ପ୍ରାୟ କୋଡ଼ିଏଟି ପିତଳ ଓ ତମ୍ବାନାଗକୁ ଚୋରିକରି ନେଇଗଲେ। କିନ୍ତୁ ଲୋକଙ୍କର ପାରମ୍ପାରିକ ବିଶ୍ୱାସ ଅନୁଯାୟୀ ସେଇ ଚୋରମାନଙ୍କୁ ଦେଉଳ ଭିତରେ ଓ ବାହାରେ, ସତକୁ ସତ କାଳନାଗ ଦଂଶିଲେ ନାହିଁ। ବରଂ ସେହି ଚୋରି ଘଟଣାର ଦୁଇଦିନ ପରେ ମହାଦେବଙ୍କ ମନ୍ଦିରର ପାଖ ହୁଙ୍କା ପାଖେ ଯୋଉ ଏକୁଟିଆ ବୁଢ଼ା ନାଗଟିଏ କାଳେ ଅକାଳେ ଚଳପ୍ରଚଳ ହେଉଥିଲା, ତାକୁ କେତେକ ଧିମୂସା ଟୋକା ପିଟି ପିଟି ମାରି ଦେଇ ତା'ର ଶବକୁ ଆଣି ମହାଦେବଙ୍କ ପୋଖରୀରେ ସ୍ତ୍ରୀଲୋକଙ୍କ ଗାଧୋଇବା ଘାଟ ପାହାଚ ଉପରେ ସ୍ତ୍ରୀଲୋକମାନଙ୍କୁ ଡରାଇବା ଉଦ୍ଦେଶ୍ୟରେ ଲମ୍ବ କରି ଶୁଆଇ ଦେଲେ। ଫଳରେ ମହାଦେବଙ୍କ ପାଖେ ଭୋଗ ରାଗ ଓ ଜଳଶାୟୀ ଇତ୍ୟାଦି ପୂଜାଧୂଜା କମିଗଲା। ସେଥିରେ ଅବଶ୍ୟ ମହାଦେବଙ୍କ କିଛି କ୍ଷତି ହେଲାନାହିଁ। କାରଣ ମହାଦେବ କ'ଣ ଗୋଟିଏ ଜାଗାରେ, ଗୋଟିଏ ଲିଙ୍ଗରେ ବିରାଜମାନ କରିଥାନ୍ତି ? ସେହି ଗାଁରେ ନ ହେଲେ ବି, ଅନ୍ୟ ଗାଁମାନଙ୍କରେ ସେ ଭିନ୍ନ ନାମରେ ଓ ଭିନ୍ନ ଲିଙ୍ଗରେ ରହି ଯଥେଷ୍ଟ ପୂଜା ପାଉଥାନ୍ତି। ପାଣିପଣା ମଧ୍ୟ ପାଉଥାନ୍ତି। କିନ୍ତୁ ଷଣ୍ଢ ମହାଦେବଙ୍କ ବାହନ ବୋଲି କଥିତ ହେଲେ ବି, ଏଇ ଷଣ୍ଢଟି ଗୋଟାଏ ସ୍ୱତନ୍ତ୍ର ପ୍ରାଣୀ ଏବଂ ତା'ର ଜୀବନ ଓ ସମ୍ମାନ ସବୁ ଏଇ ଗ୍ରାମର ମହାଦେବଙ୍କ ମହିମା ଓ ପ୍ରାକ୍ରମ ଉପରେ ହିଁ ନିର୍ଭର କରୁଥିଲା।

ଏଣିକି ଲୋକେ ଷଣ୍ଢଟିକୁ ବରାବର୍ ଦୂର୍ ଦୂର୍ ମାର୍ ମାର୍ କଲେ। ବିଚରା ଷଣ୍ଢଟି ତାର ଧାର୍ମିକ ମର୍ଯ୍ୟାଦା ସହିତ ଷଣ୍ଢୋଚିତ ଉପଯୋଗିତା ମଧ୍ୟ ହରାଇ ବସିଲା। ଏଣେ ପୁଣି ସେ କ୍ରମଶଃ ବୁଢ଼ା ହୋଇ ଆସୁଥିଲା ଏବଂ ତା' ପ୍ରତି

ଲୋକଙ୍କର ଯେତିକି ଅବହେଳା ବଢ଼ୁଥିଲା ଓ ସମ୍ଭ୍ରମ କମୁଥିଲା, ସେତିକି ମଧ୍ୟ ତା'ର ଷଣ୍ଢ ସୁଲଭ ଅବିଗୁଣ ବଢ଼ି ଯାଉଥିଲା। ''ସେ ଖୁବ୍ ଜିଦ୍‌ଖୋର ହୋଇ ଉଠିଲା। ଖାଇବାକୁ ପାଉଲା ନାହିଁ– କିନ୍ତୁ ସବୁଦିନେ ମାଡ଼ ଖାଉଲା। ତା' ଉପରେ ଅନବରତ ଟେକା ପଥର ମାଡ଼ ହେଲା। ସେ ମଧ୍ୟ ଭୋକ ଜ୍ୱାଳାରେ ଏବଂ ଖୁବ୍ ଜିଦ୍‌ଖୋର୍ ହୋଇ ଯା' ତା' ବାଡ଼ ଭାଙ୍ଗି ବାଡ଼ି ଘରେ ପଶିଲା ଏବଂ ଲୋକଙ୍କ ସାମାନ୍ୟ ଅସତର୍କ ମୁହୂର୍ତ୍ତରେ ବିଲରେ ପଶି ଭୋକ ଆତୁରରେ ଫସଲ ଚରିଗଲା।

ଲୋକେ ତା' ଉପରେ ଉତ୍‌କ୍ଷିପ୍ତ ହୋଇ ଉଠିଲେ। ଲୋକଙ୍କର ଆଉ ତା' ଉପରେ ଦୟାମାୟା ନଥିଲା। ଗାଁ ଲୋକେ ତାକୁ ଶତ୍ରୁ ବୋଲି ଭାବିଲେ– ତାକୁ ବିଷ ଦେଇ ମାରିଦେବେ। ତାକୁ ଖାଦ୍ୟରେ ମଧ୍ୟ ବିଷ ଦିଆଗଲା, ମାତ୍ର ସେ ଷଣ୍ଢ ଏଡ଼େ ଚାଲାକ୍ ଯେ, ସେ ଖାଦ୍ୟକୁ ଖାଲି ଶୁଙ୍ଘି ଦେଇ ଶିଙ୍ଗରେ ଟେକି ଛାଡ଼ି ଦେଲା। ଲୋକେ ଉଦ୍‌ବ୍ୟସ୍ତ ହୋଇ ଉଠିଲେ। ଲୋକଙ୍କ ଜିଦ୍ ମଧ୍ୟ ବଢ଼ିଗଲା। ଷଣ୍ଢ ପ୍ରତି ଅସୂୟା ମଧ୍ୟ ବଢ଼ିଗଲା– ଏପରିକି ହିଂସା ମଧ୍ୟ ବଢ଼ିଗଲା।

ସେଦିନ ସେ ଷଣ୍ଢ ପାହାନ୍ତା ପୂର୍ବରୁ ବିଲରେ ପଶିଗଲା। ବିଲରେ ବିରି ଫସଲ ଭଲ ଉତୁରି ଥିଲା। ଲଟାମାନଙ୍କରେ ସବୁଜପତ୍ର ଓ ବିରି ଛୁଇଁ ଲଦି ହୋଇ ରହିଥିଲା। ଏହା ପୂର୍ବରୁ ସେ ଚାରିଥର ବିରି କିଆରିରେ ପଶି ମହାଆନନ୍ଦରେ ବିରି ଫସଲ ଖାଇଥିଲା ଓ ଲୋକେ ତାକୁ ବାଡ଼େଇବାକୁ ଆସିଲା ମାତ୍ରେ ସେ ଦଉଡ଼ି ପଳାଇ ଯାଇଥିଲା। ମାତ୍ର ଏଥର ଗାଁର ଚାରିଜଣ ଲୋକ ବଡ଼ ସତର୍କ ହୋଇ ତାକୁ ଜଗି ଥିଲେ ଏବଂ ଦଉଡ଼ିରେ ଫାଶ ପକାଇ ତାକୁ ବାନ୍ଧି କାବୁ କରିଦେଲେ। ତା' ପରେ ଜଣେ ଗୋଟିଏ ଶବଳ ତତାଇ ତା' ମଳଦ୍ୱାରରେ ଭର୍ତ୍ତି କରିଦେଲା। ଆଉ ଜଣେ ଗୋଟେ ତେଣ୍ଟାରେ ତା'ର ଦୁଇ ଆଖି ଫୁଟାଇ ସାରି ତା'ର କୋଷକୁ ବାରଂବାର ତେଣ୍ଟା ମୁନରେ ଭୁସି ଲାଗିଲା। ଆଉ ଜଣେ ଗୋଟିଏ ତେଣ୍ଟାରେ ତା'ର ପେଟକୁ ବାରଂବାର ଭୁସି ଲାଗିଲା। ଅଧଘଣ୍ଟାଏ ଭିତରେ ସେମାନେ ଷଣ୍ଢଟିକୁ ବୀଭତ୍ସ ହିଂସାରେ ବହୁ କଷ୍ଟ ଯନ୍ତ୍ରଣା ଦେଇ ମାରିଦେଲେ। ଷଣ୍ଢଟି ଭୀଷଣ ଚିତ୍କାର ଛାଡ଼ି ଛାଡ଼ି ସେଇ ବିରି କିଆରି ଭିତରେ ପଡ଼ି ଛଟ ପଟ ହେଉ ହେଉ ମରିଗଲା।

ତା'ପରେ ସେଇ ଘୋର ନାରକୀୟ ଘଟଣାରେ ସଂପୃକ୍ତ ଲୋକଙ୍କ ବିରୁଦ୍ଧରେ ପୁଲିସ୍ କେସ୍ ହେଲା ବୋଲି ମଧ୍ୟ ଖବର ବାହାରିଛି। ମାତ୍ର କଥା ସେଠି ନାହିଁ। ଏ କଥା ମଧ୍ୟ ସତ ଯେ– ମଣିଷ ବର୍ତ୍ତମାନ ମଣିଷ ପ୍ରତି ମଧ୍ୟ ନିଷ୍ଠୁର, ନିର୍ମମ ଆଉ ହିଂସ୍ର ହୋଇ ଉଠିଲାଣି। ପଶୁଠାରୁ ମଧ୍ୟ ଆହୁରି ବୀଭତ୍ସ କାଣ୍ଡ କଲାଣି।

କିନ୍ତୁ କାହିଁକି ଏପରି ହେଉଛି ? ଜ୍ଞାନ ବଢ଼ିଛି– ବିଜ୍ଞାନ ବଢ଼ିଛି। ଧନ ବଢ଼ିଛି– ସ୍ୱାଧୀନତା ବଢ଼ିଛି– ମାନ ସମ୍ମାନ ବଢ଼ିଛି– ଅଧିକାରବୋଧ ମଧ୍ୟ ବଢ଼ିଛି– ଏପରିକି ଧାର୍ମିକ କାଣ୍ଡ କାରଖାନା ମଧ୍ୟ ବଢ଼ିଛି। କିନ୍ତୁ ଗାଁଠାରୁ ସହର ଯାଏ-- ସାଧାରଣ ମଣିଷ ତା'ର ସାମାନ୍ୟତମ ମନୁଷ୍ୟତାଟିକୁ ମଧ୍ୟ ରଖିପାରୁନି କେଉଁ କାରଣରୁ ? ଭାରତବର୍ଷର କ'ଣ ହୋଇଛି ? ସବୁଠାରୁ ପ୍ରାଚୀନତମ ଓ ଗଭୀରତମ ଯେ ହିନ୍ଦୁ ଧର୍ମ ସେହି ଧର୍ମାବଲମ୍ବୀ ଲୋକମାନଙ୍କୁ କି ଦୁର୍ଦ୍ଦଶା ଆଉ ଦୁର୍ଦ୍ଦୈବ କୁଆଡ଼କୁ ଟାଣି ନେଉଛି ! ହେ ଭଗବାନ !

✱✱

# ଫୁଲ ସବୁ କୁଆଡ଼େ ଯାଏ ?

ସତରେ ଫୁଲସବୁ କୁଆଡ଼େ ଯା'ନ୍ତି ? ସଂଜବୁଡ଼େ ଆପଣ ଦେଖିଥିବେ, ବଗିଚାର ସବୁ ଗଛରେ ଫୁଲ ଭର୍ତ୍ତି। କନିଅର, କୃଷ୍ଣଚୂଡ଼ା, ମନ୍ଦାର, ଚମ୍ପା, ମଲ୍ଲୀ, ଗୋଲାପ, ମଧୂମାଳତୀ, ସୁଗନ୍ଧରାଜ, ଅପରାଜିତା ଆଦି ଫୁଲ ସବୁ ଫୁଟିଥିବେ– ଅଥବା ଫୁଟିବା ପାଇଁ କଢ଼ରେ ଉନ୍ମୁଖ ହୋଇ ରହିଥିବେ, ଆପଣ ଭାବିବେ– ଠିକ୍ ଅଛି। ଫୁଟିବା ପାଇଁ ସାରା ରାତିଟା ପଡ଼ିଛି। ନିର୍ଜନ, ନିସ୍ତବ୍ଧ ଗମ୍ଭୀର ଫୁଲଫୁଟା ରାତି। ନିର୍ଦ୍ଦିନରେ ଫୁଟୁଥାଅନ୍ତୁ ଫୁଲମାନେ ! ନିଶୂନ୍ ରାତିରେ ସମସ୍ତଙ୍କ ଅଜ୍ଞାତରେ ନିଶ୍ଚିନ୍ତରେ ରଙ୍ଗ ଆଉ ବାସ ଚହଟାଇ କାକରରେ ଭିଜି ଭିଜି ଫୁଟୁଥାଅ। ଆକାଶରେ ତାରାମାନେ ଆଉ ଧରଣୀରେ ଫୁଲମାନେ ଏକାଠି ମିଶି ରାତିସାରା ଫୁଟିବାର ମଉଚ୍ଛବରେ ମାତିଥାଅ।

ରାତି ପାହିଲେ, ସକାଳେ ଆସି ଆମେ ଦେଖିବୁ– ସବୁ ଗଛ ଉତ୍‌ଫୁଲ୍ଲିତ ହୋଇଛନ୍ତି। ଆମେ ମଧ ସେହି ପୁଷ୍ପିତ ପ୍ରଭାତର ସୁରଭିତ ବର୍ଣ୍ଣାଢ଼୍ୟ ଉତ୍‌ଫୁଲ୍ଲତାରେ କିଛିକ୍ଷଣ ଲାଗି ମିଶିଯିବୁ।

ମାତ୍ର ହାଇରେ କପାଳ ! ସକାଳେ ଆସି ଆପଣ ବଗିଚାଟିକୁ ଦେଖି ନିରାଶ ହୋଇଯିବେ। ବିମର୍ଷ ହୋଇଯିବେ। ଫୁଲ ସବୁ ଗଲେ କୁଆଡ଼େ ? ଆପଣ ଆକାଶକୁ ଚାହିଁବେ, ସେଠି ମଧ ସେଇ ନିରାଶକର ପରିସ୍ଥିତି। ସକାଳ ଆକାଶରେ ସାରା ରାତିର ସେଇସବୁ ଜୁଳୁ ଜୁଳୁ ତାରାମାନେ ମଧ ଗଲେ କୁଆଡ଼େ ? କିଏ ଆକାଶକୁ ତାରାଶୂନ୍ୟ କଲା ? ପ୍ରଭାତର ସୂର୍ଯ୍ୟ ? ନା–ନା ପ୍ରଭାତର ସୂର୍ଯ୍ୟ ଆକାଶର ଉଦ୍ୟାନରୁ ତାରାମାନଙ୍କୁ ଛଡ଼ାଇ ନେଇ ନାହାନ୍ତି। ଲଜ୍ଜାବତୀ ତାରାମାନେ ସୂର୍ଯ୍ୟକିରଣର ଅନ୍ତରାଳରେ କେବଳ ନିଜକୁ ଲୁଚାଇ ରଖିଛନ୍ତି ମାତ୍ର।

ମାତ୍ର କିଏ ଆପଣଙ୍କ ବଗିଚାରୁ ଫୁଲମାନଙ୍କୁ ଲୁଣ୍ଠନ କରିଛି ? ଜଣେ ନୁହେଁ ଦି' ଜଣ ବି ନୁହନ୍ତି। ଧାଡ଼ି ଧାଡ଼ି ହୋଇ ସେମାନେ ଆସନ୍ତି–ରାତି ପାହିବା ପୂର୍ବରୁ। ପୂର୍ବ ଦିଗରେ ଫସରା ଫାଟିନଥିବ– ସେମାନେ ଆସନ୍ତି। ପାଞ୍ଚବର୍ଷରୁ ପଚସ୍ତରୀ ବର୍ଷ ବୟସ ପର୍ଯ୍ୟନ୍ତ.....ଶିଶୁ, କିଶୋର, ଯୁବକ, ପ୍ରୌଢ଼, ବୃଦ୍ଧ, କିଶୋରୀ, ଯୁବତୀ, ପ୍ରୌଢ଼ା, ବୃଦ୍ଧା– ଲୁଚି ଲୁଚି ଆସନ୍ତି ଚୋରଙ୍କ ଭଳି– ଗୋଟିଏ ହାତରେ ଚାଙ୍ଗୁଡ଼ା– ଆର ହାତରେ ହାଲଙ୍କା ନଗିଟିଏ। ଫୁଲଙ୍କ ଠାରୁ ଆହୁରି ନୀରବତାରେ ସେମାନେ ପାଚେରୀ କଡ଼ ଗଛମାନଙ୍କରୁ ଲୁଟି ନିଅନ୍ତି କାଠଚମ୍ପା, କନିଅର, ଚମ୍ପା, କୃଷ୍ଣଚୂଡ଼ା, ଗୋଡ଼ିବାଣ। ପାଚେରୀ ଡେଇଁ ବଗିଚା ଭିତରେ ପଶି ଲୁଟି ନିଅନ୍ତି ସବୁତକ ଫୁଲ–

ଗୋଲାପ, ମଲ୍ଲୀ, ଗେଣ୍ଡୁ, ରଜନୀଗନ୍ଧା, ଛିନିଅାଁ, ଅପରାଜିତା, ଟଗର, ମାଳତୀ ଏବଂ ଆଉ ଯେତେ ଯାହା "ଫୁଲ। ଗଛକୁ ନଗି ନ ପାଇଲେ ଗଛରେ ଚଢ଼ି ଯାଆନ୍ତି– ଡାହି ଭାଙ୍ଗି ପକାନ୍ତି। ଗଛର ଡେମ୍ଫମାନଙ୍କରୁ ଫୁଲମାନଙ୍କୁ ଛିଣ୍ଡାଇ ଆଣନ୍ତି ନିଷ୍ଠୁରତାରେ– ଡକାୟତଟିଏ ସୁନ୍ଦରୀ ସ୍ତ୍ରୀ ଲୋକଟିର କାନରୁ ବା ନାକରୁ ସୁନା ଫୁଲଟିଏ ଝିଙ୍କି ନେଲାପରି।

ଖାଲି ଆପଣଙ୍କ ନିଜ ଘରର ବଗିଚା ନୁହଁ– ସ୍କୁଲ୍, କଲେଜମାନଙ୍କର ବଗିଚା, ମଠ ମନ୍ଦିରର ବଗିଚା ବି ଏହି ଫୁଲଚୋର ବା ଡକାୟତଙ୍କ ରାହାଜାନୀରୁ ରକ୍ଷା ପାଏ ନାହିଁ। ଏ ପ୍ରକାର ଫୁଲ ଡକାୟତି ଦିନୁ ଦିନ ବଢ଼ୁଛି ଏବଂ ଏହାର ପ୍ରତିକାର କରିବା ସହଜ ହେଉନାହିଁ। ଥାନାରେ ଜଣାଇଲେ– ପୋଲିସ୍‌ବାବୁ କହୁଛନ୍ତି–

'ମହାଶୟ! ଆପଣଙ୍କ ଘରର ଧନଦୌଲତ ଜଗିବାକୁ ତ ପୋଲିସ୍ ନାହାନ୍ତି ଯଥେଷ୍ଟ– ଆଉ ବଗିଚାରୁ ଫୁଲଙ୍କୁ ଜଗିବାକୁ ପୁଣି ପୋଲିସ୍ ଆସିବେ କୁଆଡୁ ?

ସତ କଥା! ଫୁଲଚୋରୀ ପ୍ରତି କାହାର ନିଘା ନାହିଁ। ଖାତିର୍ ନାହିଁ। ସତେକି ଫୁଲ କେବଳ ଏଇ ସବୁ ଚୋର ଡକାୟତଙ୍କ ଲୁଟିନେବା ପାଇଁ ଫୁଟିଥାନ୍ତି !!

କିନ୍ତୁ ମନରେ ପ୍ରଶ୍ନ ଉଠେ: ଯଦି ଫୁଲ ପ୍ରତି କାହାର ନିଘା ନାହିଁ– ତେବେ ଏତେ ଫୁଲ ଚୋରୀ ହେଉଛି କାହିଁକି ? କଣ କରୁଛନ୍ତି ସେମାନେ ଏଇ ଫୁଲକୁ ନେଇ ? ଫୁଲ କଣ ଖାଉଛନ୍ତି ? ଫୁଲ କଣ ଦିଅଁ ଦେବତାଙ୍କ ଠାରେ ଲଗାଇବା ପାଇଁ ନଉଛନ୍ତି ?

ଆରେ ଯାଃ! ଦିଅଁ ଦେବତା !! ଆଜିକାଲି କ'ଣ ଦିଅଁ ଦେବତାଙ୍କ ପାଇଁ ଫୁଲ ଦରକାର ପଡ଼ୁଛି ? ସହର ବଢ଼ୁଛି..ଲୋକ ସଂଖ୍ୟା ବଢ଼ୁଛି– ରାଜନୀତି ବଢ଼ୁଛି, ସଭା ସମିତି ବଢ଼ୁଛି, ସାହିତ୍ୟ ସଂସ୍କୃତି ବଢ଼ୁଛି– ବାହାଘର, ବ୍ରତଘର ବଢ଼ୁଛି। ଅଭ୍ୟର୍ଥନା, ଅଭିନନ୍ଦନ, ଉଦ୍‌ଘାଟନ, ଆବାହନ, ତିରୋଧାନ ସବୁ ବଢ଼ି ଚାଲିଛି। ମୁଖ୍ୟଅତିଥିଙ୍କ ପାଇଁ ଫୁଲମାଳ ଦରକାର– ମୁଖ୍ୟବକ୍ତା ସମେତ ଆଉ ପାଞ୍ଚଜଣ ଗୌଣବକ୍ତା ମିନିବକ୍ତା; ଉଦୀୟମାନ ବକ୍ତାମାନଙ୍କ ପାଇଁ ଫୁଲମାଳ କି ଫୁଲତୋଡ଼ା ଦରକାର। ମନ୍ତ୍ରୀଙ୍କ ପାଇଁ, ଏମ୍. ଏଲ. ଏଙ୍କ ପାଇଁ ଫୁଲମାଳ ଦରକାର– ବରକନ୍ୟା ପାଇଁ ଫୁଲମାଳ ଦରକାର। ବର ଯୋଉ ମଟରରେ ଯିବ– ସେ ମଟରର ସେହ ସାରା ଫୁଲହାର ପଡ଼ିବା ଦରକାର– ରାଜ୍ୟ ବାହାରୁ ବଡ଼ ନେତା ଆସିବେ, ଯୁଆଡ଼େ ଯୁଆଡ଼େ ଯିବେ, ତୋରଣ ହେବ ଫୁଲର ତୋରଣ। ମନ୍ତ୍ରୀ ଆସୁଛନ୍ତି ସଭାକୁ ମୁଖ୍ୟଅତିଥି ହୋଇ। ତାଙ୍କୁ ସଙ୍ଖୁଳିବା ପାଇଁ, ତାଙ୍କର କରୁଣାପ୍ରାର୍ଥୀମାନଙ୍କର ସବୁରି ହାତରେ ଫୁଲ ହାରଟିଏ । ମନ୍ତ୍ରୀଙ୍କ ବେକରେ ଆଉ ଜାଗା ନାହିଁ। ତଥାପି କୃପାପ୍ରାର୍ଥୀମାନେ ପ୍ରତ୍ୟେକ ଫୁଲ ହାରଟିଏ ଧରି ଭିଡ଼ ଠେଲି ମନ୍ତ୍ରୀଙ୍କ ପାଖକୁ ଆଗେଇ ଯାଉଛନ୍ତି–

"ଆହା ! ଫୁଲରେ ତାଙ୍କର ଶରଧା, ଫୁଲେ ଦିଶନ୍ତି ତୋରା। ଫୁରୁଛି ମୋ ବାମ ନୟନ ମତେ ଚାହିଁବେ ପରା" ।।

ଆଜିକାଲି ପୁଣି ଭାଗ୍ୟବାନ ଓ ଭାଗ୍ୟବତୀମାନଙ୍କୁ ଦୁଇଥର ଫୁଲଶେଯରେ ଶୋଇବାକୁ ପଡୁଛି। ମଧୁଶଯ୍ୟା ରାତିରେ– ବର ସଙ୍ଗେ କି ବଧୂ ସଙ୍ଗେ ମିଳିତ ହେଲା ବେଳେ ଏବଂ ଶେଷରେ ମଲା ପରେ କୋକେଇ ଶଯ୍ୟାରେ। ଆଜିକାଲି ଶବମାନଙ୍କ ଉପରେ କମ୍ ପୁଷ୍ପ ବୃଷ୍ଟି ହେଉଛି। ଶବ ଦୃଷ୍ଟିରୁ ଦେଖିଲେ– ମହାତ୍ମା ଗାନ୍ଧୀଙ୍କ ଶବ ଯାହା ଦେବଦାସ୍ ବାପୁଡ଼ାର ଶବ ସେଇଆ ନୁହଁ ତ ଆଉ କଣ ? ଅନ୍ତତଃ ଆଧୁନିକ ମଣିଷର ଆଖିରେ ସେଇଆ ନୁହେଁ ତ କ'ଣ ?

.....ତା' ହେଲେ ଭାବନ୍ତୁ ତ ଦେଖି, ଆଜିକାଲି ଫୁଲର କେତେ ଆବଶ୍ୟକତା ? ଆସିବ କୋଉଠୁ ଏତେ ଫୁଲ ? ସେଥିପାଇଁ ତ ସହରମାନଙ୍କରେ ଫୁଲର ଦୋକାନ ବଢ଼ି ଚାଲିଛି। ଫୁଲ ଚୋର ଓ ଡକାୟତ୍‌ମାନେ ଆପଣଙ୍କ ବଗିଚାରୁ ଫୁଲ ଚୋରି କରି ଏଇ ଦୋକାନମାନଙ୍କରେ ବିକ୍ରି କରି ପେଟ ପୋଷୁଛନ୍ତି।

ଏବେ ଭାବନ୍ତୁ ମହାଶୟ ! ଅପଣଙ୍କ ବଗିଚାରୁ ଚୋରି ଯାଇଥିବା ଫୁଲ କାହା ସେବାରେ ଲାଗିଛି ? ବେଳେ ବେଳେ ଭାବନା ହୁଏ ଯଦି ଫୁଲର ଏମନ୍ତ ଆବଶ୍ୟକ, ତା' ହେଲେ ସଭା ସମିତିରେ ବେକରେ ଫୁଲମାଳଟିଏ ପକାଇ ଦେବା ମାତ୍ରେ ମୁଖ୍ୟ ଅତିଥି ମହାଶୟ ବେକରେ ସାପଟି ଗୁଡ଼ାଇ ହୋଇଯିବା ଭଳି ଅନୁଭବ କରି ହୁ–କିନା ବେକରୁ ସେଇଟା କାଢ଼ି ଟେବୁଲ୍ ଉପରେ ଥୋଇ ଦିଅନ୍ତି କାହିଁକି ।।

❋❋

# କିଏ ପୂଜକ ? କିଏ ପୁରୋହିତ ?

ଧର୍ମ ମନ୍ଦିରରେ ଯେ କୌଣସି ଜାତି ବା ସମ୍ପ୍ରଦାୟର ଲୋକ ଦେବସେବା କରି ପାରିବ କି ନାହିଁ, ସେ ସମ୍ବନ୍ଧେ ନୀତିଗତ ସିଦ୍ଧାନ୍ତ ଦେବାଲାଗି ତାମିଲନାଡୁ ସରକାର ଏବେ ଗୋଟିଏ ଉଚ୍ଚ କ୍ଷମତା ସମ୍ପନ୍ନ କମିଟି ବସାଇଛନ୍ତି। ଏହି କମିଟି ଛ' ମାସ ସମୟ ଭିତରେ ସମସ୍ତ ଧର୍ମଶାସ୍ତ୍ର ସ୍ମୃତି ସଂହିତାଦି ଅଧ୍ୟୟନ କରି ଓ ପରସ୍ପର ମଧ୍ୟରେ ଖୁବ୍ ବ୍ୟାପକ ଗଭୀରଭାବେ ଆଲୋଚନା କରି ସାରି ସିଦ୍ଧାନ୍ତ ଦେବେ। ଦେବପୂଜା ବା ସେବାନୀତି ଇତ୍ୟାଦିର ଅର୍ଥ ହେଲା– ମନ୍ଦିରରେ ଯେଉଁ ବିଗ୍ରହବନ୍ତ ଦେବତା ଅଛନ୍ତି, ତାଙ୍କୁ ମନ୍ତ୍ର ପଢ଼ି ସ୍ନାନ ମାର୍ଜଣାଦି କରାଇବା– ଫୁଲ ଚନ୍ଦନାଦି ଲାଗି କରିବା ଓ ଅନ୍ନଲଣିଆ ଭୋଗ ଲଗାଇବାର ଅଧିକାର। ଯେ କୌଣସି ଜାତି ବା ସଂପ୍ରଦାୟର ଅର୍ଥ ହେଲା– ବ୍ରାହ୍ମଣ ସମେତ କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଓ ହରିଜନ–ଗିରିଜନ ଇତ୍ୟାଦି ଯେଉଁମାନେ ଗୋଟିଏ ଧର୍ମର ଅନ୍ତର୍ଭୁକ୍ତ।

ପ୍ରକାଶ ଥାଉକି, ଗତ କେତେ ବର୍ଷ ହେଲା– ତାମିଲ୍‌ନାଡୁରେ ବ୍ରାହ୍ମଣେତର ଜାତିମାନେ ପକ୍ଷରୁ ବାରଂବାର ତୀବ୍ର ଦାବୀ ହୋଇ ଆସୁଛି ଯେ ଆଧୁନିକ କାଳରେ ନୀତିଗତ ଭାବେ ଓ ତତ୍ତ୍ୱସମ୍ମତ ଭାବେ ଜାତି ଭେଦ ପ୍ରଥା ଉଠିଯିବା ପରେ ମନ୍ଦିରମାନଙ୍କରେ ସେବା ପୂଜା କରିବାର ଅଧିକାର ଏବଂ ଶ୍ରାଦ୍ଧ, ବିବାହ, ବ୍ରତ, ପ୍ରତିଷ୍ଠା, ହୋମ ଯଜ୍ଞ ଇତ୍ୟାଦିରେ କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ବା ହରିଜନ ଶ୍ରେଣୀର ଲୋକଙ୍କୁ ପୌରହିତ୍ୟ କରିବାର ଅଧିକାର ମିଳିବ ନାହିଁ କାହିଁକି ? ଏବଂ ବ୍ରାହ୍ମଣେତର ଜାତିର ଏହି ଦାବୀ ବିରୋଧରେ ସେଠାକାର ବ୍ରାହ୍ମଣମାନେ ମଧ୍ୟ ଶାସ୍ତ୍ର, ସ୍ମୃତି ସଂହିତାଦିର ଦ୍ୱାହି ଦେଇ ପ୍ରତିବାଦ କରି ଆସିଛନ୍ତି ଏବଂ ତାମିଲ୍‌ନାଡୁର ଏକ ପ୍ରସିଦ୍ଧ–ମନ୍ଦିରରେ ଏହି ପ୍ରଶ୍ନ ନେଇ ଦୁଇ ଗୋଷ୍ଠୀ ମଧ୍ୟରେ ଖୁବ୍ କନ୍ଦଳ ସୃଷ୍ଟି ହେଲା ପରେ ବିବାଦଟି ବିଚାର ବିଭାଗ ହାତକୁ ଯାଇଥିଲା ଏବଂ ବିଚାର ବିଭାଗୀୟ ରାୟ ସେତେବେଳେ ଗୋଟିଏ ସ୍ତରରେ ବ୍ରାହ୍ମଣମାନଙ୍କ ସପକ୍ଷରେ ଯାଇଥିଲା। ତା'ପରେ ଏହି ବିବାଦଟି ଆଉ ଏକ ବିଶେଷ ମନ୍ଦିର ବା ଗୋଷ୍ଠୀ ମଧ୍ୟରେ ସୀମାବଦ୍ଧ ନ ରହି ଏକ ସାମାଜିକ ଧର୍ମୀୟ ଆନ୍ଦୋଳନରେ ପରିଣତ ହେବାରୁ ତାମିଲନାଡୁ ସରକାର ଏହାର ଚିରମୀମାଂସା ପାଇଁ ଏକ କମିଶନ ବସାଇଛନ୍ତି।

ପ୍ରକାଶ ଥାଉକି, ତାମିଲ୍‌ନାଡୁର ଏହି ସମସ୍ୟାଟିକୁ ବର୍ତ୍ତମାନ କେବଳ ସେଇ ରାଜ୍ୟରେ "ଆବଦ୍ଧ ନ ରଖି, ଆମେ ଏହାକୁ ଏକ ସର୍ବରାଜ୍ୟର ହିନ୍ଦୁ ସମସ୍ୟା

ବୋଲି ବିଚାରବା। ଗତ ଚାରି ପାଞ୍ଚ ବର୍ଷ ତଳେ ଉପକୂଳ ଓଡ଼ିଶାର କେତେକ ସ୍ଥାନରେ କେତେକ ସଂସ୍କାରବାଦୀ ହରିଜନ ନେତା, ବ୍ରାହ୍ମଣ ଓ ବ୍ରାହ୍ମଣେତର ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସମର୍ଥନରେ ଏକ ଆନ୍ଦୋଳନ ଆରମ୍ଭ କରିଥିଲେ। ସେମାନଙ୍କର ଦାବୀ ତାମିଲ୍‌ନାଡ଼ୁର ଅନୁରୂପ। କିନ୍ତୁ ସେମାନଙ୍କର ଆଉ ଗୋଟିଏ ଦାବୀ ଅଧିକା ଥିଲା। ତା' ହେଲା– ଯେଉଁ ବ୍ରାହ୍ମଣମାନେ ଅନ୍ୟ ଜାତି ଘରେ ହୋମ, ବିବାହ, ଜନ୍ମ ଓ ମୃତାହାଦି ବ୍ୟାପାରରେ ପୌରହିତ୍ୟ କରୁଛନ୍ତି, ସେମାନେ ହରିଜନଙ୍କ ଘରେ ସେମିତି ପୌରହିତ୍ୟ ନ କରିବେ କାହିଁକି ?

ଏବଂ ଏହି ଆନ୍ଦୋଳନରେ ଏକ ଆଂଶିକ ସଫଳତା ମଧ୍ୟ ହୋଇଥିଲା। ସେତେବେଳେ ଗୋଟିଏ ଗ୍ରାମରେ କେତେଜଣ ସଂସ୍କାରବାଦୀ ବ୍ରାହ୍ମଣ ଯୁବକ ହରିଜନଙ୍କ ଘରକୁ ଯାଇ ପୌରହିତ୍ୟ କରିଥିଲେ। ଏକ ନବ ନିର୍ମିତ ଓ ନବ ପ୍ରତିଷ୍ଠିତ ଶିବ ମନ୍ଦିରରେ ଜଣେ ହରିଜନ ମଧ୍ୟ ପୂଜକର କାର୍ଯ୍ୟ କରିଥିଲେ। ଏହି ଘଟଣାରେ ଏକ ଉତ୍ସବ ସମାରୋହ ମଧ୍ୟ ହୋଇଥିଲା। କିନ୍ତୁ ସେ ଦିଗରେ ସେହି ଘଟଣାଟି ବ୍ୟତିତ ଆଉ ଅନ୍ୟତ୍ର ଏହାର ପୁନରାବୃତ୍ତି ଘଟିଲା ନାହିଁ।

ଏବେ ଏ କ୍ଷେତ୍ରରେ ଓଡ଼ିଶାର ସାମାଜିକ ଓ ଧର୍ମୀୟ ଅନୁଷ୍ଠାନ କ୍ଷେତ୍ରରେ କିଛି ସ୍ୱାତନ୍ତ୍ର୍ୟ ମଧ୍ୟ ଅଛି। ଜାତିଭେଦ–ଭାବ ଭାରତ ବର୍ଷର ଅନ୍ୟ ରାଜ୍ୟରେ ଯେତେ ତୀବ୍ର ଓ ମାରତ୍ମକ, ଓଡ଼ିଶାରେ ତାହା ସେତେଦୂର ନଥିଲା ବା ନାହିଁ। (ଅବଶ୍ୟ ସଂପ୍ରତି ହୀନବୁଦ୍ଧି ସ୍ୱାର୍ଥପର ରାଜନୀତି ବେପାରୀମାନେ ତାହା ସୃଷ୍ଟି କରିବାରେ ଲାଗି ପଡ଼ିଛନ୍ତି।) ଏହାର କାରଣ ହେଲା, ଓଡ଼ିଆଙ୍କ ଚେତନାରେ ଜଗନ୍ନାଥ ସଂସ୍କୃତିଟି ଖୁବ୍ ଗଭୀରକୁ ଚେର ମାଡ଼ି ରହିଛି। ଜଗନ୍ନାଥ ସଂସ୍କୃତିରେ ଜାତିଭେଦ ନାହିଁ। ଅବଶ୍ୟ ଏହା ବର୍ତ୍ତମାନ ତତ୍ତ୍ୱତଃ ଯେତେ ଅଛି– କାର୍ଯ୍ୟତଃ ସେତେ ନାହିଁ। କେବେ ମହାପ୍ରସାଦ ଗ୍ରହଣରେ ଓ ରଥଯାତ୍ରା ବେଳେ ଜାତିଭେଦ ଏଠି ସତକୁ ସତ ନାହିଁ।

ଆଉ ଗୋଟିଏ କଥା ହେଲା– ଓଡ଼ିଶାର ବହୁ ଶିବମନ୍ଦିରରେ ବ୍ରାହ୍ମଣଙ୍କ ବ୍ୟତୀତ ଶୂଦ୍ରମାନଙ୍କୁ ମଧ୍ୟ ପୂଜାଧିକାର ମିଳିଛି। "ମାଳି" ବୋଲି ଏକ ଜାତି ବରାବର ଶିବ ମନ୍ଦିରରେ ପୂଜା କରି ଆସୁଛନ୍ତି। ତା' ଛଡ଼ା ବହୁ ଠାକୁରାଣୀ ବା ଦେବୀ ମନ୍ଦିରରେ 'ରାଉଳ' ଜାତି ଏବଂ ଅନ୍ୟ ଜାତି ମଧ୍ୟ ପୂଜାଧିକାର ପାଇଛନ୍ତି। ତେବେ କୌଣସି ସ୍ଥାନରେ ବ୍ରାହ୍ମଣେତର ଜାତିକୁ ଧର୍ମୀୟ ସାମାଜିକ ଅନୁଷ୍ଠାନରେ ପୌରୋହିତ୍ୟ କରିବାର ଅଧିକାର ମିଳିନାହିଁ।

କିନ୍ତୁ ଉପଯୁକ୍ତ ପ୍ରଶ୍ନଟି ହେଲା– ବର୍ତ୍ତମାନ ଯୁଗରେ ହିନ୍ଦୁ ଧର୍ମରେ ଯେତେବେଳେ ଆମେ ଜାତିଭେଦ ପ୍ରଥାକୁ ଉଠାଇ ଦେଲୁଣି– ସେତେବେଳେ ଏହି ସମସ୍ୟାଟିର ମଧ୍ୟ ସମାଧାନ ହୋଇଯିବା ଉଚିତ୍। ଏକଥା ବର୍ତ୍ତମାନ ସମସ୍ତେ ସ୍ୱୀକାର କରିବେ ଯେ,

ବର୍ତ୍ତମାନ ବଂଶାନୁକ୍ରମିକ ଯୋଉ ବ୍ରାହ୍ମଣମାନେ ଦେବପୂଜା ଓ ପୌରୋହିତ୍ୟାଦି କାର୍ଯ୍ୟ କରୁଛନ୍ତି–ସେମାନଙ୍କ ଭିତରୁ ଶତକଡ଼ା ଅନେଶୋତ ଜଣ ସଂସ୍କୃତ ପଢ଼ି ନାହାନ୍ତି। ପୂଜା ଓ କର୍ମ କର୍ମାଦିରେ ମନ୍ତ୍ର ଶିଖିନାହାନ୍ତି ଓ ଯାହା ଯେତିକି ଶିଖିଛନ୍ତି, ତାହା ମଧ ଅଧାପନ୍ତରିଆ ଭୁଲ୍‌ଭାଲ୍ କରି ଶିଖିଛନ୍ତି ଓ ପ୍ରୟୋଗ କରୁଛନ୍ତି। ତା' ଛଡ଼ା ଦେବପୂଜା ଓ ପୌରୋହିତ୍ୟକର୍ମ ମଧ ବର୍ତ୍ତମାନ ଆର୍ଥିକ ଦୃଷ୍ଟିରୁ ଆଦୌ ଲାଭଜନକ ହୋଇ ନଥିବାରୁ ଏଥିରେ ଧୀମାନ୍ ଓ ଉଦ୍‌ଯୋଗଶୀଳ ଲୋକମାନେ ନିଯୁକ୍ତ ହେଉନାହାନ୍ତି। ଆଜିକାଲି ସହର ବଜାର କଥା କଣ କହିବା– ଗାଁ ଗହଳରେ ବି ବ୍ରାହ୍ମଣପୂଜକ ଓ ପୁରୋହିତଟିଏ ମିଳିବା କଷ୍ଟକର ହେଲାଣି। କାରଣ ବୃତ୍ତି ହିସାବରେ ଏହା ଆଉ ଅର୍ଥନୀତି ଭିତରକୁ ଆସୁନାହିଁ। ଏଣେ ଲୋକେ ମଧ କେବଳ ପ୍ରଥାମାତ୍ର ରଖିବା ପାଇଁ ବ୍ରାହ୍ମଣ ପୂଜକ ପୁରୋହିତଙ୍କ ସାହାଯ୍ୟ ନିଅନ୍ତି– ସେମାନଙ୍କୁ ବା ସେମାନଙ୍କର କାର୍ଯ୍ୟକୁ ଆଉ ସେତେ ଗୁରୁତ୍ୱ ଦେଉନାହାନ୍ତି। ଫଳରେ ଦେବପୂଜା ଓ ପୌରୋହିତ୍ୟ କାର୍ଯ୍ୟ କରିବାକୁ ମଧ ବ୍ରାହ୍ମଣ ଯୁବକମାନେ ଆଉ ଆଗ୍ରହ ଦେଖାଉ ନାହାନ୍ତି। ତେଣୁ ବହୁ କ୍ଷେତ୍ରରେ ବ୍ରାହ୍ମଣ କୁଳ ଜାତିର ଅତି ଅଧମ ଅଜ୍ଞାନ ଅପାରଗ ଲୋକହିଁ ବର୍ତ୍ତମାନ ଦେବପୂଜା ଓ ପୌରୋହିତ୍ୟକୁ ଆଶ୍ରୟ କରୁଛନ୍ତି।

ଏହି ପରିପ୍ରେକ୍ଷୀରେ, ଯଦି ସତକୁ ସତ ଆମେ ମନ୍ଦିରରେ ପୂଜକ ଓ ଅନ୍ୟାନ୍ୟ ଧର୍ମୀୟ କ୍ରିୟାକାଣ୍ଡରେ ପୁରୋହିତଙ୍କ ଆବଶ୍ୟକତା ଅନୁଭବ କରୁଥାଉ– ତେବେ ଆଉ ବର୍ତ୍ତମାନ କେବଳ ବ୍ରାହ୍ମଣକୁଳ ଉପରେ ସେଥିଲାଗି ନିର୍ଭର କରିବା କାହିଁକି? ବର୍ତ୍ତମାନ ସବୁ କୁଳ ଓ ବର୍ଣ୍ଣର ଲୋକଙ୍କୁ ସେ ସୁଯୋଗ ଦେବା ଉଚିତ୍। ଯେମିତି ଚାକିରି ବାକିରି କ୍ଷେତ୍ରରେ, ରୋଷେଇ କାର୍ଯ୍ୟରେ, ଦରଜି କାର୍ଯ୍ୟରେ, ପାନ ଦୋକାନରେ, ସୈନ୍ୟ ବିଭାଗରେ, ଏମ୍.ଏଲ୍.ଏ, ଏମ୍.ପି, ନିର୍ବାଚନରେ ଯୋଗଦେବା ପାଇଁ ଆମେ ସବୁବର୍ଣ୍ଣର ଲୋକଙ୍କୁ ସମାଧିକାର ଦେଇଛୁ। ଏହାହିଁ ସର୍ବୋତ୍ତମ ଯୁକ୍ତି ଓ ସର୍ବମଙ୍ଗଳ ସିଦ୍ଧାନ୍ତ।

କିନ୍ତୁ ବ୍ରାହ୍ମଣ କୁଳ–ଜାତ ଲୋକମାନେ ତଥାପି ଏକଥା ବୁଝୁ ନାହାନ୍ତି କି ମାନୁନାହାନ୍ତି। ବ୍ରାହ୍ମଣ କୁଳରେ ଦୈବାତ୍ ଜନ୍ମଗ୍ରହଣ ବ୍ୟାପାରକୁ ସେମାନେ ସ୍ୱାଧିକାର ବୋଲି ତଥାପି ଭାବୁଛନ୍ତି ଏବଂ ତାହାହିଁ ସେମାନଙ୍କର ଶ୍ରେଷ୍ଠତ୍ୱର ଏକମାତ୍ର ପ୍ରମାଣ ବୋଲି ମଧ ଦାବୀ କରୁଛନ୍ତି।

ଏ ପ୍ରସଙ୍ଗରେ ସେଦିନ କୋଣାର୍କ ନିକଟସ୍ଥ ରାମଚଣ୍ଡୀଙ୍କ ମନ୍ଦିର ପାଖରେ ଥିବା ବରଗଛ ମୂଳେ ତ୍ରିନାଥମେଳା ଅନୁଷ୍ଠାନର ଜଣେ ବିଶିଷ୍ଟ ସଭ୍ୟ ଶ୍ରୀ ନକୁଳି ବେହେରା ଯୋଉ ମତ ଦେଇଥିଲେ– ତାହା ନିଶ୍ଚୟ ପ୍ରଣିଧାନଯୋଗ୍ୟ। ତିନିଥର ଗଞ୍ଜେଇ ଚିଲମଟି ଶୋଷି ନାସିକା ଦ୍ୱାରରେ ଧୂମତଙ୍କ ଉଦ୍‌ଗୀରଣ କରିସାରିବା

ପରେ ଖୁବ୍ ସମାଛନ୍ନ ବିଜଡ଼ିତ ଗଳାରେ ନକୁଳି ବେହେରା ଢୁଲୁ ଢୁଲୁ ଅର୍ଦ୍ଧଦୃଷ୍ଟିରେ ସମସ୍ତଙ୍କୁ ଚାହିଁ ଗମ୍ଭୀର ଗଳାରେ ରହି ରହି ପଦେ ପିଣ୍ଡ ବ୍ରହ୍ମାଣ୍ଡ ଭଜନ ଗାଇଲେ–

ଦିଅଁ ଦେଖି ଯିବାଲୋ ସହୀ। ଦେଉଳରେ ଦିଅଁ ଦେବତା ନାହିଁ।

ସିନ୍ଧୁ– ତଟ– ବଟ–କୂଟରେ– ପ୍ରକଟ– ଦିଅଁ ଖେଳୁଅଛି ଶୂନ୍ୟରେ ରହି।

ଦିଅଁ ଦେଖି ଯିବାଲୋ ସହୀ।......

ଭଜନଟି ଗାଇସାରି ନକୁଳି ବେହେରା ହାତଟେକି ସମବେତ ସମସ୍ତଙ୍କ ଉଦ୍ଦେଶ୍ୟରେ ଏକ ମହାନ୍ ବାଣୀ ପ୍ରଦାନ କଲେ–

ବୁଝିଲ ଭାଇମାନେ! ମୁଁ କହୁଛି– ଆଗ ସବୁ ଦେଉଳର କବାଟ ବନ୍ଦକରି କୋଲପ ପକାଇ ଦିଅ। ଛତିଶି ପାଟକର ସବୁଙ୍କୁ ଡାକି ଏକାଠି କର। କହ– ଦେଖା ଭାଇ। ଚଣ ଜଣ କରି ସମସ୍ତେ ବାହାରେ ରହି ଦେବତାକୁ ଡାକ। ଯାହା ଡାକରେ ଛାଏଁ ଛାଏଁ ଦେଉଳ ଦୁଆର ଖୋଲିଯିବ– ଆମେ ତାକୁଇ କହିବୁ ବ୍ରାହ୍ମଣ। ସେଇ ହେବ ଆମର ପୂଜକ ଆଉ ପୁରୋହିତ। ସେଇ ହେବ ଆମ ଛତିଶ ପାଟଙ୍କ ଉପରେ ରାଜା। ତା'ରି ଗଳାରେ ଶୂନ୍ୟପୁରୁଷ ପଇତା ପକାଇ ଦେବେ।

ପାଠକେ! କୁହନ୍ତୁ ଦେଖି– ନକୁଳି ବେହେରାଙ୍କ ତୁଣ୍ଡ– ନିଃସୃତ ଏହି ବିଜ୍ଞ ବାଣୀ କଣ କେବଳ ଗଞ୍ଜେଇ– ଚିଲମ– ପ୍ରଣୋଦିତ ?



# ସରିତାଂ ମହାନ୍ତି କାନ୍ଦୁଛି......

ସରିତା କାନ୍ଦୁଛି। କାହିଁକି କାନ୍ଦୁଛି ସରିତା ? ସେଇ ଯେ କଲେଜକୁ ଯାଇଥିଲା ଦିନ ଏଗାରଟାରେ– ତା' ପରେ ଘରକୁ ଫେରି ବିଛଣାରେ ମୁହଁମାଡ଼ି ଯେ କାନ୍ଦୁଛି– କାନ୍ଦୁଛି। ମଝିରେ କାନ୍ଦୁ କାନ୍ଦୁ ଶୋଇ ପଡ଼ିଥିଲା। ନିଦ ଭାଙ୍ଗିଗଲା ପରେ ଫେର୍ କାନ୍ଦୁଛି। ଖିଆ ନାହିଁ ପିଆ ନାହିଁ। ସଞ୍ଜ ବୁଡ଼ିଲାଣି କେତେବେଳୁ। କାହାକୁ ସେ କାନ୍ଦିବାର କାରଣ କହୁନାହିଁ। କିନ୍ତୁ ବାପା ଅଫିସରୁ ଫେରି ଯେତେବେଳେ ଝିଅକୁ ବହୁତ ଗେଲ ଆଦର କରି କାରଣଟି ବାରମ୍ବାର ପଚାରିଲେ– ସରିତା କ୍ରୋଧ ଗଦ୍‌ଗଦ୍ ହୋଇ କହିଲା ତା'ର କାନ୍ଦିବାର କାରଣ।

ସରିତା ମହାନ୍ତି ବି:ଏ. ଅନର୍ସ ପରୀକ୍ଷା ଦେଇଥିଲା। ଅନର୍ସ ଥିଲା ଅର୍ଥନୀତି। ମାତ୍ର ପରୀକ୍ଷା ଫଳ ବାହାରିଲା ପରେ ଦେଖାଗଲା– ତାର ଅନର୍ସ କଟି ଯାଇଛି– ଖାଲି ପାଶ୍। କେମିତି ଏମିତି ହେଲା ?

ସରିତା ଭଲ ଛାତ୍ରୀ। କଲେଜରେ ସେ ତାର ଅନର୍ସ ପରୀକ୍ଷାମାନଙ୍କରେ ଅନ୍ତତଃ ଅଠାବନ, ଅଣଷଠୀ ପରସେଣ୍ଟ ରଖୁଥିଲା। ତା'ର ପ୍ରଫେସରମାନେ କହନ୍ତି– ସରିତା ଆଉ ସାମାନ୍ୟ ଚେଷ୍ଟା କଲେ, ଅନ୍ତତଃ ଥାର୍ଡ଼ପେପର୍‌ଟାକୁ ଭଲ କରି ପଢ଼ିଲେ, ତାର ଫାଷ୍ଟକ୍ଲାସ୍ ଅନର୍ସ ସୁନିଶ୍ଚିତ।

ତା' ହେଲେ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ତା ଅନର୍ସ କଟିଗଲା କିପରି ? ନିଜେ ସରିତା କହେ ଯେ, ସେ ସବୁ ପେପର୍‌ରେ ବେଶ୍ ଭଲ କରିଥିଲା। ପ୍ରଥମଶ୍ରେଣୀ ନହୋଇପାରେ, ମାତ୍ର ଅଠାବନ ପରସେଣ୍ଟ ମାର୍କ ପାଇ ଅନର୍ସ ନିଶ୍ଚୟ ରହିବା କଥା।

ତା' ହେଲେ ଅନର୍ସ ରହିଲା ନାହିଁ କିପରି ? ସରିତା କହେ– ତା' କ୍ଲାସ୍‌ରେ ଜୟନ୍ତୀ ଦାସ ତା' ଠାରୁ ଖୁବ୍ କମ୍ ନମ୍ବର ରଖିଥିଲା। ମାତ୍ର ତା'ର ବାପା ବଡ଼ ହାକିମ– ଖୁବ୍ ପ୍ରଭାବଶାଳୀ। ତା' ପାଇଁ ବହୁ ଲୋକ ପରୀକ୍ଷକମାନଙ୍କୁ ପାଖକୁ ଯାଇ ତା' ପାଇଁ ଫାଷ୍ଟକ୍ଲାସ୍ ମାର୍କ ଯୋଗାଡ଼ କଲେ। ଜୟନ୍ତୀ ଫାଷ୍ଟ କ୍ଲାସ୍ ପାଇଲା।

ସରିତା କାନ୍ଦି କାନ୍ଦି କହେ– ଜୟନ୍ତୀ ଦାସ ଫାଷ୍ଟକ୍ଲାସ୍ ପାଉ କି ଫାଷ୍ଟକ୍ଲାସ୍ ଫାଷ୍ଟ ହେଉ– ସେଥିରେ ମୋର କଣ ଯାଏ ? କିନ୍ତୁ ମୋର ଅନର୍ସ କଟିଗଲା କାହିଁକି ?

ସରିତା ଯେଉଁ କଲେଜରେ ପଢ଼େ—ସେ କଲେଜର ବିଶିଷ୍ଟ ଅଧ୍ୟାପକ ଡକ୍ଟର ଅମୁକ ମିଶ୍ର କହନ୍ତି— ଆମ କଲେଜର ଖାତା ସବୁ ଯୋଉ ଯୋଉ କଲେଜ ଅଧ୍ୟାପକମାନଙ୍କ ପାଖକୁ ଯାଉଛି— ମୋର ଦୃଢ଼ ଧାରଣା, ସେମାନେ ଖାତା ଦେଖୁ ନାହାନ୍ତି ଭଲକରି। ସେମାନଙ୍କ ଭିତରୁ ଅଧିକାଂଶଙ୍କୁ ମଧ୍ୟ ପାଠ ଜଣାନାହିଁ ଭଲ କରି। ତେଣୁ ସରିତା ପ୍ରଭୃତିଙ୍କର ଅନର୍ସ ରହିବା ସହଜ ନୁହଁ।

ସରିତା ମହାନ୍ତିର କ୍ଲାସ୍‌ମେଟ୍ ପ୍ରମୋଦ ଶତପଥୀ କହନ୍ତି— ଗତ ପରୀକ୍ଷାରେ ଯୋଉ ପ୍ରଥମ ଦଶଜଣ ପ୍ରଥମ ଶ୍ରେଣୀରେ ପାସ୍ କରିଛନ୍ତି; ସେମାନଙ୍କ ଭିତରୁ ଆଠଜଣଙ୍କ ପାଇଁ ସେମାନଙ୍କର ପ୍ରଭାବଶାଳୀ ବାପାମାନେ ଅଥବା ସେମାନଙ୍କର ଦୂତ, ସେନାପତି, କଟୁଆଳମାନେ ଅଥବା ବନ୍ଧୁ ବାନ୍ଧବମାନେ ଓଡ଼ିଶାର ତେରଟି ଯାକ ଜିଲ୍ଲାର ସେଇ ସେଇ କଲେଜମାନଙ୍କୁ ଦଉଡ଼ ଧାପଡ଼ କରି—ନାନାଦି ଉପାୟରେ ପରୀକ୍ଷକଙ୍କୁ ବଶୀଭୂତ କରି ସେଇ ପିଲାମାନଙ୍କୁ ପ୍ରଥମ ଦଶଜଣଙ୍କ ଭିତରେ ରଖାଇଛନ୍ତି।

ଅମୁକ କଲେଜର ଜଣେ ଅଭିଜ୍ଞ ଅଧ୍ୟାପକ, ଯେ କି ପ୍ରାୟ ଇ ତାଙ୍କ ସବ୍‌ଜେକ୍ଟରେ ଚିଫ୍ ଏକ୍‌ଜାମିନର ଥାଆନ୍ତି— ସେ କହନ୍ତି, ମୋ ପାଖକୁ ଏତେ ଲୋକ ଆସି ତାଙ୍କ ସମ୍ପର୍କୀୟ ପିଲାମାନଙ୍କ ଖାତାରେ ନମ୍ବର ବଢ଼ାଇବାକୁ ମୋତେ କାନ୍‌ଭାସ୍ କରିଛନ୍ତି— ମୁଁ ଯଦି ସେମାନଙ୍କ ନାମ ପ୍ରକାଶ କରିଦିଏ, ତେବେ ସାରା ରାଜ୍ୟରେ ବହୁ ବଡ଼ ବଡ଼ ମୁଣ୍ଡ ତଳେ ଖସି ପଡ଼ିବ। କିନ୍ତୁ ମୁଁ ନାଚାର। କାରଣ, ତା' ପରେ ମୋର ଜୀବନ ଉପରେ ଆଞ୍ଚ ଆସି ଯାଇପାରେ।

ଆଉ ଜଣେ ପରୀକ୍ଷକ ଅଧ୍ୟାପକ କହନ୍ତି— ଅନ୍ୟ ଲୋକଙ୍କ କଥା କାହିଁକି ପଡ଼ିଛି ? ଶିକ୍ଷା ବିଭାଗରେ ବଡ଼ ବଡ଼ କର୍ତ୍ତାମାନେ ଯେଉଁମାନେ କପି କରୁଥିବା ପିଲାମାନଙ୍କୁ ଶୂଳିରେ ଚଢ଼େଇ ଦେବାକୁ ହମ ହମ ହେଉଥାନ୍ତି— ସେମାନେ ମଧ୍ୟ ସେମାନଙ୍କ ପିଲାମାନଙ୍କୁ ପାଶ୍ କରାଇ ଦେବାକୁ ଅଥବା ପ୍ରଥମଶ୍ରେଣୀ ଦେବାକୁ ଅଥବା ପ୍ରଥମ ଦଶଜଣଙ୍କ ଭିତରେ ରଖି ଦେବାକୁ ପରୀକ୍ଷକମାନଙ୍କ ଉପରେ ନାନାଦି ପ୍ରକାରେ ଚାପ ପକାଇଥାନ୍ତି।

ପ୍ରଥମ ଶ୍ରେଣୀରେ ଅନର୍ସ ରଖି ବି.ଏ. ପାସ୍ କରିଥିବା ଜଣେ ପିଲାର ବାପା ଅକପଟ ଭାବରେ କହିବାର ଶୁଣାଗଲା ଯେ, ସେ ଗତ ପରୀକ୍ଷାରେ ତାଙ୍କ ପିଲାକୁ ପ୍ରଥମ ଶ୍ରେଣୀରେ ପାସ୍ କରାଇବା ଲାଗି ଏଠିକି ସେଠିକି ଯିବା ଆସିବା ବାବତ ଖର୍ଚ୍ଚ ବ୍ୟତୀତ ଦୁଇ ହଜାର ଟଙ୍କା ପର୍ଯ୍ୟନ୍ତ ଅଧିକା ଖର୍ଚ୍ଚ କରିଛନ୍ତି ଏବଂ ସେ ଭଦ୍ରଲୋକ ଆପଣାର ଏହି ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟକୁ ସାମାଜିକ ଦୃଷ୍ଟିରୁ ସମର୍ଥିତ କରିବା ଲାଗି ଆଉ ତିନୋଟି ବିଶିଷ୍ଟ ଅଭିଭାବକଙ୍କ ନାମ କହନ୍ତି, ଯେଉଁମାନେ କି, ଏଥିପାଇଁ ତାଙ୍କଠାରୁ ଅଧିକ ଟଙ୍କା ଖର୍ଚ୍ଚ କରିଛନ୍ତି ବୋଲି ସେ ସେମାନଙ୍କ ସ୍ୱମୁଖରୁ ସ୍ପଷ୍ଟ ଭାବେ ଶୁଣିଛନ୍ତି।

ଜଣେ ସ୍ୱନାମଧନ୍ୟା ଅଧ୍ୟାପିକାଙ୍କ ସହିତ ଆମ ପରୀକ୍ଷା, ପରୀକ୍ଷାର୍ଥୀ ପରୀକ୍ଷକ ଓ ପରୀକ୍ଷା ଫଳ ଆଦି ସମ୍ବନ୍ଧେ ଆଲୋଚନା କଲାବେଳେ, କଥା ପ୍ରସଙ୍ଗରେ ସେ ମହୋଦୟା କହିଲେ ଯେ, ଏଥିରୁ ଆଉ କାହାର ନିସ୍ତାର ନାହିଁ। କାରଣ କଲେଜମାନଙ୍କରେ ପାଠ ଯେମିତି ପଢ଼ାଯାଉଛି, ପିଲାଏ ଯେମିତି ପାଠ ପଢ଼ୁଛନ୍ତି, ପରୀକ୍ଷା ଯେମିତି କରାଯାଉଛି, ପରୀକ୍ଷକମାନେ ଯେମିତି ଖାତା ଦେଖୁଛନ୍ତି– ପରୀକ୍ଷାଫଳ ଯେମିତି ବାହାରୁଛି– ଏସବୁକୁ ଦେଖି ବିଚାର କଲେ– ଆପଣ ଯଦି ଅପଣଙ୍କ ପିଲାକୁ ଜୀବନରେ ଠିଆ କରାଇବାକୁ ଚାହାନ୍ତି– ତା' ହେଲେ ତାକୁ ମୂଳରୁ ଘରେ ଟିଉସନ୍ କରାନ୍ତୁ ଏବଂ ସେ ପରୀକ୍ଷା ଦେଇ ସାରିଲା ପରେ ତା'ର ଖାତା ସବୁ କୋଉଠି ପଡ଼ିଛି ତା'ର ଠିକଣା, ଯେ କୌଣସି ଉପାୟରେ ଓ ମୂଲ୍ୟରେ ଯୋଗାଡ଼ କରି ସେହି ସେହି ପରୀକ୍ଷକଙ୍କୁ ଅବଶ୍ୟ ଭେଟନ୍ତୁ ଓ ତାଙ୍କୁ ଯେ କୌଣସି ଉପାୟରେ ବଶୀଭୂତ ବା ପ୍ରଭାବିତ କରି ଆପଣଙ୍କ ପିଲା ପାଇଁ ତା' ଖାତାରେ ଅଧିକ ମାର୍କ ଅର୍ଜନ କରନ୍ତୁ। ତା' ନହେଲେ ଆପଣଙ୍କ ପିଲା ଭାସିଗଲା ଜାଣନ୍ତୁ। ଏହା ବ୍ୟତୀତ ଆଉ ଉପାୟ ନାହିଁ।

.....ଆହା ! ସରିତା ମହାନ୍ତି କାନ୍ଦୁଛି। ତା'ର ଅର୍ଥନୀତି ଅନର୍ସ କଟିଯାଇ ସେ ଖାଲି ବି.ଏ ପାସ୍ କରିଛି। ସେ ଆଉ ଏମ୍.ଏ. ପଢି ପାରିବ ନାହିଁ। ତାର ବାହାଘର ମଧ୍ୟ ସହଜ ହେଉନାହିଁ। ତାକୁ କୋଉଁଠି ମନମୁତାବକ ଚାକିରିଟିଏ ମିଳିବ ନାହିଁ।

ଆହା ! ସରିତା ମହାନ୍ତି କାନ୍ଦୁଛି। କାନ୍ଦିବ ନାହିଁ? କିନ୍ତୁ କିଏ ତା'ର ଆଖିରୁ ଲୁହ ପୋଛିପାରିବ ? ସେ କଥା ଛାଡ଼– ଏବେ ତା'ର ବାପା ମାଆ ଓ ଭାଇ ଭଉଣୀ ସମସ୍ତେ ମିଶି ତା' ସହିତ କାନ୍ଦିଲେଣି।

କିଏ ତାଙ୍କର ଲୁହ ପୋଛିବ ପୋଛନ୍ତୁ;
ମୋର କି ଯାଏ ଆସେ ?

❋❋

# ବ୍ୟଙ୍ଗଚିତ୍ର.....

୧୯୪୮ ମସିହାର କଥା। ଭାରତବର୍ଷର ବିଖ୍ୟାତ ବ୍ୟଙ୍ଗଚିତ୍ରକର ବା କାର୍ଟୁନିଷ୍ଟ୍ ଶ୍ରୀ ଶଙ୍କର ପିଲାଇ ତାଙ୍କର "ଶଙ୍କରସ ଉଇକ୍ଲି" ବ୍ୟଙ୍ଗ ପତ୍ରିକାର ଉଦ୍‌ଘାଟନ ପାଇଁ ପ୍ରଧାନମନ୍ତ୍ରୀ ନେହେରୁଙ୍କୁ ନିମନ୍ତ୍ରଣ କରିଥାନ୍ତି। ସେତେବେଳେ ନେହେରୁଙ୍କ ଲୋକପ୍ରିୟତା ଓ ସର୍ବମାନ୍ୟତା ଅକଳ୍ପନୀୟ। ସିନେମାରେ କୌଣସି ସରକାରୀ ଡକୁମେଣ୍ଟାରୀ ଚିତ୍ରରେ ନେହେରୁଙ୍କ ଛାୟାଚିତ୍ର ଦେଖିଲା ମାତ୍ରେ ହଲ ଭିତରେ ଲୋକେ ଠିଆ ହୋଇ ପଡ଼ି କରତାଳି ମାଡ଼ରେ ହଲକୁ କମ୍ପାଇ ଦେବାର ଦୃଶ୍ୟ ବହୁବାର ଦେଖା ଯାଇଛି।

"ଶଙ୍କରସ୍ ଉଇକ୍ଲି" ପତ୍ରିକାର ଆଭିମୁଖ୍ୟ ଥିଲା ବ୍ୟଙ୍ଗବିଦ୍ରୂପ ମାଧ୍ୟମରେ ରାଜନୈତିକ ଘଟଣାଗୁଡ଼ିକର ବିଶ୍ଳେଷଣ କରିବ ଓ ରାଜନୀତିର କ୍ଷମତାସୀନ ନେତା ଓ ହୋମ୍‌ରାଚୋମ୍‌ରାମାନଙ୍କର ବ୍ୟଙ୍ଗଚିତ୍ର ପ୍ରକାଶ କରିବା। ଉଦ୍‌ଘାଟନ କରି ସାରି ନେହେରୁ ଶଙ୍କରପିଲାଇଙ୍କ କାନ୍ଧ ଥାପୁଡ଼ାଇ ହସି ହସି କହିଲେ– "ଦେଖ ଶଙ୍କର! ତୁମ ରାଜନୈତିକ ବ୍ୟଙ୍ଗ ବିଦ୍ରୂପର ଶରବ୍ୟମାନଙ୍କ ତାଲିକାରୁ ମତେ ଯେମିତି ବାଦ୍ ନ ଦିଅ।

ସତକୁ ସତ ନେହେରୁ ହିଁ ଥିଲେ ଶଙ୍କରଙ୍କ ବ୍ୟଙ୍ଗବାଣର ବର୍ଷ ବର୍ଷ ଧରି ମୁଖ୍ୟ ଶରବ୍ୟ। ସେ ନେହେରୁଙ୍କ କାର୍ଯ୍ୟ କଳାପ ଓ ମନୋଭାବ ଉପରେ ପ୍ରାୟ ଦେଢ଼ ହଜାରରୁ ଅଧିକ ବ୍ୟଙ୍ଗଚିତ୍ର ଆଙ୍କିଛନ୍ତି ଏବଂ ଏକଥା ଶୁଣି ଆଜିକାଲିର ବହୁ କ୍ଷମତା ଦୃପ୍ତ ମୂଢ଼ ମନ୍ତ୍ରୀ ଓ ରାଜନୀତିବାଲା ବିଶ୍ୱାସ କରିବେ ନାହିଁ ଯେ, ସ୍ୱୟଂ ନେନେରୁ ନିଜ ଉପରେ ଶଙ୍କରଙ୍କ ବ୍ୟଙ୍ଗଚିତ୍ରଗୁଡ଼ିକ କେବଳ ପ୍ରଶଂସା କରୁ ନଥିଲେ– ନିଜ ବିରୋଧରେ ଅଭିପ୍ରେତ ବିଦ୍ରୂପକୁ ଆପଣାର ଅବଶ୍ୟ ପ୍ରାପ୍ୟ ବୋଲି ସମର୍ଥନ କରୁଥିଲେ।

ଏ ଦିଗରେ କିନ୍ତୁ ନେହେରୁଙ୍କ ପ୍ରତି ଶଙ୍କରଙ୍କର ଥିଲା ଗଭୀର ଶ୍ରଦ୍ଧା ଏବଂ ଭାରତବର୍ଷର ସର୍ବଶ୍ରେଷ୍ଠ ନେତୃତ୍ୱର ସେ ହିଁ ଏକମାତ୍ର ଅଧିକାରୀ ବୋଲି ତାଙ୍କର ଦୃଢ଼ ଆସ୍ଥା ଥାଇ ବିଶ୍ୱାସ। ଏତଦ୍‌ସତ୍ତ୍ୱେ ସେ ନେହେରୁଙ୍କୁ ବ୍ୟଙ୍ଗବାଣରେ ବିଦ୍ଧ କରିବାକୁ ତିଳେ ବି କୁଣ୍ଠିତ ହେଉନଥିଲେ। ଯେପରି ପ୍ରଧାନମନ୍ତ୍ରୀ–ସେହିପରି ବ୍ୟଙ୍ଗଶିଳ୍ପୀ।

କେବଳ ନେହେରୁଙ୍କ ଉପରେ ନୁହେଁ, ଶଙ୍କର ହଜାର ହଜାର ବ୍ୟଙ୍ଗଚିତ୍ର ଭାରତର ବିଶିଷ୍ଟ ନେତା, ସାହିତ୍ୟିକ, ଖେଳୁଆଡ଼, ଅଭିନେତା, ଅଭିନେତ୍ରୀ ପ୍ରଭୃତିଙ୍କ ଉପରେ ଆଙ୍କିଛନ୍ତି– ଏବଂ ବହୁ ଅମୂର୍ତ୍ତଭାବ ଚିନ୍ତାକୁ ନେଇ ମଧ୍ୟ ବହୁ ବ୍ୟଙ୍ଗଚିତ୍ର ଅଙ୍କନ କରିଛନ୍ତି ।

ବ୍ୟଙ୍ଗଚିତ୍ର ତତ୍ତ୍ୱବିଦ୍‌ମାନଙ୍କ ମତରେ ଶଙ୍କରଙ୍କ ବ୍ୟଙ୍ଗଚିତ୍ରଗୁଡ଼ିକ ଭିତରେ ଦେଶର ଜନସାଧାରଣଙ୍କ ବିଚାର ଓ ଅନୁଭବ ପ୍ରକାଶ ପାଉଥିଲା– ବିଶେଷତଃ ତାଙ୍କର ରାଜନୈତିକ ବ୍ୟଙ୍ଗଚିତ୍ରଗୁଡ଼ିକରେ । ତାଙ୍କର ବିଶେଷତ୍ୱ ହେଲା– ସେ ରାଜନୀତିକୁ ଭଲ ପାଉଥିଲେ ଓ ଡ୍ରଇଁକୁ ମଧ୍ୟ ଭଲ ପାଉଥିଲେ । ତାଙ୍କ ଚିତ୍ରଗୁଡ଼ିକ ଯେ ସବୁବେଳେ ଗମ୍ଭୀର, ତୀକ୍ଷ୍ଣ ବା ବୁଦ୍ଧିଦୀପ୍ତ ହେଉଥିଲା ତା' ନୁହେଁ– କିନ୍ତୁ ସେଗୁଡ଼ିକ ଭିତରେ ସବୁବେଳେ ଯଥେଷ୍ଟ ପ୍ରାଣ ପ୍ରାଚୁର୍ଯ୍ୟ ରହୁଥିଲା । ତାଙ୍କର ବ୍ୟଙ୍ଗଚିତ୍ରଗୁଡ଼ିକର ଭିତରେ ପ୍ରଚୁର ନାଟକୀୟତା, ବାସ୍ତବତାବୋଧ, ରାଜନୈତିକ ବିଚକ୍ଷଣତା ଏବଂ ମାନବ ଚରିତ୍ର ସମ୍ବନ୍ଧେ ଗଭୀର ଜ୍ଞାନ– ତାଙ୍କୁ ଦେଶର ଏକ ପ୍ରଥମ ଶ୍ରେଣୀର ବ୍ୟଙ୍ଗଶିଳ୍ପୀ ଭାବେ ପ୍ରତିଷ୍ଠା ଦେଇଥିଲା ।

ବ୍ୟଙ୍ଗ ଚିତ୍ର–ତତ୍ତ୍ୱ ବିଶାରଦ ଡାଭିଡ୍‌ଲୋଙ୍କ ମତରେ ବ୍ୟଙ୍ଗଚିତ୍ର ଜଣେ ବିଶିଷ୍ଟ ବ୍ୟକ୍ତିର ବାହ୍ୟ ଚେହେରାଟିକୁ ଅବିକଳ ଦେଖାଏ ନାହିଁ– ଜଣେ ବିଶିଷ୍ଟ ବ୍ୟକ୍ତିର ବ୍ୟକ୍ତିତ୍ୱ ଭିତରେ ସୁଗୁଣ ବା ଦୁର୍ଗୁଣର ଯୋଉ ଅତିରିକ୍ତତା ଅଦୃଶ୍ୟ ହୋଇଥାଏ– ବ୍ୟଙ୍ଗଶିଳ୍ପୀ ତା'ର ଡ୍ରଇଁ ଭିତରେ ସେଇ ଅତିରିକ୍ତତାକୁ ଇ ଅତିରିକ୍ତ ବାହୁଲ୍ୟ କରି ଦେଖାଏ । ଏହାଛଡ଼ା, ବିଶିଷ୍ଟ ବ୍ୟକ୍ତିଟିର ବାହ୍ୟ ଚେହେରାଟିର ବିଭିନ୍ନ ଅବୟବଗୁଡ଼ିକ ଭିତରୁ ଯୋଉ ଯୋଉ ଅବୟବ ବା ଅଙ୍ଗପ୍ରତ୍ୟଙ୍ଗ ଚେହେରାଟିର ବିଶେଷତ୍ୱ ରକ୍ଷାକରେ–ତାହା ସୁନ୍ଦର ହେଉ ବା ଅସୁନ୍ଦର ହେଉ– ବ୍ୟଙ୍ଗ ଶିଳ୍ପୀସେହି ସେହି ଅଙ୍ଗ–ପ୍ରତ୍ୟଙ୍ଗ ବା ଅବୟବକୁ ମଧ୍ୟ ଖୁବ୍ ସ୍ପଷ୍ଟ ଭାବେ ବାହୁଲ୍ୟ କରି ଦେଖାଏ ।

ଏକଥା ସତ ଯେ, ବିଖ୍ୟାତ ବ୍ୟଙ୍ଗଶିଳ୍ପୀମାନଙ୍କର କାହାପ୍ରତି ବ୍ୟକ୍ତିଗତ ଘୃଣା ବା ଅସୂୟା ନଥାଏ । କିନ୍ତୁ ରାଜନୈତିକ ବ୍ୟଙ୍ଗଚିତ୍ର ଆଙ୍କିଲାବେଳେ ଯାହାକୁ ବିଦ୍ରୂପ କରିବାକୁ ହେବ–ତା' ପ୍ରତି ଦୟା, ସହାନୁଭୂତି ରହିଲେ–ବ୍ୟଙ୍ଗଚିତ୍ରଟି ଭିତରେ ଶିଳ୍ପୀର ଅଭିପ୍ରାୟ ବା ଉଦ୍ଦେଶ୍ୟ ପ୍ରକଟିତ ହୋଇ ପାରିବ ନାହିଁ। ଉତ୍କୃଷ୍ଟ ବ୍ୟଙ୍ଗଶିଳ୍ପୀର ବ୍ୟକ୍ତିଗତ ଅସୂୟା ବା ଘୃଣା ନଥାଇ ପାରେ– ମାତ୍ର ବ୍ୟଙ୍ଗବାଣ ମାରିଲାବେଳେ ସେ ଫୁଲଶରଟିଏ କେବେ ମାରିବ ନାହିଁ। କାରଣ ଆଘାତ ନ କରି ପାରିଲେ ବ୍ୟଙ୍ଗବାଣଟି ଲକ୍ଷ୍ୟଭ୍ରଷ୍ଟ ହୋଇଗଲା ବୋଲି ବୁଝିବାକୁ ହେବ।

ଆଧୁନିକ ପତ୍ର ପତ୍ରିକାରେ ବ୍ୟଙ୍ଗଶିଳ୍ପୀ ଭାବେ ଯେଉଁମାନେ ଖ୍ୟାତି ଓ ଲୋକପ୍ରିୟତା ଅର୍ଜନ କରିଛନ୍ତି– ସେମାନେ ହେଲେ ଆର୍.କେ.ଲକ୍ଷ୍ମଣ ସୁଧୀରଦାର୍ କୁଟ୍ଟୀ ଏବଂ ମେରିଓ । ଏମାନଙ୍କ ଭିତରୁ ଆର୍ କେ. ଲକ୍ଷ୍ମଣଙ୍କର ପରିସର ଖୁବ୍ ବିସ୍ତୃତ । ଆଜିକାଲି

ପତ୍ର ପତ୍ରିକା ଏବଂ ସମ୍ବାଦପତ୍ରଗୁଡ଼ିକରେ ବ୍ୟଙ୍ଗଚିତ୍ର ଏକ ବିଶେଷ ସ୍ଥାନ ଅଧିକାର କରିଛି। ଏହା କେବଳ ରାଜନୈତିକ ବ୍ୟଙ୍ଗଚିତ୍ର ନୁହେଁ— ବର୍ତ୍ତମାନ ସବୁ ପ୍ରକାର କାର୍ଟୁନର ଚାହିଦା ବଢ଼ି ଚାଲିଛି। ଶିଶୁମାନଙ୍କର ମନୋରଞ୍ଜନପାଇଁ ଆଧୁନିକ ଯୁଗର ପତ୍ର ପତ୍ରିକାମାନେ ବହୁବିଧ କାର୍ଟୁନ୍ ପ୍ରକାଶ କରୁଛନ୍ତି। ଏପରିକି ଗଳ୍ପ ଓ କବିତା ଭିତରେ ବି ଚିରାଚରିତ ଢ଼ଙ୍ଗ ପରିବର୍ତ୍ତେ ବର୍ତ୍ତମାନ ପ୍ରକାଶିତ ଗଳ୍ପ ଓ କବିତାର ମୂଳ ଭାବ ବା ମର୍ମକୁ ବ୍ୟଙ୍ଗଚିତ୍ର ମାଧ୍ୟମରେ ହିଁ ପ୍ରକାଶ କରାଯାଉଛି। କାରଣ ତଦ୍ୱାରା କବିତା ଓ ଗଳ୍ପର ବିଷୟବସ୍ତୁ ପାଠକର ଦୃଷ୍ଟିକୁ ମଧ୍ୟ ଖୁବ୍ ଗଭୀର ଭାବେ ଗୋଚରୀଭୂତ କରାଇ ପାରୁଛି। ଅନେକ ଗୁରୁଗମ୍ଭୀର ଭାବ ଓ ଚିନ୍ତାର ପୁସ୍ତକଗୁଡ଼ିକର ପ୍ରଚ୍ଛଦପଟରେ ମଧ୍ୟ ଏବେ ଚିରାଚରିତ ଛବି ପରିବର୍ତ୍ତେ ବ୍ୟଙ୍ଗଚିତ୍ର ଶୋଭା ପାଉଛି। ଏସବୁ ଦେଖି ମନେ ହେଉଛି ଯେ, ବର୍ତ୍ତମାନ ଯୁଗଟି ହେଲା ବ୍ୟଙ୍ଗଚିତ୍ରର ଯୁଗ।

କିନ୍ତୁ ଦୁଃଖର କଥା ଆମ ଓଡ଼ିଶାରେ ଏ ପର୍ଯ୍ୟନ୍ତ ଆମେ ଜଣେ ସୁଦ୍ଧା ଉଚ୍ଚ କୋଟୀର ବ୍ୟଙ୍ଗ ଚିତ୍ରଶିଳ୍ପୀ ଅଭ୍ୟୁଦୟ ଦେଖିବାକୁ ପାଇଲୁ ନାହିଁ। ଓଡ଼ିଶାର ବିଶିଷ୍ଟ ସମ୍ବାଦପତ୍ରମାନଙ୍କରେ ଭଲ ବ୍ୟଙ୍ଗଚିତ୍ରଟିଏ ନିୟମିତ ଦେଖିବାକୁ ମିଳେନାହିଁ। ପତ୍ର—ପତ୍ରିକାମାନଙ୍କ କଥା ବା କାହିଁକି ପଡ଼ିଛି? କିଛି ବର୍ଷ ତଳେ 'ନିଆଁଖୁଣ୍ଟା' ପତ୍ରିକାରେ ଆମେ ଚମତ୍କାର ରାଜନୈତିକ ବ୍ୟଙ୍ଗଚିତ୍ର ଦେଖିବାକୁ ପାଉଥିଲୁ। ଏବେ ଅବଶ୍ୟ 'ଦୁର୍ମୁଖ' ପ୍ରଭୃତି ବ୍ୟଙ୍ଗ ପତ୍ରିକାମାନେ ବ୍ୟଙ୍ଗଚିତ୍ର ପ୍ରକାଶ କରୁଛନ୍ତି। କିନ୍ତୁ ଯାହା ମନେହୁଏ, ସେଗୁଡ଼ିକ ସେତେ ଉଚ୍ଚସ୍ତରୀୟ ହୋଇ ପାରୁନାହିଁ।

ଓଡ଼ିଶାର ଚିତ୍ରଶିଳ୍ପୀମାନେ ଏ ଦିଗରେ ଧ୍ୟାନ ଦେବେ କି? ଏବଂ ତା' ସଙ୍ଗେ ସଙ୍ଗେ ଆମର ସମ୍ବାଦପତ୍ରମାନେ ମଧ୍ୟ ଏ ଦିଗରେ ଆଗ୍ରହ ପ୍ରକାଶ କରିବେ କି?

**

# ନୋବେଲ୍ ଲରିଏଟ୍ ଶୁକ୍ର ବ୍ୟାଙ୍କ୍

ଆମେରିକାରେ ସଂପ୍ରତି ବହୁ ମହିଳାଙ୍କ ମୁଣ୍ଡରେ ଏକ ପ୍ରଚଣ୍ଡ ବାସନା ସବାର୍ ହୋଇ ଯାଇଛି। ତା' ହେଲା– ଏଣୁ ତେଣୁ ଆଜେ ବାଜେ ଛୁଆଜନ୍ମ ନ କରି ପ୍ରତିଭାବନ୍ତ ଛୁଆ ଜନ୍ମ କରିବା। ତାହା ପୁଣି ଆମ ତୁମ ପରି ଏମିତି ସେମିତି ଛୋଟ କାଟିଆ ଲେଗୁଡୁ ମେଗୁଡୁ ପ୍ରତିଭା ନୁହଁ। ଏକବାର ନୋବେଲ ଲରିଏଟ୍। ସେ କବି ହୁଅନ୍ତୁ କି ବୈଜ୍ଞାନିକ ହୁଅନ୍ତୁ ବା ଦାର୍ଶନିକ ହୁଅନ୍ତୁ—କିନ୍ତୁ ନୋବେଲ ଲରିଏଟ୍ ପ୍ରତିଭାର ଉଚ୍ଚତାରୁ ଧାପେ ଘାଟ୍‌ତି ହେଲେ ଚଳିବ ନାହିଁ।

କିନ୍ତୁ ତା'ର ଉପାୟ କ'ଣ ? ଉପାୟ ସ୍ୱରୂପ ପ୍ରଚାର କରି ଦିଆଗଲା ଯେ, ଯଦି ନୋବେଲ୍ ଲରିଏଟ୍‌ଙ୍କ ଠାରୁ ଶୁକ୍ର ସଂଗ୍ରହ କରି ବ୍ୟବହାର କରାଯାଏ, ତେବେ ହାତୀ ଶୁକ୍ରରୁ ହାତୀ ଛୁଆ ଜନ୍ମ ହେଲା ନ୍ୟାୟରେ ନୋବେଲ୍ ଲରିଏଟ୍‌ଙ୍କ ଶୁକ୍ରରୁ ନୋବେଲ୍ ଲରିଏଟ୍ ଛୁଆ ଜନ୍ମ ହେବେ।

କୁବେରୀୟ ଧନତନ୍ତ୍ର ସର୍ବସ୍ୱ ଆମେରିକା ହେଲା ପ୍ରଚାରର ଦେଶ– ପ୍ରଚାରକଙ୍କ ଦେଶ– ପ୍ରଚାରିତଙ୍କ ଦେଶ ଓ ପ୍ରଚାର ଦ୍ୱାରା ଚୌପଟ୍ ପ୍ରଭାବିତ ହୋଇ ଯାଉଥିବା ନରନାରୀଙ୍କ ଦେଶ। ତେଣୁ ଏକଥା ପ୍ରଚାରିତ ହେଲାମାତ୍ରେ ଶୁକ୍ର ବ୍ୟାଙ୍କଗୁଡ଼ିକର କର୍ତ୍ତାମାନେ ବିଭିନ୍ନ ଦେଶର ନୋବେଲ୍ ଲରିଏଟ୍‌ମାନଙ୍କ ପାଖକୁ ଧାଇଁଲେ। ଉଦ୍ଦେଶ୍ୟ ହେଲା– ବିଶ୍ୱ ବିଖ୍ୟାତ ପ୍ରତିଭାବନ୍ତମାନଙ୍କର ଅମୂଲ୍ୟ ଶୁକ୍ରକୁ ବହୁ ମୂଲ୍ୟ ଦେଇ କ୍ରୟ କରି ଆଣି ଶହେଗୁଣ ଦାମ୍‌ରେ ନୋବେଲ୍ ଲରିଏଟ୍ ସନ୍ତାନର ଜନନୀ ହେବାକୁ ଉତ୍ସୁକା ମହିଳାମାନଙ୍କୁ ଅଗତ୍ତୁରା ବିକ୍ରୀ କରିବେ। ଶୁଣାଯାଏ, ଏ ବ୍ୟବସାୟ ବର୍ତ୍ତମାନ ସେଠି ଦ୍ରୁତଗତିରେ ପ୍ରସାର ଲାଭ କରୁଛି। ଏବେ ପୁଣି ଶୁଣା ଗଲାଣି ଯେ, ବହୁ ଶଠ ଶୁକ୍ରବ୍ୟବସାୟୀ ନୋବେଲ୍ ଲରିଏଟ୍‌ଙ୍କ ଶୁକ୍ରନାମରେ ଅତି ସାଧାରଣ ଲୋକଙ୍କର ଶୁକ୍ର ମଧ୍ୟ ବିକ୍ରୀ କରି ବହୁ ଲାଭ ଉଠାଇଲେଣି। କିନ୍ତୁ ସେମାନଙ୍କୁ କିପରି ଏତେବେଳୁଁ ଶଠ ବା ଠକ ବୋଲି ପ୍ରମାଣ କରିହେବ ? କାରଣ, ସେହି ଶୁକ୍ରରୁ ଜନ୍ମିତ ଛୁଆମାନେ ଏ ପର୍ଯ୍ୟନ୍ତ ମାତ୍ର ଦୁଇ ବର୍ଷରୁ ଅଧିକ ହୋଇ ନାହାନ୍ତି ଏବଂ ନୋବେଲ୍ ଲରିଏଟ୍ ପ୍ରତିଭାର ପ୍ରମାଣ ପାଇଁ ଅନ୍ତତଃ ଆଉ ଅର୍ଦ୍ଧଶତାବ୍ଦୀଏ ଅପେକ୍ଷା କରିବାକୁ ହେବ। ତଥାପି–''ରତ୍ନଗର୍ଭା''ର ଗୌରବକାଂକ୍ଷିଣୀ ଜନନୀମାନେ ସେମାନଙ୍କ ଶିଶୁମାନଙ୍କ

ବ୍ୟବହାରରେ "ତୁଳସୀ ଦୁଇ ପତ୍ରରୁ ବାସିଲା" ଭଳି କିଛି ଗୋଟାଏ ଅସାଧାରଣ ପ୍ରତିଭାର କଳିକା–ଉନ୍ମେଷ ପ୍ରତ୍ୟକ୍ଷ କରିବାକୁ ଦିନରାତି ନିର୍ନିମେଷ ଉତ୍କର୍ଣ୍ଣ ଓ ଉଦ୍‌ଗ୍ରୀବ ହୋଇ ଅତିବାହିତ କରୁଛନ୍ତି।

କଥିତ ଅଛି ଯେ, ଏକଦା ପୃଥିବୀର ଅଦ୍ୱିତୀୟା ସୁନ୍ଦରୀ ହଲିଉଡ୍‌ର ବିଖ୍ୟାତ ଚିତ୍ରାଭିନେତ୍ରି ଗ୍ରେଟାଗାର୍ବୋ କୁଆଡ଼େ ବିଶ୍ୱବିଖ୍ୟାତ ଦାର୍ଶନିକ ନାଟ୍ୟକାର ବାର୍ଣ୍ଣାଡ଼ଶଙ୍କୁ ବିବାହ କରିବା ପାଇଁ ଏକ ଲୋଭ ଦେଖାଇଥିଲେ ଯେ, ସେମାନଙ୍କଠାରୁ ଜନ୍ମିତ ସନ୍ତାନ ନିଶ୍ଚୟ ତାଙ୍କ ଭଳି ଅପୂର୍ବ ସୌନ୍ଦର୍ଯ୍ୟ ଓ ବାର୍ଣ୍ଣାଡ଼ଶ ଭଳି ଅଦ୍ଭୁତ ବୌଦ୍ଧିକ ପ୍ରତିଭାର ଅଧିକାରୀ ହେବ। ବାର୍ଣ୍ଣାଡ଼ଶ ତାଙ୍କର ସ୍ୱଭାବ ସୁଲଭ ବକ୍ରୋକ୍ତିରେ ଉତ୍ତର ଦେଲେ ସୁନ୍ଦରୀ! ଆପଣଙ୍କ ଯୁକ୍ତି ଆଦୌ ଉତ୍ସାହଜନକ ନୁହେଁ। କାରଣ, ଆମଠାରୁ ଜନ୍ମିତ ସନ୍ତାନଟିଏ ଯଦି ଠିକ୍ ଓଲଟା ହୁଏ ? ଅର୍ଥାତ୍ ମୋ ସୌନ୍ଦର୍ଯ୍ୟ ଓ ଆପଣଙ୍କ ବୁଦ୍ଧି ନେଇ ଯଦି ସେ ଜନ୍ମ ହୁଏ ?

କିନ୍ତୁ ମାର୍କିନ୍ ରମଣୀମାନଙ୍କର ଏହି ଉନ୍ନତ ଉଚ୍ଚାକାଂକ୍ଷାକୁ ଆମେ ଏତେ ସହଜ ଲଘୁ ଭାବପ୍ରବଣତାରେ ହସି ଉଡ଼ାଇ ଦେଇ ପାରିବା ନାହିଁ। କାରଣ ଏଇ କେତେ ବର୍ଷ ଭିତରେ ଜେନେଟିକ୍ ବିଜ୍ଞାନ ଏତେ ଦୂର ବିକଶିତ ହେଲାଣି ଯେ, ଅଦୂର ଭବିଷ୍ୟତରେ ଗର୍ଭସ୍ଥ ସନ୍ତାନର ଚରିତ୍ର ଓ ବ୍ୟକ୍ତିତ୍ୱକୁ ନିଜ ଚାହିଦା ଅନୁଯାୟୀ ତିଆରି କରିଦେଇ ହେବ ବୋଲି ବିଶେଷଜ୍ଞମାନେ କହି ସାରିଲେଣି। ସତକଥା—ବର୍ତ୍ତମାନ ଜେନେଟିକ୍ ବିଜ୍ଞାନର ନବାବିଷ୍କୃତ ଅଭିନବ ତଥ୍ୟ ଓ ତତ୍ତ୍ୱରାଜି ମହାକାଶ ବିଜ୍ଞାନର ସାଫଲ୍ୟ ଭଳି ମନୁଷ୍ୟର ଏଯାବତ୍ ସମସ୍ତ ପ୍ରକାର ଧରାବନ୍ଧା ନୈତିକ ମନସ୍ତାତ୍ତ୍ୱିକ ଓ ସାମାଜିକ ଧାରଣାକୁ ଓଲଟ ପାଲଟ କରିଦେବ।

ଏ ସଂକ୍ରାନ୍ତରେ ଜେନେଟିକ୍ ବିଜ୍ଞାନରେ ଅଭୂତପୂର୍ବ ପାରଦର୍ଶିତା ଯୋଗୁଁ ୧୯୭୮ ନୋବେଲ ଲରିଏଟ୍ ମାର୍କିନ୍ ଡକ୍ଟର ହାମିଲ୍‌ଟନ୍ ସ୍ମିଥ୍‌ଙ୍କ ସହିତ ସନ୍‌ଡ଼େ ଅବଜରଭର୍ ପତ୍ରିକାର ପ୍ରତିନିଧିଙ୍କର ଯେଉଁ ବାର୍ତ୍ତାଳାପ ହୋଇଥିଲା—ତାହାର କିୟଦଂଶ ସେହି ପତ୍ରିକାର ପହିଲା ଜାନୁଆରୀ ୧୯୮୦ ସଂଖ୍ୟାରୁ ଉଦ୍ଧାର କରାଯାଉ।

ଡକ୍ଟର ସ୍ମିଥ୍‌ଙ୍କୁ ପଚରାଗଲା— ଆମେରିକାରେ ବର୍ତ୍ତମାନ ଯୋଉ ନୋବେଲ୍ ଶୁକ୍ରବ୍ୟାଙ୍କ ଖୋଲିଛି— ସେ ସମ୍ବନ୍ଧେ ତାଙ୍କ ମତ କ'ଣ ?

ସେ କହିଲେ— ମୁଁ ତାହା ପସନ୍ଦ କରେନା। କାରଣ କୌଣସି ବ୍ୟକ୍ତିଯେ ଯେତେ ଗୁଣବାନ ହେଉନା କାହିଁକି, ତାର ଶୁକ୍ର ଯେ ସେହିପରି ମୂଲ୍ୟବାନ ହେବ, ଏକଥା ଭାବିବା ତାଙ୍କ ପକ୍ଷରେ ଘୋର ଦାମ୍ଭିକତା। ଜଣେ ହୁଏତ ଗୋଟିଏ ଦୁଇଟି ବିଶେଷ ଗୁଣର ଅଧିକାରୀ ହୋଇପାରେ। ମାତ୍ର ତା' ସହିତ ତା'ର ଆଉ କେତୋଟି ଖରାପ ଗୁଣ ମଧ୍ୟ ଥାଇପାରେ। ସେ ଖରାପ ଗୁଣଗୁଡ଼ିକୁ କ'ଣ ସମସ୍ତେ

ସହ୍ୟ କରି ପାରିବେ ? ମୋ ମତରେ ଜଣେ ନାରୀ ଯଦି ସଂଗୀତ କୁଶଳୀ ସନ୍ତାନଟିଏ ଚାହେଁ, ତେବେ ସେ ସଙ୍ଗୀତଜ୍ଞଟିଏ ବାହା ହେଉନି କାହିଁକି ? ତେବେ ମୋର ବ୍ୟକ୍ତିଗତ ଧାରଣାକୁ ଛାଡ଼ିଦେଲେ ବି– ମୋର ବିଶ୍ୱାସ, ଜେନେଟିକ୍ ବିଜ୍ଞାନଦ୍ୱାରା ମଣିଷର ଚରିତ୍ରକୁ କିଛି ଅଂଶରେ ବଦଳେଇ ଦେଇହେବ । ଯଦି ଜିନ୍ ସବୁ ଠିକ୍ ଭାବେ ଖାପ୍ ଖାଅନ୍ତି ଏବଂ ଏକ ବିଶେଷ ରୀତିରେ ସମ୍ମିଳିତ ହୋଇ ପାରନ୍ତି–ତେବେ ପସନ୍ଦାନୁସାରେ ଜଣେ ସନ୍ତାନଟିଏ ପାଇପାରେ । କିନ୍ତୁ କେବଳ ନୋବେଲ୍ ଲରିଏଟ୍ ପାଇଁ ଏତେ ଝୁଙ୍କ୍ ବା ପାଗଳାମି କାହିଁକି ? ତା' ଛଡ଼ା, ଏହା ସର୍ବଦା ଦେଖାଯାଏ ଯେ,ଅତି ସାଧାରଣ ଦମ୍ପତିଙ୍କଠାରୁ ହିଁ ଖୁବ୍ ପ୍ରତିଭାଶାଳୀ ଲୋକ ଜନ୍ମ ହୋଇଛନ୍ତି । ଏହା କେବଳ ଜିନ୍‌ମାନଙ୍କର ଉଚିତ୍ ସମ୍ମେଳନ ଯୋଗୁଁ ସମ୍ଭବ ହୋଇଥାଏ । ମୁଁ ଜାଣେ, ନୋବେଲ୍ ଲରିଏଟ୍ ବୋଲି ମୋର ସନ୍ତାନମାନେ ଯେ ଜିନିୟସ୍ ହେବେ, ଯାର କିଛି ଅର୍ଥ ନାଇଁ । ମୋର କେତେକ ବିଶିଷ୍ଟ ନୋବେଲ୍ ଲରିଏଟ୍ ବନ୍ଧୁଙ୍କ ମଧ୍ୟ ଏଇଆ ।

ଡକ୍ଟର ସ୍ମିଥ୍ ଏହି ପ୍ରସଙ୍ଗରେ ମଜା କଥାଟିଏ କହିଲେ । ସେ କହିଲେ–ଜଣେ ନୋବେଲ୍ ଲରିଏଟ୍‌ଙ୍କ ଠାରୁ ଶୁକ୍ର କିଣିବା ଲାଗି ଶୁକ୍ର ବ୍ୟାଙ୍କ୍ ବାଲାଏ ଥରେ ବହୁତ ଜଞ୍ଜାଳ କଲେ । ନୋବେଲ୍ ଲରିଏଟ୍ ଜଣକ ବିରକ୍ତ ହୋଇ କହିଲେ– ମୋ ଶୁକ୍ର ନେଇ ଆପଣମାନେ କ'ଣ କରିବେ ? କିଛି ଲାଭ ହେବ ନାହିଁ । ବରଂ ମୋ ବାପାଙ୍କ ଶୁକ୍ର ସଂଗ୍ରହ କରନ୍ତୁ । କାରଣ, ସେ ମୋର ଜନ୍ମଦାତା । ମୋର ଦୁଇଟି ଯାକ ପିଲାଙ୍କୁ ଶେଷ ପର୍ଯ୍ୟନ୍ତ ଗଣିତର ସାମାନ୍ୟ ଗ:ସା:ଗୁ:, ଲ:ସା:ଗୁ, ବି ଆସିଲା ନାହିଁ ।

କିନ୍ତୁ ବିଶ୍ୱବିଶ୍ରୁତ ପ୍ରତିଭାର ଜନ୍ମଦାତ୍ରୀ ହେବାର ରୋମାଞ୍ଚକର ଗୌରବ ଅର୍ଜନ ପାଇଁ ଦୁର୍ବାର ଉଚ୍ଚାକାଂକ୍ଷାରେ ଉନ୍ମତ୍ତା ମାର୍କିନ୍ ରମଣୀମାନେ ଏ ତତ୍ତ୍ୱ ବୁଝିବେ ତ ?

ଅପର ପକ୍ଷରେ ପ୍ରତିଭାଶାଳୀ ସନ୍ତାନ କାମନା କରି ସ୍ୱାମୀ ବ୍ୟତିରେକେ ଅନ୍ୟ ଦେବ ପୁରୁଷ ବା ଗୁଣୀ ପୁରୁଷ ସହିତ ମିଳିତ ହୋଇ ସତକୁ ସତ ସେହି ଗୌରବର ଅଧିକାରିଣୀ ହୋଇଥିବା ପୁଣ୍ୟବତୀ ଓ ମନସ୍ୱିନୀ ରମଣୀମାନଙ୍କ ଉଦାହରଣ ଆମ ଦେଶର ପୁରାଣ ଓ ଇତିହାସରେ ଏକାନ୍ତ ବିରଳ ନୁହେଁ ତ ।

କିନ୍ତୁ ତଫାତ୍ ହେଲା– ମାର୍କିନ୍ ରମଣୀମାନଙ୍କ ପକ୍ଷରେ ଯାହା ଉନ୍ମତ୍ତ ଉଚ୍ଚାଭିଳାଷ, ଭାରତୀୟ ରମଣୀମାନଙ୍କ ପକ୍ଷରେ ତାହା ଥିଲା ଉପାସନା ମୂଳକ ଅଭୀପ୍‌ସା ।

❋❋

# ଡାକ-ତାର ବିଭାଗେଷୁ....

ଓଡ଼ିଶା ସର୍କଲର ଭାରପ୍ରାପ୍ତ ପୋଷ୍ଟମାଷ୍ଟର ଜେନେରାଲ୍ କିଛି ଦିନ ତଳେ ଏକ ସାମ୍ବାଦିକ ସମ୍ମିଳନୀରେ ଯେଉଁ ତଥ୍ୟ ପ୍ରକାଶ କରିଛନ୍ତି, ସେଥିରୁ ଜଣାଯାଏ ଯେ ୧୯୮୩-୮୪ ଆର୍ଥିକ ବର୍ଷରେ ଆମ ଓଡ଼ିଶାରେ ସର୍ବମୋଟ ଦୁଇଶହ ପନ୍ଦରଟି ନୂତନ ଡାକଘର ଖୋଲିଛି। ଫଳରେ ଆମର ସର୍ବମୋଟ ଡାକଘର ସଂଖ୍ୟା ହେଲା ବର୍ତ୍ତମାନ ସାତ ହଜାର ପାଞ୍ଚଶହ ଅଠର। ଏଥିରୁ ଛଅ ହଜାର ନଅଶହ ଅଣାନବେଟି ଡାକଘର ଗ୍ରାମାଞ୍ଚଳରେ ଓ ପାଞ୍ଚ ଶହ ଅଣତ୍ରିଶଟି ଡାକଘର ସହରାଞ୍ଚଳରେ ରହିଛି।

ପୋଷ୍ଟମାଷ୍ଟର୍ ଜେନେରାଲ୍‌ଙ୍କ ରିପୋର୍ଟରୁ ଯେଉଁ ପରିସଂଖ୍ୟାନ ମିଳିଛି—ସେଥିରୁ ଜଣାଯାଏ ଯେ, ଓଡ଼ିଶାରେ ଏବେ ଦିନକୁ ପ୍ରାୟ ଏକକୋଟୀ ପଞ୍ଚଷଠୀ ଲକ୍ଷ ଚିଠିପତ୍ର ଡାକ ଯୋଗେ ବିତରଣ କରାଯାଉଛି ଏବଂ କଳାହାଣ୍ଡି ଜିଲ୍ଲାକୁ ଛାଡ଼ିଦେଲେ ଓଡ଼ିଶାରେ ବର୍ତ୍ତମାନ ସୁଦ୍ଧା ସତରଟି ଡାକ ବିଭାଗୀୟ ଡିଭିଜନ ରହିଛି। ପୁଣି ମାର୍ଚ୍ଚ ଏକତ୍ରିଶ ତାରିଖ ସୁଦ୍ଧା କଳାହାଣ୍ଡିରେ ଏକ ଡାକବିଭାଗୀୟ ଡିଭିଜନ ଏବଂ ଉଦିତ୍ ନଗର, ନିମାପଡ଼ା, ଉଦଳା ଓ ଆନନ୍ଦପୁର ଠାରେ ଗୋଟିଏ ଲେଖା ମୁଖ୍ୟ ଡାକଘର ଖୋଲା ଯିବାର ମସୁଧା ରହିଛି।

ଆମ ରାଜ୍ୟରେ ଡାକ ବିଭାଗର ଏକ ସଂପ୍ରସାରଣ ନିଶ୍ଚୟ ସ୍ୱାଗତଯୋଗ୍ୟ। ଗତ କେତେବର୍ଷ ଭିତରେ ଓଡ଼ିଶାରେ ଯାନବାହାନ ଓ ଗମନାଗମନର ପରିସର ଯେମିତି ଆଶାତୀତ ଭାବେ ବଢ଼ିଯାଇଛି—ସେହିପରି ଲୋକଙ୍କ ଭିତରେ ଚିଠିପତ୍ରର ଆଦାନପ୍ରଦାନ ମଧ ବଢ଼ିଚାଲିଛି। ବହୁ ସ୍କୁଲ କଲେଜର ପ୍ରତିଷ୍ଠା, ବ୍ୟବସାୟ ବାଣିଜ୍ୟର ପରିସର ବୃଦ୍ଧି, ସରକାରୀ ଓ ବେସରକାରୀ ଅଫିସ ଦପ୍ତରଗୁଡ଼ିକର ସଂଖ୍ୟା ମଧ ବୃଦ୍ଧି ପାଇବା ଫଳରେ ଡାକ ତାର ଓ ଫୋନ୍ ବିଭାଗର କାର୍ଯ୍ୟ ମଧ ଖୁବ୍ ବଢ଼ିଯାଇଛି ଏବଂ କ୍ରମଶଃ ଏହା ଆହୁରି ବଢ଼ି ଚାଲିବ।

କିନ୍ତୁ ଏହା ସତ୍ତ୍ୱେ ଦୁଃଖର ସହିତ ଜଣାଇବାକୁ ପଡ଼ୁଛି ଯେ, ଡାକ ବିଭାଗରେ ପୂର୍ବେ ଯେଉଁ ନିଷ୍ଠା, ସତ୍ୟତା, ଶୃଙ୍ଖଳାବୋଧ ଓ ସୌଜନପୂର୍ଣ୍ଣ ବ୍ୟବହାର ପ୍ରକାଶ ପାଉଥିଲା, ତାହା ଆଉ ବର୍ତ୍ତମାନ ଦେଖିବାକୁ ମିଳୁ ନାହିଁ। ଚିଠିପତ୍ର ଓ ପତ୍ର ପତ୍ରିକା ହଜିଯିବା ଗୋଟାଏ ନିୟମିତ ଦୁର୍ଘଟଣା ହୋଇଗଲାଣି। ତା'ଛଡ଼ା—ଏଇ ଓଡ଼ିଶାର ଗୋଟିଏ ପ୍ରାନ୍ତରୁ ଆଉ ଗୋଟିଏ ପ୍ରାନ୍ତକୁ ଚିଠିଟିଏ, ପାର୍ସଲ୍‌ଟିଏ ବା ମନିଅର୍ଡ଼ରଟିଏ ଯିବାକୁ ଥରେ ଥରେ ଆଠ ଦଶଦିନ ଲାଗି ଯାଉଛି।

ଡାକଘର ଚିଠିପତ୍ରରୁ ଟିକେଟ୍ ଚୋରି ଯାଉଛି। ପାର୍ସଲ ଫିଟି ଯାଉଛି ଏବଂ ଚିଠିପତ୍ର ଅନ୍ୟ ଦ୍ୱାରା ପଢ଼ାଯାଉଛି। ଏସବୁ ପାଇଁ ଅଭିଯୋଗ ହେଲେ ମଧ୍ୟ କେହି ସେ କଥାରେ କର୍ଣ୍ଣପାତ କଲାପରି ମନେ ହେଉନାହିଁ। କିଛି ବର୍ଷ ତଳେ ଡାକଘରଟି ଭିତରେ ପ୍ରବେଶ କଲେ ଯେଉଁ ସୁସ୍ଥ ଓ ଭଦ୍ର ବାତାବରଣଟିଏ ଅନୁଭୂତ ହେଉଥିଲା, ତାହା ଆଉ ଏବେ ନାହିଁ। ଖରା ବର୍ଷା ଓ ଶୀତକୁ ନ ମାନି ନୀରବ ସୌଜନ୍ୟରେ ଯୋଉ ପୋଷ୍ଟମ୍ୟାନ୍ ଜଣକ ଆମ ଘରେ ଚିଠିପତ୍ର ଆଣି ଦେଇ ଯାଉଥିଲେ ତାଙ୍କୁ ଦେଖିଲେ ମନେ ହେଉଥିଲା—ଏଇ ବୋଧେ ସମାଜର ସବୁଠାରୁ କର୍ତ୍ତବ୍ୟନିଷ୍ଠ ଭଦ୍ର କର୍ମଚାରୀଟିଏ। କିନ୍ତୁ ସେ ପୋଷ୍ଟମ୍ୟାନଙ୍କ ସଂଖ୍ୟା ମଧ୍ୟ କ୍ରମଶଃ କମି କମି ଯିବାର ଲକ୍ଷ୍ୟ କରାଯାଉଛି। ଆଶଙ୍କା ହେଉଛି—ଏଇ ଦୁର୍ନୀତି-ରାକ୍ଷସର କରାଳ କବଳ ଭିତରୁ ସେପରି ଆଉ କେହି ଇଚ୍ଛା କଲେ ବି, ମୁକ୍ତ ହୋଇ ପାରିବେ ନାହିଁ। ବିଚାର ବିଭାଗ, ଶିକ୍ଷା ବିଭାଗ, ସ୍ୱାସ୍ଥ୍ୟ ବିଭାଗ ପ୍ରଭୃତି ସାଙ୍ଗକୁ ଏବେ ଡାକ ତାର ବିଭାଗ ମଧ୍ୟ ନିରୁପାୟ ଭାବରେ ସେ ରାକ୍ଷସର ଅନିବାର୍ଯ୍ୟ ଭୀଷଣକୁକ୍ଷୀ ଭିତରକୁ ଆକୃଷ୍ଟ ହୋଇ ଗଲାଣି।

ଅଥଚ, ଏଣେ ଡାକ ଓ ତାର ବିଭାଗରେ ଦିନକୁ ଦିନ କାମ ବଢ଼ି ଚାଲିଛି। କାମର ଜଟିଳତା ମଧ୍ୟ ବଢ଼ି ଚାଲିଛି। ଆଗେ ଆମ ଲୋକଙ୍କ ଭିତରେ ବାର୍ତ୍ତା ବିନିମୟ କରିବାର ପ୍ରବଣତା ଆଜିପରି ଏତେ ଦେଖାଯାଉ ନଥିଲା। ଅତି ଆବଶ୍ୟକ ନ ପଡ଼ିଲେ କେହି କାହା ପାଖକୁ ଚିଠିଟିଏ ଲେଖୁନଥିଲେ। କେବଳ ପରସ୍ପର ଠାରୁ ଦୀର୍ଘଦିନ ପାଇଁ ବିଛେଦ ଭୋଗୁଥିବା ଦୂରସ୍ଥ ନବବିବାହିତା ଦମ୍ପତି ବା ପ୍ରେମିକ-ପ୍ରେମିକାଙ୍କ ବ୍ୟତୀତ ବ୍ୟକ୍ତିଗତ ଚିଠିପତ୍ର କେହି ବିଶେଷ ଲେଖୁ ନଥିଲେ। ସେମିତି କାହା ପାଖକୁ ଟେଲିଗ୍ରାମ୍‌ଟିଏ ଆସୁଥିଲା କେବଳ କାହାର ବିଶେଷ ଦେହ ଖରାପ ହେଲେ ବା କାହାର ପରଲୋକ ହୋଇଗଲେ। ଆଜି କିନ୍ତୁ ସେ କଥା ନୁହେଁ। ମଣିଷ ଭିତରେ ବାର୍ତ୍ତା ବିନିମୟ କରିବା ପାଇଁ—ଗୋଟାଏ ପ୍ରବେଗ ମଧ୍ୟ ସୃଷ୍ଟି ହୋଇଗଲାଣି। ଆଜିକାଲି ଟେଲିଗ୍ରାମ୍‌ଟିଏ ଆଉ କେବଳ ଅଶୁଭ ସୂଚକ ନୁହେଁ। ନୂଆ ଜନ୍ମଟିଏ ହେଲେ ଟେଲିଗ୍ରାମ୍, କିଏ ବାହାହେଲେ ଟେଲିଗ୍ରାମ୍—ବ୍ରତଘରେ ଟେଲିଗ୍ରାମ୍—ପୁରସ୍କୃତ ହେଲେ ଟେଲିଗ୍ରାମ୍। କେତେ ଶୁଭେଚ୍ଛାର, କେତେ ଆଶୀର୍ବାଦର, ପ୍ରୀତି ପ୍ରଣୟରବାହକ ହୋଇ ସାରିଲାଣି ଆଜିକାଲିର ଟେଲିଗ୍ରାମ୍ ବା ଚିଠି। ବର୍ଷ ଶେଷରେ ଶୁଭେଚ୍ଛା—ନବବର୍ଷର ଅଭିନନ୍ଦନ—ଅନାଗତ ସୌଭାଗ୍ୟ ଲାଗି ଆଶୀର୍ବାଦ—ଉପସ୍ଥିତ ବିପଦରୁ ମୁକ୍ତି ଲାଗି ପ୍ରାର୍ଥନା—ଏମିତି ଏମିତି କେତେ ଆନ୍ତରିକ ସଂକ୍ଷିପ୍ତ ବା ବାହୁଲ୍ୟଭରା ବାର୍ତ୍ତାର ବାହକ ହୋଇ ନିତି ପ୍ରତି ଆତଯାତ ହେଉଛନ୍ତି, ଅସଂଖ୍ୟ ଚିଠିପତ୍ର, ଟେଲିଗ୍ରାମ ଆଉ ଫୋନ୍ କଲ୍। ଏକଥା ନିଶ୍ଚୟ ଆଜି ମୁକ୍ତ

କଣ୍ଠରେ ସ୍ୱୀକାର କରିବାକୁ ପଡ଼ିବ ଯେ—ଶତ ଶତ ବିପର୍ଯ୍ୟୟର କାରଣ ସତ୍ତ୍ୱେ, ବିଚ୍ଛିନ୍ନତାର ବାତାବରଣ ସତ୍ତ୍ୱେ, ମଣିଷ ଆଜି ମଣିଷ ସଂଗେ ମିଶିବାକୁ ଚାହେଁ—ବାର୍ତ୍ତାଳାପ କରିବାକୁ ଚାହେଁ—ଅନ୍ୟକୁ ସଂବେଦିତ କରିବାକୁ ଚାହେଁ, ଅନ୍ୟ ଦ୍ୱାରା ମଧ୍ୟ ସମଭାବରେ ସମ୍ବେଦିତ ହେବାକୁ ଚାହେଁ।

ସବୁ ନୈରାଶ୍ୟ ଓ ହତାଶା, ଦୁଃଖ ଓ ବ୍ୟର୍ଥତାବୋଧ ଭିତରେ ବି, ମୁଁ ଆପଣଙ୍କ ଚିଠିକୁ ଅପେକ୍ଷା କରି ରହିଛି ବନ୍ଧୁ। ଆଉ ଆପଣ ବି ସେମିତି ମୋ ଚିଠିକୁ ଅପେକ୍ଷା କରି ବସିଥିବେ ଏବଂ ଏ କଥା ବି ସମାନ ସତ ଯେ ଆମେ ଦୁହେଁ ତାଙ୍କ ଚିଠିକୁ ଅପେକ୍ଷା କରି ରହିଛୁ ଓ ସେ ମଧ୍ୟ ପ୍ରତିଦିନ ପୋଷ୍ଟମ୍ୟାନ୍‌ଙ୍କ ଆଗମନକୁ ଅପେକ୍ଷା କରି ରହିଛନ୍ତି—କାଳେ ଆମେ ଦୁହିଁଙ୍କ ଭିତରୁ କାହାଠାରୁ ହେଲେ ଅନ୍ୟୂନ ପକ୍ଷେ ପୋଷ୍ଟକାର୍ଡ଼ଟିଏ ଆଜି ପାଇଯିବେ

ଡାକ-ତାର ବିଭାଗର ସବୁ ତ୍ରୁଟି-ବିଚ୍ୟୁତି ସତ୍ତ୍ୱେ—ଆମେ ସେଇ ବିଭାଗର କର୍ମଚାରୀମାନଙ୍କ ପ୍ରତି ଆମର ସଂଶ୍ରଦ୍ଧ କୃତଜ୍ଞତା ଓ ପ୍ରୀତି ସମ୍ମାନ ଜ୍ଞାପନ କରୁଛୁ। ପୋଷ୍ଟମ୍ୟାନଙ୍କ ଚିଠି ମୁଣି ଭିତରେ ଭଗବାନଙ୍କର କୃପା ଆଶୀର୍ବାଦ ଭରି ରହିଥାଉ। ଜାତୀୟ ଜୀବନରେ ଓ ମଣିଷ ଭିତରେ ଅହରହ ଶୁଭ ଓ ପ୍ରୀତିପୂର୍ଣ୍ଣ ବାର୍ତ୍ତାଗୁଡ଼ିକର ବିନିମୟ ହେଉଥାଉ।

❋❋